সারস্বত

# ବ୍ୟାବହାରିକ ଓଡ଼ିଆ ବ୍ୟାକରଣ

(ସରକାରୀ ବିଦ୍ୟାଳୟ, ସି.ବି.ଏସ୍.ଇ., ଆଇ.ସି.ଏସ୍.ଇ., ଆଦର୍ଶ ବିଦ୍ୟାଳୟ, ନବୋଦୟ ବିଦ୍ୟାଳୟ, ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ତଥା ସମସ୍ତ ପ୍ରତିଯୋଗିତାମୂଳକ ପରୀକ୍ଷା ନିମନ୍ତେ ଉଦ୍ଦିଷ୍ଟ)


ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ
ଏମ୍.ଏ., ବି.ଇଡି., ଏମ୍.ଫିଲ୍., ପିଏଚ୍.ଡି., ଡି.ଲିଟ୍.
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତି ବିହାର, ବୁର୍ଲା

ପଣ୍ଡିତ ବ୍ରଜକିଶୋର ହୋତା
ଏମ୍.ଏ., ବି.ଇଡି., ସାହିତ୍ୟରତ୍ନ, ସାହିତ୍ୟାଚାର୍ଯ୍ୟ
(ରାଜ୍ୟସମ୍ମାନପ୍ରାପ୍ତ) ପୂର୍ବତନ ଶିକ୍ଷକ
ବାଲୁଗାଁ ଉଚ୍ଚ ବିଦ୍ୟାଳୟ, ବାଲୁଗାଁ, ଖୋର୍ଦ୍ଧା

ଶ୍ରୀ ଭାସ୍କର ପ୍ରଧାନ
ଏମ୍.ଏ., ବି.ଇଡି.
ପୂର୍ବତନ ଶିକ୍ଷକ
ବି.ଜେ.ବି. ହାଇସ୍କୁଲ, ଖୋର୍ଦ୍ଧା





ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

# ସାରସ୍ୱତ ବ୍ୟାବହାରିକ ଓଡ଼ିଆ ବ୍ୟାକରଣ

ଲେଖକ :
ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ
ପଣ୍ଡିତ ବ୍ରଜକିଶୋର ହୋତା
ଶ୍ରୀ ଭାସ୍କର ପ୍ରଧାନ

ପ୍ରକାଶକ:
ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ୨୦୦୬
ପରିମାର୍ଜିତ ଓ ପରିବର୍ଦ୍ଧିତ
ଷୋଡ଼ଶ ସଂସ୍କରଣ : ୨୦୨୨

ଅକ୍ଷର ବିନ୍ୟାସ :
ବାବାଗତିଶ୍ୱର ଡିଟିପି ସେଣ୍ଟର
ବିଡ଼ାନାସୀ, କଟକ-୧୪

ମୁଦ୍ରଣ :
ଦେବୀ ଗ୍ରାଫିକ୍ସ
ଚାନ୍ଦିନୀଚୌକ, କଟକ-୨

ମୂଲ୍ୟ :
୧୭୦ ଟଙ୍କା ମାତ୍ର

**Saraswata**
**Byabaharika Odia Byakarana**

Written by :
**Dr. Krushna Ch. Pradhan**
**Pandit Braja Kishore Hota**
**Sri Bhaskar Pradhan**

Published by:
**Satyanarayan Book Store**
Binod Bihari, Cuttack-2

**First Edition : 2006**
**Revised & Enlarged**
**Sixteenth Edition : 2022**

DTP :
**BabaGatiswar DTP Centre**
Bidanasi, Cuttack-14

Printing:
**Devi Graphics**
Chandinchouk, Cuttack-2

Price:
**Rs. 170/-** only

# ପ୍ରାକ୍ କଥନ

ଓଡ଼ିଆ ଭାଷାରେ ବ୍ୟାକରଣ ପୁସ୍ତକର ଅପ୍ରତୁଳତା ନିଶ୍ଚିତ ଭାବରେ କ୍ଷୋଭର ବିଷୟ । ଆମର ଛାତ୍ର-ଛାତ୍ରୀମାନଙ୍କ ସମେତ ବିଭିନ୍ନ ପ୍ରତିଯୋଗିତାପାଇଁ ପ୍ରସ୍ତୁତ ହେଉଥିବା ପରୀକ୍ଷାର୍ଥୀମାନେ ସ୍ୱଳ୍ପ ପ୍ରକାଶିତ କେତୋଟି ବ୍ୟାକରଣ ପୁସ୍ତକ ଦୀର୍ଘଦିନଧରି ପଠନ କରିଆସୁଥିଲେ; କିନ୍ତୁ ଏପରି କେତେକ ବିଷୟ ରହିଯାଇଛି, ଯାହା ଛାତ୍ର-ଛାତ୍ରୀମାନେ ପରୀକ୍ଷାପାଇଁ ପ୍ରସ୍ତୁତ ହେବା ସମୟରେ ଏହିସବୁ ବ୍ୟାକରଣ ପୁସ୍ତକରେ ନ ପାଇ ଅସୁବିଧାର ସମ୍ମୁଖୀନ ହେଉଥିଲେ । ସୁତରାଂ ସମସ୍ତ ଆବଶ୍ୟକତାକୁ ଦୃଷ୍ଟିରେ ରଖି ଆମେ 'ସାରସ୍ୱତ ବ୍ୟାବହାରିକ ଓଡ଼ିଆ ବ୍ୟାକରଣ' ପୁସ୍ତକଟିକୁ ରଚନା କରିଛୁ ।

ଯେ କୌଣସି ଭାଷାପାଇଁ ବ୍ୟାକରଣ ପୁସ୍ତକର ଗୁରୁତ୍ୱ ରହିଛି । ଭାଷାର ତ୍ରୁଟି ସଂଶୋଧନ ତଥା ଭାଷା ବ୍ୟବହାର କରୁଥିବା ବ୍ୟକ୍ତିବିଶେଷଙ୍କର ଲିଖନଗତ ଓ ଉଚ୍ଚାରଣଗତ ତ୍ରୁଟିର ପରିମାର୍ଜନ ଓ ସଂଶୋଧନ ପାଇଁ ବ୍ୟାକରଣର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ଭାଷା ଚିରସ୍ରୋତା ସ୍ରୋତସ୍ୱିନୀଟିଏ । ବାଧାବନ୍ଧନ ନ ମାନି ଆଗେଇଯିବା ତା'ର ଧର୍ମ । ନଦୀଟିଏ ପ୍ରବାହିତ ହେବା ସମୟରେ ଅଳିଆ-ଆବର୍ଜନା ଇତ୍ୟାଦିକୁ ଅବାଧରେ ଭସାଇନିଏ । ଫଳତଃ ଜଳ ହୁଏ ଆବିଳ । ସେହି ଆବିଳ ଜଳକୁ ଯେପରି ପାନୀୟ ଉପଯୋଗୀ କରିବାପାଇଁ ପରିଷ୍କାର କରିବାକୁ ପଡ଼ିଥାଏ, ସେହିପରି ଭାଷା ବ୍ୟବହାରରେ ଥିବା ଦୋଷତ୍ରୁଟିକୁ ସଂଶୋଧନ କରିବାପାଇଁ ବ୍ୟାକରଣର ଆବଶ୍ୟକତା ଅନୁଭୂତ ହୋଇଥାଏ । ବ୍ୟାକରଣ ବ୍ୟତିରେକ ଗୋଟିଏ ଭାଷାର ଶୁଦ୍ଧ ଓ ମାର୍ଜିତ ରୂପ ପରିକଳ୍ପନା ଅସମ୍ଭବ ।

ଓଡ଼ିଆ ଭାଷାରେ ବ୍ୟାକରଣର ଅଭାବକୁ କିଛି ପରିମାଣରେ ଦୂର କରିବା ଉଦ୍ଦେଶ୍ୟରେ ଆମର ଏହି ପ୍ରୟାସ । ବ୍ୟାକରଣ ଶାସ୍ତ୍ରର ପରିଧି ଯେପରି ବିସ୍ତୃତ, ସେହିପରି ଗଭୀର । ଗଭୀର ମନନଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବ୍ୟତିରେକ ଏପରି ଏକ ଗ୍ରନ୍ଥରଚନା ଅସମ୍ଭବ । ତେଣୁ ଏହି ପୁସ୍ତକରେ ଆମର ଅଜ୍ଞାତସାରରେ ଯଦି କିଛି ତ୍ରୁଟି ରହିଯାଇଥାଏ, ତେବେ ସୁଧୀ ପାଠକ, ଗବେଷକ ଏ ବିଷୟରେ ଆମକୁ ଅବଗତ କରାଇଲେ, ପରବର୍ତ୍ତୀ ସଂସ୍କରଣରେ ତା'ର ସଂଶୋଧନ ଲାଗି ଚେଷ୍ଟା କରିବୁ ।

ଗ୍ରନ୍ଥଟିର ପ୍ରକାଶନ ଦିଗରେ ସତ୍ୟନାରାୟଣ ବୁକ୍ ଷ୍ଟୋର୍‌ର ସ୍ୱତ୍ୱାଧିକାରୀ ସତ୍ୟନାରାୟଣବାବୁ ଆମକୁ ବିଶେଷ ଉତ୍ସାହ ପ୍ରଦାନ କରିଥିବାରୁ, ନିଶ୍ଚିତ ଭାବରେ ଧନ୍ୟବାଦାର୍ହ । ଛାତ୍ର-ଛାତ୍ରୀ ତଥା ସୁଧୀ ପାଠକମାନଙ୍କୁ ଏହି ପୁସ୍ତକଟି କିଞ୍ଚିତ୍ ସାହାଯ୍ୟ କରିପାରିଲେ, ଶ୍ରମ ସାର୍ଥକ ହେଲା ବୋଲି ମନେକରିବୁ ।

**ଉତ୍କଳ ଦିବସ** | **ଶ୍ରଦ୍ଧାସ୍ପଦ**
**ଏପ୍ରିଲ୍ ୧, ୨୦୦୬** | **ଲେଖକଗଣ**

# ନୂତନ ସଂସ୍କରଣର ନୂତନତା... ✍

'ସାରସ୍ୱତ ବ୍ୟାବହାରିକ ଓଡ଼ିଆ ବ୍ୟାକରଣ'ର ପ୍ରଥମ ସଂସ୍କରଣ ଏପ୍ରିଲ ୧, ୨୦୦୬ ମସିହା, ଉତ୍କଳଦିବସରେ ଆତ୍ମପ୍ରକାଶ କରିଥିଲା । ଇତିମଧ୍ୟରେ ଦୀର୍ଘ ୧୬ ବର୍ଷ ଅତିକ୍ରାନ୍ତ ହୋଇସାରିଛି । ଗ୍ରନ୍ଥଟିର ପାଠକୀୟ ଆଦୃତି ଆମ୍ଭମାନଙ୍କ ପାଇଁ ଉତ୍ସାହଜନକ । ପର୍ଯ୍ୟାପ୍ତ ସମୟ ଅନୁକୂଳ ନହେବାରୁ ପ୍ରଥମ ସଂସ୍କରଣରେ ବ୍ୟାକରଣ ସମ୍ବନ୍ଧୀୟ କେତେକ ଅମୀମାଂସିତ ପାଠ ପାଠକମାନଙ୍କ ନିଜସ୍ୱ ଚିନ୍ତାଧାରାରେ ସମାଧାନ କରିବା ପାଇଁ ଉକ୍ତ ଗ୍ରନ୍ଥରେ ଉଦ୍ଦିଷ୍ଟ ଥିଲା । ଆମ୍ଭେ ପ୍ରୋକ୍ତ ପାଠଗୁଡ଼ିକୁ ପାଠକମାନଙ୍କର ସହଜ ବୋଧଗମ୍ୟତା ପାଇଁ ଉକ୍ତ ସଂସ୍କରଣରେ ବିଶଦ ଭାବରେ ଆଲୋଚନା କରିଅଛୁ । ପୁସ୍ତକଟିର ପ୍ରତ୍ୟେକ ଅଧ୍ୟାୟକୁ ପୁନଃ ପୁନଃ ପାଠକରି ସେଗୁଡ଼ିକରେ ଥିବା ବ୍ୟାକରଣ ସମ୍ବନ୍ଧୀୟ ଭ୍ରମପ୍ରମାଦ ସଂଶୋଧନ, ନୂତନ ଶବ୍ଦ ଚୟନ, କିଛି ଆବଶ୍ୟକ ପରିବର୍ତ୍ତନ-ସହିତ ଆନୁଷଙ୍ଗିକ ନୂତନ ପାଠର ସଂଯୋଗ କରି ଏହାର ପରିମାର୍ଜିତ, ପରିବର୍ଦ୍ଧିତ, ନୂତନ ସଂସ୍କରଣ କରିବା ପାଇଁ ଯଥାସାଧ୍ୟ ଯତ୍ନଶୀଳ ହୋଇଅଛୁ । ତଥାପି ଭାଷାତାତ୍ତ୍ୱିକ ବିଚାର ଏକ ଅନାୟାସ ଲବ୍ଧ ବିଷୟ ନୁହେଁ । ଏହା ଏକାନ୍ତ ତ୍ରୁଟିଶୂନ୍ୟ କହିବାର ଧୃଷ୍ଟତା ଆମ୍ଭର ନାହିଁ ।

ସୁତରାଂ ବିଦ୍ୱଜ୍ଜନମାନଙ୍କୁ ନମ୍ରନିବେଦନ, ମୁଦ୍ରଣ ଜନିତ ତ୍ରୁଟି ଦୃଷ୍ଟିକୁ ଆଣିଲେ, ପରବର୍ତ୍ତୀ ସଂସ୍କରଣରେ ସେଗୁଡ଼ିକ ସଂଶୋଧନ କରିବାରେ ବ୍ରତୀ ହେବୁ । ଅଧିକନ୍ତୁ ବ୍ୟାକରଣ ଜିଜ୍ଞାସୁ, ଭାଷାପ୍ରେମୀ ଶିକ୍ଷକ ଶିକ୍ଷିକା, ଛାତ୍ରଛାତ୍ରୀ, ଅଧ୍ୟାପକ ଅଧ୍ୟାପିକା ତଥା ବିଦ୍ୱାନ୍ ବୁଦ୍ଧିଜୀବୀମାନଙ୍କର ପୁସ୍ତକ ସମ୍ବନ୍ଧରେ ସୁଚିନ୍ତିତ ମତାମତ ଓ ପରାମର୍ଶ ପାଇଲେ ପୁସ୍ତକଟିକୁ ପୁନର୍ମାର୍ଜିତ କରିବାକୁ ପ୍ରୟାସ କରିବୁ ।

**ଖୋର୍ଦ୍ଧା** — **ଭବଦୀୟ ଗୁଣମୁଗ୍ଧ**

**ଜୁଲାଇ ୧, ୨୦୨୨** — **ଲେଖକ ମଣ୍ଡଳୀ**

**ଶ୍ରୀଗୁଣ୍ଡିଚା**

# ସୂଚୀପତ୍ର

**ବିଷୟ** **ପୃଷ୍ଠା**

| ବିଷୟ | ପୃଷ୍ଠା |
|---|---|

# ବ୍ୟାକରଣର ପ୍ରୟୋଜନୀୟତା

ଦର୍ଶନ, ଅର୍ଥନୀତି, ରାଜନୀତି ବିଜ୍ଞାନ, ଇତିହାସ, ପଦାର୍ଥବିଜ୍ଞାନ ଓ ସମାଜତତ୍ତ୍ୱ ପରି ବ୍ୟାକରଣ ମଧ୍ୟ ଏକ ଶାସ୍ତ୍ର । ନିର୍ଦ୍ଦିଷ୍ଟ ଶାସ୍ତ୍ର ଅଧ୍ୟୟନଦ୍ୱାରା ତତ୍‌ସମ୍ବନ୍ଧୀୟ ଜ୍ଞାନ ଉପଲବ୍ଧ ହୋଇଥାଏ । ବ୍ୟାକରଣର ମହତ୍ତ୍ୱ ବହୁ ପ୍ରାଚୀନ କାଳରୁ ଉପଲବ୍ଧ । ପୃଥିବୀର ବିଭିନ୍ନ ଭାଷାରେ ବ୍ୟାକରଣ ଗ୍ରନ୍ଥ ରଚିତ ହୋଇଛି । ପାଣିନିକୃତ ସଂସ୍କୃତ ଭାଷାର ବ୍ୟାକରଣ ବିଶ୍ୱର ସର୍ବ ପ୍ରାଚୀନ ବ୍ୟାକରଣ ରୂପେ ବିଦ୍‌ଜ୍ଜନଙ୍କ ଦ୍ୱାରା ସ୍ୱୀକୃତ ।

ବ୍ୟାକରଣ ହେଉଛି ଭାଷାବିଶ୍ଳେଷକ ଗ୍ରନ୍ଥ । ଶୁଦ୍ଧଭାଷାରେ କହିବା, ଲେଖିବା ଓ ପଢ଼ିବା ପାଇଁ ବ୍ୟାକରଣ ଶାସ୍ତ୍ରର ଅଧ୍ୟୟନ ସର୍ବାଦୌ କର୍ତ୍ତବ୍ୟ । ସମସ୍ତ ଶାସ୍ତ୍ରର ଲେଖାବଳୀର ଶୁଦ୍ଧତା ବ୍ୟାକରଣର ମୌଳିକ ନୀତି ଉପରେ ପର୍ଯ୍ୟବସିତ । କହିବା ଅପେକ୍ଷା ଲିଖନର ଶୁଦ୍ଧତା ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ, ଅଶୁଦ୍ଧି ଥିବା ପୁସ୍ତକଟିଏ ପଢ଼ିଲେ ଅଶୁଦ୍ଧିର ପ୍ରୟୋଗ ଅନ୍ୟମାନଙ୍କ ଉପରେ କୁପ୍ରଭାବ ପକାଇଥାଏ । ଫଳରେ ଏକ ଭାଷା କ୍ରମଶଃ ଦୂଷିତ ଓ ବିଶୃଙ୍ଖଳିତ ହୋଇଯାଏ । ସୁତରାଂ ଭାଷାକୁ ଶୃଙ୍ଖଳାବଦ୍ଧ କରିଥାଏ ବ୍ୟାକରଣ । ଏଣୁ ବ୍ୟାକରଣ ହେଉଛି ଶୁଦ୍ଧଭାଷା ପ୍ରୟୋଗର ବିଦ୍ୟା ବା ଶାସ୍ତ୍ର ।

ପୁନଶ୍ଚ ଶୁଦ୍ଧଲିଖନ ଶୁଦ୍ଧଭାବନା ଉପରେ ପର୍ଯ୍ୟବସିତ । ଭାବନାଚୟକୁ ଶୃଙ୍ଖଳିତ କରିବା ବ୍ୟାକରଣର କାର୍ଯ୍ୟ । ବ୍ୟାକରଣ ନିୟମର ବହିର୍ଭୂତ ଭାଷା ଶୁଦ୍ଧଭାଷା ନୁହେଁ । ବ୍ୟାକରଣର ଶୃଙ୍ଖଳା ମଧ୍ୟରେ ଭାଷା ଆବଦ୍ଧ ନ ହେଲେ ଭାଷାରେ ଯଥେଚ୍ଛାଚାରିତା ବଢ଼ିଯାଏ । ତଦ୍ଦ୍ୱାରା ଏକଜାତିର ଭାଷା ମାର୍ଜିତଭାଷା ବା ମାନକଭାଷା ହୋଇପାରିବ ନାହିଁ । ତେଣୁ ଭାଷାଗତ ଐକ୍ୟ ଅଭାବରୁ ଜାତୀୟ ଐକ୍ୟ ବିପନ୍ନ ହୁଏ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଞ୍ଚଳିକ ଭାଷାମାନ ରହିଛି; ମାତ୍ର ମାନକଭାଷା ଗୋଟିଏ । ଅର୍ଥାତ୍ କଥିତ ଭାଷାରେ ପାର୍ଥକ୍ୟ ଥିଲେ ମଧ୍ୟ ଲିଖିତଭାଷା ଏକ । ପୃଥିବୀରେ ସମସ୍ତ ଲିଖିତଭାଷାର ବ୍ୟାକରଣ ରହିଛି ।

ବ୍ୟାକରଣ ଏକ ଆବଦ୍ଧ ସରୋବର ନୁହେଁ; ଏହା ଏକ ପ୍ରବହମାନା ସ୍ରୋତସ୍ୱିନୀ । ଏଥିରେ ପରିବର୍ତ୍ତନ ଆସିବା ସ୍ୱାଭାବିକ । ଜନସାଧାରଣଙ୍କର ଭାଷା ପ୍ରୟୋଗ ଓ ବ୍ୟବହାରରେ ନୂତନତା ଦେଖାଦେଲେ, ଏହି ପରିବର୍ତ୍ତନ ସମ୍ଭବପର ହୁଏ । ସୁତରାଂ ବ୍ୟାକରଣର ପ୍ରାୟୋଗିକ କ୍ଷେତ୍ର ଯଥୋଚିତ ହେବା ବାଞ୍ଛନୀୟ ।

ଓଡ଼ିଆ ବ୍ୟାକରଣ ଆଜି କେବଳ ସଂସ୍କୃତ ବ୍ୟାକରଣାନୁସାରିଣୀ ନୁହେଁ; ଏଥିରେ ମୌଳିକତାର ସ୍ୱାକ୍ଷର ମଧ୍ୟ ସୁସ୍ପଷ୍ଟ ।



# ଓଡ଼ିଆ ଭାଷାର କ୍ରମବିକାଶ

## ଭାଷାର ଆବଶ୍ୟକତା :

ଭାବ ପ୍ରକାଶର ମାଧ୍ୟମ ଭାଷା । ଯେଉଁମାନଙ୍କର ଭାଷା ନାହିଁ, ସେମାନେ ମଣିଷ ନୁହନ୍ତି । ଏହି କାରଣରୁ ପୃଥିବୀରେ ମଣିଷ ହେଉଛି ଭାଗ୍ୟବାନ୍, କାରଣ ସେ ଭାଷାର ଅଧିକାରୀ । ମାନବେତର ଜୀବ ସେମାନଙ୍କ ଭାବକୁ ବିଭିନ୍ନ ସଙ୍କେତ ବା ଶବ୍ଦ ମାଧ୍ୟମରେ ପ୍ରକାଶ କରୁଥିଲେ ହେଁ ତାହାକୁ ଯଥାର୍ଥରେ ଭାଷା କୁହାଯାଇ ପାରିବ ନାହିଁ । ମଣିଷ ଜୀବନରେ ଦୁଇଟି କାରଣରୁ ଭାଷାର ଉପଯୋଗିତା ରହିଛି । ପ୍ରଥମତଃ ତା'ର ପ୍ରାଥମିକ ଚିନ୍ତାଟି ଭାଷା ମାଧ୍ୟମରେ ସାଧିତ ହୋଇଥାଏ । ଅର୍ଥାତ୍ ପ୍ରତ୍ୟେକ ମଣିଷ ନିଜ ମାତୃଭାଷାରେ ହିଁ ପ୍ରଥମେ ଚିନ୍ତା କରିଥାଏ । ଦ୍ୱିତୀୟରେ ସେ ତା'ର ଭାବକୁ ଅନ୍ୟ ନିକଟରେ ପ୍ରକାଶ କରିବାକୁ ଭାଷାର ସହାୟତା ଗ୍ରହଣ କରିଥାଏ । ତେଣୁ ମଣିଷ ଜୀବନରେ ଭାଷାର ଉପଯୋଗିତା ଯେପରି ଅକଳନୀୟ, ସେହିପରି ତାହାର ଆବଶ୍ୟକତା ମଧ୍ୟ ଅପରିହାର୍ଯ୍ୟ । ପ୍ରତ୍ୟେକ ଭାଷାର ଧ୍ୱନିଗୁଡ଼ିକର ଉଚ୍ଚାରଣ ପଦ୍ଧତି ଭିନ୍ନ । ଏହି ଧ୍ୱନିଗୁଡ଼ିକ ଗୋଟିଏ ନିର୍ଦ୍ଦିଷ୍ଟ ନିୟମରେ ସଜ୍ଜିତ ହୋଇ ପ୍ରକାଶିତ ହେଲେ, ତାହା ଭାଷାର ରୂପ ଗ୍ରହଣ କରିଥାଏ ।

ଭାଷାର ପରିସର ବ୍ୟାପକ । ଏହା ଏକ ପ୍ରବହମାନ ଧାରା । ପୃଥିବୀରେ ପ୍ରାୟ ପନ୍ଦର ହଜାରରୁ ଊର୍ଦ୍ଧ୍ୱ ଭାଷା ପ୍ରଚଳିତ । ସମୟକ୍ରମେ କିଛି ଭାଷା ମଧ୍ୟ ପୃଥିବୀ ପୃଷ୍ଠରୁ ଲୋପ ପାଇଯାଇଛି । ପ୍ରତ୍ୟେକ ଭାଷାର କେତେଗୁଡ଼ିଏ ଉପଭାଷା ମଧ୍ୟ ରହିଛି । ଏହି ଉପଭାଷାଗୁଡ଼ିକ ସେହି ମୂଳଭାଷାରୁ ସୃଷ୍ଟ ଏବଂ ତାହା ସେହି ଭାଷାଭାଷୀ ଅଞ୍ଚଳର ସାଧାରଣ ଲୋକଙ୍କ ଦ୍ୱାରା ବ୍ୟବହୃତ ହେବା ସଙ୍ଗେ ସଙ୍ଗେ ଏଥିରେ ଆଞ୍ଚଳିକ ପ୍ରୟୋଗର ଆଧିକ୍ୟ ପରିଲକ୍ଷିତ ହୋଇଥାଏ ।

## ଓଡ଼ିଆ ଭାଷାର ବିକାଶ କ୍ରମ :

ଭାରତୀୟ ସମ୍ବିଧାନ ସ୍ୱୀକୃତ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷା ଅନ୍ୟତମ । ଓଡ଼ିଆ ଭାଷାର ମୂଳଉତ୍ସ ହେଉଛି ଭାରତୀୟ ଆର୍ଯ୍ୟଭାଷା । ଏହି ଭାରତୀୟ ଆର୍ଯ୍ୟଭାଷା ଇଣ୍ଡୋୟୁରୋପୀୟ ଭାଷା ପରିବାରର ଶତମ ବର୍ଗାନ୍ତର୍ଗତ ଇଣ୍ଡୋ-ଇରାନିଆନ ଆର୍ଯ୍ୟଶାଖାର ଭାରତୀୟ ଆର୍ଯ୍ୟ ଉପଶାଖା । କ୍ରମବିକାଶସ୍ତରରେ ଭାରତୀୟ ଆର୍ଯ୍ୟଭାଷା ତିନୋଟି ସ୍ତର ଦେଇ ଗତିଶୀଳ । ପ୍ରଥମ ସ୍ତର ହେଉଛି ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷା (ଖ୍ରୀ:ପୂ: ୧୫୦୦ରୁ ଖ୍ରୀ:ପୂ: ୫୦୦), ଦ୍ୱିତୀୟ ସ୍ତର- ମଧ୍ୟଭାରତୀୟ ଆର୍ଯ୍ୟଭାଷା (ଖ୍ରୀ:ପୂ: ୫୦୦ରୁ ଖ୍ରୀଷ୍ଟୀୟ ୧୦୦୦) ଏବଂ ତୃତୀୟ ସ୍ତର ହେଉଛି ଆଧୁନିକ ଭାରତୀୟ ଆର୍ଯ୍ୟଭାଷା (୧୦୦୦ ଖ୍ରୀ:

ପରବର୍ତ୍ତୀ) । ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷା ବୈଦିକ ସଂସ୍କୃତ ଓ ଲୌକିକ ସଂସ୍କୃତ ନାମରେ ପରିଚିତ । କଥିତ ସଂସ୍କୃତରୁ ଜନ୍ମ ନେଇଥିଲା, ମଧ୍ୟଭାରତୀୟ ଆର୍ଯ୍ୟଭାଷା । ଏହା ତିନୋଟି ସ୍ତରରେ ବିଭକ୍ତ । ଯଥା-ପ୍ରଥମ ସ୍ତର ପାଲିଭାଷା (ଖ୍ରୀ:ପୂ: ୫୦୦ରୁ ଖ୍ରୀ:ପୂ: ୨୦୦), ଦ୍ୱିତୀୟ ସ୍ତର ପ୍ରାକୃତଭାଷା (ଖ୍ରୀ:ପୂ: ୨୦୦ରୁ ୫୦୦ ଖ୍ରୀଷ୍ଟାବ୍ଦ), ତୃତୀୟ ସ୍ତର-ଅପଭ୍ରଂଶ ଭାଷା (୫୦୦ ଖ୍ରୀ:ରୁ ୧୦୦୦ ଖ୍ରୀ:) । ପ୍ରାକୃତଭାଷା-ମହାରାଷ୍ଟ୍ରୀ, ସୌରସେନୀ, ମାଗଧୀ, ପୈଶାଚୀ ଓ ଅର୍ଦ୍ଧମାଗଧୀ- ଏହିପରି ପାଞ୍ଚଭାଗରେ ବିଭକ୍ତ । ମାଗଧୀ ପ୍ରାକୃତର ଅନ୍ୟତମ ଶାଖା ପୂର୍ବୀ-ମାଗଧୀ ଅପଭ୍ରଂଶରୁ ସୃଷ୍ଟି ଲାଭ କରିଛି ଓଡ଼ିଆ ଭାଷା । ପୂର୍ବୀ-ମାଗଧୀ ଅପଭ୍ରଂଶ ଉତ୍ତର-ପୂର୍ବୀ ମାଗଧୀ ଓ ଦକ୍ଷିଣ-ପୂର୍ବୀ ମାଗଧୀ, ଏହିପରି ଦୁଇଭାଗରେ ବିଭକ୍ତ । ବଙ୍ଗାଳୀ ଓ ଆସାମୀ ଭାଷା ହେଉଛି ଉତ୍ତରୀ-ମାଗଧୀ ଅପଭ୍ରଂଶ ଅନ୍ତର୍ଭୁକ୍ତ ଏବଂ ଓଡ଼ିଆ ହେଉଛି ପୂର୍ବୀ-ମାଗଧୀ ଅପଭ୍ରଂଶ ଅନ୍ତର୍ଭୁକ୍ତ ।

ଦକ୍ଷିଣ-ପୂର୍ବୀ ମାଗଧୀ ଅପଭ୍ରଂଶର ଅନ୍ୟ ନାମ ଔଡ୍ରୀ ଅପଭ୍ରଂଶ । ଏହି ଔଡ୍ରୀ ଅପଭ୍ରଂଶ ପୂର୍ବୀ-ମାଗଧୀ ଅପଭ୍ରଂଶର ଏକ ଶାଖା । ଏଥିରୁ ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ଓଡ଼ିଆର ସୃଷ୍ଟି । ଭରତଙ୍କ ନାଟ୍ୟଶାସ୍ତ୍ରରେ ଯେଉଁ 'ଔଡ୍ରୀ ବିଭାଷା' ସମ୍ପର୍କରେ ଉଲ୍ଲେଖ ରହିଛି, ତାହା 'ଔଡ୍ରୀ ଅପଭ୍ରଂଶ'ର ପୂର୍ବ ରୂପ । ପୂର୍ବୀ-ମାଗଧୀ ପ୍ରାକୃତର ଅଷ୍ଟ୍ରିକ ଓ ଦ୍ରାବିଡ଼ ଭାଷା ସହିତ ମିଶ୍ରଣରେ ଔଡ୍ରୀ ବିଭାଷାର ସୃଷ୍ଟି ବୋଲି ଅନୁମାନ କରାଯାଇଥାଏ । ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ସ୍ୱତନ୍ତ୍ର ରୂପ ନେଇ ବିକାଶ ଲାଭ କରିଥିବାର ସୂଚନା ଚୀନ୍ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଇଥାଏ । ଉତ୍କଳକୁ ଅତୀତରେ ଓଡ୍ର ଦେଶ ବୋଲି କୁହାଯାଉଥିଲା । ଏହି ଓଡ୍ର ଦେଶର କଥିତ ଭାଷାରେ ସୌରସେନୀ ଏବଂ ଶବର ଭାଷାର ମିଶ୍ରଣ ଯୋଗୁଁ ଔଡ୍ରୀ ଅପଭ୍ରଂଶର ସୃଷ୍ଟି । ତେଣୁ ପ୍ରାଚୀନ ଓଡ଼ିଆ ଭାଷା ଭାରତୀୟ ଆର୍ଯ୍ୟ, ଦ୍ରାବିଡ଼, ଅଷ୍ଟ୍ରିକ ଗୋଷ୍ଠୀ ଭାଷାର ଚମତ୍କାର ମିଳନ । ସପ୍ତମ ଶତାବ୍ଦୀ ବେଳକୁ ଏହି ମିଳନ ସଂଘଟିତ ହୋଇସାରିଥିଲା । ଏହି ସମୟ ଓ ପରବର୍ତ୍ତୀ କାଳରେ ଖୋଦିତ ବିଭିନ୍ନ ଶିଳାଲେଖରେ ଓଡ଼ିଆ ଭାଷାର ଅନେକ ଉଦାହରଣ ଦେଖିବାକୁ ମିଳେ ।

ବିଭିନ୍ନ ପ୍ରାଚୀନ ଅଭିଲେଖ, ଯଥା-ମାଧବ ବର୍ମାଙ୍କ ତାମ୍ରଶାସନ, ଅନନ୍ତ ଦେବ ବର୍ମାଙ୍କ ତାମ୍ରଶାସନ, ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଉରଜାମ୍ ଶିଳାଲେଖ, ଭୁବନେଶ୍ୱରରୁ ଆବିଷ୍କୃତ ଦ୍ୱିତୀୟ ନରସିଂହ ଦେବଙ୍କ ଦ୍ୱୈଭାଷିକ ଶିଳାଲେଖ, ତ୍ରିମାଳା ମଠସ୍ଥିତ ତାମ୍ରଶାସନ, ଚତୁର୍ଥ ନରସିଂହ ଦେବଙ୍କ ପୁରୀ ଶଙ୍କରାନନ୍ଦ ମଠର ତାମ୍ର ଫଳକ, ଚତୁର୍ଥ ନରସିଂହ ଦେବଙ୍କ ଯାଜପୁରର ସିଦ୍ଧେଶ୍ୱର ମନ୍ଦିରସ୍ଥ ସ୍ତମ୍ଭ ଅଭିଲେଖ ଆଦିରେ ଓଡ଼ିଆ ଭାଷାର ଯେଉଁ ସୂଚନା ମିଳେ, ସେଥିରୁ ଏହି ଭାଷାର ଏକ କ୍ରମବିକଶିତ ରୂପ ଦେଖିବାକୁ ମିଳେ ।

ସପ୍ତମ/ଅଷ୍ଟମ ଶତକ ବେଳକୁ ଓଡ଼ିଆ ଭାଷାର ଏକ ବିକଶିତ ରୂପ ପରିଲକ୍ଷିତ ହୋଇଥାଏ । ବିଭିନ୍ନ ଗବେଷକଗଣ ମତ ଦେଇ କହିଥା'ନ୍ତି ଯେ ୮୪ ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରୁ କେତେକ ଥିଲେ ଓଡ଼ିଶାର ଲୋକ । ତେଣୁ ଚର୍ଯ୍ୟାଗୀତିକାଗୁଡ଼ିକରେ ଓଡ଼ିଆ ଭାଷାର ବହୁ ଶବ୍ଦ ପରିଲକ୍ଷିତ ହେବା ସ୍ୱାଭାବିକ । ଅନୁଦିନ, ଅନ୍ତରେ, ଅନ୍ଧାର, ଅବର, ଆଇଲ, ଆଜି, ଉଆସ, ଏଉ, ଏକେଲି, କରିଆ(କରି), କହିଁ(କାହିଁ), କାଅ(କାୟା) କାହାରେ, କାହ୍ନୁ, କିସ, କୁଡ଼ିଆ, କେଡୁଆଳ(କେରୁଆଳ), କୋଇ(କେହି), ଖଟ୍‌ଟେ (ଖଟେ), ଖାଇବ, ଖେଳ, ଗଡ଼ିଲି, ଗାଈ, ବିଗତ (ଗ୍ରୀବାରେ), ଗୁଞ୍ଜରି (ଗୁଞ୍ଜରୀ), କେଲ(ଗଲା), ଘିନି(ଘେନି), ଘୁମଇ, ଘୋରି, ଚଉ(ଚାରି), ଚଉଠ, ଚାଙ୍ଗେଡ଼ା, ଚାରି, ବାହନ୍ତେ, ଚିନ୍ତଇ, ଛାଇଲି, ଛାର, ଜାଗନ୍ତେ, ଜାହେର (ଯାହାର), ଜୀବନ୍ତେ, ଠାକୁର, ତହି, ତୁଟଇ, ତୁଲୋ, ତେନ୍ତୁଳି, ତୋହରି, ବାରୀ, ଦେଉ, ଦେଖଇ, ଧାମ, ନଣନ୍ଦ, ନାଚ, ପାବତ(ପର୍ବତ), ପୁଚ୍ଛଇ, ଫିଟେଲି(ଫିଟିଲା), ବଖାଣି, ବଡ଼ିଆ(ବଡ଼ି), ବିଟାଳ, ବିଳସଇ, ବୁଡ଼ନ୍ତେ, ବୋଲଇ, ଭଣଇ, ଭୋଳା, ମରଇ, ମୋର, ମୋରଙ୍ଗୀ (ମୟୂରାଙ୍ଗୀ), ଲାଙ୍ଗ(ଲଙ୍ଗଳା), ଶାଖି, ଶୁଣ୍ଡିଣୀ, ହାଣ୍ଡି, ହୋଇ, ହୋଇବ ଆଦି ବହୁ ଓଡ଼ିଆ ଶବ୍ଦ ଚର୍ଯ୍ୟାଗୀତିକାଗୁଡ଼ିକରେ ଉପଲବ୍ଧ ହେଉଥିବାରୁ ଏତେବେଳକୁ ଓଡ଼ିଆ ଭାଷା ଏହି ନିରାପଦ ସ୍ଥିତିରେ ପହଞ୍ଚିଥିବା ଅନୁମାନ କରାଯାଇପାରେ । କେତୋଟି ଉଦାହରଣରୁ ଏହା ଅଧିକ ସ୍ପଷ୍ଟ ହୋଇପାରିବ । ଯଥା–

୧ । କାଆ ତରୁବର ପଞ୍ଚ ବି ଡାଳ  
ଚଞ୍ଚଳ ଚୀଏ ପଇଠା କାଳ ।  
ଦିଢ଼ କରିଅ ମହାସୁଖ ପରିମାଣ  
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ (ଲୁଇପାଦ)

୨ । ନାନା ତରୁବର ମୌଳିଲରେ ଗଅଣତ ଲାଗେଲୀ ଡାଳୀ  
ଏକେଲୀ ଶବରୀ ଏ ବଣ ହିଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରଧାରୀ  
ତିଓ ଧାଉ ଖାଟ ପାଡ଼ିଲା ସବରେ ମହାସୁଖେ ସେଜ ଛାଇଲୀ  
ସବରୋ ଭୁଜଙ୍ଗ ନୈରାମଣୀ ଦାରୀ ପେମ୍ହ ରାତି ପୋହାଇଲୀ (ଶବରୀ ପାଦ)

୩ । ନଗର ବାହିରିରେ ଡୋମ୍ବି ତୋହରି କୁଡ଼ିଆ  
ଛୋଇ ଛୋଇ ଜାଇ ସୋ ବ୍ରାହ୍ମଣ ନାଡ଼ିଆ  
ଆଲୋ ଡୋମ୍ବି ତୋଏ ସମ କରିବୋ ମୋ ସଙ୍ଗ  
ନିଘିନ କାହ୍ନକାପାଳି ଜୋଇ ଲାଙ୍ଗ (କାହ୍ନୁପାଦ)

## ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ଭାଷାର ସ୍ୱରୂପ :

ଓଡ଼ିଆ ଭାଷାର ଅରୁଣୋଦୟ କାଳରେ ସାରଳାଦାସ ତାକୁ ପ୍ରଦାନ କଲେ ଏକ ବିରାଟ ଭିତ୍ତିଭୂମି । ତାଙ୍କ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ ଆଦିରେ ଖାଣ୍ଟି ଓଡ଼ିଆ ଭାଷା ତା'ର ଆଭିଜାତ୍ୟ ଫେରିପାଇଲା । ସେ ଭାଷାକୁ ଦେଲେ ନୂଆ ରୂପ । ତାଙ୍କ ବିରାଟ ମହାଭାରତରେ ଗୋଟିଏ ଜାତିର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଜୀବନ ପରିସ୍ଫୁଟ ହୋଇଉଠିଲା । ଲୋକକଥିତ ଭାଷା ସାହିତ୍ୟିକ ମର୍ଯ୍ୟାଦା ଲାଭ କଲା ସାରଳା ଦାସଙ୍କ କୃତିରେ । ଓଡ଼ିଶାର ଜାତୀୟ ଜୀବନକୁ ସଙ୍ଗଠିତ, ସୁଦୃଢ଼ ଓ ସ୍ୱାଭିମାନୀ କରିବା କ୍ଷେତ୍ରରେ ରାଜା କପିଳେନ୍ଦ୍ର ଦେବଙ୍କ ଭୂମିକା ଯାହା, ଭାଷା ଓ ସାହିତ୍ୟକୁ ସମୃଦ୍ଧ, ମର୍ଯ୍ୟାଦାବନ୍ତ ଓ ସୌକୁମାର୍ଯ୍ୟ ପ୍ରଦାନ କରିବା କ୍ଷେତ୍ରରେ ସାରଳାଦାସଙ୍କ ଭୂମିକା ଥିଲା ଠିକ୍ ସେଇଆ । ଜଣେ ଥିଲେ ଦେଶର ରାଜା; ଅନ୍ୟ ଜଣେ ଥିଲେ ଭାଷାର ରାଜା । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ପ୍ରତ୍ୟେକଟି ବିଭାବ ସାରଳାଙ୍କ ଉଚ୍ଚମାନର କୃତିରେ ଋଦ୍ଧିମନ୍ତ ।

ଚର୍ଯ୍ୟାଗୀତିକା ପରେ ଅମରକୋଷ ଓ ବତ୍ସାଦାସଙ୍କ କଳସା ଚଉତିଶାକୁ ଛାଡ଼ିଦେଲେ ଆଉ ବିଶେଷ କିଛି ସାହିତ୍ୟିକ କୃତି ପରିଲକ୍ଷିତ ହୁଏ ନାହିଁ, କେବଳ ସାରଳା ଦାସଙ୍କ ବିରାଟ ସୃଷ୍ଟି ବ୍ୟତୀତ । ପଞ୍ଚଦଶ ଶତକ ବେଳକୁ ଓଡ଼ିଆ ଭାଷା ଓ ଲିପି ପ୍ରତିଷ୍ଠିତ ହୋଇସାରିଥିବା ବିଷୟ ସାରଳାଦାସଙ୍କ ମହାଭାରତରେ ଦେଖାଯାଏ । ସାନ୍ଦୀପନୀ ଋଷିଙ୍କ ନିକଟରୁ ଶ୍ରୀକୃଷ୍ଣ ବିଦ୍ୟାଶିକ୍ଷା ସମୟରେ ସାରଳାଦାସ ସେ ସମୟରେ ପ୍ରଚଳିତ ବିଭିନ୍ନ ଭାରତୀୟ ଭାଷା ଓ ଲିପି ସମ୍ପର୍କରେ ସୂଚନା ଦେବା ପର୍ଯ୍ୟାୟରେ ଓଡ଼ିଆ ଭାଷା ଓ ଲିପିର ନାମୋଲ୍ଲେଖ କରିଛନ୍ତି-

ଓଡ଼ିଆ ତେଲଙ୍ଗା ଯେ ନାଗେରୀ ଦକ୍ଷିଣୀ
କନାଉଜ ଆହରଣ ଗଉଡ଼ୀ ଆଚକ୍ରାୟଣୀ ।

ସାରଳାଦାସଙ୍କ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ ଆଦି ପ୍ରାଚୀନ ଓଡ଼ିଆ ଭାଷାର ଏକ ଏକ ବିରାଟ ଶବ୍ଦ ବିଭବ, ଯାହାର ପ୍ରାକୃତ ଓ ଅପଭ୍ରଂଶ ଭାଷା ସହିତ ଏକ ନିଗୂଢ଼ ସମ୍ପର୍କ ରହିଛି । ଦେଶଜ ଶବ୍ଦକୁ ସାହିତ୍ୟିକ ମର୍ଯ୍ୟାଦା ଦେଇ ସାରଳାଦାସ ଜାତିପାଇଁ ଏକ ବିରାଟ କାର୍ଯ୍ୟ ସମ୍ପାଦନ କରିଯାଇଛନ୍ତି । ସେହିପରି ପ୍ରାଚୀନ ଓଡ଼ିଆ ଦେଶଜ ଶବ୍ଦଗୁଡ଼ିକ ମଧ୍ୟରୁ ନିମ୍ନରେ ଅଳ୍ପ କେତୋଟିର ଉଦାହରଣ ପ୍ରଦତ୍ତ କରାଗଲା, ଯଥା-ଅଏଁଳା, ଅଘୋର(ଘୋର), ଅତିଅନ୍ତ, ଅନର୍ଯାପ (ଅପର୍ଯ୍ୟାପ୍ତ), ଅନୁପାଶ, ଅମିୟ, ଅରିଷ୍ଟି, ଆଗିଆଣୀ (ଆଗ୍ରହୀ), ଆବର, ଆରେକ, ଆଷ୍ୟ (ଆୟୁଷ), ଉଭା, ଏସନ, ଓଢ଼ଣି, କଟାଳ, କପୂର, କରତାର, କପଟି, କେବଣ, ଗାଜଇ(ଗର୍ଜ୍ଜଇ), ଘରଣୀ, ଘାଟୋଇ, ଛଡ଼ା (ମାଈ ବାଛୁରୀ),

ଝାଟୁଆ (ଛାଞ୍ଚୁଣୀ), ଝାସ, ଠାକୁର, ତଡ଼ତି (ତଡ଼ିତ୍), ତିମ, ତମ, ଥାଠ (ଥାଟ), ଦାରେଗୀ (ଦାରା), ଦୁତିଅ, ଦୁଲଣି, ନାରାଜ(ନାରାଚ), ପାଦାନ୍ତି (ପଦାତିକ), ପ୍ରାକର୍ମ (ପରାକ୍ରମ), ବରଜାତି(ବରଯାତ୍ରୀ), ବହେଣି(ଭଗିନୀ), ବିନୋଇ (ବିନୟୀ), ବେଭଳ(ବିହ୍ୱଳ), ବ୍ରତମାନ(ବର୍ତ୍ତମାନ), ଭରସା, ଭୋଗ, ମାଧେବ, ମେଣ୍ଟ, ଯାଠି (ଯଷ୍ଟି), ଶୟନ (ସକଳ), ସଂଗାତ (ସଗୋତ୍ର), ସାଦ୍ରିଶ (ସାଦୃଶ), ସ୍ନାହାନ (ସ୍ନାନ), ହେଳେ (ହେଳା), ହୋ ଇତ୍ୟାଦି । ସୁନ୍ଦର ସୁନ୍ଦର ଯୁଗ୍ମ ଶବ୍ଦ ଓ ଆଳଙ୍କାରିକ ଶବ୍ଦର ଅଭାବ ନାହିଁ ସାରଳାଙ୍କ ସୃଷ୍ଟିରେ । ଯେପରି ବଜ୍ରେଣ ନିର୍ବାଣ, ଅନିର୍ଯାପ ଲେଖନ, ଜଗଜନ-ମୋହିନୀ, ନିକଳଙ୍କ ନିଶାପତି, ଆଣ୍ଠୁଆଣି ପାଣି, ଲହଲହ ଜିହ୍ୱା, ଗହ ଗହ ହସ, କୁଚକୁମ୍ଭ, ସୁଗନ୍ଧେ ମଧୁକର ବନ୍ଦୀ, ଧରାଧରି, ପଡ଼ାପଡ଼ି, ତର୍ଜନ୍ତି ଗର୍ଜନ୍ତି, ଘୃତ ସଂଯୋଗରେ ଯେହ୍ନେ ବହ୍ନି ବିକରାଳ, ଶରୀର ଦିଶିଲା ଯେ କିଂଶୁକ ପୁଷ୍ପ ପ୍ରାୟେ, କଣୟ ପର୍ବତେ କି ଦିଶେ ମେଘମାଳା ଇତ୍ୟାଦି ବହୁ ଆଳଙ୍କାରିକ ଓଡ଼ିଆ ଶବ୍ଦ ବିଭବକୁ ସାରଳାଦାସଙ୍କ ମହାଭାରତ ଓ ଅନ୍ୟାନ୍ୟ ରଚନାରେ ଅନୁସନ୍ଧାନ କରାଯାଇପାରେ ।

## ଷୋଡ଼ଶ ଶତକର ଓଡ଼ିଆ ଭାଷା :

ସାରଳାଦାସ ଓଡ଼ିଆ ଭାଷା ଓ ସାହିତ୍ୟକୁ ଯେଉଁ ବିଶାଳ ଭିତ୍ତିଭୂମି ପ୍ରଦାନ କଲେ ପରବର୍ତ୍ତୀ କାଳରେ ଷୋଡ଼ଶ ଶତକରେ ପଞ୍ଚସଖା ସ୍ରଷ୍ଟାଗଣ, ତା' ଉପରେ ନିର୍ମାଣ କଲେ ଭାଷା ଓ ସାହିତ୍ୟର ବିରାଟ ହର୍ମ୍ୟ । ବଳରାମ ଦାସଙ୍କ ରାମାୟଣ ଓ ଅନ୍ୟାନ୍ୟ ରଚନା, ଜଗନ୍ନାଥ ଦାସଙ୍କ ଭାଗବତ ଓ ଅନ୍ୟାନ୍ୟ ରଚନା, ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଏବଂ ଅନ୍ୟାନ୍ୟ ରଚନା ତଥା ଅନନ୍ତ ଦାସ ଓ ଯଶୋବନ୍ତ ଦାସଙ୍କ ବିଭିନ୍ନ ରଚନାବଳୀ ଓଡ଼ିଆ ଭାଷା ଏବଂ ସାହିତ୍ୟର ଗୋଟିଏ ଗୋଟିଏ ମହାର୍ଘ ରତ୍ନ । ବଳରାମ ଦାସ ସାରଳାଦାସଙ୍କ ପରି ରାମାୟଣରେ ଓଡ଼ିଶାର ନଦ-ନଦୀ, ପର୍ବତ ପ୍ରଭୃତି ବିଭିନ୍ନ ସ୍ଥାନର ବର୍ଣ୍ଣନା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସମାଜ ଓ ସଂସ୍କୃତିକୁ ଯଥାସମ୍ଭବ ପ୍ରତିଫଳିତ କରିବାକୁ ଚାହିଁଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତର ଲାଳିତ୍ୟ, ଅପୂର୍ବ ଛନ୍ଦଯୋଜନା ଓ ଭକ୍ତିଭାବନା ଓଡ଼ିଶାର ପୁରପଲ୍ଲୀରେ ଏତେଦୂର ଆଦୃତ ହୋଇଥିଲା ଯେ, ଷୋଡ଼ଶ ଶତକର ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ଭାଗବତ ଟୁଙ୍ଗି ଗଢ଼ିଉଠିଥିଲା । ଏହି ସମୟରେ ଓଡ଼ିଆ ପଦ୍ୟ ଓ ଗଦ୍ୟର ପର୍ଯ୍ୟାପ୍ତ ବିକାଶ ସାଧିତ ହୋଇଥିଲା । ଜଗନ୍ନାଥ ଦାସ ପ୍ରାକୃତ ଭାଷାରେ ଭାଗବତ ରଚନା କରିଥିବା କଥା ବାରମ୍ବାର ଉଲ୍ଲେଖ କରିଛନ୍ତି-

ପ୍ରାକୃତ ବନ୍ଧେ ଭାଗବତ । କହଇ ଦାସ ଜଗନ୍ନାଥ ॥
ସେକଥା ପ୍ରାକୃତେ ପ୍ରକାଶ । ଆରମ୍ଭେ ଜଗନ୍ନାଥ ଦାସ ॥

ଭାଗବତରେ ତତ୍‌ସମ୍, ତଦ୍‌ଭବ ଏବଂ ଦେଶଜ ଶବ୍ଦର ଚମତ୍କାର ସମ୍ମିଶ୍ରଣ ଘଟିଛି । ଭାଗବତରୁ କେତୋଟି ଶବ୍ଦ ଏଠାରେ ଉଲ୍ଲେଖ କରାଯାଇପାରେ- ଅଡ଼ା(ଅନିଷ୍ଟ), ଆଈ, ଆଡ଼ତିଆ (ନିୟୋଗୀବିଶେଷ), ଓଡ଼ିଆଣୀ (ଅଳଙ୍କାରବିଶେଷ), କାଛେ(ନିକଟରେ), ଗୋଇ(ଗୋପୀ), ଘଟ(ଦେହ), ଜମାଳି(ପରିହାସ), ଗପ(ପୀଡ଼ା), ନିଉଛାଳି (ପୂଜା), ଧାଡିକାରେ (ଶୀଘ୍ର), ପଥୁକି (ପଥିକ), ପାଣ୍ଠୋଇ(ଜୋତା), ପାୟ (ପାଦ), ପିଅର(ପିତା), ବଳୀୟାର, ବହନ(ଶୀକା), ବହେଣୀ (ଭଉଣୀ), ବାଲୁତ, ମଡ଼ିଛି (ମୃତବତ୍ସା), ରାଢ଼ (କୃପଣ), ଶୟନ (ସଂସାର), ସଧ (ଶ୍ରଦ୍ଧା), ହାଦେ (ଶୀଘ୍ର), ହିଆ ଇତ୍ୟାଦି ।

ବଳାମ ଦାସଙ୍କ ଦାଣ୍ଡି ରାମାୟଣରେ କିଛି ତତ୍ସମ ଶବ୍ଦ ଓ ବହୁପରିମାଣରେ ତଦ୍‌ଭବ ଏବଂ ଦେଶଜ ଶବ୍ଦର ବ୍ୟବହାର ପରିଲକ୍ଷିତ । ହୋଇଥାଏ । ଯଥା-ବ୍ରାହ୍ମଣ, ତନୟ, ସର୍ବକାର୍ଯ୍ୟ, ସୁଜ୍ଞ, ସୁଜନ, ସମ୍ପୂର୍ଣ୍ଣ, ଜଗନ୍ମୋହନ ଇତ୍ୟାଦି ତତ୍ସମ ଶବ୍ଦ; ଦ୍ରପଣ (ଦର୍ପଣ), ସାହେର (ସାଗର), ଅଟ୍ଟାଳି (ଅଟ୍ଟାଳିକା), ନିର୍ଭାଇ (ନିର୍ବାହ), ବହେଣୀ, ମୁଣୋହି, ବଖାଣ (ବ୍ୟାଖ୍ୟାନ), ଖମ୍ଭ (ସ୍ତମ୍ଭ), ମୂରତି (ମୂର୍ତ୍ତି), ସ୍ନାହାନ, ରହୁବର (ରଥବର), ପଦାନ୍ତି, ପଡ଼ିହାରୀ (ପ୍ରତିହାରୀ), ମୁକୁତା (ମୁକ୍ତା) ଆଦି ତଦ୍ଭବ ଶବ୍ଦ ଏବଂ ଗୁଳଗୁଞ୍ଜା, ଖୋରା, କତି, ଏଣେ, ଉଲୁଣି, ତେଣୁକି, ଠାବ, ହୁଳହୁଳି, ଖୋରା ଆଦି ଦେଶଜ ଶବ୍ଦ ଦେଖାଯାଏ । ଏତଦ୍‌ବ୍ୟତୀତ, ମାଦଳାପାଞ୍ଜି, ରୁଦ୍ରସୁଧାନିଧି ଆଦିର ଗଦ୍ୟଭାଷା ଓଡ଼ିଆ ଭାଷାକୁ ଦେଇଛି ଗୋଟିଏ ନୂଆ ରୂପ ।

**ମଧ୍ୟଯୁଗୀୟ ସାହିତ୍ୟ :**

ସପ୍ତଦଶ ଶତକର ଆଦ୍ୟପାଦରୁ ଊନବିଂଶ ଶତକର ଆଦ୍ୟପାଦ ପର୍ଯ୍ୟନ୍ତ ସମୟ ସାଧାରଣତଃ ଓଡ଼ିଆ ସାହିତ୍ୟରେ ରୀତିଯୁଗ ବା ମଧ୍ୟଯୁଗ ଭାବରେ ପରିଚିତ । ଏହି ସମୟରେ କବିଗଣ ସଂସ୍କୃତ ସାହିତ୍ୟକୁ ଆଦର୍ଶ ରୂପେ ରଖି ସାହିତ୍ୟ ରଚନାରେ ପ୍ରବୃତ୍ତ ହୋଇଥିବାରୁ ତତ୍‌ସମ ଭାଷାର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ । ପୁଣି ସଂସ୍କୃତ ଅଳଙ୍କାର ଶାସ୍ତ୍ରଗୁଡ଼ିକର ନିୟମ କାନୁନ୍‌କୁ ଅଧିକାଂଶ କ୍ଷେତ୍ରରେ ଅନୁସରଣ କରାଯାଇଥିବାରୁ ପାଣ୍ଡିତ୍ୟପୂର୍ଣ୍ଣ ସାହିତ୍ୟର ଅବାଧ ପ୍ରବାହ ଓଡ଼ିଆ ରୀତିସାହିତ୍ୟକୁ ସମୃଦ୍ଧ କରିବାରେ ସହାୟତା କରିଛି । ରସ, ରୀତି, ଗୁଣ, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟ, ଅଳଙ୍କାର ଆଦିର ପ୍ରୟୋଗ ଯୋଗୁଁ ଦେଶଜଭାଷା ଧୀରେ ଧୀରେ ଦୂରେଇ ଯାଇଛି ସାହିତ୍ୟରୁ । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବହୁଳ ପ୍ରୟୋଗ ସଂସାଧିତ ହୋଇଛି । ସଂସ୍କୃତ ପ୍ରତିସ୍ପର୍ଦ୍ଧୀ ସାହିତ୍ୟ ରଚନା କରିବା ପାଇଁ ପ୍ରବଣତା ପ୍ରକାଶ ପାଇଛି କବିମାନଙ୍କ ମଧ୍ୟରେ । ଏହାସତ୍ତ୍ୱେ ଅନେକ ଗୀତିକବିତା ଏହି ସମୟରେ ସୃଷ୍ଟି ହୋଇଥିବାରୁ ସରଳ ଓ ତରଳ

ଭାଷା ସମ୍ପୂର୍ଣ୍ଣ ଅପାଂକ୍ତେୟ ହୋଇପଡ଼ିନାହିଁ । ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ବ୍ରଜନାଥ ବଡ଼ଜେନା, କବିସୂର୍ଯ୍ୟ ବଳଦେବ ରଥ, ଅଭିମନ୍ୟୁ ସାମନ୍ତସିଂହାର, ବନମାଳୀ, ଗୋପାଳକୃଷ୍ଣ ଆଦି ବହୁ କବି ଏହି ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ସାଂଗୀତିକତା ସାହିତ୍ୟର ଅନ୍ତଃସୌନ୍ଦର୍ଯ୍ୟ ବୃଦ୍ଧି କରିପାରିଛି । ବିଭିନ୍ନ ଛନ୍ଦର ପ୍ରୟୋଗ ଯୋଗୁଁ କାବ୍ୟ ହୋଇଛି ରାଗରାଗିଣୀଯୁକ୍ତ । ଏହାର ସାଙ୍ଗୀତିକ ଗୁଣ ବୌଦ୍ଧିକ ପାଠକଠାରୁ ସାଧାରଣ ଲୋକମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ବାନ୍ଧିପାରିଛି । ବିଭିନ୍ନ ଅକ୍ଷର ନିୟମକୁ ଆଖିରେ ରଖି ବିଭିନ୍ନ ଚଉତିଶା, ଚଉପଦୀ, ଛାନ୍ଦ ଇତ୍ୟାଦି ରଚନା କରାଯାଇଛି । ତତ୍ସମ, ତଦ୍‌ଭବ, ଦେଶଜ ଓ କେତେକ ଯାବନିକ ତଥା ବୈଦେଶିକ ଶବ୍ଦର ବ୍ୟବହାର ଏହି ସମୟର ସାହିତ୍ୟର ଶବ୍ଦଭଣ୍ଡାରକୁ ସମୃଦ୍ଧ କରିପାରିଛି ।

## ଆଧୁନିକ ଯୁଗ :

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ସେମାନେ ଏ ଦେଶରେ ନିଜ ଭାଷାର ପ୍ରସାର ନିମିତ୍ତ ଉଦ୍ୟମ ଆରମ୍ଭ କଲେ । ପ୍ରଥମ ପର୍ଯ୍ୟାୟରେ ଏ କ୍ଷେତ୍ରରେ ବିଫଳ ହେବାରୁ ସେ ଇଂରାଜୀ ଭାଷାକୁ ସରକାରୀ ଚାକିରିର ମାଧ୍ୟମ ରୂପେ ଗ୍ରହଣ କଲେ । ୧୮୩୫ ମସିହାରେ ଲର୍ଡ ମାକଲେଙ୍କ ନୂତନ ଶିକ୍ଷାନୀତି ଓ ପରେ ପରେ ଲର୍ଡ ହାର୍ଡିଞ୍ଜଙ୍କ ଶିକ୍ଷାନୀତିର ପ୍ରଣୟନ ଯୋଗୁଁ ଧୀରେ ଧୀରେ ପାଶ୍ଚାତ୍ୟ ଶିକ୍ଷାପ୍ରତି ଓଡ଼ିଆମାନଙ୍କ ମନରେ ଅନୁରାଗ ସୃଷ୍ଟି ହେଲା । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଦେଶୀ ଭାଷା ଭାବରେ କିଛି ପାରସିକ, ଆରବିକ, ତୁର୍କ ଓ ପର୍ତ୍ତୁଗୀଜ ଶବ୍ଦ ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଥିଲା; ମାତ୍ର ଊନବିଂଶ ଶତକର ମଧ୍ୟଭାଗରୁ ଇଂରାଜୀ ଶବ୍ଦର ବହୁଳ ବ୍ୟବହାର ସାହିତ୍ୟ ରାଜ୍ୟରେ ପରିଲକ୍ଷିତ ହେଲା । ଇଂରାଜୀ ଶବ୍ଦର ବହୁଳତା ରହିଥିଲେ ହେଁ ଫରାସୀ, ଓଲନ୍ଦାଜ, ଗ୍ରୀକ୍, ଜର୍ମାନ, ଲାଟିନ୍, ସ୍ପେନୀୟ, ଇତାଲୀୟ, ଋଷୀୟ, ଜାପାନୀ, ତିବ୍ବତୀୟ ଆଦି ଭାଷାର କିଛି ଶବ୍ଦ ଓଡ଼ିଆ ଭାଷାର ଶବ୍ଦଭଣ୍ଡାରକୁ ପ୍ରବେଶ ଲାଭ କରିବାର ସୁଯୋଗ ପାଇଛି । ଏଣୁ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ସମୃଦ୍ଧ ହେବା ସଙ୍ଗେ ସଙ୍ଗେ ଆଧୁନିକ ସାହିତ୍ୟର ବିପୁଳ ଐଶ୍ୱର୍ଯ୍ୟ ପରିଲକ୍ଷିତ ହୋଇଛି । ରାଧାନାଥ, ଫକିରମୋହନ, ନନ୍ଦକିଶୋର, ମଧୁସୂଦନ, ଗଙ୍ଗାଧର ଆଦି ଯେଉଁ ନୂତନ ସାହିତ୍ୟର ଧାରା ସୃଷ୍ଟି କଲେ ସତ୍ୟବାଦୀର ସାଧକ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ତାହାକୁ ଅଧିକ ସମୃଦ୍ଧ କରିପାରିଲେ । ପରବର୍ତ୍ତୀ ସମୟରେ କାଳିନ୍ଦୀଚରଣ, ଅନ୍ନଦାଶଙ୍କର, ବୈକୁଣ୍ଠନାଥ, ଶରତ୍‌ଚନ୍ଦ୍ର, ହରିହର, ରାମପ୍ରସାଦ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ ଆଦି ସାଧକଗଣଙ୍କ ପ୍ରଚେଷ୍ଟାରେ ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ଘଟିଲା । ଗଳ୍ପ, ଉପନ୍ୟାସ, କବିତା, ନାଟକ, ପ୍ରବନ୍ଧ, ଭ୍ରମଣ ସାହିତ୍ୟ, ଜୀବନୀ-ସାହିତ୍ୟ, ଶିଶୁସାହିତ୍ୟ

ଆଦି ପ୍ରଚୁର ପରିମାଣରେ ରଚନା ହେବାଯୋଗୁଁ ଓଡ଼ିଆ ସାହିତ୍ୟ ସମୃଦ୍ଧ ହେଲା । ବିଭିନ୍ନ ଭାଷାର ଶବ୍ଦ ଓଡ଼ିଆ ଭାଷାରେ ଗୃହୀତ ହେବାରୁ ଏହାର ଶବ୍ଦଭଣ୍ଡାର ମଧ୍ୟ ବୃଦ୍ଧି ପାଇଲା । ଭାଷାଆନ୍ଦୋଳନ, ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନ ଯୋଗୁଁ ଓଡ଼ିଆମାନଙ୍କର ସ୍ୱାଭିମାନ ଅନ୍ୟମାନଙ୍କ ଦ୍ୱାରା ସ୍ୱୀକୃତି ଲାଭ କଲା । ଏହାଦ୍ୱାରା ଉଭୟ ଭାଷା ଓ ସାହିତ୍ୟର ଯେ ବିକାଶ ସାଧିତ ହୋଇଛି, ଅସ୍ୱୀକାର କରାଯାଇ ନ ପାରେ ।

**ଓଡ଼ିଆ ଲିପି :**

ଉଚ୍ଚାରିତ ଧ୍ୱନିକୁ ଯିଏ ରୂପାୟିତ କରେ, ତାହାକୁ ଲିପି କୁହାଯାଇଥାଏ । ଗବେଷକ ମାନଙ୍କ ମତରେ ଚିତ୍ରଲିପି ହେଉଛି ଲିପିର ପ୍ରାଥମିକ ରୂପ । ଭାରତବର୍ଷରେ ଆବିଷ୍କୃତ ହୋଇଥିବା ଲିପିମାନଙ୍କ ମଧ୍ୟରେ ସୈନ୍ଧବ ଲିପି ହେଉଛି ପ୍ରାଚୀନତମ; ମାତ୍ର ପଠିତବ୍ୟ ଲିପିମାନଙ୍କ ମଧ୍ୟରେ ପ୍ରାଚୀନ ବ୍ରାହ୍ମୀଲିପି ହେଉଛି ସର୍ବପ୍ରଥମ । ସାଧାରଣତଃ ଲିପି ବିଶେଷଜ୍ଞଙ୍କ ମତରେ ଭାରତବର୍ଷରେ ଖରୋଷ୍ଠୀ ଓ ବ୍ରାହ୍ମୀଲିପି- ଏହିପରି ଦୁଇଟି ଲିପି ପ୍ରଚଳିତ ଥିଲା । ବର୍ତ୍ତମାନ ଆଧୁନିକ ଭାରତୀୟ ଆର୍ଯ୍ୟଭାଷାମାନଙ୍କ ପାଇଁ ଯେଉଁ ସମସ୍ତ ଲିପି ବ୍ୟବହୃତ, ତାହାର ମୂଳ ହେଉଛି ବ୍ରାହ୍ମୀଲିପି । ଅନ୍ୟାନ୍ୟ ଭାରତୀୟ ଲିପିମାନଙ୍କ ପରି ଓଡ଼ିଆଲିପି ବ୍ରାହ୍ମୀଲିପିର କ୍ରମ ବିବର୍ତ୍ତନ ଫଳରେ ଜନ୍ମ ହୋଇଛି ।

ଲିପି ବିଶେଷଜ୍ଞମାନଙ୍କ ମତରେ ବ୍ରାହ୍ମୀଲିପି ବିଭିନ୍ନ ସ୍ତର ଦେଇ ଗତି କରିଆସିଛି । ପ୍ରଥମ ସ୍ତର ହେଉଛି ପ୍ରାଚୀନ ବ୍ରାହ୍ମୀଲିପି (ଖ୍ରୀ.ପୂ. ୫ମ ଶତାବ୍ଦୀରୁ ଖ୍ରୀ:ପୂ: ୨ୟ ଶତାବ୍ଦୀ) ଅଶୋକଙ୍କ ଅନୁଶାସନ ଏହି ଲିପିରେ ଖୋଦିତ । ଧଉଳି ଓ ଜଉଗଡ଼ର ଧର୍ମାନୁଶାସନ ଗୁଡ଼ିକରେ ଏହି ଲିପି ବ୍ୟବହୃତ । ପରବର୍ତ୍ତୀ ବ୍ରାହ୍ମୀଲିପିର ସମୟ ହେଉଛି ଖ୍ରୀ:ପୂ: ୧ମ ଶତାବ୍ଦୀରୁ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ । ଅଞ୍ଚଳ ଭେଦରେ ପ୍ରାଚୀନ ବ୍ରାହ୍ମୀଲିପିରେ କେତେକ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ମୁଖ୍ୟତଃ କୁଶାଣ ଶାସନରେ ଏହି ଲିପିର ବ୍ୟବହୃତ ହୋଇଥିବାରୁ କେହି କେହି ଏହାକୁ କୁଶାଣକାଳୀନ ବ୍ରାହ୍ମୀଲିପି କହିଥା'ନ୍ତି । ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ଏହାର ବ୍ୟବହାର ହୋଇଛି । ଏହାର ପରବର୍ତ୍ତୀ ବିକାଶ ହେଉଛି ଗୁପ୍ତକାଳୀନ ଲିପି (ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରୁ ୭ମ ଶତାବ୍ଦୀ) । ଗୁପ୍ତ ରାଜତ୍ୱ କାଳରେ ଏହି ଲିପିର ପ୍ରଚଳନ ଥିଲା । ୭ମରୁ ୧୧ଶ ଶତାବ୍ଦୀ ମଧ୍ୟରେ ପରିଲକ୍ଷିତ ଲିପି ବିଭିନ୍ନ ନାମରେ ପରିଚିତ । ଏହାକୁ ମଧ୍ୟଯୁଗର କଳିଙ୍ଗ ଲିପି, ସୂକ୍ଷ୍ମକୋଣୀ ଲିପି, କଣ୍ଟକଶୀର୍ଷକ ଲିପି, କୀଳକଶୀର୍ଷକ ଲିପି, କୁଟିଳ ଲିପି ମଧ୍ୟ କୁହାଯାଇଥାଏ । ମହାସାମନ୍ତ ମାଧବ ରାଜାଙ୍କ ଗଞ୍ଜାମ ତାମ୍ରଲେଖ, ଶୁଭକରଙ୍କ ନେଉଳପୁର ଅଭିଲେଖ, ବିଦ୍ୟାଧର ଭଞ୍ଜଙ୍କ ସନନ୍ଦ, କଟକର ସୋମବଂଶୀ ରାଜାଙ୍କର ଅଭିଲେଖ ଆଦିରେ ଏହି ଲିପିର ବ୍ୟବହାର ହୋଇଛି ।

ଏକାଦଶ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ବ୍ୟବହୃତ ଓଡ଼ିଆ ଲିପିକୁ ପ୍ରତ୍ନ ଓଡ଼ିଆ ଲିପି କୁହାଯାଇଥାଏ । ଏହି ସମୟର ଲିପିର ଆକୃତି ଆଧୁନିକ ଓଡ଼ିଆ ଲିପିର ନିକଟବର୍ତ୍ତୀ । ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ, କ, ଖ, ଗ, ଙ, ଠ, ଥ, ଧ, ମ, ଯ, ର, ଳ, ଲ, ବ, ଶ, ଷ, ହ ଆଦି ବର୍ଣ୍ଣଗୁଡ଼ିକ ନିର୍ଦ୍ଦିଷ୍ଟ ଆକୃତି ଗ୍ରହଣ କରି ସାରିଥିଲା । ଏହି ସମୟର ଆସାମୀ, ବଙ୍ଗଳା ଓ ଓଡ଼ିଆ ଲିପି ମଧ୍ୟରେ ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଇଥାଏ । ୧୪ଶ ଶତକରୁ ୧୬ଶ ଶତକ ମଧ୍ୟରେ ବ୍ୟବହୃତ ଓଡ଼ିଆ ଲିପିକୁ ପ୍ରାଚୀନ ଓଡ଼ିଆ ଲିପି କୁହାଯାଏ । ନାଗରୀ ଲିପିର ପ୍ରଭାବ ଏଥିରେ ପରିଲକ୍ଷିତ ହୋଇଥାଏ । ଚତୁର୍ଥ ନରସିଂହଦେବଙ୍କ ପୁରୀ ଶଙ୍କରାନନ୍ଦ ମଠର ତାମ୍ରଫଳକ ସନନ୍ଦରେ ଏହି ଲିପିର ବ୍ୟବହାର ହୋଇଛି । ଷୋଡ଼ଶ ଶତାବ୍ଦୀଠାରୁ ଏଯାବତ୍ ବ୍ୟବହୃତ ଲିପିକୁ ଆଧୁନିକ ଓଡ଼ିଆ ଲିପି କୁହାଯାଇଥାଏ । ପ୍ରାଚୀନ ଓଡ଼ିଆ ଲିପିର ଉପର ଭାଗର ବକ୍ରରେଖା ଆଧୁନିକ ଓଡ଼ିଆ ଲିପିରେ ଗୋଲାକାର ରୂପ ନେଇଛି । ୧୭ଶ ଶତକଠାରୁ ତାଳପତ୍ରପୋଥି, ଶିଳାଲେଖ, ମୁଦ୍ରିତ ଗ୍ରନ୍ଥମାନଙ୍କରେ ଏହି ଲିପି ବ୍ୟବହୃତ । ଏହି ଲିପି ଲେଖନ ପଦ୍ଧତିର ଦୁଇଟି ପଦ୍ଧତି ରହିଛି ଯଥା- ଶିକ୍ଷାୟତନୀୟ ପଦ୍ଧତି ଓ କରଣୀ ପଦ୍ଧତି । ସ୍କୁଲ, କଲେଜ ତଥା ମୁଦ୍ରିତ ଗ୍ରନ୍ଥମାନଙ୍କରେ ଶିକ୍ଷାୟତନୀୟ ପଦ୍ଧତିର ବ୍ୟବହାର ହେଉଥିବା ବେଳେ, ମୋହରିର ମାନଙ୍କ ଦ୍ୱାରା କଚେରି କାଗଜପତ୍ରରେ ଓ ତାଳପତ୍ର ପୋଥିରେ କରଣୀ ପଦ୍ଧତି ବ୍ୟବହୃତ । ବର୍ତ୍ତମାନ ଅବଶ୍ୟ ଆଉ କରଣୀ ପଦ୍ଧତିର ବ୍ୟବହାର ନାହିଁ ।

ଓଡ଼ିଆ ଲିପିର ବୈଶିଷ୍ଟ୍ୟ ହେଉଛି–ଏହାର ଶିରୋଦେଶରେ ଅର୍ଦ୍ଧବୃତ୍ତାକାର ମଣ୍ଡଳୀ, ପୁଡ଼ା, ପୁଚ୍ଛ ଓ କୋଣହୀନ କୁଟିଳ ବକ୍ରରେଖା ରହିଥାଏ । ବ୍ରାହ୍ମୀଲିପିରୁ ଓଡ଼ିଆ, ବଙ୍ଗଳା, ନାଗରୀ, ଆସାମୀ ପ୍ରଭୃତି ଲିପିର ବିକାଶ ଘଟିଥିଲେ ହେଁ କେବଳ ଓଡ଼ିଆ ଲିପି ହେଉଛି ସମ୍ପୂର୍ଣ୍ଣ ରୂପେ ଗୋଲାକୃତି । ଏହି ଦୃଷ୍ଟିରୁ ଏହି ଲିପିର ଏକ ସ୍ୱତନ୍ତ୍ର ବିଶେଷତ୍ୱ ରହିଛି ।

## ଅନୁଶୀଳନୀ

୧ । ଭାଷା କ'ଣ ? ମଣିଷ ଜୀବନରେ ଭାଷାର କ'ଣ ଆବଶ୍ୟକତା ରହିଛି ?

୨ । ଭାରତୀୟ ଆର୍ଯ୍ୟଭାଷାର ବିଭିନ୍ନ ସ୍ତର ସମ୍ପର୍କରେ ଆଲୋଚନା କର ।

୩ । ଆଜିର ଓଡ଼ିଆ ଭାଷା କେଉଁ କେଉଁ ସ୍ତର ଦେଇ ଗତି କରିଆସିଛି ?

୪ । ଷୋଡ଼ଶ ଶତକର ଓଡ଼ିଆ ଭାଷାର ସ୍ୱରୂପ ସମ୍ପର୍କରେ ଆଲୋଚନା କର ।

୫ । ପଞ୍ଚଦଶ ଓ ତା'ର ପୂର୍ବବର୍ତ୍ତୀ ଓଡ଼ିଆ ଭାଷାର ବିଭିନ୍ନ ଲକ୍ଷଣ ସମ୍ବନ୍ଧରେ ସୂଚନା ଦିଅ ।



# ଧ୍ୱନି, ବର୍ଣ୍ଣ ଓ ବର୍ଣ୍ଣମାଳା

**ଧ୍ୱନି :**

ପ୍ରଭାତର ଶଯ୍ୟାତ୍ୟାଗଠାରୁ ରାତ୍ରିର ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ ମନୁଷ୍ୟ ନାନା ଧ୍ୱନି ଶୁଣିବାକୁ ପାଇଥାଏ । ପ୍ରକୃତି ରାଜ୍ୟରେ ଅହରହ ବିଭିନ୍ନ ଧ୍ୱନି ସୃଷ୍ଟି ହେଉଛି । ମନୁଷ୍ୟର ମଧ୍ୟ ଧ୍ୱନି ଅଛି । କାହିଁ କେଉଁ ଅତୀତରୁ ମାନବ ନିଜର ମୁଖନିଃସୃତ ଧ୍ୱନି ସାହାଯ୍ୟରେ ଭାବପ୍ରକାଶ କରିଆସୁଛି । ଅନ୍ୟାନ୍ୟ ପଶୁପକ୍ଷୀମାନେ ମଧ୍ୟ କିଛି କିଛି ଧ୍ୱନିଦ୍ୱାରା ଭାବ ପ୍ରକାଶ କରିଥା'ନ୍ତି; ମାତ୍ର ମନୁଷ୍ୟମାନଙ୍କ ପରି ବ୍ୟାପକ ଓ ଅର୍ଥବୋଧକ ନୁହେଁ । ସୁତରାଂ ଧ୍ୱନି ହେଉଛି ଏକପ୍ରକାର ନାଦ ବା ଶବ୍ଦ । ମନୁଷ୍ୟର ମୁଖନିଃସୃତ ଭାବପ୍ରକାଶକ ଧ୍ୱନିସମୂହ ହେଉଛି ଭାଷା; ଭାଷା ମଧ୍ୟ ଭାବପ୍ରକାଶର ପ୍ରଧାନ ମାଧ୍ୟମ ।

**ବର୍ଣ୍ଣ :**

ଧ୍ୱନିମାନଙ୍କର ଲିଖିତ ରୂପ ହେଉଛି ବର୍ଣ୍ଣ । ଅର୍ଥାତ୍ ଧ୍ୱନି ବର୍ଣ୍ଣମାନଙ୍କରେ ବର୍ଣ୍ଣିତ ବା ରୂପାୟିତ । ବର୍ଣ୍ଣ ଧ୍ୱନିମାନଙ୍କର ଲିଖନସଙ୍କେତ ହୋଇଥିବାରୁ ତାହା ଲିପି । ବର୍ଣ୍ଣର ଅନ୍ୟନାମ ଅକ୍ଷର । ବିଭିନ୍ନ ଭାଷାରେ ବିଭିନ୍ନ ସଂଖ୍ୟକ ବର୍ଣ୍ଣ ଥାଏ । ସେମାନଙ୍କର ଆକାର ଓ ଉଚ୍ଚାରଣରେ ପାର୍ଥକ୍ୟ ରହିଛି ।

**ବର୍ଣ୍ଣମାଳା :**

ଓଡ଼ିଆ ଭାଷାରେ ଲେଖାପଢ଼ାପାଇଁ ଅଣଚାଶ(୪୯)ଟି ବର୍ଣ୍ଣ ବ୍ୟବହୃତ ହେଉଛି । ଏହି ବର୍ଣ୍ଣ ସମୁଦାୟକୁ ଓଡ଼ିଆଭାଷାର ବର୍ଣ୍ଣମାଳା କୁହାଯାଏ, ଯଥା-

ଅ, ଆ, ଇ, ଈ, ଉ, ଊ, ଋ, ଏ, ଐ, ଓ, ଔ, କ, ଖ, ଗ, ଘ, ଙ, ଚ,
ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ,
ଭ, ମ, ଯ, ୟ, ର, ଳ, ଲ, ୱ(ଅବର୍ଗ୍ୟ ବ), ଶ, ଷ, ସ, ହ,
ଂ (ଅନୁସ୍ୱାର), ଃ (ବିସର୍ଗ), ଁ (ଚନ୍ଦ୍ରବିନ୍ଦୁ) ।

ଆଗରୁ ପଢ଼ିଛେ ଧ୍ୱନିର ଲିଖିତ ରୂପ ବର୍ଣ୍ଣ; ମାତ୍ର ୪୯ ବର୍ଣ୍ଣର ୪୯ଟି ଧ୍ୱନି ନାହିଁ । ଇ-ଈ, ଜ-ଯ, ଶ-ଷ-ସ ବର୍ଣ୍ଣଗୁଡ଼ିକର ଉଚ୍ଚାରଣ ସମାନ । ଯଥା- ପାଣି, ବାଣୀ; ଜଳ, ଯଶ; ଶଗଡ଼, ଷଣ୍ଢ, ସହର ।

## ବର୍ଣ୍ଣମାନଙ୍କର ବିଭାଗୀକରଣ

ଓଡ଼ିଆରେ ବ୍ୟବହୃତ ବର୍ଣ୍ଣମାନଙ୍କୁ ଦୁଇଭାଗରେ ବିଭକ୍ତ କରାଯାଏ । ଯଥା- ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ ।

**ସ୍ୱରବର୍ଣ୍ଣ-** ଅନ୍ୟ ବର୍ଣ୍ଣର ସାହାଯ୍ୟ ନ ନେଇ ଉଚ୍ଚାରିତ ହେଉଥିବା ବର୍ଣ୍ଣମାନଙ୍କୁ ସ୍ୱରବର୍ଣ୍ଣ କୁହାଯାଏ । ଓଡ଼ିଆ ଭାଷାରେ ସ୍ୱରବର୍ଣ୍ଣ ୧୧ । ଯଥା- ଅ, ଆ, ଇ, ଈ, ଉ, ଊ, ଋ, ଏ, ଐ, ଓ, ଔ ।

ପ୍ରାଚୀନ ବ୍ୟବହାରରେ ଥିବା ଋ (ଦୀର୍ଘ ଋ ଓ ଌ (ଲ୍ଲ) ର ପ୍ରଚଳନ ବର୍ତ୍ତମାନ ନାହିଁ । ମୁଖଗହ୍ୱରର ବାଗ୍‌ଯନ୍ତ୍ର ଦେଇ ସ୍ୱରବର୍ଣ୍ଣଗୁଡ଼ିକ ଉଚ୍ଚାରିତ ହେଲାବେଳେ ନିର୍ବାଧରେ ଉଚ୍ଚାରିତ ହୋଇଥା'ନ୍ତି ।

**ସ୍ୱରବର୍ଣ୍ଣମାନଙ୍କର ବିଭାଗ-** ଉଚ୍ଚାରଣ ଅନୁସାରେ ସ୍ୱରବର୍ଣ୍ଣମାନଙ୍କୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- ହ୍ରସ୍ୱସ୍ୱର ଓ ଦୀର୍ଘସ୍ୱର ।

ହ୍ରସସ୍ୱର- ଅ, ଇ, ଉ, ଋ ।

ଦୀର୍ଘସ୍ୱର- ଆ, ଈ, ଊ, ଏ, ଐ, ଓ, ଔ ।

ହ୍ରସ୍ୱସ୍ୱର ଅପେକ୍ଷା ଦୀର୍ଘସ୍ୱରମାନଙ୍କର ଉଚ୍ଚାରଣ ଅଧିକ ସମୟ ନିଏ । 'ଅ' ଠାରୁ 'ଔ' ପର୍ଯ୍ୟନ୍ତ ୧୧ଟି ସ୍ୱରବର୍ଣ୍ଣର ମାତ୍ର ୮ଟି ଧ୍ୱନି ଅଛି । ଯଥା- ଅ, ଆ, ଇ, ଉ, ଏ, ଐ, ଓ, ଔ । ଆଠଟି ସ୍ୱର ଧ୍ୱନି ମଧ୍ୟରୁ ଅ, ଇ, ଉ- ହ୍ରସ୍ୱସ୍ୱର ଧ୍ୱନି ଏବଂ ଆ, ଏ, ଐ, ଓ, ଔ - ଦୀର୍ଘସ୍ୱର ଧ୍ୱନି, ଉଚ୍ଚାରଣରେ ହ୍ରସ୍ୱସ୍ୱରଠାରୁ ଦୀର୍ଘସ୍ୱରରେ ଅଧିକ ସମୟ ଲାଗେ । ଐ, ଔ ଦୁଇଟିକୁ ସଂଯୁକ୍ତ ସ୍ୱର ବା ସନ୍ଧ୍ୟକ୍ଷର କହନ୍ତି ।

ଉଦାହରଣ- ଅ + ଇ = ଐ, ଅଇରାବତ - ଐରାବତ

ଅ + ଉ = ଔ, ସଉରଭ - ସୌରଭ

ଦ୍ରୁତ ଉଚ୍ଚାରଣରେ ଅ, ଇ 'ଐ' ଓ ଅ, ଉ 'ଔ'ରେ ପରିଣତ ହୋଇଥା'ନ୍ତି ।

**ବ୍ୟଞ୍ଜନବର୍ଣ୍ଣ-** ଯେଉଁ ବର୍ଣ୍ଣଗୁଡ଼ିକ ସ୍ୱରବର୍ଣ୍ଣର ସାହାଯ୍ୟ ବିନା ଉଚ୍ଚାରିତ ହୋଇପାରନ୍ତି ନାହିଁ, ସେମାନଙ୍କୁ ବ୍ୟଞ୍ଜନବର୍ଣ୍ଣ କୁହାଯାଏ । ଅର୍ଥାତ୍ ସ୍ୱର ସହିତ ଯୁକ୍ତ ହେଲେ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ଉଚ୍ଚାରିତ ହୁଅନ୍ତି ।

ବ୍ୟଞ୍ଜନ ବର୍ଣ୍ଣମାନଙ୍କର ସଂଖ୍ୟା ୩୮ ।

ଯଥା- କ୍, ଖ୍, ଗ୍, ଘ୍, ଙ୍, ଚ୍, ଛ୍, ଜ୍, ଝ୍, ଞ୍, ଟ୍, ଠ୍, ଡ୍, ଢ୍, ଣ୍, ତ୍, ଥ୍, ଦ୍, ଧ୍, ନ୍, ପ୍, ଫ୍, ବ୍, ଭ୍, ମ୍, ଯ୍, ୟ୍, ର୍, ଲ୍, ଳ୍, ୱ୍, ଶ୍, ଷ୍, ସ୍, ହ୍, ଂ (ଅନୁସ୍ୱାର), ଃ (ବିସର୍ଗ), ଁ (ଚନ୍ଦ୍ରବିନ୍ଦୁ) । ମାତ୍ର ୩୮ଟି ବ୍ୟଞ୍ଜନବର୍ଣ୍ଣର ଉଚ୍ଚାରଣରେ ୩୨ଟି ଧ୍ୱନି ଅଛି । ଯଥା- କ, ଖ, ଗ, ଘ, ଚ, ଛ, ଜ, ଝ, ଟ, ଠ, ଡ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଳ, ଲ, ୱ, ସ, ହ, ଂ, ଁ, ଙ, ଞ, ଯ, ଶ, ଷ, ଃ ର ମୌଳିକ ଧ୍ୱନି ଏବେ ଲୁପ୍ତ ।

'କ୍ଷ' ଏକ ଯୁକ୍ତାକ୍ଷର(କ୍ + ଷ) । ଏହାର ବ୍ୟାବହାରିକ ବିଶେଷତ୍ୱ ହେତୁ ଏହାକୁ ସ୍ୱତନ୍ତ୍ର ବ୍ୟଞ୍ଜନ ବର୍ଣ୍ଣର ମାନ୍ୟତା ଦେବାକୁ କେତେକ ବୈୟାକରଣିକ ମତ ଦେଉଛନ୍ତି ।

**ବ୍ୟଞ୍ଜନବର୍ଣ୍ଣର ବିଭାଗୀକରଣ :**

ବ୍ୟଞ୍ଜନବର୍ଣ୍ଣମାନଙ୍କ ମଧ୍ୟରୁ କ୍ ଠାରୁ ମ୍ ପର୍ଯ୍ୟନ୍ତ ପଚିଶଟି ସ୍ପର୍ଶବର୍ଣ୍ଣ । ଏଗୁଡ଼ିକର ଉଚ୍ଚାରଣ ସମୟରେ ଜିହ୍ୱାର ଅଗ୍ର, ମଧ୍ୟ ବା ମୂଳର ସାହାଯ୍ୟ ନେଇ କଣ୍ଠ, ତାଳୁ, ମୂର୍ଦ୍ଧା, ଦନ୍ତ ଓ ଓଷ୍ଠାଦିକୁ ସ୍ପର୍ଶ କରିବାକୁ ପଡ଼ିଥାଏ ।

ଏହି ସ୍ପର୍ଶବର୍ଣ୍ଣଗୁଡ଼ିକ ପାଞ୍ଚଟି ବର୍ଗ ବା ଶ୍ରେଣୀରେ ବିଭକ୍ତ ହୋଇଥିବାରୁ ବର୍ଗ୍ୟବର୍ଣ୍ଣ ନାମରେ ପରିଚିତ । 'ଯ' ଠାରୁ 'ଁ' ପର୍ଯ୍ୟନ୍ତ ୧୩ ଅବର୍ଗ୍ୟ ବ୍ୟଞ୍ଜନ ।

ବର୍ଗ୍ୟବ୍ୟଞ୍ଜନର ବିଭାଗୀକରଣ-

୧ । କ ବର୍ଗ - କ୍, ଖ୍, ଗ୍, ଘ୍, ଙ୍ - (କଣ୍ଠ୍ୟ ବର୍ଣ୍ଣ)

୨ । ଚ ବର୍ଗ - ଚ୍, ଛ୍, ଜ୍, ଝ୍, ଞ୍ - (ତାଲବ୍ୟ ବର୍ଣ୍ଣ)

୩ । ଟ ବର୍ଗ - ଟ୍, ଠ୍, ଡ୍, ଢ୍, ଣ୍ - (ମୂର୍ଦ୍ଧନ୍ୟ ବର୍ଣ୍ଣ)

୪ । ତ ବର୍ଗ - ତ୍, ଥ୍, ଦ୍, ଧ୍, ନ୍ - (ଦନ୍ତ୍ୟ ବର୍ଣ୍ଣ)

୫ । ପ ବର୍ଗ - ପ୍, ଫ୍, ବ୍, ଭ୍, ମ୍ - (ଓଷ୍ଠ୍ୟ ବର୍ଣ୍ଣ)

**ଅବର୍ଗ୍ୟବ୍ୟଞ୍ଜନର ବିଭାଗୀକରଣ-**

ଅବର୍ଗ୍ୟ ବ୍ୟଞ୍ଜନବର୍ଣ୍ଣମାନଙ୍କର ବର୍ଗ ନାହିଁ; ଅର୍ଥାତ୍ ସେଗୁଡ଼ିକର ଉଚ୍ଚାରଣ ସ୍ଥାନ ଭିନ୍ନଭିନ୍ନ ଅଟେ ।

**୧ । ଅନ୍ତଃସ୍ଥବର୍ଣ୍ଣ** - ଯ୍, ୟ୍, ର୍, ଲ୍, ଳ୍, ୱ । ଉଚ୍ଚାରଣ କ୍ଷେତ୍ରରେ ଏଗୁଡ଼ିକ ସ୍ୱର ଓ ବ୍ୟଞ୍ଜନର ମଧ୍ୟବର୍ତ୍ତୀ ହେତୁ ଅନ୍ତଃସ୍ଥ ବର୍ଣ୍ଣ, ଏହା ମଧ୍ୟ ଅର୍ଦ୍ଧସ୍ୱର ନାମରେ ପରିଚିତ ।

**୨ । ଉଷ୍ମବର୍ଣ୍ଣ** - ଶ୍, ଷ୍, ସ୍, ହ୍ । ଏଗୁଡ଼ିକର ଉଚ୍ଚାରଣରେ ମୁଖରୁ ଅଧିକ ଉଷ୍ମା (ଉଷ୍ମତା) ନିର୍ଗତ ହୋଇଥାଏ ।

**୩ । ଅଯୋଗବାହବର୍ଣ୍ଣ** - ଂ, ଃ, ଁ । ଏହି ବର୍ଣ୍ଣଗୁଡ଼ିକ ସ୍ୱର କିମ୍ବା ବ୍ୟଞ୍ଜନ ବର୍ଣ୍ଣର ଆଶ୍ରୟ ବିନା ଉଚ୍ଚାରିତ ହୋଇପାରନ୍ତି ନାହିଁ । ଏଣୁ ଏଗୁଡ଼ିକୁ ମଧ୍ୟ ଆଶ୍ରିତ ବର୍ଣ୍ଣ କହନ୍ତି ।

**ଅନୁନାସିକବର୍ଣ୍ଣ** - ପ୍ରତ୍ୟେକ ବର୍ଗର ପଞ୍ଚମ ବର୍ଣ୍ଣ - ଙ୍, ଞ୍, ଣ୍, ନ୍, ମ୍ ତଥା 'ଂ' (ଅନୁସ୍ୱାର) ଓ 'ଁ' (ଚନ୍ଦ୍ରବିନ୍ଦୁର) ଉଚ୍ଚାରଣରେ ନାସିକାର ସାହାଯ୍ୟ ନିଆଯାଉଥିବାରୁ ଏଗୁଡ଼ିକୁ ଅନୁନାସିକ ବା ଅନୁନାସିକ୍ୟ ବର୍ଣ୍ଣ କହନ୍ତି ।

**ବର୍ଣ୍ଣମାନଙ୍କର ଉଚ୍ଚାରଣ ସ୍ଥାନ :**

| | ବର୍ଣ୍ଣ | ଉଚ୍ଚାରଣ ସ୍ଥାନ | ନାମ |
|---|---|---|---|
| ୧ । | ଅ, ଆ, କ, ଖ, ଗ, ଘ, ଙ, ହ, ଃ | କଣ୍ଠ | କଣ୍ଠ୍ୟବର୍ଣ୍ଣ |
| ୨ । | ଇ, ଈ, ଚ, ଛ, ଜ, ଝ, ଯ, ୟ, ଶ | ତାଳୁ | ତାଲବ୍ୟବର୍ଣ୍ଣ |
| ୩ । | ଋ, ଟ, ଠ, ଡ, ଢ, ଣ, ଷ | ମୂର୍ଦ୍ଧା | ମୂର୍ଦ୍ଧଣ୍ୟବର୍ଣ୍ଣ |
| ୪ । | ତ, ଥ, ଦ, ଧ, ନ, ସ | ଦନ୍ତ | ଦନ୍ତ୍ୟବର୍ଣ୍ଣ |
| ୫ । | ଉ, ଊ, ପ, ଫ, ବ, ଭ, ମ | ଓଷ୍ଠ | ଓଷ୍ଠ୍ୟବର୍ଣ୍ଣ |
| ୬ । | ଏ, ଐ | କଣ୍ଠ, ତାଳୁ | କଣ୍ଠତାଲବ୍ୟ ବର୍ଣ୍ଣ |
| ୭ । | ଓ, ଔ | କଣ୍ଠ, ଓଷ୍ଠ | କଣ୍ଠୌଷ୍ଠ୍ୟ ବର୍ଣ୍ଣ |
| ୮ । | ୱ (ଅନ୍ତଃସ୍ଥ 'ବ') | ଦନ୍ତ, ଓଷ୍ଠ | ଦନ୍ତୌଷ୍ଠ୍ୟ ବର୍ଣ୍ଣ |
| ୯ । | ଂ, ଁ | ମୁଖ, ନାସିକା | ଅନୁନାସିକ ବର୍ଣ୍ଣ |
| ୧୦। | ଙ, ଞ, ଣ, ନ, ମ (ବର୍ଗର ୫ମ ବର୍ଣ୍ଣ) | କଣ୍ଠ, ତାଳୁ, ନାସିକା | ଅନୁନାସିକ ବର୍ଣ୍ଣ |

**ଅଳ୍ପପ୍ରାଣ ବ୍ୟଞ୍ଜନ** – ଯେଉଁ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ଅଳ୍ପ ପ୍ରାଣ (ବାୟୁ) ନିର୍ଗତ ହୁଏ, ସେମାନଙ୍କୁ ଅଳ୍ପପ୍ରାଣ ବ୍ୟଞ୍ଜନ କହନ୍ତି । ପ୍ରତ୍ୟେକ ବର୍ଗର ପ୍ରଥମ, ତୃତୀୟ ଓ ପଞ୍ଚମ ବର୍ଣ୍ଣ ଅଳ୍ପପ୍ରାଣ ବ୍ୟଞ୍ଜନର ଅନ୍ତର୍ଗତ । ଯଥା– କ, ଗ, ଙ; ଚ, ଜ, ଞ; ଟ, ଡ, ଣ; ତ, ଦ, ନ; ପ, ବ, ମ ଏବଂ ଯ, ର, ଳ, ୱ ।

**ମହାପ୍ରାଣ ବ୍ୟଞ୍ଜନ** – ଯେଉଁ ବର୍ଣ୍ଣମାନଙ୍କର ଉଚ୍ଚାରଣରେ ମହାପ୍ରାଣ (ଅଧିକ ବାୟୁ) ନିର୍ଗତ ହୁଏ, ସେମାନଙ୍କୁ ମହାପ୍ରାଣ ବ୍ୟଞ୍ଜନ କହନ୍ତି । ପ୍ରତ୍ୟେକ ବର୍ଗର ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣ ମହାପ୍ରାଣ ବର୍ଣ୍ଣର ଅନ୍ତର୍ଗତ । ଯଥା– ଖ, ଘ; ଛ, ଝ; ଠ, ଢ; ଥ, ଧ; ଫ, ଭ ଏବଂ ଶ, ଷ, ସ, ହ ।

**ଅଘୋଷ ବ୍ୟଞ୍ଜନ** – ଯେଉଁ ବର୍ଣ୍ଣଗୁଡ଼ିକର ଉଚ୍ଚାରଣରେ ସ୍ୱରତନ୍ତ୍ରୀ କମ୍ପିତ ହୋଇ ନ ଥାଏ, ସେଗୁଡ଼ିକୁ ଅଘୋଷ ବ୍ୟଞ୍ଜନ କହନ୍ତି । ପ୍ରତ୍ୟେକ ବର୍ଗର ପ୍ରଥମ ଓ ଦ୍ୱିତୀୟ ବର୍ଣ୍ଣ ତଥା ଶ, ଷ ଓ ସ ଅଘୋଷ ବ୍ୟଞ୍ଜନ ଅଟେ ।

**ସଘୋଷ ବ୍ୟଞ୍ଜନ** – ଯେଉଁ ବର୍ଣ୍ଣଗୁଡ଼ିକର ଉଚ୍ଚାରଣରେ ସ୍ୱରତନ୍ତ୍ରୀ କମ୍ପିତ ହୋଇଥାଏ, ସେଗୁଡ଼ିକୁ ସଘୋଷ ବ୍ୟଞ୍ଜନ କହନ୍ତି । ପ୍ରତ୍ୟେକ ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବର୍ଣ୍ଣ ଏବଂ ଯ, ର, ଳ, ୱ ସଘୋଷବ୍ୟଞ୍ଜନ ଅଟେ ।

ଡ, ଢ – ଶବ୍ଦର ପ୍ରଥମ ଅକ୍ଷର ଡ, ଢ ହୋଇଥିଲେ ଯେଉଁ ଉଚ୍ଚାରଣ ହୁଏ, ପରେ ଥିଲେ ଭିନ୍ନ ଉଚ୍ଚାରଣ ହୁଏ । ଯଥା– ଡବା, ଡମରୁ, ଡାହାଣ; ବାଡ଼, ଗଡ଼, ସଡ଼କ; ଢଗ,

ଢାମଣା, କଢ଼, ଦାଢ଼ ଇତ୍ୟାଦି । କେହି କେହି ଦ୍ୱିତୀୟ ପ୍ରକାର ଉଚ୍ଚାରଣ ପାଇଁ ଡ, ଢ ତଳେ ବିନ୍ଦୁ ଦେଇ ଲେଖନ୍ତି । ଯଥା- ଛଡ଼, ପଢ଼ା । ଡ, ଢ ଓ ଅଧୋବିନ୍ଦୁ ଥିବା ଡ଼, ଢ଼, ର ପ୍ରୟୋଗରେ କୌଣସି ଅର୍ଥଗତ ପରିବର୍ତ୍ତନ ଘଟେ ନାହିଁ । ଏଣୁ ଅଧୋବିନ୍ଦୁ ବିଯୁକ୍ତ ଓ ଅଧୋବିନ୍ଦୁ ଯୁକ୍ତ ଡ, ଢ ଦୁଇ ପ୍ରକାରର ବର୍ଣ୍ଣ ନୁହନ୍ତି ।

ଚ-ଡ, ଢ କୁ ଅନୁସରଣ କରି କେହି କେହି 'ଚ' ତଳେ ବିନ୍ଦୁ ଦେଇଥାନ୍ତି । ଏହା ଏକ ଭୁଲ୍ ବ୍ୟବହାର । 'ଚ' ତଳେ ଅଧୋବିନ୍ଦୁ ନାହିଁ ।

ଙ, ଞ, ଣ, ଳ- ଏହି ଚାରୋଟି ବର୍ଣ୍ଣ ଶବ୍ଦର ପ୍ରଥମ ଅକ୍ଷର ରୂପେ ବ୍ୟବହୃତ ହୋଇପାରନ୍ତି ନାହିଁ ।

ଙ, ଞ ର ବ୍ୟବହାର କେତୋଟି ଶବ୍ଦରେ ମାତ୍ର ସୀମିତ । ଯଥା- ଆକାଙ୍କ୍ଷା, ବାଙ୍ମୟ, ନଞ୍ତତ୍ ପୁରୁଷ, ଯାଚ୍ଞା । ବର୍ଣ୍ଣମାଳାରେ ଥିବା ଏହି ବର୍ଣ୍ଣ ଦୁଇଟିର ଆଉ ସ୍ୱତନ୍ତ୍ର ଉଚ୍ଚାରଣ ନାହିଁ ।

ଣ- ଯୁକ୍ତାକ୍ଷରରେ 'ଣ'ର ଉଚ୍ଚାରଣ 'ନ' ହୋଇଥାଏ । ଯଥା- କାରୁଣ୍ୟ-କାରୁନ୍ୟ, ପର୍ଣ୍ଣ-ପନ୍ନ, ତଣ୍ଟି-ତନ୍ଟି । ଙ, ଞ, ଣ, ନ, ମ (ବର୍ଗର ପଞ୍ଚମ ବର୍ଣ୍ଣ), ଂ, ँ - ଏହି ବର୍ଣ୍ଣଗୁଡ଼ିକୁ ଅନୁନାସିକ ବର୍ଣ୍ଣ କହନ୍ତି । କାରଣ ଉଭୟ ମୁଖଗହ୍ୱର ଓ ନାସିକା ସାହାଯ୍ୟରେ ଏମାନେ ଉଚ୍ଚାରିତ ହୁଅନ୍ତି ।

ନ, ମ- ଏହି ବର୍ଣ୍ଣଦ୍ୱୟ ଅନୁନାସିକ; ମାତ୍ର ଶବ୍ଦର ଆଦ୍ୟରେ ରହିଲେ ଅନୁନାସିକ ହୋଇ ନ ଥା'ନ୍ତି । ଯଥା- ଜନ, ବନ ଶବ୍ଦରେ 'ନ' ଅନୁନାସିକ; କିନ୍ତୁ ନଜର, ନବ ଶବ୍ଦରେ 'ନ' ଅନୁନାସିକ ନୁହନ୍ତି । 'ନୟନ' ଏହି ଶବ୍ଦର ପ୍ରଥମ 'ନ' ଅନୁନାସିକ ନୁହେଁ; ମାତ୍ର ଶେଷ 'ନ' ଅନୁନାସିକ ଅଟେ । ସେହିପରି 'ମଧୁ'ରେ 'ମ' ଅନୁନାସିକ ନୁହେଁ; କିନ୍ତୁ 'ରାମ'ରେ 'ମ' ଅନୁନାସିକ ।

ଯ, ୟ - ଓଡ଼ିଆ ବର୍ଣ୍ଣମାଳାରେ ଏ ଦୁଇଟି ପୃଥକ୍ ବର୍ଣ୍ଣ । ଉଭୟର ସ୍ୱତନ୍ତ୍ର ପ୍ରୟୋଗ ରହିଛି । ଯଥା- ଯଥା, ଯମୁନା, ଯାତନା; ଲୟ, କାୟ, ଶୟନ । ପୁନଶ୍ଚ ଏହି ବର୍ଣ୍ଣଦ୍ୱୟର ଉଚ୍ଚାରଣ ମଧ୍ୟ ସ୍ୱତନ୍ତ୍ର ।

ଳ, ଲ- ଓଡ଼ିଆ ଭାଷାରେ ଏ ଦୁଇଟି ପୃଥକ୍ ବର୍ଣ୍ଣ । ଉଚ୍ଚାରଣ ଓ ଲିଖିତ ରୂପରେ ଏ ଦୁଇଟି ପରସ୍ପରଠାରୁ ଭିନ୍ନ । ଯଥା- ସକାଳ, ଦେଉଳ, ଫଳ, ଲମ୍ବ, ଲେଉଟିଆ, କାଲି । ଅର୍ଥପ୍ରକାଶ ଦୃଷ୍ଟିରୁ ବର୍ଣ୍ଣ ଦୁଇଟି ମଧ୍ୟ ଭିନ୍ନ । ଯଥା- ପାଲ-ପାଳ, ପାଳି-ପାଲି ।

ୱ- ଆମ ଭାଷାରେ ଅବର୍ଗ୍ୟ 'ବ' ସ୍ଥାନରେ ଏହି ନୂତନ ଲିପି 'ୱ'ର ବ୍ୟବହାର କରାଯାଉଛି । ବିଶେଷତଃ କେତେକ ଦେଶୀ, ବିଦେଶୀ ଶବ୍ଦର ଲେଖାପାଇଁ ଏହାର

ଅତ୍ୟାବଶ୍ୟକତା ରହିଛି । ଯଥା- ବେଓ୍ୱା, ଓ୍ୱାର୍ଦ୍ଧା, ହାଓ୍ୱା, ଓ୍ୱାରେଣ୍ଟ, ରେଲଓ୍ୱେ, ଓ୍ୱାଚ୍, ଓ୍ୱାରେନ୍‌ହେଷ୍ଟିଙ୍ଗସ୍, ଓ୍ୱାଟର, କନଓ୍ୱାର ସିଂ, ଆଓ୍ୱାଜ ।

ଃ (ବିସର୍ଗ)- ଓଡ଼ିଆ ଭାଷାରେ ଃ (ବିସର୍ଗର) ସ୍ୱତନ୍ତ୍ର ଉଚ୍ଚାରଣ ନାହିଁ । ବିସର୍ଗଯୁକ୍ତ କେତେକ ଶବ୍ଦ ଥିଲେ ମଧ୍ୟ ଉଚ୍ଚାରଣରେ ବିସର୍ଗର ପରିପ୍ରକାଶ ଘଟେ ନାହିଁ । ଯେପରି ଦୁଃଖୀ, ଦୁଃଶାସନ, ଦୁଃସାହସ, ଦୁଃସ୍ଥ, ନିଃଶ୍ୱାସ, ନିଃସୃତ ଶବ୍ଦଗୁଡ଼ିକ ଯଥାକ୍ରମେ ଦୁଖୀ, ଦୁଶାସନ, ଦୁସ୍ଥ, ନିଶ୍ୱାସ, ନିସୃତ ପରି ଉଚ୍ଚାରିତ ହୁଏ; ମାତ୍ର କେହି ବିସର୍ଗ ଉପରେ ଜୋର୍ ଦେଇ ଉଚ୍ଚାରଣ କଲେ, ସେଠାରେ ବିସର୍ଗର 'ହ' ଉଚ୍ଚାରଣ ହୋଇଥାଏ । ସଂସ୍କୃତ ଶବ୍ଦାବଳୀରେ 'ଃ'ର ବ୍ୟବହାର ଅଧିକ । ସେଠାରେ ଃ 'ହ' ରୂପେ ଉଚ୍ଚାରିତ ହୁଏ । ଯଥା- ରାମଃ, ମନଃ, ବକ୍ଷଃ, ପୟଃ ।

ଂ, ଁ (ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁ)- ଏହି ବର୍ଣ୍ଣଦ୍ୱୟର ଉଚ୍ଚାରଣ ସ୍ୱରବର୍ଣ୍ଣ ସହିତ ସର୍ବଦା ସଂଶ୍ଲିଷ୍ଟ । ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁଯୁକ୍ତ ଶବ୍ଦରେ ଉଭୟ ସ୍ୱରକୁ ଆଶ୍ରୟ କରି ରହିଥା'ନ୍ତି । ସ୍ୱରରୁ ଏମାନଙ୍କୁ ପୃଥକ୍ କରି ହୁଏ ନାହିଁ । ଯଥା- ହଂସ (ହ+ଅଂ+ସ), ମାଂସ, କଂସା, ଦଂଶନ, ଅଁଳା,କୁଆଁରୀ, ଚଅଁର, ଘାଉଁରି । ଏଣୁ ଏ ଦୁଇଟିକୁ ଅବିଭାଜ୍ୟ ବର୍ଣ୍ଣ କୁହାଯାଇଥାଏ ।

ଶ, ଷ, ସ – ଏହି ତିନୋଟି ବର୍ଣ୍ଣର ଉଚ୍ଚାରଣ ଓଡ଼ିଆରେ ପ୍ରାୟ 'ସ' ହୋଇଥାଏ ।

## ଅନୁଶୀଳନୀ

୧ । ଭାଷା କାହାକୁ କହନ୍ତି ?

୨ । ବର୍ଣ୍ଣ କାହାକୁ କୁହାଯାଏ ?

୩ । ଓଡ଼ିଆ ବର୍ଣ୍ଣମାଳାରେ କେତୋଟି ବର୍ଣ୍ଣ ଅଛି ?

୪ । ଓଡ଼ିଆରେ ସ୍ୱରବର୍ଣ୍ଣ କେତୋଟି ଓ ସେମାନଙ୍କର ଧ୍ୱନିସଂଖ୍ୟା କେତେ ?

୫ । ବ୍ୟଞ୍ଜନ ବର୍ଣ୍ଣ କାହାକୁ କହନ୍ତି ? ପାଞ୍ଚଟି ବ୍ୟଞ୍ଜନବର୍ଣ୍ଣ ଲେଖ ।

୬ । ବର୍ଗ୍ୟବର୍ଣ୍ଣ କାହାକୁ କହନ୍ତି ଓ ଏହାର ଅନ୍ୟ ନାମ କ'ଣ ?

୭ । ପ୍ରତ୍ୟେକ ବର୍ଗର ତୃତୀୟ ବର୍ଣ୍ଣଗୁଡ଼ିକର ନାମ ଲେଖ ।

୮ । ଐ, ଔ କୁ ସନ୍ଧ୍ୟକ୍ଷର ବା ଯୁକ୍ତସ୍ୱର କାହିଁକି କୁହାଯାଏ ?

୯ । କେଉଁଗୁଡ଼ିକ ଦନ୍ତ୍ୟବର୍ଣ୍ଣ ?

୧୦ । ଅନୁନାସିକ ବର୍ଣ୍ଣଗୁଡ଼ିକର ନାମ ଲେଖ ।

୧୧ । ଅଧୋବିନ୍ଦୁ ଥିବା ଡ଼, ଢ଼ କୁ ନେଇ ତିନୋଟି ଲେଖାଏଁ ଶବ୍ଦ ଲେଖ ।

୧୨ । 'ଓ୍ୱ' ବର୍ଣ୍ଣ ଥିବା ପାଞ୍ଚଟି ଶବ୍ଦ ଲେଖ ।



# ମାତ୍ରା, ଫଳା ଓ ଯୁକ୍ତାକ୍ଷର

**ବର୍ଣ୍ଣମାନଙ୍କର କାର୍ଯ୍ୟ :**

ଓଡ଼ିଆ ଭାଷାର ବର୍ଣ୍ଣଗୁଡ଼ିକ ସ୍ୱତନ୍ତ୍ର ଭାବରେ ବା ଅନ୍ୟ ବର୍ଣ୍ଣ ସହ ମିଶି ବ୍ୟବହୃତ ହୋଇଥା'ନ୍ତି ।

ସ୍ୱରବର୍ଣ୍ଣ ସମୁଦାୟ ସ୍ୱତନ୍ତ୍ର ଭାବରେ ବା ବ୍ୟଞ୍ଜନ ବର୍ଣ୍ଣ ସହ ମିଶି ବ୍ୟବହୃତ ହୁଅନ୍ତି । ଯଥା- ଓଉ, ଆଈ, ବିଳାସ (ବ୍+ଇ+ଳ୍+ଆ+ସ୍+ଅ), ସପୁରି ।

**ମାତ୍ରା :**

'ଆ' ଠାରୁ 'ଔ' ପର୍ଯ୍ୟନ୍ତ ସ୍ୱରବର୍ଣ୍ଣଗୁଡ଼ିକ ବ୍ୟଞ୍ଜନବର୍ଣ୍ଣମାନଙ୍କ ସହିତ ମିଳିତ ହେଲେ, ସ୍ୱରବର୍ଣ୍ଣଗୁଡ଼ିକର ଗୋଟିଏ ଗୋଟିଏ ସଙ୍କେତ ବା ଚିହ୍ନ ରହେ । ଉକ୍ତ ସଙ୍କେତକୁ 'ମାତ୍ରା' ବା 'କାର' କୁହାଯାଏ । ଅତଏବ ସ୍ୱରବର୍ଣ୍ଣଗୁଡ଼ିକର ସାଙ୍କେତିକ ରୂପ ହେଉଛି 'ମାତ୍ରା' ବା 'କାର' । 'ଅ' ପ୍ରତିଟି ବ୍ୟଞ୍ଜନ ବର୍ଣ୍ଣ ସହିତ ମିଶି କରି ଥାଏ । ଏହାର କୌଣସି ସାଙ୍କେତିକ ରୂପ ନାହିଁ । 'ଅ' କାର ଯୁକ୍ତ ହୋଇଥିବାରୁ ଆମେ ବ୍ୟଞ୍ଜନବର୍ଣ୍ଣଗୁଡ଼ିକୁ କ, ଖ, ଗ... ଭାବରେ ଉଚ୍ଚାରଣ କରିପାରୁଛେ । ପୁଣି 'ଅ' କାର ଯୁକ୍ତ ହୋଇଥିବାରୁ ବ୍ୟଞ୍ଜନବର୍ଣ୍ଣଗୁଡ଼ିକରୁ ହଳନ୍ତ ( ୍ ) ଚିହ୍ନ ଲୋପ ପାଇଥାଏ । ଏହି ହଳନ୍ତ ( ୍ ) ଚିହ୍ନକୁ ହସନ୍ତ, ବ୍ୟଞ୍ଜନ ବା ଅର୍ଦ୍ଧମାତ୍ରା ଚିହ୍ନ କହନ୍ତି ।

| ସ୍ୱରବର୍ଣ୍ଣ | ମାତ୍ରାଚିହ୍ନ | ମାତ୍ରାର ନାମ | ବ୍ୟବହାର |
|---|---|---|---|
| ଆ | ା | ଆ କାର | କା, ଖା, ଗା... |
| ଇ | ି | ଇ କାର | କି, ଖି, ଗି |
| ଈ | ୀ | ଈ କାର | କୀ, ଖୀ, ଗୀ |
| ଉ | ୁ | ଉ କାର | କୁ, ଖୁ, ଗୁ |
| ଊ | ୂ | ଊ କାର | କୂ, ଖୂ, ଗୂ |
| ଋ | ୃ | ଋ କାର | କୃ, ଖୃ, ଗୃ |
| ଏ | େ | ଏ କାର | କେ, ଖେ, ଗେ |
| ଐ | ୈ | ଐ କାର | କୈ, ଖୈ, ଗୈ |
| ଓ | ୋ | ଓ କାର | କୋ, ଖୋ, ଗୋ |
| ଔ | ୌ | ଔ କାର | କୌ, ଖୌ, ଗୌ |

ଖ୍, ଥ୍, ଧ୍ - ଏହି ତିନୋଟି ବ୍ୟଞ୍ଜନ ବର୍ଣ୍ଣରେ 'ଇ' କାର ଚିହ୍ନଟି ତଳେ ଓ ଉପରେ ଦୁଇ ପ୍ରକାରରେ ରହିଥାଏ । ଯଥା-ଖିଅ/ଖିଅ; କଥିତ/କଥିତ; ଅଧିକ/ଅଧିକ ଇତ୍ୟାଦି ।

**ଫଳା :**

ସ୍ୱରବର୍ଣ୍ଣମାନଙ୍କ ପରି ବ୍ୟଞ୍ଜନବର୍ଣ୍ଣମାନେ ମଧ୍ୟ ସ୍ୱତନ୍ତ୍ର ରୂପେ ବ୍ୟବହୃତ ହୋଇପାରନ୍ତି ବା ଅନ୍ୟ ବ୍ୟଞ୍ଜନବର୍ଣ୍ଣମାନଙ୍କ ସହ ମିଳିତ ହୋଇ ବ୍ୟବହୃତ ହୋଇଥା'ନ୍ତି । ନ, ମ, ଯ, ର, ଳ, ଲ, ଓ୍ୱ (ଅବର୍ଗ୍ୟ ବର୍ଗ), ବ (ବର୍ଗ୍ୟ ବ)- ଏହି ଆଠଟି ବ୍ୟଞ୍ଜନବର୍ଣ୍ଣ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସହିତ ମିଳିତ ହେଲେ, ଯେଉଁ ସଙ୍କେତ ବା ଚିହ୍ନରେ ପରିଣତ ହୁଅନ୍ତି, ସେହି ଚିହ୍ନଗୁଡ଼ିକୁ ଫଳା କୁହାଯାଏ ।

**ଫଳା ପରିଚୟ ତାଲିକା :**

| ବର୍ଣ୍ଣ | ଫଳାଚିହ୍ନ | ଫଳାନାମ | ଫଳାଯୁକ୍ତବର୍ଣ୍ଣ |
|---|---|---|---|
| ନ | ◌୍ନ | ନ ଫଳା | କ୍+ନ=କ୍ନ |
| ମ | ◌୍ମ | ମ ଫଳା | କ+ମ=କ୍ମ |
| ଯ | ◌୍ୟ | ଯ ଫଳା | କ୍+ଯ=କ୍ୟ |
| ର | ◌୍ର | ର ଫଳା | କ୍+ର=କ୍ର |
| ଳ | ◌୍ଳ | ଳ ଫଳା | କ୍+ଳ=କ୍ଳ |
| ଲ | ◌୍ଲ | ଲ ଫଳା | କ୍+ଲ=କ୍ଲ |
| ଓ୍ୱ | ◌୍ୱ | ଓ୍ୱ ଫଳା | କ୍+ଓ୍ୱ=କ୍ୱ |
| ବ | ◌୍ବ | ବ ଫଳା | ମ୍+ବ=ମ୍ବ |

'ବ' ଫଳା (୍ବ) ଏହି ଚିହ୍ନଟି କେବଳ ହଳନ୍ତ 'ମ୍'ରେ ଲାଗେ ଓ ଅନ୍ୟତ୍ର ଏହା 'ଓ୍ୱ' ପରି ଉଚ୍ଚାରିତ ହୁଏ । ଯଥା- କଦମ୍ବ, ଡିମ୍ବ, ଶିମ୍ବ, ଶାମ୍ବ, ଆମ୍ବ, ଲେମ୍ବୁ, କମ୍ବଳ, କମ୍ବୁ, ଗମ୍ବୁଜ, ଅମ୍ବା, ଅମ୍ବାଳିକା । '୍ୱ' ଓ୍ୱ ପରି ଉଚ୍ଚାରଣ, ଯଥା- ଅଶ୍ୱ, ବିଶ୍ୱ, ନିଃଶ୍ୱାସ, ଉଶ୍ୱାସ, ଗୁରୁତ୍ୱ, ଘନତ୍ୱ, ବିଶେଷତ୍ୱ ।

ପୂର୍ବରୁ ପଢ଼ିଛେ, ସ୍ୱରବର୍ଣ୍ଣ 'ର' ବ୍ୟଞ୍ଜନବର୍ଣ୍ଣ ସହିତ ମିଶିଲେ ଯେଉଁ ଚିହ୍ନ ରହେ, ତାକୁ 'ମାତ୍ରା' ବା 'କାର' କହନ୍ତି । ଅତଏବ 'ର'ର ସାଙ୍କେତିକ ରୂପ 'ର' କାର ( ୃ ); ମାତ୍ର ଆମର ବ୍ୟବହାରରେ ଏହାକୁ 'ର' ଫଳା ମଧ୍ୟ କୁହାଯାଏ । ଉଦାହରଣ ସ୍ୱରୂପ 'ପ୍'ରେ ର କାର 'ପୃ' ବା 'ପ୍' ରେ ର ଫଳା 'ପୃ' ।

ପୂର୍ବ ପ୍ରଦତ୍ତ ତାଲିକାରେ ଆଠଟି 'ଫଳା' ଓଡ଼ିଆରେ ଜଣାଶୁଣା । ଅନ୍ୟ ବ୍ୟଞ୍ଜନବର୍ଣ୍ଣ ଗୁଡ଼ିକର ମିଳିତ ଚିହ୍ନକୁ ସାଧାରଣତଃ 'ଫଳା' କୁହାଯାଏ ନାହିଁ ।

'ର' କୌଣସି ବ୍ୟଞ୍ଜନବର୍ଣ୍ଣର ପରେ ରହିଲେ ତାହାର ନାମ 'ର' ଫଳା ( ୍ର ) ।

ଯେପରି କ୍+ର=କ୍ର - ଚକ୍ର, ନକ୍ର, ଶକ୍ର; ମାତ୍ର 'ର' ବ୍ୟଞ୍ଜନବର୍ଣ୍ଣ ପୂର୍ବରୁ ରହିଲେ ତାକୁ 'ରେଫ' ( ର୍ ) କୁହାଯାଏ । ଯଥା- ର୍+କ=ର୍କ- ଅର୍କ, ପର୍ବ, କର୍ମ, ଦର୍ପ, ସର୍ଗ ।

**ବର୍ଣ୍ଣବିକଳ୍ପ ଦ୍ୱିତ୍ୱ-** ରେଫ ଯୁକ୍ତ ହେଲେ ଚ, ଛ, ଜ, ଣ, ତ, ଦ, ଧ, ବ, ମ, ଯ ବର୍ଣ୍ଣମାନଙ୍କର ବିକଳ୍ପରେ ଦ୍ୱିତ୍ୱ ହୁଏ । ଅର୍ଥାତ୍ ହୋଇପାରେ ବା ହୋଇ ନ ପାରେ; ମାତ୍ର ଦ୍ୱିତ୍ୱ ବର୍ଣ୍ଣର ଚଳଣି ଆମ ଲେଖାରେ ଅଛି । ଯଥା- ଚର୍ଚ୍ଚା / ଚର୍ଚା, ବର୍ଚ୍ଛା / ବର୍ଛା, ନିର୍ଦ୍ଦୋଷ / ନିର୍ଦୋଷ, ନିର୍ଦ୍ଦେଶ / ନିର୍ଦେଶ, କର୍ତ୍ତା / କର୍ତା, ଦର୍ଦ୍ଦୁର / ଦର୍ଦୁର, ନିର୍ଦ୍ଧନ / ନିର୍ଧନ, ନିର୍ଦ୍ଦୟ / ନିର୍ଦୟ, ଶର୍ମ୍ମା / ଶର୍ମା, ଆର୍ଯ୍ୟ / ଆର୍ଯ, ସୂର୍ଯ୍ୟ / ସୂର୍ଯ, ଚତୁର୍ଦ୍ଦଶ / ଚତୁର୍ଦ୍ଦଶ ଇତ୍ୟାଦି ।

## ଯୁକ୍ତାକ୍ଷର :

ବ୍ୟଞ୍ଜନବର୍ଣ୍ଣ ସହିତ ବ୍ୟଞ୍ଜନବର୍ଣ୍ଣ ମିଶିଲେ, ତାକୁ ଯୁକ୍ତାକ୍ଷର କହନ୍ତି । ଏହାର ଅନ୍ୟ ନାମ ଯୁକ୍ତବର୍ଣ୍ଣ ବା ଯୁକ୍ତବ୍ୟଞ୍ଜନ ।

**ଅନୁନାସିକ ଯୁକ୍ତାକ୍ଷର-** ପ୍ରତ୍ୟେକ ବର୍ଗର ପଞ୍ଚମ ବର୍ଣ୍ଣ ସହିତ ସେହି ବର୍ଗର ଅନ୍ୟ ବର୍ଣ୍ଣମାନଙ୍କର ସଂଯୋଗରେ ସୃଷ୍ଟି ଯୁକ୍ତାକ୍ଷରକୁ ଅନୁନାସିକ ଯୁକ୍ତାକ୍ଷର ବା ଅନୁନାସିକ ଯୁକ୍ତବର୍ଣ୍ଣ କୁହାଯାଏ । ଙ୍, ଞ୍, ଣ୍, ନ୍, ମ୍ ପ୍ରତ୍ୟେକ ବର୍ଗର ପଞ୍ଚମ ବର୍ଣ୍ଣ । ଅନୁନାସିକ ଯୁକ୍ତାକ୍ଷର କୋଡ଼ିଏଟି । ଯଥା-

ଙ୍ + କ, ଖ, ଗ, ଘ = ଙ୍କ, ଙ୍ଖ, ଙ୍ଗ, ଙ୍ଘ - କ ବର୍ଗ

ଞ୍ + ଚ, ଛ, ଜ, ଝ = ଞ୍ଚ, ଞ୍ଛ, ଞ୍ଜ, ଞ୍ଝ - ଚ ବର୍ଗ

ଣ୍ + ଟ, ଠ, ଡ, ଢ = ଣ୍ଟ, ଣ୍ଠ, ଣ୍ଡ, ଣ୍ଢ - ଟ ବର୍ଗ

ନ୍ + ତ, ଥ, ଦ, ଧ = ନ୍ତ, ନ୍ଥ, ନ୍ଦ, ନ୍ଧ - ତ ବର୍ଗ

ମ୍ + ପ, ଫ, ବ, ଭ = ମ୍ପ, ମ୍ଫ, ମ୍ବ, ମ୍ଭ - ପ ବର୍ଗ

ପୂର୍ବସୂଚିତ ୨୦ଟି ଅନୁନାସିକ ଯୁକ୍ତାକ୍ଷରକୁ 'ଅନୁସ୍ୱାର' ସାହାଯ୍ୟରେ ମଧ୍ୟ ଲେଖାଯାଇ ପାରୁଛି । ଯଥା-

| | | |
|---|---|---|
| ବଙ୍କା - ବଂକା | ବାଞ୍ଝ - ବାଂଝ | ଜନ୍ଦା - ଜଂଦା |
| ଶଙ୍ଖା - ଶଂଖା | ଘଣ୍ଟା - ଘଂଟା | ରନ୍ଧା - ରଂଧା |
| ଡଙ୍ଗା - ଡଂଗା | କଣ୍ଠ - କଂଠ | ଚମ୍ପା - ଚଂପା |
| ସଙ୍ଘ - ସଂଘ | କୁଣ୍ଡା - କୁଂଡ଼ା | ଗୁମ୍ଫା - ଗୁଂଫା |
| ସଞ୍ଚୟ - ସଂଚୟ | ଶୁଣ୍ଢ - ଶୁଂଢ଼ | ଆମ୍ବ - ଆଂବ |
| ବାଞ୍ଛା - ବାଂଛା | ଦାନ୍ତ - ଦାଂତ | ଦମ୍ଭ - ଦଂଭ |
| ସଞ୍ଜ - ସଂଜ | କାନ୍ଥ - କାଂଥ | |

## ଅନ୍ୟାନ୍ୟ ପ୍ରଚଳିତ ଯୁକ୍ତାକ୍ଷର

### ଦୁଇ ବ୍ୟଞ୍ଜନବର୍ଣ୍ଣ ସଂଯୋଗରେ ନିଷ୍ପନ୍ନ ଯୁକ୍ତାକ୍ଷର -

କ୍ + କ = କ୍କ - ପକ୍କ, ମକ୍କା
କ୍ + ଟ = କ୍ଟ - ଆକ୍ଟର, ଟ୍ରାକ୍ଟର
କ୍+ସ = କ୍ସ - ନକ୍ସା, ବାକ୍ସ
ଗ୍+ଦ = ଗ୍ଦ - ବାଗ୍ଦେବୀ,(ବାଗ୍‌ଦେବୀ)
ଗ୍+ଧ = ଗ୍ଧ - ଦଗ୍ଧ, ଦୁଗ୍ଧ
ବିଦଗ୍ଧ, ମୁଗ୍ଧ
ଚ୍+ଚ = ଚ୍ଚ - ଉଚ୍ଚ, ଉଚ୍ଚାରଣ
ଚ୍+ଛ = ଚ୍ଛ - ଆଚ୍ଛା, ତୁଚ୍ଛା
ଚ୍+ଞ = ଚ୍ଞ - ଯାଚ୍ଞା
ଜ୍+ଜ = ଜ୍ଜ - ଲଜ୍ଜା, ମଜ୍ଜା, ସଜ୍ଜା
ଜ୍+ଝ = ଜ୍ଝ - କୁଜ୍ଝଟି (କୁଜ୍‌ଝଟି)
ଜ୍+ଞ = ଜ୍ଞ - ବିଜ୍ଞ, ବିଜ୍ଞାନ, ଅଜ୍ଞ
ଟ୍+ଟ = ଟ୍ଟ - ପଟ୍ଟ, ଅଟ୍ଟ, ଅଟ୍ଟାଳିକା
ଡ୍+ଗ = ଡ୍ଗ - ଖଡ୍ଗ (ଖଡ୍‌ଗ), ଖଡ୍ଗୀ
ଡ୍+ଡ = ଡ୍ଡ - ଉଡ୍ଡୀନ (ଉଡ୍‌ଡୀନ),
ଉଡ୍‌ଡୀୟମାନ, ଉଡ୍‌ଡ଼ୟନ
ତ୍+କ = ତ୍କ - ଉତ୍କଳ, ଉତ୍କଣ୍ଠା
ତ୍+ତ = ତ୍ତ - ଉତ୍ତର, ବୃହତ୍ତର
ତ୍+ଥ = ତ୍ଥ - ଅଶ୍ୱତ୍ଥ, ଉତ୍ଥାନ
ତ୍+ପ = ତ୍ପ - ଉତ୍ପନ୍ନ, ଉତ୍ପଳ
ତ୍+ସ = ତ୍ସ - ବତ୍ସ, ସମ୍ବତ୍ସର
ଦ୍+ଗ = ଦ୍ଗ - ମୁଦ୍ଗର (ମୁଦ୍‌ଗର)
ଦ୍+ଘ = ଦ୍ଘ - ଉଦ୍ଘାଟନ (ଉଦ୍‌ଘାଟନ)
ଦ୍+ଦ = ଦ୍ଦ - ଉଦ୍ଦାମ, ଉଦ୍ଦେଶ୍ୟ
ଦ୍+ଧ = ଦ୍ଧ - ଉଦ୍ଧବ, ଉଦ୍ଧାର

କ୍ + ତ = କ୍ତ - ଶକ୍ତ, ବିରକ୍ତ
କ୍ + ଷ = କ୍ଷ - ପକ୍ଷ, ବକ୍ଷ
ପ୍+ସ = ପ୍ସ - ଅପ୍ସରା, ଲିପ୍ସା
ବ୍+ଜ = ବ୍ଜ - ଅବ୍ଜ, କୁବ୍ଜ
ବ୍+ଦ = ବ୍ଦ - ଅବ୍ଦ, ଶବ୍ଦ, ଶକାବ୍ଦ,
ନିଃଶବ୍ଦ, ଶତାବ୍ଦୀ, ତିବ୍ବତ
ବ୍+ଧ = ବ୍ଧ - ଲବ୍ଧ, ସ୍ତବ୍ଧ, ପ୍ରାରବ୍ଧ
ଦ୍+ଦ = ଉଦ୍ଦିଷ୍ଟ, ଉଦ୍ଦେଶ୍ୟ, ନିରୁଦ୍ଦେଶ
ଉଦ୍ଦାମ, ଉଦ୍ଦଣ୍ଡ, ଉଦ୍ଦାଳକ
ଲ୍+କ = ଲ୍କ - ବଲ୍କଳ, ଶୁଲ୍କ, କଲ୍କୀ
ଲ୍+ପ = ଲ୍ପ - ଅଳ୍ପ, ତଳ୍ପ, ଗଳ୍ପ
ଲ୍+ଫ = ଲ୍ଫ - ଗୁଲ୍ଫ (ଗୁଲ୍‌ଫ)
ଲ୍+ଭ = ଲ୍ଭ - ପ୍ରଗଲ୍ଭ, ପ୍ରଗଲ୍ଭତା
ଲ୍+କ = ଲ୍କ - ଉଲ୍କା (ଉଲ୍‌କା)
ଲ୍+ଗ = ଲ୍ଗ - ଫାଲ୍ଗୁନ, ଫଲ୍ଗୁ
ଶ୍+ଚ = ଶ୍ଚ - ପଶ୍ଚିମ, ପଶ୍ଚାତ୍, ନିଶ୍ଚିନ୍ତ
ଶ+ଛ = ଶ୍ଛ - ଶିରଶ୍ଛେଦ, ଶିରଶ୍ଛେଦନ
ଷ୍+କ = ଷ୍କ - କନିଷ୍କ, ପରିଷ୍କାର
ଷ୍+ଟ = ଷ୍ଟ - ନଷ୍ଟ, ଭ୍ରଷ୍ଟ
ଷ୍+ଠ = ଷ୍ଠ - କନିଷ୍ଠ, ଜ୍ୟେଷ୍ଠ
ଷ୍+ଣ = ଷ୍ଣ - ଉଷ୍ଣ, କୃଷ୍ଣ, ତୃଷ୍ଣା
ଷ୍+ପ = ଷ୍ପ - ବାଷ୍ପ, ନିଷ୍ପାପ
ଷ୍+ଫ = ଷ୍ଫ - ନିଷ୍ଫଳ, ଆଷ୍ଫାଳନ
ସ୍+କ = ସ୍କ - ତୁରସ୍କ, ପୁରସ୍କାର,
ତିରସ୍କାର, ଭାସ୍କର, ପରିଷ୍କାର

ଦ୍+ବ = ଦ୍ବ - ବୁଦ୍ବୁଦ (ବୁଦ୍‌ବୁଦ), ଉଦ୍ବାହ
ଦ୍+ଭ = ଦ୍ଭ - ଉଦ୍ଭବ, ଉଦ୍ଭାବନ
ଦ୍+ଯ = ଦ୍ୟ - ସଦ୍ୟ, ଉଦ୍ୟମ
ପ୍+ତ = ପ୍ତ - ତପ୍ତ, ସପ୍ତ
ପ୍+ପ = ପ୍ପ - ପିପ୍ପଳ, ପିପ୍ପଳୀ

ସ୍+ଖ = ସ୍ଖ - ସ୍ଖଳନ, ସ୍ଖଳିତ, ସ୍ଖଳତ୍
ସ୍+ତ = ସ୍ତ - ଅସ୍ତ, ବ୍ୟସ୍ତ, ଶସ୍ତା
ସ୍+ଥ = ସ୍ଥ - ସ୍ୱାସ୍ଥ୍ୟ, ସୁସ୍ଥ, ସ୍ଥିତ,ଅସ୍ଥିର
ସ୍+ପ = ସ୍ପ - ସ୍ପର୍ଶ, ସ୍ପଷ୍ଟ, ସ୍ପିରିଟ୍,ସ୍ପନ୍ଦନ
ସ୍+ଫ = ସ୍ଫ - ସ୍ଫଟିକ, ସ୍ଫୁରଣ, ସ୍ଫୀତ

## ଦୁଇରୁ ଅଧିକ ବ୍ୟଞ୍ଜନର ଯୁକ୍ତାକ୍ଷର

କ୍+ତ୍+ର = କ୍ତ୍ର - ବକ୍ତ୍ର
କ୍+ଷ୍+ଣ = କ୍ଷ୍ଣ - ତୀକ୍ଷ୍ଣ
କ୍+ଷ୍+ମ = କ୍ଷ୍ମ - ସୂକ୍ଷ୍ମ, ପକ୍ଷ୍ମ
କ୍+ଷ୍+ଯ = କ୍ଷ୍ୟ - ଲକ୍ଷ୍ୟ, ଭକ୍ଷ୍ୟ
ଙ୍+କ୍+ତ = ଙ୍କ୍ତ - ପଙ୍କ୍ତି
ଙ୍+କ୍+ଷ୍ = ଙ୍କ୍ଷ -ଆକାଙ୍କ୍ଷା(ଆକାଙ୍‌କ୍ଷା)
ଜ୍+ଜ୍+ୱ = ଜ୍ଜ୍ୱ - ଉଜ୍ଜ୍ୱଳ
ଣ୍+ଡ୍+ର = ଣ୍ଡ୍ର - ପୁଣ୍ଡ୍ର
ତ୍+ତ୍+ୱ = ତ୍ତ୍ୱ - ମହତ୍ତ୍ୱ, ତତ୍ତ୍ୱ
ତ୍+ତ୍+ର = ତ୍ତ୍ର - ପୁତ୍ତ୍ର, ସତ୍ତ୍ର(ଯଜ୍ଞ)
ତ୍+ମ୍+ଯ = ତ୍ମ୍ୟ(ତ୍‌ମ୍ୟ) - ମାହାତ୍ମ୍ୟ, ଦୌରାତ୍ମ୍ୟ
ତ୍+ସ୍+ନ = ତ୍ସ୍ନ - ଜ୍ୟୋତ୍ସ୍ନା
ତ୍+ସ୍+ଯ = ତ୍ସ୍ୟ - ମତ୍ସ୍ୟ
ନ୍+ତ୍+ଯ = ନ୍ତ୍ୟ - ଅନ୍ତ୍ୟ
ନ୍+ତ୍+ର = ନ୍ତ୍ର(ନ୍ତ୍ର) - ମନ୍ତ୍ର(ମନ୍ତ୍ର),ତନ୍ତ୍ର
ନ୍+ତ୍+ୱ = ନ୍ତ୍ୱ - ସାନ୍ତ୍ୱନା
ନ୍+ଦ୍+ର = ନ୍ଦ୍ର - ଚନ୍ଦ୍ର, ମନ୍ଦ୍ର
ନ୍+ଧ୍+ଯ = ନ୍ଧ୍ୟ - ସନ୍ଧ୍ୟା, ବନ୍ଧ୍ୟା
ନ୍+ନ୍+ଯ = ନ୍ନ୍ୟ - ସନ୍ନ୍ୟାସୀ,ସନ୍ନ୍ୟାସ
ମ୍+ପ୍+ର = ମ୍ପ୍ର - ସମ୍ପ୍ରତି,ସମ୍ପ୍ରଦାନ

ମ୍+ଭ୍+ର = ମ୍ଭ୍ର - ସମ୍ଭ୍ରାନ୍ତ,ସମ୍ଭ୍ରମ
ର୍+ଚ୍+ଚ = ର୍ଚ୍ଚ - ଅର୍ଚ୍ଚନା,ଚର୍ଚ୍ଚା
ର୍+ଛ୍+ଛ = ର୍ଚ୍ଛ - ମୂର୍ଚ୍ଛନା,ବର୍ଚ୍ଛା
ର୍+ଣ୍+ଣ = ର୍ଣ୍ଣ - ବର୍ଣ୍ଣନା,ବର୍ଣ୍ଣ
ର+ତ୍+ତ = ର୍ତ୍ତ - ସର୍ତ୍ତ,ମାର୍ତ୍ତଣ୍ଡ
ର୍+ଦ୍+ଦ = ର୍ଦ୍ଦ - ଶାର୍ଦ୍ଦୂଳ,ଗର୍ଦ୍ଦଭ
ର୍+ଦ୍+ଧ = ର୍ଦ୍ଧ - ବର୍ଦ୍ଧନ, ଅର୍ଦ୍ଧ
ର୍+ତ୍+ସ = ର୍ତ୍ସ - ଭର୍ତ୍ସନା
ର୍+ଦ୍+ର = ର୍ଦ୍ର - ଆର୍ଦ୍ର
ର୍+ଯ୍+ଯ(ଯ)=ର୍ଯ୍ୟ - ସୂର୍ଯ୍ୟ, ଆର୍ଯ୍ୟ
ର୍+ଶ୍+ୱ = ର୍ଶ୍ୱ -ପାର୍ଶ୍ୱ, ପାରିପାର୍ଶ୍ୱିକ
ଷ୍+କ୍+ର = ଷ୍କ୍ର - ନିଷ୍କ୍ରିୟ
ଷ୍+ଟ୍+ର = ଷ୍ଟ୍ର - ରାଷ୍ଟ୍ର
ଷ୍+ପ୍+ର = ଷ୍ପ୍ର - ନିଷ୍ପ୍ରୟୋଜନ
ସ୍+ତ୍+ର = ସ୍ତ୍ର(ସ୍ତ୍ର) - ଅସ୍ତ୍ର(ଅସ୍ତ୍ର)
ସ୍+ଥ୍+ଯ = ସ୍ଥ୍ୟ - ସ୍ୱାସ୍ଥ୍ୟ
ନ୍+ତ୍+ତ୍+ଯ = ନ୍ତ୍ର୍ୟ(ନ୍ତ୍ର୍ୟ)-ସ୍ୱାତନ୍ତ୍ର୍ୟ
ର୍+ତ୍+ତ = ର୍ତ୍ତ - ଭର୍ତ୍ତା, କର୍ତ୍ତା
ର୍+ତ୍+ତ୍+ଯ = ର୍ତ୍ତ୍ୟ - ମର୍ତ୍ତ୍ୟ
ର୍+ତ୍+ତ୍+ର = ର୍ତ୍ତ୍ର - କର୍ତ୍ତ୍ରୀ
ର୍+ଦ୍+ଧ୍+ୱ = ର୍ଦ୍ଧ୍ୱ - ଊର୍ଦ୍ଧ୍ୱ

ଯୁକ୍ତାକ୍ଷରମାନଙ୍କ ମଧ୍ୟରୁ କେତେକକୁ ପୂର୍ବବର୍ଣ୍ଣରେ ହଳନ୍ତ ଚିହ୍ନ ଦେଇ ଲେଖାଯାଉଛି, ଯଥା-ବାକ୍‌ସ, ବାଗ୍‌ଦାନ, ଦୁଗ୍‌ଧ, ଖଡ୍‌ଗ, ଉତ୍‌କଳ, ଉତ୍‌ଥାନ, ବୀପ୍‌ସା, ଅବ୍‌ଜ, ଶବ୍‌ଦ, ଆର୍‌ବଧ, ଶୁଲ୍‌କ, ପ୍ରଗଲ୍‌ଭ, ଉଦ୍‌ଭଟ, ବିତ୍‌ପାତ, ଉଦ୍‌ଯୋଗ, କୁଜ୍‌ଝଟିକା, ଗଲ୍‌ପ, ବୁଦ୍‌ବୁଦ ଇତ୍ୟାଦି ।

**ବନାନ-** ଗୋଟିଏ ଶବ୍ଦରେ ଥିବା ବର୍ଣ୍ଣଗୁଡ଼ିକୁ ପୃଥକ୍ ପୃଥକ୍ ଦର୍ଶାଇ ଉଲ୍ଲେଖ କରିବାର ନାମ ବନାନ । ଯେପରି 'ରମେଶ' ଏହି ଶବ୍ଦର ବନାନ ହେଉଛି- ର୍+ଅ=ର, ମ୍+ଏ=ମେ, ଶ୍+ଅ=ଶ । ଏଥିରେ ଛ'ଟି ବର୍ଣ୍ଣ ଅଛି । ବାଞ୍ଛାନିଧି-ବ୍+ଆ, ଞ୍+ଛ୍+ଆ, ନ୍+ଇ, ଧ୍+ଇ । ଏହି ଶବ୍ଦଟି ନ'ଟି ବର୍ଣ୍ଣକୁ ନେଇ ଗଠିତ ।

**ଉଚ୍ଚାରଣ** - ଇଂରାଜୀ, ହିନ୍ଦୀ ଓ ଅନ୍ୟାନ୍ୟ କେତେକ ଭାଷାରେ ଲିଖନ ଓ ଉଚ୍ଚାରଣ କ୍ଷେତ୍ରରେ ପାର୍ଥକ୍ୟ ଦେଖାଯାଏ; ମାତ୍ର ଓଡ଼ିଆରେ ସେପରି ନାହିଁ । ଏ ପ୍ରକାର ବ୍ୟତିକ୍ରମ କ୍ୱଚିତ୍ ପରିଲକ୍ଷିତ ହୋଇଥାଏ । ଯଥା-

| ଲିଖନ | ଉଚ୍ଚାରଣ | ଲିଖନ | ଉଚ୍ଚାରଣ |
|---|---|---|---|
| ଅଗ୍ରଗଣ୍ୟ | ଅଗ୍ରଗନ୍ୟ | କାହ୍ନୁ | କାନ୍ହୁ |
| ପ୍ରହ୍ଲାଦ | ପ୍ରଲ୍ହାଦ | ନଦୀ | ନଦି |

ଓଡ଼ିଆ ଭାଷାର ଲିଖନରେ ଦୀର୍ଘସ୍ୱରର ସ୍ଥିତି ଥିଲେ ମଧ୍ୟ ଉଚ୍ଚାରଣରେ ସାଧାରଣତଃ ହ୍ରସ୍ୱପ୍ରବଣତା ଦେଖାଯାଉଛି । ଯେପରି 'ଗୀତା' ଶବ୍ଦରେ ଉଭୟ ବର୍ଣ୍ଣ ଦୀର୍ଘସ୍ୱରବିଶିଷ୍ଟ ହୋଇଥିଲେ ମଧ୍ୟ ଉଚ୍ଚାରଣରେ ସ୍ୱାଭାବିକ ଭାବରେ ହ୍ରସ୍ୱସ୍ୱର ହେଉଛି ।

## ଅନୁଶୀଳନୀ

୧ । ମାତ୍ରା କାହାକୁ କହନ୍ତି ? ସମସ୍ତ ମାତ୍ରାଚିହ୍ନ ଉଲ୍ଲେଖ କର ।

୨ । ଔକାର ମାତ୍ରା ଥିବା ପାଞ୍ଚଟି ଶବ୍ଦ ଲେଖ ।

୩ । ଯୁକ୍ତାକ୍ଷର କାହାକୁ କହନ୍ତି ? ସାତଟିର ଉଦାହରଣ ଦିଅ ।

୪ । 'ଫଳା' କ'ଣ ଓ ପ୍ରତ୍ୟେକ 'ଫଳା' ଥାଇ ଦୁଇଟି ଲେଖାଏଁ ଶବ୍ଦ ଲେଖ ।

୫ । ଅନୁନାସିକ ଯୁକ୍ତାକ୍ଷର କାହାକୁ କହନ୍ତି ? ସେମାନଙ୍କ ସଂଖ୍ୟା କେତୋଟି ?

୬ । ଅନୁନାସିକ ଯୁକ୍ତାକ୍ଷରକୁ କିପରି 'ଅନୁସ୍ୱାର' ଦେଇ ଲେଖାଯାଏ, ଦଶଟିର ଉଦାହରଣ ଦିଅ ।

୭ । ନିମ୍ନଲିଖିତ ଯୁକ୍ତାକ୍ଷରଗୁଡ଼ିକ କେଉଁ କେଉଁ ବର୍ଣ୍ଣର ସଂଯୋଗରେ ଗଠିତ ଲେଖ ।
ଷ୍ଟ୍ର, ସ୍ଥ୍ୟ, ଞ୍ଛ, ଷ୍ଠ, ପ୍ଟ, ପ୍ତ, କ୍ର, ସ୍ମ, ସ୍ର, ଙ୍କ୍ୱ, କ୍ଷ

୮ । ନିମ୍ନଲିଖିତ ଅକ୍ଷରଗୁଡ଼ିକର ମିଳନରେ କେଉଁ କେଉଁ ଶବ୍ଦ ହେବ ଲେଖ ।
ଉ+ତ୍, କ୍+ଅ, ଳ୍+ଅ । ବ୍+ଇ, ସ୍+ତ୍+ଆ, ର୍+ଅ ।
ସ୍+ଅ, ଦ୍+ଭ୍+ଆ, ବ୍+ଅ । କ୍+ଅ, ନ୍+ଇ, ଷ୍+ଠ୍+ଅ ।
ଉ+ତ୍+ତ୍+ଅ, ର୍+ଅ । ମ୍+ଅ, ଥ୍+ଉ, ର୍+ଆ ।

୯ । କେଉଁ କେଉଁ ବର୍ଣ୍ଣଗୁଡ଼ିକ ବିକଳ୍ପରେ ଦ୍ୱିତ୍ୱ ହୁଏ, କାହିଁକି ?

୧୦ । ନିମ୍ନଲିଖିତ ଶବ୍ଦଗୁଡ଼ିକର ବନାନ ଲେଖ ।
ମୃଣ୍ମୟ, କୁମ୍ଭୀର, କମ୍ପନ, ଦୁର୍ଯୋଗ, ବର୍ଣ୍ଣାଳୀ, ଚଉଁରୀ, ମହାଭାରତ ।



# ଶବ୍ଦ ଓ ଶବ୍ଦବିଭାଗ

## ଓଡ଼ିଆ ଶବ୍ଦସମ୍ପଦ :

ଓଡ଼ିଆ ଆଜି ଏକ ପ୍ରତିଷ୍ଠିତ ଭାଷା । ଏହାର ଭାଷାଭଣ୍ଡାର ବିବିଧ ଶବ୍ଦ ସମ୍ପଦରେ ପରିପୂର୍ଣ୍ଣ । ଓଡ଼ିଆ ବ୍ୟତୀତ ଅନେକ ଦେଶୀ ବିଦେଶୀ ଶବ୍ଦାବଳୀରେ ଓଡ଼ିଆ ଭାଷା ପରିପୁଷ୍ଟ । ସାମ୍ପ୍ରତିକ ଯୁଗରେ ବିଭିନ୍ନ କାରଣରୁ ଗୋଟିଏ ଭାଷାର ଶବ୍ଦଭଣ୍ଡାରକୁ ଭିନ୍ନଭିନ୍ନ ଭାଷାରୁ ଶବ୍ଦଗୁଡ଼ିକ ପ୍ରବେଶ କରୁଛନ୍ତି । ନୂତନ ଶବ୍ଦ ଆହରଣ ଦ୍ୱାରା ହିଁ ଏକ ଭାଷା ସମୃଦ୍ଧ, ବଳିଷ୍ଠ ଓ ସହଜ ଭାବପ୍ରକାଶକ ହୋଇଥାଏ ।

## ଶବ୍ଦ :

ଅର୍ଥବୋଧକ ଏକ ବା ଏକାଧିକ ବର୍ଣ୍ଣକୁ ଶବ୍ଦ କହନ୍ତି ।

ଯଥା- ମା(ଜନନୀ), କ(ଜଳ), ଅହି(ସାପ), କମଳ(ପଦ୍ମ), ଆକାଶବାଣୀ (ବେତାରବାର୍ତ୍ତା) ।

ଅର୍ଥହୀନ ବର୍ଣ୍ଣ ବା ବର୍ଣ୍ଣସମଷ୍ଟି ଶବ୍ଦ ନୁହେଁ । ଯଥା- ଡ, ଟନପ, ମପ, କାବଟାବ ।

**ଶବ୍ଦବିଭାଗ -** ଓଡ଼ିଆ ଭାଷାରେ ବ୍ୟବହୃତ ଶବ୍ଦସମୂହକୁ ଚାରି ଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- ତତ୍‌ସମ, ତଦ୍‌ଭବ, ଦେଶଜ ଓ ବୈଦେଶିକ ।

**ତତ୍‌ସମ ଶବ୍ଦ -** ଆମେ ବ୍ୟବହାର କରୁଥିବା ଅବିକଳ ସଂସ୍କୃତ ଶବ୍ଦଗୁଡ଼ିକୁ ତତ୍‌ସମ ଶବ୍ଦ କୁହାଯାଏ । 'ତତ୍‌ସମ'ର ଅର୍ଥ ତାହା ସହିତ ବା ସଂସ୍କୃତ ସହିତ ସମାନ । ଯଥା- ଅନଳ, ଅନୁଭବ, ଅଭିନୟ, ଆକ୍ରୋଶ, ସୂର୍ଯ୍ୟ, ପକ୍ଷୀ, ପ୍ରଭାତ, ସୁଖ, ଦୁଃଖ, ନିଦ୍ରା, ହସ, ପର୍ବତ, ନଦୀ, ସାଗର, ସେବା, ଦୟା, ରୋଗ, ଔଷଧ, ବର, କନ୍ୟା, ଗମନ, ପାଠ, ମନ୍ଦିର, ହୋମ, ଗୃହ, ମେଘ, ଜଳ, ଗୁରୁ, ସତ୍ୟ, ଶୀତଳ, ମଧୁର, ପୁଷ୍ପ, ପିତା, ମାତା, ଭଗିନୀ, ବୃକ୍ଷ, ଶାଖା, ଫଳ, ଲତା, ମାସ, ବର୍ଷ, ଋତୁ, ଧନ, ଧନୀ, ମୂର୍ଖ, ଚୋର, ସାଧୁ, ସନ୍ନ୍ୟାସୀ, ଋଷି, କବି, ଛବି, ପୃଥିବୀ, ଗ୍ରହ, ବୀଣା, ମୃଦଙ୍ଗ, କବିତା ଓ ସଙ୍ଗୀତ ଇତ୍ୟାଦି ।

ଏହି ଶବ୍ଦଗୁଡ଼ିକୁ ମଧ୍ୟ ସାଧୁ ବା ମାର୍ଜିତ ଶବ୍ଦ କୁହାଯାଏ ।

**ତଦ୍‌ଭବ ଶବ୍ଦ -** ସଂସ୍କୃତ ବା ତତ୍ସମ ଶବ୍ଦରୁ ସୃଷ୍ଟ ଶବ୍ଦକୁ ତଦ୍‌ଭବ ଶବ୍ଦ କୁହାଯାଏ । ତଦ୍‌ଭବର ଅର୍ଥ ସଂସ୍କୃତରୁ ଜାତ । ସମୟକ୍ରମେ ସଂସ୍କୃତ ଶବ୍ଦ ପରିବର୍ତ୍ତିତ ହୋଇ ଓଡ଼ିଆରେ ବ୍ୟବହୃତ ହେଉଛି । ଏହାକୁ ମଧ୍ୟ ଅପଭ୍ରଂଶ ଶବ୍ଦ କହନ୍ତି ।

| ତତ୍‌ସମ | ତଦ୍‌ଭବ, | ତତ୍‌ସମ | ତଦ୍‌ଭବ, | ତତ୍‌ସମ | ତଦ୍‌ଭବ |
|---|---|---|---|---|---|
| ଅଗ୍ନି | ଅଗି | ଖଦୀର | ଖଇର | ନବ | ନଅ |
| ଅଷ୍ଟ | ଆଠ | ଗଭୀର | ଗହୀର | ଫେନ | ଫେଣ |
| ଉଦ୍‌ଗାତା | ଓତା | କାକ | କୁଆ | ବାମ | ବାଆଁ |
| ଅଲକ୍ତକ | ଅଳତା | କର୍ଣ୍ଣ | କାନ | ବାଷ୍ପ | ବାମ୍ଫ |
| କାଷ୍ଠ | କାଠ | ଚନ୍ଦ୍ର | ଚାନ୍ଦ | ଭାଦ୍ର | ଭୋଦୁଅ |
| କଚ୍ଛପ | କଇଁଛ | ଗୋଷ୍ଠ | ଗୋଠ | ଦଧି | ଦହି |
| କୈବର୍ତ୍ତ | କେଉଟ | ଜ୍ୱର | ଜର | ସ୍ଥବିର | ଥବିର |
| କୁମ୍ଭକାର | କୁମ୍ଭାର | ହସ୍ତୀ | ହାତୀ | ନୃତ୍ୟ | ନାଚ |
| କର୍କଟ | କଙ୍କଡ଼ା | ଲତା | ଲଟା | ସ୍ତନ | ଥନ |
| କୋମଳ | କଅଁଳ | ଗୋଧୂମ | ଗହମ | ଉତ୍କୁଣ | ଉକୁଣି |
| କୁମାରୀ | କୁଆଁରୀ | ଯବ | ଯଅ | ଆମିଷ | ଆଇଁଷ |
| ବାତ୍ୟା | ବାଆ | ଘୃତ | ଘିଅ | ବପ୍ତା | ବାପା |
| ଜାମାତା | ଜୋଇଁ | ମୃତ୍ତିକା | ମାଟି | ନଦୀ | ନଈ |

**ଦେଶଜ ଶବ୍ଦ :**

ତତ୍‌ସମ୍ ଓ ତଦ୍‌ଭବ ଶବ୍ଦକୁ ଛାଡ଼ିଦେଲେ ଆହୁରି ଅନେକ ଶବ୍ଦ ଓଡ଼ିଆ ଶବ୍ଦଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଯେଉଁ ଶବ୍ଦଗୁଡିକର ମୂଳ ଉତ୍ପତ୍ତିସ୍ଥଳ ଏଯାଏଁ ନିରୂପିତ ହୋଇନାହିଁ । କାହିଁ କେଉଁ ପ୍ରାଚୀନକାଳରୁ ବିଭିନ୍ନ ଅଞ୍ଚଳର, ବିଭିନ୍ନ ଜାତିର ଶବ୍ଦ ଆସି ଆମ ଭାଷାରେ ମିଶିଯାଇଛି । ଏ ପ୍ରକାର ଶବ୍ଦଗୁଡ଼ିକୁ ଦେଶଜଶବ୍ଦ କୁହାଯାଏ । ଆହୁରି ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଅସଂଖ୍ୟ ଆଞ୍ଚଳିକ ଶବ୍ଦ ରହିଛି । ସେଗୁଡ଼ିକ ଦେଶଜ ଶବ୍ଦ ରୂପେ ଲେଖାପଢ଼ା ପାଇଁ ଅଭିଧାନଭୁକ୍ତ ହେବା ଉଚିତ । ଆମ ଦେଶରୁ ସୃଷ୍ଟ ଓ ଦେଶରେ ପ୍ରଚଳିତ ହେଉଥିବା ଶବ୍ଦ ଦେଶଜ ଶବ୍ଦ ଶ୍ରେଣୀର । ଯଥା–

| | | | | |
|---|---|---|---|---|
| ଅଝଟ | ଅଗାଡ଼ି | ଖଡୁ | ଗୋଡ଼/ଗୋଡ଼ି | ଚେର |
| ଅଖାଡୁଆ | କଣ୍ଢେଇ | ଖାଣ୍ଟି | ଚାଳ | ଛଟକ |
| ଅଡ଼ା | କାଇ | ଖୋଇ | ଚାଉଳ | ଛପର |
| ଅଣ୍ଟା | କୁଟା | ଗାଲୁଆ | ଚିରଗୁଣୀ | ଛାଟ |
| ଅଳିଆ | କୋରଡ଼ା | ଗିନା | ଚୁଆ | ଛାଡ଼ଖାଇ |
| ଅରୁଆ | ଖଡୁ | ଗାଡ଼ିଆ | ଚିରୁଡ଼ା | ଛାତି |

| | | | | |
|---|---|---|---|---|
| ଅରା | ଖଙ୍କାର | ଗୋଟମା | ଚିମୁଟା | ଛୁଆ |
| ଜନ୍ତାଳ | ଡଗର | ଥୋଡ଼ | ପିଲା | ମକଚିବା |
| ଜନ୍ଦା | ଡିବିରି | ଥୋଡ଼ି | ଧୁଷି | ମଁଲାଟି |
| ଜାଉ | ଡେଙ୍ଗା | ଦାଉ | ପୋକ | ମଲୁ |
| ଝାଇଁ | ଡେଣା | ଦନ୍ଥରା | ଫରକଟା | ମସିଣା |
| ଝାମେଲା | ଡେମ୍ଫ | ଦରୋଟି | ଫନ୍ଦା | ମଣୋହି |
| ଝୁମୁକା | ଢଗ | ଦିଲ | ବଟୁଆ | ସଜନା |
| ଟାଙ୍କ | ଢମା | ଧଡ଼ି | ବରା | ଶଢ଼ା |
| ଟାଙ୍ଗିଆ | ଢାଉ | ଧତଡ଼ା(ରା) | ବାଡ଼ି | ସଢ଼କ |
| ଟାପରା | ଢିଙ୍କି | ଧୋତି | ବେଣ୍ଟ | ଶଢ଼େଇ |
| ଟିପ | ତଳି | ନଟେଇ | ବୋକା | ସଞ୍ଜା |
| ଟୋକେଇ | ତଟକା | ନଡ଼ା | ବୋଦା | ସିଧା |
| ଟୋପର | ତଡ଼ପ | ନିଅଁ | ଭକୁଆ | ହାକୁଟି |
| ଠଣା | ତବଲା | ନିକମା | ଭଣ୍ଡୁର | ହାଡ଼ |
| ଠାକରା | ଡାଟି | ନେତ | ଭାଉ | ହାବୁକା |
| ଠିକା | ତେଣ୍ଟା | ପଇ | ଭାଡ଼ି | ହିଡ଼ |
| ଠୁଙ୍ଗା | ତୋଟା | ପଡ଼ା | ଭେଣ୍ଡା | ହେଟା |
| ଠୋଲା | ଥକା | ପାଇଟି | ଭେଣ୍ଡି | ହେଣ୍ଡି |
| ଡଉଲ | ଥନ୍ତଲ | ପାନିଆଁ | ଭାଟି | ହେଁସ |

## ବୈଦେଶିକ ଶବ୍ଦ :

ଉପର ତିନୋଟି ଶ୍ରେଣୀର ଶବ୍ଦ ବ୍ୟତୀତ ଓଡ଼ିଆ ଭାଷାରେ ଅନେକ ବିଦେଶୀ ଶବ୍ଦ ପ୍ରବେଶ କରିଥିବାର ଦେଖାଯାଏ । ବିଦେଶୀ ଶାସନ, ବୈଦେଶିକ ବାଣିଜ୍ୟ ଓ ଧର୍ମପ୍ରଚାର ମାଧ୍ୟମରେ ଏଇ ଶବ୍ଦଗୁଡ଼ିକ ଓଡ଼ିଆ ଭାଷାରେ ପ୍ରବେଶ କରିଛି । ଦୀର୍ଘକାଳ ଧରି ମୁସଲମାନ, ମୋଗଲ ଓ ଇଂରେଜମାନଙ୍କ ଶାସନ ସଂସ୍ପର୍ଶରେ ଆସି ଓଡ଼ିଆମାନେ ସେମାନଙ୍କର ଭାଷାକୁ ଆପଣେଇ ନେଇଛନ୍ତି । ପୁନଶ୍ଚ ବିଜ୍ଞାନର ଦ୍ରୁତ ଅଗ୍ରଗତି ହେତୁରୁ ନୂତନ ନୂତନ ଆବିଷ୍କାର ଓ ଉଦ୍ଭାବନ ଅହରହ ଚାଲିଛି । ତତ୍ ସମ୍ପର୍କୀୟ ସୃଷ୍ଟ ନୂତନ ଶବ୍ଦାବଳୀ ଆମ ଭାଷାକୁ ପରିପୁଷ୍ଟ କରୁଛି । କେତେକ ବିଶେଷ ପ୍ରଚଳିତ ବୈଦେଶିକ ଶବ୍ଦର ଅବଗତି ନିମିତ୍ତ ଉଦାହରଣ ପ୍ରଦତ୍ତ ହେଲା ।

**ଆରବୀ ଶବ୍ଦ :**

| | | | | | |
|---|---|---|---|---|---|
| ଅକ୍‌କଲ | କଏଦୀ | ଗରଜ | ତମାମ | ଫସଲ | ସହିଦ୍/ସହର |
| ଅଶ୍ଳିଳ | କବଲା | ଗାଏବ | ତର୍ଜମା | ଫାଇଦା | ସାହେବ |
| ଅସୁଲ | କରାମତ | ଗାର | ତାସ | ଫଉଜ | ସବାରି |
| ଅଦାଲତ | କଲିଜା | ଜାମିନ୍ | ତହସିଲ | ଫିକର | ସିନ୍ଦୁକ |
| ଅଚାନକ | କାଇଦା | ଜବାନ | ତହସିଲଦାର | ବରାବର | ସାବୁନ୍ |
| ଅମିନ | କାଏମ | ଜମି | ତାରିଫ୍ | ବହି | ସରଞ୍ଜାମ |
| ଅର୍ଜ୍ଜି | କାନୁନ୍ | ଜରିମାନା | ତଲାସ | ବିଲ୍‌କୁଲ | ସର୍ବତ |
| ଅମଲ | କବର | ଜମିଦାର | ଦଲିଲ୍ | ମସଲା | ସଲାମ |
| ଆଇନା | କିସମ | ଜାରି | ଦିମାକ୍ | ମଉସୁମି | ହଇରାଣ |
| ଇସାରା | କଦର | ଜୁଲମ | ଦୁନିଆ | ମାମଲା | ହାଜତ |
| ଇଲାକା | କିତାବ | ଜବତ୍ | ଦୋକାନ | ମହଜୁଦ୍ | ହାସଲ |
| ଇସ୍ତଫା | ଖାତିର | ଜହର | ଦଲାଲ | ମାମୁଲି | ହଜମ |
| ଏତଲା | ଖରାପ | ଜବାବ | ଦଫାଦାର | ମୁବି | ହାରାମ |
| ଓରଫ | ଖାଲି | ଜମା | ନାଚାର | ମୁଲକ | ହାଓ୍ୱା |
| ଓଜର | ଖତମ | ତଦାରଖ | ନାରାଜ | ମୌଜା | ହିସାବ |
| ଓଜନ | ଖାରଜ | ତାମସା | ନଗଦ | ମୁସ୍‌କିଲ୍ | ହାକିମ |

**ପାର୍ସୀ ଶବ୍ଦ :**

| | | | | |
|---|---|---|---|---|
| ଅଙ୍ଗୁର | | | | |
| ଅନ୍ଦାଜ | ଖାତା | ତରକାରି | ବଗିଚା | ସାଲତମାମି |
| ଆଜାଦ | ଖପା | ତାରିଖ | ବରଫ | ସନନ୍ଦ |
| ଆବାଜ | ଗରିବ | ଦରକାର | ବତାସ | ସରହଦ |
| ଆମଦାନୀ | ଗିରଫ | ଦରଖାସ୍ତ | ବେମାର | ସାଲିସ୍ |
| କବଲା | ଖାନସମା | ତଲାସ | ପେଚ | ସୁପାରିସ୍ |
| କଲମ | ଗୁମାସ୍ତା | ଦରଜି | ବରାବର | ସିରସ୍ତା |
| କାଗଜ | ଗୁମାନ | ଦାଗୀ | ବେହୋସ୍ | ସୁମାରି |
| କାମିଜ | ଚପରାସୀ | ଦୌଲତ | ମସାଲ | ସୌଦାଗର |

| | | | | |
|---|---|---|---|---|
| କୁରୁତା | ଚଷମା | ନମୁନା | ମସିହା | ହଜାର |
| କରଜ | ଚାବୁକ | ନରମ | ମାର୍ଫତ | ହାଜିର |
| କିସ୍ତି | ଚାଲାକ | ପତ୍ତା | ମୁର୍ଦାର | ହିମତ |
| କୁସ୍ତି | ଚିଜ | ପଲାଉ | ମାଲିକ | ହୁକୁମ |
| ଖଜଣା | ଜଖମ | ପାଇଖାନା | ରୋଜଗାର | ନାଲିସ |
| ଖବର | ଜାହାଜ | ପଇସା | ରୁମାଲ | ପରବାନା |
| ଖାନା | ଜୋର | ପିଆଦା | ଲଗାମ | ପେସ୍କାର |

**ତୁର୍କୀ ଶବ୍ଦ :**

କାବୁ, କୁଲି, କଇଁଚି, ଗାଲିଚା, ଚକମକି, ଚାକୁ, ତୋପ, ବନ୍ଧୁକ, ବାରୁଦ, ବାହାଦୁର, ବେଗମ, ବୁକୁଚା, ମୁଚାଲିକା, ସୁରାକ, କୁର୍ତ୍ତା, ଦାରୋଗା ।

**ପର୍ତ୍ତୁଗୀଜ ଶବ୍ଦ :**

ଆଚାର, ଆତ, ଆଲମାରି, ଇସ୍ପାତ, ଇସ୍ତ୍ରି, କାଜୁ, କାମିଜ, କୋବି, କିରାଣି, ଗୀର୍ଜା, ଗସ୍ତ, ଚାବି, ପିସ୍ତଲ, ପାଦ୍ରି, ପପେୟା, ତମାଖୁ, ନିଲାମ, ଫିରିଙ୍ଗି, ଫିତା, ବାଲ୍‌ଟି, ବେହେଲା, ବାସନ, ବୋତଲ, ବୋତାମ, ବୋମା, ମିସ୍ତ୍ରି, କଫି, ଗାଙ୍ଗୁଲା, ଫାଲତୁ, ସାୟା ।

**ଇଂରାଜୀ ଶବ୍ଦ :**

ଅଡିଟ୍, ଅଡିଟର, ଅର୍ଦ୍ଦଳି, ଅପରେସନ, ଅପିଲ୍, ଇଞ୍ଜିନ୍, ଇଞ୍ଜିନିୟର, ଇନ୍‌କମ, ଇନ୍‌ସପେକ୍ଟର, ଚେୟାର, କାର୍, କ୍ଲାସ୍, କାର୍ଡ, କୁପନ, କଙ୍କ୍ରିଟ୍, କେନାଲ, କପ୍, କମ୍ପାନି, କଲେଜ, କମ୍ପାଉଣ୍ଡର, କୋର୍ଟ, କ୍ଲର୍କ, କ୍ଲବ, ଗିଲାସ, ଗୋଦାମ, ଚେୟାର, ଚକୋଲେଟ୍, ଟାଇମ, ଟିକେଟ, ଟେବୁଲ୍, ଟାୟାର, ଟିଉବ, ଟାଉନ୍, ଟିକସ୍, ଥିଏଟର, ପାଇପ୍, ପାଉଡର, ପିନ୍, ପିଅନ, ପୋଲିସ୍, ପଲସ୍ତରା, ପାଲିସ୍, ପ୍ରେସ, ଫୋନ୍, ଫୁଟବଲ, ଫାଇଲ, ଫାଇନ, ନୋଟିସ୍, ନର୍ସ, ନମ୍ବର, ପେପର, ପେନ୍, ମେସିନ୍, ମିଟର, ମୋଟର, ମିନିଟ୍, ଡାକ୍ତର, ଡଜନ, ଡିଗ୍ରୀ, ଡ୍ରେସ, ଡ୍ରାମା, ଡ୍ରଇଁ, ରେଳବାଇ, ରବର, ରିକ୍‌ସା, ରେଡିଓ, ବେଞ୍ଚ, ବ୍ୟାଙ୍କ, ବ୍ରସ, ବ୍ୟାଟେରି, ବ୍ୟାଣ୍ଡେଜ୍, ବ୍ଲକ, ମ୍ୟୁନିସିପାଲିଟି, ଷ୍ଟେସନ, ୱାଚ୍, ୱାଗନ, ରୋଡ୍, ଟିଭି, ପାର୍କ, ମେଡିକାଲ, ସାଇକେଲ, ସାର୍ଟ, ସିଗାରେଟ୍, ସିମେଣ୍ଟ, ସିନେମା, ଷ୍ଟେସନ, ସ୍କୁଲ, ହଷ୍ଟେଲ, ହସ୍‌ପିଟାଲ, ହୋଟେଲ ।

ଏତଦ୍‌ବ୍ୟତୀତ ଆମ ଭାଷାରେ ଫରାସୀ, ଗ୍ରୀକ୍, ସ୍ପେନୀୟ, ଇଟାଲୀୟ, ଓଲନ୍ଦାଜ, ରୁଷୀୟ ଓ ଚୀନା ଆଦି ଶବ୍ଦ ପ୍ରବେଶ କରିଛି ।

ବିଭିନ୍ନ ଭାଷାରୁ ଓଡ଼ିଆ ଭାଷାକୁ ଆସିଥିବା ଶବ୍ଦଗୁଡ଼ିକ ମଧ୍ୟରୁ କେତେକର ମୌଳିକ ରୂପରେ, ଉଚ୍ଚାରଣରେ ପରିବର୍ତ୍ତନ ଆସିଛି । ଯଥା- ଡକ୍ଟର-ଡାକ୍ତର, ରେଲଓ୍ୱେ-ରେଳବାଇ, ଡେପୁଟି-ଦିପୋଟି, ଟବାକୋ-ତମାଖୁ ହୋଇଅଛି । ବୈଜ୍ଞାନିକ ଉଦ୍ଭାବନ, ଗମନାଗମନ ଓ ଗଣମାଧ୍ୟମର ଅଗ୍ରଗତି ଫଳରେ ନୂତନ ନୂତନ ଶବ୍ଦ ସୃଷ୍ଟି ହୋଇ ବିଭିନ୍ନ ଭାଷାଭଣ୍ଡାରକୁ ପରିପୁଷ୍ଟ କରୁଅଛି । ପ୍ରୋଟିନ୍, ଭିଟାମିନ୍, ସର୍ଜରି, ଏକ୍ସରେ, ଇଣ୍ଟରନେଟ୍, କମ୍ପ୍ୟୁଟର ଫୋନ୍ ଭଳି ଶବ୍ଦସମୂହ ଓଡ଼ିଆ ଭାଷାର ଅଙ୍ଗୀଭୂତ ହୋଇଅଛି । ଭାଷା ସର୍ବଦା ପରିବର୍ତ୍ତନଶୀଳ । ଶବ୍ଦଭଣ୍ଡାରକୁ ସମୃଦ୍ଧ କରିବାପାଇଁ ନୂତନ ଶବ୍ଦର ଆହରଣ ସର୍ବଥା ବାଞ୍ଛନୀୟ ।

## ଅନୁଶୀଳନୀ

୧ । ଶବ୍ଦ କାହାକୁ କହନ୍ତି ?

୨ । ଏକବର୍ଣ୍ଣବିଶିଷ୍ଟ ପାଞ୍ଚଟି ଶବ୍ଦ ଲେଖ ।

୩ । ଓଡ଼ିଆରେ ବ୍ୟବହୃତ ଶବ୍ଦଗୁଡ଼ିକୁ କେତେ ଭାଗରେ ବିଭକ୍ତ କରାଯାଏ, ସେମାନଙ୍କର ନାମ ଲେଖ ।

୪ । ତତ୍ସମ ଶବ୍ଦ କାହାକୁ କହନ୍ତି ? ଓଡ଼ିଆରେ ବ୍ୟବହୃତ ଦଶଟି ତତ୍ସମ ଶବ୍ଦର ଉଦାହରଣ ଦିଅ ।

୫ । ନିମ୍ନଲିଖିତ ଶବ୍ଦମାନଙ୍କ ମଧ୍ୟରୁ ତତ୍ସମ, ତଦ୍ଭବ, ଦେଶଜ ଓ ବୈଦେଶିକ ଶବ୍ଦଗୁଡ଼ିକୁ ବାଛି ସ୍ୱତନ୍ତ୍ର ତାଲିକା କର ।

କମିଟି, ଲଣ୍ଠନ, ବାଳକ, ହାତ, ସାହିତ୍ୟ, ପର୍ବତ, ତରୁ, କାନ, ଚମ, ମୁନ, ପିଲା, ଭୂମି, କଲବଲ, ତଣ୍ଡି, ଦଲିଲ, ଫଏସଲା, ଜାମିନ୍, ହୁକୁମ, ସରହଦ ।

୬ । ତଳେ ଦିଆଯାଇଥିବା ତଦ୍ଭବ ଶବ୍ଦଗୁଡ଼ିକର ତତ୍ସମ ରୂପ ଲେଖ । ଉଣେଇଶ, ଧାନ, ଗାଈ, ଆଖି, ଭାଲୁ, ନଈ, ପୁଷ, ଜିଭ, ଆଜି, ବାଛୁରୀ, ଥାନ, ଭଅଁର, ଶାକର, ମିଠା, ଗୋରା, କୁମ୍ଭାର, ହାତୀ, ନେଉଳ, ନାଚ ।

୭ । କେଉଁ କେଉଁ ବୈଦେଶିକ ଭାଷାର ଶବ୍ଦ ଆମ ଭାଷାରେ ବ୍ୟବହୃତ ହେଉଛି । ପ୍ରତ୍ୟେକରୁ ପାଞ୍ଚଟି ଶବ୍ଦର ଉଦାହରଣ ଦିଅ ।



# ବାକ୍ୟ, ପଦ ଓ ପଦର ଶ୍ରେଣୀବିଭାଗ

ପୂର୍ବପାଠରେ ପଢ଼ିଛେ, ସାର୍ଥକ ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟିକୁ ଶବ୍ଦ କହନ୍ତି । ଏହି ଶବ୍ଦକୁ ମଧ୍ୟ ପ୍ରାତିପଦିକ କୁହାଯାଏ । ରାମ, ରମା, ଗଛ, ଗଗନ, ତୁମେ, ନଈ, ଦୟା ଓ ବହି ପ୍ରଭୃତି ଶବ୍ଦଗୁଡ଼ିକ ଏକ ଏକ ପ୍ରାତିପଦିକ ।

## ବାକ୍ୟ

୧ । ଦେଶକୁ ଭଲପାଇଲେ ଆମେ ପ୍ରକୃତ ଦେଶପ୍ରେମୀ ହୋଇପାରିବା ।

୨ । ମହାତ୍ମାଗାନ୍ଧି ହରିଜନମାନଙ୍କ ପାଇଁ ବିଭିନ୍ନ ସେବାକାର୍ଯ୍ୟ କରିଥିଲେ ।

ଏହି ଉଦାହରଣ ଦୁଇଟି ଗୋଟିଏ ଗୋଟିଏ ଭାବପ୍ରକାଶକ ପୂର୍ଣ୍ଣାଙ୍ଗ ଉକ୍ତି । ଯେ କୌଣସି ଭାବପ୍ରକାଶକ ପୂର୍ଣ୍ଣାଙ୍ଗ ଉକ୍ତିକୁ ବାକ୍ୟ କହନ୍ତି ।

ଉପର ଉଦାହରଣରୁ (କ) ଦେଶକୁ ଭଲ ପାଇଲେ ଆମେ... ଏବଂ (ଖ) ମହାତ୍ମାଗାନ୍ଧି ହରିଜନମାନଙ୍କ ପାଇଁ... ଦୁଇଟି ଭାବବୋଧକ ପୂର୍ଣ୍ଣାଙ୍ଗ ଉକ୍ତି ନୁହେଁ, ତେଣୁ ବାକ୍ୟ ନୁହେଁ ।

## ଅନୁଚ୍ଛେଦ

କୌଣସି ଏକ ବିଷୟରେ ପ୍ରବନ୍ଧ ଲେଖିଲାବେଳେ ଆମେ ପ୍ରବନ୍ଧଟିକୁ ଭାଗଭାଗ କରି ଲେଖିଥାଉ । ସେହି ପ୍ରତ୍ୟେକ ଭାଗକୁ ଅନୁଚ୍ଛେଦ କହନ୍ତି । କେତେଗୁଡ଼ିଏ ବାକ୍ୟ ମିଶିଲେ ଏକ ଅନୁଚ୍ଛେଦ ହୁଏ । ପୂର୍ବବର୍ତ୍ତୀ ବାକ୍ୟର ପରବର୍ତ୍ତୀ ବାକ୍ୟ ସହିତ ସମ୍ବନ୍ଧ ଥାଏ । ପ୍ରତ୍ୟେକ ଅନୁଚ୍ଛେଦରେ ଗୋଟିଏ ଭାବନା ବା ଚିନ୍ତାଧାରା ପ୍ରତିଫଳିତ ହୋଇଥାଏ । ଭାବନାର ପରିପ୍ରକାଶକୁ ନେଇ ଅନୁଚ୍ଛେଦ ବଡ଼ ବା ସାନ ହୋଇଥାଏ । ଅନୁଚ୍ଛେଦଦ୍ୱାରା ଲେଖା ସୁନ୍ଦର ଓ ସୁପାଠ୍ୟ ହୁଏ ।

## ପଦ

ଛାତ୍ରମାନେ ବିଜ୍ଞାନମେଳାରୁ ବସ୍‌ରେ ବିଦ୍ୟାଳୟକୁ ଫେରିଲେ ।

ଏହି ବାକ୍ୟଟିରେ ପାଞ୍ଚଟି ଅଂଶ ରହିଛି ।

ଯଥା- ଛାତ୍ରମାନେ, ବିଜ୍ଞାନମେଳାରୁ, ବସ୍‌ରେ, ବିଦ୍ୟାଳୟକୁ ଓ ଫେରିଲେ । ଏଗୁଡ଼ିକ ଗୋଟିଏ ଗୋଟିଏ ପଦ । କାରଣ-

ବାକ୍ୟର ପ୍ରତ୍ୟେକ ଅଂଶକୁ ପଦ କୁହାଯାଏ ।

ଏହି ପଦଗୁଡ଼ିକରୁ ମାନେ, ରୁ, ରେ, କୁ ପ୍ରଭୃତିକୁ ବାଦ୍ ଦେଲେ ପଦଗୁଡ଼ିକ କେବଳ ମୂଳଶବ୍ଦ ଆକାରରେ ରହେ । ଯଥା- ଛାତ୍ର (ମାନେ), ବିଜ୍ଞାନମେଳା (ରୁ), ବସ୍ (ରେ), ବିଦ୍ୟାଳୟ (କୁ) । ମୂଳଶବ୍ଦକୁ ପ୍ରାତିପଦିକ କହନ୍ତି ।

ଏଥିରୁ ଆମେ ଜାଣିଲେ, ଶବ୍ଦ (ପ୍ରାତିପଦିକ) ବାକ୍ୟରେ ବ୍ୟବହୃତ ହେଲେ ତାକୁ ପଦ କହନ୍ତି ।

କେତେକ କ୍ଷେତ୍ରରେ ବାକ୍ୟରେ ମୂଳଶବ୍ଦ ମଧ୍ୟ ବ୍ୟବହୃତ ହୋଇଥାଏ । ଯଥା- ରମେଶ ଶ୍ରେଣୀରେ ବହି ପଢୁଛି । ଏହି ବାକ୍ୟରେ ରମେଶ ଓ ବହି ପଦରେ କିଛି ଚିହ୍ନ ବା ବର୍ଣ୍ଣ ଲାଗି ନାହିଁ । ଅତଏବ ବାକ୍ୟରେ ବ୍ୟବହୃତ ଶବ୍ଦରେ କିଛି ଲାଗି ଥାଉ ବା ନ ଥାଉ ତାହା ପଦ ।

ଉପର ଉଦାହରଣରେ ଫେରିଲେ ମଧ୍ୟ ଏକ ପଦ; ମାତ୍ର ଏହାର ମୂଳଶବ୍ଦ ନୁହେଁ । 'ଫେରିଲେ' କ୍ରିୟାପଦ । ଏହା 'ଫେର୍'ରୁ ଆସିଅଛି । ଏହା ଏକ ଧାତୁ । ସେହିପରି ଯାଉଛି, ପଢ଼ିଲା, ହସିବ, ଖାଉଛି ପ୍ରଭୃତି ପଦଗୁଡ଼ିକର ଧାତୁ ହେଉଛି- ଯା, ପଢ଼୍, ହସ୍, ଖା । ଶବ୍ଦ ଓ ଧାତୁକୁ ପ୍ରକୃତି କହନ୍ତି । ବାକ୍ୟରେ ବ୍ୟବହୃତ ଶବ୍ଦ ଓ ଧାତୁର ପରେ ଯେଉଁ ଚିହ୍ନ ବା ବର୍ଣ୍ଣ ସଂଯୁକ୍ତ ହୋଇଥାଏ, ତାହାକୁ ବିଭକ୍ତି କହନ୍ତି । ବିଭକ୍ତିଯୁକ୍ତ ଶବ୍ଦ ଓ ଧାତୁକୁ ମଧ୍ୟ ପଦ କହନ୍ତି ।

## ପଦର ଶ୍ରେଣୀବିଭାଗ

କହିବା ଓ ଲେଖିବାବେଳେ ଅନେକେ ବାକ୍ୟ ପ୍ରୟୋଗ କରିଥା'ନ୍ତି । ସେହି ବାକ୍ୟଗୁଡ଼ିକରେ ଯେତେସବୁ ପଦ ବ୍ୟବହୃତ ହୋଇଥାଏ, ତାହାକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଛି । ଯଥା-ବିଶେଷ୍ୟ, ସର୍ବନାମ, ବିଶେଷଣ, କ୍ରିୟା ଓ ଅବ୍ୟୟ ।

# ବିଶେଷ୍ୟ

**ତଳଲିଖିତ ବାକ୍ୟଗୁଡ଼ିକୁ ଲକ୍ଷ୍ୟକର ।**

(କ) ଦିଲୀପ ତିର୍କୀ ଓଡ଼ିଶାର ଜଣେ ଆନ୍ତର୍ଜାତିକ ହକି ଖେଳାଳି ।

(ଖ) କୃଷକ ଓ ସୈନିକମାନେ ଦେଶର ପ୍ରକୃତ ମେରୁଦଣ୍ଡ ।

(ଗ) ପଥର ଓ ମାଟିରେ ମୂର୍ତ୍ତି ନିର୍ମିତ ହୁଏ ।

(ଘ) ସେବା, ଦୟା ଓ ପରୋପକାର ମନୁଷ୍ୟ ଜୀବନକୁ ମହାନ୍ କରେ ।

(ଙ) କହିବାଠାରୁ କରିବା କଠିନ ।

ଉପର ଉଦାହରଣରେ ଦିଲୀପ ଜଣେ ହକି ଖେଳାଳିର ନାମ; ଓଡ଼ିଶା ଭାରତର ଏକ ରାଜ୍ୟର ନାମ, କୃଷକ କୃଷି କରୁଥିବା ଲୋକଙ୍କର ସାଧାରଣ ନାମ, ସୈନିକ ଯୁଦ୍ଧ କରୁଥିବା ଲୋକଙ୍କର ସାଧାରଣ ନାମ, ପଥର ଓ ମାଟି ବସ୍ତୁର ନାମ; ସେବା, ଦୟା ଓ ପରୋପକାର ମନୁଷ୍ୟର ଏକ ଏକ ସୁଗୁଣର ନାମ ଓ କହିବା, କରିବା କାର୍ଯ୍ୟର ନାମ ପ୍ରକାଶ କରୁଛି ।

ଅତଏବ ନାମବାଚକ ପଦକୁ ବିଶେଷ୍ୟ ପଦ କହନ୍ତି ।

## ବିଶେଷ୍ୟ ପ୍ରକାର :

ନାମର ପ୍ରକାରକୁ ନେଇ ବିଶେଷ୍ୟ ପଦକୁ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଏ ।

୧ । ବ୍ୟକ୍ତିବାଚକ ବା ସଂଜ୍ଞାବାଚକ ବିଶେଷ୍ୟ- ଦେବାଶିଷ, କପିଳାସ, କଟକ, କାବେରୀ, ମହାଭାରତ ।

୨ । ଜାତିବାଚକ ବିଶେଷ୍ୟ- ଛାତ୍ର, ପର୍ବତ, ସହର, ନଦୀ, ଗ୍ରନ୍ଥ ।

୩ । ବସ୍ତୁବାଚକ ବିଶେଷ୍ୟ- ମାଟି, କାଠ, ଲୁହା, ପାଣି, କୋଇଲା ।

୪ । ଗୁଣବାଚକ ବିଶେଷ୍ୟ- ଅହିଂସା, ସତ୍ୟ, ସରଳତା, ବାର୍ଦ୍ଧକ୍ୟ, ଦାରିଦ୍ର୍ୟ ।

୫ । କ୍ରିୟାବାଚକ ବିଶେଷ୍ୟ- ଲେଖା, ପଢ଼ା, ଭୋଜନ, ହସ, ଖେଳ ।

## ବ୍ୟକ୍ତିବାଚକ ବା ସଂଜ୍ଞାବାଚକ ବିଶେଷ୍ୟ :

ନିର୍ଦ୍ଦିଷ୍ଟ ନାମ ପ୍ରକାଶ କରୁଥିବା ପଦଗୁଡ଼ିକୁ ବ୍ୟକ୍ତିବାଚକ ବିଶେଷ୍ୟ କହନ୍ତି । ନାମକୁ ମଧ୍ୟ ସଂଜ୍ଞା କୁହାଯାଏ । ଏଣୁ ବ୍ୟକ୍ତିବାଚକ ବିଶେଷ୍ୟର ଅନ୍ୟ ନାମ ସଂଜ୍ଞାବାଚକ ବିଶେଷ୍ୟ । ଏହି ଶ୍ରେଣୀର ବିଶେଷ୍ୟ ନିର୍ଦ୍ଦିଷ୍ଟ ବ୍ୟକ୍ତି, ସ୍ଥାନ, ସହର, ପର୍ବତ, ବନ, ପଶୁପକ୍ଷୀ, ସମୁଦ୍ର, ହ୍ରଦ, ନଦୀ, ଗ୍ରନ୍ଥ, ଦେଶ ଓ ପ୍ରଦେଶର ନାମକୁ ବୁଝାଇଥାଏ । ଯଥା-

ବିବେକାନନ୍ଦ, ମନମୋହନ, ଟୁନା, ଗୌରୀ, ଈଶାନୀ, ଶତରୂପା, ଅନନ୍ୟା, ମଧୁସୂଦନ, ବ୍ୟୋମକେଶ ଓ ଗୋଦାବରୀଶ ପ୍ରଭୃତି ବ୍ୟକ୍ତିବିଶେଷଙ୍କର ନାମ । ପୁରୀ, ହରିଦ୍ୱାର, ଦିଲ୍ଲୀ, ସମ୍ବଲପୁର, ଚେନ୍ନାଇ, ଗୋପାଳପୁର ଓ ବାଙ୍କି ପ୍ରଭୃତି ନିର୍ଦ୍ଦିଷ୍ଟ ସହର, ଗ୍ରାମ ବା ସ୍ଥାନର ନାମ ଅଟେ । ମହାନଦୀ, ଋଷିକୁଲ୍ୟା, ଗଙ୍ଗା, ଯମୁନା ଓ କୃଷ୍ଣା ପ୍ରଭୃତି ନିର୍ଦ୍ଦିଷ୍ଟ ନଦୀର ନାମ । ହିମାଳୟ, ବିନ୍ଧ୍ୟ, ଗନ୍ଧମାର୍ଦ୍ଦନ, ମାମୁଭଣଜା, ଭାଲେରି ଓ ଦେଓମାଳୀ ପ୍ରଭୃତି ଏକ ଏକ ନିର୍ଦ୍ଦିଷ୍ଟ ପର୍ବତ ବା ପାହାଡ଼ର ନାମ ପ୍ରକାଶ କରୁଛି । ଭାରତ, ନେପାଳ, ଚୀନ, ଇରାକ, ମରକ୍କୋ, ଇଟାଲୀ ଓ ପାକିସ୍ତାନ ଇତ୍ୟାଦି ଏକ ଏକ ନିର୍ଦ୍ଦିଷ୍ଟ ଦେଶର ନାମ ଅଟେ । ଆରବସାଗର, ଭୂମଧ୍ୟସାଗର, ମରୁସାଗର ପ୍ରଭୃତି ସାଗରର ନାମ । ଚିଲିକା, ଅଂଶୁପା, କାଷ୍ପିଆନ ପ୍ରଭୃତି ନିର୍ଦ୍ଦିଷ୍ଟ ହ୍ରଦର ନାମ । ରାମଚରିତ ମାନସ, ରଘୁବଂଶମ୍,

ନୈଷଧ, ଶ୍ରୀମଦ୍ ଭଗବଦ୍ ଗୀତା, ବାଇବେଲ ଓ ଦାର୍ଢ୍ୟତା ଭକ୍ତି ପ୍ରଭୃତି ନିର୍ଦ୍ଦିଷ୍ଟ ଗ୍ରନ୍ଥର ନାମ ଅଟେ ।

**ଜାତିବାଚକ ବିଶେଷ୍ୟ :**

ଯେଉଁ ପଦ କୌଣସି ନିର୍ଦ୍ଦିଷ୍ଟ ନାମକୁ ନ ବୁଝାଇ ଅନେକଙ୍କର ସାଧାରଣ ନାମକୁ ପ୍ରକାଶ କରିଥାଏ, ତାକୁ ଜାତିବାଚକ ବିଶେଷ୍ୟ କହନ୍ତି । ଏହା ଏକାଧିକ ଜାତିବାଚକ ବିଶେଷ୍ୟର ସାଧାରଣ ନାମ । ଜାତି ଅର୍ଥ ସମୂହ, ଯଥା- ମନୁଷ୍ୟ, ଶବର, ପଶୁ, ପକ୍ଷୀ, ପର୍ବତ, ବନ, ଗାଈ, ବୃକ୍ଷ, ନଦୀ, ହ୍ରଦ, ସମୁଦ୍ର, ଦେଶ ପ୍ରଭୃତି ।

ମନୁଷ୍ୟ କହିଲେ ପୃଥିବୀରେ ବାସକରୁଥିବା ସମସ୍ତ ମଣିଷଙ୍କୁ ବୁଝାଏ; ମାତ୍ର ହରି, ଗୋବିନ୍ଦ, ସୀତା, ଦିନେଶ ଓ ଗାୟତ୍ରୀ କହିଲେ ମନୁଷ୍ୟ ଜାତିର ନିର୍ଦ୍ଦିଷ୍ଟ ନାମଧାରୀ ବ୍ୟକ୍ତିଙ୍କୁ ବୁଝାଇଥାଏ । ଏଣୁ ମନୁଷ୍ୟ ଜାତିବାଚକ ବିଶେଷ୍ୟ ହେଲାବେଳେ ହରି, ଗୋବିନ୍ଦ ପ୍ରଭୃତି ବ୍ୟକ୍ତିବାଚକ ବିଶେଷ୍ୟ । 'ହାତୀ' କହିଲେ ଗୋଟିଏ ଜାତିର ସମସ୍ତ ପଶୁଙ୍କୁ ବୁଝାଏ; ମାତ୍ର 'ଐରାବତ' କହିଲେ କେବଳ ଇନ୍ଦ୍ରଙ୍କର ହାତୀକୁ ବୁଝାଏ । ଏଣୁ ଯେଉଁ ନାମ ଏକାଧିକଙ୍କର ସାଧାରଣ ନାମ ଅଟେ, ତାହା ଜାତିବାଚକ ବିଶେଷ୍ୟ ଅଟେ ।

ଜାତିବାଚକ ଓ ବ୍ୟକ୍ତିବାଚକ ବିଶେଷ୍ୟର ପାର୍ଥକ୍ୟ-

| ଜାତିବାଚକ | ବ୍ୟକ୍ତିବାଚକ | ଜାତିବାଚକ | ବ୍ୟକ୍ତିବାଚକ |
|---|---|---|---|
| ମନୁଷ୍ୟ | ରଘୁନାଥ | ଶବର | ଗୁହକ |
| ଗାଈ | କାମଧେନୁ | ପାହାଡ଼ | ଘଣ୍ଟଶିଳା |
| ପୁସ୍ତକ | ରାମାୟଣ | ନଈ | ବୈତରଣୀ |
| ଦେଶ | ତୁରସ୍କ | ଫୁଲ | ଗୋଲାପ |

ନାମବାଚକ ବା ବ୍ୟକ୍ତିବାଚକ ବିଶେଷ୍ୟର ଜାତିବାଚକ ବିଶେଷ୍ୟ ରୂପେ ବ୍ୟବହାର-

୧ । ରସକଲ୍ଲୋଳକୁ ଓଡ଼ିଆ ସାହିତ୍ୟର **ନୈଷଧ** କୁହାଯାଉଛି ।

୨ । ଫକୀରମୋହନଙ୍କୁ ଓଡ଼ିଶାର **ପ୍ରେମଚନ୍ଦ୍** କୁହାଯାଏ ।

୩ । କାବେରୀକୁ ଦକ୍ଷିଣ ଭାରତର **ଗଙ୍ଗା** କହନ୍ତି ।

୪ । ନେଲସନ୍ ମାଣ୍ଡାଲାଙ୍କୁ ଆଫ୍ରିକାର **ମହାତ୍ମାଗାନ୍ଧି** କୁହାଯାଏ ।

୫ । ସମୁଦ୍ରଗୁପ୍ତ ଭାରତର **ନେପୋଲିଅନ୍** ରୂପେ ପରିଚିତ ।

୬ । ଆଉଜଣେ **ଦିଲୀପ ତିର୍କୀ** ହେବା ନୀଳିମାଙ୍କର ଲକ୍ଷ୍ୟ ।

୭ । କଟକକୁ ଓଡ଼ିଶାର **କଲିକତା** କୁହାଯାଉଛି ।

୮ । ବାଳି କହିଲା, 'ଯା' ଯା, ମୁଁ ତୋପରି କେତେ **ରାବଣ** ଦେଖିଛି ।

ଉପର ଉଦାହରଣଗୁଡ଼ିକରେ ଉତ୍କର୍ଷ ବା ବିଶେଷତ୍ୱ ପ୍ରତିପାଦନ ନିମିତ୍ତ ରସକଲ୍ଲୋଳକୁ ନୈଷଧ ସହିତ, ଫକୀରମୋହନଙ୍କୁ ପ୍ରେମଚନ୍ଦ୍ଙ୍କ ସହିତ, କାବେରୀକୁ ଗଙ୍ଗା ସହିତ ଓ ନେଲସନ୍ ମାଣ୍ଡାଲାଙ୍କୁ ମହାତ୍ମାଗାନ୍ଧିଙ୍କ ସହିତ ତୁଳନା କରାଯାଇଛି ।

ପ୍ରକୃତରେ ରସକଲ୍ଲୋଳ ନୈଷଧ ନୁହେଁ କି ଫକୀର ମୋହନ ପ୍ରେମଚନ୍ଦ୍ ନୁହନ୍ତି, ଅଥବା କାବେରୀ ଗଙ୍ଗା ନୁହେଁ କି ନେଲସନ ମାଣ୍ଡାଲା ମହାତ୍ମାଗାନ୍ଧି ନୁହନ୍ତି । ସମୁଦ୍ରଗୁପ୍ତ ମଧ୍ୟ ନେପୋଲିଅନ ନୁହନ୍ତି । ଅର୍ଥାତ୍ ରସକଲ୍ଲୋଳ ନୈଷଧ ପରି ଏକ ମହାନ୍ କାବ୍ୟ, ଫକୀରମୋହନ ପ୍ରେମଚନ୍ଦ୍ଙ୍କ ପରି ସୁପ୍ରସିଦ୍ଧ ଲେଖକ, କାବେରୀ ଗଙ୍ଗା ପରି ପବିତ୍ରାନଦୀ ଓ ନେଲସନ ମାଣ୍ଡାଲା ମହାତ୍ମାଗାନ୍ଧିଙ୍କ ପରି ମହାନ୍ ସ୍ୱାଧୀନତା ସଂଗ୍ରାମୀ ତଥା ଜନନାୟକ । ସମୁଦ୍ରଗୁପ୍ତ ନେପୋଲିଅନଙ୍କ ପରି ବିଖ୍ୟାତ ବୀର । ଏଇ ଦୃଷ୍ଟିରୁ ବ୍ୟକ୍ତିବାଚକ ବିଶେଷ୍ୟପଦ ନୈଷଧ, ପ୍ରେମଚନ୍ଦ୍, ଗଙ୍ଗା, ମହାତ୍ମାଗାନ୍ଧି, ନେପୋଲିୟନ ନିର୍ଦ୍ଦିଷ୍ଟ ନାମ ନ ହୋଇ ଏକାଧିକ ନାମ ବା ବ୍ୟକ୍ତିରେ ପରିଣତ ହୋଇଛନ୍ତି । ଅର୍ଥାତ୍ ସେମାନେ ଜାତି ବା ସମୂହର ଅନ୍ତର୍ଭୁକ୍ତ ହୋଇଛନ୍ତି । ଏଣୁ ଉକ୍ତ ପଦଗୁଡ଼ିକ ଜାତିବାଚକ ବିଶେଷ୍ୟ । 'ଆଉଜଣେ ଦିଲୀପ ତିର୍କି' କହିଲେ ଦିଲୀପ ତିର୍କିଙ୍କ ପରି ପ୍ରସିଦ୍ଧ ହକି ଖେଳାଳି ହେବା । ସୁତରାଂ 'ଦିଲୀପ ତିର୍କି' ଏକାଧିକ ବ୍ୟକ୍ତିଙ୍କୁ ବୁଝାଉଥିବାରୁ ବ୍ୟକ୍ତିବାଚକ ବିଶେଷ୍ୟ ନ ହୋଇ ଜାତିବାଚକ ବିଶେଷ୍ୟ ଅଟେ । ସେହିପରି କଟକକୁ 'କଲିକତା' କୁହାଯାଉଥିବାରୁ 'କଲିକତା' ଏକାଧିକ ନଗରୀକୁ ବୁଝାଇଲା । ତେଣୁ ବ୍ୟକ୍ତିବାଚକ ବିଶେଷ୍ୟ ନ ହୋଇ ଜାତିବାଚକ ବିଶେଷ୍ୟ ଅଟେ । ସେହିପରି 'କେତେ ରାବଣ' କହିଲେ ରାବଣ ପରି ଶକ୍ତିଶାଳୀ ଅନେକ ଅସୁରଙ୍କୁ ବୁଝାଉଅଛି । ଏଣୁ ରାବଣ ଜାତିବାଚକ ବିଶେଷ୍ୟ ।

## ବସ୍ତୁବାଚକ ବିଶେଷ :

ବସ୍ତୁର ନାମ ପ୍ରକାଶ କରୁଥିବା ବିଶେଷ୍ୟ ପଦକୁ ବସ୍ତୁବାଚକ ବିଶେଷ୍ୟ କହନ୍ତି । ଯଥା- କ୍ଷୀର, ତେଲ, ପେଟ୍ରୋଲ, କାଗଜ, ତୁଳା, କାଠ, ପଥର, ଜଳ, ସୁନା, ରୁପା, ବ୍ରୋଞ୍ଜ, ତମ୍ବା, କଂସା, ଲୁହା, ଲୁଣ, ମାଟି, ଚାଉଳ, ଗହମ ।

## ବସ୍ତୁବାଚକ ଓ ଜାତିବାଚକ ବିଶେଷ୍ୟ ମଧ୍ୟରେ ପାର୍ଥକ୍ୟ :

ବେଳେବେଳେ ବସ୍ତୁବାଚକ ବିଶେଷ୍ୟ ଓ ଜାତିବାଚକ ବିଶେଷ୍ୟ ଜାଣିବାରେ ସନ୍ଦେହ ସୃଷ୍ଟି ହୋଇଥାଏ; ମାତ୍ର ବସ୍ତୁଟିକୁ ଖଣ୍ଡଖଣ୍ଡ କଲେ ମଧ୍ୟ ଯଦି ନାମରେ କୌଣସି

ପରିବର୍ତ୍ତନ ହୁଏ ନାହିଁ, ତାହା ବସ୍ତୁବାଚକ ବିଶେଷ୍ୟ । ଯଦି ସେହି ନାମରେ ପରିଚିତ ନ ହୁଏ, ତାହା ଜାତିବାଚକ ବିଶେଷ୍ୟ ।

ପାର୍ଥକ୍ୟର ଉଦାହରଣ-

| ବସ୍ତୁବାଚକ ବିଶେଷ୍ୟ | ଜାତିବାଚକ ବିଶେଷ୍ୟ |
|---|---|
| ମାଟି | ମୂର୍ତ୍ତି |
| କାଠ | ଖଟ |
| କାଗଜ | ବହି |

## ଗୁଣବାଚକ ବିଶେଷ୍ୟ :

ନିର୍ଦ୍ଦିଷ୍ଟ ଗୁଣର ନାମ ବା ଅବସ୍ଥା ବୁଝାଉଥିବା ବିଶେଷ୍ୟ ପଦକୁ ଗୁଣବାଚକ ବିଶେଷ୍ୟ କହନ୍ତି ।

ଯଥା- ସମତା, ସାଧୁତା, ସରଳତା, ସହିଷ୍ଣୁତା, ସୁଶୀଳତା, ଧୀରତା, ନମ୍ରତା, ଉଦାରତା, ବନ୍ଧୁତା, କପଟତା, ଗୁଣ୍ଣତା, ମମତା, ସ୍ନେହ, ଶ୍ରଦ୍ଧା, ସତ୍ୟ, ସୁଖ, ଦୁଃଖ, ଦୟା, କ୍ଷମା, ଗର୍ବ, ଭକ୍ତି, ଧୈର୍ଯ୍ୟ, ଦାରିଦ୍ର୍ୟ, ଚାଞ୍ଚଲ୍ୟ, ଅହିଂସା, ଦୁଷ୍ଟାମି, ଠକାମି, ଚଗଲାମି, ସେବା, ପରୋପକାର, ପାଣ୍ଡିତ୍ୟ, ବୀରତ୍ୱ, କ୍ରୋଧ, ଶୈଶବ, ବାଲ୍ୟ, କୈଶୋର, ଯୌବନ, ଅହଂକାର, ଚୌର୍ଯ୍ୟ, ସାହସ ଓ ଶ୍ରଦ୍ଧା ଇତ୍ୟାଦି । ଭଲ ଓ ମନ୍ଦ ଉଭୟ ଗୁଣକୁ ପ୍ରକାଶ କରୁଥିବା ପଦଗୁଡ଼ିକ ଗୁଣବାଚକ ବିଶେଷ୍ୟର ଅନ୍ତର୍ଗତ ।

## କ୍ରିୟାବାଚକ ବିଶେଷ୍ୟ :

ଯେଉଁ ପଦ କୌଣସି କ୍ରିୟାର ନାମକୁ ବୁଝାଏ, ତାହାକୁ କ୍ରିୟାବାଚକ ବିଶେଷ୍ୟ କହନ୍ତି । ଯଥା- ଯିବା, ଆସିବା, ପଢ଼ିବା, ଲେଖିବା, ହସିବା, କାନ୍ଦିବା, ଧାଇଁବା, ଦେବା, ନେବା, ଦର୍ଶନ, ଭ୍ରମଣ, ଲିଖନ, ପଠନ, ଭୋଜନ, ପାନ, ରୋଦନ, କ୍ରନ୍ଦନ, ହସ, ଖେଳ, କାନ୍ଦ, ବାଜଣା, ରାନ୍ଧଣା, ମାଜଣା, ମିଶାଣ, ଜଣାଣ, ବନ୍ଦାଣ, ଭସାଣି, ଭାଳେଣି, ଗତି, ପ୍ରାପ୍ତି, ମୁକ୍ତି, ବିଶ୍ରାମ, ପାକ ଇତ୍ୟାଦି ।

## କ୍ରିୟା ଓ କ୍ରିୟାବାଚକ ବିଶେଷ୍ୟ ମଧ୍ୟରେ ପାର୍ଥକ୍ୟ :

୧ । ଶିକ୍ଷକ ଚୌକିରେ ବସିଛନ୍ତି ।

୨ । ରୋଗୀଟି ଜୋର୍‌ରେ କାଶୁଛି ।

୩ । ବସିବାଠାରୁ କାଶିବା ଭଲ ।

୪ । ମୁଁ ପୁରୀ ବେଳାଭୂମିରେ ସମୁଦ୍ର ଦେଖିଛି ।

୫ । ପୁରୀ ବେଳାଭୂମିରେ ସମୁଦ୍ର-ଦର୍ଶନ ଅତ୍ୟନ୍ତ ଚିତ୍ତାକର୍ଷକ ।

ଉପର ଉଦାହରଣରେ ବସିଛନ୍ତି, କାଶୁଛି, ଦେଖିଛି କ୍ରିୟାପଦ ହୋଇଥିଲାବେଳେ ବସିବା, କାଶିବା ଓ ଦର୍ଶନ କ୍ରିୟାବାଚକ ବିଶେଷ୍ୟ ।

କେହିକେହି ବୈୟାକରଣିକ ଜନତା, ସେନା, ଦଳ, ଗୋଠ, ବୃନ୍ଦ, ଯୂଥ, ଶ୍ରେଣୀ ପ୍ରଭୃତି ସମୂହ ଅର୍ଥବୋଧକ ବିଶେଷ୍ୟ ପଦକୁ ସମଷ୍ଟିବାଚକ ବିଶେଷ୍ୟ ରୂପେ ନାମିତ କରିଥା'ନ୍ତି; ମାତ୍ର ଏଭଳି ପଦଗୁଡ଼ିକ ଜାତିବାଚକ ବିଶେଷ୍ୟର ଅନ୍ତର୍ଭୁକ୍ତ ହୋଇପାରନ୍ତି ।

## ଅନୁଶୀଳନୀ

୧ । ପ୍ରାତିପଦିକ କାହାକୁ କହନ୍ତି ?

୨ । ପଦ କାହାକୁ କହନ୍ତି ଓ ଏହା କେତେ ପ୍ରକାର ? ପ୍ରତ୍ୟେକର ନାମ ଲେଖ ।

୩ । ଦେଉଳ, ଗାଈ, କଲମ, ଭାରତ, ମେଘ- ଏହି ଶବ୍ଦଗୁଡ଼ିକୁ ପଦରୂପେ ବାକ୍ୟରେ ବ୍ୟବହାର କର ।

୪ । ବିଶେଷ୍ୟ ପଦ କାହାକୁ କହନ୍ତି ? ଏହା କେତେ ପ୍ରକାର ଓ କ'ଣ କ'ଣ ?

୫ । ନିମ୍ନଲିଖିତ ବାକ୍ୟଗୁଡ଼ିକରୁ ବିଶେଷ୍ୟ ପଦଗୁଡ଼ିକୁ ଚିହ୍ନାଇ କିଏ କି ପ୍ରକାର ବିଶେଷ୍ୟ ଲେଖ ।

(କ) ଡକ୍ଟର ରାଧାକୃଷ୍ଣନ୍ ଭାରତର ରାଷ୍ଟ୍ରପତି ଥିଲେ ।

(ଖ) ସାରଳା ଦାସ ଓଡ଼ିଶାର ବାଲ୍ମୀକି ଅଟନ୍ତି ।

(ଗ) ଟେବୁଲ ଉପରେ କାଳି, କଲମ, ବହି, କାଗଜ ଅଛି ।

(ଘ) ଜନସେବକମାନେ ବନ୍ୟା ସମୟରେ ସାହସର ସହିତ ଡଙ୍ଗାରେ ଯାଇ ଗାଁ' ଗଣ୍ଡାରେ ଚୁଡ଼ାଚାଉଳ ବାଣ୍ଟନ୍ତି ।

(ଙ) ଗ୍ରୀଷ୍ମ ଋତୁରେ ଆମ୍ବ, ପଣସ, ସପୁରି ପାଚେ ।

(ଚ) ବିଜନତା କାହିଁ ତୋ ବେଶ ମୋହନ ?

(ଛ) ଚାଷୀ ଦାଆରେ ଧାନ କାଟୁଛି ।

୬ । ଅସମ୍ପୃକ୍ତ ଶବ୍ଦକୁ ପୃଥକ୍ କରି ଲେଖ ।

(କ) ଡାଲି, ବାଲି, ଚାଉଳ, ଚିନି, ଚୌକି

(ଖ) ଇହୁଦୀ, ମନୁଷ୍ୟ, ଗୋରୁ, ଗଙ୍ଗା, ଗଛ, ନଦୀ

(ଗ) ଭକ୍ତି, ଭୟ, ଦୟା, ଦମ୍ଭ, ଦୁର୍ଗା, ଖ୍ୟାତି

(ଘ) ରନ୍ଧନ, ଭୋଜନ, ଗାଉଣା, ଗାୟକ, ମରଣ

(ଙ) ରମା, ରମେଶ, ରାଣୀ, ରାମାୟଣ, ପାରିଜାତ, ପଦ୍ମାଳୟା

୭ । ବ୍ୟକ୍ତିବାଚକ ବିଶେଷ୍ୟ କିପରି ଜାତିବାଚକ ବିଶେଷ୍ୟରେ ପରିଣତ ହୁଏ, ଉଦାହରଣ ଦେଇ ବୁଝାଅ ।

୮ । 'ମରିବା' ଅର୍ଥ ବୁଝାଉଥିବା ଆଉ ଗୋଟିଏ ଶବ୍ଦ 'ମରଣ' । ସେହିପରି ତଳଲିଖିତ ଶବ୍ଦଗୁଡ଼ିକ ଅର୍ଥ ପ୍ରକାଶପାଇଁ ପାର୍ଶ୍ୱରେ ଆଉ ଗୋଟିଏ ଲେଖାଏଁ ଶବ୍ଦ ଲେଖ ।
କହିବା, ଦେଖିବା, ଶୁଣିବା, ଶୋଇବା, ଲେଖିବା, ବାନ୍ଧିବା, ପଠାଇବା, ସହିବା, ଅର୍ଜିବା, ଗର୍ଜିବା, ଗାଇବା, ଦେବା, ପିଇବା

୯ । ନିମ୍ନଲିଖିତ ଶବ୍ଦଗୁଡ଼ିକ ମଧ୍ୟରୁ ବସ୍ତୁବାଚକ ଓ ଜାତିବାଚକ ବିଶେଷ୍ୟକୁ ପୃଥକ୍ କରି ଲେଖ ।
ଦୁଧ, ଦହି, ଲୁଗା, ତୁଳା, କାତି, ଲୁହା, କାକୁଡ଼ି, ବହି, କଲମ, କାଗଜ, ବାଉଁଶ, ବାଉଁଶିଆ, କରେଇ, ବାକ୍ସ, ସିମେଣ୍ଟ, କାଠ, ଚଉକି, ଇସ୍ପାତ, ସାଇକେଲ ।

୧୦ । ପାଞ୍ଚଟି ଗୁଣବାଚକ ବିଶେଷ୍ୟ ପଦର ଉଦାହରଣ ଦିଅ ।

୧୧ । 'କ' ସ୍ତମ୍ଭରେ କେତେଗୁଡ଼ିଏ ବିଶେଷ୍ୟ ପଦ ଓ 'ଖ' ସ୍ତମ୍ଭରେ ସେଗୁଡ଼ିକ କେଉଁ ପ୍ରକାର ବିଶେଷ୍ୟ ପଦ ଉଲ୍ଲେଖ ଅଛି । ଯଥାର୍ଥ ବିଶେଷ୍ୟ ପଦ ସହିତ ତାହା କେଉଁଶ୍ରେଣୀର ବିଶେଷ୍ୟ ସଂଯୋଗ କର ।

| | |
|---|---|
| ଗନ୍ଧମାର୍ଦ୍ଦନ | କ୍ରିୟାବାଚକ |
| ସରଳତା | ଜତିବାଚକ |
| ଭୋଜନ | ସଂଜ୍ଞାବଚକ |
| ମାଟି | ଗୁଣବାଚକ |
| ପର୍ବତ | ବସ୍ତୁବାଚକ |

୧୨. ଚାରିଗୋଟି ବିକଳ୍ପ ଉତ୍ତର ମଧ୍ୟରୁ ସଠିକ୍ ଉତ୍ତରଟି ବାଛିଲେଖ । ରେଖାଙ୍କିତ ପଦଟି କି ପ୍ରକାର ବିଶେଷ୍ୟ ।

ପ୍ରଶ୍ନ – ଲେଉଟ ଚକୁଳି ଖାଇ, ମୁଁ ପିତାଙ୍କ ସଙ୍ଗେ ଘରୁ ଗୋଡ଼କାଢ଼ିଲି ।
(କ) ଜାତିବାଚକ (ଖ) ବସ୍ତୁବାଚକ (ଗ) ଗୁଣବାଚକ (ଘ) କ୍ରିୟାବାଚକ

ପ୍ରଶ୍ନ – ଦରିଦ୍ର କୁଟୀରରେ ବଡ଼ ନିଧି ହେଉଛି ପିଲା ।
(କ) ସଂଜ୍ଞାବାଚକ (ଖ) ଜାତିବାଚକ (ଗ) ଗୁଣବାଚକ (ଘ) କ୍ରିୟାବାଚକ

ପ୍ରଶ୍ନ – ବର୍ମା ଦେଶର ନାରୀ ପୁରୁଷ ଅପେକ୍ଷା ପ୍ରବଳ ।
(କ) ଜାତିବାଚକ (ଖ) ଗୁଣବାଚକ (ଗ) ସଂଜ୍ଞାବାଚକ (ଘ) କ୍ରିୟାବାଚକ



# ସର୍ବନାମ

**ତଳ ବାକ୍ୟଗୁଡ଼ିକୁ ପଢ଼ ।**

"ପ୍ରସନ୍ନ ଭଲ ପାଠ ପଢ଼େ । ପ୍ରସନ୍ନ ପାଠପଢ଼ା ସହିତ ଭଲ ଖେଳେ । ତେଣୁ ପ୍ରସନ୍ନର ସାଥୀମାନେ ପ୍ରସନ୍ନକୁ ଆଦର କରନ୍ତି । ପ୍ରସନ୍ନଠାରେ ମଧ୍ୟ ଆହୁରି ଅନେକ ଭଲ ଗୁଣ ଅଛି ।"

ଉପର ଅନୁଚ୍ଛେଦରେ ଥିବା ଚାରୋଟି ବାକ୍ୟରେ ପ୍ରସନ୍ନ ସମ୍ବନ୍ଧରେ କିଛି କୁହାଯାଇଛି; ମାତ୍ର ପ୍ରସନ୍ନ ଶବ୍ଦଟି ବାରମ୍ବାର ପ୍ରୟୋଗ କରାଯାଇଛି । ଏହାଦ୍ୱାରା ପୁନରୁକ୍ତି ଓ ଶ୍ରୁତିକଟୁ ଦୋଷ ହେଉଅଛି । ଏହି ଦୋଷକୁ ପରିହାର କରି ବାକ୍ୟଗୁଡ଼ିକୁ ନିମ୍ନ ପ୍ରକାରେ ଲେଖାଯାଇପାରେ ।

"ପ୍ରସନ୍ନ ଭଲ ପାଠ ପଢ଼େ । ସେ ପାଠପଢ଼ା ସହିତ ଭଲ ଖେଳେ । ତେଣୁ ତା'ର ସାଥୀମାନେ ତାକୁ ଆଦର କରନ୍ତି । ତା'ଠାରେ ମଧ୍ୟ ଆହୁରି ଅନେକ ଭଲଗୁଣ ଅଛି ।"

ଏହି ଅନୁଚ୍ଛେଦରେ ପ୍ରସନ୍ନ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇଛି । ଅନ୍ୟ ଚାରୋଟି ପ୍ରସନ୍ନ ସ୍ଥାନରେ ସେ ତା'ର, ତାକୁ ଓ ତା'ଠାରେ ପଦ ବସିଅଛି । ଏହି ଆଲୋଚନାରୁ ଜଣାଗଲା ଯେ-

ଏକ ପଦ ପରିବର୍ତ୍ତେ ଯେଉଁ ପଦ ବ୍ୟବହାର କରାଯାଏ, ତାକୁ ସର୍ବନାମ କହନ୍ତି ।

ସର୍ବନାମ ପଦ ବାକ୍ୟର ପୁନରୁକ୍ତି ଓ ଶ୍ରୁତିକଟୁ ଦୋଷ ଦୂର କରି ତାହାର ଶ୍ରୁତିମଧୁରତା ଓ ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ;

ସର୍ବନାମ ପଦର ବ୍ୟବହାର-

ସାଧାରଣତଃ ବିଶେଷ୍ୟ ପଦ ବଦଳରେ ସର୍ବନାମ ପଦ ବସେ । ମାତ୍ର କେତେକ କ୍ଷେତ୍ରରେ ବିଶେଷଣ, ବାକ୍ୟାର୍ଥ ବା ବାକ୍ୟ ପରିବର୍ତ୍ତେ ବ୍ୟବହୃତ ହୋଇଥାଏ । ଯଥା-

୧ । ବିଶେଷ୍ୟ ପରିବର୍ତ୍ତେ-

ଈଶ୍ୱର ଦୟାଳୁ । ସେ ସର୍ବମଙ୍ଗଳକାରୀ ।

ସେ 'ଈଶ୍ୱର' ବିଶେଷ୍ୟ ପଦ ପରିବର୍ତ୍ତେ ବ୍ୟବହୃତ ।

୨ । ବିଶେଷଣ ପରିବର୍ତ୍ତେ-

ପିତା ଚତୁର, କିନ୍ତୁ ପୁତ୍ର ସେପରି ନୁହେଁ ।

ବିଭୀଷଣ ଧାର୍ମିକ ଥିଲେ, ମାତ୍ର ରାବଣ ତାହା ନ ଥିଲେ ।

'ସେପରି' ଓ 'ତାହା' ଯଥାକ୍ରମେ ବିଶେଷଣ ପଦ ଚତୁର ଓ ଧାର୍ମିକ ବିଶେଷଣ ପଦ ବଦଳରେ ବ୍ୟବହୃତ ।

୩ । ବାକ୍ୟ ପରିବର୍ତ୍ତେ-

ପଣ୍ଡିତ ଜବାହରଲାଲ ନେହେରୁ ଜଣେ ପ୍ରବୀଣ ରାଜନୀତିଜ୍ଞ ଥିଲେ, ଆଜି ମଧ୍ୟ ଲୋକେ ଏହା ସ୍ୱୀକାର କରୁଛନ୍ତି ।

ଏଠାରେ 'ପଣ୍ଡିତ...ଥିଲେ' ଏହି ବାକ୍ୟ ପରିବର୍ତ୍ତେ 'ଏହା' ସର୍ବନାମ ପଦଟି ବ୍ୟବହୃତ ।

୪ । ବାକ୍ୟାର୍ଥ ପରିବର୍ତ୍ତେ-

କବି ଜୟଦେବ ଜଗନ୍ନାଥଙ୍କର ପରମ ଭକ୍ତ, ଏହା କାହାକୁ ଅଜଣା ନାହିଁ ।

'ଏହା' ସର୍ବନାମ ପଦ । 'କବି ଜୟଦେବ ଜଗନ୍ନାଥଙ୍କର ପରମ ଭକ୍ତ' ଏହି ବାକ୍ୟାର୍ଥ ପରିବର୍ତ୍ତେ ବ୍ୟବହୃତ ହୋଇଛି ।

## ସର୍ବନାମର ଶ୍ରେଣୀ ବିଭାଗ

**୧ । ପୁରୁଷବାଚକ ବା ବ୍ୟକ୍ତିବାଚକ ସର୍ବନାମ :**

ମୁଁ, ଆମେ, ଆମ୍ଭେମାନେ, ତୁ, ତୁମେ, ତୁମ୍ଭେମାନେ, ସେ, ସେମାନେ, ଆପଣ ଓ ଆପଣମାନେ ସର୍ବନାମ ପଦଗୁଡ଼ିକ ବିଭିନ୍ନ ପୁରୁଷର ବ୍ୟକ୍ତିମାନଙ୍କ ବଦଳରେ ବ୍ୟବହୃତ ହୁଅନ୍ତି । ତେଣୁ ଏଗୁଡ଼ିକୁ ପୁରୁଷବାଚକ ବା ବ୍ୟକ୍ତିବାଚକ ସର୍ବନାମ କୁହାଯାଏ । ଏହା ତିନି ଭାଗରେ ବିଭକ୍ତ ।

ଉଦାହରଣ-

୧ । ପ୍ରଥମ ପୁରୁଷ – ମୁଁ ଜଣେ ଛାତ୍ର । ଆମ୍ଭେମାନେ ଭାରତବାସୀ ।

୨ । ଦ୍ୱିତୀୟ ପୁରୁଷ – ତୁ ସତ କହୁଛୁ । ତୁମ୍ଭେମାନେ ବ୍ୟାୟାମ କର ।
ତୁମେ ମୋର ବନ୍ଧୁ । ଆପଣ ମୋ କଥା ଶୁଣନ୍ତୁ ।

୩ । ତୃତୀୟ ପୁରୁଷ – ସେ ମୋର ଭାଇ । ସେମାନେ ଗ୍ରାମବାସୀ ।
କଳାଅକ୍ଷରର ପଦଗୁଡ଼ିକ ଗୋଟିଏ ଗୋଟିଏ ପୁରୁଷବାଚକ ସର୍ବନାମ ।

**୨ । ପ୍ରଶ୍ନବାଚକ ସର୍ବନାମ :**

ଯେଉଁ ସର୍ବନାମ ପଦଗୁଡ଼ିକ ପ୍ରଶ୍ନ ପଚାରିବା ପାଇଁ ଉଦ୍ଦିଷ୍ଟ ସେଗୁଡ଼ିକୁ ପ୍ରଶ୍ନବାଚକ ସର୍ବନାମ କହନ୍ତି ।

ଉଦାହରଣ-

(କ) ଦେଶର ପ୍ରଧାନ ମନ୍ତ୍ରୀଙ୍କ ନାମ **କ'ଣ** ?

(ଖ) **ତୁମେ** କିଏ ?

(ଗ) **କିଏ** କହେ ଉତ୍କଳ ଦରିଦ୍ର ?

(ଘ) **କେଉଁ** ଗ୍ରାମରେ ତୁମର ଘର ?

(ଙ) ପିଲାମାନେ ସବୁଦିନ **କେଉଁଠି** ଖେଳୁଛନ୍ତି ?

(ଚ) ମୁଁ ଥାଉଥାଉ ତୁମର ଦୁଃଖ **କାହିଁକି** ?

(ଛ) ଆପଣ **କାହାକୁ** ଡାକୁଛନ୍ତି ?

କଳାଅକ୍ଷରର ପଦଗୁଡ଼ିକ ପ୍ରଶ୍ନବାଚକ ସର୍ବନାମ ।

**୩ । ନିର୍ଦ୍ଦେଶାତ୍ମକ ସର୍ବନାମ :**

ଯେଉଁ ସର୍ବନାମ ପଦଗୁଡ଼ିକ ବାକ୍ୟରେ ବ୍ୟବହୃତ ହୋଇ ବିଶେଷ୍ୟପଦମାନଙ୍କୁ ନିର୍ଦ୍ଦେଶ କରିଥା'ନ୍ତି, ସେମାନଙ୍କୁ ନିର୍ଦ୍ଦେଶାତ୍ମକ ସର୍ବନାମ କହନ୍ତି ।

ଉଦାହରଣ- (କ) **ଏ** ଲୋକଟି ଚରିତ୍ରବାନ୍ । (ଖ) **ଏହି** ଗ୍ରାମରେ ମୋର ଜନ୍ମ । (ଗ) **ସେ** ମଣିଷ ନୁହେଁ, ଗୋଟାଏ ପଶୁ । (ଘ) **ସେହି** ଶିକ୍ଷକ ନମସ୍ୟ । (ଙ) **ତା'** କଥା ମୋତେ କହନା ।

କଳା ଅକ୍ଷରର ସର୍ବନାମ 'ଏ' ଲୋକ, 'ଏହି' ଗ୍ରାମ, 'ସେ' ମଣିଷ, 'ସେହି' ଶିକ୍ଷକ ଓ 'ତା' କଥା ବିଶେଷ୍ୟ ପଦକୁ ନିର୍ଦ୍ଦେଶ କରୁଥିବାରୁ ନିର୍ଦ୍ଦେଶାତ୍ମକ ସର୍ବନାମ ।

**୪ । ଆପେକ୍ଷିକ ବା ସମ୍ବନ୍ଧବାଚକ ସର୍ବନାମ :**

ଯେଉଁ ସର୍ବନାମ ପଦସମୂହ ବାକ୍ୟରେ ପରସ୍ପରକୁ ଅପେକ୍ଷା କରନ୍ତି ବା ସମ୍ବନ୍ଧ ସ୍ଥାପନ କରନ୍ତି, ସେଗୁଡ଼ିକୁ ଆପେକ୍ଷିକ ସର୍ବନାମ ବା ସମ୍ବନ୍ଧ ବାଚକ ସର୍ବନାମ କୁହାଯାଏ ।

ଉଦାହରଣ-

**ଯେ** ଦେଶ ଯାଇ, **ସେ** ଫଳ ଖାଇ ।

**ଯାହା** ଅନ୍ୟର ହିତକାରକ, **ତାହା** ହିଁ ମଙ୍ଗଳ ।

**ଯେତିକି** ପାରୁଛ, **ସେତିକି** କାମ କର ।

**ଯେପରି** କର୍ମ, **ସେପରି** ଫଳ ।

**ଯାହାର** ଲୁଣ ଖାଇବ, **ତାହାର** ଗୁଣ ଗାଇବ ।

ଉଦାହରଣମାନଙ୍କରେ ଯେ-ସେ, ଯାହା-ତାହା, ଯେତିକି-ସେତିକି, ଯେପରି-ସେପରି, ଯାହାର-ତାହାର, ପଦଗୁଡ଼ିକ ଆପେକ୍ଷିକ ସର୍ବନାମ ।

**୫ । ନିର୍ଣ୍ଣାୟକ ସର୍ବନାମ :**

ଯେଉଁ ସର୍ବନାମ ପଦ ବାକ୍ୟରେ ବ୍ୟବହୃତ ହୋଇ ବିଶେଷ୍ୟ ପଦକୁ ନିର୍ଣ୍ଣୟ କରିଥାଏ, ତାହାକୁ ନିର୍ଣ୍ଣାୟକ ସର୍ବନାମ କହନ୍ତି ।

ଉଦାହରଣ-

(କ) ରାକେଶ ଓ ଦିନେଶ ଦୁଇ ସାଙ୍ଗ, **ଉଭୟେ** ଭଲ ପାଠ ପଢ଼ନ୍ତି ।

(ଖ) ସଂସାରରେ ଯେତେ ଲୋକ ଅଛନ୍ତି, **ପ୍ରତ୍ୟେକଙ୍କର** ଚରିତ୍ର ସମାନ ନୁହେଁ ।

(ଗ) ତୁମେ **ସବୁ** କଥାରେ ମୁଣ୍ଡ ଖେଳାଅ ନାହିଁ ।

(ଘ) ଗତ ରାତିରେ ଚୋରମାନେ ତାଙ୍କର **ସମସ୍ତ** ଧନସମ୍ପତ୍ତି ନେଇଗଲେ ।

(ଙ) **ଅନ୍ୟ** ଲୋକକୁ ସମ୍ମାନ ଦେଲେ ନିଜର ସମ୍ମାନ ବଢ଼େ ।

(ଚ) **ଅପର** ବ୍ୟକ୍ତିର ଦୁଃଖରେ ଯେ ଦୁଃଖୀ, ସେ ହିଁ ପ୍ରକୃତରେ ସାଧୁ ।

(ଛ) କଥା ଏତିକିରେ ଥାଉ, **ଆର** ଥରକୁ ଆରମ୍ଭ କରିବା ।

କଳାଅକ୍ଷରର ପଦଗୁଡ଼ିକ ନିର୍ଣ୍ଣାୟକ ସର୍ବନାମ ।

**୬ । ଆତ୍ମବାଚକ ସର୍ବନାମ :**

ବ୍ୟକ୍ତିବିଶେଷ ପରିବର୍ତ୍ତେ ବ୍ୟବହୃତ, ନିଜ, ନିଜେ, ଆପେ, ଆପଣା ପ୍ରଭୃତି ସର୍ବନାମ ପଦକୁ ଆତ୍ମବାଚକ ସର୍ବନାମ କହନ୍ତି ।

ଉଦାହରଣ-

**ଆପଣା** କଲା କର୍ମମାନ, ଆଗୁ ହୋଇବ ସାବଧାନ ।

କିଏ ତୁମେ ଚିହ୍ନିଛ କି **ଆପଣାକୁ ଆପେ** ?

**ନିଜର** ଦୁଷ୍କୃତିପାଇଁ **ନିଜେ** ପ୍ରାୟଶ୍ଚିତ କରିବା ଦରକାର ।

**୭ । ସମୁଚ୍ଚୟୀ ସର୍ବନାମ ବା ସମୁଚ୍ଚୟବୋଧକ ସର୍ବନାମ :**

ଯେଉଁ ସର୍ବନାମ ପଦ ବିଶେଷ୍ୟ ପଦ ପରିବର୍ତ୍ତେ ବ୍ୟବହୃତ ହେବା ସହିତ ଦୁଇଟି ବାକ୍ୟକୁ ସଂଯୋଗ କରିଥାଏ, ତାକୁ ସମୁଚ୍ଚୟୀ ସର୍ବନାମ କୁହାଯାଏ ।

ଉଦାହରଣ- ଆଜି ଗୋପବନ୍ଧୁ ଆଉ ନାହାନ୍ତି, **ଯେ** ବନ୍ୟା ସମୟରେ ଘରଘର ବୁଲି ଲୋକଙ୍କ ଦୁଃଖ ବୁଝୁଥିଲେ ।

ଏମିତି ଲୋକ କେହି ନାହିଁ, **ଯେ** ଜୀବନରେ ଥରକପାଇଁ ମିଛ କହିନାହିଁ ।

କଳାଅକ୍ଷରରେ ପଦ 'ଯେ' ସମୁଚ୍ଚୟୀ ସର୍ବନାମ ।

ସମୁଚ୍ଚୟୀ ସର୍ବନାମ ପଦର ଅନ୍ୟ କେତେକ ଉଦାହରଣ-

(କ) ବହୁତ ଲୋକ **ଯହିଁ** ମିଳି, ଅବଶ୍ୟ ଉପୁଜଇ କଳି ।

(ଖ) ଏପରି ଲୋକ ନାହିଁ, **ଯେ** ଜୀବନରେ କେବେ ମିଛ କହିନାହିଁ ।

(ଗ) **ତୁହି** ମୋର ନେତ୍ରର ସଂଖାଳି ।

(ଘ) ଭବିତବ୍ୟ **ଯାହା** ଅବଶ୍ୟ ଘଟିବ କେ କରିପାରିବ ଆନ ।

(ଙ) **କେହୁ** ବୋଲେ ରାମ **କେ** ବୋଲଇ କୃଷ୍ଣ **କିଏ** କହେ ଆଲ୍ଲାଯୀଶୁ ।

(ଚ) **ଯେଣେ** ଇଚ୍ଛା **ତେଣେ** ଯା, କର୍ମ ଘେନି ବୁଲୁଥା ।

(ଛ) ଈଶ୍ୱର ଏଠି, **ସେଠି**, **ସେବୁଠି** ଅଛନ୍ତି ।

(ଜ) ମୋର ଆରତ କର୍ଣ୍ଣେ ଶୁଣି, **ଏଥି** ବିଜୟ ବେନୁପାଣି ।

ମୁଁ, ଆମ୍ଭେମାନେ ପ୍ରଥମ ପୁରୁଷ; ତୁ, ତୁମେ, ତୁମ୍ଭେମାନେ, ଆପଣ, ଆପଣମାନେ ଦ୍ୱିତୀୟ ପୁରୁଷର ସର୍ବନାମ । ଏ ଦୁଇ ପୁରୁଷର ସର୍ବନାମକୁ ବାଦ୍ ଦେଲେ, ଅନ୍ୟ ସମସ୍ତ ସର୍ବନାମ ପଦ ତୃତୀୟ ପୁରୁଷର ଅନ୍ତର୍ଗତ ।

ବିଶେଷ୍ୟ ପଦ ବିଭକ୍ତି-ଯୁକ୍ତ ହେଲେ ଆକୃତିରେ ପରିବର୍ତ୍ତନ ଘଟେ ନାହିଁ; ମାତ୍ର ସର୍ବନାମ ପଦ ବିଭକ୍ତି ଯୁକ୍ତ ହେଲେ, ଆକୃତିରେ ପରିବର୍ତ୍ତନ ହୁଏ ।

ଉଦାହରଣ- ବିଶେଷ୍ୟ- ବାଳକ : ବାଳକଟି, ବାଳକକୁ, ବାଳକଦ୍ୱାରା, ବାଳକଠାରୁ, ବାଳକର, ବାଳକଠାରେ ।

ସର୍ବନାମ ପଦ : ମୁଁ-ମୋତେ, ମୋ'ଦ୍ୱାରା, ମୋ'ଠାରୁ, ମୋ'ର, ମୋ'ଠାରେ ।

ତୁ- ତୋତେ, ତୋ'ଦ୍ୱାରା, ତୋ'ଠାରୁ, ତୋ'ର, ତୋ'ଠାରେ ।

ସେ- ତାକୁ, ତା'ଦ୍ୱାରା / ତାହା ଦ୍ୱାରା, ତା'ଠାରୁ / ତାହାଠାରୁ, ତା'ର / ତାହାର, ତା'ଠାରେ / ତାହାଠାରେ ।

ପ୍ରତ୍ୟେକ ସର୍ବନାମ ପଦର ଯେତେଗୁଡ଼ିଏ ବିଭକ୍ତି ଓ ବଚନଗତ ରୂପ ଅଛି, ସେ ସମସ୍ତ ସର୍ବନାମ ପଦ ଅଟନ୍ତି । ଯଥା- ମୋତେ, ମୋହର; ତୋତେ, ତୋହର; ମୋର, ଆମର, ଆମ୍ଭଦ୍ୱାରା, ତୋଦ୍ୱାରା, ମୋଦ୍ୱାରା, ତାଦ୍ୱାରା, ତାହାଠାରୁ, ତୁମର, ତୁମଦ୍ୱାରା, ଆମକୁ, ତାକୁ, ତୁମକୁ ଇତ୍ୟାଦି ।

# ଅନୁଶୀଳନୀ

୧ । ସର୍ବନାମ ପଦ କାହାକୁ କହନ୍ତି ? ବାକ୍ୟରେ ଦୁଇଟି ସର୍ବନାମ ପଦର ଉଦାହରଣ ଦିଅ ।

୨ । ବାକ୍ୟରେ ସର୍ବନାମ ପଦ କାହିଁକି ବ୍ୟବହାର କରାଯାଏ ?

୩ । ସର୍ବନାମ ପଦ କେଉଁପଦ ପରିବର୍ତ୍ତେ ବ୍ୟବହୃତ ହୁଏ ?

୪ । ସର୍ବନାମ ପଦ କିପରି ବିଶେଷଣ ପଦ ପରିବର୍ତ୍ତେ ବ୍ୟବହୃତ ହୁଏ, ତିନୋଟି ଉଦାହରଣ ଦେଇ ବୁଝାଅ ।

୫ । ସମୁଚ୍ଚୟବୋଧକ ସର୍ବନାମ କାହାକୁ କୁହାଯାଏ, ତିନୋଟି ଉଦାହରଣ ଦିଅ ।

୬ । ଉପଯୁକ୍ତ ସର୍ବନାମ ପଦଦ୍ୱାରା ଶୂନ୍ୟସ୍ଥାନ ପୂରଣ କର ।

(କ) ଯାହାର ଲୁଣ ଖାଇବ, — ଗୁଣ ଗାଇବ ।

(ଖ) — କଥାକୁ, ନାଆ ପେଲିଦେଲି କଲିକତାକୁ ।

(ଗ) ଯାହା ହେବାର ଥିଲା, — ହିଁ ହେଲା ।

(ଘ) — ଦୋଷ ନ ଦେଖି, — ଦୋଷ ଦେବା ଭୁଲ ।

(ଙ) ତୁଚ୍ଛାକୁ — , ମୁଦି ନାହିଁ ଗୋଡ଼ କଚାଡୁ — ।

(ଚ) — ପରିଶ୍ରମ କରେ, — ଜୀବନରେ ସୁଖ ପାଏ ।

(ଛ) ଏପରି ଲୋକ କେହି ନାହିଁ, — ବିପଦ ସମୟରେ ଭଗବାନଙ୍କୁ ଡାକେନାହିଁ ।

୭ । ନିମ୍ନରେ ଦିଆଯାଇଥିବା ବାକ୍ୟଗୁଡ଼ିକରୁ ସର୍ବନାମ ପଦଗୁଡ଼ିକୁ ଚିହ୍ନାଇ ଦିଅ ।

(କ) ଯେ ଧର୍ମକୁ ରକ୍ଷା କରେ ତାକୁ ଧର୍ମ ରକ୍ଷା କରେ ।

(ଖ) ଏଇଟି ରାମଚରିତ ମାନସ; କାହାର ଏହି ବହି ?

(ଗ) ଡକ୍ଟର ରାଧାକୃଷ୍ଣନ ଆମର ରାଷ୍ଟ୍ରପତି ଥିଲେ ।

(ଘ) ଯେତେବେଳେ ଧର୍ମର ହାନିହୁଏ, ସେତେବେଳେ ଭଗବାନ୍ ମର୍ତ୍ତ୍ୟରେ ଆବିର୍ଭୂତ ହୁଅନ୍ତି ।

(ଙ) ପରପାଇଁ ଯେ ଗାତ ଖୋଳେ, ସେ ସେହି ଗାତରେ ପଡ଼େ ।

(ଚ) ଭାରତରେ ଏମିତି କେହି ଲୋକ ନାହିଁ, ଯେ ଗଙ୍ଗାନଦୀ ନାଁ ଶୁଣିନାହିଁ ।

(ଛ) ଆହେ ଦୟାମୟ ବିଶ୍ୱ ବିହାରୀ, ଘେନ ଦୟାବହି ମୋର ଗୁହାରି ।

(ଜ) ଭଗବତ୍ କୃପାରୁ ତାଙ୍କର ଦୁଃଖ ଦୁର୍ଦ୍ଦିନର ଅନ୍ତହେଲା ।

(ଝ) ସୀତା ଅଗ୍ନି ପରୀକ୍ଷା ଦେଇ ତାଙ୍କର ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ ।

(ଞ) ଯୁଧିଷ୍ଠିର ଧାର୍ମିକ ଥିଲେ, ମାତ୍ର ଦୁର୍ଯ୍ୟୋଧନ ତାହା ନଥିଲେ ।



# ବିଶେଷଣ

**ତଳ ବାକ୍ୟଗୁଡ଼ିକୁ ପଢ଼-**

୧ । **ସାଧୁ** ଲୋକ ସବୁଠାରେ ସମ୍ମାନ ପାଏ ।

୨ । **ଚିରା** ଓ **ମଇଳା** ପୋଷାକ ପିନ୍ଧ ନାହିଁ ।

୩ । ପ୍ରିୟଦର୍ଶୀ ମାସକୁ **ଶହେ** ଟଙ୍କା ବୃତ୍ତି ପାଏ ।

୪ । ବାପା ଦିନକୁ **ଲିଟରେ** ଦୁଧ ପିଅନ୍ତି ।

୫ । ଶାଶ୍ୱତୀ **ସପ୍ତମ** ଶ୍ରେଣୀରେ ପଢ଼େ ।

ଉପର ବାକ୍ୟ ଗୁଡ଼ିକରେ ଥିବା 'ସାଧୁ' ପଦଟି ଲୋକର ଗୁଣ, 'ଚିରା', 'ମଇଳା' ପୋଷାକର ଅବସ୍ଥା, 'ଶହେ' ଟଙ୍କାର ସଂଖ୍ୟା, 'ଲିଟରେ' ଦୁଧର ପରିମାଣ ଓ 'ସପ୍ତମ' ଶ୍ରେଣୀର ନିର୍ଦ୍ଦିଷ୍ଟତା ପ୍ରକାଶ କରୁଛି ।

ଏଥିରୁ ଜଣାଗଲା ଯେ ଯେଉଁ ପଦ ଅନ୍ୟ ପଦର ଗୁଣ, ଅବସ୍ଥା, ସଂଖ୍ୟା, ପରିମାଣ ଓ ନିର୍ଦ୍ଦିଷ୍ଟତା ପ୍ରକାଶ କରେ, ତାକୁ ବିଶେଷଣ ପଦ କହନ୍ତି ।

ଏଣୁ ବାକ୍ୟଗୁଡ଼ିକରେ ଥିବା ସାଧୁ, ଚିରା, ମଇଳା, ଶହେ, ଲିଟରେ ଓ ସପ୍ତମ ପଦଗୁଡ଼ିକ ବିଶେଷଣ ପଦ ।

## ବିଶେଷଣର ପ୍ରକାର :

ମୁଖ୍ୟତଃ ବିଶେଷଣ ପଦକୁ ନାମ ଓ ଭାବ ଦୃଷ୍ଟିରୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- ୧। ନାମ ବିଶେଷଣ, ୨। ଭାବ ବିଶେଷଣ ।

**ନାମ ବିଶେଷଣ-** ବିଶେଷ୍ୟ ଓ ସର୍ବନାମ ପଦକୁ ବିଶେଷିତ କରୁଥିବା ବିଶେଷଣ ପଦକୁ ନାମ ବିଶେଷଣ କୁହାଯାଏ । ବିଶେଷ୍ୟର ବିଶେଷଣ, ସର୍ବନାମର ବିଶେଷଣ, ସଂଖ୍ୟାବାଚକ ବିଶେଷଣ ଓ ପୂରଣବାଚକ ବିଶେଷଣ ନାମ ବିଶେଷଣର ଅନ୍ତର୍ଗତ ।

**ଭାବ ବିଶେଷଣ-** କ୍ରିୟାକୁ ବିଶେଷିତ କରୁଥିବା ବିଶେଷଣ ପଦକୁ ଭାବ ବିଶେଷଣ କହନ୍ତି । ବିଶେଷଣ, ଅବ୍ୟୟ ଓ ବାକ୍ୟକୁ ବିଶେଷିତ କରୁଥିବା ବିଶେଷଣ ପଦ ମଧ୍ୟ ଭାବ ବିଶେଷଣର ଅନ୍ତର୍ଭୁକ୍ତ ।

କାର୍ଯ୍ୟ, ଅବସ୍ଥିତି ଦୃଷ୍ଟିରୁ ବିଶେଷଣ ପଦକୁ ବିଭିନ୍ନ ଭାବରେ ବିଭକ୍ତ କରାଯାଏ । ନିମ୍ନରେ ସେସବୁର ଆଲୋଚନା କରାଯାଇଛି ।

**୧ । ଗୁଣବାଚକ ବିଶେଷଣ :**

ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦର ଗୁଣ ପ୍ରକାଶ କରେ, ତାହାକୁ ଗୁଣବାଚକ ବିଶେଷଣ କହନ୍ତି । ଏହାକୁ ମଧ୍ୟ ବିଶେଷ୍ୟର ବିଶେଷଣ କହନ୍ତି । ଯଥା-

**ରକ୍ତ** ମନ୍ଦାର, **ମଧୁର** ବଚନ, **ମହତ୍** ଜନ, **ନୀଳ** ନୟନ, **ପଣ୍ଡିତ** ଲୋକ, **ଦୟାଳୁ** ରାଜା, **ବିକାଶଶୀଳ** ରାଷ୍ଟ୍ର, **ଜନପ୍ରିୟ** ନେତା, **ମିଥ୍ୟାବାଦୀ** ମଣିଷ, **ଭୋକିଲା** ଭିକାରି । କଳା ଅକ୍ଷରର ପଦଗୁଡ଼ିକ ବିଶେଷଣ ପଦ ।

**୨ । ଅବସ୍ଥାବାଚକ ବିଶେଷଣ :**

ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦର ଅବସ୍ଥା ସୂଚାଏ, ତାକୁ ଅବସ୍ଥାବାଚକ ବିଶେଷଣ କହନ୍ତି । ଯଥା- **ଦୁର୍ବଳ** ଶରୀର, **ଅସୁସ୍ଥ** ମନ, **ଭଙ୍ଗା** ଦେଉଳ, **କୋହଲା** ପାଗ, **ମେଘୁଆ** ଆକାଶ, **ବେଗବତୀ** ନଦୀ, **କାଦୁଆ** ରାସ୍ତା, **ଶୁଖିଲା** ଜମି, **ଦରିଦ୍ର** ସୁଦାମା, **ପାଚିଲା** ଆମ୍ବ, **ପାଣିଆ** ଡାଲି, **ଟଟକା** ମାଛ, **ସଜ** ପରିବା ।

କଳା ଅକ୍ଷରର ବିଶେଷଣ ପଦଗୁଡ଼ିକ ପରବର୍ତ୍ତୀ ବିଶେଷ୍ୟ ପଦମାନଙ୍କର ଅବସ୍ଥା ପ୍ରକାଶ କରୁଛି ।

କେତେକ ବିଶେଷଣ ପଦ ଗୁଣବାଚକ କି ଅବସ୍ଥାବାଚକ ବିଶେଷଣ, ତାହା ନିର୍ଣ୍ଣୟ କରିବାରେ ସନ୍ଦେହ ସୃଷ୍ଟି ହୁଏ । ଯଥା- ଅନ୍ଧାର, ହତାଶ, କଠିନ, ମୁକ୍ତ, ଅସମ୍ପୂର୍ଣ୍ଣ, ସ୍ୱାଧୀନ, ନୂଆ, ଉତ୍ସାହୀ ଇତ୍ୟାଦି । ଏଣୁ ଉଭୟ ପ୍ରକାରକୁ କେହିକେହି ଗୁଣବାଚକ ବିଶେଷଣ ରୂପେ ଗ୍ରହଣ କରିଥା'ନ୍ତି ।

**୩ । ସଂଖ୍ୟାବାଚକ ବିଶେଷଣ :**

ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦର ସଂଖ୍ୟା ସୂଚାଏ, ତାକୁ ସଂଖ୍ୟାବାଚକ ବିଶେଷଣ କହନ୍ତି । ଯଥା-

**ବାର** ମାସରେ **ତେର** ଯାତ୍ରା ।

ଓଡ଼ିଶା ବିଧାନସଭାରେ **ଶହେ ସତଚାଳିଶ** ବିଧାୟକ ଅଛନ୍ତି ।

**ସହସ୍ର** ଦେବାଳୟ, **ଅଗଣିତ** ତାରକା, **ଅସଂଖ୍ୟ** ଭାବନା ।

ବାର, ତେର, ଶହେସତଚାଳିଶ, ସହସ୍ର, ଅଗଣିତ, ଅସଂଖ୍ୟ ପଦଗୁଡ଼ିକ ଯଥାକ୍ରମେ ମାସ, ଯାତ୍ରା, ବିଧାୟକ, ଦେବାଳୟ, ତାରକା ଓ ଭାବନା ବିଶେଷ୍ୟ ପଦର ସଂଖ୍ୟା ସୂଚାଉଥିବାର ସଂଖ୍ୟାବାଚକ ବିଶେଷଣ ପଦ ଅଟନ୍ତି ।

**୪ । ପରିମାଣବାଚକ ବିଶେଷଣ :**

ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦର ପରିମାଣ ବୁଝାଏ, ତାକୁ ପରିମାଣବାଚକ ବିଶେଷଣ କହନ୍ତି । ଯଥା-

**କମ୍** କଥା କହ, **ବେଶି** କାମ କର ।

**ବହୁତ** ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି ।

**ଅଳପ** ଧନ, ବିକଳ ମନ । **ଅମାପ** ଶକ୍ତି । **ବୋଝେ** ଆମ୍ବ ।

କଳାଅକ୍ଷରରେ ପଦଗୁଡ଼ିକ ଯଥାକ୍ରମେ କଥା, କାମ, ଲୋକ, ଧନ, ଶକ୍ତି ଓ ଆମ୍ବ ବିଶେଷ୍ୟପଦର ପରିମାଣବାଚକ ବିଶେଷଣ । ଅନ୍ୟ ଉଦାହରଣ- ପୋଷେ, ଗୋଟାଏ, ଆଞ୍ଜୁଳାଏ, ମୁହୂର୍ତ୍ତେ, ପ୍ରଭୂତ, ପ୍ରଚୁର, ବସ୍ତାଏ, ହେକ୍ଟରେ, ସାମାନ୍ୟ, ଢୋକେ ।

**୫ । ପୂରଣବାଚକ ବିଶେଷଣ :**

ଯେଉଁ ବିଶେଷଣ ପଦ ସଂଖ୍ୟାକୁ ନିଷ୍ପନ୍ନ ହୋଇ ସଂଖ୍ୟାର କ୍ରମିକତା ପ୍ରକାଶ କରିବା ସହିତ ବିଶେଷ୍ୟ ପଦର ନିର୍ଦ୍ଦିଷ୍ଟତା ପ୍ରକାଶ କରେ, ତାହାକୁ ପୂରଣ ବାଚକ ବିଶେଷଣ କହନ୍ତି । ଯଥା-

(କ) ପଞ୍ଚ ପାଣ୍ଡବଙ୍କ ମଧ୍ୟରେ ସହଦେବ **ପଞ୍ଚମ** ପାଣ୍ଡବ ଅଟନ୍ତି ।

(ଖ) ରାକେଶ ମାଟ୍ରିକ୍ ପରୀକ୍ଷାରେ **ପ୍ରଥମ** ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛି ।

(ଗ) ଭାଗବତର **ତୃତୀୟ** ସ୍କନ୍ଦରେ ଭଗବାନ୍ କପିଳଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ।

(ଘ) **ଚତୁର୍ଥ** ଧାଡ଼ିରେ ବସିଥିବା **ଦ୍ୱିତୀୟ** ବ୍ୟକ୍ତି ହେଉଛନ୍ତି ମୋର ବାପା ।

ପଞ୍ଚମ ପାଣ୍ଡବ କହିଲେ ଜନ୍ମ ବା ବୟସ ହିସାବରେ ଗଣିଲେ ପାଞ୍ଚ ସଂଖ୍ୟା ପଡୁଥିବା ପାଣ୍ଡବ, ପ୍ରଥମ ଶ୍ରେଣୀ କହିଲେ ଶ୍ରେଣୀଗୁଡ଼ିକୁ ଗଣିଲା ବେଳେ ଏକ ସଂଖ୍ୟା ପଡୁଥିବା ଶ୍ରେଣୀ, ତୃତୀୟ ସ୍କନ୍ଦ କହିଲେ, ଗଣତିରେ ଯେଉଁ ସ୍କନ୍ଦ ଉପରେ ତିନି ସଂଖ୍ୟା ଆସେ, ଚତୁର୍ଥ ଧାଡ଼ି କହିଲେ, ଗଣତିରେ ଯେଉଁ ଧାଡ଼ି ଉପରେ ଚାରି ସଂଖ୍ୟା ପଡ଼େ ଓ ଦ୍ୱିତୀୟ ବ୍ୟକ୍ତି କହିଲେ, ଯାହାଙ୍କର ଗଣନ ସଂଖ୍ୟା ଦୁଇ ଅଟେ ।

**କେତେକ ସଂଖ୍ୟାର ପୂରଣବାଚକ ବିଶେଷଣ :**

| | |
|---|---|
| ୧ – ପ୍ରଥମ | ୬ – ଷଷ୍ଠ |
| ୨ – ଦ୍ୱିତୀୟ | ୭ – ସପ୍ତମ |
| ୩ – ତୃତୀୟ | ୮ – ଅଷ୍ଟମ |
| ୪ – ଚତୁର୍ଥ | ୯ – ନବମ |
| ୫ – ପଞ୍ଚମ | ୧୦ – ଦଶମ |

| | |
|---|---|
| ୧୧ – ଏକାଦଶ | ୨୬ – ଷଡ଼ବିଂଶ |
| ୧୨ – ଦ୍ୱାଦଶ | ୨୭ – ସପ୍ତବିଂଶ |
| ୧୩ – ତ୍ରୟୋଦଶ | ୨୮ – ଅଷ୍ଟାବିଂଶ |
| ୧୪ – ଚତୁର୍ଦ୍ଦଶ | ୨୯ – ଊନତ୍ରିଂଶ |
| ୧୫ – ପଞ୍ଚଦଶ | ୩୦ – ତ୍ରିଂଶ |
| ୧୬ – ଷୋଡ଼ଶ | ୪୦ – ଚତ୍ୱାରିଂଶ |
| ୧୭ – ସପ୍ତଦଶ | ୫୦ – ପଞ୍ଚାଶତ୍ତମ |
| ୧୮ – ଅଷ୍ଟାଦଶ | ୬୦ – ଷଷ୍ଟିତମ |
| ୧୯ – ଊନବିଂଶ | ୭୦ – ସପ୍ତତିତମ |
| ୨୦ – ବିଂଶ | ୮୦ – ଅଶୀତିତମ |
| ୨୧ – ଏକବିଂଶ | ୯୦ – ନବତିତମ |
| ୨୨ – ଦ୍ୱାବିଂଶ | ୧୦୦ – ଶତତମ |
| ୨୩ – ତ୍ରୟୋବିଂଶ | ୧୦୦୦ – ସହସ୍ରତମ |
| ୨୪ – ଚତୁର୍ବିଂଶ | ୧୦୦୦୦୦ – ଲକ୍ଷତମ |
| ୨୫ – ପଞ୍ଚବିଂଶ | ୧୦୦୦୦୦୦୦ – କୋଟିତମ |

୬ । **ବିଶେଷଣର ବିଶେଷଣ :**

ଯେଉଁ ବିଶେଷଣ ଅନ୍ୟ ଏକ ବିଶେଷଣର ଗୁଣ, ମାତ୍ରା, ଅବସ୍ଥା ବା ଆଧିକ୍ୟ ପ୍ରକାଶ କରେ, ତାହାକୁ ବିଶେଷଣର ବିଶେଷଣ କୁହାଯାଏ । ଯଥା–

**ପରମ** ଧାର୍ମିକ ଯୁଧିଷ୍ଠିର, **ଅତି** ମନୋହର କାଳ, **ବଡ଼** କୁହାଳିଆ ଲୋକ, **ଅଧିକ** ଗରମ ପବନ, **ଭାରି** ମଜା କାହାଣୀ, **ଅତ୍ୟନ୍ତ** କଟୁ କଥା, **ନିହାତି** ଦୁଷ୍ଟ ପିଲା, **ନିପଟ** ମଫସଲିଆ ଲୋକ ।

ପରମ, ଅତି, ବଡ଼, ଅଧିକ, ଭାରି, ଅତ୍ୟନ୍ତ, ନିହାତି, ନିପଟ ବିଶେଷଣ ପଦଗୁଡ଼ିକ ଯଥାକ୍ରମେ ଧାର୍ମିକ, ମନୋହର, କୁହାଳିଆ, ଗରମ, ମଜା, କଟୁ, ଦୁଷ୍ଟ ଓ ମଫସଲିଆ ବିଶେଷଣ ପଦର ପୂର୍ବରେ ବସି ବିଶେଷତ୍ୱ ପ୍ରକାଶ କରୁଥିବାରୁ ବିଶେଷଣର ବିଶେଷଣ ପଦ ଅଟନ୍ତି ।

୭ । **କ୍ରିୟା ବିଶେଷଣ :**

ଯେଉଁ ବିଶେଷଣ ପଦ କ୍ରିୟା ପଦକୁ ବିଶେଷିତ କରେ ଅଥବା କ୍ରିୟାର ଗୁଣ, ଅବସ୍ଥା ପ୍ରକାଶ କରେ, ତାହାକୁ କ୍ରିୟାବିଶେଷଣ କହନ୍ତି । ଯଥା–

ବୁଢ଼ା **ଧୀରେ** ଚାଲୁଛି । ନିଆଁ **ହୁତୁହୁତୁ** ଜଳୁଛି । ପିଲାଟି **ଜୋର୍‌ରେ** କାନ୍ଦୁଛି । ତୁମେ **ସଅଳ** ଆସିବ । ଦୀପ **ମିଞ୍ଜିମିଞ୍ଜି** ଜଳୁଛି । ପବନ **ମନ୍ଦମନ୍ଦ** ବହୁଛି । ହରିଣ **ଚଞ୍ଚଳ** ଦୌଡ଼ିପାରେ । ସମୁଦ୍ର **ଘୁଘୁ** ଗର୍ଜୁଛି ।

ଏହିସବୁ ବାକ୍ୟଗୁଡ଼ିକରେ ଧୀରେ, ହୁତୁହୁତୁ, ଜୋର୍‌ରେ, ସଅଳ, ମିଞ୍ଜିମିଞ୍ଜି, ମନ୍ଦମନ୍ଦ, ଚଞ୍ଚଳ ଓ ଘୁଘୁ ପଦଗୁଡ଼ିକ ଯଥାକ୍ରମେ ଚାଲୁଛି, ଜଳୁଛି, କାନ୍ଦୁଛି, ଆସିବ, ଜଳୁଛି, ବହୁଛି, ଦୌଡ଼ିପାରେ ଓ ଗର୍ଜୁଛି କ୍ରିୟା ପଦକୁ ବିଶେଷିତ କରୁଛି । ଏଣୁ ଏଗୁଡ଼ିକ କ୍ରିୟାବିଶେଷଣ ।

ସ୍ୱତନ୍ତ୍ର ଅଧ୍ୟାୟରେ ବିଭିନ୍ନ ଭାବରେ ବ୍ୟବହୃତ କ୍ରିୟାବିଶେଷଣ ସଂପର୍କରେ ଆଲୋଚନା କରାଯିବ ।

### ୮ । କ୍ରିୟାବିଶେଷଣର ବିଶେଷଣ :

ଯେଉଁ ବିଶେଷଣ ପଦ କ୍ରିୟାବିଶେଷଣ ପଦକୁ ବିଶେଷିତ କରେ, ତାକୁ କ୍ରିୟାବିଶେଷଣର ବିଶେଷଣ କୁହାଯାଏ । ଯଥା-

୧ । ଶୈଳେଶ **ଅତି** ବେଗରେ ଦୌଡୁଛି ।

୨ । **ଖୁବ୍** ଜୋର୍‌ରେ ପବନ ବହୁଛି ।

'ଅତି' ବେଗରେ ଓ 'ଖୁବ୍' ଜୋର୍‌ରେ କ୍ରିୟାବିଶେଷଣ ପଦର ବିଶେଷତ୍ୱ ପ୍ରକାଶ କରୁଥିବାରୁ କ୍ରିୟା ବିଶେଷଣର ବିଶେଷଣ ପଦ ଅଟନ୍ତି ।

### ୯ । କ୍ରିୟାଜ ବିଶେଷଣ :

କ୍ରିୟାରୁ ଜାତ ବା ଗଠିତ ବିଶେଷଣ ପଦ ବିଶେଷ୍ୟ ପଦକୁ ବିଶେଷିତ କରୁଥିଲେ, ତାକୁ କ୍ରିୟାଜ ବିଶେଷଣ କୁହାଯାଏ । ଅର୍ଥାତ୍ କ୍ରିୟା ଧାତୁ ନିଷ୍ପନ୍ନ ବିଶେଷକୁ କ୍ରିୟାଜ ବିଶେଷଣ କୁହାଯାଏ । ଏହି ବିଶେଷଣ ବିଶେଷ୍ୟ ପଦର କ୍ରିୟା ବା କାର୍ଯ୍ୟର ଅବସ୍ଥା ସୂଚିତ କରେ । ଏଗୁଡ଼ିକ ଧାତୁ ବା କ୍ରିୟାର ମୂଳ ଉପରେ ପ୍ରତ୍ୟୟ ଯୋଗଦ୍ୱାରା ଗଠିତ ହୋଇଥିବାରୁ କୃଦନ୍ତ ପଦ ଅଟନ୍ତି ।

ଉଦାହରଣ- ପାଗଳଟି **ଚଳନ୍ତା** ଗାଡ଼ିରୁ ପଡ଼ିଗଲା । (ଚଳ୍+ଅନ୍ତା)

ଇଏ **ଉଡ଼ନ୍ତା** ଚଢ଼େଇର ପର ଗଣିବା ପିଲା । (ଉଡ୍+ଅନ୍ତା)

**ଜଳନ୍ତା** ନିଆଁରେ କୁଟା ପକାଅ ନାହିଁ । (ଜଳ୍+ଅନ୍ତା)

**ବହନ୍ତା** ନଈ, **ଜୀଅନ୍ତା** ମାଛ, **ବଢ଼ନ୍ତା** ଶିଶୁ, **ଫୁଟନ୍ତା** ଫୁଲ, **ମଲା** ପୁଅର ଗଳା ମୋଟ । **ହଜିଲା** ବଳଦ **ଖୋଜିଲା** ଠେଇଁ । **କହିବା** ଲୋକ ତ ମହତ ନୁହେଁଇ, **ସହିବା** ମହତ ଜନ । **ଖାଇବାର** ବେଳା ଗଡ଼ିଯାଉଛି । **କହୁଥିବା** ଲୋକ କହୁଥିବ, **ଶୁଣୁଥିବା** ଲୋକ ଶୁଣୁଥିବ । **ପଢ଼ିଥିବା** ପାଠ ମୋର ଆଉ ମନେ ନାହିଁ ।

ଉପରଲିଖିତ କଳା ଅକ୍ଷରର କ୍ରିୟାଜବିଶେଷଣ ପଦଗୁଡ଼ିକ ପରବର୍ତ୍ତୀ ବିଶେଷ୍ୟ ପଦମାନଙ୍କର ବିଶେଷତ୍ୱ ପ୍ରକାଶ କରୁଛନ୍ତି ।

**୧୦ । ସାର୍ବନାମିକ ବିଶେଷଣ ବା ସର୍ବନାମ ବିଶେଷଣ :**

ସର୍ବନାମ ପଦ ବିଶେଷ୍ୟ ପଦକୁ ନିର୍ଦ୍ଦେଶ କଲେ, ତାକୁ ସାର୍ବନାମିକ ବିଶେଷଣ କହନ୍ତି । ଅର୍ଥାତ୍ ସର୍ବନାମ ପଦ ବିଶେଷଣର କାର୍ଯ୍ୟ କଲେ, ତାହା ସାର୍ବନାମିକ ବିଶେଷଣ ।

ଯଥା- କି ଥିଲା ଏ ରାଜ୍ୟ । **ଏଇ** କଥାକୁ, ନାଆ ପେଲିଦେଲି କଲିକତାକୁ । **ଏହି** ଦେଶ ଆମ ଭାରତ । **ସେହି** କଥାରେ ମୁଣ୍ଡ ପୂରାଅ ନାହିଁ । **କେଉଁ** କଲମଟି ତୁମର ? **ଏପରି** ଘଟଣା ମୋ କାନ ଉଠିବାଠୁ ଶୁଣି ନ ଥିଲି । **ଏମନ୍ତ** ବିଚାର କରନ୍ତେ ଏଣେ...। **ସେପରି** ଲୋକ, **ଯେମିତି** କାମ **ସେମିତି** ଫଳ ।

କଳା ଅକ୍ଷରର ସର୍ବନାମ ପଦଗୁଡ଼ିକ ପରବର୍ତ୍ତୀ ବିଶେଷ୍ୟ ପଦଗୁଡ଼ିକୁ ନିର୍ଦ୍ଦିଷ୍ଟ କରୁଥିବାରୁ ସାର୍ବନାମିକ ବିଶେଷଣ ଅଟନ୍ତି ।

**୧୧ । ସର୍ବନାମର ବିଶେଷଣ :**

ଯେଉଁ ବିଶେଷଣ ପଦ ସର୍ବନାମ ପଦର ପରେ ବ୍ୟବହୃତ ହୋଇ ସର୍ବନାମ ପଦକୁ ବିଶେଷିତ କରେ, ତାହା ସର୍ବନାମର ବିଶେଷଣ । ଯଥା-

ସେ **ଧାର୍ମିକ** । ତୁମେ **ପରୋପକାରୀ** । ମୁଁ **ନିର୍ଭୀକ** । ଆପଣମାନେ **ଦେଶପ୍ରେମୀ** । ଆମ୍ଭେମାନେ **ଧନୀ** ନୋହୁ । ଏଗୁଡ଼ିକ **ନୂଆ** ନୁହେଁ ।

କଳା ଅକ୍ଷରର ପଦଗୁଡ଼ିକ ପୂର୍ବବର୍ତ୍ତୀ ସର୍ବନାମ ପଦମାନଙ୍କର ବିଶେଷତ୍ୱ ପ୍ରକାଶ କରୁଥିବାରୁ ସର୍ବନାମର ବିଶେଷଣ ଅଟନ୍ତି । ସାର୍ବନାମିକ ବିଶେଷଣରେ ସର୍ବନାମ ପଦ ବିଶେଷ୍ୟ ପଦ ପୂର୍ବରୁ ରହି ବିଶେଷଣର କାର୍ଯ୍ୟ କରେ; ମାତ୍ର ସର୍ବନାମର ବିଶେଷଣରେ ବିଶେଷଣ ପଦ ସର୍ବନାମ ପଦ ପରେ ରହି ସର୍ବନାମ ପଦକୁ ବିଶେଷିତ କରିଥାଏ ।

**୧୨ । ଅବ୍ୟୟର ବିଶେଷଣ :**

ଯେଉଁ ବିଶେଷଣ ପଦ ଅବ୍ୟୟ ପଦକୁ ବିଶେଷିତ କରେ, ତାହା ଅବ୍ୟୟର ବିଶେଷଣ ।

ଯଥା- (୧) ଜଗନ୍ନାଥ ଦାସ ସ୍ୱପ୍ନରେ ଦେଖିଲେ, **ଠିକ୍** ଯେମିତି ନିଜେ ଜଗନ୍ନାଥ ତାଙ୍କ ସମ୍ମୁଖରେ ଠିଆହୋଇ କହୁଛନ୍ତି ।

(୨) ପୁଅଟି **ଅବିକଳ** ତା ବାପ ପରି ।

ଏହି ବାକ୍ୟ ଦୁଇଟିରେ 'ଠିକ୍' ପଦଟି, 'ଯେମିତି' ଅବ୍ୟୟ ପଦର ଏବଂ 'ଅବିକଳ' ପଦଟି 'ପରି' ଅବ୍ୟୟ ପଦର ବିଶେଷତ୍ୱ ବୁଝାଉଥିବାରୁ ଏଗୁଡ଼ିକ ଅବ୍ୟୟର ବିଶେଷଣ ଅଟନ୍ତି ।

**୧୩ । ବାକ୍ୟର ବିଶେଷଣ :**

ଯେଉଁ ବିଶେଷଣ ପଦ ଗୋଟିଏ ବାକ୍ୟର ଅର୍ଥକୁ ବିଶେଷିତ କରେ ତାହା ବାକ୍ୟର ବିଶେଷଣ । ଯଥା-

(୧) **ନିଶ୍ଚୟ** ମୁଁ ଏ ବର୍ଷ ରାମେଶ୍ୱର ଯିବି ।

(୨) **ସତେ** ଭାରତ ହକିରେ ପୂର୍ବ ଗୌରବ ଫେରିପାଇବ ?

(୩) **ଅବଶ୍ୟ** ଦିନେ ନା ଦିନେ ଓଡ଼ିଶାର ଦାରିଦ୍ର୍ୟ ଦୂର ହେବ ।

ପ୍ରଥମ ବାକ୍ୟରେ 'ନିଶ୍ଚୟ' ପଦଟି 'ମୁଁ ଏ ବର୍ଷ ରାମେଶ୍ୱର ଯିବି' ବାକ୍ୟକୁ, ଦ୍ୱିତୀୟ ବାକ୍ୟରେ 'ସତେ' ପଦଟି 'ଭାରତ ହକିରେ ପୂର୍ବ ଗୌରବ ଫେରିପାଇବ' ବାକ୍ୟକୁ ଓ 'ଅବଶ୍ୟ' ପଦଟି 'ଦିନେ ନା ଦିନେ ଓଡ଼ିଶାର ଦାରିଦ୍ର୍ୟ ଦୂର ହେବ' ବାକ୍ୟକୁ ନିଶେଷିତ କରୁଅଛି । ତେଣୁ ନିଶ୍ଚୟ, ସତେ, ଅବଶ୍ୟ ପଦଗୁଡ଼ିକ ବାକ୍ୟର ବିଶେଷଣ ।

**୧୪ । ତୁଳନାତ୍ମକ ବିଶେଷଣ :**

ଦୁଇ ବା ତତୋଽଧିକ ବିଶେଷ୍ୟ ପଦ ମଧ୍ୟରେ ତୁଳନା କରିବାପାଇଁ ଯେଉଁ ବିଶେଷଣ ପଦ ବ୍ୟବହୃତ ହୁଏ, ତାହାକୁ ତୁଳନାତ୍ମକ ବିଶେଷଣ କହନ୍ତି, ଯଥା-

୧ । ରାମ ହରିଠାରୁ ଉଚ୍ଚତାରେ **କ୍ଷୁଦ୍ରତର** ।

୨ । ପୂର୍ଣ୍ଣେନ୍ଦୁ ଶ୍ରେଣୀରେ **କ୍ଷୁଦ୍ରତମ** ବାଳକ ।

୩ । ବିନ୍ଧ୍ୟ ପର୍ବତ କପିଳାସଠାରୁ **ଉଚ୍ଚତର** ।

୪ । ହିମାଳୟ ପୃଥିବୀର **ଉଚ୍ଚତମ** ପର୍ବତ ।

୫ । ସାଧାରଣ ଜୀବନ ଅପେକ୍ଷା ଦେଶ ସେବାରେ ଜୀବନ ହୁଏ **ମହୀୟାନ୍** ।

୬ । ସଂଖ୍ୟା **ଗରିଷ୍ଠ** ମତ ଗଣତନ୍ତ୍ରକୁ ସୁଦୃଢ଼ ଓ ସଫଳ କରେ ।

'କ୍ଷୁଦ୍ରତର' ଅର୍ଥ ଦୁଇଜଣଙ୍କ ମଧ୍ୟରେ କ୍ଷୁଦ୍ର, 'କ୍ଷୁଦ୍ରତମ' ଅର୍ଥ ସମସ୍ତଙ୍କ ମଧ୍ୟରେ କ୍ଷୁଦ୍ର । ଉଦାହରଣ ଗୁଡ଼ିକରେ ଦତ୍ତ କ୍ଷୁଦ୍ରତର, କ୍ଷୁଦ୍ରତମ, ଉଚ୍ଚତର, ଉଚ୍ଚତମ, ମହୀୟାନ୍ (ଦୁଇ ଜଣଙ୍କ ମଧ୍ୟରେ ମହତ୍) ଓ ଗରିଷ୍ଠ (ସମସ୍ତଙ୍କ ମଧ୍ୟରେ ଗୁରୁ) ପ୍ରଭୃତି ପଦଗୁଡ଼ିକ ତୁଳନାତ୍ମକ ବିଶେଷଣ । ତୁଳନାତ୍ମକ ବିଶେଷଣ ତତ୍ସମ ବିଶେଷଣ ପଦରୁ ନିଷ୍ପନ୍ନ ।

ବିଶେଷଣ ପଦରୁ ଗଠିତ କେତେକ ତୁଳନାତ୍ମକ ବିଶେଷଣର ଉଦାହରଣ-

| (କ) ମୂଳ ବିଶେଷଣ | ଦୁଇଟି ମଧ୍ୟରେ ତୁଳନାତ୍ମକ ବିଶେଷଣ (‘ତର’ ପ୍ରତ୍ୟୟଯୁକ୍ତ) | ଅନେକଙ୍କ ମଧ୍ୟରେ ତୁଳନାତ୍ମକ ବିଶେଷଣ (‘ତମ’ ପ୍ରତ୍ୟୟଯୁକ୍ତ) |
|---|---|---|
| ମଧୁର | ମଧୁରତର | ମଧୁରତମ |
| ସୁନ୍ଦର | ସୁନ୍ଦରତର | ସୁନ୍ଦରତମ |
| ଚତୁର | ଚତୁରତର | ଚତୁରତମ |
| ନିକଟ | ନିକଟତର | ନିକଟତମ |
| ବୃହତ୍ | ବୃହତ୍ତର | ବୃହତ୍ତମ |
| ମହତ୍ | ମହତ୍ତର | ମହତ୍ତମ |
| ପ୍ରାଚୀନ | ପ୍ରାଚୀନତର | ପ୍ରାଚୀନତମ |
| ସାମାନ୍ୟ | ସାମାନ୍ୟତର | ସାମାନ୍ୟତମ |
| ବଳବତ୍ | ବଳବତ୍ତର | ବଳବତ୍ତମ ⟶ (ଅନେକଙ୍କ ମଧ୍ୟରେ ଅଧିକ ବୁଝାଏ) |
| ଗୁରୁ | ଗୁରୁତର | ଗୁରୁତମ |
| ଲଘୁ | ଲଘୁତର | ଲଘୁତମ |
| କ୍ଷିପ୍ର | କ୍ଷିପ୍ରତର | କ୍ଷିପ୍ରତମ |
| ଦୀର୍ଘ | ଦୀର୍ଘତର | ଦୀର୍ଘତମ |
| ଉଚ୍ଚ | ଉଚ୍ଚତର | ଉଚ୍ଚତମ |
| ନିକୃଷ୍ଟ | ନିକୃଷ୍ଟତର | ନିକୃଷ୍ଟତମ |
| ଦୃଢ଼ | ଦୃଢ଼ତର | ଦୃଢ଼ତମ |
| ପ୍ରିୟ | ପ୍ରିୟତର | ପ୍ରିୟତମ |

| (ଖ) ମୂଳ ବିଶେଷଣ | ଈୟସ୍(ଈୟାନ୍) ପ୍ରତ୍ୟୟଯୁକ୍ତ ବିଶେଷଣ | ଇଷ୍ଠପ୍ରତ୍ୟୟଯୁକ୍ତ ବିଶେଷଣ |
|---|---|---|
| ଗୁରୁ | ଗରୀୟାନ୍ | ଗରିଷ୍ଠ |
| ଲଘୁ | ଲଘୀୟାନ୍ | ଲଘିଷ୍ଠ |
| ବର | ବରୀୟାନ୍ | ବରିଷ୍ଠ |
| ମହତ୍ | ମହୀୟାନ୍ | ମହିଷ୍ଠ |
| ବୃଦ୍ଧ | ବର୍ଷୀୟାନ୍, ଜ୍ୟାୟାନ୍ | ବର୍ଷିଷ୍ଠ, ଜ୍ୟେଷ୍ଠ |

| | | |
|---|---|---|
| ବଳବାନ୍ | ବଳୀୟାନ୍ | ବଳିଷ୍ଠ |
| ଦର୍ପୀ | ଦର୍ପୀୟାନ୍ | ଦର୍ପିଷ୍ଠ |
| ଯୁବା | ଯବୀୟାନ୍/କନୀୟାନ୍ | ଯବିଷ୍ଠ/କନିଷ୍ଠ |
| ଦୃଢ଼ | ଦ୍ରଢ଼ୀୟାନ୍ (ଦୃଢ଼ତର) | ଦ୍ରଢ଼ିଷ୍ଠ (ଅତିଦୃଢ଼) |

**୧୫ । ବିଧେୟ ବିଶେଷଣ :**

ବିଶେଷଣ ପଦ ବିଶେଷ୍ୟ ପଦର ପରେ ବ୍ୟବହୃତ ହେଲେ, ତାକୁ ବିଧେୟ ବିଶେଷଣ କୁହାଯାଏ । ଯଥା-

୧ । ରାମଚନ୍ଦ୍ର **ପ୍ରଜାନୁରଞ୍ଜକ** ଓ **ସତ୍ୟପାଳକ** ଥିଲେ ।

୨ । ଯୁଧିଷ୍ଠିର **ଧାର୍ମିକ** ଥିଲେ ।

୩ । ଗାଡ଼ିରେ ତେଲ **ଅଳ୍ପ** ଅଛି ।

୪ । ପିଲାଟିର ବ୍ୟବହାର **ସୁନ୍ଦର** ।

୫ । ଆଜିର ପାଗ **ନିର୍ମଳ** ।

୬ । ଏ ଛତାଟି **ନୂଆ** ।

୭ । ଘର ବୁଡ଼ି ପାଣି **ଆଣ୍ଠୁଏ** ।

ରେଖାଙ୍କିତ ପଦଗୁଡ଼ିକ ବିଶେଷ୍ୟପଦ ପରେ ବ୍ୟବହୃତ ହୋଇ ବିଧେୟ ବିଶେଷଣ ହୋଇଛନ୍ତି ।

ବିଶେଷ୍ୟ ପଦର ବିଶେଷଣ ରୂପେ ବ୍ୟବହାର-

(କ) ଦୁଇଟି ବିଶେଷ୍ୟ ପଦ ମଧ୍ୟରୁ ପ୍ରଥମଟି ଦ୍ୱିତୀୟ ବିଶେଷ୍ୟ ପଦକୁ ବିଶେଷିତ କରିଥାଏ । ଯଥା-

୧ । **ଟିଣ** ଘର **ଛାତ** ଘରଠାରୁ ଅଧିକ ଗରମ ।

୨ । **ଶରତ୍** ଋତୁରେ ଆକାଶ ନିର୍ମଳ ଦିଶେ

୩ । ଏ **ସୁନା** ହାରଟି କାହାର ?

୪ । ଆମ ଗାଁ'ରେ ଏକ **ଇଟା** ଦେଉଳ ଅଛି ।

୫ । **ମାଟି** ହାଣ୍ଡି ସହଜରେ ଭାଙ୍ଗିଯାଏ ।

୬ । **ହେମ** ହରିଣୀ ।

ଟିଣ, ଛାତ, ଶରତ୍, ସୁନା, ଇଟା, ମାଟି ଓ ହେମ ବିଶେଷ୍ୟ ପଦଗୁଡ଼ିକ ଯଥାକ୍ରମେ ପରବର୍ତ୍ତୀ ବିଶେଷ୍ୟ ପଦ ଘର, ଋତୁ, ହାର ଦେଉଳ, ହାଣ୍ଡି ଓ ହରିଣୀ ପଦକୁ ବିଶେଷିତ କରୁଥିବାରୁ ତାହା ବିଶେଷଣ ପଦ ।

ଅନ୍ୟ ଉଦାହରଣ- **ଡିଜେଲ ଗାଡ଼ି**, **ବର ଗଛ**, **ପର କଲମ**, **ଡାକ ଘର**, **ରୋହି ମାଛ**, **ମଲ୍ଲି ଫୁଲ**, **ଡବା କ୍ଷୀର**, **ଚମଡ଼ା ବ୍ୟାଗ୍**, **ଓଡ଼ିଆ ଭାଷା** ଓ **ପଥର ଖଣି** ।

(ଖ) ବିଶେଷ୍ୟ ପଦ ଷଷ୍ଠୀ ବିଭକ୍ତି ଯୁକ୍ତ ହୋଇ ଅନ୍ୟ ବିଶେଷ୍ୟ ପଦକୁ ବିଶେଷିତ କରିଥାଏ । ଯଥା- **ଗଳାର** ମାଳି, **ସୁଖର** ସମୟ, **ମନର** ବେଦନା, **ବିପଦର** ବନ୍ଧୁ, **କଥାର** ମର୍ମ, **ଶକ୍ତିର** ଉତ୍ସ, **ସାଗରର** ଜଳ, **କଂସାର** କବାଟ, **ଜାଣିବାର** ଲୋକ ।

କଳାଅକ୍ଷରର ବିଶେଷ୍ୟ ପଦଗୁଡ଼ିକ ପରବର୍ତ୍ତୀ ବିଶେଷ୍ୟ ପଦକୁ ବିଶେଷିତ କରି ବିଶେଷଣ ରୂପେ ବ୍ୟବହୃତ ହୋଇଛନ୍ତି ।

**ବିଶେଷଣ ପଦର ବିଶେଷ୍ୟ ପଦରୂପେ ବ୍ୟବହାର-**

୧ । **ବଡ଼ବଡ଼** ଗଲେ ଫସର ଫାଟି, **ସାନ** ଆସିଛି ବେସରବାଟି ।

୨ । **ଧନୀ** ପରି **ଗରିବ**ର ମଧ୍ୟ ହୃଦୟ ଅଛି ।

୩ । **ବିଦ୍ୱାନ୍‌ମାନେ** ସବୁଠାରେ ସମ୍ମାନ ପାଆନ୍ତି ।

୪ । **ଏକଜିଦିଆ** ସବୁଠି ଅପଦସ୍ଥ ହୁଏ ।

୫ । **ଅହଂକାରୀ**ର ପତନ ଦିନେ ନା ଦିନେ ହେବ ।

କଳା ଅକ୍ଷରର ପଦଗୁଡ଼ିକ ବିଶେଷଣ ହେଲେ ମଧ୍ୟ ବିଶେଷ୍ୟ ରୂପେ ବ୍ୟବହୃତ ।

## ଅନୁଶୀଳନୀ

୧ । ବିଶେଷଣ କାହାକୁ କହନ୍ତି ?

୨ । ବିଧେୟ ବିଶେଷଣ କାହାକୁ କହନ୍ତି, ଉଦାହରଣ ସହ ଲେଖ ।

୩ । ତିନୋଟି କ୍ରିୟାବିଶେଷଣ ଓ ତିନୋଟି କ୍ରିୟାଜାତ ବିଶେଷଣର ଉଦାହରଣ ବାକ୍ୟରେ ଦର୍ଶାଅ ।

୪ । ନିମ୍ନଲିଖିତ ସଂଖ୍ୟାବାଚକ ବିଶେଷଣ ପଦକୁ ପୂରଣବାଚକ ବିଶେଷଣରେ ପରିଣତ କରି, ବାକ୍ୟରେ ବ୍ୟବହାର କର ।

୫ । ପାଞ୍ଚଟି ବିଶେଷଣ ପଦକୁ ବିଶେଷ୍ୟ ପଦ ରୂପେ ବାକ୍ୟରେ ବ୍ୟବହାର କର ।

୬ । ତଳଲିଖିତ ବିଶେଷଣ ପଦ ପରେ ଉପଯୁକ୍ତ ବିଶେଷ୍ୟ ପଦ ଲଗାଇ ବାକ୍ୟଗଠନ କର ।

ଓଜସ୍ୱିନୀ, ଉଜ୍ଜ୍ୱଳ, ଗର୍ବୀ, ଧଳା, ପଞ୍ଚଦଶ, ସଜ, ଭଙ୍ଗା, ନିପଟ, ପ୍ରଧାନ, ବୃହତ୍ତମ, ଦୁଷ୍ଟ, ଧାର୍ମିକ, ଗରମ, ଆଣ୍ଠୁଏ, ଦଶମ ।

୭ । ନିମ୍ନ ବାକ୍ୟଗୁଡ଼ିକରେ ଥିବା ବିଶେଷଣ ପଦକୁ ଚିହ୍ନାଅ ଓ କି ପ୍ରକାର ବିଶେଷଣ ଲେଖ ।

(କ) ପୂର୍ଣ୍ଣମୀ ରାତ୍ରିରେ ଚନ୍ଦ୍ର ଖୁବ୍ ଉଜ୍ଜ୍ୱଳ ଦିଶେ ।

(ଖ) ସଂଗୀତା ତୃତୀୟ ଶ୍ରେଣୀରେ ପଢ଼େ ।

(ଗ) ଯେଉଁ ପିଲାଟି ସେଠି ଗହଳି କରୁଛି, ତା' ନାଁ କ'ଣ ?

(ଘ) ବହୁ ଲୋକରେ ମୂଷା ମରେନି ।

(ଙ) ମିଟରେ କନାରେ ଦୁଇଟି ବ୍ୟାଗ୍ ହେବ ।

(ଚ) ଅତି କୁହାଳିଆ ପିଣ୍ଟୁ ପରୀକ୍ଷାରେ ଫେଲ୍ ହେଲା ।

(ଛ) ଏ ଛାତ୍ରଟି ସେ ଛାତ୍ରଠାରୁ ଚତୁରତର ।

(ଜ) ଚୋର ପୋଲିସକୁ ଦେଖି ଖୁବ୍ ଜୋର୍‌ରେ ଧାଇଁଲା ।

(ଝ) ଦ୍ରୋଣାଚାର୍ଯ୍ୟ ଧନୁର୍ବିଦ୍ୟାରେ ଅତିଶୟ ପାରଙ୍ଗମ ଥିଲେ ।

(ଞ) ସେ ହଲିଲା ପାଣିରେ ଗୋଡ଼ ନ ଦେବା ଲୋକ ।

୮ । ଉପଯୁକ୍ତ ବିଶେଷଣଦ୍ୱାରା ଶୂନ୍ୟସ୍ଥାନ ପୂରଣ କର ।

(କ) — ଆକାଶରେ — ପକ୍ଷୀ ଉଡ଼ିଯାଉଛନ୍ତି ।

(ଖ) ପିଲାଟି — ଓ — ।

(ଗ) କ୍ରମେ କ୍ରମେ ତାଙ୍କର ଶରୀର — ହୋଇପଡୁଛି ।

(ଘ) ସମୁଦ୍ରର — ରୂପ ମନରେ — ଭୀତି ଜନ୍ମାଏ ।

(ଙ) ବାଟୋଇଟି ଶୋଷରେ — ପାଣି ପିଇଲା ।

(ଚ) — ବଳଦର ଆତ୍ମକାହାଣୀ ଲେଖ ।

(ଛ) ସମ୍ବାଦପତ୍ର ହେଉଛି ଗଣତନ୍ତ୍ରର — ସ୍ତମ୍ଭ ।

(ଜ) — ତିଥିରେ ଉପବାସ କରିବା — ହିନ୍ଦୁର କର୍ତ୍ତବ୍ୟ ।

(ଝ) ଭରତ — ଥିଲେ ।

(ଞ) ପିଲାମାନେ ଏହା — ବିଷୟ, ମନଦେଇ ଶୁଣ ।

୯ । ପାଞ୍ଚଟି ତୁଳନାତ୍ମକ ବିଶେଷଣ ପଦକୁ ବାକ୍ୟରେ ବ୍ୟବହାର କର ।

୧୦ । ବିଶେଷ୍ୟ ପଦ ବିଶେଷଣ ପଦ ରୂପେ କିପରି ବ୍ୟବହୃତ ହୁଏ, ଉଦାହରଣ ଦେଇ ବୁଝାଅ ।



# ଲିଙ୍ଗ

**ତଳ ବାକ୍ୟଗୁଡ଼ିକୁ ଲକ୍ଷ୍ୟ କର-**

(କ) ନିରଂଜନ ଗୀତ ଗାଉଛି ।   (ଗ) ଛୁଆଟି ଶେଯରେ କାନ୍ଦୁଛି ।

(ଖ) ନୀଳିମା ଚିତ୍ର ଆଙ୍କୁଛି ।   (ଘ) କଲମଟି ତଳେ ପଡ଼ିଗଲା ।

ଉପର ଉଦାହରଣରେ 'ନିରଂଜନ' ଜଣେ ପୁରୁଷ ବା ବାଳକର ନାମ । 'ନୀଳିମା' ଏକ ବାଳିକା ବା ସ୍ତ୍ରୀର ନାମ । 'ଛୁଆ' ଏହି ପଦଟି ପୁଅଝିଅ ଉଭୟଙ୍କୁ ବୁଝାଉଅଛି । 'କଲମ' ଏକ ନିର୍ଜୀବ ବା ଅପ୍ରାଣୀବାଚକ ପଦ ।

ଏଥିରୁ ଆମେ ଜାଣିଲେ ଯେ ପୁରୁଷ ପ୍ରାଣୀକୁ ବୁଝାଉଥିବା ପଦ ପୁଂଲିଙ୍ଗ, ସ୍ତ୍ରୀଜାତୀୟ ପ୍ରାଣୀକୁ ବୁଝାଉଥିବା ପଦ ସ୍ତ୍ରୀଲିଙ୍ଗ, ପୁରୁଷ ଓ ସ୍ତ୍ରୀ ଉଭୟଙ୍କୁ ବୁଝାଉଥିବା ପଦକୁ ଉଭୟ ଲିଙ୍ଗ କୁହାଯାଏ । ଯେଉଁ ପଦ କୌଣସି ପୁରୁଷ ବା ସ୍ତ୍ରୀ ପ୍ରାଣୀକୁ ବୁଝାଏ ନାହିଁ, ତାକୁ କ୍ଳୀବ ଲିଙ୍ଗ କହନ୍ତି ।

ଲିଙ୍ଗ ଚାରି ପ୍ରକାରର । ଯଥା-

୧ । **ପୁଲିଙ୍ଗ-** ଜଗନ୍ନାଥ, ଗୋପାଳ, ବାପା, ଭାଇ, ମାମୁ, ଯୁବକ, ପୁଅ, ବାଳକ, ଦେବ, ରାଜା, ସିଂହ, ବାଘ, ହାତୀ, ହରିଣ ଇତ୍ୟାଦି ।

୨ । **ସ୍ତ୍ରୀଲିଙ୍ଗ-** ଲକ୍ଷ୍ମୀ, ସାବିତ୍ରୀ, ବାଳିକା, ଝିଅ, ମା, ମାଇଁ, ଖୁଡ଼ୀ, ଆଈ, ବାଳିକା, ଗାୟତ୍ରୀ, ସାବିତ୍ରୀ, ସିଂହୀ, ହରିଣୀ, ମୟୂରୀ, ବାଘୁଣୀ ଇତ୍ୟାଦି ।

୩ । **ଉଭୟଲିଙ୍ଗ-** ଛୁଆ, ପିଲା, ଶିଶୁ, କୁଆ,  କୋଇଲି, ଚଢ଼େଇ, ଛେଳି, ଗୋରୁ, କର୍ମୀ, ଯାତ୍ରୀ ଓ ଲୋକ ଇତ୍ୟାଦି ।

୪ । **କ୍ଳୀବ ଲିଙ୍ଗ-** ଧାନ, ଚାଉଳ, ମାଟି, ପାଣି, ପବନ, ସୁନା, ରୁପା, ଲୁହା, ତମ୍ବା, ଛତା, ମୋବାଇଲ, ବହି, ଖାତା, କଲମ, କୋଇଲା, ଗଛ ଓ ତେଲ ପ୍ରଭୃତି ।

ବିଶେଷ୍ୟ, ସର୍ବନାମ ଓ ବିଶେଷଣ ପଦର ଲିଙ୍ଗ ବିଚାର କରାଯାଏ । ବିଶେଷ୍ୟ ପଦର ଅର୍ଥକୁ ନେଇ ତାହା ଚାରିଶ୍ରେଣୀର ଲିଙ୍ଗ ଭିତରୁ ଯେଉଁ ଶ୍ରେଣୀର ଅନ୍ତର୍ଗତ ସ୍ଥିର କରାଯାଏ । ଅର୍ଥାତ୍ ପଦର ପ୍ରକୃତିଗତ ଲିଙ୍ଗକୁ ଅନୁସରଣ କରି ଲିଙ୍ଗ ନିର୍ଣ୍ଣୟ କରାଯାଇଥାଏ । ସଂସ୍କୃତ ଭାଷାରେ କିନ୍ତୁ ଲିଙ୍ଗ ନିର୍ଣ୍ଣୟ ଶବ୍ଦାର୍ଥକୁ ନେଇ କରାଯାଇ ନ ଥାଏ, ଅର୍ଥାତ୍ ପ୍ରାକୃତିକ ଲିଙ୍ଗକୁ ଗ୍ରହଣ କରି ନ ଥାଏ । ଶବ୍ଦର ବ୍ୟୁତ୍ପତ୍ତିକୁ ନେଇ ଲିଙ୍ଗ ନିର୍ଣ୍ଣୀତ ହୋଇଥାଏ । ଯଥା- 'ଦେହ' ପୁଂଲିଙ୍ଗ, 'ତନୁ' ସ୍ତ୍ରୀ ଲିଙ୍ଗ ଓ 'ଶରୀର' କ୍ଳୀବ ଲିଙ୍ଗ । ତିନୋଟିଯାକ

ଶବ୍ଦର ଅର୍ଥ ସମାନ ହେଲେ ମଧ୍ୟ ଲିଙ୍ଗ ଭିନ୍ନ ଅଟନ୍ତି । ସେହିପରି ଦାର, ପତ୍ନୀ, କଳତ୍ର ଶବ୍ଦତ୍ରୟ ସ୍ତ୍ରୀବାଚକ ହେଲେ ମଧ୍ୟ ଯଥାକ୍ରମେ ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗ । ବନ୍ଧୁ ଅର୍ଥବୋଧକ ବନ୍ଧୁ, ସଖା ଶବ୍ଦ ପୁଂଲିଙ୍ଗ; ମାତ୍ର ମିତ୍ର ଶବ୍ଦ କ୍ଲୀବଲିଙ୍ଗ । ସେହିପରି 'ବୃକ୍ଷ', 'ପର୍ବତ' ଶବ୍ଦ ସଂସ୍କୃତରେ ପୁଂଲିଙ୍ଗ ହେଉଥିଲା ବେଳେ ଓଡ଼ିଆରେ ଅପ୍ରାଣୀବାଚକ ହେତୁ କ୍ଲୀବ ଲିଙ୍ଗ । 'ଦେବତା' ଶବ୍ଦ ସଂସ୍କୃତରେ ସ୍ତ୍ରୀଲିଙ୍ଗବାଚକ; ମାତ୍ର ଓଡ଼ିଆରେ ପୁଂଲିଙ୍ଗ । ଉଦାହରଣ ସ୍ୱରୂପ 'କାଳିଜାଇ ବଡ଼ ପ୍ରତ୍ୟକ୍ଷ ଦେବତା', 'ବୃକ୍ଷଦେବତା', 'ବନଦେବତା' ବା 'ଧର୍ମଦେବତା' ଓଡ଼ିଆ ଭାଷାରେ ପୁଂଲିଙ୍ଗ ଭାବରେ ବ୍ୟବହୃତ । ଦେବତା ଶବ୍ଦର ସ୍ତ୍ରୀଲିଙ୍ଗ ଓଡ଼ିଆରେ 'ଦେବତୀ' ହୁଏ । ଯଥା- 'ଗ୍ରାମଦେବତୀ', 'ବନଦେବତୀ' ।

ସର୍ବନାମ ପଦ ବିଶେଷ୍ୟ ପଦ ପରିବର୍ତ୍ତେ ବ୍ୟବହୃତ ହେଉଥିବାରୁ ତାହା ବିଶେଷ୍ୟର ଲିଙ୍ଗ ଗ୍ରହଣ କରେ । ଯଥା-

ସଦାନନ୍ଦ ଦଶମ ଶ୍ରେଣୀରେ ପଢ଼େ । ସେ ଶ୍ରେଣୀରେ ପ୍ରଥମ ହୁଏ । ତା'ର ବ୍ୟବହାରରେ ସମସ୍ତେ ସନ୍ତୁଷ୍ଟ ।

'ସେ' ଓ 'ତା'ର' ସର୍ବନାମ ପଦଦ୍ୱୟ 'ସଦାନନ୍ଦ' ବିଶେଷ୍ୟ ପଦ ପରିବର୍ତ୍ତେ ବ୍ୟବହୃତ ହୋଇଥିବାରୁ ପୁଂଲିଙ୍ଗ ଅଟେ । ସେହିପରି ସାବିତ୍ରୀ ସଂଗୀତ ଶିଖୁଛି, ସେ ମଧ୍ୟ ଭଲ ଖେଳୁଛି, ତାକୁ ସମସ୍ତେ ଭଲ ପାଆନ୍ତି । ଉଦାହରଣ ତିନୋଟିରେ 'ସେ', 'ତାକୁ' ସର୍ବନାମ ପଦ ଦୁଇଟି ସାବିତ୍ରୀ ବଦଳରେ ବ୍ୟବହୃତ ହୋଇଥିବାରୁ ସ୍ତ୍ରୀଲିଙ୍ଗ ।

ଓଡ଼ିଆରେ ବିଶେଷଣ ପଦ ସର୍ବନାମ ପଦ ପରି ବିଶେଷ୍ୟ ପଦର ଲିଙ୍ଗକୁ ଅନୁସରଣ କରେ । ଯଥା-

**ଧଳା** ହାତୀଟି ଐରାବତ ଅଟେ ।

**କଳା** ଗାଈଟି ପଡ଼ିଆରେ ଚରୁଛି ।

ବିଶେଷ୍ୟ ପଦ 'ହାତୀ' ପୁଂଲିଙ୍ଗ ହୋଇଥିବାରୁ ଧଳା ପୁଂଲିଙ୍ଗ ଏବଂ 'ଗାଈ' ବିଶେଷ୍ୟ ପଦ ସ୍ତ୍ରୀଲିଙ୍ଗ ବାଚକ ହୋଇଥିବାରୁ 'କଳା' ବିଶେଷଣ ପଦଟି ମଧ୍ୟ ସ୍ତ୍ରୀଲିଙ୍ଗ । କ୍ୱଚିତ୍ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ଯଥା-

**କାଳୀ** ଗାଈର ଭିନ୍ନେ ଗୋଠ ।

ଏଇ ପୁଅଟି **ଗୋରା** ।

**ଗୋରୀ** ଝିଅଟି ଶ୍ୟାମବାବୁଙ୍କର ।

ଗାଈ ସ୍ତ୍ରୀଲିଙ୍ଗବାଚକ ଶବ୍ଦ ହୋଇଥିବାରୁ 'କଳା' ବିଶେଷଣ ପଦଟି ସ୍ତ୍ରୀଲିଙ୍ଗରେ 'କାଳୀ' ହୋଇଛି । ପୁଂଲିଙ୍ଗ 'ପୁଅ' ପଦପାଇଁ ବିଶେଷଣ 'ଗୋରା' ପୁଂଲିଙ୍ଗ ପଦ ବ୍ୟବହୃତ; ମାତ୍ର ଝିଅ ବିଶେଷ୍ୟ ପଦଟି ସ୍ତ୍ରୀଲିଙ୍ଗବୋଧକ ହୋଇଥିବାରୁ ବିଶେଷଣ 'ଗୋରା' 'ଗୋରୀ' ହୋଇଅଛି ।

ଓଡ଼ିଆ ଭାଷାରେ ପ୍ରାକୃତିକ ଲିଙ୍ଗକୁ ଅନୁସରଣ କରି ବିଶେଷ୍ୟ ପଦର ଲିଙ୍ଗ ନିର୍ଣ୍ଣୀତ ହେଉଥିଲାବେଳେ, ତତ୍‌ସମ ସଂସ୍କୃତ ଶବ୍ଦ କ୍ଷେତ୍ରରେ ଲିଙ୍ଗ ପରିବର୍ତ୍ତନ ସଂସ୍କୃତ ନିୟମକୁ ଅନୁସରଣ କରିଥାଏ । ବିଶେଷ୍ୟ ପଦ ପୁଂଲିଙ୍ଗ ହୋଇଥାଏ, ଅଥବା ବିଶେଷ୍ୟ ପଦ ପୁଂଲିଙ୍ଗ ହୋଇଥାଏ, ଅଥବା ବିଷେଶ୍ୟ ପଦ ସ୍ତ୍ରୀଲିଙ୍ଗ ବାଚକ ହୋଇଥିଲେ, ବିଶେଷଣ ପଦ ସ୍ତ୍ରୀଲିଙ୍ଗ ହୁଏ । ଯଥା-

**ସୁନ୍ଦର** ବାଳକ । **ଚତୁର** ଶୃଗାଳ । **ବେଗବାନ୍** ଅଶ୍ୱ । **ଧନବାନ୍** ପୁରୁଷ । **ଶାରଦୀୟ** ଆକାଶ ।

ଏଠାରେ ବିଶେଷ୍ୟ ପଦଗୁଡ଼ିକ ପୁଂଲିଙ୍ଗ ହୋଇଥିବାରୁ କଳା ଅକ୍ଷର ବିଶେଷଣ ପଦଗୁଡ଼ିକ ମଧ୍ୟ ପୁଂଲିଙ୍ଗ ଅଟନ୍ତି । ସେହିପରି- **ରୂପବତୀ** ରମଣୀ । **ବିଦୁଷୀ** ନାରୀ । **ପୁଷ୍ପିତା** ଲତା । **ଶିକ୍ଷିତା** ଝିଅ । **ବନ୍ଧ୍ୟା** ଭୂମି । **ଶୁକ୍ଳା** ରଜନୀ । **ଶାରଦୀୟା** ସନ୍ଧ୍ୟା । **ପୟସ୍ୱିନୀ** ଗାଭୀ । **ଓଜସ୍ୱିନୀ** ବକ୍ତୃତା । **ଦୁଃଖିନୀ** ସୀତା । **ମହୀୟସୀ** ମହିଳା । **ସ୍ନେହମୟୀ** ଜନନୀ । **ସୁନ୍ଦରୀ** ସତ୍ୟଭାମା । **ଶସ୍ୟଶ୍ୟାମଳା** ଧରିତ୍ରୀ । **ଗଭୀରା** ନଦୀ । **ପତିତପାବନୀ** ଗଙ୍ଗା ।

ପରବର୍ତ୍ତୀ ବିଶେଷ୍ୟ ପଦଗୁଡ଼ିକ ସ୍ତ୍ରୀଲିଙ୍ଗବାଚକ ହୋଇଥିବାରୁ କଳାଅକ୍ଷରର ବିଶେଷଣ ପଦଗୁଡ଼ିକ ସ୍ତ୍ରୀଲିଙ୍ଗ ହୋଇଅଛି । ଏହାର ବ୍ୟତିକ୍ରମ ମଧ୍ୟ ପରିଲକ୍ଷିତ ହୋଇଥାଏ । ଯଥା- **ବିପୁଳ** ସମ୍ପତ୍ତି । **ପ୍ରଚୁର** କ୍ଷତି । **ଅଦ୍ଭୁତ** ନୀତି । **କରାଳ** ରଜନୀ ଇତ୍ୟାଦି ।

ସଂସ୍କୃତରେ ସମ୍ପତ୍ତି, କ୍ଷତି, ନୀତି ସ୍ତ୍ରୀଲିଙ୍ଗ ହୋଇଥିଲେ ମଧ୍ୟ ଯଥାକ୍ରମେ ବିପୁଳ, ପ୍ରଚୁର, ଅଦ୍ଭୁତ, କରାଳ ବିଶେଷଣ ପଦଗୁଡ଼ିକ ପୁଂଲିଙ୍ଗ ଆକାରର ରହିଅଛି ।

ବାକ୍ୟରେ ବିଶେଷଣ ପଦଟି ବିଧେୟ ବିଶେଷଣ ହୋଇଥିଲେ, ତାହା ବିଶେଷ୍ୟ ପଦ ଲିଙ୍ଗକୁ ଅନୁସରଣ କରିବା ଇଚ୍ଛାଧୀନ । ଯଥା-

ଝିଅଟି **ସୁନ୍ଦରୀ** ବା **ସୁନ୍ଦର** ।

ଏବେ ମଧ୍ୟ ପରିବାରରେ ନାରୀମାନେ **ପରାଧୀନ** ବା **ପରାଧୀନା** ।

ଓଡ଼ିଆରେ ଲିଙ୍ଗ ନିର୍ଣ୍ଣୟ ସଂସ୍କୃତ ପରି ନିୟମର କଠୋରତା ମଧ୍ୟରେ ଆବଦ୍ଧ ନୁହେଁ । କେତେକ ବିଶେଷଣ ପଦ ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ବା କ୍ଲୀବଲିଙ୍ଗ ପାଇଁ ସମାନ ଭାବରେ ବ୍ୟବହୃତ ହୋଇଥା'ନ୍ତି ।

**ବଡ଼** ପୁଅ (ପୁଂଲିଙ୍ଗ) । **ବଡ଼** ଝିଅ (ସ୍ତ୍ରୀଲିଙ୍ଗ) । **ବଡ଼** ଘର (କ୍ଲୀବ ଲିଙ୍ଗ) ।

ସେହିପରି- ସାନଭାଇ, ସାନ ଭଉଣୀ, ସାନ ନଣନ୍ଦ, ସାନ ଦିଅର, ସାନ ଦେଉଳ, ସାନ ଘର, ଛୋଟ ବହି ।

## ପୁଂଲିଙ୍ଗ ଶବ୍ଦର ସ୍ତ୍ରୀଲିଙ୍ଗରେ ପରିବର୍ତ୍ତନର ନିୟମ :

୧ । ପୁଂଲିଙ୍ଗ ଶବ୍ଦରେ ବିଭିନ୍ନ ପ୍ରତ୍ୟୟ ଯୋଗ କରି,

୨ । ପୁଂଲିଙ୍ଗ ଶବ୍ଦ ପରିବର୍ତ୍ତେ ଭିନ୍ନ ଶବ୍ଦ ବ୍ୟବହାର କରି,

୩ । ଉଭୟ ଲିଙ୍ଗବାଚକ ଶବ୍ଦର ପୂର୍ବରେ ପୁରୁଷ ଓ ସ୍ତ୍ରୀବାଚକ ଶବ୍ଦ ପ୍ରୟୋଗ କରି ପରିବର୍ତ୍ତନ କରାଯାଏ ।

**୧ । ବିଭିନ୍ନ ପ୍ରତ୍ୟୟ ଯୋଗରେ :**

**(କ) 'ଆ' ପ୍ରତ୍ୟୟ ଯୋଗ କରି-**

**(୧)**

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ବନ୍ଧ୍ୟ | ବନ୍ଧ୍ୟା | ପ୍ରଥମ | ପ୍ରଥମା |
| ସଭ୍ୟ | ସଭ୍ୟା | ମଧ୍ୟମ | ମଧ୍ୟମା |
| ଭଦ୍ର | ଭଦ୍ରା | କନିଷ୍ଠ | କନିଷ୍ଠା |
| ଶିଷ୍ୟ | ଶିଷ୍ୟା | ଚପଳ | ଚପଳା |
| ସୁତ | ସୁତା | ସରଳ | ସରଳା |
| କ୍ଷୀଣ | କ୍ଷୀଣା | କୋକିଳ | କୋକିଳା |
| ଦକ୍ଷ | ଦକ୍ଷା | ଦୁର୍ବଳ | ଦୁର୍ବଳା |
| ବାଳ | ବାଳା | କୁଟିଳ | କୁଟିଳା |
| ଶିଷ୍ଟ | ଶିଷ୍ଟା | ନିପୁଣ | ନିପୁଣା |
| ଜ୍ୟେଷ୍ଠ | ଜ୍ୟେଷ୍ଠା | ତନୟ | ତନୟା |
| ଦୁଷ୍ଟ | ଦୁଷ୍ଟା | ବିନୀତ | ବିନୀତା |
| ବୃଦ୍ଧ | ବୃଦ୍ଧା | ମଳିନ | ମଳିନା |
| ପୂର୍ବ | ପୂର୍ବା | ପଶ୍ଚିମ | ପଶ୍ଚିମା |
| ମୃତ | ମୃତା | ଦକ୍ଷିଣ | ଦକ୍ଷିଣା |
| ଦ୍ୱିଜ | ଦ୍ୱିଜା | ଉତ୍ତର | ଉତ୍ତରା |
| ସଦସ୍ୟ | ସଦସ୍ୟା | ମହାଶୟ | ମହାଶୟା |
| ବଂଶୀୟ | ବଂଶୀୟା | ଶାରଦୀୟ | ଶାରଦୀୟା |
| ସୁବର୍ଣ୍ଣ | ସୁବର୍ଣ୍ଣା | ସନାଥ | ସନାଥା |
| ହତଭାଗ୍ୟ | ହତଭାଗ୍ୟା | ହତାଦର | ହତାଦରା |
| ଗଣକ | ଗଣିକା, ଗଣକୀ | | |

(୨)

'କ' ପ୍ରତ୍ୟୟାନ୍ତ ଶବ୍ଦରେ 'ଆ' ପ୍ରତ୍ୟୟ ଯୋଗ କରାଗଲେ, 'କ'ର ପୂର୍ବ ସ୍ୱର 'ଅ' କାର ସ୍ଥାନରେ 'ଇ' କାର ହୁଏ ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ପାଠକ | ପାଠିକା | ପାଚକ | ପାଚିକା |
| ବାଳକ | ବାଳିକା | ପାଳକ | ପାଳିକା |
| ଖାଦକ | ଖାଦିକା | କୁଶଳୀ | କୁଶଳିନୀ |
| ମୂଷିକ | ମୂଷିକା, ମୂଷୀକା | ସାଧକ | ସାଧିକା |
| ଗାୟକ | ଗାୟିକା | ତାରକ | ତାରିକା |
| ନାୟକ | ନାୟିକା | ଶିକ୍ଷକ | ଶିକ୍ଷିକା, ଶିକ୍ଷୟିତ୍ରୀ |

(ଖ) 'ଈ' ପ୍ରତ୍ୟୟ ଯୋଗରେ-

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଅଳିଅଳ | ଅଳିଅଳୀ | ନର | ନାରୀ |
| ଗୋପ | ଗୋପୀ | ପୁତ୍ର | ପୁତ୍ରୀ |
| କୁରଳ | କୁରଳୀ | କୁରର | କୁରରୀ |
| ନଦ | ନଦୀ | ବ୍ୟାଘ୍ର | ବ୍ୟାଘ୍ରୀ |
| କୃତଘ୍ନ | କୃତଘ୍ନୀ | କୂର୍ମ | କୂର୍ମୀ |
| ବକ | ବକୀ | ସିଂହ | ସିଂହୀ |
| ହଂସ | ହଂସୀ | ନଟ | ନଟୀ |
| ସଖା | ସଖୀ | ବୁଢ଼ା | ବୁଢ଼ୀ |
| ଶାର, ଶାରକ | ଶାରୀ, ଶାରିକା | କୂର୍ମ | କୂର୍ମୀ |
| ଦାସ | ଦାସୀ | ଖନା | ଖନୀ |
| କଣା | କାଣୀ | କେମ୍ପା | କେମ୍ପୀ |
| ଛୋଟା | ଛୋଟୀ | ଟେରା | ଟେରୀ |
| ଲଣ୍ଡା | ଲାଣ୍ଡୀ | ଗେଡ଼ା | ଗେଡ଼ୀ |
| ଘୋଡ଼ା | ଘୋଡ଼ୀ | ଜଡ଼ା | ଜାଡ଼ୀ |
| କୁଜା | କୁଜୀ | ପୌତ୍ର | ପୌତ୍ରୀ |
| କର୍ତ୍ତା | କର୍ତ୍ତ୍ରୀ | ଦାତା | ଦାତ୍ରୀ |
| ନେତା | ନେତ୍ରୀ | ରାଜା | ରାଜ୍ଞୀ |
| ରାଜା, ରଜା | ରାଣୀ | ପ୍ରାଚ୍ | ପ୍ରାଚୀ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ପ୍ରତ୍ୟଚ୍ | ପ୍ରତୀଚୀ | ଶବର | ଶବରୀ |
| ଅବାଚ | ଅବାଚୀ | ନାଗର | ନାଗରୀ |
| କୁମାର | କୁମାରୀ | କିଶୋର | କିଶୋରୀ |
| ମୂତୁରା | ମୂତୁରୀ | ନଗର | ନଗରୀ |
| ଟୋକା | ଟୋକୀ | ଶୁକ (ଶୁଆପକ୍ଷୀ) | ଶୁକୀ |
| ଚତୁର | ଚତୁରୀ | ସୁନ୍ଦର | ସୁନ୍ଦରୀ |
| ମୟୂର | ମୟୂରୀ | ଈଶ୍ୱର | ଈଶ୍ୱରୀ |
| ଭଲ୍ଲୁକ | ଭଲ୍ଲୁକୀ | ଯୁବକ | ଯୁବତୀ |
| ତରୁଣ | ତରୁଣୀ | ମଣ୍ଡଳ | ମଣ୍ଡଳୀ |
| କୃପଣ | କୃପଣୀ | ଖାନିକ(ଖଣିଖୋଳାଳି)-ଖାନିକୀ | |
| ମାନବ | ମାନବୀ | ଦାନବ | ଦାନବୀ |
| ମହିଷ | ମହିଷୀ | ଈଦୃଶ | ଈଦୃଶୀ |
| ଷୋଡ଼ଶ | ଷୋଡ଼ଶୀ | ମରାଳ | ମରାଳୀ |
| ଦଶମ | ଦଶମୀ | ଏକଦଶ | ଏକାଦଶୀ |
| ରଜକ | ରଜକୀ | ରଚକ | ରଚକୀ |
| ବ୍ରାହ୍ମଣ | ବ୍ରାହ୍ମଣୀ | ନର୍ତ୍ତକ | ନର୍ତ୍ତକୀ |
| ଦେବ | ଦେବୀ | ଶ୍ରୀମାନ୍ | ଶ୍ରୀମତୀ |
| ପାଞ୍ଚାଳ | ପାଞ୍ଚାଳୀ | ନାପିତ | ନାପିତୀ |
| ଘୋଟକ | ଘୋଟକୀ | କପୋତ | କପୋତୀ |
| ଶୃଗାଳ | ଶୃଗାଳୀ | ରାକ୍ଷସ | ରାକ୍ଷସୀ |
| ହରିଣ | ହରିଣୀ | ସାଧବ | ସାଧବୀ |
| ରାକ୍ଷସ | ରାକ୍ଷସୀ | ଶୂକର | ଶୂକରୀ |
| ପିଶାଚ | ପିଶାଚୀ | ବୈଷ୍ଣବ | ବୈଷ୍ଣବୀ |
| ମୃଣ୍ମୟ | ମୃଣ୍ମୟୀ | ଚିନ୍ମୟ | ଚିନ୍ମୟୀ |
| ତନ୍ମୟ | ତନ୍ମୟୀ | ଓଟ | ଓଟୀ, ଓଟଣୀ |
| ନିଶାଚର | ନିଶାଚରୀ | ସହଚର | ସହଚରୀ |
| ଅର୍ଥକର | ଅର୍ଥକରୀ | ହିତକର | ହିତକରୀ |
| ଡରକୁଳା | ଡରକୁଳୀ | ନାକୁଆ | ନାକୋଇ |
| ପାକୁଆ | ପାକୋଇ | ପାଠୁଆ | ପାଠୋଇ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଚକୁଆ | ଚକୋଇ | ଚଣ୍ଡାଳ | ଚଣ୍ଡାଳୀ |
| ସମ୍ରାଟ୍ | ସମ୍ରାଜ୍ଞୀ, ସମ୍ରାଜୀ | ନିଉଛୁଣା | ନିଉଛୁଣୀ |
| ଦାନ୍ତୁରା | ଦାନ୍ତୁରୀ | କୁରଗ | କୁରଗୀ |
| ବିହଙ୍ଗ | ବିହଙ୍ଗୀ | ସାଧୁ | ସାଧ୍ୱୀ |
| ଗୁରୁ | ଗୁର୍ବୀ | ଭଗବାନ୍ | ଭଗବତୀ |
| ବିଦ୍ୟାବାନ୍ | ବିଦ୍ୟାବତୀ | ବୁଦ୍ଧିମାନ୍ | ବୁଦ୍ଧିମତୀ |
| ଗୁଣବାନ୍ | ଗୁଣବତୀ | ସତ୍ୟବାନ୍ | ସତ୍ୟବତୀ |
| ଐଶ | ଐଶୀ, ଐଶିକୀ, ଐଶ୍ୱରୀ, ଐଶ୍ୱରିକା | | |
| ଆୟୁଷ୍ମାନ୍ | ଆୟୁଷ୍ମତୀ | ରୂପବାନ୍ | ରୂପବତୀ |
| ଓଳିଆ | ଓଳେଇ | ଖଲିଆ | ଖଲେଇ |
| ମହାନ୍ | ମହତୀ | ମହୀୟାନ୍ | ମହୀୟସୀ |
| ଗରୀୟାନ୍ | ଗରୀୟସୀ | ପ୍ରେୟାନ୍ | ପ୍ରେୟସୀ |
| ପିଉସା | ପିଉସୀ | ମଉସା | ମାଉସୀ |
| ଭଣଜା | ଭାଣିଜୀ/ଭାଣେଜୀ | ପିତାମହ | ପିତାମହୀ |
| ଚକ୍ରବାକ | ଚକ୍ରବାକୀ | ବକ | ବକୀ |
| ଘୋଡ଼ା | ଘୋଡ଼ୀ | ଗଧ | ଗଧୀ |
| ଚତୁର | ଚତୁରୀ | ଛାଗ | ଛାଗୀ |
| ବେଙ୍ଗ | ବେଙ୍ଗୀ, ବେଙ୍ଗେଇ | ଅସୁର | ଅସୁରୀ |
| ଶିକ୍ଷୟିତା(ଶିକ୍ଷକ) | ଶିକ୍ଷୟିତ୍ରୀ | ବିଜେତା | ବିଜେତ୍ରୀ |
| ଡେଙ୍ଗା | ଡେଙ୍ଗୀ, ଡେଙ୍ଗେଇ | ରଙ୍ଗିଆ | ରଙ୍ଗୀ, ରଙ୍ଗେଇ |

**(ଗ) ଇନ୍/ଇନୀ ପ୍ରତ୍ୟୟ ଯୋଗରେ-**

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କୁଶଳୀ | କୁଶଳିନୀ | କ୍ଷିପ୍ରକାରୀ | କ୍ଷିପ୍ରକାରିଣୀ |
| ଧନୀ | ଧନିନୀ | ପକ୍ଷୀ | ପକ୍ଷିଣୀ |
| କେକୀ | କେକିନୀ | କୌତୁକୀ | କୌତୁକିନୀ |
| ଗୁଣୀ | ଗୁଣିନୀ | ଗୃହୀ | ଗୃହିଣୀ |
| ମାନୀ | ମାନିନୀ | ଦୁଃଖୀ | ଦୁଃଖିନୀ |
| ଜ୍ଞାନୀ | ଜ୍ଞାନିନୀ | ବିଦେଶୀ | ବିଦେଶିନୀ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କ୍ଷେତ୍ରୀ | କ୍ଷେତ୍ରିଣୀ | ଗର୍ବୀ | ଗର୍ବିଣୀ |
| କରୀ | କରିଣୀ | ବିରହୀ | ବିରହିଣୀ |
| ହସ୍ତୀ | ହସ୍ତିନୀ | ମେଧାବୀ | ମେଧାବିନୀ |
| ଯଶସ୍ୱୀ | ଯଶସ୍ୱିନୀ | ତପସ୍ୱୀ | ତପସ୍ୱିନୀ |
| ଓଜସ୍ୱୀ | ଓଜସ୍ୱିନୀ | ତେଜସ୍ୱୀ | ତେଜସ୍ୱିନୀ |
| ବିଳାସୀ | ବିଳାସିନୀ | ମାୟାବୀ | ମାୟାବିନୀ |
| ଅନୁରାଗୀ | ଅନୁରାଗିଣୀ | ଅଧିକାରୀ | ଅଧିକାରିଣୀ |
| ପ୍ରିୟବାଦୀ | ପ୍ରିୟବାଦିନୀ | ଅଭିମାନୀ | ଅଭିମାନିନୀ |
| ଧନଶାଳୀ | ଧନଶାଳିନୀ | ବଳଶାଳୀ | ବଳଶାଳିନୀ |

(ଘ) **ଆଣୀ ବା ଆନୀ ପ୍ରତ୍ୟୟ ଯୋଗରେ–**

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ସର୍ବ | ସର୍ବାଣୀ | ବ୍ରହ୍ମା | ବ୍ରହ୍ମାଣୀ |
| ଇନ୍ଦ୍ର | ଇନ୍ଦ୍ରାଣୀ | ରୁଦ୍ର | ରୁଦ୍ରାଣୀ |
| ନାଉରୀ | ନାଉରାଣୀ | ଘାସି | ଘାସିଆଣୀ |
| ତନ୍ତୀ | ତନ୍ତିଆଣୀ | ହାଡ଼ି | ହାଡ଼ିଆଣୀ |
| ମୋଚି | ମୋଚିଆଣୀ | ଚାକର | ଚାକରାଣୀ |
| ସାଆନ୍ତ | ସାଆନ୍ତାଣୀ | ଠାକୁର | ଠାକୁରାଣୀ |
| ବାରିକ | ବାରିକାଣୀ | ମାଳୀ | ମାଳିଆଣୀ,ମାଲ୍ୟାଣୀ |
| ପଣ୍ଡା | ପଣ୍ଡିଆଣୀ | ମେହେନ୍ତର | ମେହେନ୍ତରାଣୀ |
| ବାଉରୀ | ବାଉରାଣୀ | ଓକିଲ | ଓକିଲାଣୀ |
| ମାଷ୍ଟର | ମାଷ୍ଟରାଣୀ | ସାହେବ | ସାହେବାଣୀ |
| ଡାକ୍ତର | ଡାକ୍ତରାଣୀ | ମହାନ୍ତି | ମହାନ୍ତିଆଣୀ |
| ନାହାକ | ନାହାକାଣୀ | ମାଲିକ | ମାଲିକାଣୀ |
| ଶିବ | ଶିବାନୀ | ଭବ | ଭବାନୀ |
| ମୃଡ଼ | ମୃଡ଼ାନୀ | ବରୁଣ | ବରୁଣାନୀ |
| ତେଲି | ତେଲିଆଣୀ | ଗୋସାଇଁ | ଗୋସାମଣୀ |
| ଓଡ଼ିଆ | ଓଡ଼ିଆଣୀ | ସାଆନ୍ତ | ସାଆନ୍ତାଣୀ |

(ଙ) 'ଉଣୀ' ପ୍ରତ୍ୟୟ ଯୋଗରେ-

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କନ୍ଧ | କନ୍ଧୁଣୀ | କଂସାରି | କଂସାରୁଣୀ |
| କାଙ୍ଗାଳ | କାଙ୍ଗାଳୁଣୀ,କାଙ୍ଗାଳିନୀ | ଅନ୍ଧ | ଅନ୍ଧୁଣୀ |
| କଣ୍ଡରା | କଣ୍ଡୁରୁଣୀ | କୁମ୍ଭାର | କୁମ୍ଭାରୁଣୀ |
| କେଉଟ | କେଉଟୁଣୀ | କେଳା | କେଲୁଣୀ, କେଳୁଣୀ |
| ଗଉଡ଼ | ଗଉଡୁଣୀ | ଚମାର | ଚମାରୁଣୀ |
| ଭିକାରି | ଭିକାରୁଣୀ | ଭଣ୍ଡାରି | ଭଣ୍ଡାରୁଣୀ |
| ବଙ୍ଗାଳୀ | ବଙ୍ଗାଳୁଣୀ | ବଢ଼େଇ | ବଢ଼ଉଣୀ |
| ଅସୁର | ଅସୁରୁଣୀ | ସଂଗାତ | ସଂଗାତୁଣୀ |
| କାଳା | କାଲୁଣୀ | ପାଣ | ପାଲୁଣୀ |
| ମାଳୀ | ମାଲୁଣୀ | ସମୁଦି(ଧି) | ସମୁଦୁ(ଧୁ)ଣୀ |
| ଶଙ୍ଖାରି | ଶଙ୍ଖାରୁଣୀ | ହାତୀ | ହାତୁଣୀ,ମାଈହାତୀ |
| ବାଘ | ବାଘୁଣୀ | ରଙ୍କ | ରଙ୍କୁଣୀ |
| ଗଧ | ଗଧୁଣୀ | ନାଗ | ନାଗୁଣୀ |
| ମୃଗ | ମୃଗୁଣୀ | ଶବର | ଶବରୁଣୀ |
| ଚଣ୍ଡାଳ | ଚଣ୍ଡାଳୁଣୀ | ସାପ | ସାପୁଣୀ |
| ତେଲୀ | ତେଲୁଣୀ | ଗଧ | ଗଧୁଣୀ |
| ଚଷା | ଚାଷୁଣୀ | ରଙ୍କ | ରଙ୍କୁଣୀ |

(ଚ) 'ଣୀ' ପ୍ରତ୍ୟୟ ଯୋଗରେ-

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ମିତ | ମିତଣୀ | ଚୋର | ଚୋରଣୀ |
| ବାୟା | ବାୟାଣୀ | ଓଡ଼ିଆ | ଓଡ଼ିଆଣୀ |
| ମୂଲିଆ | ମୂଲିଆଣୀ | ମାଟିଆ | ମାଟିଆଣୀ |
| କାଚରା | କାଚରାଣୀ | ପାଟରା | ପାଟରାଣୀ |
| ପାନରା | ପାନରାଣୀ | ଗୁଡ଼ିଆ | ଗୁଡ଼ିଆଣୀ |
| ଧୋବା | ଧୋବଣୀ | କଟିକିଆ | କଟିକିଆଣୀ |
| ଘାସିଆ | ଘାସିଆଣୀ | ବଣିଆ | ବଣିଆଣୀ |
| ତେଲଙ୍ଗା | ତେଲଙ୍ଗାଣୀ | | |

(ଛ) 'ଇଆଣୀ' ପ୍ରତ୍ୟୟ ଯୋଗରେ-

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ପଣ୍ଡିତ | ପଣ୍ଡିତିଆଣୀ | ମାଲିକ | ମାଲିକିଆଣୀ |
| ଜମିଦାର | ଜମିଦାରିଆଣୀ | ସର୍ଦ୍ଦାର | ସର୍ଦ୍ଦାରିଆଣୀ |

(ଜ) 'ଉଲୀ' ପ୍ରତ୍ୟୟ ଯୋଗରେ-

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ବଗ | ବଗୁଲୀ | ବେଙ୍ଗ | ବେଙ୍ଗୁଲୀ |

(୨) ଭିନ୍ନ ଶବ୍ଦର ବ୍ୟବହାର ଦ୍ୱାରା :

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଅଜା | ଆଈ | ଅଣ୍ଡିରା | ମାଈ |
| ପିତା | ମାତା | ବାପା | ମା, ବୋଉ |
| ନନା | ବୋଉ | ଭ୍ରାତା | ଭଗିନୀ, ଭଗ୍ନୀ, |
| ଭାଇ | ଭଉଣୀ, ଭାଉଜ, | | ଭ୍ରାତୃଜାୟା |
| | ଭାଇବୋହୂ | ପତି | ପତ୍ନୀ |
| ଶ୍ୱଶୁର, ଶଶୁର | ଶାଶୂ, ଶ୍ୱଶ୍ରୂ | ପୁରୁଷ | ସ୍ତ୍ରୀ |
| ପୁଅ | ଝିଅ, ବୋହୂ | ବର | ବଧୂ, କନ୍ୟା |
| ନଣନ୍ଦେଇ | ନଣନ୍ଦ | ଶଳା | ଶାଳୀ/ଶଳାଭାଉଜ |
| ମାମୁ ଶଶୁର, ମଳାଶ୍ୱଶୁର | ମାଇଁଶାଶୂ | ଶ୍ୟାଳ | ଶ୍ୟାଳୀ |
| | | ସ୍ୱାମୀ(ପ୍ରଭୁ) | ସ୍ୱାମିନୀ |
| ମାମୁ | ମାଇଁ | ସ୍ୱାମୀ | ସ୍ତ୍ରୀ |
| ଦିଅର | ଭାଉଜ, ଯାଆ | ଜ୍ୱାଇଁ | ଝିଅ |
| ମରଦ | ମାଦୀ,ମାଈ,ମାଇକିନା,ମାଇକିନିଆ | | |
| କକେଇ, ଦାଦା | ଖୁଡ଼ୀ | ଭର୍ତ୍ତା | ଭାର୍ଯ୍ୟା |
| ରଜା | ରାଣୀ | ଭେଣ୍ଡାପୁଅ | ଢ଼ୁଆସୁଣୀ ଝିଅ |
| ମାଇଗୁଲିଆ | ଅଣ୍ଡିରାଚଣ୍ଡୀ | ନବାବ୍ | ବେଗମ୍, ବାଦଶାହା |
| ବିଦ୍ୱାନ୍ | ବିଦୁଷୀ | ଶୁନ,ଶୁନି,ଶ୍ୱାନ | ଶୁନୀ,ଶୁନକୀ |
| ଭଦ୍ରବ୍ୟକ୍ତି | ଭଦ୍ରମହିଳା | ଶୁଆ | ମାଈଶୁଆ,ଶୋଇ |

**(୩) ଉଭୟ ଲିଙ୍ଗବାଚକ ଶବ୍ଦରେ ପୁରୁଷ ଓ ସ୍ତ୍ରୀବାଚକ ଶବ୍ଦ ବ୍ୟବହାର ଦ୍ୱାରା-**

(୧)

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ପୁରୁଷଲୋକ | ସ୍ତ୍ରୀଲୋକ | ପୁରୁଷଯାତ୍ରୀ | ସ୍ତ୍ରୀ(ମହିଳା)ଯାତ୍ରୀ |
| ପୁଅପିଲା | ଝିଅପିଲା | ପୁତ୍ରସନ୍ତାନ | କନ୍ୟାସନ୍ତାନ |
| ମରଦପିଲା | ମାଇକିନିଆ ପିଲା<br>ମାଇକିନା ପିଲା | ଅଣ୍ଡିରାମୂଷା<br>ଅଣ୍ଡିରା | ମାଇମୂଷା<br>ମାଇକିନିଆ,<br>ମାଇକିନା, ମାଈ |
| ଅଣ୍ଡିରାଛୁଆ | ମାଇଛୁଆ | ଅଣ୍ଡିରାଭାଲୁ | ମାଇଭାଲୁ |
| ଅଣ୍ଡିରାକୋଇଲି | ମାଇକୋଇଲି | ଅଣ୍ଡିରାବାଛୁରୀ | ମାଇବାଛୁରୀ |
| ଅଣ୍ଡିରାବିରାଡ଼ି | ମାଇବିରାଡ଼ି | ଅଣ୍ଡିରାକାଉ | ମାଇକାଉ |
| ବାପଚଢ଼େଇ | ମାଈଚଢ଼େଇ | ଅଣ୍ଡିରାପଶୁ | ମାଇପଶୁ |

(୨)

**ଉଭୟ ଲିଙ୍ଗବାଚକ ଶବ୍ଦ ପରେ କେବଳ ସ୍ତ୍ରୀବାଚକ ଶବ୍ଦ ଯୋଗଦ୍ୱାରା**

| | | | |
|---|---|---|---|
| କବି | ନାରୀକବି | କର୍ମୀ | ନାରୀକର୍ମୀ,<br>ମହିଳାକର୍ମୀ |
| ଶ୍ରମିକ | ମହିଳାଶ୍ରମିକ, ନାରୀଶ୍ରମିକ | | |
| ଚେୟାରମ୍ୟାନ୍ | ମହିଳା ଚେୟାରମ୍ୟାନ୍ | କମିଶନର | ମହିଳା କମିଶନର |
| ଶିଳ୍ପୀ | ନାରୀଶିଳ୍ପୀ | ପ୍ରଭୁ | ପ୍ରଭୁପତ୍ନୀ |

ସଭାପତି ଶବ୍ଦର 'ସଭାନେତ୍ରୀ' କରାଗଲେ ମଧ୍ୟ ସମ୍ପ୍ରତି 'ସଭାପତି' ଶବ୍ଦ ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ଉଭୟ ଅର୍ଥରେ ବ୍ୟବହୃତ ହେଉଛି, ଯଥା-

୧ । ଆଜିର ସଭାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସଭାପତି ଆସନ ଅଳଙ୍କୃତ କରୁଛନ୍ତି ।

୨ । ବିଦ୍ୟାଳୟର ପୁରସ୍କାର ବିତରଣୋତ୍ସବରେ ସମାଜସେବିକା ସୁଶ୍ରୀ ତୁଳସୀ ମୁଣ୍ଡା ସଭାପତି ପଦ ଗ୍ରହଣ କରିଥିଲେ ।

**ଏକାଧିକ ପ୍ରତ୍ୟୟଯୋଗରେ ପୁଂଲିଙ୍ଗ ଶବ୍ଦର ସ୍ତ୍ରୀଲିଙ୍ଗରେ ପରିଣତ-**

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|
| ଅନାଥ | ଅନାଥା, ଅନାଥିନୀ |
| ଆଚାର୍ଯ୍ୟ | ଆଚାର୍ଯ୍ୟା, ଆଚାର୍ଯ୍ୟାନୀ, ଆଚାର୍ଯ୍ୟାଣୀ |
| ଉପାଧ୍ୟାୟ | ଉପାଧ୍ୟାୟା, ଉପାଧ୍ୟାୟୀ, ଉପାଧ୍ୟାୟିନୀ |
| କୁନ୍ଦଦନ୍ତ | କୁନ୍ଦଦନ୍ତା, କୁନ୍ଦଦନ୍ତୀ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|
| କୃଶୋଦର | କୃଶୋଦରା, କୃଶୋଦରୀ |
| କୃଶାଙ୍ଗ | କୃଶାଙ୍ଗା, କୃଶାଙ୍ଗୀ |
| କୃପଣ | କୃପଣା, କୃପଣୀ |
| କୋକିଳକଣ୍ଠ | କୋକିଳକଣ୍ଠା, କୋକିଳକଣ୍ଠୀ |
| ଚଣ୍ଡ | ଚଣ୍ଡା, ଚଣ୍ଡୀ |
| ଚନ୍ଦ୍ରବଦନ | ଚନ୍ଦ୍ରବଦନା, ଚନ୍ଦ୍ରବଦନୀ |
| ଚନ୍ଦ୍ରମୁଖ | ଚନ୍ଦ୍ରମୁଖା, ଚନ୍ଦ୍ରମୁଖୀ |
| ଚଣ୍ଡାଳ | ଚଣ୍ଡାଳା, ଚଣ୍ଡାଳୀ |
| ବିମ୍ବୋଷ୍ଠ | ବିମ୍ବୋଷ୍ଠା, ବିମ୍ବୋଷ୍ଠୀ |
| ବିମ୍ବାଧର | ବିମ୍ବାଧରା, ବିମ୍ବାଧରୀ |
| ମାତୁଳ | ମାତୁଳା, ମାତୁଳୀ, ମାତୁଳାନୀ |
| କ୍ଷତ୍ରିୟ | କ୍ଷତ୍ରିୟା, କ୍ଷତ୍ରିୟୀ, କ୍ଷତ୍ରିୟାଣୀ |
| ବୈଶ୍ୟ | ବୈଶ୍ୟା, ବୈଶ୍ୟୀ |
| ଶୂଦ୍ର | ଶୂଦ୍ରା, ଶୂଦ୍ରୀ, ଶୂଦ୍ରାଣୀ |
| ସୁକେଶ | ସୁକେଶା, ସୁକେଶୀ, ସୁକେଶିନୀ |
| ସୂର୍ଯ୍ୟ | ସୂର୍ଯ୍ୟା, ସୂରୀ |
| ବିଶାଳ | ବିଶାଳା, ବିଶାଳୀ |
| ଭାବୁକ | ଭାବୁକା, ଭାବୁକୀ |
| ହତଭାଗା | ହତଭାଗୀ, ହତଭାଗିନୀ |

**ସ୍ୱାଭାବିକ ସ୍ତ୍ରୀଲିଙ୍ଗ ଶବ୍ଦ–**

ସଂସ୍କୃତଭାଷାର କେତେକ ସ୍ତ୍ରୀଲିଙ୍ଗ ଶବ୍ଦ ଓଡ଼ିଆଭାଷାରେ ଅବିକଳ ବ୍ୟବହୃତ ହୋଇଥାଏ । ଏଗୁଡ଼ିକୁ ସ୍ୱାଭାବିକ ସ୍ତ୍ରୀଲିଙ୍ଗ ବୋଲି କୁହାଯାଏ । ଯଥା– ଲତା, ଶୋଭା, ଲଜ୍ଜା, କ୍ଷମା, ଦୟା, ଆଶା, ଧରା, କ୍ଷୁଧା, ତୃଷା, ତୃଷ୍ଣା, ପ୍ରଭା, ଆଭା, ବିଭା, ନମ୍ରତା, ମିତ୍ରତା, ସରଳତା, ସାଧୁତା, କୃପଣତା, ଚତୁରତା, ଦେବତା, ମଧୁରତା, ମୃଦୁତା, ବନ୍ଦନା, ପ୍ରାର୍ଥନା, ସାଧନା, ଅର୍ଚ୍ଚନା, କାମନା, ପିପାସା, ରସନା, ଗଙ୍ଗା, ଯମୁନା, ତୃଷ୍ଣା, ସେନା, ବୀଣା, ଜ୍ୟୋସ୍ନା, ଭୂମି, କ୍ରୀଡ଼ା, କ୍ରିୟା, ମାୟା, କାୟା, ସେନା, ରାତ୍ରି, କ୍ଷିତି, ମୁକ୍ତି, ଗତି, ନୀତି, ଧୃତି, ତିଥି, ଉନ୍ନତି, ପ୍ରଣତି, ଭକ୍ତି, ରତି, ଅନୁରକ୍ତି, ତୃପ୍ତି, ଶ୍ରୀ, ଲକ୍ଷ୍ମୀ, କାଳୀ, ଦେବୀ, ସରସ୍ୱତୀ, ନଦୀ, କାବେରୀ, ଗୋଦାବରୀ, ବ୍ରାହ୍ମଣୀ, ବୈତରଣୀ, ତ୍ରିବେଣୀ, ବନାନୀ, ଅରଣ୍ୟାନୀ, ଚନ୍ଦ୍ରଭାଗା, କବିତା, ପୁରୀ, ଗଙ୍ଗା, ଆୟା (ଶିଶୁପାଳିକା) ।

## ଅନୁଶୀଳନୀ

୧ । ଲିଙ୍ଗ କେତ ପ୍ରକାର ଓ କ'ଣ କ'ଣ ଉଦାହରଣ ଦେଇ ଲେଖ ।

୨ । ନିମ୍ନଲିଖିତ ଶବ୍ଦମାନଙ୍କର ଲିଙ୍ଗ ପରିବର୍ତ୍ତନ କରି ଲେଖ ।
ସାଧବ, ଦାତା, ରାଜ୍ଞୀ, ସାଧ୍ବୁ, ଶିକ୍ଷକ, ଭଗବତୀ, ମଳାଶୁର, ଦୁଃଖିନୀ, ଷଣ୍ଢ, ସ୍ତ୍ରୀ, ବାଘ, ତପସ୍ୱୀ, ବଣିଆ, ଶ୍ୱାନ, ଗର୍ବୀ, ଶିକ୍ଷୟିତ୍ରୀ ।

୩ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଲିଙ୍ଗ ନିର୍ଣ୍ଣୟ କର ।
ଚଢ଼େଇ, ପୂଜାରୀ, ଶତ୍ରୁତା, ମାତୁଳା, ଲୋକ, ମୁଖର, ମରଦ, ଧନଶାଳୀ, ଛୁଆ, ଧାରୀ, ବାଛୁରୀ, ଦର୍ପଣ, ଟେବୁଲ୍, ସୌଭାଗ୍ୟବତୀ, ଭଣଜା, ନଣନ୍ଦ

୪ । ଏପରି ତିନୋଟି ଶବ୍ଦ ଲେଖ ଯାହାର ସଂସ୍କୃତ ଓ ଓଡ଼ିଆରେ ଭିନ୍ନ ଲିଙ୍ଗ ହୁଏ ।

୫ । ନିମ୍ନଲିଖିତ ବିଶେଷଣ ପଦ ପରେ ଉପଯୁକ୍ତ ବିଶେଷ୍ୟ ପଦ ଲେଖ ।
ଦାନ୍ତୁରା, ମନସ୍ୱିନୀ, ସୁନ୍ଦରୀ, ଶିକ୍ଷିତା, ଗୁଣବତୀ, ଓଜସ୍ୱୀ, ବେଗଗାମୀ, ଦୁର୍ବଳ, ମିଛୁଆ, ଦୁଃଖୀ ।
ଯେପରି- ବୁଢ଼ା–ବୁଢ଼ାଲୋକ ।

୬ । 'କ' ସ୍ତମ୍ଭରେ ପୁଂଲିଙ୍ଗ ଓ 'ଖ' ସ୍ତମ୍ଭରେ ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ ପୂରଣ କର ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| କୃପଣ | — |
| — | ଘାସିଆଣୀ |
| — | ମାଈ |
| କୁରର | — |
| — | ଶୁକୀ |
| — | ରଙ୍କୁଣୀ |
| — | ଗୃହିଣୀ |
| ପିଉସା | — |
| ପକ୍ଷୀ | — |
| ଗୁଣୀ | — |
| ଶ୍ରମିକ | — |



# ବଚନ

| | |
|---|---|
| ଝିଅ ଫୁଲ ତୋଳୁଛି । | ଝିଅମାନେ ଫୁଲ ତୋଳୁଛନ୍ତି । |
| ସେ ଗୀତ ଗାଉଛି । | ସେମାନେ ଗୀତ ଗାଉଛନ୍ତି । |
| ବହିଟି ନୂଆ । | ବହିଗୁଡ଼ିକ ନୂଆ । |

ଉପର ଉଦାହାରଣରୁ ଝିଅ, ସେ, ବହିଟି- ପ୍ରତ୍ୟେକର ସଂଖ୍ୟା ଏକ ବୋଲି ଜଣାଯାଉଛି ଏବଂ ଝିଅମାନେ, ସେମାନେ, ବହିଗୁଡ଼ିକ- ଏଗୁଡ଼ିକର ସଂଖ୍ୟା ଏକରୁ ଅଧିକ ବା ବହୁତ ବୋଲି ଜଣାଯାଉଛି ।

ଯାହାଦ୍ୱାରା ବସ୍ତୁର ବା ବ୍ୟକ୍ତିର ସଂଖ୍ୟା ଜଣାଯାଏ, ତାହାକୁ 'ବଚନ' କହନ୍ତି । ବିଶେଷ୍ୟ ଓ ସର୍ବନାମ ପଦର ବଚନ ଥାଏ । ବଚନ ଦୁଇ ପ୍ରକାର । ଯଥା- ଏକବଚନ ଓ ବହୁବଚନ ।

**ଏକବଚନ-** ଯେଉଁ ବିଶେଷ୍ୟ ବା ସର୍ବନାମ ପଦରୁ ବସ୍ତୁ ବା ବ୍ୟକ୍ତିର ସଂଖ୍ୟା ଏକ ବୋଲି ଜଣାଯାଏ, ତାହାର ଏକବଚନ ହୁଏ । ଯଥା- ନଈ, କଲମ, ସେ, ତୁମେ, ମୁଁ, ଦେଉଳ ପ୍ରଭୃତି ।

**ବହୁବଚନ-** ଯେଉଁ ବିଶେଷ୍ୟ ବା ସର୍ବନାମ ପଦରୁ ବସ୍ତୁ ବା ବ୍ୟକ୍ତିର ସଂଖ୍ୟା ଏକରୁ ଅଧିକ ବୋଲି ଜଣାଯାଏ, ତାହାର ବହୁବଚନ ହୁଏ । ଯଥା- ନଈଗୁଡ଼ିକ, କଲମସବୁ, ସେମାନେ, ତୁମ୍ଭେମାନେ, ଆମ୍ଭେମାନେ, ଦେଉଳଗୁଡ଼ିକ ଇତ୍ୟାଦି ।

(କ) ଏକବଚନ ବୁଝାଇବାପାଇଁ ସାଧାରଣତଃ ଶବ୍ଦରେ କିଛି ଚିହ୍ନ ଲାଗି ନ ଥାଏ । ଯଥା- ପର୍ବତ, ଫୁଲ, ବଗିଚା, ପୁଅ, ପକ୍ଷୀ ଇତ୍ୟାଦି; ମାତ୍ର ଆମର ବ୍ୟବହାରରେ ଏକବଚନ ବୁଝାଇବାପାଇଁ ଶବ୍ଦରେ ଟା, ଟି, ଟିଏ, ଗୋଟିଏ, ଗୋଟାଏ, ଗୋଟିକ, ଖଣ୍ଡେ, ଖଣ୍ଡିଏ, ଖଣ୍ଡି ପ୍ରଭୃତି ଏକବଚନ ଚିହ୍ନ ଯୋଗ କରାଯାଏ । ଯଥା-

ପିଲାଟା ଦୁଷ୍ଟ, କଲମଟି, କଥାଟିଏ, କିଆରିଗୋଟାକ ବାଲୁଙ୍ଗା, ଗୋଟେ କଦଳୀକୁ ଟଙ୍କାଏ, ଏ ମାଳାଗୋଟିକ ତୁଳସୀ, ପିନ୍ଧିବାକୁ ଲୁଗାଖଣ୍ଡେ ନାହିଁ କି ରହିବାକୁ ଘର ଖଣ୍ଡିଏ ନାହିଁ । ବହିଖଣ୍ଡି ମୂଲ୍ୟବାନ୍ ।

କେତେକ ସ୍ଥଳରେ ସମ୍ମାନ ଓ ପରିମାଣ ବୁଝାଇବାପାଇଁ ଏକବଚନରେ 'ଏ' ଲାଗେ । ଯଥା- ଦାସେ ! ଏଠାକୁ ଆସ, ପଣ୍ଡିତେ ଆସୁଛନ୍ତି । ପ୍ରଧାନେ, ଏତେଦିନ ଯାଏଁ କେଉଁଠି ଥିଲ ? ପଦେ କଥା । ଇଞ୍ଚେ ଭୂମି, ମାଣେ ଜମି, ଟଙ୍କାଏ ଇତ୍ୟାଦି ।

(ଖ) ବହୁବଚନ ବୁଝାଯିବାପାଇଁ ସାଧାରଣତଃ ବିଶେଷ୍ୟ ପଦ ସହିତ ଏ, ମାନେ, ମାନ, ଗୁଡ଼ିକ, ଗୁଡ଼ାକ, ପ୍ରଭୃତି ବହୁବଚନ ଚିହ୍ନ ଯୋଗ କରାଯାଇଥାଏ । ଯଥା-

ପିଲେ, ବାଳକେ, ଲୋକେ, ଛାତ୍ରମାନେ, ଗ୍ରନ୍ଥମାନ, ଅଳିଆଗୁଡ଼ାକ, ଫଳଗୁଡ଼ିକ, ପିଲାଯାକ ।

ସ୍ଥଳବିଶେଷରେ ଶ୍ରେଣୀ, ବର୍ଗ, ବୃନ୍ଦ, ଦଳ, ଯୂଥ, ପଲ, ଗଣ, ରାଜି, ମାଳା, ପଙ୍‌କ୍ତି, ରାଶି, ଚୟ, ମଣ୍ଡଳୀ, ଜାଳ, ସମାଜ, ସମୂହ, ଦାମ, ପାଶ ପ୍ରଭୃତି ସମୂହବାଚକ ଶବ୍ଦ ଏକବଚନ ଶବ୍ଦର ପରେ ଲାଗି ବହୁବଚନ ହୋଇଥାଏ । ଯଥା- ପର୍ବତଶ୍ରେଣୀ, ପଛୁଆଶ୍ରେଣୀ, ଗୁରୁବର୍ଗ, ଛାତ୍ରବୃନ୍ଦ, ପଙ୍ଗପାଳଦଳ, କରିଯୂଥ, ମାଙ୍କଡ଼ପଲ, ଗୋରୁପଲ, ଜନଗଣ, ଦେବଗଣ, ବନରାଜି, ତାଳତମାଳରାଜି, ମେଘମାଳା, ଗିରିମାଳା, ବକପଙ୍‌କ୍ତି, ଧନରାଶି, କବିତାଚୟ, ଶିକ୍ଷକମଣ୍ଡଳୀ, କିରଣଜାଳ, ଛାତ୍ରସମାଜ, ଜନସମୂହ, କଦଳୀକାନ୍ଧି, ଆମ୍ବପେନ୍ଥା, କେଶଦାମ, କେଶପାଶ ।

କେତେକ କ୍ଷେତ୍ରରେ ପଞ୍ଝାଏ, ହଳେ ପ୍ରଭୃତି ସମୂହବାଚକ ପଦ ଏକବଚନ ବିଶେଷ୍ୟ ପଦର ପୂର୍ବରେ ବସି ବହୁବଚନ ଅର୍ଥ ପ୍ରକାଶ କରିଥା'ନ୍ତି । ଯଥା- ପଞ୍ଝେ ପିଲା, ପଞ୍ଝାଏ ମାଙ୍କଡ଼, ହଳେ ବଳଦ, ହଳେ ଧୋତି, ଦଳେ ଗେଣ୍ଡାଳିଆ ଇତ୍ୟାଦି ।

ବେଳେବେଳେ ବହୁତ୍ୱସୂଚକ ବିଶେଷ୍ୟ ପଦ ଏକବଚନ ବିଶେଷ୍ୟ ପଦର ପୂର୍ବରେ ରହି ପୁନରାବୃତ୍ତ ହେଲେ ବହୁବଚନ ଅର୍ଥ ପ୍ରକାଶ କରାଇଥା'ନ୍ତି । ଯଥା- ଦଳଦଳ ଲୋକ, ପଲପଲ ମେଣ୍ଢା, କାନ୍ଧିକାନ୍ଧି କଦଳୀ, ପେନ୍ଥାପେନ୍ଥା ଆମ୍ବ ଇତ୍ୟାଦି ।

(ଗ) ବହୁତ୍ୱସୂଚକ ସଂଖ୍ୟାବାଚକ ବିଶେଷଣ ପରେ ଏକବଚନାନ୍ତ ବିଶେଷ୍ୟପଦ ଥିଲେ, ତାହାର ବହୁବଚନ ହୁଏ ଏବଂ ବିଶେଷ୍ୟ ପଦରେ ବହୁବଚନ ଚିହ୍ନ ରହେ ନାହିଁ । ଯଥା- ସପ୍ତସାଗର, ଶତକୌରବ, ପଞ୍ଚପାଣ୍ଡବ, ଅଗଣିତଯୋଦ୍ଧା, ବହୁତଲୋକ ଇତ୍ୟାଦି ।

(ଘ) ସଂଜ୍ଞାବାଚକ ବା ବ୍ୟକ୍ତିବାଚକ ବିଶେଷ୍ୟ ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ପଦାର୍ଥକୁ ବୁଝାଇଥାଏ । ଫଳରେ ଏମାନଙ୍କର ବହୁବଚନ ହୁଏ ନାହିଁ । ଯଥା- ଶିବ, ଶ୍ୱେତପଦ୍ମା, କୋଣାର୍କ, ଯମୁନା, ହିମାଳୟ; ମାତ୍ର ଗୋଟିଏ ବ୍ୟକ୍ତିର ନାମ ବା ସଂଜ୍ଞାରୁ ଏକାଧିକ ବ୍ୟକ୍ତି ବା ପଦାର୍ଥ ସୂଚିତ ହେଲେ ତାହାର ବହୁବଚନ ହୁଏ । ଯଥା- ତୋଭଳି କେତେକ **ଭୀମଙ୍କୁ** ମୁଁ ଚିହ୍ନିଛି । ଆମ ଶ୍ରେଣୀରେ ପାଞ୍ଚଜଣ **ଦେବାଶିଷ** ପଢୁଛନ୍ତି ।

ଭୀମ, ଦେବାଶିଷ ଏକାଧିକ ନାମକୁ ବୁଝାଉଥିବାରୁ ବହୁବଚନ ।

(ଙ) ବସ୍ତୁବାଚକ ବିଶେଷ୍ୟପଦ ସଂଖ୍ୟା ବୁଝାଉ ନ ଥିବାରୁ ତାହାର ବହୁବଚନ ହୁଏ ନାହିଁ । ଯଥା- ଲୁହା, ସୁନା, ରୁପା, ତମ୍ବା, ପଥର, ଜଳ, ଚାଉଳ ପ୍ରଭୃତି ।

କିନ୍ତୁ ବସ୍ତୁବାଚକ ବିଶେଷ୍ୟ ସଂଖ୍ୟାବୋଧକ ହେଲେ, ତାହାର ବହୁବଚନ ହୋଇଥାଏ । ଯଥା- ଦୁଇ ଟ୍ରାକ୍‌ର ବାଲି, ଦଶ କିଲୋ ଅଟା, ପାଞ୍ଚ ଝୁଡ଼ି ମାଟି, ସାତଖଣ୍ଡ ବରଫ, ଶଗଡ଼େ କାଠ ।

ବସ୍ତୁଗୁଡ଼ିକ ନିର୍ଦ୍ଦିଷ୍ଟ ହେଲେ, ସେଥିରେ ବଚନ ଚିହ୍ନ ଲାଗିଥାଏ । ଯଥା- ଏ ମଇଳାଗୁଡ଼ିକୁ ଏଠାରୁ ବାହାର କର । ଏ ପୋଖରୀର ପାଣିଗୁଡ଼ାକ ଭାରି ଥଣ୍ଡା । ତୁମେ ତୁମର ବହିଗୁଡ଼ାକୁ ସାଇତି ରଖ ।

(ଚ) ଗୁଣବାଚକ ଓ କ୍ରିୟାବାଚକ ବିଶେଷ୍ୟ ପଦ ପ୍ରାୟ କେବଳ ଏକବଚନରେ ବ୍ୟବହୃତ ହୁଅନ୍ତି । ଯଥା- ସାଧୁତା, ପରୋପକାର, ଭକ୍ତି, ଦୟା, ରୋଦନ, ଭୋଜନ, ଯିବା, ଚଳଣି, ଭ୍ରମଣ ଇତ୍ୟାଦି ।

ବେଳେବେଳେ ଟି, ଟା ପ୍ରଭୃତି ଏକବଚନ ଚିହ୍ନ ଲାଗିଥାଏ । ଯଥା-

ଚୈତନ୍ୟର ଚାହାଣିଟା ଚମତ୍କାର । ରହ, ତୋ ଚାକିରିଟା ମୁଁ ଖାଉଛି ।

ଅହଂକାରଟିକୁ ଛାଡ଼ିଦେଲେ ଅରୁଣ ସବୁ ଦୃଷ୍ଟିରୁ ଭଲ ।

(ଛ) ନିତ୍ୟସ୍ୱଭାବ ବା ଚିରନ୍ତନ ସତ୍ୟ ବୁଝାଉଥିଲେ ଏକବଚନାନ୍ତ ଜାତିବାଚକ ବିଶେଷ୍ୟ ପଦଦ୍ୱାରା ବହୁବଚନ ଅର୍ଥ ପ୍ରକାଶିତ ହୋଇଥାଏ ।

ଯଥା- **ମାଛ** ପାଣିରେ ରହେ । **ବାଘ** ମଣିଷ ଖାଏ । **ମନୁଷ୍ୟ** ମରଣଶୀଳ । **ହାଣ୍ଡି** ଭାଙ୍ଗିଲେ ଖପରା । **ବିରାଡ଼ି** ଅତ୍ୟନ୍ତ ଉପକାରୀ ପ୍ରାଣୀ ।

(ଜ) ଗୋଟିଏ ପଦକୁ ବହୁବଚନ କରିବାପାଇଁ ଦୁଇଟି ବହୁବଚନସୂଚକ ଚିହ୍ନ ବା ଶବ୍ଦର ବ୍ୟବହାର ଭୁଲ୍ । ଯଥା- ଅନେକ କୃଷକମାନେ, ବହୁତ ପୋଷାକଗୁଡ଼ିକ, ନାନାସ୍ଥାନମାନ, ଯେତେ ପିଲାସବୁ, ସମସ୍ତ ବନ୍ଧୁବର୍ଗ, ବହୁ ଜନଗଣ, ଅଧିକାଂଶ ଶ୍ରମିକ ମାନଙ୍କର; ମାତ୍ର ଅନେକ କୃଷକ, ପୋଷାକଗୁଡ଼ିକ, ନାନାସ୍ଥାନ, ପିଲାସବୁ, ସମସ୍ତ ବନ୍ଧୁ, ଜନଗଣ, ଅଧିକାଂଶ ଶ୍ରମିକଙ୍କ ବ୍ୟବହାର ଠିକ୍ ବା ଶୁଦ୍ଧ ।

କେତେକ ସ୍ଥଳରେ ଏହି ନିୟମର ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ବାକ୍ୟର ଅର୍ଥକୁ ଶକ୍ତିଶାଳୀ କରିବାପାଇଁ ଯୁଗ୍ମ ବହୁବଚନର ବ୍ୟବହାର ହୋଇଥାଏ ।

ଦେବଦତ୍ତ ବାବୁଙ୍କର **ସବୁ** ପିଲା**ଗୁଡ଼ାକ** ବୁଦ୍ଧିମାନ୍ ।

ହରିପୁର ଗାଁ'ର **ସବୁ** ଗଛ**ଯାକ** ବାତ୍ୟାରେ ଭାଙ୍ଗିଯାଇଛି ।

ମୁନା **ସବୁ** କ୍ଷୀରତ**କ** ଢାଳିଦେଲା ।

(ଝ) 'ଯାକ' ବହୁବଚନ ଚିହ୍ନ ରୂପେ ବ୍ୟବହୃତ ହେବା କୁହାଯାଇଛି; ମାତ୍ର ଏହାର ବ୍ୟାପ୍ତି ଅର୍ଥରେ ସ୍ୱତନ୍ତ୍ର ବ୍ୟବହାର ଅଛି । ଯଥା-

ବର୍ଷଯାକ ତ ଗଲା, ଦିନେ ବହି ଧରିନୁ; ପରୀକ୍ଷାରେ ପାସ୍ କରିଥା'ନ୍ତୁ କେମିତି ?

ଏଠାରେ 'ଯାକ' ବଚନ ଚିହ୍ନ ରୂପେ ବ୍ୟବହୃତ ନ ହୋଇ ବ୍ୟାପ୍ତି ଅର୍ଥରେ ବ୍ୟବହୃତ ହୋଇଛି ।

(ଞ) କେତେକ ସ୍ଥଳରେ ବିଶେଷ୍ୟ ଓ ବିଶେଷଣ ପଦ ଦ୍ୱିତ୍ୱ କରାଯିବା ଦ୍ୱାରା ବହୁବଚନ ସୂଚିତ ହୋଇଥାଏ । ଯଥା-

ବୋଝବୋଝ ଆମ୍ବ, ହାଣ୍ଡିହାଣ୍ଡି ଦହି, ଟ୍ରକଟ୍ରକ ବାଲି, ସୁନ୍ଦରସୁନ୍ଦର ଗୋଲାପ, ଛୋଟଛୋଟ ଆମ୍ବ, ଗରମଗରମ ଭାତ, ନରମନରମ ବରା, ଲକ୍ଷଲକ୍ଷ ଯାତ୍ରୀ, ଡେଙ୍ଗାଡେଙ୍ଗା ଗଛ, ଥଣ୍ଡାଥଣ୍ଡା ପବନ, ଟେଳାଟେଳା ଅଫିମ ।

(ଟ) ଆତ୍ମସମ୍ମାନ ବୁଝାଇବା ଅର୍ଥରେ ସର୍ବନାମ 'ମୁଁ' ବଦଳରେ ବହୁବଚନ 'ଆମେ'ର ବ୍ୟବହାର ହୁଏ । ଯଥା- ଆମେ ଅର୍ଥଲୋଭରେ କୁକର୍ମ କରିପାରିବୁ ନାହିଁ । (ଅର୍ଥାତ୍ ମୁଁ ଅର୍ଥଲୋଭରେ କୁକର୍ମ କରିପାରିବି ନାହିଁ ।) ଆମ୍ଭେ ତୁମ୍ଭଙ୍କୁ ଚିହ୍ନିଅଛୁ । (ଅର୍ଥାତ୍ ମୁଁ ତୁମକୁ ଚିହ୍ନିଅଛି ।)

(ଠ) ସମ୍ମାନସୂଚକ ଏକବଚନ କ୍ରିୟାର ରୂପ ବହୁବଚନ ସହ ସମାନ । ଯଥା- ବାପା ଖାଇଲେ । ଅତିଥିମାନେ ଖାଇଲେ । ସେ ଉପଦେଶ ଦେଉଛନ୍ତି । ସେମାନେ ଉପଦେଶ ଦେଉଛନ୍ତି ।

(ଡ) ଏକବଚନାନ୍ତ ଓ ବହୁବଚନାନ୍ତ ବଚନ ଚିହ୍ନ 'ଏ' ମଧ୍ୟରେ ପାର୍ଥକ୍ୟ ଅଛି । ଯଥା-

**କିଲେ** ଚାଉଳ ଦିଅ । (ଏକବଚନ)
**ପିଲେ** ଗହଳି କରୁଛନ୍ତି । (ବହୁବଚନ)
ବାବୁ, ଭିକ **ମୁଠେ** ଦିଅ । (ଏକବଚନ)
ଶୁଣ **ସୁଜନେ** ଦେଇ ମନ । (ବହୁବଚନ)

## ଅନୁଶୀଳନୀ

୧ । 'କ' ସ୍ତମ୍ଭର ପ୍ରତ୍ୟେକ ଶବ୍ଦ ସହ 'ଖ' ସ୍ତମ୍ଭର ଉପଯୁକ୍ତ ଶବ୍ଦକୁ ଯୋଗ କରି ବାକ୍ୟଗଠନ କର ।

| **'କ' ସ୍ତମ୍ଭ** | **'ଖ' ସ୍ତମ୍ଭ** |
|---|---|
| ଛାତ୍ର | ବୃନ୍ଦ |
| ଚାଷୀ | ସମୂହ |
| ପକ୍ଷୀ | ମାଳା |

| | |
|---|---|
| ଦେଶ | ରାଜି |
| ଦୃଶ୍ୟ | ପନ୍ତି |
| ମରାଳ | କୁଳ |
| କବି | ଗଣ |
| ମେଘ | ସମାଜ |
| ଦ୍ୱୀପ | ଚୟ |
| କବିତା | ପୁଞ୍ଜ |

୨ । ଅଶୁଦ୍ଧି ସଂଶୋଧନ କରି ଲେଖ ।

(କ) ସଭାରେ ଅନେକ ଚାଷୀକୁଳ ଉପସ୍ଥିତ ଥିଲେ ।

(ଖ) ବନଭୂମିରେ ସହସ୍ର ସହସ୍ର ବୃକ୍ଷମାନ ଥାଏ ।

(ଗ) ପ୍ରତ୍ୟେକ ଛାତ୍ରମାନେ ଗଣେଶପୂଜା ଚାନ୍ଦା ଦେଇଛନ୍ତି ।

(ଘ) ହେ ସମସ୍ତ ଛାତ୍ରବୃନ୍ଦ, ତୁମ୍ଭେମାନେ ଜନ୍ମଭୂମିର ଉନ୍ନତିରେ ଲାଗିପଡ଼ ।

(ଙ) ରାଜା ଶିବି ଗୋଟିଏ ଭୀତ କପୋତଟିକୁ ଅଭୟ ଦେଲେ ।

୩ । ତଳଲିଖିତ ବାକ୍ୟମାନଙ୍କରେ ଥିବା କଳା ଅକ୍ଷରର ପଦମାନଙ୍କର ବଚନ ପରିବର୍ତ୍ତନ କରି ବାକ୍ୟଗୁଡ଼ିକୁ ଲେଖ ।

(କ) ବର୍ଷାଋତୁରେ **ନଦୀର** ଜଳ ଆବିଳ ଥାଏ ।

(ଖ) **ଶିଶୁମାନେ** ସରଳ ସ୍ୱଭାବର ଅଟନ୍ତି ।

(ଗ) ଏହି **ଝିଅଟି** ଭଲ ପଢ଼ିବା ସହିତ ଘରକାମ ମଧ୍ୟ କରୁଛି ।

(ଘ) **ସୈନିକ** ଦେଶକୁ ରକ୍ଷା କରେ ।

(ଙ) କଞ୍ଚା **ଆମ୍ବଗୁଡ଼ିକୁ** ଖଟାପାଇଁ ରଖ ।

(ଚ) ପିତା **ସାଧୁଙ୍କୁ** ନିମନ୍ତ୍ରଣ କରି ଭୁରି ଭୋଜନ ଦେଲେ ।

(ଛ) **ଯେଉଁମାନେ** କର୍ତ୍ତବ୍ୟ କରନ୍ତି, **ସେମାନେ** ଉନ୍ନତି କରନ୍ତି ।

୪ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ରେଖାଙ୍କିତ ପଦମାନଙ୍କର ବଚନ ନିରୂପଣ କର ।

(କ) <u>ଆପଣମାନେ</u> ଏହି କାର୍ଯ୍ୟ କରନ୍ତୁ ।

(ଖ) <u>ସେମାନେ</u> ଏଠାରୁ ଚାଲିଯାଆନ୍ତୁ ।

(ଗ) <u>ତୁ</u> ପରା ମୋର ଅନ୍ଧର ଲଉଡ଼ି ।

(ଘ) <u>ପକ୍ଷୀଗୁଡ଼ିକ</u> ଏଠାରୁ ଉଡ଼ିଗଲେ ।

(ଙ) <u>ତୁମେମାନେ</u> ପରିଶ୍ରମ କର ।



# ପୁରୁଷ

କଥୋପକଥନ ସମୟରେ ବା ଭାଷାର ବ୍ୟବହାର ବେଳେ ସାଧାରଣତଃ ଦେଖାଯାଏ- ଜଣେ କହୁଛି, ଜଣକୁ କହୁଛି ଏବଂ କାହାରି ସମ୍ବନ୍ଧରେ କହୁଛି ।

ଯେ କହେ ସେ ନିଜକୁ 'ମୁଁ', 'ଆମେ', 'ଆମ୍ଭେ', 'ଆମ୍ଭେମାନେ' ଶବ୍ଦଦ୍ୱାରା ପ୍ରକାଶ କରିଥାଏ । ଏହି ଶବ୍ଦଗୁଡ଼ିକୁ ବ୍ୟାକରଣରେ **ପ୍ରଥମ ପୁରୁଷ** ବୋଲି କୁହାଯାଏ ।

ଯାହାକୁ କହେ, ତା'ପାଇଁ 'ତୁ', 'ତୁମେ', 'ତୁମ୍ଭେ', 'ତୁମ୍ଭେମାନେ' ଶବ୍ଦଗୁଡ଼ିକୁ ପ୍ରୟୋଗ କରିଥାଏ । ଏଗୁଡ଼ିକୁ ବ୍ୟାକରଣରେ **ଦ୍ୱିତୀୟ ପୁରୁଷ** ରୂପେ ଗ୍ରହଣ କରାଯାଏ ।

ଯାହା ସମ୍ବନ୍ଧରେ କହେ, ତା' ପାଇଁ 'ସେ', 'ସେମାନେ', 'ଯେ', ଯେଉଁମାନେ', 'କିଏ', 'କେଉଁମାନେ', 'ଇଏ', 'ଏମାନେ' ପ୍ରଭୃତି ଶବ୍ଦ ବ୍ୟବହାର କରିବାର ଦେଖାଯାଏ । ବ୍ୟାକରଣରେ ଏଗୁଡ଼ିକୁ **ତୃତୀୟ ପୁରୁଷ** ବୋଲି କହନ୍ତି ।

ଅତଏବ ପୁରୁଷ ତିନୋଟି, ଯଥା- (୧) ପ୍ରଥମ ପୁରୁଷ, (୨) ଦ୍ୱିତୀୟ ପୁରୁଷ, (୩) ତୃତୀୟ ପୁରୁଷ ।

ପ୍ରଥମ ପୁରୁଷ ଓ ଦ୍ୱିତୀୟ ପୁରୁଷର ସର୍ବନାମ ପଦଗୁଡ଼ିକ ବ୍ୟତୀତ ଅନ୍ୟ ସମସ୍ତ ସର୍ବନାମ ପଦ ଓ ବିଶେଷ୍ୟ ପଦ ତୃତୀୟ ପୁରୁଷର ଅନ୍ତର୍ଗତ ।

ସମ୍ମାନ ଅର୍ଥରେ 'ତୁମେ', 'ତୁମ୍ଭେମାନେ' ବଦଳରେ 'ଆପଣ' ଶବ୍ଦର ବ୍ୟବହାର କରାଯାଏ । ଏହା ଦ୍ୱିତୀୟ ପୁରୁଷ; କିନ୍ତୁ ଏହାର କ୍ରିୟାପଦ ଦ୍ୱିତୀୟ ପୁରୁଷ ଅନୁସାରେ ନ ହୋଇ ତୃତୀୟ ପୁରୁଷ ବହୁବଚନ ହୋଇଥାଏ । ଯଥା-

ଆପଣ ଆସନ୍ତୁ । ଆପଣ ବସନ୍ତୁ । ଆପଣ ମୋ କଥା ଶୁଣନ୍ତୁ । 'ଆପଣ' ଶବ୍ଦ ବ୍ୟତୀତ ହଜୁର, ମଣିମା ଓ ଛାମୁ ପ୍ରଭୃତି ଶବ୍ଦ ଦ୍ୱିତୀୟ ପୁରୁଷ ରୂପେ ବ୍ୟବହୃତ ହେବାର ଦେଖାଯାଏ ।

ବାକ୍ୟରେ କ୍ରିୟାପଦ କର୍ତ୍ତାର ପୁରୁଷ, ବଚନକୁ ଅନୁସରଣ କରିଥାଏ ।

| **ପ୍ରଥମ ପୁରୁଷ** | **ଦ୍ୱିତୀୟ ପୁରୁଷ** | **ତୃତୀୟ ପୁରୁଷ** |
|---|---|---|
| ଏକବଚନ- ମୁଁ ପଢୁଛି । | ତୁମେ ପଢୁଛ । | ସେ ପଢୁଛି । |
| ବହୁବଚନ- ଆମ୍ଭେମାନେ ପଢୁଛୁ । | ତୁମ୍ଭେମାନେ ପଢୁଛ । | ସେମାନେ ପଢୁଛନ୍ତି । |

ସମସ୍ତ ବିଭକ୍ତି ଓ ବଚନରେ ସର୍ବନାମ ପଦଗୁଡ଼ିକର ଯେଉଁ ରୂପ ହୁଏ, ତାହା ସେହି ପୁରୁଷର ବୋଲି ବୁଝିବାକୁ ହେବ । ଯଥା- ମୁଁ, ଆମ୍ଭେମାନେ; ମୋତେ, ଆମ୍ଭମାନଙ୍କୁ; ମୋଦ୍ୱାରା, ଆମ୍ଭମାନଙ୍କଦ୍ୱାରା ପ୍ରଭୃତି ।

ତୁ, ତୁମ୍ଭେମାନେ, ତୋତେ, ତୁମ୍ଭମାନଙ୍କୁ; ତୋଦ୍ୱାରା, ତୁମ୍ଭମାନଙ୍କ ଦ୍ୱାରା ପ୍ରଭୃତି ।

ସେ, ସେମାନେ; ତାକୁ, ସେମାନଙ୍କୁ; ତାଦ୍ୱାରା, ସେମାନଙ୍କ ଦ୍ୱାରା ପ୍ରଭୃତି ।

'ତୁ'ର ବ୍ୟବହାର-

ଅବଜ୍ଞା ବା ଅନାଦାର ଅର୍ଥରେ ଦ୍ୱିତୀୟ ପୁରୁଷ ଏକବଚନରେ 'ତୁ' ବ୍ୟବହାର କରାଯାଏ । ଯଥା- ତୁ ମୋ ଆଗରୁ ଶୀଘ୍ର ଯା । ତୁ ଗୋଟାଏ ଅମଣିଷ ।

ଅତ୍ୟଧିକ ଆଦର ବା ଭକ୍ତି ପ୍ରଦର୍ଶନ ନିମିତ୍ତ 'ତୁ'ର ମଧ୍ୟ ବ୍ୟବହାର କରାଯାଏ । ଯଥା- ତୁ ମୋର ପ୍ରାଣ, ତୁ ମୋର ହୃଦୟର ହାର, ତୁ ମୋର ସବୁକିଛି, ତୁ ନାଥ ପରମ ଦୟାଳୁ, ତୁ ଦେବଦେବ ଅନ୍ତର୍ଯ୍ୟାମୀ, ତୁ ହରି ମୋର ପିତାମାତା ।

## ଅନୁଶୀଳନୀ

୧ । ସଂଶୋଧନ କର ।

ତମେ ଏ କାର୍ଯ୍ୟ କରନ୍ତୁ । ଆପଣ ସେଠାରେ ବସ । ରେ ପୁଅ ! ତୁମେ ମୋର ନୟନର ତାରା । ମୁଁ ଗାଁକୁ ଯାଉଥିଲୁ । ସେ ସତ କହନ୍ତୁ । ଆପଣମାନେ ଏହି କାର୍ଯ୍ୟ କର । ସେମାନେ ଏଠାରୁ ଗଲୁ । ତୁ ପରା ସେମାନଙ୍କର ଅନ୍ଧର ଲଉଡ଼ି । ଆରେ ଧନ ! ଆପଣ ମୋର ଗଣ୍ଠିଧନ ।

୨ । କଳା ଅକ୍ଷରରେ ପଦଗୁଡ଼ିକ ପୁରୁଷ ନିର୍ଦ୍ଦେଶ କର ।

(କ) **ମଣିମା**, **ମୋ** ଗୁହାରି ଶୁଣନ୍ତୁ ।

(ଖ) **ତୁମେ** ଈଶ୍ୱରଙ୍କର **ସନ୍ତାନ** ।

(ଗ) **ଆପଣ ଦୀନଜନଙ୍କର** ସହାୟ ।

(ଘ) **ତୁ ବନ୍ଧୁ** ସଖା ସହୋଦର ।

(ଙ) **ଆମ୍ଭେମାନେ ତୁମ୍ଭମାନଙ୍କୁ** ପଚାରିବୁ ।

(ଚ) ଚନ୍ଦ୍ରିକା **ଚନ୍ଦ୍ର** ଦେଖୁଛି ।

୩ । ପୁରୁଷ କେତେ ପ୍ରକାର ଓ କ'ଣ କ'ଣ ? ପ୍ରତ୍ୟେକରୁ ଉଦାହରଣ ଦିଅ ।

୪ । ବିଭିନ୍ନ ଅର୍ଥରେ 'ତୁ'ର ବ୍ୟବହାର ବାକ୍ୟରେ ଦର୍ଶାଅ ।

୫ । ବାକ୍ୟରେ କ୍ରିୟାପଦ କାହାକୁ ଅନୁସରଣ କରିଥାଏ ?



# କାରକ

ମୁଖ୍ୟମନ୍ତ୍ରୀ ରବୀନ୍ଦ୍ର ମଣ୍ଡପରେ, ସ୍ୱାଧୀନତା ଦିବସରେ, ଓଡ଼ିଶା ସରକାରଙ୍କ ପକ୍ଷରୁ ଶିକ୍ଷକଶିକ୍ଷିକାମାନଙ୍କୁ ନିଜ ହାତରେ ମାନପତ୍ର ଓ ଅର୍ଥ ପ୍ରଦାନ କଲେ ।

ଉପର ବାକ୍ୟରେ 'ପ୍ରଦାନ କଲେ' କ୍ରିୟାପଦ । ଏହି କ୍ରିୟାପଦ ସହିତ ବାକ୍ୟରେ ଥିବା ଅନ୍ୟପଦମାନଙ୍କର କିଭଳି ସମ୍ବନ୍ଧ ଅଛି, ଜାଣିବାପାଇଁ କ୍ରିୟାପଦ ପୂର୍ବରେ ପ୍ରଶ୍ନବାଚକ ସର୍ବନାମ ଲଗାଇଲେ ଉତ୍ତର ଆସିବ ।

| | ପ୍ରଶ୍ନ | ଉତ୍ତର |
|---|---|---|
| ୧ । | କିଏ ପ୍ରଦାନ କଲେ ? | ମୁଖ୍ୟମନ୍ତ୍ରୀ |
| ୨ । | କ'ଣ ପ୍ରଦାନ କଲେ ? | ମାନପତ୍ର ଓ ଅର୍ଥ |
| ୩ । | କାହିଁରେ ବା କିପରି ପ୍ରଦାନ କଲେ ? | ନିଜ ହାତରେ |
| ୪ । | କାହାକୁ ପ୍ରଦାନ କଲେ ? | ଶିକ୍ଷକଶିକ୍ଷିକାମାନଙ୍କୁ |
| ୫ । | କାହାପକ୍ଷରୁ ପ୍ରଦାନ କଲେ ? | ଓଡ଼ିଶା ସରକାରଙ୍କ ପକ୍ଷରୁ |
| ୬ । | କେଉଁଠାରେ ପ୍ରଦାନ କଲେ ? | ରବୀନ୍ଦ୍ର ମଣ୍ଡପରେ |
| ୭ । | କେବେ ପ୍ରଦାନ କଲେ ? | ସ୍ୱାଧୀନତା ଦିବସରେ |

ଏହି ଆଲୋଚନାରୁ ଜଣାଗଲା ଯେ 'ପ୍ରଦାନ କଲେ' କ୍ରିୟାପଦ ସହିତ ମୁଖ୍ୟମନ୍ତ୍ରୀ, ମାନପତ୍ର ଓ ଅର୍ଥ, ନିଜ ହାତରେ, ଶିକ୍ଷକ-ଶିକ୍ଷିକାମାନଙ୍କୁ, ଓଡ଼ିଶା ସରକାରଙ୍କ ପକ୍ଷରୁ, ରବୀନ୍ଦ୍ର ମଣ୍ଡପରେ, ସ୍ୱାଧୀନତା ଦିବସରେ ପଦମାନଙ୍କର ପ୍ରତ୍ୟକ୍ଷ ସମ୍ବନ୍ଧ ରହିଛି । ଏଣୁ ଏଗୁଡ଼ିକ କାରକ ।

ବାକ୍ୟରେ କ୍ରିୟାପଦ ସହିତ ଯେଉଁ ପଦର ସମ୍ବନ୍ଧ ଥାଏ, ତାହାକୁ କାରକ କହନ୍ତି ।

କ୍ରିୟାପଦ ସହିତ ବାକ୍ୟସ୍ଥ ପଦମାନଙ୍କର ଛଅପ୍ରକାର ସମ୍ବନ୍ଧ ଥାଏ । ଏଣୁ କାରକ ଛଅପ୍ରକାର । ଯଥା- କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ ଓ ଅଧିକରଣ କାରକ ।

## କର୍ତ୍ତାକାରକ

(୧) ଛାତ୍ର ବ୍ୟାକରଣ ପଢୁଛି । (୨) ଶିକ୍ଷକ ଛାତ୍ରକୁ ବ୍ୟାକରଣ ପଢ଼ାଉଛନ୍ତି ।

ପ୍ରଥମ ବାକ୍ୟରେ ପଢ଼ିବା କ୍ରିୟା ଛାତ୍ର ସମ୍ପାଦନ କରୁଥିବାର ଜଣାଯାଉଛି । ଦ୍ୱିତୀୟ ବାକ୍ୟରେ ପଢ଼ାଇବା କ୍ରିୟା ଶିକ୍ଷକ ସମ୍ପାଦନ କରୁଥିବାର ବୁଝାଯାଉଛି ।

ଯେ କ୍ରିୟାସମ୍ପାଦନ କରେ ବା କରାଏ, ତାହାର କର୍ତ୍ତାକାରକ ହୁଏ ।

ଉପର ଉଦାହରଣରେ ଛାତ୍ର ଓ ଶିକ୍ଷକ କର୍ତ୍ତାକାରକ । କ୍ରିୟାପଦ ପୂର୍ବରୁ କିଏ, କ'ଣ ଲଗାଇ ପ୍ରଶ୍ନ କଲେ ଯେଉଁ ଉତ୍ତର ମିଳେ, ତାହା କର୍ତ୍ତାକାରକ । ଯଥା- ଶିକ୍ଷକ ଆସୁଛନ୍ତି । ପ୍ରଶ୍ନ- କିଏ ଆସୁଛନ୍ତି ?, ଉତ୍ତର-ଶିକ୍ଷକ । ଫୁଲ ଫୁଟିଛି । ପ୍ରଶ୍ନ- କ'ଣ ଫୁଟିଛି ? ଉତ୍ତର-ଫୁଲ ।

'ଶିକ୍ଷକ' ଓ 'ଫୁଲ' ବାକ୍ୟ ଦୁଇଟିରେ କର୍ତ୍ତାକାରକ ।

**କର୍ତ୍ତାର ପ୍ରକାର :**

**(୧) ମୁଖ୍ୟକର୍ତ୍ତା-** ନିଜେ କାର୍ଯ୍ୟ ସମ୍ପାଦନ କରୁଥିବା କର୍ତ୍ତାକୁ ମୁଖ୍ୟକର୍ତ୍ତା କହନ୍ତି । ଯଥା- **ଗାୟତ୍ରୀ** ଗୀତ ଗାଉଛି ।

**ବେଦବ୍ୟାସ** ମହାଭାରତ ରଚନା କରିଥିଲେ । ଏଠାରେ ଗାୟତ୍ରୀ ନିଜେ ଗୀତ ଗାଇବା ଓ ବେଦବ୍ୟାସ ନିଜେ ମହାଭାରତ ଲେଖିବା ବୁଝାଉଥିବାରୁ ମୁଖ୍ୟକର୍ତ୍ତା

(୨) **ପ୍ରଯୋଜକ କର୍ତ୍ତା-** ଯେଉଁ କର୍ତ୍ତା ନିଜେ କାର୍ଯ୍ୟ ସମ୍ପାଦନ ନ କରି ଅନ୍ୟଦ୍ୱାରା କରାଏ, ତାହା ପ୍ରଯୋଜକ କର୍ତ୍ତା । ଏହାକୁ ହେତୁକର୍ତ୍ତା ମଧ୍ୟ କୁହାଯାଏ । ଯଥା-

**ଶିକ୍ଷକ** ଛାତ୍ରଦ୍ୱାରା ମୂର୍ତ୍ତି ଗଢ଼ାଇଲେ ।

**ପରଶୁରାମ** କର୍ଣ୍ଣଙ୍କୁ ଧନୁର୍ବିଦ୍ୟା ଶିଖାଇଥିଲେ ।

ଉପର ବାକ୍ୟଦ୍ୱୟରେ ଗଢ଼ିବା କାର୍ଯ୍ୟ ଶିକ୍ଷକ ନ କରି ଛାତ୍ରଦ୍ୱାରା ଓ ଶିଖିବା କାର୍ଯ୍ୟ ପରଶୁରାମ ନିଜେ ନ କରି କର୍ଣ୍ଣଙ୍କ ଦ୍ୱାରା ସମ୍ପାଦନ କରିଥିବା ଜଣାପଡୁଛି । ତେଣୁ ଶିକ୍ଷକ ଓ ପରଶୁରାମ ପ୍ରଯୋଜକ କର୍ତ୍ତା ।

(୩) **ପ୍ରଯୋଜ୍ୟ କର୍ତ୍ତା-** ପ୍ରଯୋଜକ କର୍ତ୍ତା ଯାହାଦ୍ୱାରା କାର୍ଯ୍ୟ ସମ୍ପାଦନ କରେ, ସେ ପ୍ରଯୋଜ୍ୟ କର୍ତ୍ତା । ଯଥା-

ବାଲ୍ମୀକି **ଲବକୁଶଙ୍କ ଦ୍ୱାରା** ରାମଚନ୍ଦ୍ରଙ୍କୁ ରାମାୟଣ ଶୁଣାଇଥିଲେ ।

ମା' **ପୁଅକୁ** ଭାତ ଖୁଆଇଥିଲେ ।

ଏଠାରେ 'ଲବକୁଶଙ୍କ ଦ୍ୱାରା', 'ପୁଅକୁ' ପଦ ଦୁଇଟି ପ୍ରଯୋଜ୍ୟ କର୍ତ୍ତା ।

ପ୍ରଯୋଜ୍ୟ କର୍ତ୍ତାଠାରେ ଦ୍ୱିତୀୟା ବା ତୃତୀୟା ବିଭକ୍ତି ହୋଇଥାଏ ।

**ଉହ୍ୟକର୍ତ୍ତା-** ଆଦେଶସୂଚକ ବାକ୍ୟରେ ବେଳେବେଳେ କର୍ତ୍ତା ଉହ୍ୟ ବା ଅଦୃଶ୍ୟ ଭାବରେ ଥାଏ । ଯଥା- ସତ୍ୟ କହ, ଧର୍ମ ଆଚରଣ କର । ସେଠାକୁ ଯାଅ । ସବୁଦିନ ପରିଶ୍ରମ କର ।

ଏହିସବୁ ବାକ୍ୟରେ ଦ୍ୱିତୀୟ ପୁରୁଷର କର୍ତ୍ତା 'ତୁମେ' ଉହ୍ୟ ରହିଛି ।

**କର୍ତ୍ତା ହୋଇପାରୁଥିବା ପଦ ବା ପଦପୁଞ୍ଜ-**

ବିଶେଷ୍ୟ- **ଭିକାରିଟି** ଭିକ ମାଗୁଛି । **ଶିଶୁଟି** ଖେଳୁଛି ।

ସର୍ବନାମ- **ମୁଁ** ପୁରୀ ଯିବି । **ସେମାନେ** ବିଲକୁ ଯାଉଛନ୍ତି ।

ବିଶେଷଣ- **ମୂର୍ଖ** ସହଜରେ ବୁଝେ ନାହିଁ । **ଜ୍ଞାନୀ** ସବୁଠି ପୂଜା ପାଏ ।

କୃଦନ୍ତ ପଦ- **ମରଣ** ଜୀବନର ଅନ୍ତିମ ସୋପାନ ।

ତା'ର **ଚାହାଣିଟା** ଅତି ଚମତ୍କାର ।

**ଖଣ୍ଡବାକ୍ୟ- ସେ ଧର୍ମରେ ଥିଲେ** ବୋଲି ଏତେବଡ଼ ବିପଦରୁ ରକ୍ଷା ପାଇଲେ ।

**ତୁମେ ପୁଣି ଫେରିଆସିଛ,** ଖୁବ୍ ଭଲକଥା ।

ବାକ୍ୟାଂଶ- **ମୁକୁଟମଣ୍ଡିତ ରାଜଶିର** ନୁହେଁ ଶାନ୍ତିର ଆସ୍ପଦ ।

**ଚିଲିକାର ଦିଗନ୍ତବିସ୍ତାରୀ ନୀଳ ଜଳରାଶି** ଜନମନ ହରଣ କରେ ।

## କର୍ମକାରକ

(୧) ଖାରବେଳ **ମଗଧ** ଜୟ କରିଥିଲେ ।

(୨) ପିତା **ପୁତ୍ରକୁ** ଡାକୁଛନ୍ତି ।

ପ୍ରଥମ ବାକ୍ୟରେ 'ଖାରବେଳ' ଏହି କର୍ତ୍ତା ପଦର 'ଜୟ କରିବା' କ୍ରିୟା ସମ୍ପାଦନରେ ଅଭିଳଷିତ ବା ମୁଖ୍ୟ ଲକ୍ଷ୍ୟ ହେଉଛି 'ମଗଧ' । ଦ୍ୱିତୀୟ ବାକ୍ୟରେ 'ପିତା' କର୍ତ୍ତାପଦର 'ଡାକିବା' କ୍ରିୟା ସମ୍ପାଦନରେ ମୁଖ୍ୟ ଅଭିଳାଷ ବା ଲକ୍ଷ୍ୟ ହେଉଛି 'ପୁତ୍ର' ।

କର୍ତ୍ତାର କ୍ରିୟାସମ୍ପାଦନରେ ଯାହା ଅଭିଳଷିତ ବା ପ୍ରଧାନ ଲକ୍ଷ୍ୟ, ତାହା କର୍ମକାରକ । ଏଣୁ ବାକ୍ୟ ଦୁଇଟିରେ 'ମଗଧ' ଓ 'ପୁତ୍ର' କର୍ମକାରକ ।

ପ୍ରତ୍ୟେକ ବାକ୍ୟକୁ ନାସ୍ତିସୂଚକ କରାଯାଇପାରେ । ଯଥା- ଶିଶୁ **କ୍ଷୀର** ପିଉଛି । ଶିଶୁ **କ୍ଷୀର** ପିଉନାହିଁ ।

ଏହି ଦୁଇବାକ୍ୟରେ କର୍ତ୍ତା 'ଶିଶୁ'ର ଅଭିଳଷିତ ଓ ଅନଭିଳଷିତ 'କ୍ଷୀର' ଉଭୟ ପଦ କର୍ମକାରକ ଅଟେ ।

**ମୁଖ୍ୟକର୍ମ ଓ ଗୌଣକର୍ମ :**

କେତେକ ବାକ୍ୟରେ ଦୁଇଟି କର୍ମର ବ୍ୟବହାର ଦେଖାଯାଏ ।

ଯଥା- ଛାତ୍ରମାନେ **ଶିକ୍ଷକଙ୍କୁ ପ୍ରଶ୍ନ** ପଚାରୁଛନ୍ତି ।

ସନ୍ନ୍ୟାସୀ **ଲୋକମାନଙ୍କୁ ଉପଦେଶ** ଦେଉଛନ୍ତି ।

ପ୍ରଥମ ବାକ୍ୟରେ 'ଶିକ୍ଷକଙ୍କୁ' ଓ 'ପ୍ରଶ୍ନ' ଦୁଇଟି କର୍ମ 'ପଚାରୁଛନ୍ତି' କ୍ରିୟା ସହିତ ସମ୍ବନ୍ଧିତ । ଦ୍ୱିତୀୟ ବାକ୍ୟରେ 'ଲୋକମାନଙ୍କୁ' ଓ 'ଉପଦେଶ' କର୍ମଦ୍ୱୟ 'ଦେଉଛନ୍ତି' କ୍ରିୟା ସହିତ ସମ୍ପୃକ୍ତ । ଏଥିମଧ୍ୟରୁ 'ପଚାରିବା' କ୍ରିୟା ସଙ୍ଗେ 'ପ୍ରଶ୍ନ' ଓ 'ଦେଉଛନ୍ତି' କ୍ରିୟା ସହିତ 'ଉପଦେଶ' ପ୍ରଧାନଭାବେ ସମ୍ପୃକ୍ତ । ଏଣୁ ଏ ଦୁଇଟି ମୁଖ୍ୟ କର୍ମ । ଶିକ୍ଷକଙ୍କୁ ଓ ଲୋକମାନଙ୍କୁ ଗୌଣକର୍ମ ।

ପ୍ରେରଣାର୍ଥକ କ୍ରିୟାର ମଧ୍ୟ ଦୁଇଟି କର୍ମ ଥାଏ ।

ଯଥା– ମାଆ **ଶିଶୁକୁ ଦୁଧ** ପିଆଉଛନ୍ତି ।

ଶିକ୍ଷକ **ଛାତ୍ରମାନଙ୍କୁ ପ୍ଲାନେଟୋରିୟମ** ଦେଖାଇଲେ ।

ପ୍ରଦତ୍ତ ଉଦାହରଣରେ ପିଆଉଛନ୍ତି ଓ ଦେଖାଇଲେ ପ୍ରେରଣାର୍ଥକ କ୍ରିୟା । 'ପିଆଉଛନ୍ତି' କ୍ରିୟାର କର୍ମ 'ଶିଶୁକୁ' ଓ 'ଦୁଧ' । 'ଦେଖାଇଲେ' କ୍ରିୟାର କର୍ମ 'ଛାତ୍ରମାନଙ୍କୁ' ଓ 'ପ୍ଲାନେଟୋରିୟମ୍' । ଉଦାହରଣ ଦୁଇଟିରେ 'ଦୁଧ' ଓ 'ପ୍ଲାନେଟୋରିୟମ୍' ମୁଖ୍ୟକର୍ମ । 'ଶିଶୁକୁ' ଓ 'ଛାତ୍ରମାନଙ୍କୁ' ଗୌଣ କର୍ମ ।

**ମୁଖ୍ୟକର୍ମ ଓ ଗୌଣକର୍ମ ନିର୍ଣ୍ଣୟ :**

ବାକ୍ୟରେ ଦୁଇଟି କର୍ମ ଥିଲେ, ଯେଉଁ କର୍ମଟି କର୍ମ ଭିନ୍ନ ଅନ୍ୟକାରକରେ ବ୍ୟବହୃତ ହୋଇପାରେ, ତାହା ଗୌଣକର୍ମ ବା ଅପ୍ରଧାନ କର୍ମ । ଅନ୍ୟ କର୍ମଟି ମୁଖ୍ୟ କର୍ମ ବା ପ୍ରଧାନ କର୍ମ ଅଟେ । ସାଧାରଣତଃ ଅପ୍ରାଣୀବାଚକ ପଦଟି ମୁଖ୍ୟକର୍ମ ହୋଇଥାଏ ଓ ପ୍ରାଣୀବାଚକ ପଦଟି ଗୌଣକର୍ମ । କ୍ରିୟାର ଠିକ୍ ପୂର୍ବରୁ ମୁଖ୍ୟକର୍ମ ଥାଏ ଏବଂ ଏଥିରେ ଦ୍ୱିତୀୟା ବିଭକ୍ତିର ଚିହ୍ନ ନ ଥାଏ । ଗୌଣକର୍ମରେ ଦ୍ୱିତୀୟା ବିଭକ୍ତିର ଚିହ୍ନ ଥାଏ ।

**ବାକ୍ୟର କର୍ମପଦ ରୂପେ ବ୍ୟବହାର :**

✡ ସମସ୍ତେ ଜାଣନ୍ତି, **ଆଷାଢ଼ ମାସରେ ରଥଯାତ୍ରା ହୁଏ** ।

✡ **ସେ କେତେବେଳେ ଆସିବେ,** ମୁଁ କହିବି ।

✡ ଲୋକଟି ଦେଖିଲା, **ଗୋଟାଏ ଭାଲୁ ତା' ଆଡ଼କୁ ମାଡ଼ିଆସୁଛି** ।

ଏହି ଉଦାହରଣମାନଙ୍କରେ 'ଆଷାଢ଼ ମାସରେ ରଥଯାତ୍ରା ହୁଏ' ବାକ୍ୟଟି 'ଜାଣନ୍ତି' କ୍ରିୟାର କର୍ମ । 'ସେ କେତେବେଳେ ଆସିବେ' ବାକ୍ୟଟି 'କହିବି' କ୍ରିୟାର କର୍ମ ଏବଂ 'ଗୋଟାଏ ଭାଲୁ ତା' ଆଡ଼କୁ ମାଡ଼ିଆସୁଛି' ବାକ୍ୟଟି 'ଦେଖିଲା' କ୍ରିୟାର କର୍ମ ଅଟେ ।

## କରଣ କାରକ

(କ) ସ୍ୱାଗତିକା **ତୁଳୀରେ** ଚିତ୍ର ଆଙ୍କୁଛି ।

(ଖ) ସୁଦର୍ଶନ ପଟ୍ଟନାୟକ **ବାଲିଦ୍ୱାରା** ସୁନ୍ଦର ସୁନ୍ଦର ମୂର୍ତ୍ତି ଗଢୁଛନ୍ତି ।

ଚିତ୍ର ଆଙ୍କିବାରେ ପ୍ରଧାନ ସାଧନ ବା ସହାୟକ 'ତୂଳୀ' । ମୂର୍ତ୍ତି ଗଢ଼ିବାରେ ପ୍ରଧାନ ସାଧକ ବା ସାହାଯ୍ୟକାରୀ ବସ୍ତୁ 'ବାଲି' । ତେଣୁ କ୍ରିୟାସାଧନରେ ଯେ ପ୍ରଧାନ ସାହାଯ୍ୟକାରୀ, ସେ କରଣକାରକ । 'ତୂଳୀରେ' ଓ 'ବାଲିଦ୍ୱାରା' ପଦଦ୍ୱୟ କରଣକାରକ ।

କ୍ରିୟାସାଧନପାଇଁ କର୍ତ୍ତାର ଯେ ପ୍ରଧାନ ସହାୟକ, ତାହାକୁ ବୁଝାଉଥିବା ପଦକୁ କରଣକାରକ କହନ୍ତି ।

## ସମ୍ପ୍ରଦାନ କାରକ

(କ) ଦେଶବାସୀ **ସୁନାମିବିପନ୍ନଙ୍କୁ** ବସ୍ତ୍ର, ଖାଦ୍ୟପେୟ ଓ ଅର୍ଥ ଦାନ କଲେ ।

(ଖ) **ଭୋକିଲା ଭିକାରିକୁ** ଖାଇବାକୁ ଦିଅ ।

ଏଠାରେ 'ଦାନକଲେ' କ୍ରିୟାରୁ 'ସୁନାମିବିପନ୍ନଙ୍କୁ' ଦାନ କରିବା କଥା ସୂଚିତ । ସେହିପରି 'ଦିଅ' କ୍ରିୟାରୁ 'ଭୋକିଲା-ଭିକାରିକୁ' ଦେବା କଥା ପ୍ରକାଶିତ ।

ଯାହାକୁ କୌଣସି ପଦାର୍ଥ ସମ୍ୟକ୍‌ରୂପେ ଦାନ କରାଯାଏ, ତାହାକୁ ସମ୍ପ୍ରଦାନ କାରକ କହନ୍ତି ।

ଦାନର ଗ୍ରହୀତା ଦାନ ଦିଆଯାଇଥିବା ବସ୍ତୁର ସମ୍ପୂର୍ଣ୍ଣ ଅଧିକାରୀ ହେଉ ନ ଥିଲେ, ସମ୍ପ୍ରଦାନ କାରକ ହୁଏନାହିଁ । ଯଥା–

**ଧୋବାକୁ** ଲୁଗାଦିଅ ।

ରାମ, ମୋ ବହିଟି **ମୋତେ** ଦିଅ ।

ଉଭୟ ଉଦାହରଣରେ 'ଦେବା' କ୍ରିୟାର ପ୍ରୟୋଗ ହୋଇଥିଲେ ମଧ 'ଦାନ' ଅର୍ଥ ବୁଝାଉ ନ ଥିବାରୁ ସମ୍ପ୍ରଦାନ କାରକ ନ ହୋଇ କର୍ମକାରକ ହୋଇଛି ।

## ଅପାଦାନ କାରକ

(କ) ନମିତା **ନଳକୂଅରୁ** ପାଣି ଆଣିଲା ।

(ଖ) ମହାକାଶଯାତ୍ରୀମାନେ **ମହାକାଶଯାନରୁ** ଅବତରଣ କଲେ ।

(ଗ) **ଛାତରୁ** ପାଣି ଗଳୁଛି ।

ଉପର ବାକ୍ୟରେ ପାଣି 'ନଳକୂଅରୁ', ମହାକାଶଯାତ୍ରୀମାନେ 'ମହାକାଶଯାନରୁ' ଓ ପାଣି 'ଛାତରୁ' ବିଚ୍ଛିନ୍ନ ବା ପୃଥକ୍ ହେବା ସୂଚିତ ହେଉଛି ।

ବସ୍ତୁ ବା ବ୍ୟକ୍ତି ଯାହାଠାରୁ ପୃଥକ୍ ହେବାର ଜଣାଯାଏ, ସେଠାରେ ଅପାଦାନ କାରକ ହୁଏ ।

ବିଭିନ୍ନ ଅର୍ଥରେ ଅପାଦାନକାରକ ହୁଏ ।

ଆରମ୍ଭ– **ପହିଲି-କାର୍ତ୍ତିକରୁ** ମୁଁ ଭାଗବତପାଠ ଆରମ୍ଭ କରିଛି ।

ବିରତି- **ପାପକର୍ମରୁ** ବିରତ ହୁଅ ।

ରକ୍ଷା- ଈଶ୍ୱର ଧାର୍ମିକଙ୍କୁ **ବିପଦରୁ** ରକ୍ଷା କରନ୍ତି ।

ଉତ୍ପତ୍ତି- **ପାଳରୁ** ଛତୁ ଫୁଟେ । ଗଙ୍ଗା **ହିମାଳୟରୁ** ବାହାରିଛି ।

**ପଙ୍କରୁ** ପଦ୍ମର ଜନ୍ମ ।

ମୁକ୍ତି- ପ୍ରତ୍ୟେକ ଲୋକ କର୍ତ୍ତବ୍ୟ କରି **ପିତୃମାତୃଋଣ, ଗୁରୁଋଣ** ଓ **ରାଷ୍ଟ୍ରଋଣରୁ** ମୁକ୍ତ ହେବା ଉଚିତ ।

ଶ୍ରମିକମାନେ **ଶୋଷଣରୁ** ମୁକ୍ତିପାଇଁ ସଂଗ୍ରାମ କରିବା ଉଚିତ ।

ଅନ୍ତର୍ଦ୍ଧାନ- ଚାହୁଁଚାହୁଁ ଚିଲିକାର ଶାନ୍ତସ୍ନିଗ୍ଧ ଦୃଶ୍ୟରାଜି ମୋର **ଦୃଷ୍ଟିପଥରୁ** ଅନ୍ତର୍ହିତ ହେଲା ।

ପରାଜୟ- ଗୁରୁ **ଶିଷ୍ୟଠାରୁ** ପରାଜୟ ଇଚ୍ଛା କରନ୍ତି ।

ନିବାରଣ- ବନ୍ଧୁ ବନ୍ଧୁକୁ **କୁମାର୍ଗରୁ** ନିବାରଣ କରେ ।

## ଅଧିକରଣ କାରକ

(କ) **ନଦୀକୂଳରେ** ଶୀତଳ ପବନ ବହେ ।

(ଖ) **ଶରତ୍‌ଋତୁରେ** ଆକାଶ ନିର୍ମଳ ଦିଶେ ।

ଏଠାରେ 'ବହେ' କ୍ରିୟାର ସ୍ଥାନ ନଦୀକୂଳରେ ଏବଂ 'ଦିଶେ' କ୍ରିୟାର ସମୟ ଶରତ୍‌ଋତୁରେ । ସୁତରାଂ 'ନଦୀକୂଳରେ' ଓ 'ଶରତ୍‌ଋତୁରେ' ଅଧିକରଣ କାରକ ହୋଇଅଛି ।

କ୍ରିୟା ସାଧିତ ହେବାର ସ୍ଥାନ ଓ ସମୟକୁ ଅଧିକରଣ କାରକ କହନ୍ତି ।

**ବିଭିନ୍ନ ଅଧିକରଣ କାରକ :**

**୧ । ସ୍ଥାନାଧିକରଣ-** ଯେଉଁ ପଦଦ୍ୱାରା କ୍ରିୟା ସାଧିତ ବା ସମ୍ପନ୍ନ ହେଉଥିବା ସ୍ଥାନ ସୂଚିତ ହୁଏ, ତାହା ସ୍ଥାନାଧିକରଣ କାରକ । ଯଥା-

**ଆକାଶରେ** ଚନ୍ଦ୍ର ଉଦୟ ହେଲେ ।

**ପୁରୀରେ** ଶ୍ରୀମନ୍ଦିର ବିଦ୍ୟମାନ ।

**୨ । କାଳାଧିକରଣ-** ଯେଉଁ ପଦଦ୍ୱାରା କ୍ରିୟା ସାଧିତ ହେବାର ସମୟ ଜଣାଯାଏ, ତାହାର କାଳାଧିକରଣ କାରକ ହୁଏ । ଯଥା-

**କାର୍ତ୍ତିକ-ପୂର୍ଣ୍ଣମୀରେ** ବୋଇତବନ୍ଦାଣ ଉତ୍ସବ ପାଳିତ ହୁଏ ।

**ଡିସେମ୍ବର ମାସରେ** ରାଜଧାନୀ-ପୁସ୍ତକମେଳା ଅନୁଷ୍ଠିତ ହୁଏ ।

୩ । **ବିଷୟାଧିକରଣ**- ଯେଉଁ ପଦରୁ କ୍ରିୟାସାଧିତ ହେବାର ବିଷୟ ସମ୍ବନ୍ଧରେ ସୂଚନା ମିଳେ, ତାହାର ବିଷୟାଧିକରଣ କାରକ ହୁଏ । ଯଥା-

ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର **ଦର୍ଶନଶାସ୍ତ୍ରରେ** ଗଭୀର ଜ୍ଞାନ ଥିଲା ।

ଉତ୍କଳବାଚସ୍ପତି ଗୌରୀକୁମାର ବ୍ରହ୍ମା **ସଂସ୍କୃତସାହିତ୍ୟରେ** ଜଣେ ବିଦ୍ୱାନ୍ ବ୍ୟକ୍ତି ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ପ୍ରଯୋଜକ କର୍ତ୍ତା ଭାବରେ ବାକ୍ୟରେ ବ୍ୟବହାର କର ।

ଶିକ୍ଷକ, ମାଲିକ, ଗଉଡ଼, ବୁଢ଼ୀମା, ଶ୍ରୀକୃଷ୍ଣ, ପିତା, ବନ୍ଧୁ

୨ । ତଳବାକ୍ୟଗୁଡ଼ିକରୁ କର୍ତ୍ତାକାରକ ଚିହ୍ନାଇ ଦିଅ ।

(କ) ଅହଙ୍କାର ମନୁଷ୍ୟର ପତନ ଆଣେ ।

(ଖ) ଚିନ୍ତା ଖାଏ ଗଣ୍ଠି, ଲୁଣ ଖାଏ ହାଣ୍ଡି ।

(ଗ) ମୋ କଥା ମନରେ ରଖିଥିବ ।

(ଘ) ପୃଥିବୀରେ କେହି ଚିରଦିନ ଅମର ନୁହେଁ ।

(ଙ) କୁହୁଡ଼ିରେ ଚତୁର୍ଦ୍ଦିଗ ଆଚ୍ଛାଦିତ ହୋଇଛି ।

(ଚ) ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ ମନକୁ ପୁଲକିତ କରେ ।

(ଛ) ମାଳତୀର କଥାରେ ମଧୁରତା ନାହିଁ ।

(ଜ) ସକାଳ ଓ ସନ୍ଧ୍ୟାରେ କିଛି ସମୟ ଖୋଲା ଜାଗାରେ ବୁଲିବା ସ୍ୱାସ୍ଥ୍ୟପକ୍ଷେ ହିତକର ।

୩ । ମୁଖ୍ୟକର୍ମ ଓ ଗୌଣକର୍ମ କାହାକୁ କହନ୍ତି ଉଦାହରଣ ଦେଇ ବୁଝାଅ ।

୪ । କର୍ମକାରକ ପଦଦ୍ୱାରା ଶୂନ୍ୟସ୍ଥାନ ପୂରଣ କର ।

(କ) ଶିକ୍ଷକଙ୍କର — ମାନ ।

(ଖ) — ମହାଦେବଙ୍କର ଡର ।

(ଗ) ଉଦାରମନା ଲୋକ — ସମଦୃଷ୍ଟିରେ ଦେଖେ ।

(ଘ) ତୁମେ — ଶୁଣୁଛ, — ମନରେ ରଖ ।

(ଙ) ଅମୃତ ବିନୟ ବଚନ କହି — ତୋଷିବ ।

(ଚ) — କାନରେ ପୂରାଅ ନାହିଁ ।

(ଛ) ଆମେ ଶିଶୁଦିବସରେ — ମନେପକାଉ ।

୫ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ କରଣକାରକ ରୂପେ ବାକ୍ୟରେ ବ୍ୟବହାର କର ।

ଦଉଡ଼ି, ସାଇକେଲ, ଦାଆ, ହାତ, ଆଖି, କାନ, କଲମ, ଔଷଧ, ଧନୁଶର, ଖବରକାଗଜ

୬ । ସମ୍ପ୍ରଦାନ କାରକ କାହାକୁ କହନ୍ତି ? ବାକ୍ୟରେ ତିନୋଟିର ଉଦାହରଣ ଦିଅ ।

୭ । ତଳ ବାକ୍ୟଗୁଡ଼ିକରୁ ଅପାଦାନକାରକ ପଦମାନଙ୍କୁ ଚିହ୍ନାଅ ।

(କ) ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି ।

(ଖ) ମହୁଫେଣାରୁ ମହୁ ସଂଗ୍ରହ କର ।

(ଗ) ହେ ପ୍ରଭୁ, ମୋତେ ଭବସାଗରରୁ ପାରି କର ।

(ଘ) ଦେଉଳରୁ ଦିଅଁ ବିଜେ କର ।

(ଙ) ଶିଶୁମାନଙ୍କ କଥାରୁ ମହୁ ଝରିଥାଏ ।

(ଚ) ଲୋକଟି ଗଛରୁ ତଳେ ପଡ଼ିଗଲା ।

(ଛ) ବାପା କଟକରୁ ଫେରିଲେଣି ।

୭ । ନିମ୍ନଲିଖିତ ବାକ୍ୟମାନଙ୍କରୁ ଅଧିକରଣ କାରକ ପଦମାନ ଚିହ୍ନାଇ ଦିଅ ।

(କ) ଡାମରା କାଉରେ ଡାମରା କାଉ, ଉଛ ପରବତେ ବୋବାଉ ଥାଉ ।

(ଖ) ଆହେ ନୀଳଗିରି, ତୁମ୍ଭ ଶ୍ରୀଭୁଜେ ଦୟଣା କେରିକେରି ।

(ଗ) ରଜରେ ଆମ ଗାଁ'ରେ ତିନିଦିନ ଯାତ୍ରା ହୁଏ ।

(ଘ) ସତ୍ୟବାଦୀରେ ପଞ୍ଚସଖାଙ୍କର ସ୍ମୃତିମନ୍ଦିର ଅଛି ।

(ଙ) ବାଇଶିପାହାଚରେ ଭାରି ଭିଡ଼ ।

(ଚ) କଲମରେ କାଳି ନାହିଁ ।

(ଛ) ସକାଳେ ପ୍ରକୃତି ଶାନ୍ତ ଓ ମଧୁର ।

(ଜ) ଆମ ଶିକ୍ଷକ ବ୍ୟାକରଣରେ ପ୍ରବୀଣ ।

୮ । ତଳବାକ୍ୟଗୁଡ଼ିକରୁ କରଣକାରକ ଓ ଅଧିକରଣ କାରକ ପଦମାନଙ୍କୁ ଚିହ୍ନାଇ ଦିଅ ।

(କ) ତୋତେ ମୁଁ ହାତରେ ନ ମାରି ଭାତରେ ମାରିବି ।

(ଖ) ରେଳଗାଡ଼ିରେ କେତେ ଲୋକଙ୍କ ସହ ପରିଚୟ ହୁଏ; ମାତ୍ର ସମସ୍ତେ ମନରେ ରହନ୍ତି ନାହିଁ ।

(ଗ) ପିଲାମାନେ ପିଲାଦିନେ ବାଲିରେ ମଣ୍ଡା ଗଢ଼ିଥା'ନ୍ତି ।

(ଘ) ବଢ଼େଇ କରତରେ କାଠ ଚିରୁଛି ।

(ଙ) ଶରତରେ ସରୋବରର କୁମୁଦ ଶୋଭାପାଏ ।

(ଚ) ସକାଳେ ଓ ସଞ୍ଜରେ ପ୍ରଭୁଙ୍କୁ ସ୍ମରଣ କର ।

(ଛ) ସେ କଥାରେ ସମସ୍ତଙ୍କ ମନ ମୋହିନେଲେ ।

(ଜ) ରଥରେ ବାମନରୂପୀ ଜଗନ୍ନାଥଙ୍କୁ ଦେଖିଲେ ପୁନର୍ଜନ୍ମ ହୁଏ ନାହିଁ ।



# ସମ୍ବନ୍ଧ ପଦ

ବିନୋଦର ବାପା ଆସିଲେ ।

ଏହି ବାକ୍ୟରେ 'ଆସିଲେ' କ୍ରିୟାପଦ । ଏହି କ୍ରିୟାପଦକୁ ଧରି ଯଦି 'କିଏ ଆସିଲେ ?' ପଚାରିବା ତେବେ ଉତ୍ତର ମିଳିବ 'ବାପା' । କ୍ରିୟା ସହିତ ସମ୍ବନ୍ଧ ଥିବା ପଦ କାରକ- ଏହା ଆଗରୁ ଜାଣିଛେ । ତେଣୁ 'ବାପା' କାରକ ।

ମାତ୍ର ବାକ୍ୟରେ 'କ୍ରିୟା' ସହିତ ସମ୍ବନ୍ଧ ନ ଥିବା ପଦ ମଧ୍ୟ ଥାଏ । ଉପର ବାକ୍ୟରେ 'ଆସିଲେ' କ୍ରିୟାକୁ ଧରି ଆଉ ଗୋଟିଏ ପ୍ରଶ୍ନ ପଚାରିଲେ, ଏହା ଜାଣିପାରିବା । 'କାହାର ଆସିଲେ ?'- ଏପରି ପ୍ରଶ୍ନ ପଚାରିଲେ, ଉତ୍ତର ସ୍ପଷ୍ଟ ହେଉ ନାହିଁ । ଯଦି କେହି 'ବିନୋଦର' ବୋଲି କହେ, ତାହା ଯଥାର୍ଥ ଉତ୍ତର ନୁହେଁ । ଏଣୁ ଏଭଳି ପ୍ରଶ୍ନ ଓ ଏଭଳି ଉତ୍ତର ତ୍ରୁଟିଯୁକ୍ତ । ଯଦି 'କାହାର ବାପା ?' ପ୍ରଶ୍ନ ହୁଏ, ଉତ୍ତର ହେବ 'ବିନୋଦର' । ଏଥିରୁ ଜାଣିଲେ 'ବିନୋଦର' ଏହି ବିଶେଷ୍ୟ ପଦ ସହିତ 'ବାପା' ବିଶେଷ୍ୟ ପଦର ସମ୍ବନ୍ଧ ରହିଛି । 'ବିନୋଦର' 'ଆସିଲେ' କ୍ରିୟା ସହିତ ସମ୍ବନ୍ଧ ନାହିଁ । ଏଣୁ 'ବିନୋଦର' କାରକ ପଦ ନୁହେଁ ।

ବାକ୍ୟରେ ଯେଉଁ ପଦର କ୍ରିୟା ପଦ ବ୍ୟତୀତ ଅନ୍ୟ ପଦ ସହିତ ସମ୍ପର୍କ ଥାଏ, ତାକୁ ସମ୍ବନ୍ଧ ପଦ କହନ୍ତି । ସମ୍ବନ୍ଧପଦ ଏକ ଅଣକାରକ ପଦ ।

ଏହି ହେତୁରୁ 'ବିନୋଦର' ସମ୍ବନ୍ଧ ପଦ ଅଟେ ।

ଦୁଇଟି ବିଶେଷ୍ୟ ପଦ ସମ୍ବନ୍ଧ ଯୁକ୍ତ ହେଲେ, ପ୍ରଥମ ପଦଟି ସମ୍ବନ୍ଧପଦ ହୁଏ । ସମ୍ବନ୍ଧ ପଦରେ ର, ଙ୍କର, ମାନଙ୍କର ପ୍ରଭୃତି ଚିହ୍ନ ଲାଗିଥାଏ ।

ଆଉ କେତୋଟି ସମ୍ବନ୍ଧ ପଦର ଉଦାହରଣ-

**ଦଶରଥଙ୍କର** ପୁତ୍ର, **ସାଗରର** ଜଳ, **ସୂର୍ଯ୍ୟଙ୍କର** କିରଣ, **ରାଷ୍ଟ୍ରପତିଙ୍କ** ଭାଷଣ, **ହସ୍ତର** ମୁଦ୍ରିକା, **ଆକାଶର** ତାରକା, **ପ୍ରଭୁଙ୍କର** ଇଚ୍ଛା, **ପୁତ୍ରର** ସନ୍ଧାନ ଇତ୍ୟାଦି ।

ସର୍ବନାମ ମଧ୍ୟ ସମ୍ବନ୍ଧ ପଦ ହୋଇଥାଏ । ଯଥା- **ତାଙ୍କର** ଘର । **ମୋର** ଭଉଣୀ । **ସେମାନଙ୍କର** ପୁଅ । **ଆମ୍ଭମାନଙ୍କର** ଦେଶ । **ତୁମର** ପୁସ୍ତକ ।

**ସମ୍ବନ୍ଧର ପ୍ରକାର-** ସମ୍ବନ୍ଧ ଅନେକ ପ୍ରକାରର ଅଛି ।

**୧ । କାରକ ସମ୍ବନ୍ଧ-** କର୍ତ୍ତା, କର୍ମ, କରଣ ପ୍ରଭୃତି କାରକ ପଦ ସମ୍ବନ୍ଧଯୁକ୍ତ ହେଲେ, ସେସବୁକୁ କାରକସମ୍ବନ୍ଧ କୁହାଯାଏ । କାରକ ସମ୍ବନ୍ଧ ଛଅ ପ୍ରକାରର ।

**(କ) କର୍ତ୍ତୃସମ୍ବନ୍ଧ- ନଦୀର** ପ୍ରବାହ, ଅର୍ଥାତ୍ ନଦୀ ପ୍ରବାହିତ ହେଉଛି । **ଛାତ୍ରମାନଙ୍କର** ପିତୃମାତୃ ସେବା କର୍ତ୍ତବ୍ୟ । ଅର୍ଥାତ୍ ଛାତ୍ରମାନେ ପିତୃମାତୃ ସେବା କରିବା ଉଚିତ ।

ସେହିପରି-ସୂର୍ଯ୍ୟଙ୍କର କିରଣ, ବୃଦ୍ଧର ଗତି, ଅତିଥିଙ୍କର ଭୋଜନ ।

**(ଖ) କର୍ମସମ୍ବନ୍ଧ- ଦେଶର** ରକ୍ଷାପାଇଁ ସୈନିକମାନେ ଜାଗ୍ରତ ।

ଅର୍ଥାତ୍ ଦେଶକୁ ରକ୍ଷା କରିବାପାଇଁ ସୈନିକମାନେ ଜାଗ୍ରତ ।

ସେହିପରି- ଈଶ୍ୱରଙ୍କର ଉପାସନା, ପୁରାଣର ଅଧ୍ୟୟନ, ବିଦ୍ୟାର ଅର୍ଜନ ।

**(ଗ) କରଣ ସମ୍ବନ୍ଧ-** ବ୍ୟାଧର **ଶରର** ଆଘାତରେ ପକ୍ଷୀଟି ଭୂତଳଶାୟୀ ହେଲା ।

ଶରର ଆଘାତ ଅର୍ଥାତ୍ ଶରଦ୍ୱାରା ଆଘାତ ।

ସେହିପରି- ଦାରିଦ୍ର୍ୟର ଯନ୍ତ୍ରଣା, ଠେଙ୍ଗାର ପାହାର, ଶିକ୍ଷକଙ୍କର ଚେତାବନୀ ।

**(ଘ) ସମ୍ପ୍ରଦାନ ସମ୍ବନ୍ଧ-** ଦୁଇବର୍ଷ ହେଲା **ଛାତ୍ରମାନଙ୍କର** ବୃତ୍ତି ଦିଆଯାଉ ନାହିଁ ।

ଛାତ୍ରମାନଙ୍କର ବୃତ୍ତି ଅର୍ଥାତ୍ ଛାତ୍ରମାନଙ୍କୁ ବୃତ୍ତି ।

ସେହିପରି- ଗୁରୁଙ୍କର ଦକ୍ଷିଣା, ବ୍ରାହ୍ମଣଙ୍କର ଦାନ, ଖେଳାଳିମାନଙ୍କର ପୁରସ୍କାର ।

**(ଙ) ଅପାଦାନ ସମ୍ବନ୍ଧ-** ଜଙ୍ଗଲରେ **ହିଂସ୍ରଜନ୍ତୁର** ଭୟ ଅଛି । ହିଂସ୍ରଜନ୍ତୁର ଭୟ ଅର୍ଥାତ୍ ହିଂସ୍ରଜନ୍ତୁଠାରୁ ଭୟ ।

ସେହିପରି- ଶିକ୍ଷକଙ୍କର ଦଣ୍ଡ, ସାପର ଡର, ସାଧୁଙ୍କର ଉପଦେଶ ।

**(ଚ) ଅଧିକରଣ ସମ୍ବନ୍ଧ- ପ୍ରାତଃକାଳର** ଭ୍ରମଣ ସ୍ୱାସ୍ଥ୍ୟପକ୍ଷେ ହିତକର ।

ପ୍ରାତଃକାଳର ଭ୍ରମଣ ଅର୍ଥାତ୍ ପ୍ରାତଃକାଳରେ ଭ୍ରମଣ ।

ସେହିପରି- ପୋଖରୀର ମାଛ, ମୁଣ୍ଡର ଯନ୍ତ୍ରଣା, ଲତାର ଫୁଲ ।

**୨ । ଜନ୍ୟ-ଜନକ ସମ୍ବନ୍ଧ-ଦଶରଥଙ୍କର** ପୁତ୍ର ରାମଚନ୍ଦ୍ର ପିତୃଭକ୍ତ ଥିଲେ ।

ଜନ୍ୟ- ପୁତ୍ର, ଜନକ-ଦଶରଥ

ସେହିପରି- ପଣ୍ଡୁଙ୍କର ପୁତ୍ର, ଅଶ୍ୱପତିର କନ୍ୟା, ରାଧାର ପୁତ୍ର ।

**୩ । ସେବ୍ୟ-ସେବକ ସମ୍ବନ୍ଧ- ଜଗନ୍ନାଥଙ୍କର** ଭକ୍ତମାନେ ମନ୍ଦିରକୁ ଯାଉଛନ୍ତି ।

ଜଗନ୍ନାଥ-ସେବ୍ୟ, ଭକ୍ତମାନେ-ସେବକ

ସେହିପରି- ପ୍ରଭୁଙ୍କର ଭକ୍ତ, ମନ୍ତ୍ରୀଙ୍କର ସଚିବ, ମାଲିକଙ୍କ ଚାକର, ରାମଙ୍କର ସେବକ ହନୁମାନ ।

**୪ । ଆଧାରାଧେୟ ସମ୍ବନ୍ଧ**– ଏ **ପୁଷ୍କରିଣୀର** ଜଳ ଅତି ନିର୍ମଳ ।

ପୁଷ୍କରିଣୀ– ଆଧାର, ଆଧେୟ– ଜଳ

ସେହିପରି– ଜମିର ଧାନ, ଦୀପର ତେଲ, ଖଣିର କୋଇଲା, ଆକାଶର କଇଁଆ ଚିଲିକାର ମାଛ, କୂପର ଜଳ, ଦୁଗ୍ଧର ମାଧୁର୍ଯ୍ୟ, ପୁଷ୍ପର ସୌରଭ ।

**୫ । କାର୍ଯ୍ୟକାରଣ ସମ୍ବନ୍ଧ – ପାପର ଫଳ** ସମସ୍ତେ ଭୋଗନ୍ତି ।

କାରଣ– ପାପ, କାର୍ଯ୍ୟ–ଫଳ

ସେହିପରି– ଜନତାର ଆନ୍ଦୋଳନ, ବିପ୍ଳବର ପରିଣତି, ଧର୍ମର ବିଜୟ, କର୍ମର ଫଳ, ଦୁଧର ସର, ପରିଶ୍ରମର ମୂଲ୍ୟ, ବୁଦ୍ଧିର କରାମତି ।

**୬ । ବିଶେଷଣ ସମ୍ବନ୍ଧ– ଦୁଃଖର ଦିନ** ସବୁଦିନ ରହେନି ।

ଦୁଃଖର ଦିନ ଅର୍ଥାତ୍ ଦୁଃଖପୂର୍ଣ୍ଣ ଦିନ, 'ଦୁଃଖର' ବିଶେଷଣ ସମ୍ବନ୍ଧ ।

ସେହିପରି– ସୁଖର ସମୟ, ଗୁଣର ପିଲା, ଆଦରର ମଣିଷ, ସତ୍‌ପ୍ରକୃତିର ଲୋକ, ଆଦର୍ଶଚରିତ୍ରର ଛାତ୍ର, ଖାଇବାର ପୁତ୍ର, ପ୍ରକୃତିର ଅବଦାନ ।

**୭ । ସ୍ୱତ୍ୱ ସମ୍ବନ୍ଧ– ଈଶ୍ୱରଙ୍କ** ପୃଥିବୀ ଅତି ସୁନ୍ଦର ।

ଏଠାରେ ପୃଥିବୀର ଅଧିକାରୀ ଈଶ୍ୱର । ଏପରି ସ୍ୱତ୍ୱ ବୁଝାଉଥିବାରୁ 'ଈଶ୍ୱର' ପଦଟି ସ୍ୱତ୍ୱସମ୍ବନ୍ଧ ।

ସେହିପରି– ତୁମର ଘର, ରାମର ବହି, ଗୋପାଳର ଜମି ।

**୮ । ଅବଲମ୍ବନ ବା ଆଶ୍ରୟ ସମ୍ବନ୍ଧ– ଖଞ୍ଜର** ଖଞ୍ଜଣି ତୁମେ **ଅନ୍ଧର** ଲଉଡ଼ି ।

ଏଠାରେ ଖଞ୍ଜଣି ଖଞ୍ଜର ଓ ଲଉଡ଼ି ଅନ୍ଧର ପ୍ରଧାନ ଅବଲମ୍ବନ ବା ଆଶ୍ରୟ ବୋଲି କୁହାଯାଉଛି । ତେଣୁ 'ଖଞ୍ଜର' ଓ 'ଅନ୍ଧର' ଅବଲମ୍ବନ ସମ୍ବନ୍ଧ ।

ସେହିପରି– ଛୋଟାର ବାଡ଼ି, ଭକ୍ତର ଭକ୍ତି ।

**୯ । ଉପାଦାନ ସମ୍ବନ୍ଧ**– ଧନୀମାନଙ୍କର **ହୀରାର** ମୁଦି ଥାଏ ।

ଏଠାରେ ହୀରା ମୁଦିର ଉପାଦାନ । ତେଣୁ ହୀରାର ସମ୍ବନ୍ଧ ପଦ ।

ସେହିପରି– କଂସାର କବାଟ, ବ୍ରୋଞ୍ଜର ଚୁଡ଼ି, ଲୁହାର ଆଲମିରା ।

**୧୦। ବ୍ୟାପ୍ତିସମ୍ବନ୍ଧ**– ମୋର **ମାସକର** ଛୁଟି ସରିଗଲା ।

ମାସକର ଛୁଟି ଅର୍ଥାତ୍ ମାସେ ବ୍ୟାପି ଛୁଟି । ତେଣୁ ମାସକର ବ୍ୟାପ୍ତିସମ୍ବନ୍ଧ ବୁଝାଉଛି ।

ସେହିପରି– ବାରବର୍ଷର ଧର୍ମ, ବର୍ଷବର୍ଷର ସାଧନା, ନଅଦିନର ପାରାୟଣ, ସପ୍ତାହକର ବାଟ, ଦୁଇଦିନର କାମ ।

**୧୧ । ନିମିତ୍ତ ସମ୍ବନ୍ଧ-** ତୁମେ **ହୋମର** ସାମଗ୍ରୀ ସଂଗ୍ରହ କର ।

ହୋମର ସାମଗ୍ରୀ କହିଲେ ହୋମପାଇଁ ସାମଗ୍ରୀ । ଏଣୁ ହୋମର ପଦଟି ନିମିତ୍ତ ସମ୍ବନ୍ଧ ଅଟେ ।

ସେହିପରି- ପୂଜାର ଫୁଲ, ଚନ୍ଦନର କାଠ, ମିଠେଇର ବେସନ, ସମ୍ପତ୍ତିର ଲୋଭ ।

**୧୨ । ବ୍ୟବସାୟଗତ ସମ୍ବନ୍ଧ- ଘୋଡ଼ାର** ବେପାରୀ ରାଜଦରବାରରେ ପହଞ୍ଚିଲା ।

ଘୋଡ଼ା ସହିତ ବେପାରୀର ସମ୍ବନ୍ଧ ଅଛି ।

ସେହିପରି- ସୁନାର ବ୍ୟବସାୟୀ, ଗହମର ବେପାରୀ, ଲୁଗାର ବେପାରୀ ।

**୧୩ । ହେତୁ ସମ୍ବନ୍ଧ- ରୂପର** ଗର୍ବ ବେଶିଦିନ ରହେ ନାହିଁ ।

ଏଠାରେ 'ଗର୍ବର' ହେତୁ ବା କାରଣ 'ରୂପ' । ରୂପ ଓ ଗର୍ବ ମଧ୍ୟରେ ହେତୁ ସମ୍ବନ୍ଧ ବିଦ୍ୟମାନ । ଏଣୁ 'ରୂପର' ସମ୍ବନ୍ଧ ପଦ ।

ସେହିପରି- ଧନର ମୋହ, ଜ୍ଞାନର ବଡ଼େଇ, ଅହିଂସାର ବିଜୟ, ଅଧର୍ମର ପରାଜୟ ।

**୧୪ । ଅଭେଦ ବା ରୂପକ ସମ୍ବନ୍ଧ- ଦୁଃଖର** ଅନଳରେ ସେ ସନ୍ତାପିତ ।

ଏଠାରେ 'ଦୁଃଖ' ଅନଳ ରୂପେ କଳ୍ପିତ । ଅର୍ଥାତ୍ ଦୁଃଖ ଓ ଅନଳ ମଧ୍ୟରେ ଅଭେଦ ସୂଚିତ । ଅଭେଦ ଅର୍ଥ କୌଣସି ପାର୍ଥକ୍ୟ ନାହିଁ ବା ପାର୍ଥକ୍ୟଶୂନ୍ୟତା ।

ସେହିପରି- କରୁଣାର ସାଗର, ଦୟାର ଅବତାର, ଜ୍ଞାନର ଆଲୋକ, ଚିନ୍ତାର ଜ଼ଳ, ମନର ମୀନ ।

**୧୫ । ଅଙ୍ଗାଙ୍ଗୀ ସମ୍ବନ୍ଧ- ହାତୀର** ଦାନ୍ତ ଅତି ମୂଲ୍ୟବାନ ।

'ଦାନ' ହାତୀ ଶରୀରସ୍ଥ ମୁଖର ଏକ ଅଙ୍ଗ । ତେଣୁ ହାତୀ ସହିତ ଦାନ୍ତର **ଅଙ୍ଗାଙ୍ଗୀ** ସମ୍ବନ୍ଧ ରହିଛି ।

ସେହିପରି- ଗୋଡ଼ର ଶିରା, ହାତର ଆଙ୍ଗୁଠି, ମୃଗର ଚର୍ମ ।

**୧୬ । ନିର୍ଦ୍ଧାରଣରେ ଷଷ୍ଠୀ ବିଭକ୍ତି-**

ନିର୍ଦ୍ଧାରଣ ଅର୍ଥାତ୍ ଗୋଟିକର ଗୁଣ ବା ଦୋଷଦ୍ୱାରା ଅନ୍ୟଠାରୁ ପୃଥକ୍ କରି ନିର୍ଦ୍ଧାରଣ କଲେ **ଷଷ୍ଠୀ** ବିଭକ୍ତି ବ୍ୟବହୃତ ହୁଏ । ଯଥା-

ସିଂହ **ପଶୁମାନଙ୍କର** ରାଜା । କାଳିଦାସ **କବିମାନଙ୍କର** ମଉଡ଼ମଣି ।

(ଏଠାରେ ମନେରଖିବାକୁ ହେବ – ବିକଳ୍ପରେ ସପ୍ତମୀ ବିଭକ୍ତି ମଧ୍ୟ ହୁଏ । ଯଥା- **ପଶୁମାନଙ୍କ ମଧ୍ୟରେ** ସିଂହ ରାଜା । କାଳିଦାସ **କବିମାନଙ୍କ ମଧ୍ୟରେ** ମଉଡ଼ମଣି ।)

## ଅନୁଶୀଳନୀ

୧ । ଉପଯୁକ୍ତ ସମ୍ବନ୍ଧ ପଦ ଲଗାଇ ଶୂନ୍ୟସ୍ଥାନ ପୂରଣ କର ।

(କ) ଭାରତ — ମାଆ ।

(ଖ) ଭାଦ୍ରବ ଶୁକ୍ଳ ଚତୁର୍ଥୀରେ — ପୂଜା ହୁଏ ।

(ଗ) ରଥଯାତ୍ରା — ପ୍ରଧାନ ଉତ୍ସବ ।

(ଘ) ସବୁ ପ୍ରାଣୀ — ସନ୍ତାନ ।

(ଙ) ମନୁଷ୍ୟ — ଫଳ ଭୋଗ କରେ ।

(ଚ) — ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।

(ଛ) ଛାତ୍ରମାନେ — ପ୍ରଶ୍ନର ଉତ୍ତର ଦେଲେ ।

୨ । ନିମ୍ନଲିଖିତ ବାକ୍ୟମାନଙ୍କରୁ ସମ୍ବନ୍ଧ ପଦଗୁଡ଼ିକୁ ଚିହ୍ନାଇ ଦିଅ ।

(କ) ମୋ କଥା ମୋତେ ଜଣା ।

(ଖ) ତୁମର ଆମର ସଙ୍ଗାତ ।

(ଗ) ପରର କଥାରେ ମୁଣ୍ଡ ପୂରାଅ ନାହିଁ ।

(ଘ) ତରବାରିର ଜୟ ଜୟ ନୁହେଁ, ହୃଦୟର ଜୟ ହିଁ ପ୍ରକୃତ ଜୟ ।

(ଙ) ତୁମ ବାପାଙ୍କର ନାମ କ'ଣ ?

(ଚ) କବିର ତୁଣ୍ଡ, ମେଣ୍ଢାର ମୁଣ୍ଡ ଅତି ଟାଣ ।

(ଛ) ସରସ୍ୱତୀଙ୍କର ବୀଣାର ଝଙ୍କାର ଅତି ମଧୁର ।

(ଜ) ଯାନର ଗତିଠାରୁ ମନର ଗତି କ୍ଷିପ୍ରତର ।

(ଝ) ତୁମେ କାହା କଥା କେଉଁଠି କହୁଛ ।

(ଞ) ଅପମାନର ଆଘାତ ଖଡ୍‌ଗର ଆଘାତଠାରୁ ଅଧିକ ଯନ୍ତ୍ରଣାପ୍ରଦ ।

(ଟ) ଅସିର ପ୍ରଭାବ ଅପେକ୍ଷା ମସୀର ପ୍ରଭାବ ବେଶି ।

୩ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ରେଖାଙ୍କିତ ସମ୍ବନ୍ଧ ପଦଗୁଡ଼ିକ କି ପ୍ରକାର ସମ୍ବନ୍ଧ ଉଲ୍ଲେଖ କର ।

(କ) <u>ଝରଣାର</u> ଜଳ ଶୀତଳ । (ଖ) <u>ଖାଇବାର</u> <u>ପୁତ୍ର</u> ଗଲା ମଥୁରାପୁରକୁ ।

(ଗ) <u>ସିଂହ ପଶୁମାନଙ୍କର</u> ରାଜା । (ଘ) <u>ମଇଁଷି</u> ଶିଙ୍ଗ ବଡ଼ ଟାଣ ।

(ଙ) <u>ଜମିର</u> ଧାନ ନଷ୍ଟ ହୋଇଗଲା ।

(ଚ) ସରକାର ଏବର୍ଷ <u>ମାସକର</u> ଛୁଟି କମାଇଦେଲେ ।

(ଛ) ମୋର <u>ଆଦରର</u> କନ୍ୟା ଶାଶୂଘର ଚାଲିଗଲା ।



# ସମ୍ବୋଧନ ପଦ

**ପୁତ୍ର**, କ୍ରୋଧ ପରିହାର କର ।

**ଭାଇମାନେ**, ଆପଣମାନେ ସାହସ ଧରନ୍ତୁ ।

ଉପର ଉଦାହରଣର କଳା ଅକ୍ଷରର ପଦ ଦୁଇଟି ସମ୍ବୋଧନ ପଦ । ସମ୍ବୋଧନ ଅର୍ଥ ଡାକିବା ।

ଯାହାକୁ ଡାକି କିଛି କୁହାଯାଏ, ତାହା ସମ୍ବୋଧନ ପଦ ।

ଉପର ଉଦାହରଣରେ 'ପରିହାର କର' କ୍ରିୟାପଦର କର୍ତ୍ତା 'ତୁମେ' ଉହ୍ୟ ରହିଛି । ଅର୍ଥାତ୍ ବାକ୍ୟଟି ହେଉଛି, 'ତୁମେ କ୍ରୋଧ ପରିହାର କର ।' 'ପୁତ୍ର' କର୍ତ୍ତା ନୁହେଁ । ସେହିପରି 'ସାହସ ଧରନ୍ତୁ' କ୍ରିୟାପଦର କର୍ତ୍ତା 'ଆପଣମାନେ'; ଭାଇମାନେ ନୁହେଁ । ଏଥିରୁ ଜଣାଗଲା ଯେ ସମ୍ବୋଧନ ପଦର କ୍ରିୟାପଦ ସହିତ ସମ୍ପର୍କ ନ ଥିବାରୁ ତାହା କାରକ ନୁହେଁ ।

ସାଧାରଣତଃ ଯାହାକୁ ସମ୍ବୋଧନ କରାଯାଏ, ତାହାର ପୂର୍ବରେ ବା ପରେ ଆଉ କିଛି ପଦ ଯୋଡ଼ାଯାଏ, ତାକୁ ସମ୍ବୋଧନ ସୂଚକ ପଦ କହନ୍ତି । ଏହି ସମ୍ବୋଧନସୂଚକ ପଦଦ୍ୱାରା ସମ୍ବୋଧିତ ପଦଟି ସୂଚିତ ହୁଏ । ଯଥା- ହେ ପ୍ରଭୁ, ମୋ ଗୁହାରି ଶୁଣ ।

ଏଠାରେ 'ହେ' ସମ୍ବୋଧନ ସୂଚକ ପଦ ଏବଂ 'ପ୍ରଭୁ' ସମ୍ବୋଧନ ପଦ ।

ସେହିପରି- **ହେ** ଦେଶବାସୀ, **ଆହେ** ବନ୍ଧୁ, **କିହୋ** ବାବୁ, **ଆରେ** ଦୀନା, **ହଇରେ** ହରିଆ, ଭାଇରେ ଇତ୍ୟାଦି ।

ଲିଙ୍ଗ ଭେଦରେ ସମ୍ବୋଧନସୂଚକ ପଦ ମଧ୍ୟ ବଦଳେ । ଯଥା- **ଲୋ** ଝିଅ, **ଆଲୋ** ବୋହୂ, **କିଲୋ** ଝିଅ, **ହଇଗୋ** ବୋହୂ ସାଆନ୍ତାଣୀ, **ଆଗୋ** ମାଆ, **ଅୟି** ଜନନୀ ଇତ୍ୟାଦି । ସମ୍ବୋଧନସୂଚକ ପଦ 'ଅବ୍ୟୟ ପଦ' ଭାବରେ ବିବେଚିତ ହୁଏ ।

ବେଳେବେଳେ ସମ୍ବୋଧନସୂଚକ ପଦ ବ୍ୟବହୃତ ନ ହୋଇ, କେବଳ ସମ୍ବୋଧନ ପଦ ବ୍ୟବହୃତ ହୋଇଥାଏ । ଯଥା-

**ଦାସେ**, ତୁମେ କ'ଣ କାଲି ପୁରୀ ଯାଉଛ ?

**ହରି**, ତୁମେ ଏତେ ଅବୁଝା ହେଉଛ କାହିଁକି ?

ଆଗେ ସମ୍ବୋଧନ ପଦ ପରେ ଏହି !(ସମ୍ବୋଧନ ଚିହ୍ନ) ଦିଆଯାଉଥିଲା । ଏବେ କିନ୍ତୁ, (କମା ଚିହ୍ନ) ଦିଆଯାଉଛି । ସମ୍ବୋଧନପଦ ସମ୍ବନ୍ଧପଦ ପରି ଏକ ଅଣକାରକ ପଦ ।

## ଅନୁଶୀଳନୀ

୧ । ସମ୍ବୋଧନ ପଦଗୁଡ଼ିକୁ ଚିହ୍ନାଅ ।

(କ) 'ତୋ' ଲାଗି ଗୋପଦାଣ୍ଡ ମନାରେ କାଳିଆ ସୁନା ।'

(ଖ) ଆଲୋ ମଉସା, ଜଡ଼ ପଇସା ।

(ଗ) 'ଶୁଣ ସୁଜନେ ଦେଇ ମନ' ।

(ଘ) ହେ ରାମ, ହେ ରାମ, କହି ଦଶରଥ ପ୍ରାଣତ୍ୟାଗ କଲେ ।

(ଙ) ରସନା ସଂଯତ କର ଦୁଷ୍ଟ ।

(ଚ) ବାସୁଦେବ, କେବେ ମୋର ଦୁଃଖ ଦୂର ହେବ ?

(ଛ) ସୀତା, ତୁ ସବୁଦିନ ଗୀତା ପଢ଼ ।

୨ । ନିମ୍ନଲିଖିତ ସମ୍ବୋଧନସୂଚକ ପଦଗୁଡ଼ିକ ବାକ୍ୟରେ ବ୍ୟବହାର କର ।

ଆହେ, ହଇରେ, ରେ, ହେ, ଆଗୋ, ଅୟି, କିହୋ, ହଇଗୋ ।

୩ । ଉପଯୁକ୍ତ ସମ୍ବୋଧନ ପଦ ବ୍ୟବହାର କରି ଶୂନ୍ୟସ୍ଥାନ ପୂରଣ କର ।

(କ) — ଦୟାମୟ ବିଶ୍ୱବିହାରୀ ।

(ଖ) — ମୋର ବୋଲକର ।

(ଗ) ନୋହିଥିଲେ, — , ଏହି ନିଦାରୁଣ ପଣପ୍ରଚାର, ଆଦରେ ଏହାକୁ କରନ୍ତିନିକି ମୁଁ ଗଳାର ହାର ।

(ଘ) ହାୟ — ଉତ୍କଳ ଭୂମି ! ପ୍ରକୃତି ସୁନ୍ଦରୀ ।

(ଙ) ଯନ୍ତ୍ର ତତେ କି ମନ୍ତ୍ର ଦେଇଛି ମାଟିର ମଣିଣ — , ମୁଗ୍ଧ ତୋହର ଚିତ୍ତ ଗହନେ ଚିନ୍ତି ପାରୁନୁ ବାରେ ?

(ଚ) କିଏ — ନାଥ ! ସ୍ନେହ ସଲିଳ ଦାନେ
ଶୀତଳ କରିବ ଏ ଦଗ୍ଧ ପରାଣେ ?

(ଛ) ଗଲାଣି ତ ଗଲା କଥା — ସଙ୍ଗାତ ।

(ଜ) — କି ଲଳିତ ଲାବଣ୍ୟ ପ୍ରତିମା !

(ଝ) କେ କହିବ, — , ବିଧାତା କିପାଇଁ
ମୃଣାଳକୁ ଦେଲେ କଣ୍ଟକେ ଜଡ଼ାଇ ।



# ବିଭକ୍ତି

ଶବ୍ଦ ବାକ୍ୟରେ ବ୍ୟବହୃତ ହେଲେ, ତାକୁ ପଦ କହନ୍ତି । ବାକ୍ୟରେ ଥିବା ପଦମାନଙ୍କ ଭିତରୁ କେତେକ ପଦରେ କିଛି ଚିହ୍ନ (ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟି) ଲାଗିଥାଏ । ସେହି ଚିହ୍ନରୁ ପଦର ବଚନ (ସଂଖ୍ୟା) ଓ କାରକ ସମ୍ବନ୍ଧରେ ଧାରଣା ମିଳେ । ଯଥା–

ଫଳଗୁଡ଼ିକ ଗଛରୁ ମାଟିରେ ପଡ଼ିଲା ।

ଏଠାରେ 'ଫଳ' ସହିତ 'ଗୁଡ଼ିକ', 'ଗଛ' ସହିତ 'ରୁ' ଓ 'ମାଟି' ସହିତ 'ରେ' ଚିହ୍ନ ବା ବର୍ଣ୍ଣ ମିଶି ରହିଛି । 'ଗୁଡ଼ିକ' ଯୋଗରେ 'ଫଳ' ପଦଟି ବହୁବଚନ-କର୍ତ୍ତାକାରକ, 'ରୁ' ଯୋଗରେ 'ଗଛ' ପଦଟି ଏକବଚନ-ଅପାଦାନ କାରକ ଓ 'ରେ' ଯୋଗରେ 'ମାଟି' ପଦଟି ଏକବଚନ-ଅଧିକରଣ କାରକ ହୋଇଛି ।

ଏଥିରୁ ଜାଣିଲେ, ଯେଉଁ ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟି (ଚିହ୍ନ) ଦ୍ୱାରା ବାକ୍ୟସ୍ଥ ପଦର ବଚନ (ସଂଖ୍ୟା) ଓ କାରକ ଚିହ୍ନିତ ହୁଏ, ତାହା ବିଭକ୍ତି ।

ବିଭକ୍ତିଦ୍ୱାରା ମଧ୍ୟ ସମ୍ବନ୍ଧପଦ ଜାଣିହୁଏ । ଯଥା– ଶିଶୁର ବଚନ ମଧୁର ।

ଏଠାରେ 'ଶିଶୁ' ପଦରେ 'ର' ବିଭକ୍ତି ଚିହ୍ନ ଲାଗିଛି; ଯଦ୍ଦ୍ୱାରା 'ଶିଶୁ' ଓ 'ବଚନ' ପଦ ମଧ୍ୟରେ ଥିବା ସମ୍ବନ୍ଧ ସୂଚିତ ହୋଇ 'ଶିଶୁର' ସମ୍ବନ୍ଧପଦ ହୋଇଛି ।

ଯେଉଁ ଚିହ୍ନ ବା ସଙ୍କେତ ବା ବର୍ଣ୍ଣ ବଚନ, କାରକ ଓ ସମ୍ବନ୍ଧପଦକୁ ସୂଚାଇଦିଏ, ତାହାକୁ ବିଭକ୍ତି କହନ୍ତି । ମାନେ, କୁ, ମାନଙ୍କୁ, ରେ, ଦ୍ୱାରା ପ୍ରଭୃତି ଚିହ୍ନଗୁଡ଼ିକୁ ବିଭକ୍ତି କୁହାଯିବାର କାରଣ ହେଉଛି, ଏହି ଚିହ୍ନ ବା ବର୍ଣ୍ଣସମୂହ ବାକ୍ୟସ୍ଥ ଗୋଟିଏ ପଦକୁ ଅନ୍ୟପଦଠାରୁ ବିଭକ୍ତ ବା ପୃଥକ୍ କରିଥା'ନ୍ତି । ଯଥା–ଭାରତର ଉତ୍ତରରେ ହିମାଳୟ ଅଛି ।

ଭାରତ ସହିତ 'ର', 'ଉତ୍ତର' ସହିତ 'ରେ' ବିଭକ୍ତି ଯୁକ୍ତ ହୋଇଛି । ଫଳରେ 'ଭାରତର' ପଦଟି 'ଉତ୍ତରରେ' ପଦଠାରୁ ପୃଥକ୍ ହୋଇଛି । ପୁଣି 'ଉତ୍ତରରେ' ପଦଟି 'ହିମାଳୟ' ପଦକୁ ଅଲଗା କରୁଛି । 'ହିମାଳୟ' ପଦରେ ବିଭକ୍ତି ଚିହ୍ନ ନାହିଁ; ମାତ୍ର ଏହା ବାକ୍ୟରେ ଥିବାରୁ ପଦ ଓ ବିଭକ୍ତିଯୁକ୍ତ । 'ହିମାଳୟ' ପଦଟି 'ଅଛି' ପଦଠାରୁ ମଧ୍ୟ ଭିନ୍ନ ଅଟେ ।

ବାକ୍ୟରେ ଥିବା ପଦଗୁଡ଼ିକୁ ପୃଥକ୍ ବା ବିଭକ୍ତ କରିବାପାଇଁ ପ୍ରତ୍ୟେକ ପଦରେ ବିଭକ୍ତି ଚିହ୍ନ ଲାଗିବା ବାଧ୍ୟତାମୂଳକ ନୁହେଁ ।

ପିଲା **କ୍ଷୀର** ପିଉଛି । ସେମାନେ **ଦିଲ୍ଲୀ** ଯାଉଛନ୍ତି ।

ସାଧାରଣତଃ ପ୍ରଥମା ଓ ଦ୍ୱିତୀୟା ବିଭକ୍ତି ଏକବଚନରେ କୌଣସି ବିଭକ୍ତି ଚିହ୍ନ ନ ଥାଇ ମଧ୍ୟ କ୍ରିୟା ସହିତ ଅନ୍ୱୟ କରି ପଦର କାରକ ଓ ବଚନ ସୂଚିତ ହୋଇଥାଏ । ଏପରିସ୍ଥଳେ ବିଭକ୍ତି ଉହ୍ୟ ଅଛି ବୋଲି ମନେ କରାଯାଏ ।

ଶବ୍ଦରେ ଯେପରି ବିଭକ୍ତି ଚିହ୍ନ ଲାଗିଥାଏ, ଧାତୁରେ ସେପରି ବିଭକ୍ତି ଚିହ୍ନ ଲାଗିଥାଏ । ଯଥା- ପିଲାଟି ହସିଲା ।

ଏହି ବାକ୍ୟରେ 'ପିଲା' ଶବ୍ଦ ସହିତ 'ଟି' ବିଭକ୍ତି ଯୋଗ କରାଯାଇଛି । ତେଣୁ 'ଟି' ଶବ୍ଦବିଭକ୍ତି । 'ହସିଲା' ଏହି କ୍ରିୟାପଦଟି 'ହସ୍+ଇଲା' ଏପରି ଗଠିତ ।

ଏଠାରେ 'ହସ୍' ହେଉଛି 'ଧାତୁ' ଏବଂ 'ଇଲା' ହେଉଛି ବିଭକ୍ତି ପ୍ରତ୍ୟୟ ବା 'ବିଭକ୍ତି' ଚିହ୍ନ । 'ଧାତୁ'ରେ ଯୁକ୍ତ ହେଉଥିବା ବିଭକ୍ତିକୁ କ୍ରିୟା ବିଭକ୍ତି କହନ୍ତି ।

ଶବ୍ଦବିଭକ୍ତି ସାତ ପ୍ରକାର । ଯଥା- ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ, ସପ୍ତମୀ । କର୍ତ୍ତାକାରକରେ ପ୍ରଥମା, କର୍ମକାରକରେ ଦ୍ୱିତୀୟା, କରଣକାରକରେ ତୃତୀୟା, ସମ୍ପ୍ରଦାନ କାରକରେ ଚତୁର୍ଥୀ, ଅପାଦାନ କାରକରେ ପଞ୍ଚମୀ, ସମ୍ବନ୍ଧପଦରେ ଷଷ୍ଠୀ ବିଭକ୍ତି ଓ ଅଧିକରଣ କାରକରେ ସପ୍ତମୀ ବିଭକ୍ତି ହୁଏ ।

## ବିଭକ୍ତିଗୁଡ଼ିକର ଚିହ୍ନ

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | – – – – | ଏ, ମାନ, ମାନେ, ଗୁଡ଼ାକ, ଗୁଡ଼ିକ, ଗୁଡ଼ିଏ |
| ଦ୍ୱିତୀୟା | କି, କୁ, ଙ୍କୁ, ଟିକୁ, ଟାକୁ, ଠାକୁ | ଙ୍କୁ, ମାନଙ୍କୁ, ଗୁଡ଼ାକୁ, ଗୁଡ଼ିକୁ |
| ତୃତୀୟା | ରେ, ଦ୍ୱାରା, ଦେଇ, ଦେହି, କର୍ତ୍ତୃକ | ମାନଙ୍କରେ, ମାନଙ୍କଦ୍ୱାରା, ମାନଙ୍କ ଦେହି, ମାନଙ୍କକର୍ତ୍ତୃକ |
| ଚତୁର୍ଥୀ | କୁ, ଙ୍କୁ, ଟାକୁ, ଟିକୁ | ଙ୍କୁ, ମାନଙ୍କୁ, ଗୁଡ଼ାକୁ, ଗୁଡ଼ିକୁ |
| ପଞ୍ଚମୀ | ରୁ, ଠାରୁ, ଠୁ, ଠୁଁ, ହୁଁ | ମାନଙ୍କରୁ, ମାନଙ୍କଠାରୁ, ମାନଙ୍କଠୁଁ, ଗୁଡାକରୁ, ଗୁଡ଼ିକରୁ |
| ଷଷ୍ଠୀ | ଟିର, ଟାର, ର, ରି, ଙ୍କ, ଙ୍କର, ଙ୍କରି | ଙ୍କ, ଙ୍କର, ମାନଙ୍କ, ମାନଙ୍କର, ଗୁଡ଼ିକର |
| ସପ୍ତମୀ | ଟିରେ, ଠି, ଠେଇଁ, ଏ, ରେ, ଠାରେ, ଟାରେ, | ମାନଙ୍କରେ, ମାନଙ୍କଠାରେ, ଗୁଡ଼ିକରେ, ମାନଙ୍କଠି |

ସାଧାରଣ ଭାବରେ ପ୍ରଥମା ବିଭକ୍ତି ଏକବଚନରେ ବିଭକ୍ତି ଚିହ୍ନ ନ ଥାଏ । ଆଦର, ଅନାଦର ଅର୍ଥରେ ବା ପଦର ଗୁରୁତ୍ୱ ବୃଦ୍ଧିପାଇଁ ଟା, ଟି, ଟାଏ ପ୍ରଭୃତି ଯୋଗ କରାଯାଇଥାଏ ।

ଯଥା- ବୋକାଟା, ଅଳସୁଆଟା, ଲୋକଟି, ପିଲାଟି, ଟଙ୍କାଟାଏ, ଫଳଟାଏ ଇତ୍ୟାଦି ।

ମାନ୍ୟ ବା ସମ୍ମାନ ଅର୍ଥରେ ପ୍ରଥମା ବିଭକ୍ତି ଏକବଚନରେ 'ଏ' ଯୋଗ କରାଯାଇଥାଏ । ଯଥା- ଆପଣେ, ପଣ୍ଡିତେ, ମାଷ୍ଟ୍ରେ, ଅବଧାନେ, ମିଶ୍ରେ, ପ୍ରଧାନେ, ପୁରୋହିତେ ।

ଉପରେ ଆଲୋଚିତ ବିଭକ୍ତି ଚିହ୍ନ ବ୍ୟତୀତ ବିନା, ବ୍ୟତୀତ, ଛଡ଼ା, ସହ, ସହିତ, ଲାଗି, ନିମିତ୍ତ, ନିମନ୍ତେ, ଯୋଗୁଁ, ଅପେକ୍ଷା ପ୍ରଭୃତି କେତେକ ପଦ ବିଭକ୍ତିର ସୂଚନା ଦେଇଥା'ନ୍ତି । ଯଥା-

(କ) **ଈଶ୍ୱରଙ୍କ** ବିନା କିଏ ବିପଦରୁ ରକ୍ଷା କରିବ ? (ଷଷ୍ଠୀ ବିଭକ୍ତି)

(ଖ) **ତୁମ** ସହିତ ମୁଁ ସିନେମା ଯିବି । (ଷଷ୍ଠୀ ବିଭକ୍ତି)

(ଗ) **ତୋ'** ଲାଗି ମୋର ଏଠାକୁ ଆସିବା ବନ୍ଦ । (ଚତୁର୍ଥୀ ବିଭକ୍ତି)

(ଘ) **ଆକାଶ** ହୁଁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା । (ପଞ୍ଚମୀ ବିଭକ୍ତି)

ବିଶେଷ୍ୟ ପଦ ବିଭକ୍ତିଯୁକ୍ତ ହେଲେ, ଆକୃତିରେ ପରିବର୍ତ୍ତନ ଘଟେ ନାହିଁ; ମାତ୍ର ସର୍ବନାମ ପଦର ଆକୃତିରେ ପରିବର୍ତ୍ତନ ହୋଇଥାଏ । ଯଥା-

**ବିଶେଷ୍ୟ - ବାଳକ**

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | ବାଳକ | ବାଳକେ, ବାଳକମାନେ |
| ଦ୍ୱିତୀୟା | ବାଳକକୁ | ବାଳକମାନଙ୍କୁ |
| ତୃତୀୟା | ବାଳକଦ୍ୱାରା (ଦେହି, କର୍ତ୍ତୃକ) | ବାଳକଙ୍କ(ମାନଙ୍କ) ଦ୍ୱାରା(ଦେହି, କର୍ତ୍ତୃକ) |
| ଚତୁର୍ଥୀ | ବାଳକକୁ, ବାଳକପାଇଁ | ବାଳକଙ୍କୁ, ବାଳକମାନଙ୍କୁ, (ନିମିତ୍ତ, ଲାଗି) ବାଳକମାନଙ୍କ ପାଇଁ (ନିମିତ୍ତ, ଲାଗି) |
| ପଞ୍ଚମୀ | ବାଳକଠାରୁ (ଠୁଁ) | ବାଳକଙ୍କଠାରୁ, ବାଳକମାନଙ୍କଠାରୁ (ଠୁ, ଠୁଁ) |
| ଷଷ୍ଠୀ | ବାଳକର | ବାଳକଙ୍କ, ବାଳକଙ୍କର, ବାଳକମାନଙ୍କ, ବାଳକମାନଙ୍କର |
| ସପ୍ତମୀ | ବାଳକଠାରେ | ବାଳକଙ୍କଠାରେ, ବାଳକମାନଙ୍କଠାରେ |

**ସର୍ବନାମ - ମୁଁ**

| ବିଭକ୍ତି | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | ମୁଁ | ଆମେ, ଆମ୍ଭେ, ଆମେମାନେ, ଆମ୍ଭେମାନେ |
| ଦ୍ୱିତୀୟା | ମୋତେ | ଆମକୁ, ଆମମାନଙ୍କୁ, ଆମ୍ଭମାନଙ୍କୁ |

| | | |
|---|---|---|
| ତୃତୀୟା | ମୋଦ୍ୱାରା(ଦେହି, କର୍ତ୍ତୃକ) | ଆମଦ୍ୱାରା, ଆମ୍ଭମାନଙ୍କ ଦ୍ୱାରା (ଦେହି, କର୍ତ୍ତୃକ) |
| ଚତୁର୍ଥୀ | ମୋତେ, ମୋପାଇଁ (ନିମିତ୍ତ, ଲାଗି) | ଆମକୁ, ଆମମାନଙ୍କୁ, ଆମ୍ଭଙ୍କୁ, ଆମ୍ଭମାନଙ୍କୁ, ଆମ୍ଭମାନଙ୍କ ପାଇଁ (ନିମିତ୍ତ, ଲାଗି) |
| ପଞ୍ଚମୀ | ମୋ'ଠାରୁ, ମୋହଠାରୁ, ମୋଠୁଁ | ଆମଠାରୁ, ଆମମାନଙ୍କଠାରୁ, ଆମ୍ଭମାନଙ୍କଠାରୁ ଆମଠୁଁ, ଆମ୍ଭମାନଙ୍କଠୁଁ |
| ଷଷ୍ଠୀ | ମୋଠାରେ, ମୋହଠାରେ, ମୋହଠି (ଠିଁ), ମୋହଠେଇଁ | ଆମଠାରେ, ଆମ୍ଭଠାରେ, ଆମ୍ଭମାନଙ୍କଠାରେ, ଆମ୍ଭମାନଙ୍କଠିଁ, ଆମ୍ଭମାନଙ୍କଠେଇଁ |

## ବିଭକ୍ତିର ବ୍ୟବହାର

**ପ୍ରଥମା ବିଭକ୍ତି :**

**୧ । କର୍ତ୍ତାକାରକରେ ପ୍ରଥମା ବିଭକ୍ତି । ଯଥା-**

(କ) **ସୀତାଂଶୁ** ସଙ୍ଗୀତ ଶୁଣୁଛି । (ଖ) **କବି** କବିତା ଲେଖନ୍ତି ।

'ସୀତାଂଶୁ' ଓ 'କବି' କର୍ତ୍ତାଠାରେ ପ୍ରଥମା ବିଭକ୍ତି ହୋଇଛି ।

**୨ । କର୍ମବାଚ୍ୟରେ କର୍ମଠାରେ ପ୍ରଥମା-**

(କ) ଶିକ୍ଷକଙ୍କ ଦ୍ୱାରା **ବ୍ୟାକରଣ** ପଢ଼ାଗଲା ।

(ଖ) କାଳିଦାସଙ୍କ ଦ୍ୱାରା **ରଘୁବଂଶ** ରଚିତ ହୋଇଥିଲା ।

ଶିକ୍ଷକ, କାଳିଦାସ ପ୍ରଥମା ବିଭକ୍ତି; ମାତ୍ର କର୍ମବାଚ୍ୟରେ 'ଦ୍ୱାରା' ଲାଗି ତୃତୀୟା ବିଭକ୍ତି ହୋଇଛି । 'ବ୍ୟାକରଣ' ଓ 'ରଘୁବଂଶ' କର୍ମକାରକ ଦ୍ୱିତୀୟା ବିଭକ୍ତି; ମାତ୍ର କର୍ମବାଚ୍ୟରେ ପଦ ଦୁଇଟି ପ୍ରଥମା ବିଭକ୍ତି ହୋଇଛି । କ୍ରିୟା 'ପଢ଼ାଗଲା' 'ବ୍ୟାକରଣ'କୁ ଓ 'ରଚିତ ହୋଇଥିଲା' କ୍ରିୟା 'ରଘୁବଂଶ'କୁ ଅନୁସରଣ କରିଛନ୍ତି ।

(ଯେଉଁ ବାକ୍ୟରେ କର୍ତ୍ତାଠାରେ ତୃତୀୟା ବିଭକ୍ତି ଓ କର୍ମଠାରେ ପ୍ରଥମା ବିଭକ୍ତି ହୋଇଥାଏ ଓ କ୍ରିୟା କର୍ମ ଅନୁସାରେ ବସିଥାଏ, ସେହି ବାକ୍ୟକୁ କର୍ମବାଚ୍ୟର ବାକ୍ୟ କହନ୍ତି । କର୍ମଠାରେ ପ୍ରଥମା ବିଭକ୍ତି ହୋଇଥିଲେ, ତାହାକୁ କର୍ମବାଚ୍ୟରେ କର୍ମଠାରେ ପ୍ରଥମା ବୋଲି କହନ୍ତି ।)

**୩ । ସମ୍ବୋଧନରେ ପ୍ରଥମା -** (କ) **ପ୍ରଭୁ** ! ମୋର ଗୁହାରି ଶୁଣନ୍ତୁ ।

(ଖ) **ରମେଶ**, ଏଠିକି ଆସ ।

(ଗ) ଲୋ ସାବି ! ତୋ କାନ କ'ଣ ପୋଡ଼ିଯାଇଛି ?

କଳା ଅକ୍ଷର ପ୍ରଭୁ, ରମେଶ ଓ ସାବି ସମ୍ବୋଧନ ପଦରେ ପ୍ରଥମା ବିଭକ୍ତି ହୋଇଛି ।

୪ । **ଅବ୍ୟୟ ଯୋଗେ ପ୍ରଥମା-**

(କ) **ଶିବି** ବୋଲି ଜଣେ ପରମଧାର୍ମିକ ରାଜା ଥିଲେ ।

(ଖ) **ଅଗସ୍ତି** ବୋଲି ଜଣେ ତେଜସ୍ୱୀ ଋଷି ଥିଲେ ।

'ବୋଲି' ଅବ୍ୟୟ ପଦଯୋଗେ 'ଶିବି' ଓ 'ଅଗସ୍ତି' ପଦର ପ୍ରଥମା ବିଭକ୍ତି ହୋଇଛି ।

୫ । **ପ୍ରୟୋଜକ କର୍ତ୍ତାଠାରେ ପ୍ରଥମା-**

(କ) **ଜଗନ୍ନାଥ ଦାସ** ଶ୍ରୀମନ୍ଦିରରେ ଲୋକମାନଙ୍କୁ ଭାଗବତ ଶୁଣାଉଥିଲେ ।

(ଖ) **ଶିକ୍ଷକ** ଛାତ୍ରମାନଙ୍କ ଦ୍ୱାରା ବଗିଚା କାମ କରାଇଲେ ।

'ଜଗନ୍ନାଥ ଦାସ' ଓ 'ଶିକ୍ଷକ' ପ୍ରୟୋଜକ କର୍ତ୍ତାଠାରେ ପ୍ରଥମା ବିଭକ୍ତି ହୋଇଛି ।

୬ । **ଅଭିଧେୟମାତ୍ରେ ପ୍ରଥମା-**

କେବଳ ନାମ ପ୍ରକାଶ କରୁଥିବା ଶବ୍ଦର ପ୍ରଥମା ବିଭକ୍ତି ହେଲେ, ତାକୁ ଅଭିଧେୟମାତ୍ରେ ପ୍ରଥମା ବିଭକ୍ତି କହନ୍ତି । ଯଥା- ବିନାୟକ, ବନ୍ଦନା, ବୃକ୍ଷ, ଭାରତ, କଲମ, ସ୍ୱାତୀ, ସିନ୍ଧୁ ।

୭ । **ସଂଖ୍ୟାବାଚକ ଶବ୍ଦଯୋଗେ ପ୍ରଥମା-**

(କ) **ବାତ, ପିତ୍ତ, କଫ** ତିନିହେଁ ଏକାଠି ହେଲେ ଲୋକର ମୃତ୍ୟୁ ହୁଏ ।

(ଖ) **ଲବ କୁଶ** ଦୁହେଁ ଯାଆଁଳା ଭାଇ ।

(ଗ) **ଧର୍ମ, ଅର୍ଥ, କାମ, ମୋକ୍ଷ** ଚାରୋଟି ଜୀବନର ମୂଳ ଲକ୍ଷ୍ୟ ।

ତିନିହେଁ, ଦୁହେଁ, ଚାରୋଟି ସଂଖ୍ୟାବାଚକ ପଦଯୋଗେ ଯଥାକ୍ରମେ ବାତପିତ୍ତକଫ, ଲବକୁଶ, ଧର୍ମ-ଅର୍ଥ-କାମ-ମୋକ୍ଷ ପଦଗୁଡ଼ିକ ପ୍ରଥମା ବିଭକ୍ତି ହୋଇଛି ।

## ଦ୍ୱିତୀୟା ବିଭକ୍ତି

୧ । **କର୍ମକାରକରେ ଦ୍ୱିତୀୟା-**

(କ) ବାଟୋଇଟି **ପାଣି** ପିଉଛି ।

(ଖ) ମୁଁ **ମନ୍ଦିରକୁ** ଯାଉଛି ।

(ଗ) ଅସୀମା **ଅବିନାଶକୁ** ପଚାରୁଛି ।

(ଘ) ଶୈଳଜା **ଗୀତ** ଗାଉଛି ।

ଉପର ବାକ୍ୟଗୁଡ଼ିକରେ ପାଣି, ମନ୍ଦିର, ଅବିନାଶ ଓ ଗୀତ କର୍ମକାରକରେ ପ୍ରଥମା ବିଭକ୍ତି ହୋଇଛି ।

୨ । **ଅକର୍ତ୍ତୃବାଚ୍ୟରେ ଦ୍ୱିତୀୟା-**

କର୍ମ ଓ ଭାବବାଚ୍ୟରେ କର୍ତ୍ତାର ଦ୍ୱିତୀୟାବିଭକ୍ତି ହୁଏ ।

କର୍ମବାଚ୍ୟ-

(କ) **ସୌମ୍ୟାକୁ** ଗୀତ ଗାଇବାକୁ ହେବ ।

(ଖ) **ଦେବଦତ୍ତକୁ** ପୁରୀ ଯିବାକୁ ହେବ ।

ଭାବବାଚ୍ୟ-

(ଗ) **ତାକୁ** ପହଁରିଆସେ ।

(ଘ) **ବିନୀତାକୁ** ଖେଳି ଆସେ ନାହିଁ ।

ଏଠାରେ କର୍ମବାଚ୍ୟରେ ସୌମ୍ୟା ଓ ଦେବଦତ୍ତ, ଭାବାଚ୍ୟରେ ତାକୁ ଓ ବିନୀତାକୁ ଦ୍ୱିତୀୟା ବିଭକ୍ତି ହୋଇଅଛି ।

୩ । **ପ୍ରଯୋଜ୍ୟ କର୍ତ୍ତାଠାରେ ଦ୍ୱିତୀୟା-**

(କ) ଜିଜାବାଈ **ଶିବାଜୀଙ୍କୁ** ବୀରକାହାଣୀମାନ ଶୁଣାଇଥିଲେ ।

(ଖ) ମା' **ମୁନାକୁ** ଖୁଆଉଛନ୍ତି ।

(ଗ) ଶିବାଜୀଙ୍କୁ, ମୁନାକୁ ପ୍ରଯୋଜ୍ୟ କର୍ତ୍ତାଠାରେ ୨ୟା ବିଭକ୍ତି ହୋଇଛି ।

୪ । **ବୀପ୍‌ସା (ବାରମ୍ବାର) ଅର୍ଥରେ ଦ୍ୱିତୀୟା-**

(କ) **ଦିନକୁ** ଦିନ ପରିବା ଦର ବଢୁଛି ।

(ଖ) ଚାକିରିଆମାନଙ୍କର **ବର୍ଷକୁ** ବର୍ଷ ଦରମା ବଢ଼େ ।

(ଗ) **ଥରକୁ** ଥର ତୁମେ କଥା ବଦଳାଉଛ କାହିଁକି ?

ଦିନକୁ, ବର୍ଷକୁ, ଥରକୁ ପ୍ରଭୃତି ବୀପ୍‌ସା ଅର୍ଥରେ ଦ୍ୱିତୀୟା ବିଭକ୍ତି ଅଟନ୍ତି ।

୫ । **ବ୍ୟାପ୍ତି ଅର୍ଥରେ ଦ୍ୱିତୀୟା-**

(କ) ଏ ପୋଖରୀଖୋଳା ପୂରା **ଚାରିମାସ** ଲାଗିବ ।

(ଖ) ପାଞ୍ଚନମ୍ବର ଜାତୀୟ ରାଜପଥ **ଶହଶହ କିଲୋମିଟର** ଦୀର୍ଘ ।

ଏଠାରେ 'ଚାରିମାସ' ଅର୍ଥାତ୍ ଚାରିମାସ ପର୍ଯ୍ୟନ୍ତ ବା ବ୍ୟାପୀ ଓ **ଶହଶହ** କିଲୋମିଟର ଅର୍ଥ 'ଶହଶହ କିଲୋମିଟର' ବ୍ୟାପୀ ଲମ୍ୱ । 'ବ୍ୟାପ୍ତି' ଅର୍ଥ ବିସ୍ତୃତି ।

୬ । **ବିନିମୟ ବା ମୂଲ୍ୟାର୍ଥେ ଦ୍ୱିତୀୟା-**

(କ) **ପଚାଶଟଙ୍କାକୁ** ମଧ୍ୟ ଖଣ୍ଡିଏ ଭଗବଦ୍‌ଗୀତା ମିଳୁଛି ।

(ଖ) ବାଇଗଣ **କିଲୋକୁ** କୋଡ଼ିଏ ଟଙ୍କା ।

ଏଠାରେ ପଚାଶଟଙ୍କାକୁ, କିଲୋକୁ ବିନିମୟ ବା ମୂଲ୍ୟାର୍ଥେ ଦ୍ୱିତୀୟା ବିଭକ୍ତି ।

୭ । **'ଧିକ୍' ଶବ୍ଦ ଯୋଗେ ଦ୍ୱିତୀୟା-**

(କ) **ଦେଶଦ୍ରୋହୀକୁ** ଧିକ୍ ।

(ଖ) **ପଶୁହନ୍ତାକୁ** ଧିକ୍ ।

(ଗ) **ଯୌତୁକଲୋଭୀକୁ** ଧିକ୍ ।

ଏଠାରେ ଦେଶଦ୍ରୋହୀକୁ, ପଶୁହନ୍ତାକୁ, ଯୌତୁକଲୋଭୀକୁ ଧିକ୍ ଶବ୍ଦ ଯୋଗେ ଦ୍ୱିତୀୟା ବିଭକ୍ତି ହୋଇଛି ।

୮ । **କ୍ରିୟାବିଶେଷଣ ପଦରେ ଦ୍ୱିତୀୟା-**

(କ) **ତୁଚ୍ଛାକୁ** ଗହଳି କରୁଛୁ କାହିଁକି ?

(ଖ) **ମାହାଳିଆକୁ** ଏତେ ବକ୍‌ବକ୍ ହୁଅନା ।

(ଗ) ଶିବ **ଶୁଖିଲାକୁ** ମୋ ସାଙ୍ଗରେ କଳି କରୁଛି ।

ତୁଚ୍ଛାକୁ, ମାହାଳିଆକୁ, ଶୁଖିଲାକୁ ପଦଗୁଡ଼ିକ କ୍ରିୟାବିଶେଷଣ ହେତୁ ଦ୍ୱିତୀୟା ବିଭକ୍ତି ।

୯ । **'ଅନୁସାରେ' ଅର୍ଥରେ ଦ୍ୱିତୀୟା-**

(କ) ହରିର **କପାଳକୁ** ଲଟେରି ଫିଟିଲା ।

(ଖ) ମୋ **ଭାଗ୍ୟକୁ** ଏଇ ପୁଅ ଜନ୍ମିଥିଲା ।

(ଗ) ବିରାଡ଼ି **କପାଳକୁ** ଶିକା ଛିଣ୍ଡିଲା ।

କପାଳ, ଭାଗ୍ୟ ଓ କପାଳ ପଦଗୁଡ଼ିକ ଅନୁସାରେ ଅର୍ଥରେ ଦ୍ୱିତୀୟା ବିଭକ୍ତି ଅଟେ ।

୧୦ । **ଦୂର ଓ ନିକଟ ଅର୍ଥରେ ଦ୍ୱିତୀୟା-**

(କ) **କଲିକତାକୁ** ଚେନ୍ନାଇ ବହୁ ଦୂର ।

(ଖ) **ଭୁବନେଶ୍ୱରକୁ** ଧଉଳି ନିକଟ ।

(ଗ) **ବାଲୁଗାଁକୁ** ଚିଲିକା ପାଖ ।

ଦୂର ଶବ୍ଦଯୋଗେ କଲିକତାକୁ ଏବଂ ନିକଟ, ପାଖ ଶବ୍ଦଯୋଗେ ଭୁବନେଶ୍ୱର ଓ ବାଲୁଗାଁ ଦ୍ୱିତୀୟା ବିଭକ୍ତି ଅଟେ ।

୧୧ । **ଉପଯୁକ୍ତ ଅର୍ଥରେ ଦ୍ୱିତୀୟା-**

**ଅପରାଧୀକୁ** ଦଣ୍ଡ, **ଉପମାକୁ** ତରକାରି, **ବାଲିଗରଡ଼ାକୁ** ଚାଉଳଭଜା, **ଚୋରକୁ** ମାଡ଼, **ପାୟସକୁ** କ୍ଷୀର ।

ଉପଯୁକ୍ତ ବା ଯୋଗ୍ୟ ଅର୍ଥରେ 'ଅପରାଧୀ', 'ଉପମା', 'ବାଲିଗରଡ଼ାକୁ', 'ଚୋର' ଓ 'ପାୟସ' ପଦଗୁଡ଼ିକ ଦ୍ୱିତୀୟା ବିଭକ୍ତି ଅଟେ ।

**୧୨ । କ୍ରିୟାର ସମକାଳରେ ଦ୍ୱିତୀୟା–**

(କ) ମୁଁ ଷ୍ଟେସନରେ **ପହଞ୍ଚିବାକୁ** ଗାଡ଼ି ଛାଡ଼ିଦେଲା ।

(ଖ) ଶ୍ରୀକୃଷ୍ଣ ଶେଯରୁ **ଉଠିବାକୁ** ସମ୍ମୁଖରେ ଅର୍ଜୁନକୁ ଦେଖିଲେ ।

(ଗ) ମୁଁ **ଆସିବାକୁ** ତୁମେ ଫେରିଗଲ ।

ଏକ ସମୟରେ ଦୁଇଟି କ୍ରିୟା ସମ୍ପନ୍ନ ହେଉଥିଲେ ପ୍ରଥମ କ୍ରିୟାକୁ ବୁଝାଉଥିବା କ୍ରିୟାବାଚକ ବିଶେଷ୍ୟ ପଦର ଦ୍ୱିତୀୟା ବିଭକ୍ତି ହୁଏ ।

'ପହଞ୍ଚିବାକୁ', 'ଉଠିବାକୁ' ଓ 'ଆସିବାକୁ' ପଦଗୁଡ଼ିକ କ୍ରିୟାର ସମକାଳରେ ଦ୍ୱିତୀୟା ବିଭକ୍ତି ହୋଇଛି ।

**୧୩ । ଅଧିକରଣ କାରକ ସ୍ଥାନରେ (୭ମୀ ବିଭକ୍ତି ପରିବର୍ତ୍ତେ) ଦ୍ୱିତୀୟା–**

(କ) ଯାଅ, କାଲି **ସନ୍ଧ୍ୟାବେଳକୁ** ଆସିବ ।

(ଖ) ତୁମର କଥା ଆର **ସପ୍ତାହକୁ** ବୁଝିବା ।

ସନ୍ଧ୍ୟାବେଳେ, ଆର ସପ୍ତାହରେ ଅଧିକରଣ କାରକ (୭ମୀ ବିଭକ୍ତି) ସ୍ଥାନରେ ସନ୍ଧ୍ୟାବେଳକୁ, ଆରସପ୍ତାହକୁ ଦ୍ୱିତୀୟା ବିଭକ୍ତି ହୋଇଛି ।

**୧୪ । ସାଦୃଶ୍ୟ ଅର୍ଥରେ ଦ୍ୱିତୀୟା ବିଭକ୍ତି–**

(କ) ଶ୍ୱେତପଦ୍ମାର **ଅକ୍ଷରକୁ** ଅକ୍ଷର ନାହିଁ ।

(ଖ) ଏ **ଦେଉଳକୁ** ଆଉ ଦେଉଳ ଅଛି ?

ଏଠାରେ ଅକ୍ଷରକୁ ଓ ଦେଉଳକୁ ସାଦୃଶ୍ୟ ଅର୍ଥରେ ଦ୍ୱିତୀୟା ବିଭକ୍ତି ।

**୧୫ । ଭୟ, ଘୃଣା, ଲାଜ, ଲୁଚିବା ପ୍ରଭୃତି ଶବ୍ଦ ବା କ୍ରିୟା ଯୋଗେ ଦ୍ୱିତୀୟା–**

(କ) **ନିଧିମାଷ୍ଟ୍ରଙ୍କୁ** ପିଲାମାନେ ଭୟ କରନ୍ତି ।

(ଖ) **ଈଶ୍ୱରଙ୍କୁ** କେବଳ ମୋର ଭୟ ।

(ଗ) ବୁଢ଼ାବୁଢ଼ୀ **ଶୀତକୁ** ଡରନ୍ତି ।

(ଘ) **ମାଡ଼କୁ** ମହାଦେବଙ୍କର ଡର ।

(ଙ) **ଯୌତୁକକୁ** ସମସ୍ତେ ଘୃଣା କରିବା ଉଚିତ ।

(ଚ) ପିଲାଟି ଗୀତ **ଗାଇବାକୁ** ଲାଜ କରୁଛି ।

(ଛ) ସାହାଯ୍ୟ ନ କରିବ ତ ନ କର, **ମୋତେ** ଲୁଚୁଛ କାହିଁକି ?

(ଜ) ଅପରାଧୀ **ପୋଲିସକୁ** ଲୁଚେ ।

କଳାଅକ୍ଷର ପଦଗୁଡ଼ିକ ଦ୍ୱିତୀୟା ବିଭକ୍ତି ।

## ତୃତୀୟା ବିଭକ୍ତି

୧ । **କରଣକାରକରେ ତୃତୀୟା-**

(କ) ମୁଁ ନିଜେ **ଆଖିରେ** ଦେଖିଛି ଏବଂ **କାନରେ** ଶୁଣିଛି ।

(ଖ) ପ୍ରଧାନମନ୍ତ୍ରୀ **ବିମାନରେ** ଯୁକ୍ତରାଷ୍ଟ୍ର ଆମେରିକା ଗଲେ ।

(ଗ) ଶ୍ରୀରାମ **ନୌକାରେ** ଗଙ୍ଗା ପାର ହେଲେ ।

ଏଠାରେ ଆଖିରେ, କାନରେ, ବିମାନରେ, ନୌକାରେ କରଣକାରକରେ ତୃତୀୟା ବିଭକ୍ତି ଅଟେ ।

୨ । **କ୍ରିୟାବିଶେଷଣ ପଦରେ ତୃତୀୟା-**

(କ) ତୁମେ **ତୁଚ୍ଛାରେ** ମୋ ସହିତ ଝଗଡ଼ା କରୁଛ ।

(ଖ) ସମସ୍ତେ **ସୁଖରେ** ରହନ୍ତୁ ।

(ଗ) ବୁଢ଼ା ହେଲେ ବି ସେ **ବେଗରେ** ଚାଲିପାରନ୍ତି ।

(ଘ) ଶବରୀ ବଡ଼ **ଆଦରରେ** ରାମଙ୍କୁ ଫଳ ଖୁଆଇଲା ।

(ଙ) ତୁମେ **ସଂକ୍ଷେପରେ** ଭାଷଣ ଦିଅ ।

ଏଠାରେ ତୁଚ୍ଛାରେ, ସୁଖରେ, ବେଗରେ, ଆଦରରେ ଓ ସଂକ୍ଷେପରେ ପଦଗୁଡ଼ିକ କ୍ରିୟାବିଶେଷଣ ହେତୁ ତୃତୀୟା ବିଭକ୍ତି ହୋଇଛି ।

୩ । **ମୂଲ୍ୟ ଅର୍ଥରେ ତୃତୀୟା-**

(କ) ବାପା **ଶହେ ତିରିଶ ଟଙ୍କାରେ** ଓଡ଼ିଆ ଭାଗବତ କିଣିଛନ୍ତି ।

(ଖ) **ପଚାଶଟଙ୍କାରେ** ଭଗବଦ୍ ଗୀତାଖଣ୍ଡିଏ କିଣିବାକୁ ମିଳୁଛି ।

ଏଠାରେ ଶହେ ତିରିଶ ଟଙ୍କାରେ, ପଚାଶଟଙ୍କାରେ ମୂଲ୍ୟାର୍ଥେ ତୃତୀୟା ବିଭକ୍ତି ଅଟେ ।

୪ । **ହେତୁ ଅର୍ଥରେ ତୃତୀୟା-**

(କ) ଶିଶୁଟି **ଭୋକରେ** କାନ୍ଦୁଛି ।

(ଖ) ରୋଗୀଟି **ରୋଗରେ** ଛଟପଟ ହେଉଛି ।

(ଗ) ଋଷିଙ୍କ **ଶାପରେ** ପରୀକ୍ଷିତ ତକ୍ଷକ ଦଂଶନରେ ଦେହତ୍ୟାଗ କଲେ ।

ଭୋକରେ, ରୋଗରେ, ଶାପରେ ହେତୁ ବା କାରଣ ବୁଝାଉଥିବା ଅର୍ଥରେ ତୃତୀୟା ବିଭକ୍ତି ହୋଇଛି ।

୫ । **ଅପବର୍ଗ ବା ଫଳପ୍ରାପ୍ତି ବା କାର୍ଯ୍ୟସମାପ୍ତି ଅର୍ଥରେ ତୃତୀୟା-**

(କ) ଆମ ଘରଟି **ତିନି ମାସରେ** ତିଆରି ସରିଲା ।

(ଖ) ମୁଁ ମହାଭାରତ ପଢ଼ା **ଛ'ମାସରେ** ଶେଷ କଲି ।

(ଗ) ଦରଜି **ପାଞ୍ଚଦିନରେ** କୋଟ୍‌ଟି ତିଆରି କଲା ।

ଘର ତିଆରି କାମ ତିନି ମାସରେ ଓ ମହାଭାରତ ପଢ଼ା ଛ'ମାସରେ ଓ କୋଟ୍ ତିଆରି ପାଞ୍ଚ ଦିନରେ ଶେଷହେବା କୁହାଯାଇଛି । ଏଣୁ 'ତିନି ମାସରେ' ଓ 'ଛ' ମାସରେ' ଓ 'ପାଞ୍ଚ ଦିନରେ' ଅପବର୍ଗ ଅର୍ଥରେ ତୃତୀୟା ବିଭକ୍ତି ହୋଇଛି ।

୬ । **କର୍ମବାଚ୍ୟରେ ଓ ଭାବବାଚ୍ୟରେ କର୍ତ୍ତାଠାରେ ତୃତୀୟା ବା ଅପ୍ରଧାନ କର୍ତ୍ତାଠାରେ ତୃତୀୟା-**

**କର୍ମବାଚ୍ୟ-**

(କ) **ଶିକ୍ଷକଙ୍କଦ୍ୱାରା** ବ୍ୟାକରଣ ପଢ଼ା ହେଲା ।

(ଖ) **ମନ୍ମଥନାଥ ଦାସଙ୍କଦ୍ୱାରା** ଭାରତ-ଇତିହାସ ଲେଖାହୋଇଛି ।

(ଗ) **ଈଶ୍ୱରଙ୍କଦ୍ୱାରା** ଜଗତ୍ ସୃଷ୍ଟ ।

**ଭାବବାଚ୍ୟ-**

(କ) **ମୟୂରଦ୍ୱାରା** ସୁନ୍ଦର ନାଚ ହୁଏ ।

(ଖ) **ପିଲାଙ୍କଦ୍ୱାରା** ଖେଳ ହେଉଛି ।

(ଗ) ସକାଳେ **ଆମ୍ଭମାନଙ୍କଦ୍ୱାରା** ବୁଲା ହୁଏ ।

ଏଠାରେ ଶିକ୍ଷକଙ୍କ ଦ୍ୱାରା, ମନ୍ମଥନାଥ ଦାସଙ୍କ ଦ୍ୱାରା, ମୟୂରଦ୍ୱାରା, ପିଲାଙ୍କ ଦ୍ୱାରା ଓ ଆମ୍ଭମାନଙ୍କ ଦ୍ୱାରା କର୍ମବାଚ୍ୟ ଓ ଭାବବାଚ୍ୟରେ ତୃତୀୟା ବିଭକ୍ତି ହୋଇଛି ।

୭ । **ପ୍ରଯୋଜ୍ୟ କର୍ତ୍ତାରେ ତୃତୀୟା-**

(କ) ଶିକ୍ଷକ **ପିଅନଦ୍ୱାରା** ଉପସ୍ଥାନ ଖାତା ଅଣାଇଲେ ।

(ଖ) ସନ୍ନ୍ୟାସୀ **ଗ୍ରାମବାସୀଙ୍କ ଦ୍ୱାରା** ଯଜ୍ଞ କରାଇଲେ ।

ଏଠାରେ ପିଅନଦ୍ୱାରା, ଗ୍ରାମବାସୀଙ୍କ ଦ୍ୱାରା ପ୍ରଯୋଜ୍ୟ କର୍ତ୍ତାଠାରେ ତୃତୀୟା ବିଭକ୍ତି ହୋଇଛି ।

୮ । **ଜାତି, ଗୋତ୍ର, ବର୍ଣ୍ଣ, ରୂପ, ସ୍ୱଭାବ, ପ୍ରକୃତି, ଆକୃତି, ନାମ ପ୍ରଭୃତି ପଦରେ ତୃତୀୟା-**

(କ) **ଜାତିରେ** ଯେ ଯାହା ହେଉ, ସେ ଏକ ଈଶ୍ୱରଙ୍କର ସନ୍ତାନ ।

(ଖ) ରାମଚନ୍ଦ୍ର **ବର୍ଣ୍ଣରେ** ଶ୍ୟାମଳ ଥିଲେ ।

(ଗ) ଗଗନ **ଗୋତ୍ରରେ** ଭରଦ୍ୱାଜ ।

(ଘ) ଝିଅଟି **ରୂପରେ** ଅତି ସୁନ୍ଦର ।

(ଙ) ଶିଶୁମାନେ **ସ୍ୱଭାବରେ** ସରଳ ।

(ଚ) **ପ୍ରକୃତିରେ** ନିମ୍ବ ପିତା ।

(ଛ) ପିଲାଟି **ଆକୃତିରେ** ଖୁବ୍ ସୁନ୍ଦର ।

(ଜ) ଏ ମୂର୍ତ୍ତିଟି **ଆକାରରେ** ଖୁବ୍ ଛୋଟ ।

(ଝ) ଲୋକ **ନାଁରେ** ବଡ଼ ହୁଏନି, କାମରେ ବଡ଼ ହୁଏ ।

(ଞ) ଲୋକଟି ନାରାୟଣ **ନାମରେ** ପରିଚିତ ।

ଏଠାରେ କଳାଅକ୍ଷରର ପଦଗୁଡ଼ିକ ୩ୟା ବିଭକ୍ତି ।

୯ । **ଊଣା, ଅଧିକ, ସାନ, ବଡ଼, ହୀନ, ଶୂନ୍ୟ ପ୍ରଭୃତି ଶବ୍ଦଯୋଗେ ତୃତୀୟା-**

(କ) ସୀତା ଓ ଗୀତା କେହି କାହାଠାରୁ **ନାଚରେ** ଊଣା ନୁହନ୍ତି ।

(ଖ) ଭୀମସେନ ଦୁର୍ଯ୍ୟୋଧନଠାରୁ **ବଳରେ** ଅଧିକ ଥିଲେ ।

(ଗ) ଗୋବିନ୍ଦ ଗୋପାଳଠାରୁ **ବୟସରେ** ସାନ ।

(ଘ) ସୋଲରି ଭାଲେରିଠାରୁ **ଉଚ୍ଚତାରେ** ବଡ଼ ।

(ଙ) **ଗୁଣରେ** ହୀନ ଲୋକ କେଉଁଠି ସମ୍ମାନ ପାଏନି ।

(ଚ) ଅଶୋକ **ଧନରେ** ସିନା ଶୂନ୍ୟ, ମନରେ କିନ୍ତୁ ଖୁବ୍ ଧନୀ ।

(ଛ) ମହେଶ **ବ୍ୟବହାରରେ** ନୀଚ; କିନ୍ତୁ ପରେଶ **ବ୍ୟବହାରରେ** ଖୁବ୍ ମାର୍ଜିତ ।

୧୦ । **ପ୍ରୟୋଜନାର୍ଥକ ପଦ ଯୋଗରେ ତୃତୀୟା-**

(କ) ତୁମର ଅଲଣା **କଥାରେ** ମୋର ପ୍ରୟୋଜନ ନାହିଁ ।

(ଖ) ସାଧୁତା ନ ଥିଲେ **ଜୀବନରେ** କିଛି ମୂଲ୍ୟ ନାହିଁ ।

(ଗ) ଧର୍ମ ନ କଲେ **ଧନ-ଅର୍ଜନରେ** କି ଫଳ ।

(ଘ) ଏମିତିକା **କଳିତକରାଳରେ** କାହାର କିଛି ଲାଭ ଅଛି ?

(ଙ) **ପରଧନରେ** କାହାର ବା କି ଦରକାର ?

୧୧ । **ସହାର୍ଥକ ଶବ୍ଦରେ ତୃତୀୟା-**

(କ) ଶିକ୍ଷକଙ୍କ **ସଙ୍ଗରେ** ଛାତ୍ରଛାତ୍ରୀମାନେ ଭ୍ରମଣରେ ଗଲେ ।

(ଖ) ତା' **ସାଥିରେ** କାହାର ପଡ଼େନାହିଁ ।

(ଗ) ଆମ ପରିବାର ବାପାଙ୍କ **ସହିତରେ** ପୁରୀ ଯାଇଥିଲେ ।

ଏଠାରେ ସଙ୍ଗରେ, ସାଥିରେ, ସ[illegible]ହାର୍ଥକ ଶବ୍ଦରେ ତୃତୀୟା ବିଭକ୍ତି ହୋଇଛି ।

**୧୨ । ଅଙ୍ଗବିକାରେ ତୃତୀୟା-**

ଶରୀରର ଯେଉଁ ଅଙ୍ଗ ବିକୃତ ହୋଇଥାଏ, ସେହି ଅଙ୍ଗବାଚକ ଶବ୍ଦରେ ତୃତୀୟା ବିଭକ୍ତି ହୁଏ । ଯଥା-

(କ) କାମିନୀ **କାନରେ** କାଲୁଣୀ ।

(ଖ) ଭିକାରିଟି **ପାଦରେ** ଛୋଟା ।

(ଗ) ଲୋକଟି **ପିଠିରେ** କୁଜା ।

(ଘ) ପ୍ରଦୀପ **ଆଖିରେ** କଣା ।

ବିକୃତଅଙ୍ଗ କାନ, ପାଦ, ପିଠି ଓ ଆଖି ପଦରେ ତୃତୀୟା ବିଭକ୍ତି ହୋଇଛି ।

**୧୩ । ବିନା ଶବ୍ଦଯୋଗେ ତୃତୀୟା-**

(କ) ବିନା **ବିଚାରରେ** ଲୋକଟି ଦଣ୍ଡ ପାଇଲା ।

(ଖ) ବିନା **ଉଦ୍ଦେଶ୍ୟରେ** ସେ ଏଠାକୁ ଆସିନାହିଁ ।

'ବିନା' ଶବ୍ଦ ବିଶେଷ୍ୟ ପଦ ପୂର୍ବରେ ବ୍ୟବହୃତ ହେଲେ, ବିଶେଷ୍ୟ ପଦରେ ୩ୟା ବିଭକ୍ତି ହୁଏ । ଏହାକୁ 'ବିନା' ଶବ୍ଦ ଯୋଗେ ତୃତୀୟା ବିଭକ୍ତି କୁହାଯାଏ ।

## ଚତୁର୍ଥୀ ବିଭକ୍ତି

**୧ । ସମ୍ପ୍ରଦାନ କାରକରେ ଚତୁର୍ଥୀ-**

(କ) ରାଜ୍ୟପାଳ **ଜନସେବକଙ୍କୁ** ପୁରସ୍କାର ଦେଲେ ।

(ଖ) କର୍ଣ୍ଣ ପ୍ରତିଦିନ **ଯାଚକଙ୍କୁ** ମନଲାଖି ଦାନ କରୁଥିଲେ ।

(ଗ) **ପୁରୋହିତଙ୍କୁ** ଦକ୍ଷିଣା ଦିଅ ।

(ଘ) **ସାଧୁସନ୍ଥଙ୍କୁ** ଅନ୍ନବସ୍ତ୍ର ଦେବା ଉଚିତ ।

(ଙ) **ରୋଗୀକୁ** ପଥ୍ୟ ଦିଅ ।

କଳାଅକ୍ଷରର ପଦଗୁଡ଼ିକ ସମ୍ପ୍ରଦାନେ ଚତୁର୍ଥୀ ଅଟେ ।

**୨ । ନିମିତ୍ତ ଅର୍ଥରେ ଚତୁର୍ଥୀ-**

(କ) ତୁମେ **ସାର୍ଟକୁ** କନା କିଣିଲଣି ?

(ଖ) ମନ୍ଦିରକୁ କିଛି ସାହାଯ୍ୟ ମାଗୁଛୁ ।

(ଗ) ଏ ଯୁଗରେ **ପେଟକୁ** ଦାନା, **ପିଠିକି** କନା ଯୋଗାଡ଼ କରିବା କାଠିକର ପାଠ ।

(ଘ) **ବାପାଙ୍କୁ** ଶାଲ୍‌ଟିଏ ଆଣିଦେବ ।

(ଙ) ଦହିକି ତମ୍ବାପାତ୍ର ବିଷ ।

(ଚ) ବୋହୂ **ପାଣିକି** ଯାଇଛି ।

ରେଖାଙ୍କିତ ପଦଗୁଡ଼ିକ ନିମିତ୍ତାର୍ଥେ ଚତୁର୍ଥୀ ବିଭକ୍ତି ।

୩ । **ନିବାରଣ ଅର୍ଥରେ ଚତୁର୍ଥୀ-**

(କ) **ଏଡସ୍‌ରୋଗକୁ** ସଚେତନତା ହିଁ ଅବ୍ୟର୍ଥ ମହୌଷଧି ।

(ଖ) **ମ୍ୟାଲେରିଆକୁ** କୁଇନାଇନ୍ ଦିଆଯାଏ ।

(ଗ) **ମୂଷାଙ୍କୁ** ମୂଷାମାରୀ ଦିଅ ।

(ଘ) **ଖରାକୁ** ଛତା ନିଅ ।

(ଙ) **ନିଆଁକୁ** ପାଣି ଦରକାର ।

(ଚ) **ମଶାକୁ** ଡିଡିଟି ପକାଅ ।

(ଛ) **କୁଷ୍ଠକୁ** ଏମ୍.ବି.ଟି. ବଟିକା ଉପାଦେୟ ।

(ଜ) **ବାତଜ୍ୱରକୁ** ଡି.ଇ.ସି. ବଟିକା ଖାଇବା ଉଚିତ ।

ଏଠାରେ ଏଡସ୍‌ରୋଗକୁ, ମେଲେରିଆକୁ, ମୂଷାକୁ, ଖରାକୁ, ନିଆଁକୁ, ମଶାକୁ, କୁଷ୍ଠକୁ ଯଥାକ୍ରମେ ଔଷଧ, କୁଇନାଇନ୍, ମୂଷାମାରୀ, ଛତା, ପାଣି, ଡି.ଡି.ଟି, ଏମ୍.ବି.ଟି, ଡି.ଇ.ସି. ଯୋଗରେ ନିବାରଣାର୍ଥେ ଚତୁର୍ଥୀ ବିଭକ୍ତି ହୋଇଛି ।

୪ । **ରୁଚିବା ଅର୍ଥରେ ଚତୁର୍ଥୀ-**

(କ) ଶିଶୁର ମଧୁରକଥା **ସମସ୍ତଙ୍କୁ** ଭଲ ଲାଗେ ।

(ଖ) କରୁଆ **ପାଟିକୁ** ଖାଦ୍ୟ ରୁଚେ ନାହିଁ ।

(ଗ) **ମୋତେ** ଦହି ରୁଚେ ।

(ଘ) **ପିଲାଙ୍କୁ** ମିଠାଜିନିଷ ସୁଆଦ ଲାଗେ ।

ଯାହାକୁ ରୁଚୁ ବା ନ ରୁଚୁ ସେଠାରେ ରୁଚ୍ୟର୍ଥକ ଶବ୍ଦ ବା କ୍ରିୟା ଯୋଗେ ଚତୁର୍ଥୀ ବିଭକ୍ତି ହୁଏ । ସମସ୍ତଙ୍କୁ, ପାଟିକୁ, ମୋତେ, ପିଲାଙ୍କୁ ରୁଚିବା ଅର୍ଥରେ ଚତୁର୍ଥୀ ବିଭକ୍ତି ହୋଇଛି ।

୫ । **ସମ୍ମାନ ଅର୍ଥରେ ଚତୁର୍ଥୀ-**

(କ) **ଗୁରୁଜନଙ୍କୁ** ପ୍ରଣାମ । (ଖ) **ପିତାଙ୍କୁ** ନମସ୍କାର ।

(ଗ) **ଈଶ୍ୱରଙ୍କୁ** ଭକ୍ତି କର । (ଘ) **ଭାଇମାନଙ୍କୁ** ଧନ୍ୟବାଦ ।

ଏଠାରେ ଗୁରୁଜନଙ୍କୁ, ପିତାଙ୍କୁ, ଈଶ୍ୱରଙ୍କୁ ଓ ଭାଇମାନଙ୍କୁ ପ୍ରଣାମ, ନମସ୍କାର, ଭକ୍ତି ଓ ଧନ୍ୟବାଦ ପ୍ରଭୃତି ସମ୍ମାନାର୍ଥକ ଶବ୍ଦ ଯୋଗେ ଚତୁର୍ଥୀ ବିଭକ୍ତି ହୋଇଛି ।

୬ । ଯୋଗ୍ୟ ଅର୍ଥରେ ଚତୁର୍ଥୀ-

(କ) ଯେମିତି ଦିଅଁଙ୍କୁ ସେମିତି ପୂଜା ।

(ଖ) **ଯେସାକୁ** ତେସା ।

(ଗ) ତୁମ **ମନକୁ** ମୋ କଥା ପାଇଲା ।

(ଘ) ଯେମିତି **ଲୋକକୁ** ସେମିତି ବ୍ୟବହାର ।

ଏଠାରେ ଯେସାକୁ, ମନକୁ, ଲୋକକୁ ଯୋଗ୍ୟ ବା ଅନୁକୂଳ ଅର୍ଥରେ ଚତୁର୍ଥୀ ବିଭକ୍ତି ହୋଇଛି ।

## ପଞ୍ଚମୀ ବିଭକ୍ତି

୧ । ଅପାଦାନକାରକରେ ପଞ୍ଚମୀ-

ଯଥା-

(କ) **ଚନ୍ଦ୍ରରୁ** ଜ୍ୟୋତ୍ସ୍ନା (ଚନ୍ଦ୍ରକିରଣ) ଆସୁଛି ।

(ଖ) **ବଡ଼ଦେଉଳରୁ** ପଥର ଖସିଲା ।

(ଗ) **ଦେଶରୁ** ବିଦେଶୀମାନେ ଚାଲିଗଲେ ।

(ଘ) ଦୃଢ଼ପ୍ରତିଜ୍ଞ ବ୍ୟକ୍ତି **ସତ୍ୟପଥରୁ** ବିଚ୍ୟୁତ ହୁଅନ୍ତି ନାହିଁ ।

ଏଠାରେ ଚନ୍ଦ୍ରରୁ, ବଡ଼ଦେଉଳରୁ, ଦେଶରୁ ଓ ସତ୍ୟପଥରୁ ଅପାଦାନ କାରକ ହୋଇଛି । ତେଣୁ ଏହି ପଦଗୁଡ଼ିକ ଅପାଦାନ କାରକରେ ପଞ୍ଚମୀ ବିଭକ୍ତି ।

୨ । ହେତୁ ଅର୍ଥରେ ପଞ୍ଚମୀ-

(କ) ପୁଅର **ଦୋଷରୁ** ବାପା ଜେଲ୍ ଗଲେ ।

(ଖ) **ଅତିବୃଷ୍ଟିରୁ** କେଉଁଠି ବନ୍ୟା ହେଉଛି ତ **ଅନାବୃଷ୍ଟିରୁ** କେଉଁଠି ମରୁଡ଼ି ପଡୁଛି ।

(ଗ) **ନାରୀନିର୍ଯାତନାରୁ** ଦୁର୍ଯ୍ୟୋଧନର ପତନ ହେଲା ।

(ଘ) **ଅଂଶୁଘାତରୁ** ବୁଢ଼ାଟି ପ୍ରାଣତ୍ୟାଗ କଲା ।

ହେତୁ ବା କାରଣ ବୁଝାଉଥିବାରୁ ରେଖାଙ୍କିତ ପଦ ଦୋଷ, ଅତିବୃଦ୍ଧି, ଅନାବୃଷ୍ଟି, ନାରୀନିର୍ଯାତନା ଓ ଅଂଶୁଘାତ ଶବ୍ଦର ପଞ୍ଚମୀ ବିଭକ୍ତି ହୋଇଛି ।

୩ । ଉତ୍କର୍ଷ-ଅପକର୍ଷ ଅର୍ଥରେ ବା ତୁଳନାର୍ଥେ ବା ଅପେକ୍ଷାର୍ଥେ ପଞ୍ଚମୀ-

(କ) ମଶା ଓ ମାଛି **ବାଘଠାରୁ** ମଧ ଭୟଙ୍କର ।

(ଖ) **ମାଡ଼ଠାରୁ** କଠୋରବଚନ ଅଧିକ ଯନ୍ତ୍ରଣାଦାୟକ ।

(ଗ) **ଖଣ୍ଡାଠାରୁ** ଲେଖନୀ ଖୁବ୍ ଶକ୍ତିଶାଳୀ ।

(ଘ) **ବ୍ରହ୍ମପୁରଠାରୁ** ତାଳଚେରର ତାପମାତ୍ରା ବେଶି ।

(ଙ) **ଦୀନବନ୍ଧୁଠାରୁ** ଦାମୋଦର ଦୁର୍ବଳ ।

(ଚ) **ହୀରାଠାରୁ** ସୁନାର ମୂଲ୍ୟ କମ୍ ।

ଦୁଇଟି ମଧ୍ୟରେ ତୁଳନା ବା ଉତ୍କର୍ଷ-ଅପକର୍ଷ ବୁଝାଇଲେ ଅପକର୍ଷ ବା ଉତ୍କର୍ଷ ବୁଝାଉଥିବା ପଦରେ ପଞ୍ଚମୀ ବିଭକ୍ତି ହୁଏ । ଏହାକୁ ତୁଳନାର୍ଥେ ପଞ୍ଚମୀ ବା ଉତ୍କର୍ଷ-ଅପକର୍ଷେ ପଞ୍ଚମୀ ବା ଅପେକ୍ଷାର୍ଥେ ପଞ୍ଚମୀ କୁହାଯାଏ ।

ବାଘଠାରୁ, ମାଢ଼ଠାରୁ, ଖଣ୍ଡାଠାରୁ, ବ୍ରହ୍ମପୁରଠାରୁ ଅପକର୍ଷ ପଦରେ ତଥା ଦୀନବନ୍ଧୁଠାରୁ, ହୀରାଠାରୁ ଉତ୍କର୍ଷ ପଦରେ ପଞ୍ଚମୀ ବିଭକ୍ତି ହୋଇଛି ।

**୪ । ଆବିର୍ଭାବ ସ୍ଥାନ ବୁଝାଉଥିବା ପଦର ପଞ୍ଚମୀ ବିଭକ୍ତି-**

(କ) ଗଙ୍ଗା **ହିମାଳୟରୁ** ନିର୍ଗତ ହୋଇଛି ।

(ଖ) ମହାନଦୀ **ଅମରକଣ୍ଟକ ମାଳଭୂମିରୁ** ବାହାରିଛି ।

(ଗ) ବୈତରଣୀ **ଗୋନାସିକା ପର୍ବତରୁ** ବହିର୍ଗତ ହୋଇଛି ।

(ଘ) **ସହ୍ୟାଦ୍ରିରୁ** ଗୋଦାବରୀ ପ୍ରବାହିତ ହୋଇଛି ।

ଏଠାରେ ଗଙ୍ଗା, ମହାନଦୀ, ବୈତରଣୀ ଓ ଗୋଦାବରୀର ପ୍ରଥମ ବହିର୍ଗମନ (ନିର୍ଗମନ) ବା ପ୍ରକାଶ ସ୍ଥଳ ଯଥାକ୍ରମେ ହିମାଳୟ, ଅମରକଣ୍ଟକ ମାଳଭୂମି, ଗୋନାସିକା ପର୍ବତ, ସହ୍ୟାଦ୍ରି ହୋଇଥିବାରୁ ପଞ୍ଚମୀ ବିଭକ୍ତି ହୋଇଛି ।

**୫ । ଉତ୍ପତ୍ତିର ହେତୁବୋଧକ ଶବ୍ଦର ପଞ୍ଚମୀ-**

ଯଥା- (କ) **ଧାନରୁ** ଗଜା ହେଲାଣି ।

(ଖ) **ଦହିରୁ** ଲହୁଣି ବାହାରେ ।

(ଗ) **ଆଖୁରସରୁ** ଗୁଡ଼ ହୁଏ ।

(ଘ) **ଭୂଗର୍ଭରୁ** ଅଗ୍ନ୍ୟୁଦ୍‌ଗୀରଣ ହୋଇଥାଏ ।

(ଙ) **ଫୁଲରୁ** ଫଳ ହୁଏ ।

ଏଠାରେ ଗଜା, ଲହୁଣି, ଗୁଡ଼, ଅଗ୍ନ୍ୟୁଦ୍‌ଗୀରଣ ଓ ଫଳ ପ୍ରଭୃତିର ଉତ୍ପତ୍ତିର ହେତୁ ବା କାରଣ ଯଥାକ୍ରମେ ଧାନ, ଦହି, ଆଖୁରସ, ଭୂଗର୍ଭ ଓ ଫୁଲ ଅଟେ । ଏହି ହେତୁବୋଧକ ଧାନରୁ, ଦହିରୁ, ଆଖୁରସରୁ, ଭୂଗର୍ଭରୁ ଓ ଫୁଲରୁ ପଞ୍ଚମୀ ବିଭକ୍ତି ହୋଇଛି ।

୬ । **'ବିରାମ' ଅର୍ଥ ବୁଝାଉଥିବା ଶବ୍ଦ ଯୋଗରେ ପଞ୍ଚମୀ-**

ଯଥା- (କ) ଯେ **ଅଧ୍ୟବସାୟରୁ** ବିରତ ହୁଏ, ସେ ଉନ୍ନତିର ସ୍ୱାଦ ଚାଖେ ନାହିଁ ।

(ଖ) ଦାରିଦ୍ର୍ୟର ଅନେକ ଛାତ୍ରଛାତ୍ରୀ **ପଠନରୁ** ବିରତ ହେଉଛନ୍ତି ।

(ଗ) ବାପା ମରଯିବାରୁ ପିଲାଟି **ପଢ଼ାରୁ** ରହିଗଲା ।

(ଘ) ଏବେ ଶ୍ରମିକମାନଙ୍କର **କାମରୁ** ବିରତ ହେବାର ସମୟ ।

ବିରତ ଅର୍ଥ ରହିଯିବା । ଏହି ଶବ୍ଦଯୋଗରେ ଅଧ୍ୟବସାୟ, ପଠନ, ପଢ଼ା, କାମ ଶବ୍ଦର ପଞ୍ଚମୀ ବିଭକ୍ତି ହୋଇଛି ।

୭ । **ଅସମାପିକା କ୍ରିୟା ଲୋପରେ ପଞ୍ଚମୀ-**

ଯଥା- (କ) ତୁମ **କଥାରୁ** ଏତେ କଷ୍ଟ ପାଇଲି । (କଥାରୁ **ଶୁଣି**)

(ଖ) କୀଚକର **ବାହୁବଳରୁ** ବିରାଟ ନିର୍ଭୟରେ ଥିଲେ । (ବାହୁବଳକୁ **ଆଶ୍ରୟ କରି**)

(ଗ) ମୁଁ ତାଙ୍କୁ **ରେଳଗାଡ଼ିରୁ** କହିଲି । (ରେଳଗାଡ଼ିରେ **ବସି/ରହି**)

(ଘ) ମୋର ଭଉଣୀ **କଲିକତାରୁ** ରାକ୍ଷୀ ପଠାଇଛି । (କଲିକତାରେ **ରହି**)

(ଙ) ମାଙ୍କଡ଼ **ଗଛରୁ** ଫଳ ପକାଇଲା । (ଗଛରେ **ଥାଇ**, ଗଛରୁ **ଚଢ଼ି**)

ଅସମାପିକା କ୍ରିୟା ଲୋପ ହେଲେ, ସେହି ଅସମାପିକା କ୍ରିୟାର କର୍ମ ଓ ଅଧିକରଣ ସ୍ଥାନରେ ପଞ୍ଚମୀ ବିଭକ୍ତି ହୁଏ । ଏଠାରେ କଥାରୁ, ବାହୁବଳରୁ, ରେଳଗାଡ଼ିରୁ, କଲିକତାରୁ ଓ ଗଛରୁ ଅସମାପିକା କ୍ରିୟା ଲୋପରେ ପଞ୍ଚମୀ ବିଭକ୍ତି ହୋଇଛି ।

୮ । **ରକ୍ଷାର୍ଥକ ଶବ୍ଦ ଯୋଗରେ ପଞ୍ଚମୀ-**

ଯଥା- (କ) ସୈନିକମାନେ ଦେଶରୁ **ଶତ୍ରୁଠାରୁ** ରକ୍ଷା କରନ୍ତି ।

(ଖ) ହେ ପ୍ରଭୁ ! ମୋତେ ଏ **ସଙ୍କଟରୁ** ପାରି କର ।

(ଗ) ରାମ ରାବଣକୁ ମାରି ସୀତାଙ୍କୁ **ଲଙ୍କାରୁ** ଉଦ୍ଧାର କରିଥିଲେ ।

(ଘ) ଆମେ ଭାରତବାସୀ ଆଜି **ପରାଧୀନତାରୁ** ମୁକ୍ତ ।

(ଙ) ନାରାୟଣ ଗଜକୁ **ଗ୍ରାହକବଳରୁ** ତ୍ରାଣ କରିଥିଲେ ।

ରକ୍ଷାର୍ଥକ ଶବ୍ଦଯୋଗେ ଶତ୍ରୁ, ସଙ୍କଟ, ଲଙ୍କା, ପରାଧୀନତା ଓ ଗ୍ରାହକବଳ ଶବ୍ଦର ପଞ୍ଚମୀ ବିଭକ୍ତି ହୋଇଛି ।

୯ । **ଭିନ୍ନାର୍ଥକ ଶବ୍ଦଯୋଗେ ପଞ୍ଚମୀ-**

ଯଥା- (କ) ମୋ ଚିନ୍ତାଧାରା ତୁମ **ଚିନ୍ତାଧାରାଠାରୁ** ଭିନ୍ନ ।

(ଖ) **ଆମ୍ବଠାରୁ** ଆମ୍ବଡ଼ା ପୃଥକ୍ ।

(ଗ) ଜଣକର **କଥାଠାରୁ** ଆଉଜଣକର କଥା ଅଲଗା ଥାଏ ।

(ଘ) **ଅହିଂସାନୀତିରୁ** ହିଂସାର ନୀତି ସମ୍ପୂର୍ଣ୍ଣ ତଫାତ୍ ।

(ଙ) **ମଣିଷଠାରୁ** ମଣିଷର ବ୍ୟବହାରରେ ଫରକ ଥାଏ ।

ଭିନ୍ନାର୍ଥକ ଶବ୍ଦଯୋଗେ ଚିନ୍ତାଧାରା, ଆମ୍ବ, କଥା, ଅହିଂସାନୀତି, ମଣିଷ ପ୍ରଭୃତି ପଦମାନଙ୍କର ପଞ୍ଚମୀ ବିଭକ୍ତି ହୋଇଛି ।

୧୦ । **ସୀମା(ଆରମ୍ଭ/ଅବଧି)ବୁଝାଉଥିବା ମାର୍ଗବାଚକ ଓ କାଳବାଚକ ପଦର ପଞ୍ଚମୀ ବିଭକ୍ତି ହୁଏ ।**

ଯଥା- (କ) ପୋଖରୀ ତୁଠରେ **ଢିଙ୍କିଶାଳରୁ** ଢେଙ୍କାନାଳଯାଏଁ ନାନା କଥା ପଡ଼େ ।

(ଖ) ଗାଁ'ର **ଏମୁଣ୍ଡରୁ** ସେ ମୁଣ୍ଡ ପର୍ଯ୍ୟନ୍ତ ବାଛୁରିଟି ଧାଉଁଛି ।

(ଗ) **ହିମାଳୟରୁ** କୁମାରିକା ଯାଏଁ ବିଶାଳ ଭାରତ ଆମର ଜନ୍ମଭୂମି ।

(ଘ) **ରବିବାରରୁ** ସୋମବାର ପର୍ଯ୍ୟନ୍ତ ଏକ ସପ୍ତାହ ଅଟେ ।

(ଙ) **କାର୍ତ୍ତିକରୁ** ମାଘ ଯାଏଁ ଶୀତ ହୁଏ ।

(ଚ) **ସକାଳୁ** ସଂଜ ପର୍ଯ୍ୟନ୍ତ ତୁମେ କ'ଣ କରୁଛ ?

(ଛ) **ବାଲ୍ୟରୁ** ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଜୀବନ କେତୋଟି ପର୍ଯ୍ୟାୟରେ ବିଭକ୍ତ ।

ଢିଙ୍କିଶାଳରୁ, ଏମୁଣ୍ଡରୁ, ହିମାଳୟରୁ ମାର୍ଗର ସୀମା ବା ପରିମାଣ ବୁଝାଉଥିବା ତଥା ରବିବାରରୁ, କାର୍ତ୍ତିକରୁ, ସକାଳୁ, ବାଲ୍ୟରୁ କାଳ ବା ସମୟର ସୀମା ବୁଝାଉଥିବା ପଦମାନଙ୍କର ପଞ୍ଚମୀ ବିଭକ୍ତି ହୋଇଛି ।

୧୧ । **ଆରମ୍ଭ ଶବ୍ଦଯୋଗରେ ପଞ୍ଚମୀ-**

ଯଥା-(କ) **ବାଲେଶ୍ୱରରୁ** ଆରମ୍ଭ କରି ଗଞ୍ଜାମ ପର୍ଯ୍ୟନ୍ତ ବେଳାଭୂମି ମାର୍ଗ ଶୀଘ୍ର ତିଆରିହେବା ଉଚିତ ।

(ଖ) **ନେତାଠାରୁ** ଆରମ୍ଭକରି ସାଧାରଣ ନାଗରିକଯାଏଁ ପ୍ରାୟ ସମସ୍ତେ ଦୁର୍ନୀତିକବଳିତ ।

(ଗ) **ବୈଶାଖରୁ** ଆରମ୍ଭ କରି ଜ୍ୟେଷ୍ଠ ଶେଷ ପର୍ଯ୍ୟନ୍ତ ଗ୍ରୀଷ୍ମ ଅନୁଭୂତ ହୁଏ ।

ଆରମ୍ଭ ଶବ୍ଦଯୋଗରେ 'ବାଲେଶ୍ୱର', 'ନେତା' ଓ 'ବୈଶାଖ' ପଦର ପଞ୍ଚମୀ ବିଭକ୍ତି ହୋଇଛି ।

**ଆରମ୍ଭ ଶବ୍ଦରେ ପଞ୍ଚମୀ**

ସଭାର ଆରମ୍ଭରୁ ବିଶୃଙ୍ଖଳା ଆରମ୍ଭ ହେଲା ।

**୧୨ । ପରାଜୟ ଅର୍ଥକ ଶବ୍ଦଯୋଗରେ ପଞ୍ଚମୀ-**

ଯଥା-(କ) ପାକିସ୍ତାନ **ଭାରତଠାରୁ** ପରାଜିତ ହୋଇଥିଲା ।

(ଖ) ଫୁଟ୍‌ବଲ୍ ଖେଳରେ **ମୋହନବାଗାନଠାରୁ** ସାଇଷ୍ପୋର୍ଟସ ହାରିଲା ।

(ଗ) କଳିଙ୍ଗ **ମଗଧଠାରୁ** ଓ ମଗଧ ଦିନେ **କଳିଙ୍ଗଠାରୁ** ପରାସ୍ତ ହୋଇଥିଲା ।

ପରାଜୟ ଅର୍ଥରେ ଭାରତଠାରୁ, ମୋହନବାଗାନଠାରୁ, ମଗଧଠାରୁ, କଳିଙ୍ଗଠାରୁ ପଦଗୁଡ଼ିକର ପଞ୍ଚମୀ ବିଭକ୍ତି ।

**୧୩ । ଦିଗବାଚକ ଶବ୍ଦର ପ୍ରୟୋଗରେ ଯେଉଁ ସ୍ଥାନରୁ ଦିଗ ନିର୍ଣ୍ଣୟ ହୁଏ, ସେଠାରେ ପଞ୍ଚମୀ ବିଭକ୍ତି ହୁଏ ।**

ଯଥା-(କ) **ଭୁବନେଶ୍ୱରରୁ** ଉତ୍ତରକୁ ଗଲେ କଟକ ପଡ଼େ ।

(ଖ) **ବାଲୁଗାଁରୁ** ପୂର୍ବରୁ ଚିଲିକା ।

(ଗ) ଆମ **ଘରଠାରୁ** ପଶ୍ଚିମକୁ ଜଙ୍ଗଲ ରହିଛି ।

(ଘ) ତୁମେ **ରାମମନ୍ଦିରଠାରୁ** ଦକ୍ଷିଣକୁ ଗଲେ ମାଷ୍ଟରକ୍ୟାଣ୍ଟିନ୍ ଛକରେ ପହଞ୍ଚିବ ।

**୧୪ । ଦୂର ଓ ନିକଟ ଶବ୍ଦଯୋଗେ ପଞ୍ଚମୀ-**

ଯଥା-(କ) ତାଙ୍କ **ଘରୁ** ତୁମ ଘର ଖଣ୍ଡେ ଦୂର ।

(ଖ) **ଷ୍ଟେସନ୍‌ରୁ** ସଚିବାଳୟ ନିକଟ ।

(ଗ) **ଖେଳପଡ଼ିଆରୁ** ବିଦ୍ୟାଳୟ ଅତି ପାଖ ।

ଦୂର, ନିକଟ ଓ ପାଖ ଶବ୍ଦଯୋଗେ ଯଥାକ୍ରମେ ଘର, ଷ୍ଟେସନ, ଖେଳପଡ଼ିଆ ଶବ୍ଦର ପଞ୍ଚମୀ ବିଭକ୍ତି ହୋଇଛି ।

**୧୫ । ବିଦ୍ୟାଗ୍ରହଣେ ପଞ୍ଚମୀ-**

ଯଥା-(କ) ପାଣ୍ଡବ ଓ କୌରବମାନେ ଆଚାର୍ଯ୍ୟ **ଦ୍ରୋଣଙ୍କଠାରୁ** ଯୁଦ୍ଧବିଦ୍ୟା ଶିଖିଥିଲେ ।

(ଖ) ନେହେରୁ **କେମ୍ବ୍ରିଜରୁ** ଶିକ୍ଷାଲାଭ କରିଥିଲେ ।

(ଗ) ମୈତ୍ରେୟୀ **ଜନକଙ୍କଠାରୁ** ଅଧ୍ୟାତ୍ମଜ୍ଞାନ ଅର୍ଜନ କରିଥିଲେ ।

(ଘ) ଗୋବିନ୍ଦଚନ୍ଦ୍ର **ହାଡ଼ିପାଙ୍କଠାରୁ** ଆତ୍ମଜ୍ଞାନ ପାଇଥିଲେ ।

ଯେଉଁଠାରୁ ବିଦ୍ୟା ଗ୍ରହଣ କରାଯାଏ, ସେଠାରେ ପଞ୍ଚମୀ ବିଭକ୍ତି ହୁଏ । ଏଣୁ ଦ୍ରୋଣ, କେମ୍ବ୍ରିଜ୍, ଜନକ ଓ ହାଡ଼ିପା ଶବ୍ଦର ପଞ୍ଚମୀ ବିଭକ୍ତି ହୋଇଛି ।

**୧୬ । ନିବାରଣାର୍ଥକ କ୍ରିୟା ଯୋଗେ ପଞ୍ଚମୀ-**

ଯଥା- (କ) ପୁଅକୁ **ଅସତ୍‌ପଥରୁ** ବାରଣ କର ।

(ଖ) ଜନସାଧାରଣ **ଦୁର୍ନୀତିରୁ** ନିବୃତ୍ତ ହୁଅନ୍ତୁ ।

(ଗ) ମଧୁମେହରୋଗୀମାନେ **ମିଠାଖାଇବାରୁ** ବନ୍ଦ ହେବା ଉଚିତ ।

(ଘ) ଜ୍ଞାନୀମାନେ **ଭୌତିକ ସୁଖରୁ** ଦୂରେଇ ରହନ୍ତି ।

ନିବାରଣ ଅର୍ଥରେ ଅସତ୍‌ପଥ, ଦୁର୍ନୀତି, ମିଠାଖାଇବା ଓ ଭୌତିକ ସୁଖ ପଦମାନଙ୍କର ପଞ୍ଚମୀ ବିଭକ୍ତି ହୋଇଛି ।

## ଷଷ୍ଠୀ ବିଭକ୍ତି

**୧ । ସମ୍ବନ୍ଧେ ଷଷ୍ଠୀ-**

ସମ୍ବନ୍ଧ ପଦରେ ଷଷ୍ଠୀ ବିଭକ୍ତି ହୁଏ । ସମ୍ବନ୍ଧପଦ ବିଭିନ୍ନ ପ୍ରକାରର । ବିଭିନ୍ନ ସମ୍ବନ୍ଧପଦ ଯୋଗେ ଷଷ୍ଠୀ ବିଭକ୍ତି ହେଲେ, ତାକୁ ସମନ୍ଧେ ଷଷ୍ଠୀ କହନ୍ତି ।

ଯଥା- ଚନ୍ଦ୍ରର ଆଲୋକ, **ଇନ୍ଦ୍ରଧନୁର** ରଙ୍ଗ, **ମୟୂରର** ଚନ୍ଦ୍ରିକା, **ଛାତ୍ରର** କର୍ତ୍ତବ୍ୟ, **କୁଷ୍ଠରୋଗୀର** ସେବା, **ହାତର** କାମ, **ବ୍ରହ୍ମଚାରୀଙ୍କ** ଭିକ୍ଷା, **ବାଘର** ଭୟ, **ରାତିର** ନିର୍ଜନତା, **ଦୁଇବର୍ଷର** ଶିଶୁ, **ତିନିଦିନର** ବାଟ, **ପାପର** ଅନ୍ଧକାର ।

କଳାଅକ୍ଷରର ପଦଗୁଡ଼ିକ ସମ୍ବନ୍ଧପଦ । ଏହି ପଦଗୁଡ଼ିକରେ ସମ୍ବନ୍ଧେ ଷଷ୍ଠୀ ହୋଇଛି ।

**୨ । ନିର୍ଦ୍ଧାରଣ ଅର୍ଥରେ ଷଷ୍ଠୀ-**

ଯଥା- କାଳିଦାସ କବିମାନଙ୍କର ମଉଡ଼ମଣି ।

'କବିମାନଙ୍କର ମଉଡ଼ମଣି' ଅର୍ଥାତ୍ କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

ଅନେକଙ୍କ ମଧ୍ୟରୁ ଗୋଟିକୁ ବାଛିବାକୁ ନିର୍ଦ୍ଧାରଣ କହନ୍ତି ।

ସେହିପରି-

(କ) ବସନ୍ତ **ଋତୁମାନଙ୍କର** ରାଜା ।

(ଖ) ଗରୁଡ଼ **ପକ୍ଷୀମାନଙ୍କର** ଅଧିପତି ।

(ଗ) ଉପେନ୍ଦ୍ରଭଞ୍ଜ **କବିମାନଙ୍କର** ସମ୍ରାଟ୍ ।

(ଘ) କୋଣାର୍କ **କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରମାନଙ୍କର** ମଥାମଣି ।

କଳାଅକ୍ଷରର ପଦଗୁଡ଼ିକ ନିର୍ଦ୍ଧାରଣ ଅର୍ଥରେ ଷଷ୍ଠୀ ବିଭକ୍ତି ।

ନିର୍ଦ୍ଧାରଣ ଅର୍ଥରେ ମଧ୍ୟ ସପ୍ତମୀ ବିଭକ୍ତି ହୋଇଥାଏ ।

୩ । **ସହାର୍ଥକ ଶବ୍ଦଯୋଗରେ ଷଷ୍ଠୀ–**

ଯଥା–(କ) ରାମ **ସୁଗ୍ରୀବଙ୍କ** ସହିତ ମିତ୍ରତା ସ୍ଥାପନ କରିଥିଲେ ।

(ଖ) **ଭକ୍ତ** ସହିତ ଭଗବାନଙ୍କର ମଧୁର ସମ୍ପର୍କ ଥାଏ ।

(ଗ) **କାହା'ରି** ସହ କଳି କର ନାହିଁ ।

(ଘ) **ଭାଇ** ସଙ୍ଗରେ ଭଉଣୀ ଖେଳୁଛି ।

ସହାର୍ଥକ ଶବ୍ଦଯୋଗେ ସୁଗ୍ରୀବ, ଭକ୍ତ, କାହାରି, ଭାଇ ପଦର ଷଷ୍ଠୀ ବିଭକ୍ତି ହୋଇଛି । ଭକ୍ତ, ଭାଇ ପଦରେ ଷଷ୍ଠୀ ବିଭକ୍ତି ଚିହ୍ନ 'ର' ଉହ୍ୟ ଅଛି ।

୪ । **ପ୍ରତି, ବିନା, ନିକଟ, ଦୂର, ତୁଲ୍ୟାର୍ଥକ ଶବ୍ଦ ଯୋଗରେ ଷଷ୍ଠୀ–**

ଯଥା– **ପ୍ରାଣୀଙ୍କ** ପ୍ରତି ଦୟା ରଖ । **ସତ୍ୟ** ପ୍ରତି ଅନୁରକ୍ତ ହୁଅ ।

(କ) ଈଶ୍ୱରଙ୍କ **ଇଚ୍ଛା** ବିନା ଗଛର ପତ୍ରଟିଏ ମଧ୍ୟ ହଲେ ନାହିଁ ।

(ଖ) **ସୂର୍ଯ୍ୟଙ୍କ** ବ୍ୟତୀତ ଆଲୋକର କଳ୍ପନା କରାଯାଇ ନ ପାରେ ।

(ଗ) **ଭକ୍ତର** ନିକଟରେ ଭଗବାନ୍ ଥାଆନ୍ତି ।

(ଘ) **ପୃଥିବୀର** ବହୁଦୂରରେ ବୃହସ୍ପତି ଅଛି ।

(ଙ) **ଗୋପବନ୍ଧୁଙ୍କ** ପରି ଦୟାଳୁ ବ୍ୟକ୍ତି ଦୁର୍ଲଭ ।

(ଚ) **ଶିବଙ୍କ** ତୁଲ୍ୟ ସର୍ବସ୍ୱତ୍ୟାଗୀ କେହି ନାହାନ୍ତି ।

(ଛ) **ତୁମ** ସମାନ ମୁଁ ନୁହେଁ । **ଲାଲବାହାଦୁର ଶାସ୍ତ୍ରୀଙ୍କ** ଭଳି ପ୍ରଧାନ ମନ୍ତ୍ରୀ କମ୍ ଅଛନ୍ତି ।

କଳାଅକ୍ଷର ପଦଗୁଡ଼ିକର ଷଷ୍ଠୀବିଭକ୍ତି ହୋଇଛି ।

୫ । **ଯୋଗ୍ୟାର୍ଥେ ଷଷ୍ଠୀ–**

ଯଥା–(କ) **ଖାଇବାର** ପୁତ୍ର ଗଲା ମଥୁରାପୁରକୁ ଲୋ କୋଇଲି ।

(ଖ) ସବୁଠାରେ **ଜାଣିବାର** ଲୋକ କମ୍ ଥାଆନ୍ତି ।

(ଗ) ଯାହା **ପଢ଼ିବାର** କଥା ପଢ଼ ।

(ଘ) **କରିବାର** କାମ କର ।

ଏଠାରେ ଖାଇବାର, ଜାଣିବାର, ପଢ଼ିବାର, କରିବାର ପଦଗୁଡ଼ିକ ଯୋଗ୍ୟାର୍ଥେ ଷଷ୍ଠୀ ।

୬ । **କର୍ମବାଚ୍ୟରେ ଓ ଭାବବାଚ୍ୟରେ କର୍ତ୍ତାସ୍ଥାନରେ ଷଷ୍ଠୀ–**

କର୍ମବାଚ୍ୟ – (କ) **ଛାତ୍ରଟିର** ପାଠପଢ଼ା ସରିନାହିଁ ।

(ଖ) **ତାଙ୍କର** ଅବସର ନିଆ ହେବ ।

ଭାବବାଚ୍ୟ –(କ) **ଖେଳାଳିର** ଧାଇଁବା ଚାଲିଛି ।

(ଖ) **ଶିଶୁର** ଶୋଇବା ହୋଇଛି ।

ଏଠାରେ ଛାତ୍ରଟିର, ତାଙ୍କର କର୍ମବାଚ୍ୟରେ ଏବଂ ଖେଳାଳିର, ଶିଶୁର ଭାବବାଚ୍ୟରେ କର୍ତ୍ତାଠାରେ ଷଷ୍ଠୀ ବିଭକ୍ତି ହୋଇଛି ।

## ସପ୍ତମୀ ବିଭକ୍ତି

୧ । **ଅଧିକରଣେ ସପ୍ତମୀ–**

ଯଥା– (କ) **ଆମେରିକାରେ** ବହୁ ଭାରତୀୟ ବାସ କରୁଛନ୍ତି ।

(ଖ) **ଆଶ୍ୱିନମାସରେ** ଦୁର୍ଗାପୂଜା ଅନୁଷ୍ଠିତ ହୁଏ ।

(ଗ) **ବୈଷୟିକ ଜ୍ଞାନକୌଶଳ କ୍ଷେତ୍ରରେ** ଭାରତ ଏବେ ପୃଥିବୀର ଏକ ଆଗୁଆ ରାଷ୍ଟ୍ର ।

(ଘ) **ପଶ୍ଚିମଓଡ଼ିଶାରେ** ଘରେଘରେ ନୂଆଖାଇ ପର୍ବ ପାଳିତ ହେଉଛି ।

(ଙ) ମହାତ୍ମାମାନେ **ଦାରିଦ୍ର୍ୟରେ** ମଧ୍ୟ ପଥଭ୍ରଷ୍ଟ ହୁଅନ୍ତି ନାହିଁ ।

ଆମେରିକାରେ, ଆଶ୍ୱିନମାସରେ, ବୈଷୟିକଜ୍ଞାନକୌଶଳ କ୍ଷେତ୍ରରେ, ପଶ୍ଚିମଓଡ଼ିଶାରେ ପ୍ରଭୃତି କଳାଅକ୍ଷରର ପଦଗୁଡ଼ିକର ଅଧିକରଣ କାରକରେ ସପ୍ତମୀ ବିଭକ୍ତି ହୋଇଛି ।

୨ । **ନିର୍ଦ୍ଧାରଣେ ସପ୍ତମୀ–**

ଜାତି, ଗୁଣ, କ୍ରିୟା, ନାମ ଦ୍ୱାରା ସମୁଦାୟରୁ ଗୋଟିକୁ ପୃଥକ୍ କରିବାକୁ ନିର୍ଦ୍ଧାରଣ କୁହାଯାଏ । ସମୁଦାୟବୋଧକ ପଦର ସପ୍ତମୀ ବିଭକ୍ତି ହୁଏ । ଏହାର ମାନ ନିର୍ଦ୍ଧାରଣେ ସପ୍ତମୀ ।

ଯଥା– (କ) **କ୍ଷତ୍ରିୟମାନଙ୍କ ଭିତରେ** ରାଜପୁତମାନେ ବୀର ଥିଲେ ।(ଜାତି)

(ଖ) **ଗୁଣମାନଙ୍କ ମଧ୍ୟରେ** ପରୋପକାର ଶ୍ରେଷ୍ଠ । (ଗୁଣ)

(ଗ) **କାର୍ଯ୍ୟମାନଙ୍କ ଭିତରେ** ଖଣିକାମ ବିପଦପୂର୍ଣ୍ଣ । (କାର୍ଯ୍ୟ)

(ଘ) ଓଡ଼ିଆ **କବିମାନଙ୍କ ମଧ୍ୟରେ** ଉପେନ୍ଦ୍ରଭଞ୍ଜ ସମ୍ରାଟ୍ । (ନାମ)

ସେହିପରି- (କ) ମୁଁ **ଋତୁମାନଙ୍କରେ** ବସନ୍ତ ।

(ଖ) **କବିମାନଙ୍କରେ** ଭାର୍ଗବ ।

(ଗ) **ମାସମାନଙ୍କରେ** ମାର୍ଗଶିର ଓ **ମନ୍ତ୍ରମାନଙ୍କ ମଧ୍ୟରେ** ଓଁକାର ଅଟେ ।

(ଘ) **ମନ୍ଦିରମାନଙ୍କ ମଧ୍ୟରେ** କୋଣାର୍କର କାରୁକାର୍ଯ୍ୟ ଭୁବନବିଦିତ ।

(ଙ) **ନଦୀମାନଙ୍କ ଭିତରେ** ଗଙ୍ଗା ପତିତପାବନୀ ।

କଳାଅକ୍ଷରର ପଦଗୁଡ଼ିକ ନିର୍ଦ୍ଧାରଣେ ସପ୍ତମୀ ବିଭକ୍ତି ।

୩ । **ଭାବେ ସପ୍ତମୀ-**

ଗୋଟିଏ କାର୍ଯ୍ୟ (କ୍ରିୟା) ଦ୍ୱାରା ଆଉ ଗୋଟିଏ କାର୍ଯ୍ୟ ସୂଚିତ ହେଲେ କିମ୍ବା ଗୋଟିଏ କାର୍ଯ୍ୟ ଉପରେ ଆଉ ଏକ କାର୍ଯ୍ୟ ନିର୍ଭର କରୁଥିଲେ, ପ୍ରଥମ କାର୍ଯ୍ୟଠାରେ ଅର୍ଥାତ୍ କ୍ରିୟାବାଚକ ବିଶେଷ୍ୟ ପଦରେ ସପ୍ତମୀ ବିଭକ୍ତି ହୁଏ । ଏହାକୁ ଭାବେ ସପ୍ତମୀ କହନ୍ତି ।

ଯଥା- (କ) ବର୍ଷା **ଆଗମନରେ** ଚାଷୀକୁଳ ଆନନ୍ଦିତ ହେଲେ ।

(ଖ) ମହାତ୍ମାଗାନ୍ଧିଙ୍କ **ମୃତ୍ୟୁରେ** ପୃଥିବୀ ସ୍ତମ୍ଭୀଭୂତ ହୋଇଯାଇଥିଲା ।

(ଗ) ପୁସ୍ତକର **ପ୍ରକାଶନରେ** ଲେଖକ ଆନନ୍ଦିତ ହୁଏ ।

(ଘ) ଈଶ୍ୱରଙ୍କ **ଦର୍ଶନରେ** ମନପ୍ରାଣ ପୁଲକିତ ହୋଇଥାଏ ।

(ଙ) **ଚନ୍ଦ୍ରୋଦୟରେ** (ଚନ୍ଦ୍ର+ଉଦୟରେ) କୁମୁଦ ପ୍ରସ୍ଫୁଟିତ ହୁଏ ।

ଏଠାରେ ଆଗମନରେ, ମୃତ୍ୟୁରେ, ପ୍ରକାଶନରେ, ଦର୍ଶନରେ, ଚନ୍ଦ୍ରୋଦୟରେ ପ୍ରଭୃତି ପଦଗୁଡ଼ିକ ଭାବେ ସପ୍ତମୀ ହୋଇଅଛି । ଏ କ୍ଷେତ୍ରରେ ହେତୁ ଅର୍ଥରେ ମଧ୍ୟ ତୃତୀୟା ବିଭକ୍ତି କରାଯାଏ ।

୪ । **ବୀପ୍‌ସା ଅର୍ଥରେ ସପ୍ତମୀ-**

ଯଥା- (କ) ଓଡ଼ିଶାର **ଗାଁ'ରେ ଗାଁ'ରେ** ଖୁଦୁରୁକୁଣୀ ଓଷା ପାଳିତ ହୁଏ ।

(ଖ) ଦୀପାବଳୀରେ **ଘରେ ଘରେ** ଦୀପଜଳେ ।

(ଗ) ମହାଭାରତର **ପୃଷ୍ଠାରେ ପୃଷ୍ଠାରେ** ଭାରତୀୟ ଜନଜୀବନର ଚିତ୍ର ରହିଛି ।

(ଘ) **ସ୍ଥାନେ ସ୍ଥାନେ** ବର୍ଷା ହେଉଛି ।

(ଙ) **କାଳେ କାଳେ** ଭାରତ ପୃଥିବୀକୁ ଜ୍ଞାନ ବିତରଣ କରିଆସିଛି ।

'ବୀପ୍‌ସା' ଅର୍ଥ ପୁନଃପୁନଃ କଥନ । ଗାଁ, ଘର, ପୃଷ୍ଠା, ସ୍ଥାନ, କାଳ ପଦର ପୁନରୁକ୍ତି ହୋଇ ସପ୍ତମୀ ବିଭକ୍ତି ହୋଇଛି । ଏହି ପଦଗୁଡ଼ିକ ପୁନରୁକ୍ତି ବା ବୀପ୍‌ସାର୍ଥରେ ସପ୍ତମୀ ବିଭକ୍ତି ।

**୫ । ନିପୁଣାଦି ଶବ୍ଦଯୋଗରେ ସପ୍ତମୀ-**

(ନିପୁଣ, ପ୍ରବୀଣ, ପଣ୍ଡିତ, କୁଶଳ, ଦକ୍ଷ, ସାଧୁ, ପଟୁ, ଧୁରନ୍ଧର, ପାରିବାର, ବିଶାରଦ)

(କ) ଡକ୍ଟର ବାସୁଦେବ ସାହୁ **ଭାଷାତତ୍ତ୍ୱରେ** ନିପୁଣ ଥିଲେ ।

(ଖ) କୁମାରକବି ଅରକ୍ଷିତ ପ୍ରଧାନ **ଆଧ୍ୟାତ୍ମିକ ପ୍ରବଚନରେ** ପ୍ରବୀଣ ଅଟନ୍ତି ।

(ଗ) ଡକ୍ଟର ଦୁଃଖୀଶ୍ୟାମ ପଟ୍ଟନାୟକ **ସଂସ୍କୃତ-ସାହିତ୍ୟରେ** ଜଣେ ପ୍ରଖ୍ୟାତ ପଣ୍ଡିତ ।

(ଘ) ଦିବାକର ମହାରଣା **କାଠକାମରେ** କୁଶଳ ।

(ଙ) ଡକ୍ଟର ରଜତ କୁମାର କର ଭଞ୍ଜ **ସାହିତ୍ୟରେ** ଦକ୍ଷ ବ୍ୟକ୍ତି ଥିଲେ ।

(ଚ) ଶ୍ୟାମସୁନ୍ଦର **କର୍ତ୍ତବ୍ୟପାଳନରେ** ସାଧୁ ଅଟନ୍ତି ।

(ଛ) ସଚିନ୍ ତେନ୍ଦୁଲକର **କ୍ରିକେଟରେ** ଦକ୍ଷ ଥିଲେ ।

(ଜ) ମିହିର ସେନ **ସନ୍ତରଣରେ** ପଟୁ ।

(ଝ) ସ୍ୱର୍ଗତ ଉପେନ୍ଦ୍ର ମହାରଥୀ **ଚିତ୍ରକଳାରେ** ଧୁରନ୍ଧର ଥିଲେ ।

(ଞ) **ରାଜନୀତିରେ** ପାରିବାରଙ୍କ ସଂଖ୍ୟା ଏବେ କମ୍ ନୁହେଁ ।

(ଟ) ପଣ୍ଡିତ ନାରାୟଣ ମହାପାତ୍ର **ଓଡ଼ିଆ ବ୍ୟାକରଣରେ** ବିଶାରଦ ଥିଲେ ।

କଳା ଅକ୍ଷରର ପଦଗୁଡ଼ିକ ନିପୁଣାଦି ଶବ୍ଦଯୋଗେ ସପ୍ତମୀ ।

**୬ । ପାରସ୍ପରିକ ସାଦୃଶ୍ୟ-ଅସାଦୃଶ୍ୟ ଅର୍ଥରେ ସପ୍ତମୀ-**

ପରସ୍ପର ସମାନ ହୁଅନ୍ତୁ ବା ନ ହୁଅନ୍ତୁ- ଏହି ଅର୍ଥରେ ସପ୍ତମୀ ବିଭକ୍ତି ହୋଇଥାଏ । ଏହାକୁ ସାଦୃଶ୍ୟ-ଅସାଦୃଶ୍ୟ ଅର୍ଥରେ ସପ୍ତମୀ ବା ଆଦର-ଅନାଦର ଅର୍ଥରେ ସପ୍ତମୀ କୁହାଯାଏ ।

ଯଥା- (କ) ଆଜି **ଭାଇରେ ଭାଇରେ** ସ୍ନେହ, ଭକ୍ତି ଦୁର୍ଲଭ ।

(ଖ) **ଦେଶରେ ଦେଶରେ** ଶାନ୍ତିର ବାର୍ତ୍ତା ପ୍ରଚାରିତ ହେଉ ।

(ଗ) **ବାପରେ ପୁଅରେ** ଶତ୍ରୁତା ଶୋଭା ପାଏନି ।

(ଘ) **ଘରେ ବାହାରେ** ସବୁଠି ଅଶାନ୍ତିର ନିଆଁ ଜଳୁଛି ।

(ଙ) **ଦେଶରେ ବିଦେଶରେ** ଭାରତୀୟମାନେ ସୁଖ୍ୟାତି ଅର୍ଜୁଛନ୍ତି ।

ଏଠାରେ ଭାଇରେ ଭାଇରେ, ଦେଶରେ ଦେଶରେ, ବାପରେ ପୁଅରେ, ଘରେ ବାହାରେ ଓ ଦେଶରେ ବିଦେଶରେ ସାଦୃଶ୍ୟ-ଅସାଦୃଶ୍ୟ ଅର୍ଥରେ ସପ୍ତମୀ ବିଭକ୍ତି ହୋଇଛି ।

## ଅନୁଶୀଳନୀ

୧ । କଳାଅକ୍ଷର ପଦଗୁଡ଼ିକର ସକାରଣ ବିଭକ୍ତି ନିର୍ଦ୍ଦେଶ କର ।

(କ) କୁସୁମ **ପରଶରେ** ପଟ ନିସ୍ତରେ । (ଖ) **ଛେଳି** ଗୋଡ଼ରେ ଧାନ ମଳି ହୁଏ ନାହିଁ । (ଗ) ପିତାମାନଙ୍କ **ଆଶୀର୍ବାଦରୁ** ସନ୍ତାନର ମଙ୍ଗଳ ହୁଏ । (ଘ) **କେଶବ !** ତୁମେ ଆମର ବହୁତ ଉପକାର କରିଛ । (ଙ) ବିରାଡ଼ି **କପାଳକୁ** ଶିକା ଛିଡ଼ିଛି । (ଚ) **କଙ୍କଡ଼ାକୁ** ଗୋଳିପାଣି ସୁହାଏ । (ଛ) **ସୁନ୍ନାକୁ** ସିନ୍ଦୂର ନିକଟ । (ଜ) ଠାବେଠାବେ **ଶଇଳେ** ନୀଳବିଗ୍ରହେ । (ଝ) ଶକୁନି **କୂଟନୀତିରେ** ଦକ୍ଷ ଥିଲେ । (ଞ) ଦେବୀ **ଆକାଶରୁ** କଂସକୁ କହିଲେ । (ଟ) ବୁଢ଼ୀଟି **ଶୀତରେ** କମ୍ପୁଛି । (ଠ) ବେବିର **ଦୁଇମାସର** ଛୁଆଟିଏ । (ଡ) **ମୋତେ** ସବୁ ଜଣା । (ଢ) ଶୁଭଲକ୍ଷ୍ମୀ କେଡ଼େ ବେଗରେ ଆସିଲା । (ଣ) **ରୋଗକୁ** ଔଷଧ ଦିଅ । (ତ) ଦୁର୍ନୀତି **ଏଡସ୍‌ଠାରୁ** ମଧ୍ୟ ଭୟଙ୍କର । (ଥ) ନନ୍ଦିଘୋଷ ରଥରେ ଶ୍ରୀଜଗନ୍ନାଥ ବିରାଜମାନ ହୁଅନ୍ତି ।

୨ । ପ୍ରତ୍ୟେକରୁ ଗୋଟିଏ ଲେଖାଏଁ ଉଦାହରଣ ଦିଅ ।

(କ) ଅପବର୍ଗେ ତୃତୀୟା, (ଖ) ବ୍ୟାପ୍ତ୍ୟର୍ଥରେ ଦ୍ୱିତୀୟା, (ଗ) ଯୋଗ୍ୟତାର୍ଥେ ଷଷ୍ଠୀ, (ଘ) କ୍ରିୟାବିଶେଷଣରେ ତୃତୀୟା, (ଙ) ରୁଚିବା ଅର୍ଥରେ ଚତୁର୍ଥୀ, (ଚ) ଅପେକ୍ଷାର୍ଥରେ ପଞ୍ଚମୀ, (ଛ) ପ୍ରଯୋଜ୍ୟ କର୍ତ୍ତାଠାରେ ଦ୍ୱିତୀୟା, (ଜ) ଅସମାପିକା କ୍ରିୟା ଲୋପରେ ପଞ୍ଚମୀ, (ଝ) ସମ୍ବନ୍ଧେ ଷଷ୍ଠୀ, (ଞ) ହେତୁଅର୍ଥରେ ତୃତୀୟା, (ଟ) ଭାବେ ସପ୍ତମୀ, (ଠ) ହେତୁ ଅର୍ଥରେ ପଞ୍ଚମୀ ।

୩ । ବିଭକ୍ତି କାହାକୁ କ ?ନ୍ତି ଓ କେତେ ପ୍ରକାର ।

୪ । ପ୍ରତ୍ୟେକ ବିଭକ୍ତିରୁ ଗୋଟିଏ ଲେଖାଏଁ ଉଦାହରଣ ଦିଅ ।

୫ । ବନ୍ଧନୀ ମଧ୍ୟରେ ପ୍ରଦତ୍ତ ଠିକ୍ ଉତ୍ତରଟି ବାଛ –

(କ) ବର୍ଷାଗମରେ ମୟୂର ନୃତ୍ୟ କରେ । (ନିର୍ଦ୍ଧାରଣେ ସପ୍ତମୀ / ଭାବେ ସପ୍ତମୀ)

(ଖ) ପ୍ରଧାନମନ୍ତ୍ରୀ ବିମାନରୁ ବନ୍ୟାଞ୍ଚଳର ଦୃଶ୍ୟ ଦେଖିଲେ ।
(ଅପାଦାନେ ପଞ୍ଚମୀ / ଅସମାପିକା କ୍ରିୟା ଲୋପରେ ପଞ୍ଚମୀ)

(ଗ) ପେଟକୁ ଦାନା ନାହିଁ । (ନିବାରଣାର୍ଥେ ଚତୁର୍ଥୀ / ନିମିତ୍ତାର୍ଥେ ଚତୁର୍ଥୀ)

(ଘ) ଦିନକୁ ଦିନ ଜଳାଭାବ ଉତ୍କଟ ହେଉଛି ।
(ବୀପ୍‌ସା ଅର୍ଥରେ ଦ୍ୱିତୀୟା / ମୂଲ୍ୟାର୍ଥରେ ଦ୍ୱିତୀୟା)

◆ ◆ ◆

# ଅବ୍ୟୟ

ରାଜେନ୍ଦ୍ର ଓ ସୁରେନ୍ଦ୍ର ପଢୁଛନ୍ତି ।

ଦିଲୀପ ଭଲ ଖେଳୁଛି; **କିନ୍ତୁ** ପଢୁନି ।

ନବ ବା ଶିବ ବଜାରକୁ ଯାଆନ୍ତୁ ।

ପବନ **ସୁଲୁସୁଲୁ** ବହୁଛି ।

କୌଣସି ପ୍ରକାରେ କଳାଅକ୍ଷର ପଦଗୁଡ଼ିକର ପରିବର୍ତ୍ତନ ହୋଇ ନ ଥାଏ । ସର୍ବଦା ସେଗୁଡ଼ିକର ରୂପ ସମାନ ।

ବାକ୍ୟରେ ଯେଉଁ ପଦର ପରିବର୍ତ୍ତନ ହୁଏ ନାହିଁ, ତାହା ଅବ୍ୟୟ ।

ବ୍ୟୟ ଶବ୍ଦର ଅର୍ଥ ପରିବର୍ତ୍ତନ । ଯାହାର ବ୍ୟୟ ନାହିଁ, ତାହାହିଁ ଅବ୍ୟୟ । ଓ, କିନ୍ତୁ, ବା, ସୁଲୁସୁଲୁ ଗୋଟିଏ ଗୋଟିଏ ଅବ୍ୟୟ ପଦ ।

ବାକ୍ୟରେ ବିଶେଷ୍ୟ, ବିଶେଷଣ, ସର୍ବନାମ ଓ କ୍ରିୟାପଦର ଲିଙ୍ଗ, ବିଭକ୍ତି, ବଚନ, ପୁରୁଷ ଓ କାଳ ରହିଛି । ଯଥା-

ବିଶେଷ୍ୟ- ବାଳକ, ବାଳକମାନେ, ବାଳକକୁ, ବାଳକ-ବାଳିକା

ବିଶେଷଣ- ଚତୁର-ଚତୁରୀ, ବିଦ୍ୱାନ୍-ବିଦୁଷୀ

ସର୍ବନାମ- ମୁଁ, ଆମ୍ଭେମାନେ, ମୋତେ, ଆମ୍ଭମାନଙ୍କୁ

କ୍ରିୟା- ଯାଏ, ଯାଉଛି, ଗଲା, ଯିବ ।

ଏଥିରୁ ଜଣାଗଲା ଯେ ଯେଉଁ ପଦମାନଙ୍କର ଲିଙ୍ଗ, ବିଭକ୍ତି, ବଚନ, ପୁରୁଷ ବା କାଳରେ କୌଣସି ପରିବର୍ତ୍ତନ ହୁଏ ନାହିଁ, ସେଗୁଡ଼ିକୁ ଅବ୍ୟୟ କହନ୍ତି ।

ଅବ୍ୟୟ ପଦଗୁଡ଼ିକ ଭିନ୍ନଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥା'ନ୍ତି । ତେଣୁ ସେମାନଙ୍କର ନିର୍ଦ୍ଦିଷ୍ଟ ଶ୍ରେଣୀବିଭାଗ କରିବା କଷ୍ଟକର ବ୍ୟାପାର । ତଥାପି ସେଗୁଡ଼ିକୁ କାର୍ଯ୍ୟଭେଦରେ ଭିନ୍ନଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

**୧ । ସଂଯୋଜକ ଅବ୍ୟୟ :**

ଯେଉଁ ଅବ୍ୟୟ ଦୁଇ ବା ତତୋଽଧିକ ପଦ ବା ବାକ୍ୟକୁ ସଂଯୋଗ କରେ ତାକୁ ସଂଯୋଜକ ଅବ୍ୟୟ କହନ୍ତି । ଯଥା- ଓ, ଏବଂ, ଆଉ, ଆହୁରି, ପୁଣି, ବି, ମଧ୍ୟ, ଫେରେ, ତଥା, ପୁନଶ୍ଚ, ପୁନର୍ବାର ।

ବ୍ୟବହାର-

(କ) ବିଧୁ ଓ ସାଧୁ ଦୁଇଭାଇ ।

(ଖ) ରାମଚନ୍ଦ୍ର ପିତୃସତ୍ୟ ପାଳିଲେ **ଏବଂ** ବନରେ ଚଉଦ ବର୍ଷ ବାସ କଲେ ।

(ଗ) ବାପା ସବୁବେଳେ ବହିଟିଏ ଧରି ବସିଥା'ନ୍ତି, **ଆଉ** କିଛି କରନ୍ତି ନାହିଁ ।

(ଘ) ଶୀତ ହୋଇନାହିଁ, **ଆହୁରି** ଡେରିଅଛି ।

(ଙ) ଏବେ ଭୋଜିଖାଇ ଆସିଲୁ; **ପୁଣି** ଖାଇବାକୁ ବାହାରିଲୁଣି ।

(ଚ) ତୁମେ ଅନୁରୋଧ କଲେ **ବି** ମୁଁ ତୁମ କଥା ଶୁଣିବି ନାହିଁ ।

(ଛ) ପିଲାଟି କଠୋର ପରିଶ୍ରମ କଲେ **ମଧ** ପରୀକ୍ଷାରେ ଫେଲ୍ ହେଲା ।

(ଜ) ମୁଁ ମନା କଲି; **ଫେର୍** ତୁମେ ମୋ ପାଖକୁ ଆସିଲ ।

**୨ । ବିଯୋଜକ ଅବ୍ୟୟ :**

ଯେଉଁ ଅବ୍ୟୟ ଦୁଇଟି ପଦ ବା ବାକ୍ୟ ବା ବାକ୍ୟର ଅର୍ଥକୁ ବିଯୋଗ (ପୃଥକ୍) କରେ, ତାକୁ ବିଯୋଜକ ଅବ୍ୟୟ କୁହାଯାଏ ।

ବ୍ୟବହାର-

(କ) ଦେଶ ସ୍ୱାଧୀନ ହୋଇଛି; **କିନ୍ତୁ** ଲୋକଙ୍କ ଦୁଃଖ ଦୂର ହୋଇନି ।

(ଖ) ସଭାରେ ଅନେକ ଆଲୋଚନା ହେଲା; **ମାତ୍ର** ସତ୍ୟକଥା ବାହାରିଲା ନାହିଁ ।

(ଗ) ଏତେ ଔଷଧ ଖାଇଲି, **ତଥାପି** ଦେହ ଭଲ ହେଉନି ।

(ଘ) ପରିବାରର ସମସ୍ତେ ପିଣ୍ଟୁକୁ ବୁଝାଇଲେ; **ପରନ୍ତୁ** ସେ ସେହି ଏକଜିଦିଆ ଗୁଣ ଛାଡୁନି ।

(ଙ) ବର୍ଷା ହେଲା; **ଅଥଚ** ବେଉଷଣ ପାଇଁ ପାଣି ହେଲାନି ।

(ଚ) ସ୍ମୃତି **ବା** ସ୍ମିତା ଗୀତ ଗାଇବ ।

(ଛ) ତୁମେ ସ୍ଥାନୀୟ କଲେଜରେ ପଢ଼ିବ **କିମ୍ବା** ବାହାରକୁ ଯିବ, ତାହା ମୋତେ କହିବ ।

**୩ । ସମୟସୂଚକ ଅବ୍ୟୟ (କାଳବୋଧକ ଅବ୍ୟୟ) :**

ଯେଉଁ ଅବ୍ୟୟ କାଳ ବା ସମୟକୁ ବୁଝାଏ, ତାହା ସମୟସୂଚକ ଅବ୍ୟୟ ।

ଯଥା- ଏବେ, କେବେ, ଯେବେ, ସେବେ, ଏହିକ୍ଷଣି, ଅଧୁନା, ବର୍ତ୍ତମାନ, ସର୍ବଦା, ସମ୍ପ୍ରତି, ଯେତେବେଳେ, ସେତେବେଳେ, ହଠାତ୍ ।

ବ୍ୟବହାର-

(କ) **ଏବେ** ଡାକ୍ତରଙ୍କର ଆସିବା ବେଳ ହୋଇନି ।

(ଖ) **ଏହିକ୍ଷଣି** ମୁଁ କଟକରୁ ଆସି ଘରେ ପହଞ୍ଚିଲି ।

(ଗ) **ସମ୍ପ୍ରତି** ଦେଶରେ ବନ୍ୟା ଦେଖାଯାଇଛି ।

(ଘ) ଚିନ୍ତା ନ କରି **ହଠାତ୍** କିଛି କାମ କରନାହିଁ ।

(ଙ) **ଯେବେ** ଯିବାକୁ ହେବ, **ସେବେ** ମୁଁ କହିବି ।

**୪ । ସମ୍ବୋଧନସୂଚକ ଅବ୍ୟୟ :**

କାହାରିକୁ ଡାକିବା ବା ସମ୍ବୋଧନ କରିବାପାଇଁ ବ୍ୟବହୃତ ଅବ୍ୟୟକୁ ସମ୍ବୋଧନସୂଚକ ଅବ୍ୟୟ କହନ୍ତି ।

ଯଥା- ହେ, ଆହେ, ହଇହେ, ରେ, ଆରେ, ଗୋ, ଆଗୋ, ଲୋ, ଆଲୋ, ଆବେ ।

ବ୍ୟବହାର-

(କ) **ହେ** ନାରାୟଣ, ଆଉ କେତେଦିନ ଏ କଷଣ ଦେଉଥିବ ?

(ଖ) **ଆହେ** ନୀଳଶଇଳ ପ୍ରବଳ ମତ୍ତବାରଣ ।

(ଗ) **ଲୋ** ଝିଅ, ଚା' କପେ ଆଣିଲୁ ।

**୫ । ସମ୍ଭାବନାସୂଚକ ଅବ୍ୟୟ :**

ଯେଉଁ ଅବ୍ୟୟ ସମ୍ଭାବନା ପ୍ରକାଶ କରେ, ତାକୁ ସମ୍ଭାବନାସୂଚକ ଅବ୍ୟୟ କହନ୍ତି ।

ଯଥା- ଯଦି, ଯେବେ, କାଳେ, ଯଦ୍ୟପି

ବ୍ୟବହାର-

(କ) ସେ ବର୍ଷାରେ **ଯଦି** ଆସିବ, ବଡ଼ ହଇରାଣ ହେବ ।

(ଖ) ଆଉ ଦିନେ ଅପେକ୍ଷା କର, **କାଳେ** କିଛି ଖବର ଆସିବ ।

(ଗ) ତୁମେ **ଯେବେ** ଭଲଭାବରେ ପଢ଼ିବ, ତେବେ ନିଶ୍ଚୟ ପ୍ରଥମଶ୍ରେଣୀ ପାଇବ ।

(ଘ) ଯଦ୍ୟପି ସେ ନାହିଁ କରୁଛନ୍ତି, ତଥାପି କିଛି କରିବେ ।

**୬ । ନିଷେଧାର୍ଥକ ଅବ୍ୟୟ :**

ଯେଉଁ ଅବ୍ୟୟଦ୍ୱାରା ନିଷେଧ ବା ବାରଣ ସୂଚିତ ହୁଏ, ତାହାକୁ ନିଷେଧାର୍ଥକ ଅବ୍ୟୟ କହନ୍ତି ।

ଯଥା- ନ, ନା, ନଚେତ୍, ନି

ବ୍ୟବହାର-

(କ) **ନ** କଲା କାମ କର ନାହିଁ ।

(ଖ) **ନ** କହିଲେ କୁଳ ଭାସିଯାଉଛି ।

(ଗ) **ନା,** ମୁଁ ସେଠାକୁ ଯିବି ନାହିଁ ।

(ଘ) ପଢ଼, **ନଚେତ୍** ପରୀକ୍ଷାରେ କୃତକାର୍ଯ୍ୟ ହେବା କଷ୍ଟକର ।

(ଙ) ତୁମେ ସେଠାକୁ ଯିବ**ନି** ।

୭ । **ହେତୁବୋଧକ ଅବ୍ୟୟ :**

ହେତୁ ବା କାରଣ ପ୍ରକାଶ କରୁଥିବା ଅବ୍ୟୟକୁ 'ହେତୁବୋଧକ' ବା 'କାରଣସୂଚକ' ଅବ୍ୟୟ କହନ୍ତି ।

ଯଥା- ଏଣୁ, ତେଣୁ, ଯେଣୁ, ସୁତରାଂ, ଅତଏବ, କାହିଁକିନା

ବ୍ୟବହାର-

(କ) କାଲି ମୋତେ ଜ୍ୱର ହୋଇଥିଲା, **ତେଣୁ** ମୁଁ ସ୍କୁଲକୁ ଯାଇ ନ ଥିଲି ।

(ଖ) ଧାନକଟା ସମୟ, **ସୁତରାଂ** ମୁଁ ଭ୍ରମଣରେ ଯାଇପାରିବି ନାହିଁ ।

(ଗ) ବିନୋଦ ଶିକ୍ଷକଙ୍କ ପ୍ରଶ୍ନର ଉତ୍ତରଦେଇପାରିଲା ନାହିଁ, **କାହିଁକିନା** ସେ ପଢ଼ାବେଳେ ଅନ୍ୟମନସ୍କ ଥିଲା ।

୮ । **ସାଦୃଶ୍ୟବୋଧକ ଅବ୍ୟୟ :**

ଯେଉଁ ଅବ୍ୟୟ ସାଦୃଶ୍ୟ ବୁଝାଇଥାଏ, ତାକୁ 'ସାଦୃଶ୍ୟବୋଧକ' ଅବ୍ୟୟ କହନ୍ତି ।

ଯଥା- ଯଥା, ତଥା, ଯେପରି, ସେପରି, ଏପରି, ପରି, ପ୍ରାୟ, ଏମନ୍ତ, ଯେମନ୍ତ, ତେମନ୍ତ, ଏମିତି, ଯେମିତି, ସେମିତି ।

ବ୍ୟବହାର-

(କ) ମିଶିଯାଏ **ଯଥା** ପ୍ରଭାତୀତାରା ରବିକିରଣେ ।

(ଖ) ମିଶିଗଲା **ତଥା** ଅବଳା ସେହି ନୀଳ ତରଙ୍ଗେ ।

(ଗ) **ଏମିତି** ହେବ ବୋଲି ମୁଁ ଆଗରୁ ଅନୁମାନ କରୁଥିଲି ।

(ଘ) ନୀରଦ **ପରି** ଗୁଣର ପିଲାଟିଏ ଦୁର୍ଲଭ ।

(ଙ) **ପ୍ରାୟ** ସବୁ ଲୋକ ନିଜ ସ୍ୱାର୍ଥ ପଛରେ ଧାଇଁଛନ୍ତି ।

ଏହି ଅବ୍ୟୟ ବିଶେଷ୍ୟ ପଦ ପୂର୍ବରୁ ରହିଲେ ବିଶେଷଣରେ ପରିଣତ ହୋଇଯାଏ । ଯଥା- **ଏମିତି** ମଣିଷ, **ସେପରି** ମହାତ୍ମା, **ସେମିତି** କଥା ।

**୯ । ବୀପ୍‌ସାର୍ଥକ ଅବ୍ୟୟ :**

ଯେଉଁ ଅବ୍ୟୟ ବାରମ୍ବାର ଅର୍ଥ ପ୍ରକାଶ କରେ, ତାକୁ 'ବୀପ୍‌ସାର୍ଥକ ଅବ୍ୟୟ' କହନ୍ତି ।

ଯଥା- ବାରମ୍ବାର, ପୁନଃପୁନଃ, ମୁହୁର୍ମୁହୁଃ, ଘନଘନ, ଥରକୁଥର, ଲଗାତାର, ପୁନର୍ବାର, ଆହୁରି ଆହୁରି, ପୁଣି ପୁଣି, ଲାଟ୍‌ଲାଗ୍ ।

ବ୍ୟବହାର-

(କ) **ବାରମ୍ବାର** ସେ କଥା ମୋ ଆଗରେ କାହିଁକି କହୁଛ ?

(ଖ) ମଧୁମେହରୋଗୀ **ମୁହୁର୍ମୁହୁଃ** ପରିସ୍ରା କରେ ।

(ଗ) ତୁମେ **ଥରକୁଥର** ଏମିତି ଭୁଲ୍ କର ନାହିଁ ।

(ଘ) **ଲଗାତର** ବର୍ଷା ଲାଗିରହିଛି ।

(ଙ) ଲୋକଟା ଏତେ ଖାଇ ବି **ଆହୁରି ଆହୁରି** ମାଗୁଛି ।

**୧୦ । ବିସ୍ମୟସୂଚକ ଅବ୍ୟୟ ବା ଭାବବାଚକ ଅବ୍ୟୟ :**

ଯେଉଁ ଅବ୍ୟୟଦ୍ୱାରା ହର୍ଷ, ବିଷାଦ, ଘୃଣା, ପ୍ରଶଂସା ଓ ବିସ୍ମୟାଦି ମନର ଭାବ ପ୍ରକାଶ ପାଏ, ତାହାକୁ ବିସ୍ମୟସୂଚକ ଅବ୍ୟୟ କହନ୍ତି ।

ଯଥା- ଆହା, ହା, ହାୟ, ଓଃ, ଓହୋ, ଅହୋ, ଛି, କି, ସାବାସ, ବାହାବା, ଉହୁଁ, ଇହି ।

ବ୍ୟବହାର-

(କ) **ଆହା,** ଦଇବ ତା' କପାଳକୁ କ'ଣ ଏଇୟା ଲେଖିଥିଲା !

(ଖ) **ହା** ରାମ, **ହା** ରାମ !

(ଗ) **ଛି,** ଏମିତି କହନ୍ତି !

(ଘ) **ଓଃ** କି ଯନ୍ତ୍ରଣା !

(ଙ) **କି** ପିଲାଟାଏ ମ ଇଏ !

(ଚ) **ବାଃ** କି ସୁନ୍ଦର ଖେଳ !

(ଛ) **ସାବାସ୍** ତେନ୍ଦୁଲକର ! **ସାବାସ୍** !

**୧୧ । ବିକଳ୍ପାର୍ଥକ ଅବ୍ୟୟ :**

ଯାହାଦ୍ୱାରା ବିକଳ୍ପ ଅର୍ଥ ପ୍ରକାଶ ପାଏ, ତାହା ବିକଳ୍ପାର୍ଥକ ଅବ୍ୟୟ ।

ଯଥା- ବା, ଅବା, କିମ୍ବା, ଅଥବା, ନତୁବା, ନଚେତ୍, ନୋହିଲେ

ବ୍ୟବହାର-

(କ) ଦେବାନନ୍ଦ **ବା** ଶିବାନନ୍ଦ କେହିହେଲେ ଆଜି ଆସିବେ ।

(ଖ) ତୁମେ **ଅବା** ତପନ ମୋପାଇଁ ପଦେ କହିଥା'ନ୍ତ ।

(ଗ) ଧନ **କିମ୍ବା** ଯୌବନ କେହି ଚିରସ୍ଥାୟୀ ନୁହେଁ ।

(ଘ) ଠିକ୍ ସମୟରେ ସ୍କୁଲକୁ ଆସ, **ନଚେତ୍** ପ୍ରଧାନ ଶିକ୍ଷକ ଅସନ୍ତୁଷ୍ଟ ହେବେ ।

(ଙ) ଏ କାମ କରିବ ଯଦି କର, **ନୋହିଲେ** ମୁଁ କରିଦେବି ।

**୧୨ । ବିଭକ୍ତିସୂଚକ ଅବ୍ୟୟ :**

ବିଭକ୍ତିର ସୂଚନା ଦେଉଥିବା ଅବ୍ୟୟଗୁଡ଼ିକୁ ବିଭକ୍ତି ସୂଚକ ଅବ୍ୟୟ କହନ୍ତି ।

ଯଥା- ମାନେ, ଗୁଡ଼ିକ, କୁ, ମାନଙ୍କୁ, ରେ, ଦ୍ୱାରା, ରୁ, ଠାରୁ ଇତ୍ୟାଦି ।

ବ୍ୟବହାର-

(କ) କୃଷକ**ମାନେ** ଦେଶର ମେରୁଦଣ୍ଡ ।

(ଖ) ତୁମ**କୁ** ଏହା କରିବାକୁ ହେବ ।

(ଗ) ଭିନ୍ନକ୍ଷମ ଲୋକଙ୍କ **ଦ୍ୱାରା** ଅନେକ ଭଲକାମ ହୋଇପାରିଥାଏ ।

(ଘ) ଛାତ୍ରସମାଜଠାରୁ ଦେଶ ବହୁତ କିଛି ଆଶା କରେ ।

**୧୩ । ପରିମାଣସୂଚକ ଅବ୍ୟୟ :**

ଯେଉଁ ଅବ୍ୟୟ ପରିମାଣ ପ୍ରକାଶ କରେ, ତାକୁ ପରିମାଣସୂଚକ ଅବ୍ୟୟ କହନ୍ତି ।

ଯଥା- ଏତେ, ଯେତେ, ତେତେ, ସେତେ, ଏତିକି, ଯେତିକି, ସେତିକି ।

ବ୍ୟବହାର-

(କ) ତୁ **ଯେତେ** ମାଠିବୁ ମାଠ, ମୁଁ ସେହି ଦରପୋଡ଼ା କାଠ ।

(ଖ) ତୁଚ୍ଛାକୁ **ଏତେ**, ମୁଦିନାହିଁ ଗୋଡ଼ କଚାଡୁ **କେତେ** ?

(ଗ) **ଯେତିକି** ପାଇଲ, **ସେତିକି** ଯଥେଷ୍ଟ ।

(ଘ) ଗଙ୍ଗା ଗଲି **ଯେତିକି**, ଫଳ ପାଇଲି **ସେତିକି** ।

**୧୪ । ସମ୍ମତିସୂଚକ ଅବ୍ୟୟ :**

ଯେଉଁ ଅବ୍ୟୟଦ୍ୱାରା ସମ୍ମତି ବା ସ୍ୱୀକୃତି ସୂଚିତ ହୁଏ, ତାକୁ ସମ୍ମତିସୂଚକ ଅବ୍ୟୟ କହନ୍ତି ।

ଯଥା- ହଁ, ଆଜ୍ଞା, ହାଁ, ଅବଶ୍ୟ, ନିଶ୍ଚୟ, ସିନା ।

ବ୍ୟବହାର-

(କ) ମୋର ସବୁକଥାରେ ତୁମେ ହଁ କରୁଛ; କିନ୍ତୁ ଗୋଟିଏ ହେଲେ କାର୍ଯ୍ୟ କରୁନାହଁ ।

(ଖ) ଗୋପାଳ, ଏଠିକି ଆସ । **ଆଜ୍ଞା**, ଯାଉଛି ।

(ଗ) ଆପଣ ଯେତେବେଳେ କହୁଛନ୍ତି, **ଅବଶ୍ୟ** ମୋତେ ଯିବାକୁ ହେବ ।

(ଘ) ଘରକୁ ସୁନ୍ଦର **ସିନା** ଘରଣୀ ଥିଲେ ।

**୧୫ । ପ୍ରଶ୍ନସୂଚକ ଅବ୍ୟୟ :**

କାହାକୁ କିଛି ପଚାରିବା ବା ପ୍ରଶ୍ନ କରିବା ସମୟରେ ବ୍ୟବହୃତ ହେବା ଅବ୍ୟୟକୁ ପ୍ରଶ୍ନସୂଚକ ଅବ୍ୟୟ କହନ୍ତି ।

ଯଥା- କି, କଅଣ, ତ, ଟି, ପରା, କିଆଁ, କିମ୍ପାଇଁ

ବ୍ୟବହାର-

(କ) ପାଣିପାଗ ବିଷୟରେ ଆକାଶବାଣୀ **କଅଣ** କହୁଛି ?

(ଖ) ତୁମେ ଦୂରଦର୍ଶନରୁ ମହାଭାରତ ଦେଖିଛ **କି** ?

(ଗ) ବାପି, ତୁ ମୋ ସହିତ ଦିଲ୍ଲୀ ଯିବୁ **ଟି** ?

(ଘ) ତୁ **ପରା** ପୁରୀ ଯିବୁ ?

(ଙ) ଭିକାରିକୁ ଭିକ ମୁଠେ ଦେଉଛ **ତ** ?

**୧୬ । କ୍ରମବୋଧକ ଅବ୍ୟୟ :**

ଯେଉଁ ଅବ୍ୟୟଦ୍ୱାରା କାର୍ଯ୍ୟର କ୍ରମ ବୁଝାଯାଏ, ତାହାକୁ କ୍ରମବୋଧକ ଅବ୍ୟୟ କହନ୍ତି ।

ଯଥା- କ୍ରମେକ୍ରମେ, ଧୀରେଧୀରେ, ଆସ୍ତେଆସ୍ତେ, ମନ୍ଦମନ୍ଦ

ବ୍ୟବହାର-

(କ) ସୂର୍ଯ୍ୟ **କ୍ରମେକ୍ରମେ** ଭାଲେରିର ଆରପାରିରେ ଅସ୍ତ ଗଲେ ।

(ଖ) ଧୀରେନ୍ଦ୍ର **ଧୀରେଧୀରେ** ଆସୁଛି ।

(ଗ) ଏ ଧତଡ଼ା ବସ୍‌ଟା ଶଗଡ଼ଗାଡ଼ି ପରି **ଆସ୍ତେଆସ୍ତେ** ଚାଲିଛି ।

(ଘ) ମଳୟ ମରୁତ **ମନ୍ଦମନ୍ଦ** ବହୁଛି ।

**୧୭ । ଶବ୍ଦାନୁକାରୀ ଅବ୍ୟୟ :**

ଶବ୍ଦ ବା ଧ୍ୱନିକୁ ଅନୁକରଣ କରୁଥିବା ଅବ୍ୟୟକୁ ଶବ୍ଦାନୁକାରୀ ବା ଧ୍ୱନିସୂଚକ ଅବ୍ୟୟ କହନ୍ତି ।

ଯଥା- ମଡ଼୍‌ମଡ଼୍, ଧଡ଼୍‌ଧଡ଼୍, ଚଡ଼୍‌ଚଡ଼୍, ଖଡ଼୍‌ଖଡ଼୍, ଭଡ଼୍‌ଭଡ଼୍, ମଟ୍‌ମଟ୍, କଟ୍‌କଟ୍, ଫଟ୍‌ଫଟ୍, ଠନ୍‌ଠନ୍, ଝଣ୍‌ଝଣ୍, ପେଁପେଁ, କେଁକେଁ, ଭେଁଭେଁ, ଭୋଭୋ, ସୁସୁ, ଘୁଘୁ, ସଁସଁ, କଟରକଟର, କେଁକଟର, ସଡ଼ସଡ଼, ଭୁସ୍‌ଭାସ୍, ଖସ୍‌ଖସ୍, ଟମ୍‌ଟମ୍, ଭଣଭଣ, ଗଣଗଣ, ଧୋଧୋ, ଚର୍‌ଚର୍, ଫଁଫଁ ଇତ୍ୟାଦି ।

ବ୍ୟବହାର-

(କ) ଗଛଟା **ମଡ଼୍‌ମଡ଼୍** କରି ଭାଙ୍ଗିଗଲା ।

(ଖ) ଗାଡ଼ିଟା **ଫଟ୍‌ଫଟ୍** ଶବ୍ଦକରି ଚାଲିଗଲା ।

(ଗ) ବନ୍ୟାପାଣି **ଘୁଘୁ** ଶବ୍ଦ କରି ବହି ଚାଲିଛି ।

(ଘ) ନାଗରା ବାଜେ **ଟମ୍‌ଟମ୍** ।

(ଙ) ମାଡ଼ଖାଇ କୁକୁରଟା **କେଁକେଁ** କରି ପଳାଇଲା ।

**୧୮ । ଆଳଙ୍କାରିକ ଅବ୍ୟୟ :**

ବାକ୍ୟର ସୌନ୍ଦର୍ଯ୍ୟବୃଦ୍ଧି ଓ ଗୁରୁତ୍ୱ ପ୍ରକାଶପାଇଁ ବ୍ୟବହୃତ ଅବ୍ୟୟକୁ ଆଳଙ୍କାରିକ ଅବ୍ୟୟ କୁହାଯାଏ ।

ଯଥା- ତ, ଆଚ୍ଛା, ଯେ, ଟି, ମ, ପରା

ବ୍ୟବହାର-

(କ) ଭାରି ବଡ଼ିଆ କଥା କହୁଛ **ତ** ।

(ଖ) 'ଗଲାଣି **ତ** ଗଲା କଥାରେ ସଙ୍ଗାତ' ।

(ଗ) **ଆଚ୍ଛା,** ତୁମେ ଆସିଲେ କଅଣ ଟା ବା ହୋଇଯିବ ?

(ଘ) ତୁମେ ଯିବ **ଯେ** କଥାଟା କିନ୍ତୁ ଭଲ ହେବନି ।

(ଙ) ଅଳପ ଅଳପ କହୁଥିବୁଲୋ, ବୋଲେ ହୁଁ **ଟି** ।

(ଚ) ନୂଆ ବୋହୂଟି, ନଈକି ଗାଧୋଇଯିବୁ ନାହିଁ **ଟି** ।

(ଛ) କି ସୁନ୍ଦର କଥା କହୁଚ **ମ** !

(ଜ) ତୁହି **ପରା** ମୋ ନୟନ ତାରା ।

**୧୯ । ପଦାନ୍ୱୟୀ ଅବ୍ୟୟ :**

ଯେଉଁ ଅବ୍ୟୟ ପଦ ଯୋଗେ ବିଶେଷ୍ୟ ପଦ ବିଭକ୍ତିଯୁକ୍ତ ହୁଏ ଏବଂ ବିଶେଷ୍ୟ ପଦ ସହିତ ଅବ୍ୟୟ ପଦର ଅନ୍ୱୟ ବା ସମ୍ପର୍କ ଥାଏ, ତାକୁ ପଦାନ୍ୱୟୀ ଅବ୍ୟୟ କହନ୍ତି । ଏହାକୁ ପରସର୍ଗାତ୍ମକ ଅବ୍ୟୟ ମଧ୍ୟ କୁହାଯାଏ ।

ଯଥା- ବିନା, ପ୍ରତି, ସହ, ଅପେକ୍ଷା, ସହିତ, ନିମିତ୍ତ, ପର୍ଯ୍ୟନ୍ତ, ଛଡ଼ା, ତୁଲ୍ୟ, ପରି ।

ବ୍ୟବହାର-

(କ) ତୁମ **ବିନା** ମୋର କାହିଁ ଗତି, ତୁମ୍ଭ **ପ୍ରତି** ରହୁ ମୋର ଭକ୍ତି ।

(ଖ) ଉଦ୍‌ଜାନ **ସହ** ଅମ୍ଳଜାନର ସଂଯୋଗରେ ଜଳ ସୃଷ୍ଟି ହୁଏ ।

(ଗ) ବ୍ୟକ୍ତି **ଅପେକ୍ଷା** ଦେଶ ବଡ଼ ।

(ଘ) ଧର୍ମ **ନିମିତ୍ତ** ଲୋକେ ତୀର୍ଥାଟନ କରନ୍ତି ।

(ଙ) ପିତାମାତାଙ୍କ **ପରି** ଆଉ ସଂସାରରେ କିଏ ଅଛି ?

ବିନା, ପ୍ରତି, ସହ, ଅପେକ୍ଷା, ନିମିତ୍ତ, ପରି ଅବ୍ୟୟ ପଦଯୋଗରେ ତୁମ୍ଭ, ତୁମ୍ଭ, ଉଦ୍‌ଜାନ, ବ୍ୟକ୍ତି, ଧର୍ମ, ପିତାମାତା ବିଶେଷ୍ୟ ପଦଗୁଡ଼ିକ ଷଷ୍ଠୀ ବିଭକ୍ତି ହୋଇଛି । ଏହି ବିଭକ୍ତ୍ୟନ୍ତ ପଦ ସହିତ ଅବ୍ୟୟ ପଦଗୁଡ଼ିକର ଅନ୍ୱୟ ବା ସମ୍ବନ୍ଧ ଥିବାରୁ ଏଗୁଡ଼ିକ ପଦାନ୍ୱୟୀ ଅବ୍ୟୟ ।

**୨୦ । ପଦବିକାରୀ ବା ନିରର୍ଥକ ଅବ୍ୟୟ :**

ଯେଉଁ ଅବ୍ୟୟ ପଦ ବିକୃତ ଅବସ୍ଥାରେ ମୂଳପଦ ସହିତ ଯୁକ୍ତ ହୋଇ ସେହିପଦର ଅର୍ଥରେ ନୂତନତା ଦିଏ ଓ ସ୍ୱତନ୍ତ୍ର ପଦ ଭାବରେ ଅର୍ଥହୀନ ହୋଇଥାଏ, ତାକୁ ପଦବିକାରୀ ବା ନିରର୍ଥକ ଅବ୍ୟୟ କହନ୍ତି ।

ଯଥା- ଫମି, ଝିଲା, ବାକର, ବାକିରି, ଶାଠ, କଟା, ହକା, ହାକରା, ବଛି, ରୋଇ, ଗଣ୍ଡା, ଫଛ

ବ୍ୟବହାର-

(କ) ତୁମର ଏ ଜମି **ଫମି** କଥା ମୁଁ ବୁଝିପାରିବିନି ।

(ଖ) ପିଲା**ଝିଲା**ର ସଂସାର ଛାଡ଼ି କୁଆଡ଼େ ଯାଇ ହେଉନି ।

(ଗ) ଧନୀଲୋକଙ୍କ ଘରେ ଚାକର**ବାକର** ଅନେକ ଥାଆନ୍ତି ।

(ଘ) ଆଉ ଚାକିରି**ବାକିରି** କିଛି ନାହିଁ, ନିଜେ କିଛି ଧନ୍ଦା ଖୋଜ ।

ସେହିପରି- **ପାଠଶାଠ, ମୋଟାମୋଟା, ଡକାହକା, ଡାକରାହାକରା, ବଛାବଛି, ରୁଆରୋଇ, ଗାଁଗଣ୍ଡା, ଗଛଫଛ, ମାଛଫାଛ ।**

ଏହି ଅବ୍ୟୟ ପୂର୍ବପଦର ପରିପୂରକ ଭାବରେ ବ୍ୟବହୃତ ହୋଇ ଯୁଗ୍ମପଦ ହୋଇଥାଏ । ଯୁଗ୍ମପଦରେ ଦ୍ୱିତୀୟ ପଦର ଅର୍ଥ ନ ଥିଲେ ମଧ୍ୟ ଏହା ପ୍ରଥମ ପଦର ଅର୍ଥକୁ ପୁଷ୍ଟ କରିଥାଏ ।

ସ୍ଥଳବିଶେଷରେ ପରବର୍ତ୍ତୀ ପଦ ନିରର୍ଥକ ନ ହୋଇ ସାର୍ଥକ ହୋଇଥାଏ ଏବଂ ପୂର୍ବପଦର ସମାର୍ଥକ କିମ୍ବା ବିପରୀତାର୍ଥକ ହୋଇଥାଏ । ଏଭଳି ପଦଗୁଡ଼ିକ ଅବ୍ୟୟ ନୁହେଁ ।

ଯଥା- ପାପପୁଣ୍ୟ, ଭଲମନ୍ଦ, ଘରବାଡ଼ି, ଧନଦଉଲତ, ଟଙ୍କାପଇସା ।

**୨୧ । ଉପସର୍ଗ ଅବ୍ୟୟ :**

ପ୍ର, ପରା, ଅପ୍, ସମ୍, ନି, ଅଧି, ସୁ, ନିର୍, ଉତ୍, ପରି, ପ୍ରତି, ଅବ, ଅନୁ, ଦୁର୍, ବି, ଅତି, ଅଭି, ଅପି, ଉପ, ଆ- ଏହି କୋଡ଼ିଏଟିକୁ ଉପସର୍ଗ କୁହାଯାଏ । ଏଗୁଡ଼ିକ ଅବ୍ୟୟଶ୍ରେଣୀର । ପରବର୍ତ୍ତୀ ଅଧ୍ୟାୟରେ ଏ ବିଷୟରେ ବିଶେଷ ଆଲୋଚନା କରାଯାଇଛି ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଅବ୍ୟୟପଦଗୁଡ଼ିକୁ ବ୍ୟବହାର କରି ବାକ୍ୟ ରଚନା କର ।

ଅବା, ମାତ୍ର, ଧେତ୍, ତ, କଡ଼୍କଡ଼୍, ଏବଂ, ଆହେ, ଲାଗ୍‌ଲାଗ୍, ଯଦି, ନଚେତ୍, ପ୍ରତି, କି

୨ । ତଳଲିଖିତ ବାକ୍ୟଗୁଡ଼ିକୁ ଅବ୍ୟୟ ପଦ ସାହାଯ୍ୟରେ ଏକ ବାକ୍ୟରେ ପରିଣତ କର ।

(କ) ପୋଖରୀ ପାଣି ଗୋଳିଆ ଅଛି । ପୋଖରୀରେ ଗାଧୁଅ ନାହିଁ ।

(ଖ) ତୁମେ ଭଲଭାବରେ ପଢ଼ିବ । ନିଶ୍ଚୟ ଉତ୍ତୀର୍ଣ୍ଣ ହେବ ।

(ଗ) ମନୁଷ୍ୟ ସୁଖ ଭୋଗ କରେ । ମନୁଷ୍ୟ ଦୁଃଖ ଭୋଗ କରେ ।

(ଘ) ଦିନରେ ବର୍ଷା ହୋଇଛି । ରାତିକି ବର୍ଷା ହେବ ।

(ଙ) ଲୁଚିଛି । ଗୋଡ଼ ଦିଓଟି ଦିଶୁଛି ।

(ଚ) କହିଦେବା ଅତି ସହଜ । କାର୍ଯ୍ୟରେ ପରିଣତ କରିବା କଷ୍ଟ ।

(ଛ) ସେ କହିଲେ । ମୋତେ ଯିବାକୁ ପଡ଼ିବ ।

୩ । ତଳଲିଖିତ ଉକ୍ତିଗୁଡ଼ିକରୁ ଅବ୍ୟୟ ପଦଗୁଡ଼ିକୁ ଚିହ୍ନାଅ ।
(କ) ରାଜା ବିନା ଯେହ୍ନେ ଗ୍ରାମଦେଶରେ ଜୀବଧନ ।
(ଖ) ପ୍ରଭୋ, ପରମ ଶରଣ, ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।
(ଗ) ମାଖନ ସିଂ ଠୋଠୋ ହସିଉଠିଲା ।
(ଘ) ଆହେ ଦୟାମୟ ବିଶ୍ୱବିହାରୀ ।
(ଙ) ଓଃ ଆଜି କି ଗରମ !
(ଚ) ହଠାତ୍ ଆକାଶ ମେଘାଛନ୍ନ ହେଲା; କିନ୍ତୁ ପାଣିଟୋପେ ପଡ଼ିଲାନି ।
(ଛ) ସର୍ବଦା ତୁ ମୋ ପଛେପଛେ ଧାଇଁଛୁ କାହିଁକି ?

୪ । ଅସମ୍ପୃକ୍ତ ପଦକୁ ପୃଥକ୍ କରି ଲେଖ ।
(କ) କୁ, ରେ, ରୁ, ଲୋ
(ଖ) ଛି, ଧେତ୍, ଓଃ, ହଁ
(ଗ) ଅତଏବ, ଏଣୁ, ଏବେ, ସୁତରାଂ
(ଘ) ହେ, ଆହେ, ଆଲୋ, ଅବା
(ଙ) ଧଡ଼୍‌ଧଡ଼୍, ଠକ୍‌ଠକ୍, ଧୀରେଧୀରେ, ସୁସୁ

୫ । ଅବ୍ୟୟ କାହାକୁ କହନ୍ତି ? ତିନୋଟିର ଉଦାହରଣ ଦିଅ ।

୬ । ଉପଯୁକ୍ତ ଅବ୍ୟୟ ପଦଦ୍ୱାରା ଶୂନ୍ୟସ୍ଥାନ ପୂରଣ କର ।
(କ) ଏଠାରେ ରହ, — ସେଠାକୁ ଯାଅ ।
(ଖ) — ତିନିଦିନ ହେଲା ଝଡ଼ିବର୍ଷା ହେଉଛି ।
(ଗ) — ପିଲା, ଏଠିକି ଆସିଲୁ ।
(ଘ) — କି ଦୁର୍ଗନ୍ଧ !
(ଙ) — ପରିଶ୍ରମୀ — ଫଳ ପାଏ ।
(ଚ) ପକ୍ଷୀମାନେ ଡେଣା — କରି ଉଡ଼ିଗଲେ ।
(ଛ) ବିଲୁଆ — ରଡ଼ି ଛାଡ଼ିଛି ।
(ଜ) —, ତୁମେ ଏମିତି କଥା କହନା ।

୭ । ପ୍ରତ୍ୟେକ ଅବ୍ୟୟରୁ ଦୁଇଟି ଲେଖାଏଁ ଉଦାହରଣ ଦିଅ ।
(କ) ହେତୁସୂଚକ ଅବ୍ୟୟ
(ଖ) ବିକଳ୍ପାର୍ଥକ ଅବ୍ୟୟ
(ଗ) ବିଯୋଜକ ଅବ୍ୟୟ
(ଘ) ଭାବସୂଚକ ଅବ୍ୟୟ
(ଙ) ସମ୍ମତିସୂଚକ ଅବ୍ୟୟ
(ଚ) ପଦାନ୍ୱୟୀ ଅବ୍ୟୟ
(ଛ) ନିଷେଧାର୍ଥକ ଅବ୍ୟୟ
(ଜ) ବୀପ୍‌ସାର୍ଥକ ଅବ୍ୟୟ



# ଉପସର୍ଗ (ପୂର୍ବପ୍ରତ୍ୟୟ)

ଉପସର୍ଗ ଅବ୍ୟୟ ଶ୍ରେଣୀର । ଏମାନଙ୍କର ସଂଖ୍ୟା କୋଡ଼ିଏ ।

ଯଥା- ପ୍ର, ପରା, ଅପ, ସମ୍, ନି, ଅଧି, ସୁ, ନିର୍ (ନିଃ), ଉତ୍, ପରି, ପ୍ରତି, ଅବ, ଅନୁ, ଦୁର (ଦୁଃ), ବି, ଅଭି, ଅତି, ଅପି, ଉପ, ଆ ।

ଧାତୁର ପୂର୍ବରେ ବ୍ୟବହୃତ ହେଉଥିବାରୁ ଏମାନଙ୍କୁ ଉପସର୍ଗ କୁହାଯାଏ । ଏମାନେ ମଧ୍ୟ ପୂର୍ବପ୍ରତ୍ୟୟ ନାମରେ ପରିଚିତ । ଯଥା- ପ୍ର-ଚର୍+ଅ=ପ୍ରଚାର, ଆ-ଗମ୍+ଅନ=ଆଗମନ ।

ଧାତୁର ପୂର୍ବରେ ଉପସର୍ଗ ଯୁକ୍ତ ହେଲେ ଧାତୁର ଅର୍ଥ ସମ୍ପ୍ରସାରିତ, ସଙ୍କୁଚିତ ବା ବିପରୀତ ହୋଇଥାଏ । ମୁଖ୍ୟତଃ ଧାତୁର ଅର୍ଥ ପରିବର୍ତ୍ତନରେ ଓ ନିୟନ୍ତ୍ରଣରେ ଉପସର୍ଗମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଉପସର୍ଗ ଯୋଗରେ ଧାତୁମାନଙ୍କର କିପରି ଅର୍ଥପରିବର୍ତ୍ତନ ଘଟେ, ତାହାର କେତୋଟି ଉଦାହରଣ ତଳେ ଦିଆଗଲା ।

୧ । ହୃ- ହରଣକରିବା; ବିହାର- ଭ୍ରମଣ, ପ୍ରହାର- ମାଡ଼, ସଂହାର- ବିନାଶ, ଉପହାର- ଉପଢ଼ୌକନ, ପରିହାର- ତ୍ୟାଗ, ଆହାର-ଭୋଜନ ।

୨ । କୃ- କରିବା; ଆକାର-ଆକୃତି, ପ୍ରକାର-ଶ୍ରେଣୀ, ବିକାର-ମନ୍ଦଭାବ ବା ବିକୃତି, ଉପକାର-ହିତ, ଅପକାର-କ୍ଷତି, ପ୍ରତିକାର-ନିରାକରଣ ଉପାୟ, ଅଧିକାର-କ୍ଷମତା, ଅନୁକରଣ-ନକଲ ।

୩ । ବଦ୍-କହିବା; ପ୍ରବାଦ-କିମ୍ବଦନ୍ତୀ, ଅପବାଦ-ନିନ୍ଦା, ସମ୍ବାଦ-ଖବର, ପରିବାଦ-କୁତ୍ସାରଟନା, ବିବାଦ-କଳହ, ଅନୁବାଦ-ଭାଷାନ୍ତରୀକରଣ, ପ୍ରତିବାଦ-ବିରୁଦ୍ଧ ଉକ୍ତି ।

୪ । ଗ୍ରହ୍-ଗ୍ରହଣ କରିବା; ଆଗ୍ରହ-ଆଦର, ବିଗ୍ରହ-ମୂର୍ତ୍ତି, ପ୍ରଗ୍ରହ-ଘୋଡ଼ା ଲଗାମ, ପ୍ରତିଗ୍ରହ-ଦାନଗ୍ରହଣ, ପରିଗ୍ରହ-ଗ୍ରହଣ, ଅବଗ୍ରହ-ବିଚ୍ଛେଦ, ନିଗ୍ରହ-ଦଣ୍ଡ, ଅନୁଗ୍ରହ-ଦୟା, ଉପଗ୍ରହ-ଛୋଟଗ୍ରହ ।

୫ । ଚର୍-ଗତି କରିବା, ଯିବା; ସଞ୍ଚାର-ଗତି, ଆଚାର-ବ୍ୟବହାର, ବିଚାର-ନିଷ୍ପତ୍ତି, ପରିଚର-ଦାସ, ଅତିଚାର-ଲଂଘନ, ଉପଚାର-ଚିକିତ୍ସା, ଉଚ୍ଚାରଣ-କଥନ, ପ୍ରଚାର-ଘୋଷଣା ।

୬ । ଗମ୍-ଯିବା; ଆଗମ-ଆସିବା, ଦୁର୍ଗତି-ବିପଦ, ନିର୍ଗତ-ନିଃସୃତ, ବହିର୍ଗତ; ଉପଗତ-ଉପସ୍ଥିତ, ନିଗମ-ବେଦ (ଶାସ୍ତ୍ରବାକ୍ୟ), ବିଗତ-ଅତୀତ, ଅବଗତ-ଜ୍ଞାନ, ଅନୁଗମନ-ପଛେପଛେ ଯିବା ।

୭ । ଧା-ଧାରଣ କରିବା; ଅବଧାନ-ସ୍ଥିର ହୋଇ ଶୁଣିବା, ବିଧାନ-ନିୟମ, ନିଧାନ-ସ୍ଥାନ, ପ୍ରଧାନ-ଶ୍ରେଷ୍ଠ, ଆଧାନ-ଆଧାର, ଅଭିଧାନ-କୋଷଗ୍ରନ୍ଥ, ପରିଧାନ-ବସ୍ତ୍ର ।

କୋଡ଼ିଏଟି ଉପସର୍ଗ ମଧ୍ୟରୁ ଅତି, ପ୍ରତି, ପରି, ପରା ଧାତୁର ପୂର୍ବରେ ବ୍ୟବହୃତ ହେବା ସହିତ ସ୍ୱତନ୍ତ୍ର ପଦ ରୂପେ ବାକ୍ୟରେ ବ୍ୟବହୃତ ହୁଅନ୍ତି ।

ସ୍ୱତନ୍ତ୍ର ପଦରୂପେ ବ୍ୟବହାର-

ଅତି- (କ) ଅତି ସବୁଠାରେ ଭଲ ନୁହେଁ ।

(ଖ) ଅତିବୁଦ୍ଧିଆ ପିଲାମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳ ।

(ଗ) ଅତି ଚିପୁଡ଼ିଲେ ଲେମ୍ବୁ ପିତା ଲାଗେ ।

ପ୍ରତି- ପ୍ରତି ପିଲା କୋଡ଼ିଏ ଟଙ୍କା ଲେଖାଏଁ ଚାନ୍ଦା ଦେବେ ।

ପରି- ଗୋପବନ୍ଧୁଙ୍କ ପରି ତ୍ୟାଗୀପୁରୁଷ ଜଗତରେ ଦୁର୍ଲ୍ଲଭ ।

ପରା- ତୁମେ ପରା ପୁରୀ ଯିବ ?

ଉପସର୍ଗ ଧାତୁର ପୂର୍ବରୁ ବ୍ୟବହାର ହେଲାପରି ଶବ୍ଦର ପୂର୍ବରୁ ମଧ୍ୟ ବ୍ୟବହୃତ ହୁଏ । ଯଥା- ପ୍ରତିଦିନ, ଅନୁଦିନ, ଉପକୂଳ, ଅନୁକୂଳ, ଅପଯଶ, ଅଧିପତି, ଆକୁମାରୀ, ଆଚଣ୍ଡାଳ, ସୁଭାଗ୍ୟ, ସୁଦିନ, ଦୁର୍ଭାଗ୍ୟ, ଅଧିପତି ।

ଧାତୁର ପୂର୍ବରେ ଏକାଧିକ ଉପସର୍ଗର ବ୍ୟବହାର ହୋଇଥାଏ । ଯଥା-

ବ୍ୟବହାର- ବି+ଅବ-ହୃ+ଅ, ବିପର୍ଯ୍ୟୟ- ବି+ପରି-ଇ+ଅ, ଅତ୍ୟାଚାର- ଅତି+ଆ-ଚର୍+ଅ, ଅଭ୍ୟୁତଥାନ- ଅଭି+ଉତ୍+ସ୍ଥା+ଅନ, ଅଭ୍ୟାଗତ- ଅଭି+ଆ-ଗମ୍+ତ, ନିରାକରଣ- ନିର୍+ଆ-କୃ+ଅନ, ପ୍ରତ୍ୟୁପକାର- ପ୍ରତି+ଉପ-କୃ+ଅ, ସମୁଦ୍ଧାର- ସମ୍+ଉତ୍-ହୃ+ଅ, ସମଭିବ୍ୟାହାର- ସମ୍+ଅଭି+ବି+ଆ-ହୃ+ଅ ।

ସଂସ୍କୃତ ପୂର୍ବ ପ୍ରତ୍ୟୟ ବା ଉପସର୍ଗଗୁଡ଼ିକର ବ୍ୟବହାର-

| ଉପସର୍ଗ | କେଉଁ କେଉଁ ଅର୍ଥରେ ବ୍ୟବହୃତ | ଉଦାହରଣ |
|---|---|---|
| ପ୍ର | ଉତ୍କର୍ଷ, ଉଦ୍ଭବ, ଗତି, ଆଧିକ୍ୟ, ସର୍ବତୋଭାବ | ପ୍ରଶଂସା, ପ୍ରକୃଷ୍ଟ, ପ୍ରଭାବ, ପ୍ରକ୍ରିୟା, ପ୍ରସ୍ଥାନ, ପ୍ରବାଦ, ପ୍ରଯତ୍ନ, ପ୍ରଚେଷ୍ଟା, ପ୍ରଦାନ, ପ୍ରକ୍ଷେପ, ପ୍ରଚଣ୍ଡ, ପ୍ରତାପ |
| ପରା | ପ୍ରାଧାନ୍ୟ, ବ୍ୟତିକ୍ରମ, ତିରସ୍କାର, ଶେଷ, ବିପରୀତ, ନିନ୍ଦା | ପରାକ୍ରମ, ପରାଜୟ, ପରାଭବ, ପରାବର୍ତ୍ତନ (ପ୍ରତ୍ୟାବର୍ତ୍ତନ), ପରାସ୍ତ, ପରାକାଷ୍ଠା, ପରାମର୍ଶ |
| ଅପ | କୁତ୍ସିତ, ବିରୁଦ୍ଧ, ବୈପରୀତ୍ୟ, ମନ୍ଦ, ଚୌର୍ଯ୍ୟ, ଅପକୃଷ୍ଟ | ଅପରୂପ, ଅପକାର, ଅପଳାପ, ଅପବାଦ, ଅପମାନ, ଅପଯଶ, ଅପମୃତ୍ୟୁ, ଅପହରଣ, ଅପରାଧ, ଅପବ୍ୟବହାର |
| ସମ୍ | ସମ୍ୟକ୍, ସହିତ, ସାମୀପ୍ୟ, ସଙ୍ଗତି, ଆଭିମୁଖ୍ୟ | ସମ୍ଭାଷଣ, ସମ୍ପର୍କ, ସମୁପସ୍ଥିତ, ସମୀପ, ସମ୍ମୁଖ, ସଂସାର, ସମ୍ବାଦ, ସନ୍ନିଧାନ, ସଂଯୋଗ, ସଙ୍କଳନ, ସଂହାର, ସମୁଚିତ, ସମାଚାର, ସମଷ୍ଟି |
| ନି | ସାମୀପ୍ୟ, ସମ୍ୟକ୍, ସାଦୃଶ୍ୟ, କୌଶଳ, କୁତ୍ସିତ, ମଧ୍ୟରେ, ଆଧିକ୍ୟ, ବିରତି | ନିକଟ, ନିକ୍ଷେପ, ନିଯୋଗ, ନିଖୋଜ, ନିଦାନ, ନିଧାନ, ନିଧନ, ନିଦାରୁଣ, ନିପୁଣ, ନିମଗ୍ନ, ନିଗ୍ରହ, ନିବୃତ୍ତି, ନିର୍ଦ୍ଦେଶ, ନିବାରଣ |
| ଅଧି | ପ୍ରାଧାନ୍ୟ, ଶ୍ରେଷ୍ଠ, ଅତିକ୍ରମ, ଊର୍ଦ୍ଧ୍ୱକୁ, ଆଧିକ୍ୟ, ଅଧିକାର, ପ୍ରଭୁତ୍ୱ, ସମ୍ବନ୍ଧୀୟ | ଅଧିପତି, ଅଧିନାୟକ, ଅଧିକାର, ଅଧୀନ, ଅଧ୍ୟକ୍ଷ, ଅଧୀଶ୍ୱର, ଅଧିମାସ, ଅଧ୍ୟାତ୍ମ, ଅଧିବାସ, ଅଧିବେଶନ |
| ସୁ | ମଙ୍ଗଳ, ସୁନ୍ଦର, ସହଜ, ଅନାୟାସ, ଆଧିକ୍ୟ | ସୁନାମ, ସୁଯୋଗ, ସୁଲଭ, ସୁଶାନ୍ତ, ସୁଭଦ୍ରା, ସୁଦର୍ଶନ, ସୁସମ୍ବାଦ, ସୁଚରିତ୍ର, ସୁବାସ, ସୁନାମ, ସୁତୀକ୍ଷ୍ଣ, ସୁକର |

| ଉପସର୍ଗ | କେଉଁ କେଉଁ ଅର୍ଥରେ ବ୍ୟବହୃତ | ଉଦାହରଣ |
|---|---|---|
| ନିର୍(ନିଃ) | ଅଭାବ, ଅତିଶୟ, ବାହାର, ନିଶ୍ଚୟ, ନିଃଶେଷ, ଅତିଶୟ | ନିର୍ମଳ, ନିର୍ଜନ, ନିର୍ଣ୍ଣୟ, ନିରନ୍ନ, ନିଃସନ୍ଦେହ, ନିର୍ମୂଳ, ନିର୍ଲଜ୍ଜ, ନିର୍ଗତ, ନିର୍ମାଣ, ନିରାକାର, ନିରୁପାୟ, ନିର୍ବିକାର, ନିଷ୍କ୍ରାନ୍ତ, ନିଷ୍କାମ, ନିଷ୍ପାପ, ନିସ୍ତାର, ନିରଳସ, ନିରସନ(ନିରାକରଣ) |
| ଦୁର(ଦୁଃ) | ମନ୍ଦ, ନିନ୍ଦା, ଦୁଃଖ, ନିଷିଦ୍ଧ, ଅତିକଷ୍ଟରେ | ଦୁର୍ଗନ୍ଧ, ଦୁର୍ଜନ, ଦୁର୍ଗତି, ଦୁର୍ଗୁଣ, ଦୁର୍ଘଟଣା, ଦୁର୍ନାମ, ଦୁର୍ଦ୍ଦଶା, ଦୁର୍ଭିକ୍ଷ, ଦୁଶ୍ଚରିତ୍ର, ଦୁସ୍ତର, ଦୁରନ୍ତ, ଦୁଃଶୀଳ, ଦୁରାଚାର, ଦୁଃସାଧ, ଦୁରାରୋଗ୍ୟ, ଦୁଷ୍କୃତି |
| ଉତ୍ | ଅତିଶୟ, ଉତ୍କର୍ଷ, ଅକସ୍ମାତ୍, ଅଭାବ, ନିନ୍ଦା, ବିରୁଦ୍ଧ, ଉପରକୁ, ଅତିକ୍ରମଣ | ଉତ୍କ୍ଷିପ୍ତ, ଉତ୍କଳ, ଉତ୍ଥାନ, ଉତ୍କର୍ଷ, ଉନ୍ନତ, ଉତ୍ତପ୍ତ, ଉତ୍କୋଚ, ଉଚ୍ଛୃଙ୍ଖଳ, ଉତ୍ପନ୍ନ, ଉତ୍ଥାନ, ଉନ୍ନତି, ଉଦାହରଣ, ଉଦାସୀନ, ଉତ୍ତର, ଉନ୍ମାର୍ଗ |
| ଅତି | ଅତିଶୟ, ଅନୁଚିତ, ଅସୀମ, ଆଧିକ୍ୟ, ଅତିକ୍ରମ, ବହିର୍ଗମନ | ଅତିକ୍ରମ, ଅତ୍ୟାଚାର, ଅତ୍ୟୁକ୍ତି, ଅତୀତ, ଅତ୍ୟନ୍ତ, ଅତିରଞ୍ଜିତ, ଅତିଶୟ, ଅତୀନ୍ଦ୍ରିୟ, ଅତିବାହିତ, ଅତିବୃଷ୍ଟି, ଅତିସାର, ଅତ୍ୟୁଷ୍ଣ |
| ପରି | ଅତିଶୟ, ସର୍ବତ୍ର, ଚତୁର୍ଦ୍ଦିଗ, ସର୍ବତୋଭାବ, ଦୋଷ, ଶେଷ, କ୍ରମଶଃ, ସମ୍ୟକ୍, ଦର୍ଶନ, ପୂଜା, ସମ୍ପୂର୍ଣ୍ଣତା, ଶତ୍ରୁତା | ପରିଚ୍ଛଦ, ପରିଚ୍ଛେଦ, ପରିତୁଷ୍ଟ, ପର୍ଯ୍ୟାୟ, ପରିପାକ, ପରିପନ୍ଥୀ, ପରିଣୟ, ପରିଣତି, ପରୀକ୍ଷା, ପରିଶ୍ରମ, ପରିତ୍ୟାଗ, ପରିପୂର୍ଣ୍ଣ, ପରିସର, ପରିବ୍ୟାପ୍ତ, ପରିବେଷ୍ଟିତ, ପରିସମାପ୍ତି, ପରିପ୍ରକାଶ, ପରିଧାନ, ପରିବର୍ତ୍ତନ, ପରିଚୟ, ପରିଚର୍ଯ୍ୟା, ପରିପାକ, ପରିଦର୍ଶନ, ପରିପ୍ଳୁତ, ପର୍ଯ୍ୟାଲୋଚନା, ପର୍ଯ୍ୟବେକ୍ଷଣ |

| ଉପସର୍ଗ | କେଉଁ କେଉଁ ଅର୍ଥରେ ବ୍ୟବହୃତ | ଉଦାହରଣ |
|---|---|---|
| ପ୍ରତି | ବିପରୀତ, ପୁନରାବୃତ୍ତି, ସମ୍ମୁଖ, ସମୀପ, ସାଦୃଶ୍ୟ, ପରିବର୍ତ୍ତନ, ବିରୋଧ, ସମାନ, ପ୍ରତ୍ୟେକ, ପଶ୍ଚାତ୍ | ପ୍ରତିକାର, ପ୍ରତିଧ୍ୱନି, ପ୍ରତିମୁଖ, ପ୍ରତିବେଶୀ, ପ୍ରତିମୂର୍ତ୍ତି, ପ୍ରତିହିଂସା, ପ୍ରତିଦାନ, ପ୍ରତିଦିନ, ପ୍ରତିକୂଳ, ପ୍ରତିକାର, ପ୍ରତିକ୍ରିୟା, ପ୍ରତିକୃତି, ପ୍ରତିପଦ, ପ୍ରତିଶୋଧ, ପ୍ରତିପାଦିତ, ପ୍ରତିବିଧାନ, ପ୍ରତିରକ୍ଷା, ପ୍ରତୀଚୀ, ପ୍ରତିଯୋଗୀ, ପ୍ରତିବେଶୀ |
| ଅବ | ନିଶ୍ଚୟ, ବିରତି, ନିମ୍ନତା, ଆଶ୍ରୟ, ବିଶ୍ରାମ, ଘୃଣା, ଅତ୍ୟନ୍ତ, ସମ୍ପୂର୍ଣ୍ଣରୂପେ, ସମାନଦୂରକୁ, ଚାରିଆଡ଼େ, ବିପରୀତ, ନାସ୍ତି | ଅବଗତି, ଅବଚ୍ଛିନ୍ନ, ଅବତରଣ, ଅବଲମ୍ବନ, ଅବସର, ଅବହେଳା, ଅବଜ୍ଞା, ଅବରୋଧ, ଅବନତି, ଅବମାନନା, ଅବଲୋକନ, ଅବଚେତନ, ଅବବୋଧ, ଅବଧାନ, ଅବରୋହଣ, ଅବଚ୍ଛେଦ, ଅବଗଣନ, ଅବରୋପଣ |
| ଅନୁ | ପଶ୍ଚାତ୍, ସଦୃଶ, ହୀନ, ସହିତ, ସମୀପ, ବୀପ୍ସା, ସମ୍ୟକ୍ | ଅନୁଜ, ଅନୁରୂପ, ଅନୁଲେପନ, ଅନୁଚର, ଅନ୍ୱେଷଣ, ଅନୁତାପ, ଅନୁଗାମୀ, ଅନୁକୂଳ, ଅନୁଜ, ଅନୁକ୍ଷଣ, ଅନୁନୟ, ଅନୁମେୟ, ଅନୁବାଦ, ଅନୁଧାବନ, ଅନୁଯୋଗ, ଅନୁରୂପ, ଅନୁଦାନ, ଅନୁଗତ,ଅନୁକଳ୍ପ ଅନ୍ୱେଷଣ, ଅନୁସରଣ, ଅନୁଚିନ୍ତା, ଅନୁରାଗ, ଅନୁକ୍ଷଣ, ଅନୁକମ୍ପା |
| ବି | ବିଶେଷ, ବିପରୀତ, ବିହୀନ, ବହୁ, ପରସ୍ପର, ଭିନ୍ନ, ବିନଷ୍ଟତା, ପ୍ରସିଦ୍ଧ | ବିଫଳ, ବିପକ୍ଷ, ବିରାଗ, ବିଖ୍ୟାତ, ବିଦେଶ, ବିବାହ, ବିଶୁଦ୍ଧ, ବିଜ୍ଞାନ, ବିପଦ, ବିବାଦ, ବିଚାର, ବିଜାତୀୟ, ବିବିଧ, ବିତୃଷ୍ଣା, ବିଶେଷ, ବିବାଦୀ, ବିଶୋଧନ, ବିମତ, ବିଯୋଗ |

| ଉପସର୍ଗ | କେଉଁକେଉଁ ଅର୍ଥରେ ବ୍ୟବହୃତ | ଉଦାହରଣ |
|---|---|---|
| ଅଭି | ସମ୍ମୁଖ, ଉତ୍ତମ, ସମ୍ୟକ୍ ଚିହ୍ନ, ନୂତନତ୍ୱ, ପୁନଃପୁନଃ, ପରିପୂର୍ଣ୍ଣତା, ସର୍ବତୋଭାବ, ଅପକୃଷ୍ଟ, ଉତ୍କର୍ଷ, ପ୍ରକାଶ | ଅଭିଜାତ, ଅଭିମୁଖ, ଅଭୀଷ୍ଟ, ଅଭିନବ, ଅଭ୍ୟାସ, ଅଭିବ୍ୟକ୍ତି, ଅଭିସାର, ଅଭିଯାନ, ଅଭିଭାଷଣ, ଅଭିବ୍ୟାପ୍ତ, ଅଭିଭବ, ଅଭିଜ୍ଞ, ଅଭିବୃଦ୍ଧି, ଅଭିଶାପ, ଅଭିନେତା, ଅଭିଭାବକ, ଅଭିନିବେଶ, ଅଭିମାନ, ଅଭିଧାନ, ଅଭିଳାଷ, ଅଭ୍ୟସ୍ତ, ଅଭ୍ୟାଗତ, ଅଭ୍ୟୁଦୟ |
| ଉପ | ନିକଟ, ଆଧିକ୍ୟ, ଦୀନତା, ସାଦୃଶ୍ୟ, ସାହାଯ୍ୟ, ଘୃଣା, ଅଧସ୍ତନ, ଆରମ୍ଭ, ଉତ୍କର୍ଷ, ନ୍ୟୂନତା | ଉପକୂଳ, ଉପଚୟ, ଉପକ୍ରମ, ଉପାଦେୟ, ଉପବନ, ଉପଗ୍ରହ, ଉପହାସ, ଉପକାର, ଉପକଣ୍ଠ, ଉପଦଂଶ, ଉପସଂହାର, ଉପହାସ, ଉପେକ୍ଷା, ଉପକରଣ, ଉପକ୍ରମ, ଉପମନ୍ତ୍ରୀ, ଉପହାର, ଉପପଦ, ଉପାଚାର୍ଯ୍ୟ, ଉପାସ୍ଥି |
| ଅପି | ଆବରଣ, ପ୍ରଶ୍ନ, ସମ୍ଭାବନା, ନିଶ୍ଚୟ, ବିନାଶ | ଅପିଧାନ, (ପିଧାନ), ଅପିହିତ, (ପିହିତ), ଅପିନଦ୍ଧ, (ପିନଦ୍ଧ), ଅପ୍ୟୟ |
| ଆ | ବିପରୀତ, ଈଷତ୍, ସୀମା, ପର୍ଯ୍ୟନ୍ତ, ସମ୍ୟକ୍, ଅଧିକ, ବୀପ୍ସା | ଆରକ୍ତ, ଆକଣ୍ଠ, ଆବୃତ୍ତି, ଆଦାନ, ଆକ୍ରାନ୍ତ, ଆଗମନ, ଆକର୍ଷଣ, ଆକୃଷ୍ଟ, ଆମରଣ, ଆକୁମାରୀ, ଆକଣ୍ଠ, ଆସମୁଦ୍ର, ଆସକ୍ତ, ଆନୟନ, ଆକୁଞ୍ଚନ, ଆଜୀବନ, ଆହାର, ଆଦେଶ, ଆମନ୍ତ୍ରଣ |

* ଅପି- ଏହି ଅବ୍ୟୟଟି ପଦର ପରେ ବ୍ୟବହୃତ ହୋଇଥାଏ । ଯଥା- ଯଦ୍ୟପି, ତଥାପି ।

ଉପସର୍ଗ ପରି ଆହୁରି କେତେକ ଅବ୍ୟୟ ପଦ ଧାତୁର ପୂର୍ବରେ ବ୍ୟବହୃତ ହୋଇ ଶବ୍ଦ ଗଠନରେ ସାହାଯ୍ୟ କରିଥା'ନ୍ତି ।

ଯଥା- ଅନ୍ତର୍, ବହିର୍, ଆବିର୍, ପୁନର୍, ପ୍ରାଦୁର୍, ପୁରସ୍, ତିରସ୍, ଶନୈଃ ଇତ୍ୟାଦି ।

ଅନ୍ତର(ସ୍)- ଅନ୍ତର୍ଦ୍ଧାନ, ଅନ୍ତର୍ହିତ, ଅନ୍ତର୍ଗତ, ଅନ୍ତର୍ବେଦନା, ଅନ୍ତର୍ଭୁକ୍ତ, ଅନ୍ତଃକରଣ ।

ବହିର(ସ୍)- ବହିର୍ଗମନ, ବହିର୍ଦ୍ଦେଶ, ବହିର୍ଭୂତ, ବହିର୍ଦ୍ୱାର, ବହିର୍ଗତ, ବହିରିନ୍ଦ୍ରିୟ, ବହିଷ୍କାର, ବହିଷ୍କୃତ ।

ଆବିର୍(ସ୍)- ଆବିର୍ଭାବ, ଆବିର୍ଭୂତ, ଆବିଷ୍କାର, ଆବିଷ୍କୃତ ।

ପୁନର୍- ପୁନରପି, ପୁନରାଗମନ, ପୁନର୍ବାର, ପୁନରୁଦ୍ଧାର, ପୁନର୍ବିବାହ ।

ପ୍ରାଦୁର୍- ପ୍ରାଦୁର୍ଭାବ, ପ୍ରାଦୁର୍ଭୂତ ।

ପୁରସ୍- ପୁରସ୍କାର, ପୁରସ୍କୃତ, ପୁରୋଭାଗ, ପୁରଶ୍ଚରଣ ।

ତିରସ୍- ତିରସ୍କାର, ତିରସ୍କୃତ, ତିରସ୍କରଣୀ ।

ଶନୈଃ- ଶନୈର୍ଗମନ, ଶନୈଶ୍ଚର ।

କୋଡ଼ିଏଟି ସଂସ୍କୃତ ଉପସର୍ଗ ବ୍ୟତୀତ ଆଉ କେତେକ ଓଡ଼ିଆ ଓ ବୈଦେଶିକ ପୂର୍ବପ୍ରତ୍ୟୟ ଶବ୍ଦର ପୂର୍ବରେ ବ୍ୟବହୃତ ହୋଇ ଭାଷାରେ ବ୍ୟବହୃତ ହେଉଛନ୍ତି ।

**ଓଡ଼ିଆ ପୂର୍ବ ପ୍ରତ୍ୟୟ-**

ଅ- (ବୈପରୀତ୍ୟ ବା ନିଷେଧ ଅର୍ଥରେ)- ଅବାଟ, ଅବଟା, ଅକଟା, ଅଶୁଣା, ଅଜଣା, ଅଖିଆ, ଅପିଆ, ଅଦିନ, ଅପଚରା, ଅଦୂର, ଅସୁର ।

ଅଣ- (ବୈପରୀତ୍ୟ ବା ନିଷେଧ ଅର୍ଥରେ)- ଅଣାକାର, ଅଣହଳଦିଆ, ଅଣବାହୁଡ଼ା, ଅଣବାବୁଆ, ଅଣସୋରିଷିଆ, ଅଣଆଖୁଆ, ଅଣକଦଳିଆ, ଅଣଶୁଦ୍ଧିଆ ।

ଦର- (ଈଷତ୍ ଅର୍ଥରେ)- ଦରକଞ୍ଚା, ଦରଖିଆ, ଦରଘଷା, ଦରପାଚିଲା, ଦରପାଠୁଆ, ଦରଫଟା, ଦରବଟା, ଦରମରା, ଦରହସା ।

ନା- (ବୈପରୀତ୍ୟ ବା ନିଷେଧ ଅର୍ଥରେ) ନାଚାର, ନାପସନ୍ଦ, ନାବାଳକ, ନାମଞ୍ଜୁର ।

ଫି- (ପ୍ରତ୍ୟେକ ଅର୍ଥରେ)- ଫିକଥା, ଫିଘର, ଫିଜଣ, ଫିଦିନ, ଫିରୋଜ, ଫିଲୋକ ।

ବଦ/ବଦ୍- (ମନ୍ଦ ଅର୍ଥରେ) ବଦମାସ(ସ୍), ବଦ୍‌ଗୁଣ, ବଦକଥା, ବଦ୍‌ଖରଚ, ବଦ୍‌ଖୋଇ, ବଦ୍‌ନାମ, ବଦ୍‌ଭ୍ୟାସ, ବଦ୍‌ରାଗୀ, ବଦ୍‌ସ୍ୱଭାବ ।

ବେ- (ବିପରୀତ ଅର୍ଥରେ)- ବେଆଇନ୍, ବେଇମାନ୍, ବେକସୁର, ବେଟାଇମ୍, ବେଢ଼ଙ୍ଗ, ବେଦମ, ବେପରବାୟ, ବେପରୁଆ, ବେହିସାବ, ବେହୋସ୍ ।

ସ- (ସହିତ ଅର୍ଥରେ)- ସକାମ, ସଜୋର୍, ସଠିକ୍, ସବନ୍ଧୁ ।

## ଅନୁଶୀଳନୀ

୧ । ଉପସର୍ଗ କ'ଣ ଓ କେତୋଟି ?

୨ । କେଉଁ ଉପସର୍ଗଗୁଡ଼ିକ ସ୍ୱତନ୍ତ୍ର ପଦ ରୂପେ ବ୍ୟବହୃତ ହୁଅନ୍ତି, ଉଦାହରଣ ଦେଇ ପ୍ରକାଶ କର ।

୩ । ପ୍ର, ଅନୁ, ଉପ, ବି, ଦୁର୍- ଏହି ଉପସର୍ଗ ଯୋଗ କରି ଦୁଇଟି ଲେଖାଏଁ ଶବ୍ଦ ଲେଖ ।

୪ । ପୁରସ୍, ଅନ୍ତର- ଏ ଦୁଇଟିକୁ ଉପପଦ ରୂପେ ବ୍ୟବହାର କର ।

୫ । ନା, ଅଣ, ଦର- ଏଗୁଡ଼ିକୁ ଲଗାଇ ତିନୋଟି ଲେଖାଏଁ ଶବ୍ଦ ଲେଖ ।

୬ । ନିମ୍ନଲିଖିତ ପ୍ରକୃତି ପ୍ରତ୍ୟୟରୁ ସୃଷ୍ଟ ଶବ୍ଦଗୁଡ଼ିକୁ ଲେଖ ।

| | |
|---|---|
| ପ୍ର - ବଦ୍ + ଅ = | ଅତି - ଇ + ତ = |
| ପରା - ଭୂ + ଅ = | ପରି - ଚର୍ + ଯ + ଆ = |
| ଅପ - ବଦ୍ + ଅ = | ପ୍ରତି - ଧ୍ୱନ୍ + ଇ = |
| ସମ୍ - ଭାଷ୍ + ଅନ = | ଅବ - ତୃ + ଅନ = |
| ନି - କ୍ଷିପ୍ + ଅ = | ଅନୁ - ଗମ୍ + ଇନ = |
| ଅଧ - ପା + ଅତି = | ବି - ଖ୍ୟା + ତ = |
| ସୁ - ଦୃଶ୍ + ଅନ = | ଅଭି - ଜ୍ଞା + ଅ = |
| ନିର୍ - ଗମ୍ + ତ = | ଉପ - କୃ + ଅ = |
| ଦୁଃ - ଗମ୍ + ତି = | ଅପି - ଧା + ଅନ = |
| ଉତ୍ - କୃଷ୍ + ଅ = | ଆ - ଦିଶ୍ + ଅ = |



# କ୍ରିୟା

ଆମେ ଜାଣିଛେ, ପଦ ପାଞ୍ଚପ୍ରକାର । ଏହି ପାଞ୍ଚପ୍ରକାର ପଦରୁ 'କ୍ରିୟା' ପଦ ଅନ୍ୟତମ । ତଳବାକ୍ୟଗୁଡ଼ିକରୁ କେତୋଟି କ୍ରିୟାର ଉଦାହରଣ ଦେଖ-

(କ) ଗାୟତ୍ରୀ ଗୀତ **ଗାଉଛି** ।

(ଖ) ପବିତ୍ର ପୁରାଣ **ପଢୁଥିଲା** ।

(ଗ) ଗୋବିନ୍ଦ ପଡ଼ିଆରେ **ଖେଳିବ** ।

କଳା ଅକ୍ଷରର 'ଗାଉଛି', 'ପଢୁଥିଲା', 'ଖେଳିବ' କ୍ରିୟାପଦ । 'ଗାଉଛି'ରୁ ଗାଇବା, 'ପଢୁଥିଲା'ରୁ ପଢ଼ିବା ଓ 'ଖେଳିବ'ରୁ ଖେଳିବା କାର୍ଯ୍ୟର ସୂଚନା ମିଳୁଛି । ଅତଏବ କାର୍ଯ୍ୟସୂଚକ ପଦ କ୍ରିୟା । ଅର୍ଥାତ୍ ବାକ୍ୟରେ ବ୍ୟବହୃତ ଯେଉଁ ପଦରୁ କୌଣସି କାର୍ଯ୍ୟର ସୂଚନା ମିଳେ, ତାହା କ୍ରିୟାପଦ ।

ଭୋଜନ, ପଠନ, ଗମନ, ଯିବା, ଖେଳିବା, ଲେଖିବା, ହସ, କାନ୍ଦ ପ୍ରଭୃତି ପଦଗୁଡ଼ିକରୁ ମଧ୍ୟ କାର୍ଯ୍ୟର ସୂଚନା ମିଳୁଛି । ତେବେ ଏଗୁଡ଼ିକ କ୍ରିୟା ପଦ ନୁହେଁ, କ୍ରିୟାବାଚକ ବିଶେଷ୍ୟ । କ୍ରିୟାବାଚକ ବିଶେଷ୍ୟ ସମ୍ବନ୍ଧରେ ପୂର୍ବରୁ ଆଲୋଚିତ ହୋଇଛି ।

କ୍ରିୟାବାଚକ ବିଶେଷ୍ୟ ଓ କ୍ରିୟାପଦ ମଧ୍ୟରେ ପାର୍ଥକ୍ୟ ରହିଛି । ଯଥା-

୧ । ଶିଶୁ ହସୁଛି ।

୨ । ହସିବା (ହସ) ଆନନ୍ଦ ଓ ନୀରୋଗତାର ପ୍ରତୀକ ।

ପ୍ରଥମ ବାକ୍ୟରେ 'ହସୁଛି' କ୍ରିୟାପଦ । ଏଥିରୁ 'ଉଛି' (ଉଛ୍+ଇ)କୁ ବାଦ୍ ଦେଲେ ରହିବ ହସ୍ । ଆଉ କୌଣସି ପ୍ରକାରେ 'ହସ୍'କୁ ପରିବର୍ତ୍ତନ କରାଯାଇ ପାରିବ ନାହିଁ । ଏଣୁ 'ହସ୍' ହେଉଛି 'ହସୁଛି' କ୍ରିୟାର ମୂଳପିଣ୍ଡ ବା ମୂଳ ଉତ୍ସ ବା ମୂଳ ରୂପ । କ୍ରିୟାର ମୂଳପିଣ୍ଡକୁ ଧାତୁ କୁହାଯାଏ । ଧାତୁରେ ପ୍ରତ୍ୟୟ ବା ଧାତୁବିଭକ୍ତି ବା କ୍ରିୟାବିଭକ୍ତି ଯୁକ୍ତହେଲେ, ତାହା କ୍ରିୟାପଦରେ ପରିଣତ ହୁଏ । 'ହସୁଛି' କ୍ରିୟାରୁ ପୁଣି ବର୍ତ୍ତମାନ କାଳ, ତୃତୀୟ ପୁରୁଷ ଓ ଏକବଚନର ଧାରଣା ଜନ୍ମୁଛି । ଦ୍ୱିତୀୟ ବାକ୍ୟରେ ଥିବା 'ହସିବ' ବା 'ହସ'ରୁ ଏସବୁର ଧାରଣା ଜନ୍ମୁ ନାହିଁ । ଏଣୁ କାଳ, ପୁରୁଷ, ବଚନର ସୂଚନା ପ୍ରଦାନ କରୁଥିବା ପଦକୁ ହିଁ କ୍ରିୟାପଦ କହନ୍ତି । ଅନ୍ୟପ୍ରକାରେ କହିଲେ ଧାତୁର ପ୍ରୟୋଗାତ୍ମକ ରୂପ ହେଉଛି କ୍ରିୟା ।

## ଧାତୁର ଶ୍ରେଣୀବିଭାଗ :

କ୍ରିୟାର ବିଭକ୍ତିବିହୀନ ବା ପ୍ରତ୍ୟୟ-ଶୂନ୍ୟ ରୂପକୁ ଧାତୁ କୁହାଯାଏ । ଏହି ଧାତୁ ହେଉଛି କ୍ରିୟାର ମୂଳଉତ୍ସ ବା ମୂଳପିଣ୍ଡ ।

ଉତ୍ପତ୍ତି ଦୃଷ୍ଟିରୁ ଓଡ଼ିଆ ଧାତୁକୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଏ । ଯଥା-ମୌଳିକ ବା ପ୍ରାଥମିକ ଧାତୁ ଓ ବୈକୃତିକ ବା ବ୍ୟୁତ୍ପନ୍ନ ଧାତୁ ।

ମୁଖ୍ୟତଃ ମୌଳିକ ଧାତୁର ତିନୋଟି ଶ୍ରେଣୀ ରହିଛି । ଯଥା- (୧) ତତ୍‌ସମ, (୨) ତଦ୍‌ଭବ, (୩) ଦେଶଜ । କେହିକେହି ବୈଦେଶିକ ଧାତୁକୁ ମୌଳିକ ଧାତୁର ଅନ୍ତର୍ଭୁକ୍ତ କରି ଚାରୋଟି ଶ୍ରେଣୀ କରିଥା'ନ୍ତି ।

ବୈକୃତିକ ବା ବ୍ୟୁତ୍ପନ୍ନ ଧାତୁକୁ ଦୁଇଭାଗରେ ବିଭକ୍ତ କରାଯାଏ । ଯଥା- (୧) ପ୍ରଯୋଜକ ବା ପ୍ରେରଣାର୍ଥକ ଧାତୁ, (୨) ନାମଧାତୁ ।

## ମୌଳିକ ଧାତୁର ଶ୍ରେଣୀବିଭାଗ :

**୧ । ତତ୍‌ସମ ଧାତୁ-** ସଂସ୍କୃତ ଧାତୁକୁ ତତ୍‌ସମ ଧାତୁ କହନ୍ତି । ଆମ ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର କେତେକ ଧାତୁ ଅପରିବର୍ତ୍ତିତ ଭାବରେ ବ୍ୟବହୃତ ହେଉଛନ୍ତି । ସେଗୁଡ଼ିକ ମଧ୍ୟରୁ କେତେକର ଅର୍ଥ ସହ ଏକ ତାଲିକା ଦିଆଗଲା ।

| | | | | | | | | |
|---|---|---|---|---|---|---|---|---|
| ଅର୍ଚ୍ଚ୍ | - | ପୂଜାକରିବା | ଅର୍ଜ୍ | - | ଅର୍ଜିବା | ଅର୍ପ୍ | - | ଅର୍ପଣ କରିବା |
| ଈର୍ଷ୍ | - | ଈର୍ଷାକରିବା | କଷ୍ | - | କଷିବା | କମ୍ପ୍ | - | କମ୍ପିବା |
| କୁଟ୍ | - | କୁଟିବା | କୂଜ୍ | - | ରାବିବା | ଖେଳ୍ | - | ଖେଳିବା |
| ଗଣ୍ | - | ଗଣିବା | ଗର୍ଜ୍ | - | ଗର୍ଜିବା | ଗର୍ବ୍ | - | ଗର୍ବ କରିବା |
| ଘଟ୍ | - | ଘଟିବା | ଚର୍ | - | ଚରିବା | ଚଳ୍ | - | ଚଳିବା |
| ଚୁମ୍ବ୍ | - | ଚୁମ୍ବିବା | ଜପ୍ | - | ଜପିବା | ଦହ୍ | - | ଦହିବା |
| ନମ୍ | - | ନମିବା | ପାଳ୍ | - | ପାଳିବା | ପୂଜ୍ | - | ପୂଜିବା |
| ଫଳ୍ | - | ଫଳିବା | ବହ୍ | - | ବହିବା | ବର୍ଣ୍ଣ୍ | - | ବର୍ଣ୍ଣିବା |
| ବାଧ୍ | - | ବାଧିବା | ଭଜ୍ | - | ଭଜିବା | ଭଣ୍ | - | ଭଣିବା |
| ଭାଷ୍ | - | କହିବା | ଭାସ୍ | - | ଭାସିବା | ମନ୍ଥ୍ | - | ମନ୍ଥିବା |
| ମିଳ୍ | - | ମିଶିବା | ଯା | - | ଯିବା | ରଚ୍ | - | ରଚିବା |
| ରଟ୍ | - | ରଟିବା | ରୁଚ୍ | - | ରୁଚିବା | ଲଙ୍ଘ୍ | - | ଲଙ୍ଘିବା |
| ଲମ୍ବ୍ | - | ଲମ୍ବିବା | ଲୁଣ୍ଠ୍ | - | ଲୁଟିବା | ସହ୍ | - | ସହିବା |
| ସୂଚ୍ | - | ସୂଚାଇବା | ସେବ୍ | - | ସେବାକରିବା | ହସ୍ | - | ହସିବା |
| କ୍ଷମ୍ | - | କ୍ଷମିବା | | | | | | |

୨ । ତଦ୍‌ଭବ ଧାତୁ - ଯେଉଁ ଧାତୁଗୁଡ଼ିକ ସଂସ୍କୃତ ଧାତୁରୁ ପରିବର୍ତ୍ତିତ ଅବସ୍ଥାରେ ଆସି ଓଡ଼ିଆ ଭାଷାରେ ବ୍ୟବହୃତ ହେଉଅଛନ୍ତି, ସେମାନଙ୍କୁ ତଦ୍‌ଭବ ଧାତୁ କହନ୍ତି । ଯଥା-

| ସଂସ୍କୃତ | ତଦ୍‌ଭବ | ଅର୍ଥ | ସଂସ୍କୃତ | ତଦ୍‌ଭବ | ଅର୍ଥ |
|---|---|---|---|---|---|
| କଥ୍ | କହ୍ | କହିବା | କୃ | କର୍ | କରିବା |
| କ୍ରୀ | କିଣ୍ | କିଣିବା | କ୍ରନ୍ଦ୍ | କାନ୍ଦ୍ | କାନ୍ଦିବା |
| କୂର୍ଦ୍ | କୁଦ୍ | କୁଦିବା | କୃତ୍ | କାଟ୍ | କାଟିବା |
| ଖାଦ୍ | ଖା | ଖାଇବା | ଜି | ଜିଣ୍ | ଜିଣିବା |
| ଜ୍ୱଲ୍ | ଜଳ୍ | ଜଳିବା | ଜୀବ୍ | ଜୀ | ଜୀଇବା |
| ଜ୍ଞା | ଜାଣ୍ | ଜାଣିବା | ଗଠ୍ | ଗଢ଼୍ | ଗଢ଼ିବା |
| ଗୈ | ଗା | ଗାଇବା | ସ୍ଥା | ଥା | ଥିବା |
| ଦା | ଦେ | ଦେବା | ଧୃ | ଧର୍ | ଧରିବା |
| ଧାବ୍ | ଧାଁ | ଧାଇଁବା | ନୀ | ନେ | ନେବା |
| ପଠ୍ | ପଢ଼୍ | ପଢ଼ିବା | ପତ୍ | ପଡ୍ | ପଡ଼ିବା |
| ନୃତ୍ | ନାଚ୍ | ନାଚିବା | ପା | ପି | ପିଇବା |
| ପ୍ରଚ୍ଛ | ପୁଚ୍ଛ | ପୁଚ୍ଛିବା, ପଚାରିବା | ସ୍ଫୁଟ୍ | ଫୁଟ୍ | ଫୁଟିବା |
| ବୁଧ୍ | ବୁଝ୍ | ବୁଝିବା | ବନ୍ଧ୍ | ବାନ୍ଧ୍ | ବାନ୍ଧିବା |
| ବିଧ୍ | ବିନ୍ଧ୍ | ବିନ୍ଧିବା | ବୃଧ୍ | ବଢ଼୍ | ବଢ଼ିବା |
| ମୃଜ୍ | ମାଜ୍ | ମାଜିବା | ମନ୍ | ମଣ୍ | ମଣିବା |
| ମଥ୍ | ମନ୍ଥ୍ | ମନ୍ଥିବା | ମୃ | ମର୍ | ମରିବା |
| ରବ୍ | ରାବ୍ | ରାବିବା | ଲିମ୍ପ୍ | ଲିପ୍ | ଲିପିବା |
| ଶୀ | ଶୋ | ଶୋଇବା | ଶିକ୍ଷ୍ | ଶିଖ୍ | ଶିଖିବା |
| ଶ୍ରୁ | ଶୁଣ୍ | ଶୁଣିବା | ଶୁଧ୍ | ଶୁଝ୍ | ଶୁଝିବା |
| ହନ୍ | ହାଣ୍ | ହାଣିବା | ଭୂ | ହୋ | ହେବା |
| ରକ୍ଷ୍ | ରଖ୍ | ରଖିବା | ଦୃଶ୍ | ଦେଖ୍ | ଦେଖିବା |
| ଦୁହ୍ | ଦୁହଁ | ଦୁହିଁବା | ଗ୍ରଥ୍ | ଗୁନ୍ଥ | ଗୁନ୍ଥିବା |
| ଘୃଷ୍ | ଘଷ୍ | ଘଷିବା | ଚର୍ବ୍ | ଚୋବା | ଚୋବାଇବା |
| ଛିଦ୍ | ଛିଣ୍ଡା | ଛିଣ୍ଡାଇବା | ରଟ୍ | ରଡ୍ | ରଡ଼ିବା |
| ଭିଦ୍ | ଭେଦ୍ | ଭେଦିବା | ଜାଗୃ | ଜାଗ୍ | ଜାଗିବା |
| ବଣ୍ଟ୍ | ବାଣ୍ଟ୍ | ବାଣ୍ଟିବା | ଯୁଜ୍ | ଯୋଡ଼୍ | ଯୋଡ଼ିବା |

| ସଂସ୍କୃତ | - ତଦ୍‌ଭବ | - ଅର୍ଥ | ସଂସ୍କୃତ | - ତଦ୍‌ଭବ | - ଅର୍ଥ |
|---|---|---|---|---|---|
| ଭୁଜ୍ | - ଭୁଞ୍ଜ୍ | - ଭୁଞ୍ଜିବା | ଲିଖ୍ | - ଲେଖ୍ | - ଲେଖିବା |
| ଲଗ୍ | - ଲାଗ୍ | - ଲାଗିବା | ରଧ୍ | - ରାନ୍ଧ୍ | - ରାନ୍ଧିବା |
| ପଚ୍ | - ପାଚ୍ | - ପାଚିବା | ବୃଷ୍ | - ବର୍ଷ୍ | - ବର୍ଷିବା |
| ଶୁଭ୍ | - ଶୋଭ୍ | - ଶୋଭାପାଇବା | ଚୁର୍ | - ଚୋରି | - ଚୋରିକରିବା |
| ସ୍ଖଲ୍ | - ଖସ୍ | - ଖସିବା | ଯୁଧ୍ | - ଯୁଝ୍ | - ଯୁଝିବା |

**୩ । ଦେଶଜ ଧାତୁ** – ଯେଉଁ ଧାତୁମାନଙ୍କର ସଂସ୍କୃତ ଧାତୁମାନଙ୍କ ସହିତ ପତ୍ୟକ୍ଷ ବା ପରୋକ୍ଷ ସମ୍ପର୍କ ଥିବାର ବିଷୟ ସ୍ଥିରୀକୃତ ହୋଇନାହିଁ, ସେଗୁଡ଼ିକୁ ଦେଶଜ ଧାତୁ କୁହାଯାଏ । ଦେଶଜ ଧାତୁଗୁଡ଼ିକ ମଧ୍ୟ ବିଭିନ୍ନ ପ୍ରାଦେଶିକ ଭାଷାରୁ ଆସି ଓଡ଼ିଆ ଭାଷାରେ ମିଶିଥାଇ ପାରନ୍ତି କିମ୍ବା ଜନସାଧାରଣଙ୍କ ମୁଖରୁ ଏଗୁଡ଼ିକର ସୃଷ୍ଟି ହୋଇଥାଇପାରେ । ଏଯାଏଁ ଏମାନଙ୍କର ମୌଳିକତା ନିର୍ଣ୍ଣୀତ ହୋଇନାହିଁ ।

| ଧାତୁ | | ଅର୍ଥ | ଧାତୁ | | ଅର୍ଥ |
|---|---|---|---|---|---|
| ଅଟକ୍ | - | ଅଟକିବା | ଘୋଷାର୍ | - | ଘୋଷାରିବା |
| ଆଉଜ୍ | - | ଆଉଜିବା | ଚକଟ୍ | - | ଚକଟିବା |
| ଆଉଟ୍ | - | ଆଉଟିବା | ଚଢ଼୍ | - | ଚଢ଼ିବା |
| ଆକଟ୍ | - | ଆକଟିବା | ଚମକ୍ | - | ଚମକିବା |
| ଆଗୁଳ୍ | - | ଆଗୁଳିବା | ଚାଟ୍ | - | ଚାଟିବା |
| ଆଣ୍ଟ୍ | - | ଆଣ୍ଟିବା | ଚାହଁ | - | ଚାହିଁବା |
| ଉଞ୍ଚା | - | ଉଞ୍ଚେଇବା | ଛାଙ୍କ୍ | - | ଛାଙ୍କିବା |
| ଉଝାଳ୍ | - | ଉଝାଳିବା | ଛାଡ୍ | - | ଛାଡ଼ିବା |
| ଉହୁଙ୍କ୍ | - | ଉହୁଙ୍କିବା | ଛାଣ୍ | - | ଛାଣିବା |
| କଚାଡ୍ | - | କଚାଡ଼ିବା | ଛିଙ୍କ୍ | - | ଛିଙ୍କିବା |
| କାମୁଡ୍ | - | କାମୁଡ଼ିବା | ଟେକ୍ | - | ଟେକିବା |
| ଖରକ୍ | - | ଖରକିବା | ଠେଲ୍ | - | ଠେଲିବା |
| ଖରଡ୍ | - | ଖରଡ଼ିବା | ଡାକ୍ | - | ଡାକିବା |
| ଖିଙ୍କାର୍ | - | ଖିଙ୍କାରିବା | ଡୁବ୍ | - | ଡୁବିବା |
| ଖୁଣ୍ଟ୍ | - | ଖୁଣ୍ଟିବା | ଢଳ୍ | - | ଢଳିବା |
| ଗୁଞ୍ଜ୍ | - | ଗୁଞ୍ଜିବା | ଦରାଣ୍ଡ୍ | - | ଦରାଣ୍ଡିବା |
| ଘାଣ୍ଟ୍ | - | ଘାଣ୍ଟିବା | ପହଁର୍ | - | ପହଁରିବା |

| ଧାତୁ | | ଅର୍ଥ | ଧାତୁ | | ଅର୍ଥ |
|---|---|---|---|---|---|
| ପେଲ୍ | - | ପେଲିବା | ଭିଡ଼୍ | - | ଭିଡ଼ିବା |
| ପୋଡ଼୍ | - | ପୋଡ଼ିବା | ଭୁଲ୍ | - | ଭୁଲିବା |
| ଫାମ୍ପ୍ | - | ଫାମ୍ପିବା | ଭେଟ୍ | - | ଭେଟିବା |
| ବାଛ୍ | - | ବାଛିବା | ମାଗ୍ | - | ମାଗିବା |
| ବାଜ୍ | - | ବାଜିବା | ମେଣ୍ଟ୍ | - | ମେଣ୍ଟିବା |
| ବାଟ୍ | - | ବାଟିବା | ହଗ୍ | - | ହଗିବା |
| ବାଢ଼୍ | - | ବାଢ଼ିବା | ହଣ୍ଟାଳ୍ | - | ହଣ୍ଟାଳିବା |
| ବାହୁଡ଼୍ | - | ବାହୁଡ଼ିବା | ହମ୍ବାଳ୍ | - | ହମ୍ବାଳିବା |
| ବୁଡ଼୍ | - | ବୁଡ଼ିବା | ହାଙ୍କ୍ | - | ହାଙ୍କିବା |
| ବୁଲ୍ | - | ବୁଲିବା | ହାପୁଡ଼୍ | - | ହାପୁଡ଼ିବା |
| ବୋଲ୍ | - | ବୋଲିବା | ହାପୁର୍ | - | ହାପୁରିବା |
| ବୋବାଳ୍ | - | ବୋବାଳିବା | ହାବୁଡ଼୍ | - | ହାବୁଡ଼ିବା |

## ଦେଶଜ ଧାତୁର କ୍ରିୟାଭାବରେ ବ୍ୟବହାର :

ଛାଣ୍ - ମା' ପାପ(ମ୍ପ)ଡ **ଛାଣୁଛନ୍ତି** ।

ଭେଟ୍ - ଦେବ ବାଟରେ ବିଭୁକୁ **ଭେଟିଲା** ।

ଖୁମ୍ପ୍ - ପାରା ଚାଉଳ **ଖୁମ୍ପୁଛି** ।

ହଣ୍ଟାଳ୍ - ବାଘ ବଣରେ **ହଣ୍ଟାଳୁଛି** ।

ବାହୁଡ଼୍ - ଗୋରୁଗୋଠ ଘରକୁ **ବାହୁଡ଼ିଲେ** ।

୪ । **ବୈଦେଶିକ ଧାତୁ** - ଆମ ଭାଷାରେ ବୈଦେଶିକ ଶବ୍ଦର ପ୍ରଚଳନ ସହିତ କେତୋଟି ବୈଦେଶିକ ଧାତୁର ମଧ୍ୟ ବ୍ୟବହାର ରହିଛି; ମାତ୍ର ଏଗୁଡ଼ିକର ସଂଖ୍ୟା ସୀମିତ । ଯଥା- ପକଡ଼୍, ବଦଳ୍, ବିଗଡ଼୍ ଇତ୍ୟାଦି ।

## ବୈକୃତିକ ବା ବ୍ୟୁତ୍ପନ୍ନ ଧାତୁର ଶ୍ରେଣୀବିଭାଗ :

**ପ୍ରୟୋଜକ ଧାତୁ ବା ପ୍ରେରଣାର୍ଥକ ଧାତୁ**- ଯେଉଁ ଧାତୁରୁ କେହି ଅନ୍ୟଦ୍ୱାରା କାର୍ଯ୍ୟ କରାଉଥିବାର ଜଣାଯାଏ, ତାକୁ ପ୍ରୟୋଜନ ବା ପ୍ରେରଣାର୍ଥକ ଧାତୁ କୁହାଯାଏ । ଯଥା-

ଶିଳ୍ପୀ ମୂର୍ତ୍ତି **ଗଢୁଛି** । ଗଢ଼୍ - ମୌଳିକ ଧାତୁ

ରାଜା ଶିଳ୍ପୀଦ୍ୱାରା ମୂର୍ତ୍ତି **ଗଢ଼ାଉଛନ୍ତି** । ଗଢ଼ା - ପ୍ରୟୋଜକ ଧାତୁ

ସାଧାରଣତଃ ମୂଳ ଓଡ଼ିଆ ଧାତୁରେ 'ଆ' ପ୍ରତ୍ୟୟ ଯୋଗ କରି ପ୍ରଯୋଜକ ଧାତୁ ବା ପ୍ରେରଣାର୍ଥକ ଧାତୁ ଗଠନ କରାଯାଏ । ଯଥା-

କର୍ + ଆ = କରା, ପଢ୍ + ଆ = ପଢ଼ା, ଦେଖ୍ + ଆ = ଦେଖା

କରା, ପଢ଼ା ଓ ଦେଖା ଗୋଟିଏ ଗୋଟିଏ ପ୍ରଯୋଜକ ଧାତୁ ।

ବିଭିନ୍ନ କାଳରେ ପ୍ରଯୋଜକ ଧାତୁ ନିଷ୍ପନ୍ନ କ୍ରିୟାଗୁଡ଼ିକର ବ୍ୟବହାର ହୋଇଥାଏ । ଯଥା-

ବର୍ତ୍ତମାନ କାଳ - ଶିକ୍ଷକ ଛାତ୍ରମାନଙ୍କୁ ନନ୍ଦନକାନନ **ଦେଖାଉଛନ୍ତି** ।

ଅତୀତ କାଳ - ବାପା ପୁଅକୁ ଦୂରବୀକ୍ଷଣ ଯନ୍ତ୍ର **ଦେଖାଇଲେ** ।

ଭବିଷ୍ୟତ କାଳ - ମୁଁ ତୁମକୁ ଆକାଶରେ ଧ୍ରୁବତାରା **ଦେଖାଇବି** ।

ଦେଖାଉଛନ୍ତି, ଦେଖାଇଲେ, ଦେଖାଇବି ଏକ ଏକ ପ୍ରେରଣାର୍ଥକ ପ୍ରଯୋଜକ କ୍ରିୟାପଦ । ପ୍ରେରଣାର୍ଥକ କ୍ରିୟା ପ୍ରେରଣାର୍ଥକ ଧାତୁ ବା ପ୍ରଯୋଜକ ଧାତୁରୁ ଗଠିତ ।

ଯେଉଁ କ୍ରିୟାଦ୍ୱାରା କେହି କିଛି କରାଇବାର ଜଣାଯାଏ, ତାହାକୁ ପ୍ରେରଣାର୍ଥକ କ୍ରିୟା କୁହାଯାଏ ।

ପ୍ରେରଣାର୍ଥକ କ୍ରିୟାଗୁଡ଼ିକର ଧାତୁ 'ଆ' କାରାନ୍ତ ଅଟନ୍ତି ଏବଂ ଏଗୁଡ଼ିକର କ୍ରିୟାବାଚକ ବିଶେଷ୍ୟ ଭାବେ ପରିଚିତ । କେତେକ କ୍ଷେତ୍ରରେ ବିଶେଷଣ ଭାବେ ବ୍ୟବହୃତ ହୋଇଥା'ନ୍ତି ।

କ୍ରିୟାବାଚକ ବିଶେଷ୍ୟ-

(କ) ପିଲାଟିର **ଲେଖା** ଅତି ସୁନ୍ଦର ।

(ଖ) ମୁଁ ଦିନ-**ଶୁଆ** ଛାଡ଼ି ଦେଇଛି । (ଦିନ-ଶୁଆ = ଦିନବେଳେ ଶୋଇବା)

(ଗ) ବନ୍ଧୁତାକୁ **ଦିଆନିଆ** ସୁନ୍ଦର ।

ବିଶେଷଣ ଭାବେ ବ୍ୟବହାର-

(କ) ତୁମର **ଛପା** ବହିଟି ମୋତେ ଦିଅ ।

(ଖ) ସବୁବେଳେ **ଧୁଆ** ଲୁଗା ପିନ୍ଧ ।

(ଗ) ମୁଁ ତୁମକୁ ଦେଇଥିବା **ଲେଖା** କାଗଜ ଖଣ୍ଡିକ ମୋତେ ଫେରାଇବ ।

କେତେଗୁଡ଼ିଏ ମୂଳଧାତୁ, ସେମାନଙ୍କର ପ୍ରେରଣାର୍ଥକ ଧାତୁରୂପ ଓ ଅର୍ଥ ପର ପୃଷ୍ଠାରେ ଦିଆଗଲା ।

| ମୂଳଧାତୁ | | ପ୍ରେରଣାର୍ଥକ ଧାତୁ | | ଅର୍ଥ | ମୂଳଧାତୁ | | ପ୍ରେରଣାର୍ଥକ ଧାତୁ | | ଅର୍ଥ |
|---|---|---|---|---|---|---|---|---|---|
| ଆଣ୍ | - | ଅଣା | - | ଅଣାଇବା | ଉଠ୍ | - | ଉଠା | - | ଉଠାଇବା |
| ଉଡ୍ | - | ଉଡ଼ା | - | ଉଡ଼ାଇବା | କାର୍ | - | କରା | - | କରାଇବା |
| କହ୍ | - | କୁହା | - | କୁହାଇବା | କାନ୍ଦ୍ | - | କନ୍ଦା | - | କନ୍ଦାଇବା |
| ଖା | - | ଖୁଆ | - | ଖୁଆଇବା | ଖେଳ୍ | - | ଖେଳା | - | ଖେଳାଇବା |
| ଗଢ୍ | - | ଗଢ଼ା | - | ଗଢ଼ାଇବା | ଗିଳ୍ | - | ଗିଳା | - | ଗିଳାଇବା |
| ଚଢ୍ | - | ଚଢ଼ା | - | ଚଢ଼ାଇବା | ଚର୍ | - | ଚରା | - | ଚରାଇବା |
| ଚଳ୍ | - | ଚଳା | - | ଚଳାଇବା | ଛାପ୍ | - | ଛପା | - | ଛପେଇବା |
| ଚାଲ୍ | - | ଚଲା | - | ଚଲାଇବା | ଜଳ୍ | - | ଜଳା | - | ଜଳେଇବା |
| ଡର୍ | - | ଡରା | - | ଡରେଇବା | ତରକ୍ | - | ତରକା | - | ତରକେଇବା |
| ତିନ୍ତ୍ | - | ତିନ୍ତା | - | ତିନ୍ତେଇବା | ଟେଢ଼ | - | ଟେଢ଼ା | - | ଟେଢ଼େଇବା |
| ଥୋ | - | ଥୁଆ | - | ଥୁଆଇବା | ଦଉଡ୍ | - | ଦଉଡ଼ା | - | ଦଉଡ଼ାଇବା |
| ଦେ | - | ଦିଆ | - | ଦିଆଇବା | ଦେଖ୍ | - | ଦେଖା | - | ଦେଖାଇବା |
| ଧର୍ | - | ଧରା | - | ଧରାଇବା | ଧୋ | - | ଧୁଆ | - | ଧୁଆଇବା |
| ନାଚ୍ | - | ନଚା | - | ନଚାଇବା | ନେ | - | ନିଆ | - | ନିଆଇବା |
| ପଡ୍ | - | ପକା | - | ପକାଇବା | ପାଚ୍ | - | ପଚା | - | ପଚାଇବା |
| ପି | - | ପିଆ | - | ପିଆଇବା | ପୋଡ୍ | - | ପୋଡ଼ା | - | ପୋଡ଼ାଇବା |
| ପୋତ୍ | - | ପୋତା | - | ପୋତାଇବା | ଫଳ୍ | - | ଫଳା | - | ଫଳାଇବା |
| ବଢ୍ | - | ବଢ଼ା | - | ବଢ଼ାଇବା | ବନ୍ଦ୍ | - | ବନ୍ଦା | - | ବନ୍ଦାଇବା |
| ବସ୍ | - | ବସା | - | ବସାଇବା | ବହ୍ | - | ବୁହା | - | ବୁହାଇବା |
| ବାଜ୍ | - | ବଜା | - | ବଜାଇବା | ବୁଲ୍ | - | ବୁଲା | - | ବୁଲାଇବା |
| ମର୍ | - | ମରା | - | ମରାଇବା | ରଖ୍ | - | ରଖା | - | ରଖାଇବା |
| ରହ୍ | - | ରୁହା | - | ରୁହାଇବା | ଲାଗ୍ | - | ଲଗା | - | ଲଗାଇବା |
| ଲେଖ୍ | - | ଲେଖା | - | ଲେଖାଇବା | ଶୁଣ୍ | - | ଶୁଣା | - | ଶୁଣାଇବା |
| ଶୋ | - | ଶୁଆ | - | ଶୁଆଇବା | ହସ୍ | - | ହସା | - | ହସାଇବା |
| ହାର୍ | - | ହରା | - | ହରାଇବା | ସହ୍ | - | ସୁହା | - | ସୁହାଇବା |

ପ୍ରଯୋଜକ ବା ପ୍ରେରଣାର୍ଥକ ଧାତୁଗୁଡ଼ିକ ଆକାରାନ୍ତ । କ୍ରିୟାପଦରେ ମଧ୍ୟ ସାଧାରଣତଃ ଆକାରାନ୍ତ ରହେ । କେତେକ ସ୍ଥଳରେ 'ଆ' 'ଏ' କାରାନ୍ତ ବା 'ଅ' କାରାନ୍ତ ହୋଇଥାଏ । ଯଥା–

'ଆ' କାରାନ୍ତ - କେଳା ମାଙ୍କଡ଼କୁ **ନଚାଇଲା** ।

ରମା ସାନଭାଇକୁ **ଖୁଆଇଲା** ।

'ଏ' କାରାନ୍ତ - ପୁରାଣପଣ୍ଡା ଭାଗବତ **ଶୁଣେଇଲେ** ।

ଶିକ୍ଷକ ଆମକୁ ପାଠ **ପଢ଼େଇଲେ** ।

'ଅ' କାରାନ୍ତ - ଗୋପୀନାଥ ଗୁଡ଼ି **ଉଡ଼ଉଛି** ।

ଛାପାକଳ ବହି **ଛପାଉଛି** ।

## ନାମଧାତୁ ଓ ନାମଧାତୁ କ୍ରିୟା

ସାଧାରଣତଃ କ୍ରିୟାପଦ ଧାତୁରୁ ନିଷ୍ପନ୍ନ; କିନ୍ତୁ ଆମ ଭାଷାରେ କେତେକ କ୍ରିୟାପଦ ଧାତୁ ଭିନ୍ନ ଶବ୍ଦରୁ ଗଠିତ । ଯଥା-

✡ ମଦନ ମକା **ଦାନ୍ତଉଛି** ।

✡ ଏବେ ଦୋଳଯାତ୍ରା **ପାଖେଇଲା** ।

✡ ଭାରତ ଦିନେ ନା ଦିନେ ହକିରେ **ଆଗେଇବ** ।

ଉପର ବାକ୍ୟ ତିନୋଟିରେ 'ଦାନ୍ତଉଛି', 'ପାଖେଇଲା' ଏବଂ 'ଆଗେଇବ' କ୍ରିୟାପଦ । 'ଦାନ୍ତଉଛି' 'ଦାନ୍ତ' ଶବ୍ଦରୁ, 'ପାଖେଇଲା' 'ପାଖ' ଶବ୍ଦରୁ ଏବଂ 'ଆଗେଇବ' 'ଆଗ' ଶବ୍ଦରୁ ଗଠିତ । 'ଦାନ୍ତ' ବିଶେଷ୍ୟ ପଦ, 'ପାଖ' ଓ 'ଆଗ' ଉଭୟ ବିଶେଷ୍ୟ ଏବଂ ବିଶେଷଣ ପଦ ।

ଯେଉଁ କ୍ରିୟାପଦ ବିଶେଷ୍ୟ ଓ ବିଶେଷଣ ଶବ୍ଦରୁ ନିଷ୍ପନ୍ନ ହୋଇଥାଏ, ତାକୁ ନାମଧାତୁ କ୍ରିୟା କହନ୍ତି । ଏହାର ଅନ୍ୟ ନାମ ଶବ୍ଦ କ୍ରିୟା ।

ବିଭକ୍ତିଶୂନ୍ୟ ବିଶେଷ୍ୟ ଓ ବିଶେଷଣକୁ ନାମ କୁହାଯାଏ । ନାମରୁ ଗଠିତ ଧାତୁକୁ ନାମଧାତୁ ଏବଂ ନାମଧାତୁରୁ ନିଷ୍ପନ୍ନ କ୍ରିୟାକୁ ନାମଧାତୁ କ୍ରିୟା କହନ୍ତି ।

ନାମଧାତୁ କ୍ରିୟା ପ୍ରେରଣାର୍ଥକ କ୍ରିୟା ସହିତ ସମାନ । ଏହାର ଧାତୁ ବିଶେଷ୍ୟ ଓ ବିଶେଷଣରୁ ଗଠିତ ଓ ଆକାରାନ୍ତ ହୋଇଥାଏ । 'ଆ' କେତେକ ସ୍ଥଳରେ 'ଏ' ବା 'ଅ' ହୋଇଥାଏ । ଯଥା-

ଝାଳ + ଆ = ଝାଳା - ଝାଳାଇବା, ଝାଳେଇବା

ସଲଖ + ଆ = ସଲଖା - ସଲଖାଇବା, ସଲଖେଇବା

କ୍ରିୟାରେ ବ୍ୟବହାର - ଝାଳାଏ, ଝାଳାଉଛି, ଝାଳଉଛି, ଝାଳାଇଲା, ଝାଳେଇଲା, ଝାଳାଇବ, ଝାଳେଇବ ।

ସଳଖାଏ, ସଳଖାଉଛି, ସଳଖଉଛି, ସଳଖାଇବା, ସଳଖେଇଲା, ସଳଖାଇବ, ସଳଖେଇବ ।

ସାଧାରଣତଃ ନାମଧାତୁର ଆକାରାନ୍ତ ରୂପଠାରୁ ଏକାରାନ୍ତ ରୂପର ବ୍ୟବହାର ଅଧିକ । କେତେକ ସ୍ଥଳରେ ମୂଳଶବ୍ଦ ଆକୃତିର ନାମଧାତୁ କ୍ରିୟା ହୋଇଥାଏ ।

## ବିଶେଷ୍ୟ ପଦରୁ ଗଠିତ କେତେକ ନାମଧାତୁ କ୍ରିୟା

| | | | | | |
|---|---|---|---|---|---|
| ଅଙ୍କୁର | - | ଅଙ୍କୁରିବା, ଅଙ୍କୁରାଇବା | ଅଣ୍ଟା | - | ଅଣ୍ଟେଇବା |
| ଅଣ୍ଡି | - | ଅଣ୍ଡିବା | ଆଖି | - | ଆଖେଇବା |
| ଆଗ | - | ଆଗେଇବା | ଆଡ଼ | - | ଆଡ଼େଇବା |
| ଆଣ୍ଠୁ | - | ଆଣ୍ଠେଇବା, ଆଣ୍ଠୋଇବା | ଆଦର | - | ଆଦରିବା |
| ଆଦେଶ | - | ଆଦେଶିବା | ଆହ୍ଲାଦ | - | ଆହ୍ଲାଦେଇବା |
| ଉଖୁରା | - | ଉଖୁରାଇବା | ଉଗାଳ | - | ଉଗାଳିବା |
| ଉଘା | - | ଉଘେଇବା | ଉଜୁଆଁ | - | ଉଜେଇଁବା |
| ଉତ୍ତର | - | ଉତାରିବା | ଉଧାର | - | ଉଧୁରିବା |
| ଓଟାର | - | ଓଟାରିବା | ଓଳଗି | - | ଓଳଗିବା |
| ଓସାର | - | ଓସାରିବା | ଓହର | - | ଓହରିବା |
| ଓହଳ | - | ଓହଳିବା | କଚଡ଼ା | - | କଚାଡ଼ିବା |
| କତୁରି | - | କତୁରିବା | କରତ | - | କରତିବା |
| କାଖ | - | କାଖେଇବା | କାତ | - | କାତେଇବା |
| କାନ | - | କାନେଇବା | କାନ୍ଧ | - | କାନ୍ଧେଇବା |
| କୁଞ୍ଚ | - | କୁଞ୍ଚିବା | କୁଣ୍ଡା | - | କୁଣ୍ଡେଇବା |
| କଷ | - | କଷିବା | କୁଣ୍ଢ | - | କୁଣ୍ଢେଇବା |
| କୁଣ୍ଢ | - | କୁଣ୍ଢେଇବା | କୁନ୍ଦ | - | କୁନ୍ଦିବା |
| କୋଳ | - | କୋଳେଇବା | କୁହୁଳା | - | କୁହୁଳିବା |
| ଖତ | - | ଖତେଇବା | ଖରଡ଼ା | - | ଖରଡ଼ିବା |
| ଖଳ | - | ଖଳିବା | ଖାଳ | - | ଖାଳେଇବା |
| ଖୁଣ | - | ଖୁଣିବା | ଖୁଞ୍ଚ | - | ଖୁଞ୍ଚିବା |
| ଖୁଣ୍ଟ | - | ଖୁଣ୍ଟିବା | ଖୁନ୍ଦା | - | ଖୁନ୍ଦିବା |
| ଗଜା | - | ଗଜେଇବା, ଗଜୁରିବା | ଗଦା | - | ଗଦେଇବା |
| ଗାର | - | ଗାରେଇବା | ଗାଲ | - | ଗାଲେଇବା |
| ଗୁଣ୍ଡ | - | ଗୁଣ୍ଡେଇବା | ଘଣା | - | ଘଣେଇବା |
| ଘେର | - | ଘେରିବା | ଘୋଡ଼ା | - | ଘୋଡ଼େଇବା |

ଘୋଷା - ଘୋଷିବା
ଚକଟା - ଚକଟିବା
ଚମକ - ଚମକିବା
ଚୂନା - ଚୂନେଇବା
ଛକ - ଛକିବା
ଛାଟ - ଛାଟିବା
ଛୁଆ - ଛୋଇବା
ଛେରା - ଛେରିବା
ଜାଡ଼ - ଜାଡ଼ିବା
ଜଟ(ା) - ଜଟେଇବା
ଜଣା - ଜଣେଇବା
ଜମା - ଜମାଇବା, ଜମେଇବା
ଝଟକ - ଝଟକିବା
ଝାଳ - ଝାଳିବା, ଝାଳେଇବା
ଝୁଣା - ଝୁଣିବା
ଠକ - ଠକିବା
ଠୁଳ - ଠୁଳେଇବା, ଠୁଳାଇବା
ଡଙ୍କ - ଡଙ୍କେଇବା
ଡାକ - ଡାକିବା
ଡେରି - ଡେରିବା
ତାଡ଼ - ତାଡ଼ିବା
ତେଣ୍ଡା - ତେଣ୍ଡିବା
ଥାପଡ଼ - ଥାପୁଡ଼ିବା, ଥାପଡ଼େଇବା
ଦାଗ - ଦାଗିବା
ଧକ୍କା - ଧକେଇବା
ଧାର - ଧାରିବା
ନାକ - ନାକେଇବା
ନିଃଶ୍ୱାସ - ନିଃଶ୍ୱାସିବା
ପଟା - ପଟେଇବା
ପହ୍ଲା - ପହ୍ଲେଇବା

ଚଉତ - ଚଉତିବା
ଚଡ଼କ - ଚଡ଼କିବା
ଚୁଗୁଲି - ଚୁଗୁଲେଇବା
ଚେର - ଚେରେଇବା
ଛନ୍ଦ - ଛନ୍ଦିବା
ଛାଇ - ଛାଇିବା
ଛୁଟି - ଛୁଟିବା
ଛୋଟ, ଛୋଟା - ଛୋଟେଇବା
ଜପ - ଜପିବା
ଜନ୍ତା - ଜନ୍ତିବା
ଜୋତ - ଜୋତିବା
ଝଲକ - ଝଲକିବା
ଝାଟୁଆ - ଝାଟେଇବା
ଟାଙ୍ଗି - ଟାଙ୍ଗିବା
ଠାର - ଠାରିବା
ଠେଙ୍ଗା - ଠେଙ୍ଗିବା, ଠେଙ୍ଗେଇବା
ଡର - ଡରିବା, ଡରେଇବା
ଡିଆଁ - ଡେଇଁବା
ଢୋକ - ଢୋକିବା
ତାତି - ତାତିବା, ତତେଇବା
ତେଲ - ତେଲେଇବା
ଦଣ୍ଡ - ଦଣ୍ଡିବା
ଦାନ୍ତ - ଦାନ୍ତେଇବା
ଧମକ - ଧମକେଇବା
ନଖ - ନଖେଇବା
ନାଳ - ନାକେଇବା
ପଛ - ପଛେଇବା
ପଲ୍ଲବ - ପଲ୍ଲବିବା
ସ୍ୱପ୍ନ - ସ୍ୱପ୍ନେଇବା

ପଢ଼ - ପଢ଼ୁଡ଼ିବା
ପାଖ - ପାଖେଇବା
ପାଣି - ପାଣେଇବା
ପୂଜ - ପୂଜେଇବା
ପ୍ରଭାତ - ପ୍ରଭାତିବା
ଫେଣ - ଫେଣିବା, ଫେଣେଇବା
ବଥା - ବଥେଇବା
ବାଟ - ବାଟେଇବା
ବେଙ୍ଗଳା - ବେଙ୍ଗୁଳିବା
ଭଅଁର - ଭଅଁ(ଉଁ)ରିବା
ଭୋକ - ଭୋକେଇବା
ମଙ୍ଗଳ - ମଙ୍ଗୁଳିବା
ମନ୍ଦା - ମନ୍ଦେଇବା
ମୁକୁଳ - ମୁକୁଳିବା
ମୁଣ୍ଡ - ମୁଣ୍ଡେଇବା
ମେଣ୍ଢା - ମେଣ୍ଢେଇବା
ରାଗ - ରଗେଇବା
ଲଟା - ଲଟେଇବା
ଲାଳ - ଲାଳେଇବା
ଶଙ୍କା - ଶଙ୍କିବା
ଶଢ଼ା - ଶଢ଼ିବା
ଶାପ - ଶାପିବା
ଶୁଧାର - ଶୁଧୁରିବା, ଶୁଧାରିବା
ଶୋଷ - ଶୋଷେଇବା
ହଷ୍ଟାଳ - ହଷ୍ଟାଳିବା
ହାବୁଡ଼ - ହାବୁଡ଼ିବା
ସମ୍ଭାଳ - ସମ୍ଭାଳିବା
ସେକ - ସେକିବା
ପାଟି - ପାଟେଇବା
ପାଳ - ପାଳେଇବା
ପିଳ - ପିଳେଇବା
ପେଟ - ପେଟେଇବା
ଫାନ୍ଦ - ଫାନ୍ଦିବା
ବଉଳ - ବଉଳିବା
ବନ୍ଧ - ବନ୍ଧେଇବା
ବାଢ଼ି - ବାଢ଼େଇବା
ବେତ - ବେତେଇବା
ଭାଙ୍ଗ - ଭାଙ୍ଗିବା
ମଙ୍ଗ - ମଙ୍ଗିବା
ମନ - ମନେଇବା
ମାଟି - ମାଟେଇବା
ମୁଠା - ମୁଠେଇବା
ମୁହଁ - ମୁହେଁଇବା
ରଙ୍ଗ - ରଙ୍ଗେଇବା
ରୁମ - ରୁମିବା
ଲାଜ - ଲାଜେଇବା
ଲେଉଟ - ଲେଉଟିବା
ଶଂଖୁ(ଖୋ)ଳା - ଶଂଖୁ(ଖୋ)ଳିବା
ଶାଣ - ଶାଣିବା
ଶିଆର - ଶିଆରିବା
ଶେଯ - ଶେଯେଇବା
ହଜା - ହଜିବା, ହଜେଇବା
ହାତ - ହାତେଇବା
ସକ(।) - ସକେଇବା
ସନ୍ତୁଳା - ସନ୍ତୁଳିବା
ଧମକ - ଧମକାଇବା

## ବିଶେଷଣରୁ ଗଠିତ କେତେକ ନାମଧାତୁ କ୍ରିୟା

| | | | |
|---|---|---|---|
| ଅଟକ | - | ଅଟକିବା, ଅଟକାଇବା | |
| ଆଣ୍ଠ | - | ଆଣ୍ଠିବା | |
| ଉକୁଟା | - | ଉକୁଟେଇବା | |
| ଉଦ୍ଜ୍ୱଳ | - | ଉଦ୍ଜ୍ୱଳିବା, ଉଜ୍ଜୁଳାଇବା | |
| ଉଡ଼ା | - | ଉଡ଼ିବା | |
| ଉଷୁମ | - | ଉଷୁମେଇବା | |
| ସୁତୁରା | - | ସୁତୁରେଇବା | |
| କଚା | - | କାଚିବା, କଚିବା | |
| କେମ୍ପା | - | କେମ୍ପେଇବା | |
| ଖସଡ଼ା | - | ଖସଡ଼ିବା | |
| ଗେହ୍ଲା | - | ଗେହ୍ଲେଇବା | |
| ଘାବରା | - | ଘାବରିବା, ଘାବରେଇବା | |
| ଚିକ୍କଣ | - | ଚିକ୍କଣେଇବା | |
| ଛୋଟ(।) | - | ଛୋଟେଇବା | |
| ଚିକ୍‌କଣ | - | ଚିକ୍‌କଣେଇବା | |
| ଜଣା | - | ଜଣେଇବା | |
| ଜାକ | - | ଜାକିବା | |
| ଝଙ୍କା | - | ଝଙ୍କାରିବା | |
| ଟାଣ | - | ଟାଣିବା | |
| ଡହରା | - | ଡହରେଇବା | |
| ଢିଲା | - | ଢିଲେଇବା | |
| ବଙ୍କା | - | ବଙ୍କେଇବା | |
| ତିଖ | - | ତିଖେଇବା | |
| ତେଢ଼ା | - | ତେଢ଼ିବା | |
| ଥେଣ୍ଟା | - | ଥେଣ୍ଟିବା | |
| ଦୋଅଡ଼ | - | ଦୋଅଡ଼ିବା | |
| ଧୂମା | - | ଧୂମେଇବା | |
| ଆଗ | - | ଆଗେଇବା | |
| ଇଡ଼ା | - | ଇଡ଼ିବା | |
| ଉଗୁଜା | - | ଉଗୁଜେଇବା | |
| ଉଞ୍ଚ | - | ଉଞ୍ଚାଇବା, ଉଞ୍ଚେଇବା | |
| ଉଭା | - | ଉଭେଇବା | |
| କଅଁଳ | - | କଅଁଳିବା, କଅଁଳେଇବା | |
| କମ୍ | - | କମା(ମେ)ଇବା | |
| ଖନା | - | ଖନେଇବା | |
| ଗୁଣ୍ଡ | - | ଗୁଣ୍ଡେଇବା | |
| ଗୋଟା | - | ଗୋଟେଇବା | |
| ଚଖା | - | ଚାଖିବା ଚଖେଇବା | |
| ଚିହ୍ନ | - | ଚିହ୍ନିବା | |
| ଛ(।)ପା | - | ଛପାଇବା, ଛପେଇବା | |
| ଜାଳ | - | ଜାଳିବା, ଜଳିବା | |
| ଜିତା | - | ଜିତିବା | |
| ଝିଙ୍କା | - | ଝିଙ୍କିବା | |
| ଠକ | - | ଠକିବା | |
| ଢିପ | - | ଢିପେଇବା | |
| ତରଳ | - | ତରଳିବା, ତରଳେଇବା | |
| ତୁଳ | - | ତୁଳେଇବା | |
| ଥକା | - | ଥକିବା | |
| ଦମକ | - | ଦମକିବା | |
| ଧଳା | - | ଧଉଳେଇବା | |
| ଧୁଆ | - | ଧୋଇବା | |

| | | | |
|---|---|---|---|
| ନରମ | - ନରମିବା | ନିବୁଜ | - ନିବୁଜିବା |
| ନୀରବ | - ନୀରବିବା | ପଛ | - ପଛେଇବା |
| ପଙ୍ଗୁ | - ପେଙ୍ଗେଇବା | ପାକଳ | - ପାକଳେଇବା |
| ପାତଳ, ପତଳା | - ପାତଳେଇବା, ପତଳେଇବା | ଫଡ଼ା | - ଫାଡ଼ିବା |
| | | ଫଟା | - ଫଟେଇବା |
| ଫମ୍ପା | - ଫାମ୍ପିବା | ଫାଙ୍କ | - ଫାଙ୍କିବା |
| ଫୁଟା | - ଫୁଟିବା, ଫୁଟେଇବା | ଫୁଲା | - ଫୁଲିବା, ଫୁଲେଇବା |
| ଭିଜା | - ଭିଜାଇବା, ଭିଜେଇବା | ମେଲା | - ମେଲା(ଲେ)ଇବା |
| ମୋଟା | - ମୋଟେଇବା | ରଙ୍ଗ | - ରଙ୍ଗେଇବା |
| ରମ୍ପା | - ରାମ୍ପିବା | ରୁଣ୍ଡ | - ରୁଣ୍ଡେଇବା |
| ଲମ୍ବ | - ଲମ୍ବେଇବା | ଶୀତ | - ଶୀତେଇବା |
| ଶୀତଳ | - ଶୀତଳାଇବା | ଶୁଖା | - ଶୁଖିବା, ଶୁଖେଇବା |
| ଶୂଳା | - ଶୂଳେଇବା | ସଜାଡ଼ | - ସଜାଡ଼ିବା |
| ସଫା | - ସଫେଇବା | ସଲଖ | - ସଲଖିବା, ସଲଖେଇବା |
| ସାଉଁଳିଆ | - ସାଉଁଳିବା | ସାଉଁଳା | - ସାଉଁଳେଇବା |
| ସୋଡ଼କା | - ସୋଡ଼କେଇବା | ହତାଶ | - ହତାଶିବା |
| ହରବର | - ହରବରେଇବା | ହଜା | - ହଜେଇବା |
| ହୁଗୁଳା | - ହୁଗୁଳେଇବା | ହେଣ୍ଟା | - ହେଣ୍ଟିବା |

✡ ଆପଣ – ଏହା ସର୍ବନାମ, ଏହି ଆପଣ ସର୍ବନାମରୁ ଏବେ ଆପଣାଇବା, ଆପଣେଇବା କ୍ରିୟାର ବ୍ୟବହାର ହେଉଅଛି ।

## ଏକକ କ୍ରିୟା

ଗୋଟିଏ ଧାତୁ ଓ ଗୋଟିଏ କ୍ରିୟା (ଧାତୁ) ବିଭକ୍ତିକୁ ନେଇ ଗଠିତ କ୍ରିୟାପଦକୁ ଏକକ କ୍ରିୟାପଦ କହନ୍ତି । ଯଥା- ପଢ଼େ-ପଢ଼୍+ଏ, ପଢ଼ନ୍ତି- ପଢ଼୍+ଅନ୍ତି, ପଢୁ- ପଢ଼୍+ଉ ।

ପଢ଼େ, ପଢ଼ନ୍ତି, ପଢୁ କ୍ରିୟାରେ 'ପଢ଼୍' ଧାତୁ ଗୋଟିଏ ଥର ଲେଖାଏଁ ବ୍ୟବହୃତ ହୋଇଛି ଏବଂ ପ୍ରତ୍ୟେକ କ୍ରିୟାରେ 'ଏ', 'ଅନ୍ତି' ଓ 'ଉ' କ୍ରିୟାବିଭକ୍ତି ଥରେ ଥରେ ଲାଗିଛି ।

## ଯୌଗିକ କ୍ରିୟା

ମୁଖ୍ୟ ଓ ଗୌଣ (ସାହାଯ୍ୟକାରୀ) ଧାତୁରୁ ଗଠିତ କ୍ରିୟାକୁ ଯୌଗିକ କ୍ରିୟା କୁହାଯାଏ । ମୁଖ୍ୟ ଧାତୁରେ 'ଉ' ବା 'ଇ' ପ୍ରତ୍ୟୟ ଲାଗିଥାଏ ଏବଂ ଗୌଣ ଧାତୁରେ ଧାତୁବିଭକ୍ତି (କ୍ରିୟାବିଭକ୍ତି) ଲାଗିଥାଏ ।

ଯଥା- ଲେଖୁଅଛି- (ଲେଖ୍ + ଉ, ଅଛ୍ + ଇ), ଲେଖିଅଛି - (ଲେଖ୍ + ଇ, ଅଛ୍ + ଇ), ଲେଖୁଥାଉ - (ଲେଖ୍ + ଉ, ଥା + ଉ), ଲେଖିଥାଉ - (ଲେଖ୍ + ଇ, ଥା+ଉ) ।

ସମସ୍ତ ଯୌଗିକ କ୍ରିୟାରେ ଗୋଟିଏ ମୁଖ୍ୟ ଧାତୁ ଓ ଅନ୍ୟଗୋଟିଏ ଗୌଣ ଧାତୁ ବା ସାହାଯ୍ୟକାରୀ ଧାତୁ ଥାଏ । ସାହାଯ୍ୟକାରୀ ଧାତୁ ମାତ୍ର ଦୁଇଟି- 'ଅଛ୍' ଓ 'ଥା' । ମୁଖ୍ୟ ଧାତୁରେ ଲାଗୁଥିବା 'ଉ' ପ୍ରତ୍ୟୟ କ୍ରିୟାର ଅସମ୍ପନ୍ନସୂଚକ ଓ 'ଇ' ପ୍ରତ୍ୟୟ ସମ୍ପନ୍ନତାସୂଚକ ଅଟେ ।

## ସମାପିକା ଓ ଅସମାପିକା କ୍ରିୟା

(କ) ରମେଶ ପୁରୀ **ଗଲା** ।

(ଖ) ରମେଶ ପୁରୀ **ଯାଇ** ସନ୍ଧ୍ୟାରେ ଫେରିଲା ।

'କ' ବାକ୍ୟରେ 'ଗଲା' କ୍ରିୟାରୁ ବାକ୍ୟଟି ଶେଷ ହୋଇଥିବାର ଜଣାଯାଉଛି ଏବଂ ଠିକ୍ ଅର୍ଥବୋଧ ମଧ୍ୟ ହେଉଛି । 'ଖ' ବାକ୍ୟରେ 'ଯାଇ' କ୍ରିୟାପଦଦ୍ୱାରା ବାକ୍ୟର ପୂର୍ଣ୍ଣତା ଜଣାଯାଉନାହିଁ । ଆଉକିଛି ବକ୍ତବ୍ୟ ଥିଲା ପରି ବୁଝାପଡୁଛି ।

ଯେଉଁ କ୍ରିୟାପଦ ଦ୍ୱାରା ବାକ୍ୟର ସମାପ୍ତି ବା ସମ୍ପୂର୍ଣ୍ଣତା ସୂଚିତ ହୋଇଥାଏ, ତାହା **ସମାପିକା** କ୍ରିୟା ଏବଂ ଯେଉଁ କ୍ରିୟାପଦଦ୍ୱାରା ବାକ୍ୟର ଅସମାପ୍ତି ବା ଅସମ୍ପୂର୍ଣ୍ଣତା ଉପଲବ୍ଧି ହୁଏ, ତାହା **ଅସମାପିକା** କ୍ରିୟା ।

ଏଣୁ 'ଗଲା' ସମାପିକା କ୍ରିୟା ଏବଂ 'ଯାଇ' ଅସମାପିକା କ୍ରିୟା । କେତେକ ସମାପିକା କ୍ରିୟାର ବ୍ୟବହାର-

(କ) ଶିଙ୍ଗ **ଧରିବି** ମୁଁ, କ୍ଷୀର ଖାଇବ ତୁମେ ।

(ଖ) **ବର୍ଷନ୍ତି** ମହୀମୁଖେ ନଇଁ ଅମ୍ବୁଦେ ।

(ଗ) ଖଳବଚନ ଯଥା **ସହେ** ସୁଜନ ।

(ଘ) ରହ, ମୁଁ **ଆସୁଛି** ।

(ଙ) ଭୀଷ୍ମ **ଥିଲେ** ମହାଭାରତର ଅନୁପମ ଉଜ୍ଜ୍ୱଳ ଚରିତ୍ର ।

## ଅସମାପିକା କ୍ରିୟାର ବିଭିନ୍ନ ରୂପ ଓ ବ୍ୟବହାର

୧ । ନିମିତ୍ତ ଅର୍ଥରେ ଅସମାପିକା କ୍ରିୟା :

(କ) ବୋହୂ ପାଣି **ଆଣି** ଯାଇଅଛି । (ଆଣିବା ନିମିତ୍ତ)

(ଖ) ଦେବ ଦଶହରା **ଦେଖି** ଯାଇଛି । (ଦେଖିବା ନିମିତ୍ତ)

(ଗ) ଭିକାରି ଭିକ **ମାଗି** ଆସିଛି । (ମାଗିବା ପାଇଁ)

(ଘ) ଦୀପକ ବହି **କିଣି** ଯାଉଛି । (କିଣିବା ପାଇଁ)

୨ । ସମାପିକା କ୍ରିୟାର ପୂର୍ବବର୍ତ୍ତୀ କାର୍ଯ୍ୟରେ ସୂଚନା ପ୍ରଦାନକାରୀ ଅସମାପିକା କ୍ରିୟା :

(କ) ସେବା **କରି** ଲୋକ ଧନ୍ୟ ହୁଏ ।

(ଖ) ଚନ୍ଦନ ଜଳଖିଆ **ଖାଇ** ଖେଳିବ ।

(ଗ) ତୁମେ ପାଠ **ପଢ଼ି** ଯଶସ୍ୱୀ ହୁଅ ।

ଏହି ପ୍ରକାର ଅସମାପିକା କ୍ରିୟା 'ପରେ' ବା 'ଅନନ୍ତର' ଅର୍ଥ ପ୍ରକାଶ କରେ ।

୩ । ଦୁଇଟି କାର୍ଯ୍ୟ ସମକାଳରେ ବା ଏକସଙ୍ଗରେ ହେଉଥିଲେ, ପ୍ରଥମ କାର୍ଯ୍ୟ ଠାରେ ଅସମାପିକା କ୍ରିୟା ହୁଏ ।

(କ) ମୁଁ ଘରେ **ଥାଇ** ମୋର ସବୁ ଚୋରିଗଲା । ('ଥାଇ' ଅର୍ଥ ଥିବା ସମୟରେ)

(ଖ) ତୁମକୁ **ଡାକୁଡାକୁ** ତୁମେ ଚାଲିଗଲଣି ।

(ଗ) ଲୋକଟି **ବସୁବସୁ** ପଡ଼ିଗଲା ।

(ଘ) **ଚାହୁଁଚାହୁଁ** ମେଘ ଆକାଶରେ ଘୋଟିଗଲା ।

(ଙ) ପଗଡ଼ି **ବାନ୍ଧୁବାନ୍ଧୁ** କଚେରି ବରଖାସ୍ତ ।

୪ । ଗୋଟିଏ କାର୍ଯ୍ୟର ହେତୁରୁ ବା ଫଳରୁ ଅନ୍ୟ କାର୍ଯ୍ୟ ଘଟିବା ବୁଝାଇଲେ, ହେତୁସୂଚକ କାର୍ଯ୍ୟଠାରେ ଅସମାପିକା କ୍ରିୟାର ବ୍ୟବହାର ହୁଏ ।

(କ) ନାଚି **ନ ଜାଣି** ଅଗଣା ଦୋଷ ।

(ଖ) ତନୁଜା ମୋବାଇଲ **ଦେଖିଦେଖି** ଆଖି ଖରାପ କଲା ।

(ଗ) ଜନାର୍ଦ୍ଦନବାବୁ ଜାତିର **ସେବା କରି** ରାଷ୍ଟ୍ରପତି ପୁରସ୍କାର ପାଇଲେ ।

(ଘ) କୃଷ୍ଣ ଗୋପକୁ **ନ ଫେରନ୍ତେ** ଯଶୋଦା ଅଧୀର ହେଲେ ।

୫ । ଗୋଟିଏ କାର୍ଯ୍ୟ ଅନ୍ୟ କାର୍ଯ୍ୟ ଉପରେ ନିର୍ଭର କରୁଥିଲେ ମୂଳକ୍ରିୟା ସହିତ ଲେ, ଇଲେ, ଇଥିଲେ, ଉଥିଲେ ଯୋଗ କରାଯାଇ ଗଠିତ ଅସମାପିକା କ୍ରିୟାର ବ୍ୟବହାର ହୁଏ ।

(କ) ତୁମେ **ଗଲେ** ସେ ନିଶ୍ଚୟ ଆସିବେ ।

(ଖ) ବାପା **ଖାଇଲେ** ଆମେ ଖାଇବୁ ।

(ଗ) ଅରବିନ୍ଦ **ଯାଇଥିଲେ** ପୁରୀ ଦେଖିଥା'ନ୍ତା ।

(ଘ) ଅସୀମା **ଗାଉଥିଲେ** ପୁରସ୍କାର ପାଇଥା'ନ୍ତା ।

(ଙ) ପ୍ରଧାନ ଶିକ୍ଷକ **କହୁଥିଲେ** ପିଲାଏ ଚୁପ୍‌ଚାପ୍ ଶୁଣନ୍ତି ।

(ଚ) **ମଲେ** ମରିବି, **କଲେ** କରିବି ।

କଳାଅକ୍ଷରର ଅସମାପିକା କ୍ରିୟାଗୁଡ଼ିକର ଅର୍ଥ ସର୍ତ୍ତ ବା ସମ୍ଭାବନାସୂଚକ ଅଟେ ।

୬ । ସରଳ ବାକ୍ୟରେ ସମାପିକା ଓ ଅସମାପିକା କ୍ରିୟାର କର୍ତ୍ତା ଏକ ହୁଏ । ଯଥା-

(କ) ଛାତ୍ରଟି ଭାତ **ଖାଇ** ସ୍କୁଲକୁ **ଗଲା** ।

'ଖାଇ' ଅସମାପିକା କ୍ରିୟା ଓ 'ଗଲା' ସମାପିକା କ୍ରିୟାର କର୍ତ୍ତା 'ଛାତ୍ର' ।

(ଖ) ଶିକ୍ଷକଙ୍କର ପାଟି **ଶୁଣି** ପିଲାଏ ଚୁପ୍ **ହୋଇଗଲେ** ।

'ଶୁଣି' ଅସମାପିକା ଓ 'ହୋଇଗଲେ' ସମାପିକା କ୍ରିୟାର କର୍ତ୍ତା 'ପିଲାଏ' । ସମାପିକା କ୍ରିୟା ପୂର୍ବରୁ ଅସମାପିକା କ୍ରିୟା ଘଟିଥାଏ ।

୭ । ମାତ୍ର କେତେକ ଜଟିଳ ବାକ୍ୟରେ ସମାପିକା ଓ ଅସମାପିକା କ୍ରିୟାର ପୃଥକ୍ କର୍ତ୍ତା ବ୍ୟବହୃତ ହୁଏ । ଯଥା-

(କ) **ସନ୍ଧ୍ୟା** ହୁଅନ୍ତେ **ପକ୍ଷୀମାନେ** ବସାକୁ ଫେରିଲେ ।

(ଖ) **ତୁମେ** ମୋତେ ନ କହିଲେ, **ମୁଁ** ଏ କାମ କରିପାରିବି ନାହିଁ ।

(ଗ) **ଭାରତ** ହକିରେ ଜିଣିଲେ, **ଦେଶବାସୀ** ଖୁସିହେବେ ।

୮ । ବାକ୍ୟରେ ସମାପିକା କ୍ରିୟାର କାଳ, ଭାବ ସହିତ ଅସମାପିକା କ୍ରିୟାର କାଳ, ଭାବ ସମାନ ଅଟେ । ଅନେକ ସ୍ଥାନରେ ପୁରୁଷ ବଚନର ମଧ୍ୟ ସମାନତା ଥାଏ । ଯଥା-

(କ) ସୈନିକ ଯୁଦ୍ଧକରେ ଏବଂ ଦେଶକୁ ରକ୍ଷାକରେ- ସୈନିକ ଯୁଦ୍ଧ **କରି** ଦେଶକୁ ରକ୍ଷା କରେ ।

(ଖ) ଆମ୍ଭେମାନେ ଯାଉଥିଲୁ, ବନ୍ଧୁଙ୍କୁ ଦେଖିଲୁ- ଆମ୍ଭେମାନେ **ଯାଉଯାଉ** ବନ୍ଧୁଙ୍କୁ ଦେଖିଲୁ ।

(ଗ) ତୁମେ ଯଦି କହିବ, ମୁଁ କରିବି- ତୁମେ **କହିଲେ** ମୁଁ କରିବି ।

(ଘ) ମେଘ ଉଠାଇଲା, ମୟୂର ନାଚକଲା-ମେଘ **ଉଠାନ୍ତେ** ମୟୂର ନାଚକଲା ।

୯ । ପଦ୍ୟରେ ସମାପିକା କ୍ରିୟା ସ୍ଥାନରେ ଅସମାପିକା କ୍ରିୟାର ବ୍ୟବହାର ହୋଇଥାଏ । ଯଥା-

(କ) ଦଣ୍ଡିବା ଶକ୍ତି ଯାର ଥାଇ (ଥାଏ)
ସେ ପୁଣି କ୍ଷମା ଆଚରଇ ।

(ଖ) ଦେଇଥିଲେ **ପାଇ** । (ପାଇବ)

(ଗ) ଅନେକ ଲୋକ ଯହିଁ **ମିଳି** (ମିଳନ୍ତି)
ଅବଶ୍ୟ ଉପୁଜଇ କଳି ।

(ଘ) ପିତାର ଯେହ୍ନୁ ମନ **ଜାଣି** (ଜାଣେ)
ସୁପୁତ୍ର ମଧ୍ୟେ ସେହ୍ନୁ **ଗଣି** । (ଗଣାଯାଏ)

୯ । ଯେକୌଣସି 'ଇ' କାରାନ୍ତ ଅସମାପିକା କ୍ରିୟା ସହିତ 'କରି' ଅସମାପିକା କ୍ରିୟା ବ୍ୟବହାର ହୋଇପାରେ । ଯଥା-

(କ) ଜିତେନ ଜଳଖିଆ **ଖାଇ** କରି ଖେଳିବ । (ଖାଇ+କରି)

(ଖ) ହମିଦ୍ **ହସି** କରି କହୁଛି । (ହସି+କରି)

(ଗ) ନୟନା ସୁନ୍ଦର **ନାଚି** କରି ପୁରସ୍କାର ପାଇଲା । (ନାଚି+କରି)

୧୦ । ଗୋଟିଏ ଆକୃତିର କ୍ରିୟାପଦ ସମାପିକା ଓ ଅସମାପିକା କ୍ରିୟା ହୋଇଥାଏ । ଯଥା-

(କ) ମୋ କଥା ଶୁଣି ସେମାନେ **ହସିଲେ** । (ସମାପିକା)

(ଖ) ଶିଶୁ **ହସିଲେ** ଦୁନିଆ ହସେ । (ଅସମାପିକା)

(ଗ) ଶିକ୍ଷକ ମୋତେ ନୀଳଶୈଳ ଉପନ୍ୟାସଟି ପଢ଼ିବାକୁ **ଦେଇଥିଲେ** ।(ସମାପିକା)

(ଘ) **ଦେଇଥିଲେ** ପାଇ । (ଅସମାପିକା)

(ଙ) ଆଈ ନାତିନାତୁଣୀଙ୍କୁ ଗପ **କହିଲେ** । (ସମାପିକା)

(ଚ) **କହିଲେ** କୁଳକୁଟୁମ୍ବକୁ ଲାଜ । (ଅସମାପିକା)

୧୧ । ବାକ୍ୟରେ କ୍ରମାନ୍ୱୟରେ ଏକାଧିକ ଅସମାପିକା କ୍ରିୟାର ବ୍ୟବହାର ହୋଇଥାଏ । ଯଥା-

(କ) କେତେକ ଲୋକ **ହସିଖେଳି, ଖାଇପିଇ** ସମୟ କଟାଇଥା'ନ୍ତି ।

(ଖ) **ଆସୁଆସୁ ଯାଉଯାଉ** ତ ତାଙ୍କର ସମୟ ଯାଉଛି, ଅନ୍ୟ କଥା ବୁଝିବେ କେତେବେଳେ ?

(ଗ) **ବୁଝିବିଚାରି** କାମକଲେ ପ୍ରମାଦ ନ ପଡ଼ଇ ଭଲେ ।

(ଘ) **ଖାଇପିଇ, ହଲିଟହଲି, ଯାଉଯାଉ** ଗାଡ଼ି ଚାଲିଗଲାଣି ।

## ଅମିଶ୍ର କ୍ରିୟା ଓ ମିଶ୍ର କ୍ରିୟା

(କ) ସୂର୍ଯ୍ୟ ପୂର୍ବଦିଗରେ **ଉଇଁଲେ** ।

(ଖ) ସୂର୍ଯ୍ୟ ପୂର୍ବଦିଗରେ **ଉଦିତ ହେଲେ** ।

(ଗ) ପୁରୋହିତ ମନ୍ତ୍ର **ପଢ଼ିଲେ** ।

(ଘ) ପୁରୋହିତ ମନ୍ତ୍ର **ପାଠକଲେ** ।

'କ', 'ଖ' ବାକ୍ୟରେ 'ଉଇଁଲେ' ଓ 'ଉଦିତ ହେଲେ' କ୍ରିୟା ଦୁଇଟିର ଅର୍ଥ ସମାନ । 'ଉଇଁଲେ' କ୍ରିୟା ଗୋଟିଏ ପଦରେ ଓ 'ଉଦିତ ହେଲେ' କ୍ରିୟା ଦୁଇଟି ପଦରେ ପ୍ରକାଶିତ ହୋଇଛି । ସେହିପରି 'ପଢ଼ିଲେ' ଓ 'ପାଠକଲେ' କ୍ରିୟାର ଅର୍ଥ ସମାନ; କିନ୍ତୁ 'ପଢ଼ିଲେ' କ୍ରିୟାଟି ଗୋଟିଏ ପଦରେ ଓ 'ପାଠକଲେ' କ୍ରିୟା ଦୁଇଟି ପଦରେ ପ୍ରକାଶିତ ।

ଗୋଟିଏ ପଦରେ ପ୍ରକାଶିତ କ୍ରିୟାକୁ ଅମିଶ୍ର କ୍ରିୟା କୁହାଯାଏ । ଦୁଇଟି ପଦରେ ପ୍ରକାଶିତ କ୍ରିୟାକୁ ମିଶ୍ରକ୍ରିୟା କୁହାଯାଏ ।

'ଉଇଁଲେ', 'ପଢ଼ିଲେ' ଅମିଶ୍ର କ୍ରିୟା ଏବଂ 'ଉଦିତ ହେଲେ' ଓ 'ପାଠକଲେ' ମିଶ୍ରକ୍ରିୟା । ପୁଣି 'ଉଇଁଲେ' ଅକର୍ମକ କ୍ରିୟା ଓ ପଢ଼ିଲେ ସକର୍ମକ କ୍ରିୟା ।

(କ) ଅକର୍ମକ ଅମିଶ୍ର କ୍ରିୟାକୁ ମିଶ୍ରକ୍ରିୟାରେ ପରିଣତ କରିବାକୁ ହେଲେ ଧାତୁରୁ ନିଷ୍ପନ୍ନ ବିଶେଷଣ ପଦ ସହିତ 'ହୋ' ଧାତୁକ୍ରିୟାର ସଂଯୋଗ ହୋଇଥାଏ । ଯଥା–

| **ଅକର୍ମକ ଅମିଶ୍ରକ୍ରିୟା** | **ଅକର୍ମକ ମିଶ୍ରକ୍ରିୟା** |
|---|---|
| ଶୁଖିଲା | ଶୁଷ୍କହେଲା |
| ଜୀଇଛି | ଜୀବିତଅଛି |
| ଜାଗିବ | ଜାଗ୍ରତହେବ |
| ମରିବା | ମୃତହେବା |
| ପାଚିବା | ପକ୍ୱହେବା |
| କମ୍ପିବା | କମ୍ପିତହେବା |
| ଛିଣ୍ଡିବା | ଛିନ୍ନହେବା |
| ଜନ୍ମିବା | ଜାତହେବା |
| ବଢ଼ିବା | ବର୍ଦ୍ଧିତହେବା |
| ପଡ଼ିବା | ପତିତହେବା |

(ଖ) କେତେକ କ୍ଷେତ୍ରରେ ଅକର୍ମକ ଅମିଶ୍ରକ୍ରିୟାରୁ ମିଶ୍ରକ୍ରିୟା ଗଠନ କରିବାଲାଗି 'ହୋ' ଧାତୁ କ୍ରିୟା ଯୋଗ ନ କରି 'କର୍' ଧାତୁର କ୍ରିୟା ଯୋଗ କରାଯାଇଥାଏ । ଯଥା-

| | | | |
|---|---|---|---|
| ଶୋଇଲେ | ଶୟନକଲେ | ଗର୍ଜିବ | ଗର୍ଜନକରିବ |
| ଧାଉଁଅଛି | ଧାବନକରୁଛି | ଓହ୍ଲାଇବା | ଅବତରଣକରିବା |
| କାନ୍ଦିବା | କ୍ରନ୍ଦନକରିବା | ହସିବା | ହାସ୍ୟ କରିବା |

(ଗ) କିନ୍ତୁ ସକର୍ମକ ଅମିଶ୍ରକ୍ରିୟାକୁ ମିଶ୍ରକ୍ରିୟାରେ ପରିଣତ କରିବାକୁ ହେଲେ ଧାତୁକୁ ନିଷ୍ପନ୍ନ କ୍ରିୟାବାଚକ ବିଶେଷ୍ୟ ସହିତ 'କର' ଧାତୁର କ୍ରିୟାକୁ ଯୋଗ କରି ମିଶ୍ରକ୍ରିୟା ଗଠିତ ହୁଏ । ଯଥା-

| **ସକର୍ମକ ଅମିଶ୍ରକ୍ରିୟା** | **ସକର୍ମକ ମିଶ୍ରକ୍ରିୟା** |
|---|---|
| ଗାଉଛି | ଗାନକରୁଛି |
| ଶୁଣିଲେ | ଶ୍ରବଣକଲେ |
| ଦେଖିବ | ଦର୍ଶନକରିବ |
| ପିଇବା | ପାନକରିବା |
| ଫେରିବା | ପ୍ରତ୍ୟାବର୍ତ୍ତନକରିବା |
| ବହିବା | ବହନକରିବା |
| କିଣିବା | କ୍ରୟକରିବା |
| ଯିବା | ଗମନକରିବା |
| ସହିବା | ସହ୍ୟକରିବା |
| ଜିଣିବା | ଜୟକରିବା |
| ଖାଇବା | ଭୋଜନକରିବା |
| ପିନ୍ଧିବା | ପରିଧାନକରିବା |

(ଘ) 'ଇ' କାରାନ୍ତ ଅସମାପିକା କ୍ରିୟାପଦ ସହିତ ଉଠ୍, ପଡ଼୍, ପକା, ପାର୍, ସାର୍, ଦେ, ନେ, ଆଣ୍ ପ୍ରଭୃତି ଧାତୁ ନିଷ୍ପନ୍ନ କ୍ରିୟାପଦର ସଂଯୋଗରେ ଏକପ୍ରକାର ମିଶ୍ରକ୍ରିୟା ଗଠିତ ହୁଏ । ଏହିପ୍ରକାର ମିଶ୍ରକ୍ରିୟା ପଦରେ ବ୍ୟବହୃତ ଅସମାପିକା କ୍ରିୟାର ଅର୍ଥ ପ୍ରାଧାନ୍ୟ ରହେ । ଏହି ଅର୍ଥପ୍ରାଧାନ୍ୟ ସୃଷ୍ଟିରେ ପରବର୍ତ୍ତୀ କ୍ରିୟାଗୁଡ଼ିକ ସାହାଯ୍ୟ କରୁଥିବାରୁ ସେମାନଙ୍କୁ ସାହାଯ୍ୟକାରୀ କ୍ରିୟା କୁହାଯାଏ । ଯଥା-

| | |
|---|---|
| ଉଠ୍ – ଜଳିଉଠିଲା, | ପଡ୍ – ଶୋଇପଡ଼ିଲା |
| ଖା – ଖାଇଦେଲା, | ନେ – ନେଇଗଲା |

**ସାହାଯ୍ୟକାରୀ କ୍ରିୟାଦ୍ୱାରା ଗଠିତ କେତେକ ମିଶ୍ରକ୍ରିୟାର ଉଦାହରଣ-**

ଉଠ୍ - ଗର୍ଜିଉଠିଲା, ମାତିଉଠିଲା, କହିଉଠିଲା, ଫୁଲିଉଠିଲା, ହସିଉଠିଲା ।

ପଡ଼୍ - ଡେଇଁପଡ଼ିବା, ଖସିପଡ଼ିବା, ଭାଙ୍ଗିପଡ଼ିବା, ଲାଗିପଡ଼ିବା, ବସିପଡ଼ିବା ।

ପକା - କାନ୍ଦିପକାଇବା, କହିପକାଇବା, ମୂତିପକାଇଲା, ଗିଳିପକାଇଲା ।

ପାର୍ - ପଢ଼ିପାରିବା, କରିପାରିବା, ଶୁଣିପାରିବା, ମାରିପାରିବା, ଲେଖିପାରିବା, ଗଣିପାରିବା ।

ସାର୍ - ଲେଖିସାରିବା, ଖାଇସାରିବା, ପଢ଼ିସାରିବା, ଖେଳିସାରିବା, କହିସାରିବା ।

ଦେ - ଦେଇଦେବା, କହିଦେବା, ହସିଦେବା, ଚାହିଁଦେବା, ମାରିଦେବା, ସାରିଦେବା ।

ନେ - ମାରିନେବା, ବୋହିନେବା, ଲେଖିନେବା, ବାଣ୍ଟିନେବା, ଦେଖିନେବା ।

ଆଣ୍ - ବୋହିଆଣିବା, ମାଗିଆଣିବା, କିଣିଆଣିବା, ଗୋଡ଼େଇଆଣିବା, ଉଠାଇଆଣିବା ।

ଯା(ଗମ୍) - ପଢ଼ିଯିବା, ନେଇଯିବା, ଚାଲିଯିବା, ଖାଇଯିବା, ଧାଇଁଯିବା, ଉଡ଼ିଯିବା, ଶଢ଼ିଯିବା, ସରିଯିବା ।

**ତିନି ବା ତହିଁରୁ ଅଧିକ କ୍ରିୟାଥିବା ମିଶ୍ରକ୍ରିୟାର ଉଦାହରଣ-**

(କ) ସେ ଏକଥା **କହିଥାଇପାରନ୍ତି** । (କହି + ଥାଇ + ପାରନ୍ତି)

(ଖ) ମୁନା ଔଷଧତକ **ଖାଇଦେଇଥିବ** । (ଖାଇ + ଦେଇ + ଥିବ)

(ଗ) ମନସ୍ୱିନୀ ଏଠାରୁ **ପଢ଼ିସାରିଗଲା** । (ପଢ଼ି + ସାରି + ଗଲା)

(ଘ) ତୁମେ ମୋଠାରୁ **ଶୁଣିକରି ଯିବ** । (ଶୁଣି + କରି + ଯିବ)

(ଙ) ଖେଳାଳିମାନେ କଲିକତାରୁ **ଫେରିଆସୁଥାଇପାରନ୍ତି** । (ଚାରୋଟି କ୍ରିୟା) ଫେରି + ଆସୁ + ଥାଇ + ପାରନ୍ତି)

## ସକର୍ମକ, ଅକର୍ମକ ଓ ଦ୍ୱିକର୍ମକ କ୍ରିୟା

(କ) ମାଳବିକା ମାଛ କାଟୁଛି ।

(ଖ) ସୁମନ ସଙ୍ଗୀତ ଶୁଣୁଛି ।

'କ' ବାକ୍ୟରେ 'କାଟୁଛି' କ୍ରିୟାର କର୍ମ 'ମାଛ' ଏବଂ 'ଖ' ବାକ୍ୟରେ ଶୁଣୁଛି କ୍ରିୟାର କର୍ମ 'ସଙ୍ଗୀତ' । ତେଣୁ 'କାଟୁଛି' ଓ 'ଶୁଣୁଛି' କ୍ରିୟାପଦ ଦୁଇଟି ସକର୍ମକ ।

କ୍ରିୟାକୁ ଧରି କ'ଣ, କାହାକୁ, କୁଆଡ଼େ ପ୍ରଭୃତି ଲଗାଇ ପ୍ରଶ୍ନ କଲେ, ଯେଉଁ ଉତ୍ତର ମିଳେ, ତାହା କର୍ମପଦ । ଯଥା-

ପ୍ରଶ୍ନ - କ'ଣ କାଟୁଛି ? ଉତ୍ତର - ମାଛ ।

କ'ଣ ଶୁଣୁଛି ? ଉତ୍ତର - ସଙ୍ଗୀତ ।

ଯେଉଁ କ୍ରିୟାର କର୍ମ ଥାଏ, ତାକୁ ସକର୍ମକ କ୍ରିୟା କହନ୍ତି ।

**କେତେକ ସକର୍ମକ କ୍ରିୟାର ଉଦାହରଣ-**

| | | | | |
|---|---|---|---|---|
| ଅର୍ଜିବା | ଖାଇବା | ଚିମୁଟିବା | ଡରିବା | ମାନିବା |
| ଅର୍ପିବା | ଖେଳିବା | ଚିରିବା | ଡାକିବା | ମାପିବା |
| ଆଙ୍କିବା | ଖୋଲିବା | ଚୁମ୍ବିବା | ଦଳିବା | ମାରିବା |
| ଆଣିବା | ଖୋଷିବା | ଚୋରାଇବା | ଦେଖିବା | ରଟିବା |
| ଉକାରିବା | ଗଞ୍ଜିବା | ଛାଟିବା | ଦେବା | ଲଙ୍ଘିବା |
| ଉପାଡ଼ିବା | ଗଢ଼ିବା | ଛାଡ଼ିବା | ପଚାରିବା | ଲିପିବା |
| କମେଇବା | ଗପିବା | ଛୁଇଁବା | ପଶିବା | ଲେଖିବା |
| କରିବା | ଗ୍ରାସିବା | ଛେଦିବା | ପିଇବା | ଲେସିବା |
| କଷିବା | ଗୁଣିବା | ଜପିବା | ପିନ୍ଧିବା | ଲୋଡ଼ିବା |
| କହିବା | ଘାଣ୍ଟିବା | ଜିତିବା | ଧରିବା | ଶୁଣିବା |
| କାଚିବା | ଘୋରିବା | ଜାଳିବା | ଧୋଇବା | ଶିଖିବା |
| କାଟିବା | ଘୋଷିବା | ଝିଙ୍କିବା | ନେବା | ସହିବା |
| କାମୁଡ଼ିବା | ଚକଟିବା | ଝିଙ୍ଗାସିବା | ବାନ୍ଧିବା | ସିଇଁବା |
| କିଣିବା | ଚଷିବା | ଠକିବା | ବିକିବା | ହଟିବା |
| କିଳିବା | ଚାଖିବା | ଠେଲିବା | ବୁଣିବା | ହଜିବା |
| କୁଞ୍ଚିବା | ଚାଟିବା | ଠୁଙ୍କିବା | ମାଜିବା | ହାଙ୍କିବା |
| କୁଟିବା | ଚାହିଁବା | ଚରିବା | ଚାପିବା | ହାଣିବା |

(କ) ବିଜୁଳି ଆକାଶରେ **ଚମକୁଛି** ।

(ଖ) ପ୍ରତିଯୋଗୀମାନେ ପଡ଼ିଆରେ **ଧାଉଁଛନ୍ତି** ।

ଉପର ବାକ୍ୟଦ୍ୱୟରେ 'ଚମକୁଛି' ଓ 'ଧାଉଁଛନ୍ତି' ଅକର୍ମକ କ୍ରିୟାପଦ । କାରଣ ଏ ଦୁଇଟିର କୌଣସି କର୍ମପଦ ନାହିଁ ।

ଯେଉଁ କ୍ରିୟାର କର୍ମ ନ ଥାଏ, ତାହା ଅକର୍ମକ କ୍ରିୟା ।

**କେତେକ ଅକର୍ମକ କ୍ରିୟାର ଉଦାହରଣ-**

| | | | |
|---|---|---|---|
| ଉଇଁବା | ଚଡ଼କିବା | ଝୁଲିବା | ମରିବା |
| ଉଠିବା | ଚଢ଼ିବା | ଡେଇଁବା | ମିଳିବା |
| ଉଡ଼ିବା | ଚମକିବା | ଡୁବିବା | ମିଶିବା |
| ଓଲଟିବା | ଚଳିବା | ଦଉଡ଼ିବା | ରହିବା |
| ଓହ୍ଲାଇବା | ଚହଟିବା | ଦୁଲୁକିବା | ରାବିବା |
| କମ୍ପିବା | ଚହଲିବା | ନଇଁବା | ଲସିବା |
| କମିବା | ଚିଡ଼ିବା | ନାଚିବା | ଲୋଟିବା |
| କାନ୍ଦିବା | ଛିଙ୍କିବା | ପଡ଼ିବା | ହଲିବା |
| କାଶିବା | ଛିଡ଼ିବା | ପହଞ୍ଚିବା | ହସିବା |
| କୁନ୍ଥେଇବା | ଜମିବା | ପହଁରିବା | ହେବା |
| ଖସିବା | ଜଳିବା | ପାଚିବା | ଶୋଇବା |
| ଖେଳିବା | ଜନ୍ମିବା | ଫଳିବା | ଘଟିବା |
| ଜୀଇବା | ଫାଟିବା | ଘୁଞ୍ଚିବା | ଝଟକିବା |
| ବଞ୍ଚିବା | ଘୁମାଇବା | ଝଡ଼ିବା | ବଢ଼ିବା |
| ଘୂରିବା | ଝଲସିବା | ବର୍ଷିବା | ଘୋଟିବା |
| ଝାଉଁଳିବା | ବୁଡ଼ିବା | ଦବିବା | ବସିବା |

(କ) ପ୍ରଧାନ ଶିକ୍ଷକ **ପବିତ୍ରକୁ ଅଫିସ୍‌କୁ** ଡାକିଲେ ।

(ଖ) ନୀହାରିକା **ନଳିନୀକୁ ପାଠ** ପଚାରିଲା ।

ଏଠାରେ 'ଡାକିଲେ' କ୍ରିୟାର ଦୁଇଟି କର୍ମ- 'ପବିତ୍ରକୁ' ଓ 'ଅଫିସ୍‌କୁ' । ସେହିପରି ଦେଲା କ୍ରିୟାର ଦୁଇଟି କର୍ମ- 'ନଳିନୀ'କୁ ଓ 'ପାଠ' । ଏଣୁ 'ଡାକିଲେ' ଓ 'ପଚାରିଲେ' କ୍ରିୟାଦୁଇଟି ଦ୍ୱିକର୍ମକ ।

ଦ୍ୱିକର୍ମକ କ୍ରିୟାର ଆଉ କେତୋଟି ବାକ୍ୟରେ ଉଦାହରଣ-

(କ) ହେ ଜଗନ୍ନାଥ ! ମୁଁ **ତୁମକୁ ଧନ** ମାଗୁନାହିଁ ।

(ଖ) ଆପଣ **ମୋତେ ସତ** କହୁନାହାନ୍ତି ।

(ଗ) ମୁଁ **ରୋଗୀକୁ ପାଞ୍ଚଟଙ୍କା** ଦେଲି ।

(ଘ) ସମରେଶ **ଶିକ୍ଷକଙ୍କୁ ଉତ୍ତର** ଦେଇପାରିଲା ନାହିଁ ।

(ଙ) ଗିରୀଶ **ରମେଶକୁ** ଅନେକଥର ଚିଠି ଲେଖିଛି ।

'କ' ବାକ୍ୟରେ ତୁମକୁ, ଧନ; 'ଖ' ବାକ୍ୟରେ ମୋତେ; 'ଗ' ବାକ୍ୟରେ ରୋଗୀକୁ, ପାଞ୍ଚଟଙ୍କା, 'ଘ' ବାକ୍ୟରେ ଶିକ୍ଷକଙ୍କୁ, ଉତ୍ତର ଓ 'ଙ' ବାକ୍ୟରେ ରମେଶକୁ, ଚିଠି ଦୁଇଟି ଲେଖାଏଁ କର୍ମ ଅଛି ।

**ସକର୍ମକ କ୍ରିୟାର ଅକର୍ମକ ପରି ବ୍ୟବହାର-**

ମନୁଷ୍ୟ ଆଖିରେ ଦେଖେ, କାନରେ ଶୁଣେ ଓ ହାତରେ ଖାଏ ।

ଏହି ବାକ୍ୟରେ 'ଦେଖେ', 'ଶୁଣେ' ଓ 'ଖାଏ' କ୍ରିୟାର କୌଣସି ନିର୍ଦ୍ଦିଷ୍ଟ କର୍ମ ନାହିଁ; ମାତ୍ର କ୍ରିୟାଗୁଡ଼ିକ ଆପେକ୍ଷିକ । ଅର୍ଥାତ୍ ଦେଖିବା, ଶୁଣିବା ଓ ଖାଇବା କ୍ରିୟାର କର୍ମ ଉହ୍ୟ ରହିଛି । ଅନ୍ୟ ଉଦାହରଣ-

(କ) ରୀତା ରାନ୍ଧୁଛି । (ଖ) ଗୀତା ଗାଉଛି । (ଗ) କ୍ଷିତୀଶ ଖାଇଲା ।

ରାନ୍ଧୁଛି, ଗାଉଛି, ଖାଇଲା କ୍ରିୟାର କର୍ମ ନ ଥିବାରୁ ଏଗୁଡ଼ିକ ଅକର୍ମକ କ୍ରିୟା । କର୍ମ ଉହ୍ୟ ଅଛି ।

**ଅକର୍ମକ କ୍ରିୟାର ସକର୍ମକ ରୂପେ ବ୍ୟବହାର :**

କେତେକ ଅକର୍ମକ କ୍ରିୟା ନିଜର କ୍ରିୟାବାଚକ ବିଶେଷ୍ୟକୁ କର୍ମ ରୂପେ ଗ୍ରହଣ କରି ସକର୍ମକ ହୋଇଥାଏ ।

(କ) ସୁବାସ ଏମିତି **ପଡ଼ା** ପଡ଼ିଲା ଯେ ସପ୍ତାହ ଯାଏଁ ଶେଯରୁ ଉଠିପାରିବନି ।

(ଖ) ହରେଶ ପ୍ରକାର ପ୍ରକାର **ହସ** ହସିପାରେ ।

(ଗ) ମଧୁମିତା ଏହାଠାରୁ ବଳି **କାନ୍ଦଣା** କାନ୍ଦିପାରେ ।

**ସକର୍ମକ କ୍ରିୟା ପ୍ରେରଣାର୍ଥକ ହେଲେ ଦ୍ୱିକର୍ମକ ହୁଏ-**

(କ) ଶିକ୍ଷକ **ପିଲାମାନଙ୍କୁ କ୍ରିକେଟ** ଖେଳାଉଛନ୍ତି ।

(ଖ) ବାପା **ମା'ଙ୍କୁ ପୁରାଣ** ଶୁଣାଉଛନ୍ତି ।

(ଗ) ବନ୍ଧୁ **ମୋତେ କନ୍ୟାକୁମାରୀ** ଦେଖାଇଲେ ।

ଏଠାରେ 'ଖେଳାଉଛନ୍ତି' କ୍ରିୟାର ପିଲାମାନଙ୍କୁ, କ୍ରିକେଟ; ଶୁଣାଉଛନ୍ତି କ୍ରିୟାର ମା'ଙ୍କୁ, ପୁରାଣ; ଓ ଦେଖାଇଲେ କ୍ରିୟାର ମୋତେ, କନ୍ୟାକୁମାରୀ ଦୁଇଟି ଲେଖାଏଁ କର୍ମ ଅଛି ।

**ଅକର୍ମକ କ୍ରିୟା ପ୍ରେରଣାର୍ଥକ ହେଲେ ସକର୍ମକ ହୁଏ-**

(କ) ଡାକ୍ତରମାନେ ଅକ୍ଲାନ୍ତ ପରିଶ୍ରମ କରି ରୋଗୀଟିକୁ ଜୀଆଇଲେ ।

(ଖ) ମା' ଗୀତ ଗାଇ **ପୁଅକୁ** ଶୁଆଇଲେ ।

(ଗ) ବନ୍ଧୁ ହିଁ **ବନ୍ଧୁକୁ** ବିପଦରୁ ଖସାଏ ।

(ଘ) ରଘୁ **ରତନାକୁ** ରଗାଇଲା ।

(ଙ) କବିଲେଖକମାନେ ନିଜର ରଚନାଦ୍ୱାରା **ଦେଶବାସୀଙ୍କୁ** ଜଗାନ୍ତି ।

ଏଠାରେ ଅକର୍ମକ କ୍ରିୟା 'ଜୀଆଇଲେ'ର ରୋଗୀ, 'ଶୁଆଇଲେ'ର ପୁଅ, 'ଖସାଏ'ର ବନ୍ଧୁ, ରଗାଇଲାର 'ରତନା' ଓ 'ଜଗାନ୍ତି'ର 'ଦେଶବାସୀ'ଙ୍କୁ କର୍ମ ଅଟେ ।

## କ୍ରିୟାର କାଳ

କ୍ରିୟାର ସମୟସୂଚକ ରୂପକୁ କାଳ କୁହାଯାଏ ।

କ୍ରିୟାର କାଳ ସାଧାରଣତଃ ତିନି ପ୍ରକାରର । ଯଥା- ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ ।

**୧ । ବର୍ତ୍ତମାନ କାଳ** - ଯେଉଁ କ୍ରିୟାରୁ କାର୍ଯ୍ୟ ବର୍ତ୍ତମାନ ଚାଲିଥିବାର ଦେଖାଯାଏ, ତାହା ବର୍ତ୍ତମାନ କାଳ ।

ଯଥା - ମେଘ **ବର୍ଷୁଛି** । ତୁ **ଖେଳୁଛୁ** । ମୁଁ **ଲେଖୁଛି** ।

**୨ । ଅତୀତ କାଳ** - ଯେଉଁ କ୍ରିୟାରୁ କାର୍ଯ୍ୟ ଅତୀତରେ ଘଟିଥିଲା ବୋଲି ଜଣାଯାଏ, ତାହା ଅତୀତ କାଳ । ଯଥା-

ମହାବାତ୍ୟାରେ ଓଡ଼ିଶାର ଅଶେଷ କ୍ଷତି **ହୋଇଥିଲା** ।

ଆମ୍ଭେମାନେ ଦ୍ୱାରକା **ଯାଇଥିଲୁ** ।

ମହାତ୍ମାଗାନ୍ଧି ସତ୍ୟ-ଅହିଂସାର ଉପାସକ **ଥିଲେ** ।

**୩ । ଭବିଷ୍ୟତ କାଳ** - ଯେଉଁ କ୍ରିୟାରୁ କାର୍ଯ୍ୟ ଆଗକୁ ବା ଭବିଷ୍ୟତରେ ଘଟିବାର ସୂଚନା ମିଳେ, ତାହା ଭବିଷ୍ୟତ କାଳ । ଯଥା-

ଚନ୍ଦ୍ର **ଉଇଁବ** । ଫୁଲ **ଫୁଟିବ** । କୋଇଲି **ରାବିବ** ।

କ୍ରିୟାର ଏହି ତିନୋଟି ମୁଖ୍ୟ କାଳ ହେଲେହେଁ ପ୍ରତ୍ୟେକର ତିନୋଟି ଲେଖାଏଁ ଉପବିଭାଗ ରହିଛି । ଯଥା- ସାଧାରଣ, ସମ୍ପନ୍ନ ଓ ଅସମ୍ପନ୍ନ ।

## ବର୍ତ୍ତମାନ କାଳ

**୧ । ସାଧାରଣ ବର୍ତ୍ତମାନ :**

ସୂର୍ଯ୍ୟ ପ୍ରତିଦିନ କିରଣ ଦିଅନ୍ତି । ଆଷାଢ଼ ମାସରେ ଗୁଣ୍ଡିଚା ଯାତ୍ରା ହୁଏ ।

ଗଙ୍ଗା ହିମାଳୟରୁ ବହୁଅଛି । ସମୁଦ୍ରର ପାଣି ଲୁଣିଆ ଲାଗେ ।

ଦିଅନ୍ତି, ହୁଏ, ବହୁଅଛି ଓ ଲାଗେ ସାଧାରଣ ବର୍ତ୍ତମାନ କାଳର କ୍ରିୟା । ଯାହା ନିତ୍ୟ ଭାବରେ, ଯଥା ସମୟରେ ବା ସାଧାରଣ ଭାବରେ ଘଟେ, ତାହାକୁ ସାଧାରଣ ବର୍ତ୍ତମାନ କାଳ କହନ୍ତି । ଏହାକୁ ମଧ୍ୟ ନିତ୍ୟପ୍ରବୃତ୍ତ ବର୍ତ୍ତମାନ, ସାମାନ୍ୟ ବର୍ତ୍ତମାନ ବା ଶୁଦ୍ଧ ବର୍ତ୍ତମାନ କାଳ କୁହାଯାଏ ।

**୨ । ଅସମ୍ପନ୍ନ ବର୍ତ୍ତମାନ :**

ମୁଁ କଲମରେ ଲେଖୁଅଛି । ଶୁଭ୍ରା ସମ୍ବାଦପତ୍ର ପଢୁଅଛି ।

କୃଷକ ଧାନ କାଟୁଅଛି । ଗରମ ପବନ ବହୁଅଛି ।

ଲେଖୁଅଛି, ପଢୁଅଛି, କାଟୁଅଛି, ବହୁଅଛି ଓ ରାଗୁଅଛି ଅସମ୍ପନ୍ନ ବର୍ତ୍ତମାନ କାଳର କ୍ରିୟା । କ୍ରିୟାଗୁଡ଼ିକରୁ କାର୍ଯ୍ୟ ସରି ନ ଥିବାର ବୁଝାଯାଉଅଛି । କାର୍ଯ୍ୟ ଚାଲୁଥିବାରୁ କେହିକେହି ଏହାକୁ 'ଚଳିତ ବର୍ତ୍ତମାନ' କହନ୍ତି ।

**୩ । ସମ୍ପନ୍ନ ବର୍ତ୍ତମାନ :**

ଆମ୍ଭେମାନେ କୁରୁକ୍ଷେତ୍ର ଦେଖିଅଛୁ । ପ୍ରଭାତୀ ଜଳଖିଆ ଖାଇଅଛି ।

ସନ୍ଧ୍ୟା ଭଗବଦ୍‌ଗୀତା ପଢ଼ିଅଛି । ଶିଶୁଟି ଶୋଇଅଛି ।

ଦେଖିଅଛୁ, ଖାଉଛି, ପଢ଼ିଅଛି ଓ ଶୋଇଅଛି ସମ୍ପନ୍ନ ବର୍ତ୍ତମାନ କାଳର କ୍ରିୟା । ଯେଉଁ କ୍ରିୟାରୁ କାର୍ଯ୍ୟ ସରିବା ସହିତ ବର୍ତ୍ତମାନ ପର୍ଯ୍ୟନ୍ତ ତା'ର ପ୍ରଭାବ ଥିବାର ଜଣାଯାଏ, ତାହା ସମ୍ପନ୍ନ ବର୍ତ୍ତମାନ କାଳ ।

## ଅତୀତ କାଳ

**୧ । ସାଧାରଣ ଅତୀତ :**

ତୁ ସତ କହିଲୁ । ସେମାନେ କଟକରୁ ଫେରିଲେ । ମାଧବିକା ଫୁଲ ତୋଳିଲା । ଛାତ୍ରଛାତ୍ରୀ ବିଦ୍ୟାଳୟକୁ ଆସିଲେ ।

କହିଲୁ, ଫେରିଲେ, ତୋଳିଲା, ଆସିଲେ କ୍ରିୟାଗୁଡ଼ିକ ସାଧାରଣ ଅତୀତ କାଳର । କାର୍ଯ୍ୟ ନିକଟରେ ଘଟିଥିବାର ସୂଚିତ ହେଉଛି । ଯେଉଁ କ୍ରିୟାରୁ କାର୍ଯ୍ୟ ଅଳ୍ପ ସମୟ ତଳେ ସମ୍ପନ୍ନ ହୋଇଥିବାର ଜଣାଯାଏ, ତାହାକୁ ସାଧାରଣ ଅତୀତ ବା ସାମାନ୍ୟ ଅତୀତ କାଳର କ୍ରିୟା କୁହାଯାଏ ।

**୨ । ଅସମ୍ପନ୍ନ ଅତୀତ :**

ମୟୂର ନାଚୁଥିଲା । ବାଛୁରୀ ଗାଁ ଦାଣ୍ଡରେ ଡେଉଁଥିଲା ।

ମେଘ ଗର୍ଜୁଥିଲା । ଆମ୍ଭେମାନେ ବନ୍ୟା ଦେଖୁଥିଲୁ ।

'ନାଚୁଥିଲା', 'ଡେଇଁଥିଲା', 'ଗର୍ଜୁଥିଲା' ଓ 'ଦେଖୁଥିଲୁ' କ୍ରିୟା ଅତୀତ କାଳର ହେଲେହେଁ କାର୍ଯ୍ୟ ଚାଲୁଥିଲା ବା ଅସମ୍ପନ୍ନ ଥିଲା ବୋଲି ବୁଝାଯାଉଅଛି । ତେଣୁ ଏହା ଅସମ୍ପନ୍ନ ବା ଚଳିତ ଅତୀତ କାଳର କ୍ରିୟା । ଯେଉଁ କ୍ରିୟାରୁ କାର୍ଯ୍ୟ ଅତୀତରେ ଚାଲୁଥିଲା ଅର୍ଥାତ୍ ସରି ନ ଥିଲା ବୋଲି ଜଣାଯାଏ, ତାହା ଅସମ୍ପନ୍ନ ଅତୀତ-କାଳର କ୍ରିୟା ।

୩। **ସମ୍ପନ୍ନ ଅତୀତ :**

ମୁଁ ସୂର୍ଯ୍ୟୋପରାଗ ଦେଖିଥିଲି। କୁରୁକ୍ଷେତ୍ରରେ ମହାଭାରତ ଯୁଦ୍ଧ ହୋଇଥିଲା। ଦେଉଳରେ ଘଣ୍ଟ ବାଜିଥିଲା। ମେଘ ବର୍ଷିଥିଲା।

ଉପର ବାକ୍ୟଗୁଡ଼ିକରେ 'ଦେଖିଥିଲି', 'ହୋଇଥିଲା', ବାଜିଥିଲା' ଓ 'ବର୍ଷିଥିଲା' କ୍ରିୟାରୁ କାର୍ଯ୍ୟ ସମ୍ପନ୍ନ ବା ସରିଯାଇଥିବାର ସୂଚିତ ହେଉଛି।

ଯେଉଁ କ୍ରିୟାରୁ କାର୍ଯ୍ୟ ଅତୀତରେ ସମାପ୍ତ ହୋଇଥିବାର ଜଣାଯାଏ, ତାହା ସମ୍ପନ୍ନ ଅତୀତ କାଳର କ୍ରିୟା।

## ଭବିଷ୍ୟତ କାଳ

୧। **ସାଧାରଣ ଭବିଷ୍ୟତ :**

ଗ୍ରୀଷ୍ମଛୁଟି ପରେ ବିଦ୍ୟାଳୟ ଖୋଲିବ। ପାଞ୍ଚଟା ତିରିଶ ମିନିଟରେ ସନ୍ଧ୍ୟା ହେବ। କୁକୁର ଭୁକିବ। ଘଣ୍ଟା ବାଜିବ।

'ଖୋଲିବ', 'ହେବ', 'ଭୁକିବ' ଓ 'ବାଜିବ' କ୍ରିୟାଗୁଡ଼ିକରୁ କାର୍ଯ୍ୟ ଆଗକୁ ବା ଭବିଷ୍ୟତରେ ଘଟିବାର ସୂଚନା ମିଳୁଛି।

ଯେଉଁ କ୍ରିୟାରୁ କାର୍ଯ୍ୟ ଭବିଷ୍ୟତରେ ଘଟିବାର ଜଣାଯାଏ, ତାହା ସାଧାରଣ ଭବିଷ୍ୟତ କାଳର କ୍ରିୟା।

୨। **ଅସମ୍ପନ୍ନ ଭବିଷ୍ୟତ :**

✡ ସେମାନେ ଏବେ କଲିକତାରୁ ଫେରୁଥିବେ।

✡ ଗାଡ଼ି ଷ୍ଟେସନରେ ପହଞ୍ଚୁଥିବ।

✡ ମୁଁ ଇନ୍ଦିରାପାର୍କରେ ବୁଲୁଥିବି।

✡ ତୁମ୍ଭେମାନେ ମନ୍ଦିରକୁ ଯାଉଥିବ।

'ଫେରୁଥିବେ', 'ପହଞ୍ଚୁଥିବ', 'ବୁଲୁଥିବି', 'ଯାଉଥିବ' କ୍ରିୟାମାନଙ୍କରୁ କାର୍ଯ୍ୟ ଚାଲୁଥିବା ବା ଅସମ୍ପନ୍ନ ଅବସ୍ଥାରେ ଥିବ ବୋଲି ଜଣାଯାଉଛି।

ଯେଉଁଠାରେ କ୍ରିୟାଦ୍ୱାରା କାର୍ଯ୍ୟ ଭବିଷ୍ୟତରେ ଚାଲୁଥିବ ବୋଲି ଜଣାଯାଏ, ସେଠାରେ କ୍ରିୟାର ଅସମ୍ପନ୍ନ ଭବିଷ୍ୟତ କାଳ ବା ଚଳିତ ଭବିଷ୍ୟତ କାଳ ହୁଏ।

୩। **ସମ୍ପନ୍ନ ଭବିଷ୍ୟତ :**

✡ ସ୍କୁଲରେ ଘଣ୍ଟା ବାଜିଥିବ। ଦେଉଳ ଖୋଲିଥିବ।

✡ ଆମ୍ଭେମାନେ ଖେଳିଥିବୁ। ତୁମେ ଗାଁ'ରେ ପହଞ୍ଚିଥିବ।

'ବାଜିଥିବ', 'ଖୋଲିଥିବ', 'ଖେଳିଥିବୁ', 'ପହଞ୍ଚିଥିବ' କ୍ରିୟାଗୁଡ଼ିକରୁ କାର୍ଯ୍ୟ ସମ୍ପନ୍ନ ହୋଇଥିବ ବୋଲି ଅନୁମିତ ହେଉଛି ।

ଯେଉଁ ଭବିଷ୍ୟତ କାଳର କ୍ରିୟାରୁ କାର୍ଯ୍ୟ ଶେଷ ହୋଇଥିବାର ସୂଚିତ ହୁଏ, ତାହା ସମ୍ପନ୍ନ ଭବିଷ୍ୟତ କାଳ ।

**ଏକ କାଳର କ୍ରିୟାରୁ ଭିନ୍ନ ସମୟର ସୂଚନା-**

**ବର୍ତ୍ତମାନ କାଳର କ୍ରିୟା ଅତୀତ ସମୟର ସୂଚନା ଦେଇଥାଏ ।** ଯଥା-

ବର୍ଷା ହେଉଥାଏ । ଆମ୍ଭେ ଦୁଇସାଙ୍ଗ ଅନ୍ଧାର ରାତିରେ ଚାଲିଥାଉ । ହଠାତ୍ ଆମ ଆଗରେ ବିଲୁଆଟିଏ ଦେଖାଦିଏ ।

'ହେଉଥାଏ', 'ଚାଲିଥାଉ', 'ଦେଖାଦିଏ' - ବର୍ତ୍ତମାନ କାଳର କ୍ରିୟାଗୁଡ଼ିକରୁ ଅତୀତ ସମୟର ଧାରଣା ହେଉଅଛି । ଅର୍ଥାତ୍ ହେଉଥାଏ- ହେଉଥିଲା, ଚାଲିଥାଉ-ଚାଲୁଥିଲୁ, ଦେଖାଦିଏ-ଦେଖାଦେଲା ଅତୀତ କାଳର କ୍ରିୟା ସ୍ଥାନରେ ବର୍ତ୍ତମାନ କାଳର କ୍ରିୟା ବ୍ୟବହୃତ ହୋଇଛି । ଅତୀତକାଳ ଘଟଣାର ବର୍ଣ୍ଣନା ପ୍ରସଙ୍ଗରେ ଏଭଳି ବର୍ତ୍ତମାନ କାଳର କ୍ରିୟା ବ୍ୟବହୃତ ହୋଇଥାଏ । ଏହାକୁ ଅତୀତାତ୍ମକ ବର୍ତ୍ତମାନ କାଳ କୁହାଯାଏ । **ବର୍ତ୍ତମାନ କାଳର କ୍ରିୟା ଭବିଷ୍ୟତ ସମୟର ସୂଚନା ପ୍ରଦାନ କରିଥାଏ ।** ଯଥା-

✡ କାଲି ମୁଁ ପୁରୀ ଯାଉଛି ।

✡ ଆସନ୍ତାକାଲି ସେମାନେ ପୁରୀରୁ ଫେରୁଛନ୍ତି ।

✡ ଅପେକ୍ଷା କର, ମୁଁ କହୁଛି ।

✡ ଫୋନ୍ ଆସିଲା, ବାପା ଆସୁଛନ୍ତି ।

'ଯାଉଛି', 'ଫେରୁଅଛି', 'କହୁଛି' ଓ 'ଆସୁଛନ୍ତି' କ୍ରିୟାଗୁଡ଼ିକ ବର୍ତ୍ତମାନ କାଳର; ମାତ୍ର କାର୍ଯ୍ୟ ଭବିଷ୍ୟତରେ ହେବାର ସୂଚନା ମିଳୁଛି । ପ୍ରଥମ ବାକ୍ୟ ଦୁଇଟିରେ 'କାଲି' ଓ 'ଆସନ୍ତାକାଲି' ଶବ୍ଦ ଦୁଇଟିର ବ୍ୟବହାର ଦ୍ୱାରା 'ଯାଉଛନ୍ତି', 'ଫେରୁଛନ୍ତି' କ୍ରିୟାଦ୍ୱୟ ଭବିଷ୍ୟତ ସମୟସୂଚକ ଅଟନ୍ତି । ତୃତୀୟ ଓ ଚତୁର୍ଥ ବାକ୍ୟରେ 'କହୁଛି' ଓ 'ଆସୁଛନ୍ତି' କ୍ରିୟାରୁ କାର୍ଯ୍ୟ ଭବିଷ୍ୟତରେ ହେବାର ସୂଚିତ ହେଉଛି ।

**ସାଧାରଣ ଅତୀତକାଳର କ୍ରିୟାରୁ ଭବିଷ୍ୟତ ସମୟବୋଧ ହୋଇଥାଏ ।** ଯଥା-

(କ) ସେମାନେ ଗଲେ - (ଖ) ସେମାନେ ଗଲେ ଆମେ ଯିବୁ ।

(ଗ) ଶିଳ୍ପୀ ମୂର୍ତ୍ତି ଗଢ଼ିଲେ- (ଘ) ପିଲାଙ୍କୁ ଗଢ଼ିଲେ ଦେଶର ଉନ୍ନତି ହେବ ।

'କ' ବାକ୍ୟରେ 'ଗଲେ' ସାଧାରଣ ଅତୀତ କାଳର ସମାପିକା କ୍ରିୟା; ମାତ୍ର 'ଖ' ବାକ୍ୟରେ ତାହା ସର୍ତ୍ତମୂଳକ, ଭବିଷ୍ୟତ ସମୟବୋଧକ ଅସମାପିକା କ୍ରିୟା ଅଟେ ।

ସେହିପରି 'ଗ' ବାକ୍ୟରେ 'ଗଢ଼ିଲେ' ସାଧାରଣ ଅତୀତ କାଳର ସମାପିକା କ୍ରିୟା; ମାତ୍ର 'ଘ' ବାକ୍ୟରେ ତାହା ସର୍ତ୍ତମୂଳକ, ଭବିଷ୍ୟତ ସମୟସୂଚକ ଅସମାପିକା କ୍ରିୟା ।

## କ୍ରିୟାର ଭାବ

କ୍ରିୟାର ଭାବ ଦୁଇପ୍ରକାର । ଯଥା- ଆଭିପ୍ରାୟିକ ଓ ଅନୁଜ୍ଞା । ପ୍ରତ୍ୟେକ ଭାବ ସାଧାରଣ, ଅସମ୍ପନ୍ନ ଓ ସମ୍ପନ୍ନ ଭେଦରେ ତିନିଶ୍ରେଣୀର ।

## ଆଭିପ୍ରାୟିକ ଭାବ

### ସାଧାରଣ ବା ଶୁଦ୍ଧ ଆଭିପ୍ରାୟିକ ଭାବ

| ପ୍ରଥମ ପୁରୁଷ | ଦ୍ୱିତୀୟ ପୁରୁଷ | ତୃତୀୟ ପୁରୁଷ |
|---|---|---|
| ଏକବଚନ - ମୁଁ ପଢ଼ନ୍ତି | ତୁ ପଢ଼ନ୍ତୁ | ସେ ପଢ଼ନ୍ତା |
| ବହୁବଚନ - ଆମ୍ଭେମାନେ ପଢ଼ନ୍ତୁ/ନ୍ତୁଁ (ବା ପଢ଼ନ୍ତେ) | ତୁମ୍ଭେମାନେ ପଢ଼ନ୍ତ | ସେମାନେ ପଢ଼ନ୍ତେ |

### ଅସମ୍ପନ୍ନ ଆଭିପ୍ରାୟିକ ଭାବ

| | | |
|---|---|---|
| ଏକବଚନ - ମୁଁ ପଢୁଥାଆନ୍ତି | ତୁ ପଢୁଥାଆନ୍ତୁ | ସେ ପଢୁଥାଆନ୍ତା |
| ବହୁବଚନ - ଆମ୍ଭେମାନେ ପଢୁଥାଆନ୍ତୁ / ନ୍ତୁଁ | ତୁମ୍ଭେମାନେ ପଢୁଥାଆନ୍ତ | ସେମାନେ ପଢୁଥାଆନ୍ତେ |

### ସମ୍ପନ୍ନ ଆଭିପ୍ରାୟିକ ଭାବ

| | | |
|---|---|---|
| ଏକବଚନ - ମୁଁ ପଢ଼ିଥାଆନ୍ତି | ତୁ ପଢ଼ିଥାଆନ୍ତୁ | ସେ ପଢ଼ିଥାଆନ୍ତା |
| ବହୁବଚନ - ଆମ୍ଭେମାନେ ପଢ଼ିଥାଆନ୍ତୁ / ନ୍ତୁଁ | ତୁମ୍ଭେମାନେ ପଢ଼ିଥାଆନ୍ତ | ସେମାନେ ପଢୁଥାଆନ୍ତେ |

## ଅନୁଜ୍ଞାଭାବ

### ସାଧାରଣ ଅନୁଜ୍ଞାଭାବ

| | | |
|---|---|---|
| ଏକବଚନ - ମୁଁ ପଢ଼େ / ଢ଼େଁ | ତୁ ପଢ଼(ଢ଼) | ସେ ପଢୁ |
| ବହୁବଚନ - ଆମ୍ଭେମାନେ ପଢୁ / ଢୁଁ | ତୁମ୍ଭେମାନେ ପଢ଼ | ସେମାନେ ପଢ଼ନ୍ତୁ |

### ଅସମ୍ପନ୍ନ ଅନୁଜ୍ଞାଭାବ

| | | |
|---|---|---|
| ଏକବଚନ - ମୁଁ ପଢୁଥାଏ / ଏଁ | ତୁ ପଢୁଥା | ସେ ପଢୁଥାଉ |
| ବହୁବଚନ - ଆମ୍ଭେମାନେ ପଢୁଥାଉ/ଉଁ | ତୁମ୍ଭେମାନେ ପଢୁଥାଅ | ସେମାନେ ପଢୁଥାଆନ୍ତୁ |

### ସମ୍ପନ୍ନ ଅନୁଜ୍ଞାଭାବ

| | | |
|---|---|---|
| ଏକବଚନ - ମୁଁ ପଢ଼ିଥାଏ / ଏଁ | ତୁ ପଢ଼ିଥା | ସେ ପଢ଼ିଥାଉ |
| ବହୁବଚନ - ଆମ୍ଭେମାନେ ପଢ଼ିଥାଉ/ଉଁ | ତୁମ୍ଭେମାନେ ପଢ଼ିଥାଅ | ସେମାନେ ପଢ଼ିଥାଆନ୍ତୁ |

ବର୍ତ୍ତମାନ ଓ ଭବିଷ୍ୟତ କାଳରେ ଅନୁଜ୍ଞା ବା ଆଦେଶମୂଳକ କ୍ରିୟାର ବ୍ୟବହାର ହୁଏ । ଏହାର ପ୍ରଥମ ପୁରୁଷରେ ବିଶେଷ ବ୍ୟବହାର ଦେଖାଯାଏ ନାହିଁ । ତଥାପି 'ମୁଁ ତାହାହେଲେ କହେଁ'- ଏ ବାକ୍ୟରେ କହିବା ଲାଗି ମୋତେ ଆଦେଶ ଅଥବା ଅନୁମତି ମିଳୁ ବୋଲି କୁହାଯାଇଛି ।

'ଆମେ କ'ଣ ଏଥର ବାହାରିବୁ ?'- ଏହି ବାକ୍ୟରେ କ୍ରିୟା ବହୁବଚନରେ ଅଛି ଏବଂ ବକ୍ତା ଆଦେଶ ଓ ଅନୁମତି ମାଗୁଛି । ଏପରି ସ୍ଥଳ ବ୍ୟତୀତ ଅନ୍ୟସ୍ଥଳରେ ଏ ପ୍ରକାର ବ୍ୟବହାର ହୁଏ ନାହିଁ । ଦ୍ୱିତୀୟ ଓ ତୃତୀୟ ପୁରୁଷରେ ଅନୁଜ୍ଞାର ପ୍ରୟୋଗ ବହୁଳ ଭାବରେ ଦେଖାଯାଏ । ଯଥା- ତୁ ଘରକୁ ଯା । ତୁମ୍ଭେମାନେ ଆସ । ସେ ଗୀତ ଗାଉ । ସେମାନେ ବହି ପଢ଼ନ୍ତୁ । ତୁମେ ଖରାପ କଥା କହ ନାହିଁ । ତୁମ୍ଭେମାନେ ଏଠାରେ ଗହଳି କରନାହିଁ ।

## ଧାତୁ 'ପଢ୍'ର ବିଭିନ୍ନକାଳରେ ରୂପ

### ବର୍ତ୍ତମାନ କାଳ

### ସାଧାରଣ ବର୍ତ୍ତମାନ କାଳ (ନିତ୍ୟପ୍ରବୃତ୍ତ ବର୍ତ୍ତମାନ)

| | ପ୍ରଥମ ପୁରୁଷ | ଦ୍ୱିତୀୟ ପୁରୁଷ | ତୃତୀୟ ପୁରୁଷ |
|---|---|---|---|
| ଏକବଚନ - | (ମୁଁ) ପଢ଼େ(ଢ଼େଁ) | (ତୁ) ପଢୁ | (ସେ) ପଢ଼େ |
| ବହୁବଚନ - | (ଆମେ, ଆମ୍ଭେମାନେ) ପଢୁ (ଢୁଁ) | (ତୁମେ, ତୁମ୍ଭେମାନେ) ପଢ଼ | (ସେମାନେ) ପଢ଼ନ୍ତି |

### ଅସମ୍ପନ୍ନ ବର୍ତ୍ତମାନ କାଳ

| | | | |
|---|---|---|---|
| ଏକବଚନ - | ପଢୁଅଛି, ପଢୁଛି | ପଢୁଅଛୁ, ପଢୁଛୁ | ପଢୁଅଛି, ପଢୁଛି |
| ବହୁବଚନ - | ପଢୁଅଛୁ(ଛୁଁ), ପଢୁଛୁ(ଛୁଁ) | ପଢୁଅଛ, ପଢୁଛ | ପଢୁଅଛନ୍ତି, ପଢୁଛନ୍ତି |

### ସମ୍ପନ୍ନ ବର୍ତ୍ତମାନ କାଳ

| | | | |
|---|---|---|---|
| ଏକବଚନ - | ପଢ଼ିଅଛି, ପଢ଼ିଛି | ପଢ଼ିଅଛୁ, ପଢ଼ିଛୁ | ପଢ଼ିଅଛି, ପଢ଼ିଛି |
| ବହୁବଚନ - | ପଢ଼ିଅଛୁ (ଛୁଁ), ପଢ଼ିଛୁ(ଛୁଁ) | ପଢ଼ିଅଛ, ପଢ଼ିଛ | ପଢ଼ିଅଛନ୍ତି, ପଢ଼ିଛନ୍ତି |

## ଅତୀତକାଳ

### ସାଧାରଣ ଅତୀତକାଳ

| | | |
|---|---|---|
| ଏକବଚନ - ପଢ଼ିଲି | ପଢ଼ିଲୁ | ପଢ଼ିଲା |
| ବହୁବଚନ - ପଢ଼ିଲୁ | ପଢ଼ିଲ | ପଢ଼ିଲେ |

### ଅସମ୍ପନ୍ନ ଅତୀତକାଳ

| | | |
|---|---|---|
| ଏକବଚନ - ପଢୁଥିଲି | ପଢୁଥିଲୁ | ପଢୁଥିଲା |
| ବହୁବଚନ - ପଢୁଥିଲୁ(ଲୁଁ) | ପଢୁଥିଲ | ପଢୁଥିଲେ |

### ସମ୍ପନ୍ନ ଅତୀତକାଳ

| | | |
|---|---|---|
| ଏକବଚନ - ପଢ଼ିଥିଲି | ପଢ଼ିଥିଲୁ | ପଢ଼ିଥିଲା |
| ବହୁବଚନ - ପଢୁଥିଲୁ (ଲୁଁ) | ପଢ଼ିଥିଲ | ପଢ଼ିଥିଲେ |

## ଭବିଷ୍ୟତକାଳ

### ସାଧାରଣ ଭବିଷ୍ୟତକାଳ

| | | |
|---|---|---|
| ଏକବଚନ - ପଢ଼ିବି | ପଢ଼ିବୁ | ପଢ଼ିବ |
| ବହୁବଚନ - ପଢ଼ିବୁ (ବୁଁ) | ପଢ଼ିବ | ପଢ଼ିବେ |

### ଅସମ୍ପନ୍ନ ଭବିଷ୍ୟତକାଳ

| | | |
|---|---|---|
| ଏକବଚନ - ପଢୁଥିବି | ପଢୁଥିବୁ | ପଢ଼ିଥିବ |
| ବହୁବଚନ - ପଢୁଥିବୁ (ବୁଁ) | ପଢୁଥିବ | ପଢ଼ିଥିବେ |

### ସମ୍ପନ୍ନ ଭବିଷ୍ୟତକାଳ

| | | |
|---|---|---|
| ଏକବଚନ - ପଢ଼ିଥିବି | ପଢ଼ିଥିବୁ | ପଢ଼ିଥିବ |
| ବହୁବଚନ - ପଢ଼ିଥିବୁ (ବୁଁ) | ପଢ଼ିଥିବ | ପଢ଼ିଥିବେ |

## କ୍ରିୟାର ପୁରୁଷ ଓ ବଚନ

କ୍ରିୟାପଦ ବାକ୍ୟସ୍ଥ କର୍ତ୍ତାର ପୁରୁଷ ଓ ବଚନକୁ ଅନୁସରଣ କରେ । ସେହି ଅନୁସାରେ କ୍ରିୟାର ରୂପ ପରିବର୍ତ୍ତିତ ହୁଏ ।

ମୁଁ ଖେଳୁଛି; ମୁଁ - କର୍ତ୍ତା, ଖେଳୁଛି - କ୍ରିୟା ।

କର୍ତ୍ତା 'ମୁଁ ' ପ୍ରଥମ ପୁରୁଷ ଏକବଚନ ହୋଇଥିବାରୁ କ୍ରିୟା 'ଖେଳୁଛି' ପ୍ରଥମପୁରୁଷ ଏକବଚନ ଅଟେ ।

ସେହିପରି – ଆମ୍ଭେମାନେ ଖେଳୁଛୁ । – କର୍ତ୍ତା, କ୍ରିୟା ଉଭୟ ପ୍ରଥମ ପୁରୁଷ ବହୁବଚନ ।

* ତୁ ଖେଳୁଛୁ – କର୍ତ୍ତା ଓ କ୍ରିୟା ଦ୍ୱିତୀୟ ପୁରୁଷ ଏକବଚନ ।
* ତୁମେମାନେ ଖେଳୁଛ – କର୍ତ୍ତା ଓ କ୍ରିୟା ଦ୍ୱିତୀୟ ପୁରୁଷ ବହୁବଚନ ।
* ସେ ଖେଳୁଛି – କର୍ତ୍ତା ଓ କ୍ରିୟା ତୃତୀୟ ପୁରୁଷ ଏକବଚନ ।
* ସେମାନେ ଖେଳୁଛନ୍ତି – କର୍ତ୍ତା ଓ କ୍ରିୟା ତୃତୀୟ ପୁରୁଷ ବହୁବଚନ ।

ଦ୍ୱିତୀୟ ପୁରୁଷ ଏକବଚନରେ ତୁ, ତୁମେ, ଆପଣ ସର୍ବନାମ ପଦ କର୍ତ୍ତା ହୋଇଥିଲେ କ୍ରିୟାର ରୂପ ତଦନୁସାରେ ପରିବର୍ତ୍ତିତ ହୋଇଥାଏ । ଯଥା–

| | | |
|---|---|---|
| ତୁ ଖା । | ତୁମେ ଖାଅ । | ଆପଣ ଖାଆନ୍ତୁ । |
| ତୁ ଖାଇଲୁ । | ତୁମେ ଖାଇଲ । | ଆପଣ ଖାଇଲେ । |
| ତୁ ଖାଇବୁ । | ତୁମେ ଖାଇବ । | ଆପଣ ଖାଇବେ । |

କର୍ତ୍ତାବିଶିଷ୍ଟ ବା ସମ୍ମାନାସ୍ପଦ ବ୍ୟକ୍ତି ହୋଇଥିଲେ, ଏକବଚନ କର୍ତ୍ତାରେ ବହୁବଚନ କ୍ରିୟାର ପ୍ରୟୋଗ କରାଯାଇଥାଏ । ଯଥା–

| | |
|---|---|
| ସାଧୁ ଆସୁଛନ୍ତି । | ଈଶ୍ୱର ସର୍ବତ୍ର ଅଛନ୍ତି । |
| ଭାଇ କହୁଛନ୍ତି । | ରାଷ୍ଟ୍ରପତି ଆମେରିକା ଯାଇଛନ୍ତି । |
| ପଣ୍ଡିତେ ପଢୁଛନ୍ତି । | ଗଂଗାଧର 'ତପସ୍ୱିନୀ' ଲେଖିଥିଲେ । |

କର୍ତ୍ତା ଜଡ଼ ବା ଅଚେତନ ବସ୍ତୁ ହୋଇଥିଲେ, କେତେକ ସ୍ଥଳରେ ବହୁବଚନ କର୍ତ୍ତାରେ ଏକବଚନ କ୍ରିୟାର ପ୍ରୟୋଗ ହୋଇଥିବାର ଦେଖାଯାଏ । ଯଥା–

(କ) ଘରେ ଜିନିଷଗୁଡ଼ାକ ଏଣେତେଣେ **ପଡ଼ିଛି** ।
(ଖ) ଶହଶହ ଗାଡ଼ି ରାସ୍ତାରେ **ଚାଲିଛି** ।
(ଗ) ବସନ୍ତ ଋତୁରେ ଗଛରେ ନୂଆ ପତ୍ରସବୁ **କଅଁଳେ** ।
(ଘ) ଅନେକ ବର୍ଷ **ବିତିଲାଣି** ।
(ଙ) ପ୍ରବଳ ବନ୍ୟାରେ ବିଜୁଳିଖୁଣ୍ଟଗୁଡ଼ିକ **ଉପୁଡ଼ିଗଲା** ।
(ଚ) ଆକାଶରୁ ବଡ଼ବଡ଼ କୁଆପଥର ବର୍ଷା **ହେଲା** ।
(ଛ) ଅଣଚାଶ ପବନ **ବହୁଛି** ।

ଅଚେତନ ବହୁବଚନ କର୍ତ୍ତା ମଧ୍ୟ ବହୁବଚନ କ୍ରିୟା ଗ୍ରହଣ କରିବାର ଦେଖାଯାଏ । ଯଥା–

(କ) ବିମାନଗୁଡ଼ିକ ଆକାଶରେ **ଉଡୁଛନ୍ତି** ।
(ଖ) ଓଡ଼ିଆ ଖବରକାଗଜଗୁଡ଼ିକ ଓଡ଼ିଆମାନଙ୍କର ସମସ୍ୟା ପ୍ରକାଶ **କରୁଛନ୍ତି** ।
(ଗ) ନଦୀଗୁଡ଼ିକ କୁଳୁକୁଳୁ ନାଦରେ **ବହୁଛନ୍ତି** ।

## ଅନୁଶୀଳନୀ

୧ । କ୍ରିୟାପଦ କାହାକୁ କହନ୍ତି ? ପାଞ୍ଚଟି କ୍ରିୟାପଦର ଉଦାହରଣ ଦିଅ ।

୨ । ଧାତୁ କାହାକୁ କହନ୍ତି ?

୩ । ଧାତୁ କେତେ ପ୍ରକାର ଓ କ'ଣ କ'ଣ ?

୪ । ତଳଲିଖିତ ଓଡ଼ିଆ ଧାତୁଗୁଡ଼ିକ କେଉଁ କେଉଁ ସଂସ୍କୃତ ଧାତୁରୁ ଆନୀତ ?
ନେ, କହ୍, ବଢ଼୍, ପୁଛ୍, ଶୋ, କିଣ୍, ଶିଖ୍

୫ । ନାମଧାତୁ କ୍ରିୟାରେ ପରିଣତ କରି ବାକ୍ୟ ଗଠନ କର ।
ପାଖ, ଖୁଣ, ସଲଖ, ଉଷୁମ, ଝାଳ, ଠୁଳ, ପଛ, ପେଟ, ଫେଣ, ଧଳା ।

୬ । ପ୍ରେରଣାର୍ଥକ କ୍ରିୟା କର-
ନାଚିବ, ଜଳିଲା, ବାଜିବ, ପଡ଼ିଲା, ସହୁଛି, ଉଡ଼ିଲା, ଛାପୁଛି, ଦେଖିବ ।

୭ । ତଳଲିଖିତ ବାକ୍ୟମାନଙ୍କରେ ଥିବା କ୍ରିୟାପଦମାନଙ୍କ ମଧ୍ୟରୁ ସକର୍ମକ, ଅକର୍ମକ ଓ ଦ୍ୱିକର୍ମ କ୍ରିୟା ପଦଗୁଡ଼ିକୁ ଚିହ୍ନାଇ ଦିଅ ।
(କ) ପବନ ବହୁଛି, (ଖ) ଗାଈ ଘାସ ଚରୁଛି, (ଗ) ଆକାଶବାଣୀ ସର୍ବସାଧାରଣଙ୍କୁ ବାତ୍ୟା ଖବର ଦେଲା, (ଘ) ଗରିବ ଲୋକଟି ବାପାଙ୍କୁ ଟଙ୍କାଟିଏ ମାଗିଲା, (ଙ) ଡକ୍ଟର ରାଧାକୃଷ୍ଣନ୍ ମହାନ୍ ଦାର୍ଶନିକ ଥିଲେ, (ଚ) ଶିକ୍ଷକ ଛାତ୍ରଛାତ୍ରୀଙ୍କୁ ସାହିତ୍ୟ ପଢ଼ାଇଲେ, (ଛ) ଗଗନ ଶୀଘ୍ର ଧାଏଁ, (ଜ) ମୁଁ ଘରକୁ ପରିବା ନେବି, (ଝ) ହାତୀ ଝୁଲିଝୁଲି ଚାଲେ, (ଞ) ମହାତ୍ମାଗାନ୍ଧିଙ୍କୁ ସମସ୍ତେ ଜାଣନ୍ତି ।

୮ । ଅମିଶ୍ର କ୍ରିୟାକୁ ମିଶ୍ରକ୍ରିୟାରେ ପରିଣତ କର ।
ବଢ଼ିବା, ଜନ୍ମିବା, ଶୁଣିବା, ଉଇଁବା, ଜାଣିବା, ବିକିବା, ବାନ୍ଧିବା, ପାଚିବା, ଖାଇବା, ଜିଣିବା

୯ । ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଅସମାପିକା କ୍ରିୟା ସାହାଯ୍ୟରେ ଗୋଟିଏ ବାକ୍ୟରେ ପରିଣତ କର ।
(କ) ତୁମେ କହିଲ । ମୁଁ ଯିବି ।
(ଖ) ଯଦି ବର୍ଷା ହେବ, ଚାଷୀମାନେ ଖୁସି ହେବେ ।
(ଗ) ଶିକ୍ଷକ ଆସିଲେ । ପିଲାମାନେ ତୁନି ହେଲେ ।
(ଘ) ଲୋକଟି କାଠ ଚିରୁଛି । ଲୋକଟି କ୍ଳାନ୍ତ ହେଲାଣି ।

(ଙ) କବି କବିତା ଲେଖନ୍ତି । କବି ସମ୍ମାନ ପାଆନ୍ତି ।

(ଚ) ଶିଶୁଟି ଗୀତ ଶୁଣୁଥିଲା, ଶୋଇପଡ଼ିଲା ।

(ଛ) ତୁମେ ଖାଇନାହଁ, ପିଇ ନାହଁ, ଏତେ ଖୁସି ହେଉଛ ?

୧୦ । କ୍ରିୟାର କାଳ କହିଲେ କ'ଣ ବୁଝ ?

୧୧ । କ୍ରିୟାର କାଳ କେତେ ପ୍ରକାର ଓ କ'ଣ କ'ଣ ?

୧୨ । ବର୍ତ୍ତମାନକାଳ କ୍ରିୟାରୁ ଭବିଷ୍ୟତ ସମସ୍ତ କିପରି ଜଣାଯାଏ, ଉଦାହରଣ ମାଧ୍ୟମରେ ବୁଝାଅ ।

୧୩ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଥିବା କ୍ରିୟାମାନଙ୍କର କାଳ ନିର୍ଦ୍ଦେଶ କର ।

(କ) ସୂର୍ଯ୍ୟ ଉଏଁ । (ଖ) ସୁମନ୍ତ ପାଠ ପଢ଼ିଥିଲା । (ଗ) ମୁଁ କଲମରେ ଲେଖୁଅଛି । (ଘ) ସର୍ବଦା ସତ୍ୟର ବିଜୟ ହୁଏ । (ଙ) ଭଲ ନାଟକଟିଏ ମଣିଷ ଉପରେ ଗଭୀର ପ୍ରଭାବ ପକାଏ । (ଚ) କାର୍ତ୍ତିକ ଆସିବ । (ଛ) ଭାରତ ହକିରେ ଜିଣିଲା । (ଜ) ମୟୂର ନାଚୁଥିବ । (ଝ) ରୋଗୀଟି ଜ୍ୱରରେ କମ୍ପୁଥିଲା । (ଞ) ଆମ ଶିକ୍ଷକ ଅନେକ ବହି ଲେଖିଛନ୍ତି ।

୧୪ । ନିମ୍ନରେ 'କ' ସ୍ତମ୍ଭରେ ନାମଧାତୁ ଦିଆଯାଇଛି, 'ଖ' ସ୍ତମ୍ଭରେ ସେଗୁଡ଼ିକ କେଉଁ ପଦରୁ ସୃଷ୍ଟି ହୋଇଛି, ଶୂନ୍ୟସ୍ଥାନରେ ଉଲ୍ଲେଖ କର ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ (ପଦ ଓ ବିଶେଷ୍ୟ / ବିଶେଷଣ ଦର୍ଶାଅ) | |
|---|---|---|
| ବଙ୍କେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ଧଉଳାଇବା | ———————— | (ବିଶେଷ୍ୟ / ବିଶେଷଣ) |
| ଛୋଟେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ଅଣ୍ଟେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ପାଣେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ପତଳେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ପନ୍ହେଇବା | ———————— | (ବିଶେଷ୍ୟ / ବିଶେଷଣ) |
| ଉଷୁମାଇବା | ———————— | (ବିଶେଷ୍ୟ / ବିଶେଷଣ) |



# କ୍ରିୟା ବିଶେଷଣ

ଯେଉଁ ପଦ କ୍ରିୟା ପଦର ଗୁଣ, ଅବସ୍ଥା ପ୍ରକାଶ କରେ ତାହାକୁ କ୍ରିୟା ବିଶେଷଣ କୁହାଯାଏ । ଏହା ପୂର୍ବପାଠ ବିଶେଷଣ ଅଧ୍ୟାୟରେ ଆଲୋଚିତ ହୋଇଛି ।

**ଉଦାହରଣ :**

ରୋଗୀଟି **ଆସ୍ତେ ଆସ୍ତେ** ଯାଉଛି ।

ନିଆଁ **ହୁତୁହୁତୁ** ଜଳୁଛି ।

ସମୁଦ୍ର **ସୁନ୍ଦର** ଦିଶୁଛି ।

ଆସ୍ତେଆସ୍ତେ, ହୁତୁହୁତୁ, ସୁନ୍ଦର ପଦଗୁଡ଼ିକ ଯଥାକ୍ରମେ 'ଯାଉଛି', 'ଜଳୁଛି' ଓ 'ଦିଶୁଛି' କ୍ରିୟାପଦକୁ ବିଶେଷିତ କରୁଥିବାରୁ କ୍ରିୟାବିଶେଷଣ । କ୍ରିୟାପଦ ପୂର୍ବରେ 'କିପରି' ଲଗାଇ ପ୍ରଶ୍ନ କଲେ ଯେଉଁ ଉତ୍ତର ମିଳେ ତାହା କ୍ରିୟା ବିଶେଷଣ ।

**ବିଭିନ୍ନ ଭାବରେ କ୍ରିୟାବିଶେଷଣର ବ୍ୟବହାର :**

୧ । ବିଶେଷ୍ୟ ପଦରେ ତୃତୀୟାବିଭକ୍ତି ଯୋଗଦ୍ୱାରା-

ପିଲାଟି **ଖୁସିରେ** ଖେଳୁଛି । ଭାଇ **ସନ୍ଧ୍ୟାରେ** ଫେରିଲେ ।

ଅଳସୁଆ **ଦୁଃଖରେ** ରହେ । ପରିଶ୍ରମୀ **ସୁଖରେ** ଚଳେ ।

୨ । ବିଶେଷଣ ପଦରେ ତୃତୀୟା ବିଭକ୍ତି ଯୋଗ କରି-

କମଳା କାମଟି **ସହଜରେ** କଲା ।

ପବନ **ଜୋର୍‌ରେ** ବହୁଛି ।

୩ । ବିଶେଷ୍ୟ ପଦର ପରେ 'ପୂର୍ବକ', 'ସହିତ', 'ସହକାରେ' ଯୋଗଦ୍ୱାରା-

ଆପଣ **ଦୟାପୂର୍ବକ** ଶୁଣନ୍ତୁ ।

ଧୈର୍ଯ୍ୟ **ସହକାରେ** ବସନ୍ତୁ ।

ମୁଁ **ଦୁଃଖର ସହିତ** କହୁଛି ।

୪ । ବିଶେଷଣ ପଦରେ 'ଭାବେ', 'ଭାବରେ' ପ୍ରଭୃତି ଲଗାଇ-

ପ୍ରବକ୍ତା ରାସ ପଞ୍ଚାଧ୍ୟାୟୀକୁ **ବିଶଦ ଭାବରେ** ବ୍ୟାଖ୍ୟା କଲେ ।

ତୁମେ କଥାଟିକୁ **ପ୍ରାଞ୍ଜଳ ଭାବରେ** କହ ।

ଶିକ୍ଷକ **ସୁସ୍ପଷ୍ଟ ଭାବେ** ବୁଝାଇଲେ ।

୫ । ବିଶେଷ୍ୟ ଓ ବିଶେଷଣ ପଦର ଦୁଇଥର ବ୍ୟବହାର ଦ୍ୱାରା-

ପାଣି **ଟୋପାଟୋପା** ପଡୁଛି । ମା' ପୁଅକୁ **ବର୍ଷବର୍ଷ** ଚାହିଁଛି ।

ତ୍ରିନାଥ **ତରତର** ହେଉଛି । ପବନ **ମନ୍ଦମନ୍ଦ** ବହୁଛି ।

୬ । ଅବିକଳ ବିଶେଷଣ ପଦର ବ୍ୟବହାରଦ୍ୱାରା-
ତପନ **ଖୁବ୍** ଖାଏ ।
ଅଶ୍ୱ **ଦ୍ରୁତ** ଧାଏଁ ।

୭ । ବିଭିନ୍ନ ଅବ୍ୟୟ ପଦର ବ୍ୟବହାରଦ୍ୱାରା-
ସମୁଦ୍ର **ଘୁ ଘୁ** ଗର୍ଜୁଛି ।
**ସହସା** ଝଡ଼ ତୋଫାନ ଆସିଲା ।
ରୋଗୀଟି **ବାରମ୍ବାର** ପାଣି ପିଉଛି ।

୮ । ଅସମାପିକା କ୍ରିୟାର ଦ୍ୱିରୁକ୍ତିଦ୍ୱାରା-
ଚାନ୍ଦିନୀ **ଟାଲୁଟାଲୁ** ପଡ଼ିଗଲା ।
ଶିକ୍ଷକ **ହସିହସି** ପଢ଼ାଇଲେ ।

୯ । ବିଶେଷ୍ୟ ପଦରେ ଅସମାପିକା କ୍ରିୟା ଲଗାଇ-
**ଦୟାକରି** (ଦୟା+କରି) ଦୁଃଖ ଶୁଣନ୍ତୁ ।
**ଧୈର୍ଯ୍ୟଧରି** (ଧୈର୍ଯ୍ୟ+ଧରି) ଅପେକ୍ଷା କରନ୍ତୁ ।
ପିଲାମାନେ **ପଢ଼ାସାରି** (ପଢ଼ା+ସାରି) ଖେଳନ୍ତି ।

କଳା ଅକ୍ଷରର ପଦଗୁଡ଼ିକ କ୍ରିୟା ବିଶେଷଣ ଅଟନ୍ତି ।

## ଅନୁଶୀଳନୀ

୧ । ତଳ ବାକ୍ୟଗୁଡ଼ିକରୁ କ୍ରିୟାବିଶେଷଣ ପଦଗୁଡ଼ିକୁ ଚିହ୍ନାଇ ଦିଅ ।
(କ) ସେ କାମଟି ବିନାବାଧାରେ କଲେ ।
(ଖ) ନଳିନୀ ଚମତ୍କାର ଗାଇଲା ।
(ଗ) ରମେଶ ବିନୟର ସହିତ ଅନୁରୋଧ କଲା ।
(ଘ) ନିତ୍ୟାନନ୍ଦ ନିର୍ମଳ ଭାବରେ ଗଣିତ ବୁଝାଇଲେ ।
(ଙ) ନୂଆବୋହୂଟି ଥିରି ଥିରି କହୁଛି ।

୨ । ଦଶଟି କ୍ରିୟା ବିଶେଷଣ ପଦକୁ ବାକ୍ୟରେ ବ୍ୟବହାର କର ।

୩ । 'କ' ବିଭାଗର କ୍ରିୟା ବିଶେଷଣ ସହିତ 'ଖ' ବିଭାଗର ଉପଯୁକ୍ତ କ୍ରିୟାକୁ ଯୋଗ କରି ବାକ୍ୟ ଗଠନ କର ।
'କ' ବିଭାଗ - ସ୍ପଷ୍ଟ ଭାବରେ, ମିଞ୍ଜିମିଞ୍ଜି, ସୁନ୍ଦର, ବେଗରେ, ପଡ଼ିପଡ଼ି, ଭଲରେ ଭଲରେ, ଅକ୍ଳେଶରେ ।
'ଖ' ବିଭାଗ - ଗାଉଛି, ଧାଏଁ, ହୋଇଗଲା, ଜଳୁଛି, ମରିଗଲା, କରିପାରେ, ପଢ଼ ।



# କ୍ରିୟାଜ ବିଶେଷଣ

ବିଶେଷଣ ପ୍ରକରଣରେ ବିଶେଷଣର ସଂଜ୍ଞା ସହିତ ବିଭାଗୀକରଣ ଆଲୋଚିତ ହୋଇଛି । ସାଧାରଣତଃ ବିଶେଷଣ ପଦ ବିଶେଷ୍ୟ, ବିଶେଷଣ, ସର୍ବନାମ ଓ କ୍ରିୟାପଦର ବିଶେଷତ୍ୱ ପ୍ରକାଶ କରିଥାଏ । ଏହି ଅଧ୍ୟାୟରେ କ୍ରିୟାଜ ବିଶେଷଣର କ୍ରିୟା ବିଶେଷଣଠାରୁ ପାର୍ଥକ୍ୟ, ଗଠନରୀତି ଓ ବ୍ୟବହାର-ବିଶେଷତ୍ୱସମ୍ବନ୍ଧରେ ଆଲୋଚନା କରାଯାଉଛି ।

କ୍ରିୟା ବିଶେଷଣ କ୍ରିୟାପଦକୁ ବିଶେଷିତ କରିଥାଏ; ମାତ୍ର କ୍ରିୟାଜ ବିଶେଷଣ ବିଶେଷ୍ୟ ପଦର ବିଶେଷତ୍ୱ ପ୍ରକାଶ କରିଥାଏ । ଅର୍ଥାତ୍ ବିଶେଷ୍ୟ ପଦର କ୍ରିୟା ଅବସ୍ଥାକୁ ପ୍ରକାଶ କରେ । କ୍ରିୟା ବିଶେଷଣ କ୍ରିୟାପଦର ପୂର୍ବରୁ ଏବଂ କ୍ରିୟାଜ ବିଶେଷଣ ବିଶେଷ୍ୟ ପଦର ପୂର୍ବରୁ ବ୍ୟବହୃତ ହୋଇଥାଏ । କ୍ରିୟାଜ ବିଶେଷଣ କ୍ରିୟାଧାତୁରୁ ପ୍ରତ୍ୟୟ ଯୋଗରେ ଗଠିତ । ତେଣୁ ଏହା କୃଦନ୍ତ ପଦ । ଧାତୁରେ ପ୍ରତ୍ୟୟ ଲାଗି ଯେଉଁ ପଦ ଗଠିତ ହୁଏ, ତାକୁ 'କୃଦନ୍ତ' ପଦ କହନ୍ତି । ଯଥା-

ଫଳନ୍ତି - ଫଳ୍ (ଧାତୁ) + ଅନ୍ତି (ପ୍ରତ୍ୟୟ)

ଉଡ଼ନ୍ତା - ଉଡ଼୍ (ଧାତୁ) + ଅନ୍ତା (ପ୍ରତ୍ୟୟ)

ଦେଲା - ଦେ (ଧାତୁ) + ଲା (ପ୍ରତ୍ୟୟ)

'କୃଦନ୍ତ' ସମ୍ବନ୍ଧରେ କୃଦନ୍ତ ଅଧ୍ୟାୟରେ ବିଶେଷ ଆଲୋଚନା କରାଯାଇଛି । 'କୃଦନ୍ତ' ପଦ ବିଶେଷ୍ୟ, ବିଶେଷଣ ଓ କ୍ରିୟା ରୂପେ ବ୍ୟବହୃତ ହୁଏ । ତେଣୁ ଯେଉଁ କୃଦନ୍ତ ପଦ ବିଶେଷଣର କାର୍ଯ୍ୟ କରେ, ତାହାକୁ କୃଦନ୍ତ ବିଶେଷଣ ବା କ୍ରିୟାଜ ବିଶେଷଣ କୁହାଯାଏ । କ୍ରିୟାଜ ବିଶେଷଣକୁ କ୍ରିୟାଜାତ ବିଶେଷଣ କହନ୍ତି । କ୍ରିୟା-ଭାବରେ ବ୍ୟବହୃତ ହେଉଥିବା କୃଦନ୍ତ ପଦଗୁଡ଼ିକୁ 'କୃଦନ୍ତ ବିଶେଷଣାତ୍ମକ କ୍ରିୟା' ବା 'କ୍ରିୟାଜ ବିଶେଷଣାତ୍ମକ କ୍ରିୟା' କୁହାଯାଏ । କ୍ରିୟାଜ ବିଶେଷଣ ଓ କ୍ରିୟାଜ ବିଶେଷଣାତ୍ମକ କ୍ରିୟା ମଧ୍ୟରେ ରୂପଗତ ବା ଗଠନଗତ ଭିନ୍ନତା ନାହିଁ । ଉଭୟଙ୍କ ମଧ୍ୟରେ କେବଳ ବ୍ୟାବହାରିକ ପାର୍ଥକ୍ୟ ରହିଛି । ଯଥା-

**ବିଶେଷ୍ୟ :**

୧ । **ପଢ଼ିବା** ମୋର ନିତିଦିନିଆ ଅଭ୍ୟାସ ।

୨ । **ସହିବା** ଏକ ଭଲ ଗୁଣ ।

**ବିଶେଷଣ :**

୧ । **ଖାଇବା** ପୁଅ ଝିଅ ରଂକ ।

୨ । **ଜଳନ୍ତା** ନିଆଁରେ ହାତ ମାର ନାହିଁ ।

୩ । **ମଲା**ଲୋକର ଦୁର୍ନାମ କରିବା ଅନୁଚିତ ।

**କ୍ରିୟା :**

୧ । ଆମେ ସବୁଦିନ ଖବରକାଗଜ **ପଢ଼ିବା** ।

୨ । ଅନୁରାଗ ଜଳଖିଆ **ଖାଇଲା** ।

୩ । ଶୁଖିଲା କାଠ ହେଲେ ଚୁଲି **ଜଳନ୍ତା** ।

୪ । ଲୋକଟି ଅକାଳରେ **ମଲା** ।

ଓଡ଼ିଆ ଭାଷାରେ କ୍ରିୟାଜ ବିଶେଷଣଗୁଡ଼ିକ ବିଭିନ୍ନ କାଳରେ ଭିନ୍ନଭିନ୍ନ ରୂପରେ ବ୍ୟବହୃତ ହୋଇଥା'ନ୍ତି ।

୧ । ବର୍ତ୍ତମାନ କାଳରେ ଧାତୁରେ ଅନ୍ତା, ଉଆ ପ୍ରଭୃତି ପ୍ରତ୍ୟୟ ଯୋଗରେ କ୍ରିୟାଜ ବିଶେଷଣ ଗଠିତ ହୁଏ ।

୨ । ଅତୀତ କାଳରେ ଧାତୁରେ ଆ, ଇଲା, ଲା, ଉଥିଲା, ଇଥିଲା ପ୍ରଭୃତି ପ୍ରତ୍ୟୟ ଯୋଗରେ କ୍ରିୟାଜ ବିଶେଷଣ ଗଠିତ ହୁଏ ।

୩ । ଭବିଷ୍ୟତ କାଳରେ ଧାତୁ ସହିତ ଇବା, ଉଥିବା, ଇଥିବା ପ୍ରଭୃତି ପ୍ରତ୍ୟୟ ଯୋଗଦ୍ୱାରା କ୍ରିୟାଜ ବିଶେଷଣ ଗଠିତ ହୁଏ ।

* ବର୍ତ୍ତମାନ କାଳରେ ଗଠିତ କ୍ରିୟାଜ ବିଶେଷଣ-

(କ) 'ଅନ୍ତା' ପ୍ରତ୍ୟୟ ଯୋଗରେ ଗଠିତ-

୧ । ମୁଁ **ଜୀଅନ୍ତା** ମାଛ କିଣିଛି ।

୨ । ଲୋକଟି **ଫୁଟନ୍ତା** ପାଣିରେ ହାତ ବୁଡ଼ାଇଲା ।

୩ । ପରେଶ **ଉଡ଼ନ୍ତା** ପକ୍ଷୀର ପରଗଣିବା ପିଲା ।

୪ । **ପୂରନ୍ତା** ନଈକୁ ବିଶ୍ୱାସ ନାହିଁ ।

(ଖ) 'ଉଆ' ପ୍ରତ୍ୟୟ ଯୋଗରେ ଗଠିତ-

୧ । **ଧାଉଁଆ** ଅଶ୍ୱକୁ ସଯତ୍ନ ଧର ।

୨ । ସବୁବେଳେ **ହାଣୁଆ** କଥା କହ ନାହିଁ ।

୩ । ଡମ୍ବରୁଧର ଏକ **ଡରୁଆ** ପିଲା ।

୪ । ମଧୁସୂଦନ ଦାସ ଜଣେ **ଲଢୁଆ** ମଣିଷ ଥିଲେ ।

* ଅତୀତ କାଳରେ ଗଠିତ କ୍ରିୟାଜ ବିଶେଷଣ-

(କ) 'ଆ' ପ୍ରତ୍ୟୟ ଯୋଗରେ ଗଠିତ-

୧ । ସବୁଦିନ **ପିନ୍ଧା** ଲୁଗା ଧୁଅ ।

୨ । **ରନ୍ଧା** ଖାଦ୍ୟକୁ ଘୋଡ଼ାଇ ରଖ ।

୩ । **ସିଝା** ପାଣି ପିଇବା ଉଚିତ ।

୪ । ପଚା ଫଳ ଖାଅ ନାହିଁ ।

୫ । ଫୁଟା ହାଣ୍ଡିରୁ ପାଣି ଗଳୁଛି ।

(ଖ) 'ଇଲା' ପ୍ରତ୍ୟୟ ଯୋଗରେ ଗଠିତ-

୧ । ହଜିଲା ଜିନିଷ ସହଜରେ ମିଳେ ନାହିଁ ।

୨ । **ଶୋଇଲା** ଲୋକକୁ ଉଠାଅ ନାହିଁ ।

୩ । **ଗଢ଼ିଲା** ମୂର୍ତ୍ତିଟି ଭାଙ୍ଗିଗଲା ।

୪ । ହଳଧର ବାବୁ **ହଲିଲା** ପାଣିରେ ଗୋଡ଼ ଦିଅନ୍ତି ନାହିଁ ।

(ଗ) 'ଲା' ପ୍ରତ୍ୟୟ ଯୋଗରେ ଗଠିତ-

୧ । **ଗଲା** କଥାପାଇଁ ଶୋଚନା କରିବା ଠିକ୍ ନୁହେଁ ।

୨ । **କଲା** କର୍ମର ଫଳ ଅବଶ୍ୟ ଭୋଗ କରିବାକୁ ହୁଏ ।

୩ । **ଦେଲା** ଲୋକକୁ ପ୍ରଶଂସା କର ।

୪ । **ମଲା** ମଣିଷ ବଞ୍ଚେ ନାହିଁ ।

(ଘ) 'ଉଥିଲା' ପ୍ରତ୍ୟୟ ଯୋଗରେ ଗଠିତ-

୧ । **ଯାଉଥିଲା** ପିଲାକୁ କାହିଁକି ଡାକିଲ ?

୨ । **କାନ୍ଦୁଥିଲା** ଛୁଆଟି ଶୋଇଗଲାଣି ।

୩ । **ଉଡୁଥିଲା** ପତାକାଟା ପବନରେ ଉଡ଼ିଗଲା ।

୪ । **କରୁଥିଲା** କାମରୁ ନିବୃତ୍ତ ହୁଅ ନାହିଁ ।

(ଙ) 'ଇଥିଲା' ପ୍ରତ୍ୟୟ ଯୋଗରେ ଗଠିତ-

୧ । ତୁମେ **ପଢ଼ିଥିଲା** ବହିଟି ମୁଁ ପଢ଼ିଛି ।

୨ । **ଶୋଇଥିଲା** ଲୋକକୁ ପୋଲିସ୍ ଧରିନେଲା ।

୩ । ସାବିତ୍ରୀ **ଶୁଣିଥିଲା** ଗୀତଟି ଭୁଲି ଯାଇଛି ।

୪ । **ଦେଖିଥିଲା** ଦୁର୍ଘଟଣା ମୋ ମନରୁ ଯାଉନାହିଁ ।

* ଭବିଷ୍ୟତ କାଳରେ ଗଠିତ କ୍ରିୟାଜ ବିଶେଷଣ-

(କ) 'ଇବା' ପ୍ରତ୍ୟୟ ଯୋଗରେ ଗଠିତ-

୧ । **ହସିବା** ଲୋକ ବେଶିଦିନ ବଞ୍ଚେ ।

୨ । ଦୀନ ଦୁର୍ବଳଙ୍କ ପାଇଁ **କହିବା** ମଣିଷ କମ୍ ଅଛନ୍ତି ।

୩ । **ପଢ଼ିବା** ସମୟ ନଷ୍ଟ କର ନାହିଁ ।

୪ । **ପିଇବା** ପାଣିକୁ ଘୋଡ଼ାଇ ରଖ ।

(ଖ) 'ଉଥିବା' ପ୍ରତ୍ୟୟ ଯୋଗରେ ଗଠିତ-

୧ । ମହାତ୍ମାମାନେ **କହୁଥିବା** କଥାକୁ କାର୍ଯ୍ୟରେ ପରିଣତ କରିଥା'ନ୍ତି ।

୨ । **ଚରୁଥିବା** ଗାଈଗୁଡ଼ିକ ଚୈତନ୍ୟ ବାବୁଙ୍କର ।

୩ । ଦିନରେ **ଶୋଉଥିବା** ଲୋକେ ଅଳସୁଆ ।

୪ । **ଧାଉଁଥିବା** ପିଲାଟି ବୁଦ୍ଧିଆ ।

(ଗ) 'ଇଥିବା' ପ୍ରତ୍ୟୟ ଯୋଗରେ ଗଠିତ-

୧ । ଦେଶ ହିତରେ **ମରିଥିବା** ମଣିଷ ଅମର ।

୨ । **ହଜିଥିବା** ବହିଟି ମିଳିଗଲା ।

୩ । ମୁଁ **ଦେଇଥିବା** ବଚନକୁ ଅବଶ୍ୟ ପାଳନ କରିବି ।

୪ । **ଶୁଣିଥିବା** କଥା ମୋର ଆଉ ମନେ ନାହିଁ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଥିବା କ୍ରିୟାଜ ବିଶେଷଣଗୁଡ଼ିକୁ ରେଖାଙ୍କିତ କରି ଚିହ୍ନାଅ ।

(କ) ଡକ୍ଟର ହରେକୃଷ୍ଣ ମହତାବ ଜଣେ ଲଢୁଆ ମଣିଷ ଥିଲେ ।

(ଖ) ଜଳନ୍ତା ନିଆଁରେ କୁଟା ପକାଅ ନାହିଁ ।

(ଗ) ପଢ଼ିବା ବହିପତ୍ର ସଜାଇ ରଖ ।

(ଘ) ବୁଢ଼ାଟି ଚଳନ୍ତା ଗାଡ଼ିରୁ ପଡ଼ିଗଲା ।

(ଙ) ଦେଲା ଜିନିଷକୁ ଫେରାଇ ନିଅ ନାହିଁ ।

(ଚ) କହୁଥିଲା ଲୋକ କହୁଥିବ, ଶୁଣୁଥିବା ଲୋକ ଶୁଣୁଥିବ ।

(ଛ) ତୁମେ ଯାହା କରିବା କାମ, ତାହା କର ।

୨ । କ୍ରିୟା ବିଶେଷଣ ଓ କ୍ରିୟାଜାତ ବିଶେଷଣ ମଧ୍ୟରେ ଥିବା ପାର୍ଥକ୍ୟ ଉଦାହରଣ ସହ ଉଲ୍ଲେଖ କର ।

୩ । ଅତୀତ କାଳରେ ବ୍ୟବହୃତ ପାଞ୍ଚଟି କ୍ରିୟାଜ ବିଶେଷଣର ଉଦାହରଣ ଦିଅ ।



# ପଦାନ୍ୱୟ

ବାକ୍ୟସ୍ଥ କୌଣସି ପଦର ପରିଚୟ ପ୍ରଦାନପୂର୍ବକ ତାହାର ଅନ୍ୟ ପଦ ସହିତ ଥିବା ସମ୍ବନ୍ଧ ପ୍ରକାଶକୁ ପଦାନ୍ୱୟ କହନ୍ତି । ଅନ୍ୱୟ ଅର୍ଥ ସମ୍ପର୍କ ବା ସମ୍ବନ୍ଧ । ପଦାନ୍ୱୟର ଅନ୍ୟନାମ ପଦ-ପରିଚୟ ।

**ବିଭିନ୍ନ ପଦର ପଦାନ୍ୱୟରେ ଅନୁସୃତ ନିୟମ-**

**ବିଶେଷ୍ୟ**

୧ । କି ପ୍ରକାର ବିଶେଷ୍ୟ - ବ୍ୟକ୍ତିବାଚକ, ଜାତିବାଚକ, ବସ୍ତୁବାଚକ, ଗୁଣବାଚକ ବା କ୍ରିୟାବାଚକ

୨ । ଲିଙ୍ଗ - ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ବା କ୍ଲୀବଲିଙ୍ଗ

୩ । ବଚନ - ଏକବଚନ ବା ବହୁବଚନ

୪ । ପୁରୁଷ - ପ୍ରଥମ, ଦ୍ୱିତୀୟ ବା ତୃତୀୟ ପୁରୁଷ

୫ । କାରକ - କର୍ତ୍ତା, କର୍ମ, କରଣ... ଇତ୍ୟାଦି କାରକ

୬ । ବିଭକ୍ତି - ପ୍ରଥମା, ଦ୍ୱିତୀୟା ବା ଅନ୍ୟ ବିଭକ୍ତି

୭ । କାରକ ହୋଇଥିଲେ କେଉଁ କ୍ରିୟା ସହିତ ସମ୍ପୃକ୍ତ

୮ । କାରକ ନ ଥିଲେ କେଉଁ କାରଣରୁ କେଉଁ ବିଭକ୍ତି

୯ । ସମ୍ବନ୍ଧପଦ ହୋଇଥିଲେ କି ପ୍ରକାର ସମ୍ବନ୍ଧ ଓ କେଉଁ ପଦ ସହିତ ସମ୍ବନ୍ଧ ।

**ଉଦାହରଣ-**

ମନୁଷ୍ୟ ଗଙ୍ଗାର ଜଳରେ ସ୍ନାନ କଲେ ପବିତ୍ରତା ଲାଭକରେ ।

ମନୁଷ୍ୟ - ଜାତିବାଚକ ବିଶେଷ୍ୟ, ପୁଂଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କର୍ତ୍ତାକାରକ, ପ୍ରଥମା ବିଭକ୍ତି, 'ଲାଭକରେ' କ୍ରିୟାର କର୍ତ୍ତା ।

ଗଙ୍ଗାର- ନାମବାଚକ ବା ବ୍ୟକ୍ତିବାଚକ ବିଶେଷ୍ୟ, ସ୍ତ୍ରୀଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, ସମ୍ବନ୍ଧପଦ, ଷଷ୍ଠୀବିଭକ୍ତି, 'ଜଳ' ପଦ ସହିତ ସମ୍ବନ୍ଧିତ ।

ଜଳରେ- ବସ୍ତୁବାଚକ ବିଶେଷ୍ୟ, କ୍ଲୀବଲିଙ୍ଗ, ବହୁବଚନ, ତୃତୀୟ ପୁରୁଷ, କରଣକାରକ, ତୃତୀୟା ବିଭକ୍ତି, 'ସ୍ନାନ କଲେ' କ୍ରିୟା ସହିତ ଅନ୍ୱିତ ।

ସ୍ନାନ- କ୍ରିୟାବାଚକ ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କର୍ମକାରକ, ଦ୍ୱିତୀୟା ବିଭକ୍ତି, 'କଲେ' ଅସମାପିକା କ୍ରିୟା ସହିତ ଅନ୍ୱିତ ।

ପବିତ୍ରତା- ଗୁଣବାଚକ ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟପୁରୁଷ, କର୍ମବାଚକ, ଦ୍ୱିତୀୟା ବିଭକ୍ତି, 'ଲାଭକରେ' କ୍ରିୟା ସହିତ ସମ୍ପୃକ୍ତ ।

## ବିଶେଷଣ

୧ । କି ପ୍ରକାର ବିଶେଷଣ-

୨ । କାହାର ବିଶେଷଣ ବା କାହାକୁ ବିଶେଷିତ କରୁଛି ?

୩ । ଲିଙ୍ଗ

ଉଦାହରଣ-

(କ) **ପରିଶ୍ରମୀ** ଲୋକ ପୁରସ୍କାର ପାଏ ।

ପରିଶ୍ରମୀ- ଗୁଣବାଚକ ବିଶେଷଣ, 'ଲୋକ' ବିଶେଷ୍ୟକୁ ବିଶେଷିତ କରୁଛି, ପୁଂଲିଙ୍ଗ

(ଖ) **ନୀରୋଗ** ଲୋକମାନେ **ଆନନ୍ଦରେ** ରହନ୍ତି ।

ନୀରୋଗ - ବିଶେଷ୍ୟର ବିଶେଷଣ ବା ଅବସ୍ଥାବାଚକ ବିଶେଷଣ 'ଲୋକମାନେ' ବିଶେଷ୍ୟ ପଦକୁ ବିଶେଷିତ କରୁଛି, ପୁଂଲିଙ୍ଗ

ଆନନ୍ଦରେ- କ୍ରିୟାବିଶେଷଣ, 'ରହନ୍ତି' କ୍ରିୟାପଦକୁ ବିଶେଷିତ କରୁଛି ।

(ଗ) ପାଣ୍ଡବମାନେ **ପାଞ୍ଚ** ଭାଇ ଥିଲେ ।

ପାଞ୍ଚ- ସଂଖ୍ୟାବାଚକ ବିଶେଷଣ, 'ଭାଇ' ବିଶେଷ୍ୟ ପଦର ବିଶେଷତ୍ୱ ପ୍ରକାଶ କରୁଛି ।

(ଘ) **ବିପୁଳ** ଧନ ମନୁଷ୍ୟକୁ ଶାନ୍ତି ଦେଇପାରେ ନାହିଁ ।

ବିପୁଳ- ପରିମାଣବାଚକ ବିଶେଷଣ, 'ଧନ' ବିଶେଷ୍ୟପଦକୁ ବିଶେଷିତ କରୁଛି । କ୍ଲୀବଲିଙ୍ଗ

(ଙ) **ଭୀଷ୍ମ ସତ୍ୟପ୍ରତିଜ୍ଞ** ଥିଲେ ।

ସତ୍ୟପ୍ରତିଜ୍ଞ - ବିଧେୟ ବିଶେଷଣ, 'ଭୀଷ୍ମ' ବିଶେଷ୍ୟ ପଦର ବିଶେଷତ୍ୱ ପ୍ରକାଶ କରୁଛି । ପୁଂଲିଙ୍ଗ

## ସର୍ବନାମ

୧ । କି ପ୍ରକାର ସର୍ବନାମ- ବ୍ୟକ୍ତିବାଚକ (ପୁରୁଷବାଚକ), ପ୍ରଶ୍ନବାଚକ, ନିର୍ଦ୍ଦେଶାତ୍ମକ ବା ନିର୍ଣ୍ଣାୟକ ଇତ୍ୟାଦି ।

୨ । ଲିଙ୍ଗ - ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ବା କ୍ଲୀବଲିଙ୍ଗ

୩ । ବଚନ - ଏକବଚନ ବା ବହୁବଚନ

୪ । ପୁରୁଷ - ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପୁରୁଷ

୫ । କାରକ - କର୍ତ୍ତା, କର୍ମ, କରଣ ଇତ୍ୟାଦି

୬ । ବିଭକ୍ତି - ପ୍ରଥମା, ଦ୍ୱିତୀୟା ଇତ୍ୟାଦି

୭ । କାରକ ଥିଲେ କେଉଁ କ୍ରିୟା ସହିତ ସମ୍ପୃକ୍ତ ?

୮ । କାରକ ନ ଥିଲେ କେଉଁ କାରଣରୁ କେଉଁ ବିଭକ୍ତି ?

୯ । ବିଶେଷ୍ୟ ପରିବର୍ତ୍ତେ ବ୍ୟବହୃତ ହୋଇଥିଲେ କେଉଁ ବିଶେଷ୍ୟ ପରିବର୍ତ୍ତେ ଏବଂ ବିଶେଷଣ ବା ବାକ୍ୟାର୍ଥ ପରିବର୍ତ୍ତେ ବ୍ୟବହୃତ ହୋଇଥିଲେ କାହା ପରିବର୍ତ୍ତେ ବ୍ୟବହୃତ, ତାହା ଉଲ୍ଲେଖ କରିବାକୁ ହେବ ।

ଉଦାହରଣ-

୧ । ତୁମେ କ'ଣ କହୁଛ ତାହା ମୁଁ ବୁଝିପାରୁ ନାହିଁ ।

ତୁମେ - ବ୍ୟକ୍ତିବାଚକ ବା ପୁରୁଷବାଚକ ସର୍ବନାମ, ଉଭୟଲିଙ୍ଗ, ଏକବଚନ, ଦ୍ୱିତୀୟପୁରୁଷ, କର୍ତ୍ତାକାରକ, ପ୍ରଥମା ବିଭକ୍ତି, 'କହୁଛ' କ୍ରିୟା ସହିତ ସମ୍ପୃକ୍ତ, କୌଣସି ଏକ ବ୍ୟକ୍ତି ପରିବର୍ତ୍ତେ ବ୍ୟବହୃତ ।

କ'ଣ - ପ୍ରଶ୍ନବାଚକ ସର୍ବନାମ, କ୍ଲୀବ ଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, 'କହୁଛ' କ୍ରିୟା ସହିତ ଅନ୍ୱିତ ।

ତାହା - 'ତୁମେ କ'ଣ କହୁଛ'- ଏହି ବାକ୍ୟ ପରିବର୍ତ୍ତେ ବ୍ୟବହୃତ, କର୍ମକାରକ, 'ବୁଝିପାରୁନାହିଁ' କ୍ରିୟାର କର୍ମ ।

ମୁଁ - ବ୍ୟକ୍ତିବାଚକ ସର୍ବନାମ, ଉଭୟ ଲିଙ୍ଗ, ଏକବଚନ, ପ୍ରଥମ ପୁରୁଷ, କର୍ତ୍ତାକାରକ, ପ୍ରଥମାବିଭକ୍ତି, 'ବୁଝିପାରୁନାହିଁ', କ୍ରିୟା ସହିତ ସମ୍ବନ୍ଧିତ ।

୨ । ଯେ ପରିଶ୍ରମ କରେ, ସେ ପ୍ରକୃତ ଫଳ ପାଏ ।

ଯେ- ଆପେକ୍ଷିକ ବା ସମ୍ବନ୍ଧବାଚକ ସର୍ବନାମ, ଉଭୟ ଲିଙ୍ଗ, ଏକବଚନ, ତୃତୀୟପୁରୁଷ, କର୍ତ୍ତାକାରକ, ପ୍ରଥମାବିଭକ୍ତି, 'କରେ' କ୍ରିୟା ସହିତ ସମ୍ବନ୍ଧାନ୍ୱିତ ।

ସେ- ଆପେକ୍ଷିକ ବା ସମ୍ବନ୍ଧବାଚକ ସର୍ବନାମ, ଉଭୟଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କର୍ତ୍ତାକାରକ, ପ୍ରଥମା ବିଭକ୍ତି, 'ପାଏ' କ୍ରିୟାର କର୍ତ୍ତା ।

## କ୍ରିୟା

୧ । ସମାପିକା ବା ଅସମାପିକା

୨ । ସମାପିକା କ୍ରିୟା ହୋଇଥିଲେ ତାହାର ପୁରୁଷ, ବଚନ, କାଳ ବା ଭାବ ।

୩ । ସକର୍ମକ, ଅକର୍ମକ ବା ଦ୍ୱିକର୍ମକ ।

୪ । କର୍ମପଦର ଉଲ୍ଲେଖ

୫ । ପ୍ରେରଣାର୍ଥକ ବା ନାମଧାତୁ କ୍ରିୟା

୬ । କେଉଁ କର୍ତ୍ତା ସହିତ ସମ୍ବନ୍ଧଯୁକ୍ତ ।

ଉଦାହରଣ-

୧ । ମୁଁ ଭୋଜି **ଖାଇ** ଘରକୁ ଗଲି ।

ଖାଇ- ଅସମାପିକା କ୍ରିୟା, ସକର୍ମକ, 'ଭୋଜି' ଏହାର କର୍ମ, 'ମୁଁ' କର୍ତ୍ତା ସହ ସମ୍ପୃକ୍ତ ।

ଗଲି - ସମାପିକା କ୍ରିୟା, ପ୍ରଥମ ପୁରୁଷ, ଏକବଚନ, ସାଧାରଣ ଅତୀତ କାଳ, ସକର୍ମକ, 'ଘରକୁ' ଏହାର କର୍ମ ।

୨ । ଅତିଥି ଆମ ଘରେ ଅନ୍ନ **ଭୋଜନ କରିଥିଲେ** ।

ଭୋଜନ କରିଥିଲେ- ସମାପିକା ମିଶ୍ରକ୍ରିୟା, ତୃତୀୟ ପୁରୁଷ, ଏକବଚନ, ସମ୍ପନ୍ନ ଅତୀତ କାଳ, ସକର୍ମକ, 'ଅନ୍ନ' ଏହାର କର୍ମ ।

୩ । ଶିକ୍ଷକ ଛାତ୍ରମାନଙ୍କୁ କୋଣାର୍କ **ଦେଖାଉଥିଲେ** ।

ଦେଖାଉଥିଲେ - ସମାପିକା, ପ୍ରେରଣାର୍ଥକ କ୍ରିୟା, ତୃତୀୟ ପୁରୁଷ, ଏକବଚନ, ଅସମ୍ପନ୍ନ ଅତୀତକାଳ, ସକର୍ମକ କ୍ରିୟା, ଏହାର କର୍ମ 'କୋଣାର୍କ' ।

## ଅବ୍ୟୟ

୧ । କେଉଁ ଶ୍ରେଣୀର ଅବ୍ୟୟ

୨ । ତାହାର କାର୍ଯ୍ୟ

ଉଦାହରଣ-

୧ । ସତୀଶ ଓ ପ୍ରୀତିଶ ଦୁଇଭାଇ ।

ଓ- ସଂଯୋଜକ ଅବ୍ୟୟ । ସତୀଶ ଓ ପ୍ରୀତିଶ ଦୁଇ ବିଶେଷ୍ୟ ପଦକୁ ସଂଯୋଗ କରୁଅଛି ।

୨ । ପ୍ରେମାନନ୍ଦ ଭଲ ପଢ଼େ; ମାତ୍ର ଖେଳେନାହିଁ ।

ମାତ୍ର- ବିଯୋଜକ ଅବ୍ୟୟ, 'ପ୍ରେମାନନ୍ଦ ଭଲ ପଢ଼େ', 'ଖେଳେନାହିଁ' ଦୁଇ ବାକ୍ୟକୁ ବିଯୋଗ ବା ପୃଥକ୍ କରୁଛି ।

୩ । **ହଇହୋ** ବାବୁ, **କଅଣ** ହେଲା କି ?

ହଇହୋ - ସମ୍ବୋଧନ ସୂଚକ ଅବ୍ୟୟ, 'ବାବୁ' ବିଶେଷ୍ୟ ପଦକୁ ସମ୍ବୋଧିତ କରୁଛି ।

କଅଣ, କି-ପ୍ରଶ୍ନସୂଚକ ଅବ୍ୟୟ, 'ବାବୁ' ପଦ ପ୍ରତି ଉଦ୍ଦିଷ୍ଟ ।

## ଅନୁଶୀଳନୀ

ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଥିବା କଳାଅକ୍ଷରର ପଦମାନଙ୍କର ପଦାନ୍ୱୟ କର ।

୧ । **ନୀଳ ସାଗରର** ଲହରୀ କୂଳକୁ ଛୁଉଁଛି ।

୨ । **ତୁମେ** ପରିଶ୍ରମ ନ କରି ଭାଗ୍ୟକୁ ନିନ୍ଦନାହିଁ ।

୩ । **ଜଙ୍ଗଲରେ ବାଘ** ରହେ ।

୪ । ହେ ଦାସେ, ଏଠାକୁ **ଆସ** ।

୫ । ଈଶ୍ୱର ମଣିଷକୁ ବିପଦରୁ **ରକ୍ଷା କରନ୍ତି** ।

୬ । ମୁଁ ଯିବିନାହିଁ **କି** ଅଡୁଆରେ ପଶିବି ନାହିଁ ।

୭ । ସନ୍ଧ୍ୟା **ହୁଅନ୍ତେ** ପକ୍ଷୀଗଣ ନୀଡ଼କୁ ଫେରିଲେ ।

୮ । **ଅଳସୁଆ** ଜୀବନରେ ଦୁଃଖ ପାଏ ।

୯ । ରାସ୍ତାକୁ **ଦେଖି** ଚାଲ ।

୧୦ । ମିଥ୍ୟା **କହି** ଯୁଧିଷ୍ଠିର ନରକ **ଦର୍ଶନ କଲେ** ।

୧୧ । **ମାଆ** ମୋତେ ମାମୁଘରକୁ **ପଠାଇଲେ** ।

୧୨ । ଦୀପ **ମିଞ୍ଜିମିଞ୍ଜି** ଜଳୁଛି ।

୧୩ । ରାମ **କିମ୍ବା ରମେଶ** ଏ କାମ କରୁ ।



# ଣବିଧି ଓ ଷବିଧି

## ଣବିଧି (ଣତ୍ୱବିଧି)

ଯେଉଁ ନିୟମରେ ପଦ ମଧ୍ୟସ୍ଥିତ 'ନ' ସ୍ଥାନରେ 'ଣ' ହୁଏ, ତାକୁ 'ଣ' ବିଧି ବା ଣତ୍ୱବିଧି କହନ୍ତି ।

୧ । ପଦ ମଧ୍ୟରେ ର, ଋ, ଷ ପରେ 'ନ' ଥିଲେ, 'ନ' ସ୍ଥାନରେ 'ଣ' ହୋଇଥାଏ । ଯଥା- ରଣ, ତୃଣ, ଘୃଣା, ମସୃଣ, କୃଷ୍ଣ, ବିଶେଷଣ, ଅଗ୍ରଣୀ, ବର୍ଣ୍ଣ, କର୍ଣ୍ଣ, ସ୍ୱର୍ଣ୍ଣ, ପୂର୍ଣ୍ଣ, ଉତ୍ତୀର୍ଣ୍ଣ, ବିଦୀର୍ଣ୍ଣ, ନିର୍ଣ୍ଣୟ, ବିଷ୍ଣୁ, ଜିଷ୍ଣୁ, ତୃଷ୍ଣା ।

୨ । 'ର', 'ଋ' ବା 'ଷ' ପରେ ସ୍ୱରବର୍ଣ୍ଣ; କ ବର୍ଗ-କ, ଖ, ଗ, ଘ, ଙ; ପବର୍ଗ- ପ, ଫ, ବ, ଭ, ମ; ଯ, ବ, ହ ଓ ଅନୁସ୍ୱାର ମଧ୍ୟରୁ ଏକ ବା ଏକାଧିକ ବର୍ଣ୍ଣର ବ୍ୟବଧାନ ଥିଲେ ମଧ୍ୟ 'ନ' ସ୍ଥାନରେ 'ଣ' ହୁଏ । ଯଥା- ମରଣ, ତରଣ, ଶରଣ, ବରଣ, ବରୁଣ, ଅର୍ପଣ, ଦର୍ପଣ, ତର୍ପଣ, ହରଣ, କୃପଣ, ବ୍ରାହ୍ମଣ, ଶ୍ରବଣ, ଭୀଷଣ, ଭାଷଣ, ଦୂଷଣ, ପ୍ରୟାଣ, ପ୍ରମାଣ, ପାଷାଣ, ଆକ୍ରମଣ, ମ୍ରିୟମାଣ, ଆରୋହଣ, ତର୍କଣା, ମାର୍ଗଣ, ଅନ୍ୱେଷଣ, ଶ୍ରମଣ, ପୂର୍ବାହ୍ଣ, ଅପରାହ୍ଣ, ଦାରୁଣ, ରୁକ୍ମିଣୀ, ବୃହଂଣ, ରେଣୁ, ଦ୍ରୋଣ ।

ବ୍ୟତିକ୍ରମ- ର, ଋ, ଷ ପରେ ଅନ୍ୟ ବର୍ଣ୍ଣର ବ୍ୟବଧାନ ଥିଲେ 'ନ' ସ୍ଥାନରେ 'ଣ' ହୁଏ ନାହିଁ । ଯଥା- ନର୍ତ୍ତନ, କୀର୍ତ୍ତନ, ଅର୍ଜୁନ, ରଚନା, ବର୍ଣ୍ଣନା, ମାର୍ଜନା, ମୂର୍ଚ୍ଛନା ।

୩ । ପୂର୍ବ ପଦରେ ର, ଋ, ଷ ଓ ପର ପଦରେ 'ନ' ଥିଲେ, 'ନ' ସ୍ଥାନରେ 'ଣ' ହୁଏ ନାହିଁ । ଯଥା- ଦୁର୍ନାମ, ପୁନର୍ନବା, ନରନାଥ, ନୃଯାନ, ସର୍ବନାମ, ତ୍ରିନେତ୍ର, ଗିରିନନ୍ଦିନୀ, ବିଷପାନ, ହରିନାମ, ମୃଗନାଭି, ସର୍ବନାଶ, ଦୁର୍ନୀତି ।

ସର୍ବନାମ- ସର୍ବ (ପୂର୍ବପଦ) + ନାମ (ପରପଦ)

ଏହି ନିୟମର ମଧ୍ୟ କେତେକ ସ୍ଥଳରେ ବ୍ୟତିକ୍ରମ ଦେଖାଯାଏ ।

ଯଥା – ରାମାୟଣ, ଉତ୍ତରାୟଣ, ନାରାୟଣ, ସୂର୍ପଣଖା ।

୪ । 'ଟ' ବର୍ଗଯୁକ୍ତ 'ନ' 'ଣ' ହୁଏ । ଯଥା- ବଣ୍ଟନ, ଲୁଣ୍ଠନ, ଭାଣ୍ଡ, ଷଣ୍ଢ, କଣ୍ଟକ, ମଣ୍ଡଳ, ଖଣ୍ଡ, ଖଣ୍ଡ, ମଣ୍ଡନ ।

୫ । 'ତ' ବର୍ଗଯୁକ୍ତ 'ନ', 'ଣ' ହୁଏ ନାହିଁ । ଯଥା- କ୍ରାନ୍ତି, ଗ୍ରନ୍ଥ, ବୃନ୍ଦ, କ୍ରନ୍ଦନ, ଚନ୍ଦନ, କୁନ୍ତଳ ।

୬ । ପ୍ର, ପରା, ପରି, ନିର୍ - ଉପସର୍ଗ ପରେ ନମ୍, ନୀ ପ୍ରଭୃତି କେତେକ ସ୍ୱତନ୍ତ୍ର ଧାତୁ ଥିଲେ, ସେହି ଧାତୁସ୍ଥିତ 'ନ' 'ଣ' ହୋଇଥାଏ ।

ଯଥା- ପ୍ରଣତି, ପ୍ରଣାମ, ପ୍ରଣୟ, ପରାକରଣ, ପରିଣୟ, ପରିଣାମ, ନିର୍ମାଣ, ନିର୍ଣ୍ଣୟ ।

୭ । ପଦାନ୍ତ ହସନ୍ତ 'ନ' ର 'ଣ' ହୁଏ ନାହିଁ । ଯଥା- ଶ୍ରୀମାନ୍, ମହୀୟାନ୍, ଗରୀୟାନ୍, ଲଘୀୟାନ୍ ।

୮ । ଣ ବିଧିର ନିୟମକୁ ରକ୍ଷା ନ କରି କେତେକ କ୍ଷେତ୍ରରେ 'ନ', 'ଣ' ହୁଏ । ଏହାକୁ ସ୍ୱାଭାବିକ 'ଣ' କହନ୍ତି । ତତ୍ସମ, ତଦ୍ଭବ ଓ ଦେଶଜ ଶବ୍ଦରେ ଏହି ସ୍ୱାଭାବିକ 'ଣ' ଦେଖିବାକୁ ମିଳେ । ଯଥା- ଅଣକ, ଅଣସୋରିଷ, ଅଣାକାର, ଅଣିମା, ଅଣ୍ଡୁ, ଆଣବିକ, ଆପଣ, ଏଣୀ, ଓଡ଼ିଆଣୀ, ଓଢ଼ଣି, କଙ୍କଣ, କଣ, କଣା, କଣିକା, କଢ଼ାଣ, କଳଣା, କଲ୍ୟାଣ, କହୁଣି, କିଣା, କୁଣିଆ, କୋଣ, ଖଣା, ଖଣି, ଖୁଣ, ଗଡ଼ାଣି, ଗଢ଼ଣ, ଗଣା, ଗଣନା, ଗଣତି, ଗଣିତ, ଗଣ୍ୟ, ଗୁଣ, ଗୁଣାଣ, ଗୁଣିବା, ଗୌଣ, ଘଣା, ଚଣା, ଚାକରାଣୀ, ଚାଣକ୍ୟ, ଚାହାଣି, ଚିକ୍କଣ, ଛଣ, ଛଣା, ଛଣି, ଜଣ, ଜଣା, ଜଣାଣ, ଜାଳେଣି, ଝୁଣା, ଠଣା, ଡେଣା, ଡେଣୁଆ, ଢଣା, ଢମଣା, ଦାଉଣି, ଦୁମୁକାଣି, ଦୁଲଣା, ଦେଣା, ନିକ୍ୱଣ, ନିପୁଣ, ନିଶାଣ, ପଣ, ପଣକିଆ, ପଣତ, ପଠାଣ, ପାଉଣା, ପାଣ, ପାଣି, ପାରଣା, ପାଳଣା, ଫଣା, ଫଣୀ, ଫୁରୁଣା, ଫୁଲଗୁଣା, ଫେଡ଼ାଣ, ବଣ, ବଣା, ବଣି, ବଣିଆ, ବଣିକ, ବସୁଣି, ବଖାଣ, ବାଣ, ବାଣୁଆ, ବାଣିଜ୍ୟ, ବୀଣା, ବିପଣୀ, ବଣା, ବେଣ୍ଣୁ, ବେଣା, ବେଣୀ, ମଣ୍ଡଣି, ମଣି, ମଣିମା, ମଣିଷ, ମଶାଣି, ମାଗୁଣି, ମାଣିକ, ମାଠୁଣି, ମାଣବସା, ରଣ, ରାଣ, ରାଣୀ, ରାନ୍ଧଣା, ରୋଗଣା, ଶାଣ, ଶୁଣାଣି, ଶୋଣ, ଶୋଣିତ, ସଣୁଣା, ସାହାଣମେଲା, ସ୍ଥାଣୁ, ହଇରାଣ, ହଣା ।

## ଷ-ବିଧି (ଷତ୍ୱବିଧି)

ଯେଉଁ ନିୟମରେ 'ସ' ସ୍ଥାନରେ 'ଷ' ହୁଏ, ତାକୁ ଷବିଧି ବା ଷତ୍ୱବିଧି କୁହାଯାଏ ।

୧ । ଅ, ଆ ଭିନ୍ନ ସ୍ୱରବର୍ଣ୍ଣ ପରେ 'ସ' ଥିଲେ, ତାହା 'ଷ' ହୁଏ । ମଝିରେ 'କ' ଓ 'ର' ଥିଲେ ମଧ୍ୟ ହୁଏ । ଯଥା- ଅନୁଷ୍ଠାନ, ଅନୁଷ୍ଠିତ, ଅଭିଷେକ, ଆନୁଷଙ୍ଗିକ, ଆବିଷ୍କାର, ଈର୍ଷା, ଗୋଷ୍ପଦ, ଚତୁଷ୍ପଦ, ଚିକୀର୍ଷା, ଜିଗୀଷା, ନିଷ୍ଫଳ, ନିଷାଦ, ନିଷ୍ଠା, ପରିଷ୍କାର, ପରିଷ୍କୃତ, ପରିଷଦ, ପିତୃଷ୍ୱସା, ପ୍ରତିଷ୍ଠା, ପ୍ରତିଷ୍ଠାନ, ପ୍ରତିଷ୍ଠିତ, ବିଷମ, ବିଷାଦ, ଭବିଷ୍ୟତ, ମାତୃଷ୍ୱସା, ମୁମୂର୍ଷୁ, ଯୁଧିଷ୍ଠିର, ଶୁଶ୍ରୂଷା, ସୁଷୁପ୍ତି, ସୁଷ୍ଠୁ ।

ଏହି ନିୟମର ବ୍ୟତିକ୍ରମ-

ଅସୁସନ୍ଧାନ, ଅନୁସରଣ, ଅଭିସାର, ନିସର୍ଗ, ନିସ୍ତାର, ନୈସର୍ଗିକ, ପରିସର, ବିସର୍ଗ, ବିସର୍ଜନ, ବିସୂଚିକା, ବିସ୍ତାର, ବିସ୍ମରଣ, ବିସ୍ମୃତି

୨ । 'ସାତ୍' ପ୍ରତ୍ୟୟ ସମ୍ବନ୍ଧୀୟ 'ସ', 'ଷ' ହୁଏ ନାହିଁ । ଯଥା- ଅଗ୍ନିସାତ୍, ଉଦରସାତ୍, ଧୂଳିସାତ୍, ଭସ୍ମସାତ୍, ଆତ୍ମସାତ୍

୩ । କେତେକ ଶବ୍ଦରେ ସ୍ୱାଭାବିକ 'ଷ' ଥାଏ । ଯଥା- ଅଶେଷ, ଆଷାଢ଼, ଈଷତ୍, ଉଷା, ଓଷ୍ଠ, ଔଷଧ, କଲୁଷ, କଷଣ, କଷା, କଷାୟ, କର୍ଷଣ, କିଲ୍‌ବିଷ, କୁଷ୍ମାଣ୍ଡ, କୃଷକ, ଚାଷ, ତୋଷ, ଦୂଷଣ, ପାଷାଣ, ପାଷାଣ୍ଡ, ପୁରୁଷ, ପୌଷ, ପ୍ରଦୋଷ, ବର୍ଷ, ବିଷ, ବିଷୟ, ବିଷାଣ, ବିଷାୟନ, ଭାଷା, ଭୂଷଣ, ମଣିଷ, ମେଷ, ରୋଷ, ମୂଷିକ, ଶେଷ, ଶ୍ଳେଷ, ଶୋଷ, ଷୋଡ଼ଶ, ସୋରିଷ, ହର୍ଷ, ମହିଷ, ବିଶେଷ, ସର୍ଷପ

୪ । ଏକ ପଦରେ 'ର' କାର ପର ସ୍ଥିତ 'ସ', 'ଷ' ହୁଏ । ଯଥା- କୃଷକ, କୃଷ୍ଣ, ତୃଷ୍ଣା, ବୃଷଭ, ବୃକ୍ଷ (କ୍ + ଷ୍ = କ୍ଷ)

୫ । ସାଧାରଣତଃ ଦେଶଜ ଓ ବୈଦେଶିକ ଶବ୍ଦରେ 'ସ', 'ଷ' ହୁଏ ନାହିଁ । ଯଥା- ଇସାରା, ରୋସନି, କୋସିସ୍, ନୋଟିସ୍, ସ୍କୁଲ୍, ହିସାବ, ବାକ୍‌ସ, ମୁସ୍କିଲ୍, ମୁସ୍ତରି, ମୁହାଁସ, ହେଁସ, ହାସପାତାଳ, ହାସଲ, ଲସି, ଲସ୍କର, ଲସା, ଲସି ପ୍ରଭୃତି ।

କିନ୍ତୁ କେମେଷ୍ଟ୍ରି, ବାରିଷ୍ଟର, ମାଜିଷ୍ଟ୍ରେଟ୍, ଷ୍ଟେସନ୍ ପ୍ରଭୃତି ଇଂରାଜୀ ଶବ୍ଦରେ 'ଷ'ର ବ୍ୟବହାର ହୋଇଥାଏ ।

## ଅନୁଶୀଳନୀ

୧ । ଅଶୁଦ୍ଧି ସଂଶୋଧନ କରି ଲେଖ ।

(କ) ଉସାକାଳରେ କୃଷ୍ଣଙ୍କୁ ସ୍ତୁତି କର ।

(ଖ) ମନୀସୀମାନେ ହରିନାମକୁ ସଂସାରରେ ବିସାଦ ଓ ଅବସାଦରୋଗର ଔଷଧ ବୋଲି କହିଛନ୍ତି ।

(ଗ) ନିସାଦରାଜ ଗୁହକ ରାମଚନ୍ଦ୍ରଙ୍କର ସ୍ୱାଗତ କରିଥିଲେ ।

(ଘ) ପୂର୍ବାହ୍ନରେ ଦେବକାର୍ଯ୍ୟ ଓ ଅପରାହ୍ନରେ ପିତୃକାର୍ଯ୍ୟ କରାଯାଏ ।

(ଙ) ମନରେ ବିସନ୍ନତାକୁ ସ୍ଥାନ ଦିଅ ନାହିଁ ।

(ଚ) ହୋମପାଇଁ ଆନୁସଙ୍ଗିକ ଦ୍ରବ୍ୟମାନ ସଂଗୃହୀତ ହୋଇଛି ।

(ଛ) ପୂଜାଷ୍ପଦ ଆଜି ଗୋଷ୍ପଦ ପୁସ୍କର ।

(ଜ) ଭୂକମ୍ପରେ ଗାଁ'ଗଣ୍ଡା, ସହରବଜାର, କୋଠାବାଡ଼ି ସବୁ ଧୂଳିଷାତ୍ ହୋଇଯାଏ ।
(ଝ) ଭୀଷ୍ମ ମୁମୁର୍ଷୁ ଅବସ୍ଥାରେ ଯୁଧିଷ୍ଠିରଙ୍କୁ ନୀତିଶିକ୍ଷା ଦେଇଥିଲେ ।
(ଞ) ଯେ ପର ତିରଷ୍କାରକୁ ଉପେକ୍ଷା କରିଥାଏ, ସେ ହିଁ ଜଗତରେ ବିଜୟୀ ।
(ଟ) କର୍ନ୍ନଙ୍କର ଷଖ୍ୟ ଓ ସତ୍ୟନିଷ୍ଠା ତାଙ୍କୁ ଅମର କରିଛି ।
(ଠ) ନିଷ୍ଫଳ ପ୍ରୟାସ ସ୍ପୃହଣୀୟ ନୁହେଁ ।
(ଡ) ବିସ୍ତୀର୍ନ୍ନ ସାଗରକୁ ସଂତରଣଦ୍ୱାରା ଉତ୍ତୀର୍ଣ୍ଣ ହେବା ଗୌରବର ବିଷୟ ।
(ଢ) ଆବିଷ୍କାର ଓ ଉଦ୍ଭାବନ ମଧ୍ୟରେ ବିଷେସ ପାର୍ଥକ୍ୟ ଅଛି ।
(ଣ) ଅନ୍ୟର ପଥକୁ ସର୍ବଦା ଅନୁଷରଣ ନ କରି ନିଜେ ପଥ ତିଆରି କର ।

୨ । ନିମ୍ନଲିଖିତ ଶବ୍ଦଗୁଡ଼ିକରେ 'ଣ' ହେବାର କାରଣ ଲେଖ ।
ଦେଣା, କରୁଣ, ପୂର୍ବାହ୍ଣ, ଆକ୍ରମଣ, ଦର୍ପଣ, କଣ୍ଟକ, ପରିଣୟ

୩ । ନିମ୍ନଲିଖିତ ଶବ୍ଦଗୁଡ଼ିକର 'ଷ' ହେବାର କାରଣ ଲେଖ ।
ବିଷମ, ଈର୍ଷା, ପରିଷଦ, ନିଷାଦ, ପ୍ରତିଷ୍ଠା, ଅଭିଷେକ, କୃଷ୍ଣ ।

୪ । ପାଞ୍ଚଟି ଲେଖାଏଁ ସ୍ୱାଭାବିକ 'ଣ' ଓ 'ଷ' ହେଉଥିବା ଶବ୍ଦ ଲେଖ ।

୫ । ନିର୍ଦ୍ଦେଶ ଅନୁସାରେ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦିଅ –
କେଉଁ ନିୟମରେ 'ନ' 'ଣ' ହୋଇନାହିଁ ବା ହୋଇଛି ଠିକ୍ ଉତ୍ତରଟିକୁ ଗ୍ରହଣ କର–
(କ) ମସୃଣ (ପଦ ମଧ୍ୟରେ ଋ, ର, ଷ ପରେ 'ଣ' ଥିବାରୁ / ସ୍ୱାଭାବିକ 'ଣ')
(ଖ) ପ୍ରସୂନ ('ନ' ସ୍ଥାନରେ 'ଣ' ହୋଇପାରିବ ନାହିଁ / 'ଊ' କାର ପରେ 'ନ')
(ଗ) ରଚନା (ସ୍ୱାଭାବିକ 'ନ' / 'ଋ', 'ର', 'ଷ' ପରେ ଅନ୍ୟ ବର୍ଣ୍ଣର ବ୍ୟବଧାନ ଥିଲେ)
(ଘ) ହଇରାଣ (ସ୍ୱାଭାବିକ 'ଣ' / 'ଣ' ପୂର୍ବରୁ 'ଆ' ଥିବାରୁ)
(ଙ) ମନ (ସ୍ୱାଭାବିକ 'ନ' / 'ଅ' ସ୍ୱରବର୍ଣ୍ଣ 'ନ' ପୂର୍ବରୁ ଥିବାରୁ)



# ସନ୍ଧି

(କ) ବିଦ୍ୟା ଅଭିମାନ ଜ୍ଞାନୀଲୋକକୁ ଶୋଭାପାଏନା ।

(ଖ) ଗୁରୁଜନଙ୍କର ହିତ ଉପଦେଶ ଶୁଣ ।

(ଗ) ଲୋକ ମହା ଐଶ୍ୱର୍ଯ୍ୟ ଭିତରେ ବୁଡ଼ିରହିଲେ, ହିତାହିତ ଜ୍ଞାନ ଭୁଲିଯାଏ ।

ତଳେ ବାକ୍ୟ ତିନୋଟିକୁ କିପରି ସଂକ୍ଷିପ୍ତ କରି ଲେଖାଯାଇଛି, ପଢ଼ ।

(ଘ) **ବିଦ୍ୟାଭିମାନ** ଜ୍ଞାନୀଲୋକକୁ ଶୋଭାପାଏନା ।

(ଙ) ଗୁରୁଜନଙ୍କର **ହିତୋପଦେଶ** ଶୁଣ ।

(ଚ) ଲୋକ **ମହୈଶ୍ୱର୍ଯ୍ୟ** ଭିତରେ ବୁଡ଼ିରହିଲେ, ହିତାହିତ ଜ୍ଞାନ ଭୁଲିଯାଏ ।

'କ', 'ଖ', 'ଗ' ବାକ୍ୟରେ ବିଦ୍ୟା ଅଭିମାନ, ହିତ ଉପଦେଶ, ମହା ଐଶ୍ୱର୍ଯ୍ୟ ପୃଥକ୍ ପୃଥକ୍ ପଦ ଭାବରେ ବ୍ୟବହୃତ ହୋଇଛନ୍ତି; ମାତ୍ର 'ଘ', 'ଙ', 'ଚ' ବାକ୍ୟମାନଙ୍କରେ ଯଥାକ୍ରମେ ବିଦ୍ୟାଭିମାନ, ହିତୋପଦେଶ, ମହୈଶ୍ୱର୍ଯ୍ୟ ଗୋଟିଏ ଗୋଟିଏ ପଦରେ ପରିଣତ ହୋଇଛନ୍ତି । ଉଚ୍ଚାରଣ ସୁବିଧା, ଶୀଘ୍ରତା ଓ ଶ୍ରୁତିମଧୁରତାପାଇଁ ଏପରି କରାଯାଇଛି ।

ବିଦ୍ୟା ଅଭିମାନ- ଏହି ଦୁଇପଦରେ ବିଦ୍ୟା ପୂର୍ବପଦ ଓ ଅଭିମାନ ପରପଦ । 'ବିଦ୍ୟା'ର ଶେଷବର୍ଣ୍ଣ 'ଦ୍ୟା'ରେ ଥିବା 'ଆ' ସହିତ ପରପଦ 'ଅଭିମାନ'ର ପ୍ରଥମ ବର୍ଣ୍ଣ 'ଅ'ର ମିଶ୍ରଣ ବା ମିଳନ ଘଟିଛି ।

ପୂର୍ବପଦର ଶେଷବର୍ଣ୍ଣ ସହ ପରପଦର ଆଦ୍ୟବର୍ଣ୍ଣର ମିଳନକୁ ସନ୍ଧି କହନ୍ତି ।

ସନ୍ଧିଦ୍ୱାରା ଦୁଇବର୍ଣ୍ଣର ମିଳନ ଘଟେ ଏବଂ ଦୁଇପଦ ଏକପଦରେ ପରିଣତ ହୁଅନ୍ତି । ଏକପଦ ହେଉଥିବା ପଦକୁ 'ସନ୍ଧିପଦ' କହନ୍ତି । ଯଥା- ବିଦ୍ୟାଭିମାନ, ହିତୋପଦେଶ, ମହୈଶ୍ୱର୍ଯ୍ୟ । ସନ୍ଧି ଭାଷାକୁ ସଂକ୍ଷିପ୍ତ, ସମୃଦ୍ଧ ଓ ଶ୍ରୁତିମଧୁର କରିଥାଏ ।

ସନ୍ଧିରେ ଗୋଟିଏ ବର୍ଣ୍ଣର ବା ଉଭୟ ବର୍ଣ୍ଣର ପରିବର୍ତ୍ତନ ଘଟେ । ଯଥା- ବାକ୍ + ଈଶ୍ୱରୀ = ବାଗୀଶ୍ୱରୀ ('କ୍' ର 'ଗ୍'ରେ ପରିବର୍ତ୍ତନ) । ତଥା + ଏବ = ତଥୈବ ('ଆ', 'ଏ' ର 'ଐ'ରେ ପରିବର୍ତ୍ତନ)

ଶ୍ରୁତିକଟୁ ହେଉଥିବା ସ୍ଥଳରେ ସନ୍ଧି ବର୍ଜନୀୟ । ଯଥା- ଅଙ୍କ + ଅଙ୍କ = ଅଙ୍କାଙ୍କ, ସୁନ୍ଦର + ଉଆସ = ସୁନ୍ଦରୋଆସ, ବନ୍ଧୁ + ଆଗମନ = ବନ୍ଧ୍ୱାଗମନ ।

ଓଡ଼ିଆ ଭାଷାରେ ତତ୍ସମ ବା ସଂସ୍କୃତ ଶବ୍ଦର ବିଶେଷ ବ୍ୟବହାର ହେତୁ ସେଗୁଡ଼ିକର ସନ୍ଧିନିୟମ ସଂସ୍କୃତ ଭାଷାର ସନ୍ଧିନିୟମକୁ ଅବିକଳ ଭାବରେ ଗ୍ରହଣ କରାଯାଇଥାଏ ।

ଦେଶଜ ଶବ୍ଦର ସନ୍ଧି କରାଗଲାବେଳେ କେତେକ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ଯଥା- ଆର + ଏକ = ଆରେକ ।

ସ୍ୱର, ବ୍ୟଞ୍ଜନ ଓ ବିସର୍ଗ ବର୍ଣ୍ଣକୁ ନେଇ ସନ୍ଧି ହୋଇଥାଏ । ଏଣୁ ସନ୍ଧି ତିନି ପ୍ରକାର । ଯଥା- ସ୍ୱର ସନ୍ଧି, ବ୍ୟଞ୍ଜନ ସନ୍ଧି ଓ ବିସର୍ଗ ସନ୍ଧି ।

## ସ୍ୱର ସନ୍ଧି

ପରସ୍ପର ସନ୍ନିହିତ ଦୁଇଟି ସ୍ୱରବର୍ଣ୍ଣର ମିଳନକୁ ସ୍ୱରସନ୍ଧି କୁହାଯାଏ ।

ସନ୍ଧିସୂତ୍ର ବା ନିୟମାବଳୀ-

୧ ।(କ) ଅ + ଅ = ଆ

ଏକ + ଅଧିକ = ଏକାଧିକ　　ସୁର + ଅସୁର = ସୁରାସୁର

ବନ + ଅଞ୍ଚଳ = ବନାଞ୍ଚଳ　　ଜ୍ଞାନ + ଅଜ୍ଞାନ = ଜ୍ଞାନାଜ୍ଞାନ

ନର + ଅଧମ = ନରାଧମ　　ଦଶ + ଅବତାର = ଦଶାବତାର

ନୀଳ + ଅମ୍ବୁ = ନୀଳାମ୍ବୁ　　ବର + ଅନୁଗମନ = ବରାନୁଗମନ

ନବ + ଅନ୍ନ = ନବାନ୍ନ　　ତୃଣ + ଅଙ୍କୁର = ତୃଣାଙ୍କୁର

(ଖ) ଅ + ଆ = ଆ

ବର୍ଣ୍ଣ + ଆଢ୍ୟ = ବର୍ଣ୍ଣାଢ୍ୟ　　ଅନାଥ + ଆଶ୍ରମ = ଅନାଥାଶ୍ରମ

ଏକ + ଆତ୍ମା = ଏକାତ୍ମା　　ଶୋକ + ଆବହ = ଶୋକାବହ

ଜଳ + ଆଶୟ = ଜଳାଶୟ　　ଶବ + ଆଧାର = ଶବାଧାର

ମେଘ + ଆସନ = ମେଘାସନ　　ଦଣ୍ଡ + ଆଦେଶ = ଦଣ୍ଡାଦେଶ

ଚନ୍ଦ୍ର + ଆନନ = ଚନ୍ଦ୍ରାନନ　　ଦୁଃଖ + ଆକର = ଦୁଃଖାକର

ସତ୍ୟ + ଆନନ୍ଦ = ସତ୍ୟାନନ୍ଦ　　କାର୍ଯ୍ୟ + ଆଳୟ = କାର୍ଯ୍ୟାଳୟ

ସର୍ପ + ଆଘାତ = ସର୍ପାଘାତ　　ସ୍ୱର୍ଗ + ଆରୋହଣ = ସ୍ୱର୍ଗାରୋହଣ

(ଗ) ଆ + ଅ = ଆ

ଧରା + ଅବତରଣ = ଧରାବତରଣ　　ସୂଚନା + ଅଧିକାର = ସୂଚନାଧିକାର

ବିଦ୍ୟା + ଅଧିପତି = ବିଦ୍ୟାଧିପତି　　ସିତା + ଅଂଶୁ = ସିତାଂଶୁ

ବିଦ୍ୟା + ଅଧ୍ୟୟନ = ବିଦ୍ୟାଧ୍ୟୟନ　　ମହା + ଅନ୍ଧକାର = ମହାନ୍ଧକାର

ସୁଧା + ଅଶନ = ସୁଧାଶନ　　କ୍ଷୁଧା + ଅଭାବ = କ୍ଷୁଧାଭାବ

ଶ୍ରଦ୍ଧା + ଅର୍ପଣ = ଶ୍ରଦ୍ଧାର୍ପଣ　　ଦୁର୍ଗା + ଅଷ୍ଟମୀ = ଦୁର୍ଗାଷ୍ଟମୀ

(ଘ) ଆ + ଆ = ଆ

| | |
|---|---|
| ଗଦା + ଆଘାତ = ଗଦାଘାତ | ଶୋଭା + ଆକର = ଶୋଭାକର |
| ସଦା + ଆନନ୍ଦ = ସଦାନନ୍ଦ | ତୃଷା + ଆତୁର = ତୃଷାତୁର |
| ମହା + ଆକାଶ = ମହାକାଶ | ଦେବତା + ଆଳୟ = ଦେବତାଳୟ |
| ସୂଚନା + ଆବଳୀ = ସୂଚନାବଳୀ | ବିଦ୍ୟା + ଆରମ୍ଭ = ବିଦ୍ୟାରମ୍ଭ |

ସୂତ୍ର- 'ଅ' ବା 'ଆ' ପରେ 'ଅ' ବା 'ଆ' ଥିଲେ, ଦୁହେଁ ମିଶି 'ଆ' ହୁଅନ୍ତି । ସେହି 'ଆ' ଆକାର (।) ହୋଇ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

ସନ୍ଧିନିୟମ ବହିର୍ଭୂତ-

କୁଳ + ଅଟା = କୁଳଟା (ବ୍ୟଭିଚାରିଣୀ ସ୍ତ୍ରୀ)

ସୀମା + ଅନ୍ତ = ସୀମନ୍ତ (ସୁନ୍ଥା)

ସାର + ଅଙ୍ଗ = ସାରଙ୍ଗ (ପଶୁ ଓ ପକ୍ଷୀ)

ମାତ୍ର କୁଳାଟା - କୂଳବଧୂ, ସୀମାନ୍ତ - ଶେଷସୀମା, ସାରାଙ୍ଗ - ମଲ୍ଲ

୨ । (କ) ଇ + ଇ = ଈ

| | |
|---|---|
| କବି + ଇନ୍ଦ୍ର = କବୀନ୍ଦ୍ର | ଅତି + ଇତ = ଅତୀତ |
| ଗିରି + ଇନ୍ଦ୍ର = ଗିରୀନ୍ଦ୍ର | ପ୍ରତି + ଇତ = ପ୍ରତୀତ |
| ଅତି + ଇବ = ଅତୀବ | ଅଭି + ଇଷ୍ଟ = ଅଭୀଷ୍ଟ |

(ଖ) ଇ + ଈ = ଈ

| | |
|---|---|
| ମୁନି + ଈଶ = ମୁନୀଶ | ପରି + ଈକ୍ଷା = ପରୀକ୍ଷା |
| କପି + ଈଶ = କପୀଶ | ଅଧି + ଈଶ୍ୱର = ଅଧୀଶ୍ୱର |
| ହରି + ଈଶ = ହରୀଶ | କବି + ଈଶ୍ୱର = କବୀଶ୍ୱର |
| ଗିରି + ଈଶ = ଗିରୀଶ | କପି + ଈଶ୍ୱର = କପୀଶ୍ୱର |

(ଗ) ଈ + ଇ = ଈ

| | |
|---|---|
| ଗୁଣୀ + ଇନ୍ଦ୍ର = ଗୁଣୀନ୍ଦ୍ର | ମହୀ + ଇନ୍ଦ୍ର = ମହୀନ୍ଦ୍ର |
| ଶଚୀ + ଇନ୍ଦ୍ର = ଶଚୀନ୍ଦ୍ର | ତପୀ + ଇନ୍ଦ୍ର = ତପୀନ୍ଦ୍ର |

(ଘ) ଈ + ଈ = ଈ

| | |
|---|---|
| ଭବାନୀ + ଈଶ = ଭବାନୀଶ | ଗୌରୀ + ଈଶ = ଗୌରୀଶ |
| ପାର୍ବତୀ + ଈଶ = ପାର୍ବତୀଶ | ସତୀ + ଈଶ = ଶତୀଶ |
| ଲକ୍ଷ୍ମୀ + ଈଶ = ଲକ୍ଷ୍ମୀଶ | ପୃଥ୍ୱୀ + ଈଶ୍ୱର = ପୃଥ୍ୱୀଶ୍ୱର |
| ରଜନୀ + ଈଶ = ରଜନୀଶ | କାଶୀ + ଈଶ୍ୱର = କାଶୀଶ୍ୱର |
| ଅବନୀ + ଈଶ = ଅବନୀଶ | ଧରଣୀ + ଈଶ୍ୱର = ଧରଣୀଶ୍ୱର |

ସୂତ୍ର - 'ଇ' ବା 'ଈ' ପରେ 'ଇ' ବା 'ଈ' ଥିଲେ ଦୁହେଁ ମିଶି 'ଈ' ହୁଅନ୍ତି । ସେହି 'ଈ' ଈକାର (ୀ) ହୋଇ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୩ । (କ) ଉ + ଉ = ଊ

| | |
|---|---|
| ସାଧୁ + ଉପଦେଶ = ସାଧୂପଦେଶ | ସୁ + ଉକ୍ତି = ସୂକ୍ତି |
| ସାଧୁ + ଉଦ୍ୟମ = ସାଧୂଦ୍ୟମ | କଟୁ + ଉକ୍ତି = କଟୂକ୍ତି |
| ମରୁ + ଉଦ୍ୟାନ = ମରୂଦ୍ୟାନ | ଭାନୁ + ଉଦୟ = ଭାନୂଦୟ |
| ମଧୁ + ଉତ୍ସବ = ମଧୂତ୍ସବ | ବିଧୁ + ଉଦୟ = ବିଧୂଦୟ |

(ଖ) ଉ + ଊ = ଊ

| | |
|---|---|
| ସିନ୍ଧୁ + ଊର୍ମି = ସିନ୍ଧୂର୍ମି | ବିଭୁ + ଊର୍ଜଃ = ବିଭୂର୍ଜଃ |
| ଲଘୁ + ଊର୍ମି = ଲଘୂର୍ମି | ସାଧୁ + ଊର୍ଜଃ = ସାଧୂର୍ଜଃ |
| ଧେନୁ + ଊଧଃ = ଧେନୂଧଃ | ବିଧୁ + ଊର୍ଦ୍ଧ୍ୱ = ବିଧୂର୍ଦ୍ଧ୍ୱ |

(ଗ) ଊ + ଉ = ଊ

| | |
|---|---|
| ବଧୂ + ଉକ୍ତି = ବଧୂକ୍ତି | ବଧୂ + ଉଦ୍ଧାର = ବଧୂଦ୍ଧାର |
| ବଧୂ + ଉତ୍ସବ = ବଧୂତ୍ସବ | ଚମୂ + ଉଦ୍ଧାର = ଚମୂଦ୍ଧାର |

(ଘ) ଊ + ଊ = ଊ

| | |
|---|---|
| | ଚମୂ + ଊର୍ଜ = ଚମୂର୍ଜ |
| ଭୂ + ଊର୍ଦ୍ଧ୍ୱ = ଭୂର୍ଦ୍ଧ୍ୱ | ଭୂ + ଊର୍ଜ = ଭୂର୍ଜ |

'ଉ' ବା 'ଊ' ପରେ 'ଉ' ବା 'ଊ' ଥିଲେ, ଦୁହେଁ ମିଶି 'ଊ' ହୁଅନ୍ତି । ସେହି 'ଊ' ଊକାର ( ୂ ) ହୋଇ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୪ । (କ) ଅ + ଇ = ଏ

| | |
|---|---|
| ଗଜ + ଇନ୍ଦ୍ର + ଗଜେନ୍ଦ୍ର | ପୂର୍ଣ୍ଣ + ଇନ୍ଦୁ = ପୂର୍ଣ୍ଣେନ୍ଦୁ |
| ନୃପ + ଇନ୍ଦ୍ର = ନୃପେନ୍ଦ୍ର | ବାଳ + ଇନ୍ଦୁ = ବାଳେନ୍ଦୁ |
| ନର + ଇନ୍ଦ୍ର = ନରେନ୍ଦ୍ର | ଅର୍ଦ୍ଧ + ଇନ୍ଦୁ = ଅର୍ଦ୍ଧେନ୍ଦୁ |
| ରଣ + ଇନ୍ଦ୍ର = ରଣେନ୍ଦ୍ର | ଶୁଭ + ଇଚ୍ଛା = ଶୁଭେଚ୍ଛା |
| ପଞ୍ଚ + ଇନ୍ଦ୍ରିୟ = ପଞ୍ଚେନ୍ଦ୍ରିୟ | ଜ୍ଞାନ + ଇନ୍ଦ୍ରିୟ = ଜ୍ଞାନେନ୍ଦ୍ରିୟ |

(ଖ) ଅ + ଈ = ଏ

| | |
|---|---|
| ଦେବ + ଈଶ = ଦେବେଶ | ଗଣ + ଈଶ୍ୱର = ଗଣେଶ୍ୱର |
| ଜୀବ + ଈଶ = ଜୀବେଶ | ରାମ + ଈଶ୍ୱର = ରାମେଶ୍ୱର |
| ସୁର + ଈଶ = ସୁରେଶ | ସୁର + ଈଶ୍ୱର = ସୁରେଶ୍ୱର |
| ଭୁବନ + ଈଶ୍ୱରୀ = ଭୁବନେଶ୍ୱରୀ | କପାଳ + ଈଶ୍ୱର = କପାଳେଶ୍ୱର |
| ବିନ୍ଧ୍ୟ + ଈଶ୍ୱରୀ = ବିନ୍ଧ୍ୟେଶ୍ୱରୀ | ଇଂଲଣ୍ଡ + ଈଶ୍ୱରୀ = ଇଂଲଣ୍ଡେଶ୍ୱରୀ |
| ସୁର + ଈଶ୍ୱରୀ = ସୁରେଶ୍ୱରୀ | ନବ + ଈଶା = ନବେଶା |

(ଗ) ଆ + ଇ = ଏ

ଯଥା + ଇଚ୍ଛା = ଯଥେଚ୍ଛା — ମହା + ଇନ୍ଦ୍ର = ମହେନ୍ଦ୍ର

ଯଥା + ଇଷ୍ଟ = ଯଥେଷ୍ଟ — ଦୁର୍ଗା + ଇଜ୍ୟା = ଦୁର୍ଗେଜ୍ୟା

(ଘ) ଆ + ଈ = ଏ

ଦୁର୍ଗା + ଈଶ = ଦୁର୍ଗେଶ — ମହା + ଈଶ୍ୱର = ମହେଶ୍ୱର

ମହା + ଈଶ = ମହେଶ — କମଳା + ଈଶ୍ୱର = କମଳେଶ୍ୱର

ରମା + ଈଶ = ରମେଶ — ତାରକା + ଈଶ୍ୱର = ତାରକେଶ୍ୱର

'ଅ' ବା 'ଆ' ପରେ 'ଇ' ବା 'ଈ' ଥିଲେ, ଦୁହେଁ ମିଶି 'ଏ' ହୁଅନ୍ତି । ସେହି 'ଏ' ଏ କାର (େ) ହୋଇ, ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

ନିୟମ ବହିର୍ଭୂତ - ହଳ + ଈଷା = ହଳୀଷା, ଲାଙ୍ଗଳ + ଈଷା = ଲାଙ୍ଗଳୀଷା, ମନ + ଈଷା = ମନୀଷା, ସ୍ୱ + ଈରିଣୀ = ସ୍ୱୈରିଣୀ

୫ । (କ) ଅ + ଉ = ଓ

ନବ + ଉଦୟ = ନବୋଦୟ — ସର୍ବ + ଉଦୟ = ସର୍ବୋଦୟ

ସୂର୍ଯ୍ୟ + ଉଦୟ = ସୂର୍ଯ୍ୟୋଦୟ — ଲମ୍ବ + ଉଦର = ଲମ୍ବୋଦର

ଜ୍ଞାନ + ଉଦୟ = ଜ୍ଞାନୋଦୟ — ପର + ଉପକାର = ପରୋପକାର

ମାନବ + ଉଚିତ = ମାନବୋଚିତ — ସର୍ବ + ଉତ୍ତମ = ସର୍ବୋତ୍ତମ

କୁମାର + ଉତ୍ସବ = କୁମାରୋତ୍ସବ — ହିତ + ଉପଦେଶ = ହିତୋପଦେଶ

ମରଣ + ଉତ୍ତର = ମରଣୋତ୍ତର

(ଖ) ଅ + ଊ = ଓ

ଏକ + ଊନ = ଏକୋନ — ଶୋଣ + ଊର୍ମି = ଶୋଣୋର୍ମି

ଏକ + ଊନବିଂଶ = ଏକୋନବିଂଶ — ଚଳ + ଊର୍ମି = ଚଳୋର୍ମି

ନବ + ଊଢ଼ା = ନବୋଢ଼ା — ସାଗର + ଊର୍ମି = ସାଗରୋର୍ମି

(ଗ) ଆ + ଉ = ଓ

ଦୁର୍ଗା + ଉତ୍ସବ = ଦୁର୍ଗୋତ୍ସବ — ମହା + ଉପକାର = ମହୋପକାର

ମହା + ଉତ୍ସବ = ମହୋତ୍ସବ — ଯଥା+ ଉଚିତ = ଯଥୋଚିତ

ମହା + ଉଦଧି = ମହୋଦଧି — ଗଙ୍ଗା + ଉଦକ = ଗଙ୍ଗୋଦକ

ଶୈଳ + ଉଦ୍ଭବ = ଶୈଳୋଦ୍ଭବ — ମାଳ + ଉପମା = ମାଳୋପମା

ସର୍ବ + ଉଚ୍ଚ = ସର୍ବୋଚ୍ଚ — ସ୍ନାତକ + ଉତ୍ତର = ସ୍ନାତକୋତ୍ତର

(ଘ) ଆ + ଉ = ଓ

ମହା + ଉରୁ = ମହୋରୁ ମହା + ଊର୍ମି = ମହୋର୍ମି

ମହା + ଊର୍ଜଃ = ମହୋର୍ଜଃ ଗଙ୍ଗା + ଊର୍ମି = ଗଙ୍ଗୋର୍ମି

ସୂତ୍ର- 'ଅ' ବା 'ଆ' ପରେ 'ଉ' ବା 'ଊ' ଥିଲେ, ଦୁହେଁ ମିଶି 'ଓ' ହୁଅନ୍ତି । ସେହି 'ଓ' ଓ କାର (ୋ) ହୋଇ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

ନିୟମ ବହିର୍ଭୂତ- ପ୍ର + ଊଢ଼ = ପ୍ରୌଢ଼, ପ୍ର + ଊଢ଼ି = ପ୍ରୌଢ଼ି, ଅକ୍ଷ + ଊହିନୀ = ଅକ୍ଷୌହିଣୀ (ସେନା)

୬ । (କ) ଅ + ଋ = ଅର୍

ଦେବ + ଋଷି = ଦେବର୍ଷି ଉତ୍ତମ + ଋଣ = ଉତ୍ତମର୍ଣ୍ଣ

ବ୍ରହ୍ମ + ଋଷି = ବ୍ରହ୍ମର୍ଷି ଅଧମ + ଋଣ = ଅଧମର୍ଣ୍ଣ

ସପ୍ତ + ଋଷି = ସପ୍ତର୍ଷି ଦେବ + ଋଣ = ଦେବର୍ଣ୍ଣ

(ଖ) ଆ + ଋ = ଅର୍

ମହା + ଋଷି = ମହର୍ଷି ମହା + ଋଦ୍ଧି = ମହର୍ଦ୍ଧି(ଋଦ୍ଧି-ସମୃଦ୍ଧି)

ରାଜା + ଋଷି = ରାଜର୍ଷି ବର୍ଷା + ଋତୁ = ବର୍ଷର୍ତ୍ତୁ

ସୂତ୍ର - 'ଅ' ବା 'ଆ' ପରେ 'ଋ' ଥିଲେ, ଦୁହେଁ ମିଶି 'ଅର୍' ହୁଅନ୍ତି । 'ଅ' ପୂର୍ବବର୍ଣ୍ଣରେ ଓ 'ର୍' ରେଫ ( ର୍ ) ହୋଇ ପରବର୍ଣ୍ଣରେ ଯୁକ୍ତ ହୁଏ ।

୭ । (କ) ଅ + ଏ = ଐ

ଏକ + ଏକ = ଏକୈକ ହୃଦ + ଏକାଗ୍ରତା = ହୃଦୈକାଗ୍ରତା

ଜନ + ଏକ = ଜନୈକ ଜନ + ଏକୀକରଣ = ଜନୈକୀକରଣ

ଦୃଢ଼ + ଏକ = ଦୃଢ଼ୈକ ବିଶ୍ୱ + ଏକାଦଶ = ବିଶ୍ୱୈକାଦଶ

ହିତ + ଏଷୀ = ହିତୈଷୀ ଦିବ୍ୟ + ଏକ = ଦିବ୍ୟୈକ

(ଖ) ଅ + ଐ = ଐ

ମତ + ଐକ୍ୟ = ମତୈକ୍ୟ ଅତୁଳ + ଐଶ୍ୱର୍ଯ୍ୟ = ଅତୁଳୈଶ୍ୱର୍ଯ୍ୟ

ଛାତ୍ର + ଐକ୍ୟ = ଛାତ୍ରୈକ୍ୟ ଦିବ୍ୟ + ଐଶ୍ୱର୍ଯ୍ୟ = ଦିବ୍ୟୈଶ୍ୱର୍ଯ୍ୟ

ଉଚ୍ଚ + ଐତିହ୍ୟ = ଉଚ୍ଚୈତିହ୍ୟ ପ୍ରସିଦ୍ଧ + ଐତିହାସିକ = ପ୍ରସିଦ୍ଧୈତିହାସିକ

(ଗ) ଆ + ଏ = ଐ

ତଥା + ଏବ = ତଥୈବ ମହା + ଏକାଦଶୀ = ମହୈକାଦଶୀ

ସଦା + ଏବ = ସଦୈବ ଭାଷା + ଏକୀକରଣ = ଭାଷୈକୀକରଣ

ଅଧୁନା+ ଏବ = ଅଧୁନୈବ ଦୃଢ଼ା + ଏକାଗ୍ରତା = ଦୃଢ଼ୈକାଗ୍ରତା

(ଘ) ଆ + ଐ = ଐ

ମହା + ଐଶ୍ୱର୍ଯ୍ୟ = ମହୈଶ୍ୱର୍ଯ୍ୟ    ସଦା + ଐକ୍ୟ = ସଦୈକ୍ୟ

ବିଦ୍ୟା + ଐଶ୍ୱର୍ଯ୍ୟ = ବିଦ୍ୟୈଶ୍ୱର୍ଯ୍ୟ    ଭାଷା + ଐକ୍ୟ = ଭାଷୈକ୍ୟ

ମହା + ଐରାବତ = ମହୈରାବତ    ମହା + ଐତିହାସିକ = ମହୈତିହାସିକ

ସୂତ୍ର – 'ଅ' ବା 'ଆ' ପରେ 'ଏ' ବା 'ଐ' ଥିଲେ, ଦୁହେଁ ମିଶି 'ଐ' ହୁଅନ୍ତି । ଏହି 'ଐ' ଐ କାର (ୈ) ହୋଇ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୮ । (କ) ଅ + ଓ = ଔ

ଜଳ + ଓକା (ଘର) = ଜଳୌକା(ଜୋକ)    ପକ୍ୱ + ଓଦନ = ପକ୍ୱୌଦନ

ବିଲ + ଓକା = ବିଲୌକା (ବିଲୁଆ)    ଜନ + ଓଘ (ସମୂହ) = ଜନୌଘ

ଦିବ + ଓକା = ଦିବୌକା (ଦେବତା)    ଜଳ + ଓଘ (ସ୍ରୋତ) = ଜଳୌଘ

କଣ୍ଠ + ଓଷ୍ଠ୍ୟ = କଣ୍ଠୌଷ୍ଠ୍ୟ    ଦନ୍ତ + ଓଷ୍ଠ୍ୟ = ଦନ୍ତୌଷ୍ଠ୍ୟ

(ଖ) ଅ + ଔ = ଔ

ବନ + ଔଷଧି = ବନୌଷଧି    ସ୍ୱ + ଔରସ = ସ୍ୱୌରସ

ବୃକ୍ଷ + ଔଷଧ = ବୃକ୍ଷୌଷଧ    ଦନ୍ତ + ଔଷ୍ଠ୍ୟ = ଦନ୍ତୌଷ୍ଠ୍ୟ

ସର୍ବ + ଔଷଧି = ସର୍ବୌଷଧି

(ଗ) ଆ + ଓ = ଔ

ମହା + ଓଘ (ତରଙ୍ଗ) = ମହୌଘ    ମହା + ଓଜଃ = ମହୌଜଃ

ଗଙ୍ଗା + ଓଘ = ଗଙ୍ଗୌଘ    ମୃତ୍ତିକା + ଓଷଧି = ମୃତ୍ତିକୌଷଧି

(ଘ) ଆ + ଔ = ଔ

ମହା + ଔଷଧ = ମହୌଷଧ    ମହା + ଔଦାର୍ଯ୍ୟ = ମହୌଦାର୍ଯ୍ୟ

ଦିବା + ଔଷଧ = ଦିବୌଷଧ    ବିଦ୍ୟା + ଔତ୍ସୁକ୍ୟ = ବିଦ୍ୟୌତ୍ସୁକ୍ୟ

ନିଦ୍ରା + ଔଷଧି = ନିଦ୍ରୌଷଧି    ମହା + ଔତ୍ସୁକ୍ୟ = ମହୌତ୍ସୁକ୍ୟ

ସୂତ୍ର – 'ଅ' ବା 'ଆ' ପରେ 'ଓ' ବା 'ଔ' ଥିଲେ ଦୁହେଁ ମିଶି 'ଔ' ହୁଅନ୍ତି । ସେହି 'ଔ' ଔ କାର (ୌ) ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

ସନ୍ଧିନିୟମ ବହିର୍ଭୂତ–

ବିମ୍ବ + ଓଷ୍ଠ = ବିମ୍ବୋଷ୍ଠ    ଅଧର + ଓଷ୍ଠ = ଅଧରୋଷ୍ଠ

ବିମ୍ବ + ଓଷ୍ଠୀ = ବିମ୍ବୋଷ୍ଠୀ

୯ । ଇ / ଈ + ଭିନ୍ନସ୍ୱର = ୟ୍ + ସ୍ୱର

ପ୍ରତି + ଅଙ୍ଗ = ପ୍ରତ୍ୟଙ୍ଗ
ଅତି + ଅନ୍ତ = ଅତ୍ୟନ୍ତ
ଇତି + ଆଦି = ଇତ୍ୟାଦି
ଅତି + ଉତ୍କଟ = ଅତ୍ୟୁତ୍କଟ
ଅତି + ଐଶ୍ୱର୍ଯ୍ୟ = ଅତ୍ୟୈଶ୍ୱର୍ଯ୍ୟ
ଅତି + ଔଦାସୀନ୍ୟ = ଅତ୍ୟୌଦାସୀନ୍ୟ
ସୂଚୀ + ଅଗ୍ର = ସୂଚ୍ୟଗ୍ର
ଦେବୀ + ଆବଳୀ = ଦେବ୍ୟାବଳୀ
ଦେବୀ + ଉପାସନା = ଦେବ୍ୟୁପାସନା
ଭୈମୀ + ଏକାଦଶୀ = ଭୈମ୍ୟେକାଦଶୀ
ପୃଥିବୀ + ଐଶ୍ୱର୍ଯ୍ୟ = ପୃଥିବ୍ୟୈଶ୍ୱର୍ଯ୍ୟ
ନାରୀ + ଔଦ୍ଧତ୍ୟ = ନାର୍ଯ୍ୟୌଦ୍ଧତ୍ୟ
ଯଦି + ଅପି = ଯଦ୍ୟପି
ପରି + ଅବେକ୍ଷଣ = ପର୍ଯ୍ୟବେକ୍ଷଣ
ପରି + ଆବରଣ = ପର୍ଯ୍ୟାବରଣ
ଅସି + ଆଘାତ = ଅସ୍ୟାଘାତ
ଶକ୍ତି + ଏଷଣା = ଶକ୍ତ୍ୟେଷଣା
ଅତି + ଔଦାର୍ଯ୍ୟ = ଅତ୍ୟୌଦାର୍ଯ୍ୟ
ଦେବୀ + ଅର୍ଚ୍ଚନା = ଦେବ୍ୟର୍ଚ୍ଚନା
ନାରୀ + ଆରାଧନା = ନାର୍ଯ୍ୟାରାଧନା
ନଦୀ + ଉପକଣ୍ଠ = ନଦ୍ୟୁପକଣ୍ଠ
ନାରୀ + ଊରୁ = ନାର୍ଯ୍ୟୂରୁ
ନାରୀ + ଐକ୍ୟ = ନାର୍ଯ୍ୟୈକ
ଦୁଃଖୀ + ଓଦନ = ଦୁଃଖ୍ୟୋଦନ
ବାଣୀ + ଔଚିତ୍ୟ = ବାଣ୍ୟୌଚିତ୍ୟ

ପ୍ରତି + ଅକ୍ଷ = ପ୍ରତ୍ୟକ୍ଷ
ସନ୍ଧି + ଅକ୍ଷର = ସନ୍ଧ୍ୟକ୍ଷର
ଦେବୀ + ଆଦି = ଦେବ୍ୟାଦି
ପ୍ରତି + ଏକ = ପ୍ରତ୍ୟେକ
ଅତି + ଔତ୍ସୁକ୍ୟ = ଅତ୍ୟୌତ୍ସୁକ୍ୟ
ନଦୀ + ଅମ୍ବୁ = ନଦ୍ୟମ୍ବୁ
ଗୌରୀ + ଆଶ୍ରମ = ଗୌର୍ଯ୍ୟାଶ୍ରମ
ଲକ୍ଷ୍ମୀ + ଉପାସନା = ଲକ୍ଷ୍ମ୍ୟୁପାସନା
ନଦୀ + ଊର୍ମି = ନଦ୍ୟୂର୍ମି
ପ୍ରାଚୀ + ଐଶାନ = ପ୍ରାଚ୍ୟୈଶାନ
ଦେବୀ + ଓଷ୍ଠ = ଦେବ୍ୟୋଷ୍ଠ
ଜାନକୀ + ଔଷଧାଳୟ = ଜାନକ୍ୟୌଷଧାଳୟ
ଭୂମି + ଅଧିକାରୀ = ଭୂମ୍ୟଧିକାରୀ
ଅତି + ଅବିଶ୍ୱାସ = ଅତ୍ୟବିଶ୍ୱାସ
ପରି + ଆଲୋଚନା = ପର୍ଯ୍ୟାଲୋଚନା
ଅତି + ଉତ୍ତମ = ଅତ୍ୟୁତ୍ତମ
ସଂସ୍କୃତି + ଐତିହ୍ୟ = ସଂସ୍କୃତ୍ୟୈତିହ୍ୟ
ଅତି + ଔଷଧ = ଅତ୍ୟୌଷଧ
ଈର୍ଷା + ଅନେକ = ଈର୍ଷ୍ୟନେକ
ତରୁଣୀ + ଆଦି = ତରୁଣ୍ୟାଦି
ସତୀ + ଉପସ୍ଥିତ = ସତ୍ୟୁପସ୍ଥିତ
ପୃଥିବୀ + ଏକାଦଶ = ପୃଥିବ୍ୟେକାଦଶ
ଶିଳ୍ପୀ + ଐଶ୍ୱରିକ = ଶିଳ୍ପ୍ୟୈଶ୍ୱରିକ
ରୂପସୀ + ଔଜ୍ଜ୍ୱଲ୍ୟ = ରୂପସ୍ୟୌଜ୍ଜ୍ୱଲ୍ୟ
ନାରୀ + ଅସ୍ତୁ = ନାର୍ଯ୍ୟସ୍ତୁ

ସୂତ୍ର– 'ଇ' ବା 'ଈ' ପରେ 'ଇ' ବା 'ଈ' ଭିନ୍ନ ଅନ୍ୟ ସ୍ୱରବର୍ଣ୍ଣ ଥିଲେ, 'ଇ' ବା 'ଈ' ସ୍ଥାନରେ 'ୟ୍' ହୁଏ । 'ୟ୍' ପୂର୍ବବର୍ଣ୍ଣରେ 'ୟ' ଫଳା (୍ୟ) ହୁଏ । ପରବର୍ତ୍ତୀ ସ୍ୱରବର୍ଣ୍ଣ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ।

୧୦ । ଉ/ଊ + ଭିନ୍ନସ୍ୱର = ୱ୍ + ସ୍ୱର

ସୁ + ଅଚ୍ଛ = ସ୍ୱଚ୍ଛ
ସୁ + ଅଚ୍ଛ = ସ୍ୱଚ୍ଛ
ସୁ + ଆଗତ = ସ୍ୱାଗତ
ବହୁ + ଆୟାସ = ବହ୍ୱାୟାସ
ପ୍ରଭୁ + ଆଜ୍ଞା = ପ୍ରଭ୍ୱାଜ୍ଞା
ବଧୂ + ଆଦି = ବଧ୍ୱାଦି
ଅନୁ + ଇତ = ଅନ୍ୱିତ
ତନୁ + ଈଶ୍ୱର = ତନ୍ୱୀଶ୍ୱର
ଅନୁ + ଏଷଣ = ଅନ୍ୱେଷଣ
ପ୍ରଭୁ + ଏଷଣା = ପ୍ରଭ୍ୱେଷଣା
ସାଧୁ + ଐଶ୍ୱର୍ଯ୍ୟ = ସାଧ୍ୱୈଶ୍ୱର୍ଯ୍ୟ
ସିନ୍ଧୁ + ଓଘ = ସିନ୍ଧ୍ୱୋଘ
ଭାନୁ + ଔଜ୍ଜ୍ୱଲ୍ୟ = ଭାନ୍ୱୌଜ୍ଜ୍ୱଲ୍ୟ
ବଧୂ + ଔଦାର୍ଯ୍ୟ = ବଧ୍ୱୌଦାର୍ଯ୍ୟ
ଅନୁ + ଅୟ = ଅନ୍ୱୟ
ମନୁ + ଅନ୍ତର = ମନ୍ୱନ୍ତର
ପଶୁ + ଆଚରଣ = ପଶ୍ୱାଚରଣ
ଗୁରୁ + ଆଦେଶ = ଗୁର୍ବାଦେଶ
ଗୁରୁ + ଆଦିତ୍ୟ = ଗୁର୍ବାଦିତ୍ୟ
ଶ୍ୱଶ୍ରୂ + ଆଗମନ = ଶ୍ୱଶ୍ର୍ୱାଗମନ
ସାଧୁ + ଇଙ୍ଗିତ = ସାଧ୍ୱିଙ୍ଗିତ
ସାଧୁ + ଈହା = ସାଧ୍ୱୀହା
ସାଧୁ + ଏକାଗ୍ରତା = ସାଧ୍ୱେକାଗ୍ରତା
ଶିଶୁ + ଏକାକୀ = ଶିଶ୍ୱେକାକୀ
ବନ୍ଧୁ + ଐକ୍ୟ = ବନ୍ଧ୍ୱୈକ୍ୟ
ସରଯୂ + ଓଘ = ସରଯ୍ୱୋଘ
ତନୁ + ଔତ୍କର୍ଷ୍ୟ = ତନ୍ୱୌତ୍କର୍ଷ୍ୟ
ଶ୍ୱଶ୍ରୂ + ଔତ୍ସୁକ୍ୟ = ଶ୍ୱଶ୍ର୍ୱୌତ୍ସୁକ୍ୟ

ସୂତ୍ର– 'ଉ' ବା 'ଊ' ପରେ 'ଉ' ବା 'ଊ' ଭିନ୍ନ ଅନ୍ୟ ସ୍ୱରବର୍ଣ୍ଣ ଥିଲେ, 'ଉ' ବା 'ଊ' ସ୍ଥାନରେ 'ୱ୍' (ଅବର୍ଗ୍ୟ ବ) ହୁଏ । 'ୱ୍' ପୂର୍ବବର୍ଣ୍ଣରେ ୱଫଳା ( ୍ୱ ) ହୁଏ । ପରବର୍ତ୍ତୀ ସ୍ୱରବର୍ଣ୍ଣ ପୂର୍ବବର୍ତ୍ତୀ ବର୍ଣ୍ଣରେ ଯୁକ୍ତ ହୁଏ ।

୧୧ । ଋ + 'ଋ' ଭିନ୍ନ ଅନ୍ୟ ସ୍ୱର = ୍ର + ସ୍ୱର

ପିତୃ + ଅନୁମତି = ପିତ୍ରନୁମତି
ମାତୃ + ଅନୁମତି = ମାତ୍ରନୁମତି
ଭ୍ରାତୃ + ଅନୁମତି = ଭ୍ରାତ୍ରନୁମତି
ପିତୃ + ଆଦେଶ = ପିତ୍ରାଦେଶ
ଭ୍ରାତୃ + ଆଜ୍ଞା = ଭ୍ରାତ୍ରାଜ୍ଞା
ପିତୃ + ଆଦି = ପିତ୍ରାଦି
ମାତୃ + ଆଳୟ = ମାତ୍ରାଳୟ
ଭ୍ରାତୃ + ଅଂଶ = ଭ୍ରାତ୍ରଂଶ
ପିତୃ + ଅନୁଜ୍ଞା = ପିତ୍ରନୁଜ୍ଞା
ମାତୃ + ଇଚ୍ଛା = ମାତ୍ରିଚ୍ଛା
ପିତୃ + ଉପଦେଶ = ପିତ୍ରୁପଦେଶ
ଦାତୃ + ଐଶ୍ୱର୍ଯ୍ୟ = ଦାତ୍ରୈଶ୍ୱର୍ଯ୍ୟ
ନେତୃ + ଔଦାର୍ଯ୍ୟ = ନେତ୍ରୌଦାର୍ଯ୍ୟ
ପିତୃ + ଆଶ୍ରମ = ପିତ୍ରାଶ୍ରମ

'ଋ' ପରେ 'ଋ' ଭିନ୍ନ ଅନ୍ୟ ସ୍ୱରବର୍ଣ୍ଣ ଥିଲେ 'ଋ' ସ୍ଥାନରେ 'ର' ହୁଏ । 'ର୍' ପୂର୍ବ ବର୍ଣ୍ଣରେ ( ୍ର ) ଫଳା ହୁଏ । ପରବର୍ତ୍ତୀ ସ୍ୱରବର୍ଣ୍ଣ ପୂର୍ବବର୍ତ୍ତୀ ବର୍ଣ୍ଣରେ ଯୁକ୍ତ ହୁଏ ।

୧୨ । (ଏ + ଅ = ଅୟ୍ + ଅ), (ଐ + ଅ = ଆୟ୍ + ଅ)

ନେ + ଅନ = ନୟନ (ଏ + ଅ = ଅୟ୍ + ଅ)

ବେ + ଅନ = ବୟନ (ଏ + ଅ = ଅୟ୍ + ଅ) ବୁଣିବା

ଶେ + ଅନ = ଶୟନ (ଏ + ଅ = ଅୟ୍ + ଅ)

ଚେ + ଅନ = ଚୟନ (ଏ + ଅ = ଅୟ୍ + ଅ)

ଡେ + ଅନ = ଡୟନ (ଡୟନ = ଉଡ଼ିବା) (ଏ + ଅ = ଅୟ୍ + ଅ)

ମେ + ଅନ = ମୟନ (ମହମ, ମହୁସିଠା) (ଏ + ଅ = ଅୟ + ଅ)

ନୈ + ଅକ = ନାୟକ (ଐ + ଅ = ଆୟ୍ + ଅ)

ବୈ + ଅକ = ବାୟକ (ବୟନକାରୀ) (ଐ + ଅ = ଆୟ୍ + ଅ)

ଗୈ + ଅକ = ଗାୟକ (ଐ + ଅ = ଆୟ୍ + ଅ)

ସୂତ୍ର– 'ଏ' ପରେ ସ୍ୱରବର୍ଣ୍ଣ ଥିଲେ 'ଏ' ସ୍ଥାନରେ 'ଅୟ୍' ହୁଏ ଏବଂ 'ଐ' ପରେ ସ୍ୱରବର୍ଣ୍ଣ ଥିଲେ 'ଐ' ସ୍ଥାନରେ 'ଆୟ୍' ହୁଏ । 'ଅୟ୍' ଓ 'ଆୟ୍'ରେ ଥିବା 'ଅ' ଓ 'ଆ' ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ଏବଂ 'ୟ୍' ସହିତ ପରବର୍ତ୍ତୀ ସ୍ୱରବର୍ଣ୍ଣ ଯୁକ୍ତ ହୁଏ ।

୧୩ । ଓ + ସ୍ୱରବର୍ଣ୍ଣ = ଅବ୍ + ସ୍ୱର, ଔ + ସ୍ୱର = ଅବ୍ + ସ୍ୱର

ଗୋ + ଏଷଣା = ଗବେଷଣା (ଓ + ଏ = ଅବ୍ + ଏ)

ପୋ + ଅନ = ପବନ (ଓ + ଅ = ଅବ୍ + ଅ)

ଭୋ + ଅନ = ଭବନ (ଓ + ଅ = ଅବ୍ + ଅ)

ପୋ + ଇତ୍ର = ପବିତ୍ର (ଓ + ଇ = ଅବ୍ + ଇ)

ନୌ + ଇକ = ନାବିକ (ଔ + ଇ = ଆବ୍ + ଇ)

ପୌ + ଅକ = ପାବକ (ଔ + ଅ = ଆବ୍ + ଅ)

ଭୌ + ଉକ = ଭାବୁକ (ଔ + ଉ = ଆବ୍ +ଅ)

ସ୍ତୌ + ଅକ = ସ୍ତାବକ (ଔ + ଅ = ଆବ୍ + ଅ)

ସୂତ୍ର– 'ଓ' ପରେ ସ୍ୱରବର୍ଣ୍ଣ ଥିଲେ 'ଓ' ସ୍ଥାନରେ 'ଅବ୍' ହୁଏ ଏବଂ 'ଔ' ପରେ ସ୍ୱରବର୍ଣ୍ଣ ଥିଲେ 'ଔ' ସ୍ଥାନରେ 'ଆବ୍' ହୁଏ । ସେହି 'ଅବ୍' ଓ 'ଆବ୍'ରେ ଥିବା 'ଅ', 'ଆ' ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ଏବଂ 'ବ୍' ସହିତ ପରବର୍ତ୍ତୀ ସ୍ୱରବର୍ଣ୍ଣ ଯୁକ୍ତ ହୁଏ ।

(ନେ, ବେ, ଶେ, ଚେ, ଡେ, ମେ, ନୈ, ବୈ, ଗୈ, ଗୋ, ପୋ, ଭୋ, ନୌ, ପୌ, ଭୌ, ସ୍ତୌ ପଦଗୁଡ଼ିକ କ'ଣ ସେ ସମ୍ବନ୍ଧରେ କୃଦନ୍ତ ଅଧ୍ୟାୟରେ ବୁଝାଇ ଦିଆଯାଇଛି)

ନିୟମ ବହିର୍ଭୂତ-

ଗୋ + ଅକ୍ଷ = ଗବାକ୍ଷ (ଝରକା) ଗୋ + ଇନ୍ଦ୍ର = ଗବେନ୍ଦ୍ର (ବୃଷଭ)

ଗୋ + ଅସ୍ଥି = ଗବାସ୍ଥି ଗୋ + ଈଶ = ଗବୀଶ (ବୃଷଭ)

**ଓଡ଼ିଆ ସନ୍ଧି :**

କେତେକ ତଦ୍ଭବ ଓ ଦେଶଜ ଶବ୍ଦର ସନ୍ଧି କରାଯାଏ । ଏଗୁଡ଼ିକରେ ସଂସ୍କୃତ ସନ୍ଧିନିୟମ ଲାଗୁ ହୁଏ ନାହିଁ । ତେଣୁ ଏଗୁଡ଼ିକ ମଧ୍ୟ ନିପାତନ ସିଦ୍ଧ ମଧ୍ୟରେ ଗ୍ରହଣ କରାଯାଏ ।

ବଦ + ଅଭ୍ୟାସ = ବଦଭ୍ୟାସ ତାହା + ଆଗେ = ତାଆଗେ

ଷୋଳ + ଅଣା = ଷୋଳଣା କାହା + ଆଗେ = କାଆଗେ

ଆର + ଏକ = ଆରେକ, ଆରକ ଆର + ଏକ = ବାରେକ, ବାରକ

ଥରେ + ଏକ = ଥରେକ, ଥରକ ଚାରି + ଅଣା = ଚାରେଣା, ଚାରଣା

ଜଣ + ଏକ = ଜଣକ ଶୋଇ + ଅଛି = ଶୋଇଛି

ଯେଉଁ + ଆଡ଼େ = ଯୁଆଡ଼େ ଯାଉ + ଅଛି = ଯାଉଛି

କେଉଁ + ଆଡ଼େ = କୁଆଡ଼େ ସେହି + ଆଡ଼େ = ସିଆଡ଼େ/ସେଆଡ଼େ, ସେୟାଡ଼େ

## ବ୍ୟଞ୍ଜନ ସନ୍ଧି

ବ୍ୟଞ୍ଜନ ବର୍ଣ୍ଣ ସହିତ ବ୍ୟଞ୍ଜନବର୍ଣ୍ଣର କିମ୍ବା ସ୍ୱରବର୍ଣ୍ଣର ମିଳନକୁ ବ୍ୟଞ୍ଜନସନ୍ଧି କହନ୍ତି । ଯଥା-

ଉତ୍ + ନତି = ଉନ୍ନତି ସମ୍ + ଶୟ = ସଂଶୟ

ଦିକ୍ + ଅନ୍ତ = ଦିଗନ୍ତ ସତ୍ + ଆଚାର = ସଦାଚାର

ବିବିଧ ସୂତ୍ରାବଳୀ :

(୧) ଦିକ୍ + ଅନ୍ତ = ଦିଗନ୍ତ ସତ୍ + ଇଚ୍ଛା = ସଦିଚ୍ଛା

ଦିକ୍ + ଅମ୍ବର = ଦିଗମ୍ବର ତ୍ୱକ୍ + ଇନ୍ଦ୍ରିୟ = ତ୍ୱଗିନ୍ଦ୍ରିୟ

ଣିଚ୍ + ଅନ୍ତ = ଣିଜନ୍ତ ଜଗତ୍ + ଈଶ୍ୱର = ଜଗଦୀଶ୍ୱର

ଷଟ୍ + ଅଙ୍ଗ = ଷଡ଼ଙ୍ଗ ଭବତ୍ + ଈୟ = ଭବଦୀୟ

ଷଟ୍ + ଆନନ = ଷଡ଼ାନନ ବାକ୍ + ଈଶ = ବାଗୀଶ

ସତ୍ + ଆଚାର = ସଦାଚାର ସମ୍ୟକ୍ + ଉତ୍ତର = ସମ୍ୟଗୁତ୍ତର

| | |
|---|---|
| ସତ୍ + ଆନନ୍ଦ = ସଦାନନ୍ଦ | ସତ୍ + ଉପାୟ = ସଦୁପାୟ |
| ଚିତ୍ + ଆନନ୍ଦ = ଚିଦାନନ୍ଦ | ପ୍ରାକ୍ + ଏବ = ପ୍ରାଗେବ |
| ଜଗତ୍ + ଆନନ୍ଦ = ଜଗଦାନନ୍ଦ | ଧିକ୍ + ଐଶ୍ୱର୍ଯ୍ୟ = ଧିଗୈଶ୍ୱର୍ଯ୍ୟ |
| ସତ୍ + ଗତି = ସଦ୍‌ଗତି | ଅପ୍ + ଜ = ଅବ୍ଜ |
| ଦିକ୍ + ଗଜ = ଦିଗ୍‌ଗଜ | ବାକ୍ + ଜାଲ୍ = ବାଗ୍‌ଜାଲ |
| ବାକ୍ + ଦାନ = ବାଗ୍‌ଦାନ | ଉତ୍ + ଯୋଗ = ଉଦ୍‌ଯୋଗ |
| ବାକ୍ + ଦେବୀ = ବାଗ୍‌ଦେବୀ | ଉତ୍ + ଯାପନ = ଉଦ୍‌ଯାପନ(ଉଦ୍ୟାପନ) |
| ବାକ୍ + ଡିଣ୍ଡିମ୍ = ବାଗ୍‌ଡିଣ୍ଡିମ | ଧିକ୍ + ଯାଚକ = ଧିଗ୍‌ଯାଚକ |
| ଦିକ୍ + ଭାଗ = ଦିଗ୍‌ଭାଗ | ବୃହତ୍ + ଧାନ୍ୟ = ବୃହଦ୍ଧାନ୍ୟ |
| ମହତ୍ + ଭୟ = ମହତ୍‌ଭୟ | ଉତ୍ + ଘାଟନ = ଉଦ୍‌ଘାଟନ |
| ସତ୍ + ଧନ = ସଦ୍ଧନ | ଜୟତ୍ + ରଥ = ଜୟଦ୍ରଥ |
| ବୃହତ୍ + ରଥ = ବୃହଦ୍ରଥ | ଷଟ୍ + ରଥ = ଷଡ୍ରଥ |
| ତତ୍ + ରୂପ = ତଦ୍ରୂପ | ଦିକ୍ + ବିଜୟ = ଦିଗ୍‌ବିଜୟ |
| ସତ୍ + ବଚନ = ସଦ୍‌ବଚନ | ଜଗତ୍ + ବନ୍ଧୁ = ଜଗଦ୍‌ବନ୍ଧୁ |
| ବାକ୍ + ବିନ୍ୟାସ = ବାଗ୍‌ବିନ୍ୟାସ | ଉତ୍ + ବେଗ = ଉଦ୍‌ବେଗ |
| ଦିକ୍ + ହସ୍ତୀ = ଦିଗ୍‌ହସ୍ତୀ | ପ୍ରାକ୍ + ଐତିହାସିକ = ପ୍ରାଗୈତିହାସିକ |

ସୂତ୍ର- ବ୍ୟଞ୍ଜନବର୍ଣ୍ଣ ପରେ ସ୍ୱରବର୍ଣ୍ଣ, ଯେ କୌଣସି ବର୍ଗର ୩ୟ, ୪ର୍ଥ ବର୍ଣ୍ଣ କିମ୍ବା ଯ୍, ର୍, ଲ୍, ବ୍, ହ୍ ଥିଲେ, ବର୍ଗର ପ୍ରଥମ ବର୍ଣ୍ଣ ସ୍ଥାନରେ ସେହି ବର୍ଗର ତୃତୀୟ ବର୍ଣ୍ଣ ହୁଏ । ପରେ ସ୍ୱରବର୍ଣ୍ଣ ଥିଲେ, ତାହା ସେହି ତୃତୀୟ ବର୍ଣ୍ଣରେ ଯୁକ୍ତ ହୁଏ ।

ସନ୍ଧି ନିୟମ ବହିର୍ଭୂତ - ଯାବତ୍ + ଇୟ = ଯାବତୀୟ

୨ ।

| | |
|---|---|
| ଶରତ୍ + ଚନ୍ଦ୍ର = ଶରଚ୍ଚନ୍ଦ୍ର | ଆପଦ୍ + ଚଳନ = ଆପଚ୍ଚଳନ |
| ସତ୍ + ଚରିତ୍ର = ସଚ୍ଚରିତ୍ର | ବିପଦ୍ + ଚୟ = ବିପଚ୍ଚୟ |
| ଉତ୍ + ଚାରଣ = ଉଚ୍ଚାରଣ | ସୁହୃଦ୍ + ଚିତ୍ତ = ସୁହୃଚ୍ଚିତ୍ତ |
| ଚଳତ୍ + ଚିତ୍ରଂ = ଚଳଚ୍ଚିତ୍ର | ସମ୍ପଦ୍ + ଚିତ୍ର = ସଂପଚ୍ଚିତ୍ର |
| ମହତ୍ + ଚିତ୍ର = ମହଚ୍ଚିତ୍ର | ତଦ୍ + ଛବି = ତଚ୍ଛବି |
| ମହତ୍ + ଛବି = ମହଚ୍ଛବି | ସୁହୃତ୍ + ଛବି = ସୁହୃଚ୍ଛବି |
| ବୃହତ୍ + ଛତ୍ର = ବୃହଚ୍ଛତ୍ର | ବିପଦ୍ + ଛାୟା = ବିପଚ୍ଛାୟା |

ମହତ୍ + ଛାତ୍ର = ମହଚ୍ଛାତ୍ର    ଦିବିଷଦ୍ + ଛାୟା = ଦିବିଷଚ୍ଛାୟା

ସତ୍ + ଛାତ୍ର = ସଚ୍ଛାତ୍ର    ଜ୍ୟୋତିର୍ବିଦ + ଛଟା = ଜ୍ୟୋତିର୍ବିଚ୍ଛଟା

ସୂତ୍ର- 'ତ୍' ବା 'ଦ୍' ପରେ 'ଚ' ବା 'ଛ' ଥିଲେ, 'ତ୍' ବା 'ଦ୍' ସ୍ଥାନରେ 'ଚ୍' ହୁଏ । ଏହି 'ଚ' ପରବର୍ତ୍ତୀ 'ଚ' ବା 'ଛ' ସହିତ ଯୁକ୍ତ ହୁଏ ।

୩ । ଉତ୍ + ଜ୍ୱଳ = ଉଜ୍ଜ୍ୱଳ    ମହତ୍ + ଝଟିକା = ମହଜ୍‌ଝଟିକା

ସତ୍ + ଜନ = ସଜ୍ଜନ    ବିପଦ୍ + ଝଡ଼ = ବିପଜ୍‌ଝଡ଼

ଚଳତ୍ + ଜୀବନ = ଚଳଜ୍ଜୀବନ    ତଦ୍ + ଝର = ତଜ୍‌ଝର

ତତ୍ + ଜନ୍ୟ = ତଜ୍ଜନ୍ୟ    ତଦ୍ + ଝଙ୍କାର - ତଜ୍‌ଝଙ୍କାର

ତତ୍ + ଜନ୍ମ = ତଜ୍ଜନ୍ମ    ତଦ୍ + ଝରଣା = ତଜ୍‌ଝରଣା

ତତ୍ + ଜନିତ = ତଜ୍ଜନିତ    ବୃହତ୍ + ଝଟିକା = ବୃହଜ୍‌ଝଟିକା

ଯାବତ୍ + ଜୀବନ = ଯାବଜ୍ଜୀବନ    ମହତ୍ + ଝଙ୍କାର = ମହଜ୍‌ଝଙ୍କାର

ବିପଦ୍ + ଜନକ = ବିପଜ୍ଜନକ    କୃତ୍ + ଝଟିକା = କୃଜ୍‌ଝଟିକା

ବିପଦ୍ + ଜୟ = ବିପଜ୍ଜୟ    ବିପଦ୍ + ଜାଲ = ବିପଜ୍ଜାଲ

ଆପଦ୍ + ଜାଳ = ଆପଜ୍ଜାଳ

ସୂତ୍ର- 'ତ୍' ବା 'ଦ୍' ପରେ 'ଜ' ବା 'ଝ' ଥିଲେ 'ତ୍' ବା 'ଦ୍' ସ୍ଥାନରେ 'ଜ୍' ହୁଏ । ଏହି 'ଜ୍' ପରବର୍ତ୍ତୀ 'ଜ' ବା 'ଝ' ସହିତ ଯୁକ୍ତ ହୁଏ ।

୪ । ବୃହତ୍ + ଟଙ୍କାର = ବୃହଟ୍ଟଙ୍କାର    ବୃହତ୍ + ଠକାର(ଠକାମି) = ବୃହଟ୍‌ଠକାର

ବୃହତ୍ + ଟିଟିଭ = ବୃହଟ୍ଟିଟିଭ    ବୃହତ୍+ଠକ୍କୁର(ଠାକୁର)= ବୃହଟ୍‌ଠକ୍କୁର

ତଦ୍ + ଟୀକା = ତଟ୍ଟୀକା    ଏତଦ୍ + ଠାର = ଏତଟ୍‌ଠାର

(ଠାର = ତୁଷାର)

ସୂତ୍ର- 'ତ୍' ବା 'ଦ୍' ପରେ 'ଟ' ବା 'ଠ' ଥିଲେ, 'ତ୍' ବା 'ଦ୍' ସ୍ଥାନରେ 'ଟ୍' ହୁଏ । ପରବର୍ତ୍ତୀ 'ଟ' ବା 'ଠ' ଏହି 'ଟ୍' ସହିତ ଯୁକ୍ତ ହୁଏ ।

୫ । ଉତ୍ + ଡୀନ = ଉଡ୍ଡୀନ    ତଦ୍ + ଡିଣ୍ଡିମ = ତଡ୍‌ଡିଣ୍ଡିମ

ଉତ୍ + ଡୀୟମାନ = ଉଡ୍ଡୀୟମାନ    ବୃହତ୍ + ଢକ୍କା = ବୃହଡ୍‌ଢକ୍କା

ଉତ୍ + ଡମ୍ବରୁ = ଉଡ୍‌ଡମ୍ବରୁ    ତଦ୍ + ଢୌକନ = ତଡ୍‌ଢୌକନ

ତତ୍ + ଡାମରା = ତଡ୍‌ଡାମରା

ସୂତ୍ର- 'ତ୍' ବା 'ଦ୍' ପରେ 'ଡ' ବା 'ଢ' ଥିଲେ, 'ତ୍' ବା 'ଦ୍' ସ୍ଥାନରେ 'ଡ୍' ହୁଏ । ଏହି 'ଡ୍' ପରବର୍ତ୍ତୀ 'ଡ' ବା 'ଢ' ସହିତ ଯୁକ୍ତ ହୁଏ ।

୬ । ଶରତ୍ + ଲକ୍ଷ୍ମୀ = ଶରଲ୍ଲକ୍ଷ୍ମୀ
ବିଦ୍ୟୁତ୍ + ଲେଖା = ବିଦ୍ୟୁଲ୍ଲେଖା
ବିଦ୍ୟୁତ୍ + ଲତା = ବିଦ୍ୟୁଲ୍ଲତା
ଏତଦ୍ + ଲକ୍ଷଣମ୍ = ଏତଲ୍ଲକ୍ଷଣମ୍
ଉତ୍ + ଲଙ୍ଘନ = ଉଲ୍ଲଙ୍ଘନ
ତଦ୍ + ଲକ୍ଷ୍ୟ = ତଲ୍ଲକ୍ଷ୍ୟ
ଉତ୍ + ଲାସ = ଉଲ୍ଲାସ
ତଦ୍ + ଲୀଳା = ତଲ୍ଲୀଳା
ଚଳତ୍ + ଲାସ୍ୟ = ଚଳଲ୍ଲାସ୍ୟ
ବିପଦ୍ + ଲାସ୍ୟ = ବିପଲ୍ଲାସ୍ୟ
ଉତ୍ + ଲେଖ = ଉଲ୍ଲେଖ
ତଦ୍ + ଲଗ୍ନ = ତଲ୍ଲଗ୍ନ
ଉତ୍ + ଲୋଳ = ଉଲ୍ଲୋଳ
ତଦ୍ + ଲଜ୍ଜା = ତଲ୍ଲଜ୍ଜା
ସତ୍ + ଲପନ = ସଲ୍ଲପନ
ତଦ୍ + ଲାବଣ୍ୟ = ତଲ୍ଲାବଣ୍ୟ

ସୂତ୍ର– 'ତ୍' ବା 'ଦ୍' ପରେ 'ଲ' ଥିଲେ, 'ତ୍' ବା 'ଦ୍' ସ୍ଥାନରେ 'ଲ୍' ହୁଏ । ପରବର୍ତ୍ତୀ 'ଲ' ଏହି 'ଲ୍' ସହ ମିଶି 'ଲ୍ଲ' ହୁଏ ।

କିନ୍ତୁ 'ନ୍' ପରେ 'ଲ' ଥିଲେ, 'ନ୍' ସ୍ଥାନରେ ଚନ୍ଦ୍ରବିନ୍ଦୁ ( ଁ ) ହୁଏ ଏବଂ 'ଲ'ର ଦ୍ୱିତ୍ୱ ହୁଏ । ଯଥା– ମହାନ୍ + ଲୋକ = ମହାଁଲ୍ଲୋକ

୭ । ଉତ୍ + ଶଳିତ = ଉଚ୍ଛଳିତ
ତଦ୍ + ଶରଣ = ତଚ୍ଛରଣ
ମୃତ୍ + ଶକଟିକ = ମୃଚ୍ଛକଟିକ
ଏତଦ୍ + ଶରୀର = ଏତଚ୍ଛରୀର
ଉତ୍ + ଶୃଙ୍ଖଳ = ଉଚ୍ଛୃଙ୍ଖଳ
ବିପଦ୍ + ଶଙ୍କା = ବିପଚ୍ଛଙ୍କା
ବୃହତ୍ + ଶକଟ = ବୃହଚ୍ଛକଟ
ଆପଦ୍ + ଶକୁନ = ଆପଚ୍ଛକୁନ
ଜଗଦ୍ + ଶରଣ୍ୟ = ଜଗଚ୍ଛରଣ୍ୟ
ସୁହୃଦ୍ + ଶ୍ୱଶୁର = ସୁହୃଚ୍ଛ୍ୱଶୁର
ଉତ୍ + ଶ୍ୱାସ = ଉଚ୍ଛ୍ୱାସ
ଏତଦ୍ + ଶତାବ୍ଦୀ = ଏତଚ୍ଛତାବ୍ଦୀ
ଚଳତ୍ + ଶକ୍ତି = ଚଳଚ୍ଛକ୍ତି
ତଦ୍ + ଶରୀର = ତଚ୍ଛରୀର

'ତ୍' ବା 'ଦ୍' ପରେ 'ଶ' ଥିଲେ, 'ତ୍' ବା 'ଦ୍' ସ୍ଥାନରେ 'ଚ୍' ହୁଏ ଏବଂ 'ଶ' ସ୍ଥାନରେ 'ଛ' ହୁଏ । ଏହି 'ଚ୍' ଓ 'ଛ' ମିଳି 'ଚ୍ଛ' ହୁଅନ୍ତି ।

୮ । ଈଷତ୍ + ହରିତ୍ = ଈଷଦ୍ଧରିତ
ବୃହତ୍ + ହନୁ = ବୃହଦ୍ଧନୁ
ଈଷତ୍ + ହାସ୍ୟ = ଈଷଦ୍ଧାସ୍ୟ
ତତ୍ + ହିତ = ତଦ୍ଧିତ
ଉତ୍ + ହତ = ଉଦ୍ଧତ
ବିପଦ୍ + ହେତୁ = ବିପଦ୍ଧେତୁ
ଉତ୍ + ହାର = ଉଦ୍ଧାର
ସୁହୃଦ୍ + ହସ୍ତ = ସୁହୃଦ୍ଧସ୍ତ
ତଡ଼ିତ୍ + ହାସ୍ୟ = ତଡ଼ିଦ୍ଧାସ୍ୟ
ସମ୍ପଦ୍ + ହାନି = ସମ୍ପଦ୍ଧାନି
ମହତ୍ + ହାସ୍ୟ = ମହଦ୍ଧାସ୍ୟ
ଜଗତ୍ + ହିତ = ଜଗଦ୍ଧିତ

ସୂତ୍ର– 'ତ୍' ବା 'ଦ୍' ପରେ 'ହ' ଥିଲେ, ଦୁହେଁ ମିଶି 'ଦ୍ଧ' ହୁଅନ୍ତି ।

୯ । ଉତ୍ + ସ୍ଥାନ = ଉତ୍ଥାନ, ଉତ୍‌ଥାନ  ଉତ୍ + ସ୍ଥାପନ = ଉତ୍ଥାପନ, ଉତ୍‌ଥାପନ
ଉତ୍ + ସ୍ଥିତ = ଉତ୍ଥିତ, ଉତ୍‌ଥିତ  ଉତ୍ + ସ୍ତମ୍ଭ = ଉତ୍ତମ୍ଭ
ସୂତ୍ର- 'ଉତ୍' ଉପସର୍ଗ ସହିତ ସନ୍ଧି ହେଲେ ସ୍ଥାନ, ସ୍ତମ୍ଭ ଆଦି କେତେକ ଶବ୍ଦର ଆଦ୍ୟରେ ଥିବା 'ସ'ର ଲୋପ ହୁଏ ।

୧୦ । ଅନୁ + ଛେଦ = ଅନୁଚ୍ଛେଦ  ପୂର୍ବ + ଛେଦ = ପୂର୍ବଚ୍ଛେଦ
ଅବ + ଛେଦ = ଅବଚ୍ଛେଦ  ପ୍ର +ଛଦ = ପ୍ରଚ୍ଛଦ
ଆ + ଛାଦନ = ଆଚ୍ଛାଦନ  ବି + ଛେଦ = ବିଚ୍ଛେଦ
ପର + ଛିଦ୍ର = ପରଚ୍ଛିଦ୍ର  ବୃକ୍ଷ + ଛାୟା = ବୃକ୍ଷଚ୍ଛାୟା
ପରି + ଛଦ = ପରିଚ୍ଛଦ  ତରୁ + ଛାୟା = ତରୁଚ୍ଛାୟା
ପରି + ଛେଦ = ପରିଚ୍ଛେଦ  ସିତ + ଛତ୍ର = ସିତଚ୍ଛତ୍ର
ସୂତ୍ର- ସ୍ୱରବର୍ଣ୍ଣ ପରେ 'ଛ' ଥିଲେ, 'ଛ'ର ଦ୍ୱିତ୍ୱ ହୁଏ ।

୧୧ । ଉତ୍ + ନତି = ଉନ୍ନତି  ଉତ୍ + ନୀତ = ଉନ୍ନୀତ
ଦିକ୍ + ନାଗ = ଦିଙ୍‌ନାଗ  ବାକ୍ + ନିର୍ଣ୍ଣୟ = ବାଙ୍‌ନିର୍ଣ୍ଣୟ
ଜଗତ୍ + ନାଥ = ଜଗନ୍ନାଥ  ଷଟ୍ + ନୀତି = ଷଣ୍‌ନୀତି
ଷଟ୍ + ନୀତି = ଷଣ୍‌ନୀତି  ସତ୍ + ନୀତି = ସନ୍ନୀତି
ସତ୍ + ନ୍ୟାସ୍ = ସନ୍ନ୍ୟାସ  ବାକ୍ + ମୟ= ବାଙ୍ମୟ(ବାଙ୍‌ମୟୀ-ସରସ୍ୱତୀ)
ଅପ୍ + ମୟ = ଅମ୍ମୟ(ଜଳମୟ)  ଚିତ୍ + ମୟ = ଚିନ୍ମୟ
ତତ୍ + ମୟ = ତନ୍ମୟ  ମୃତ୍ + ମୟ = ମୃଣ୍ମୟ
ଜଗତ୍ + ମାତା = ଜଗନ୍ମାତା  ଏତତ୍ + ମାତ୍ର = ଏକନ୍ମାତ୍ର
ତତ୍ + ମାତ୍ର = ତନ୍ମାତ୍ର  ପରାକ୍+ମୁଖ=ପରାଙ୍ମୁଖ,ପରାଙ୍‌ମୁଖ(ବିମୁଖ)
ପ୍ରାକ୍ + ମୁଖ = ପ୍ରାଙ୍ମୁଖ  ସତ୍ + ମାର୍ଗ = ସନ୍ମାର୍ଗ, (ସଦ୍‌ମାର୍ଗ)
ଷଟ୍ + ମାସ = ଷଣ୍ମାସ  ଷଟ୍ + ମାତା = ଷଣ୍ମାତା
ସୂତ୍ର- ବର୍ଗର ପ୍ରଥମବର୍ଣ୍ଣ ପରେ ବର୍ଗର ପଞ୍ଚମବର୍ଣ୍ଣ 'ନ' ବା 'ମ' ଥିଲେ, ବର୍ଗର ପ୍ରଥମ ବର୍ଣ୍ଣ ସ୍ଥାନରେ ସେହି ବର୍ଗର ପଞ୍ଚମବର୍ଣ୍ଣ ହୁଏ ।

୧୨ । କିମ୍ + କର = କିଙ୍କର, କିଂକର  ସମ୍ + ଦେହ = ସନ୍ଦେହ, ସଂଦେହ
ଶମ୍ + କର = ଶଙ୍କର, ଶଂକର  ସମ୍ + ଦିଗ୍ଧ = ସନ୍ଦିଗ୍ଧ, ସଂଦିଗ୍ଧ
ସମ୍ + କଳନ = ସଙ୍କଳନ, ସଂକଳନ  ସମ୍ + ଦର୍ଭ = ସନ୍ଦର୍ଭ, ସଂଦର୍ଭ
ସମ୍ + କ୍ରାନ୍ତି = ସଙ୍କ୍ରାନ୍ତି, ସଂକ୍ରାନ୍ତି  ସମ୍ + ଧାନ = ସନ୍ଧାନ, ସଂଧାନ
ସମ୍ + ଖ୍ୟା = ସଙ୍ଖ୍ୟା, ସଂଖ୍ୟା  ସମ୍ + ଧ୍ୟା = ସନ୍ଧ୍ୟା, ସଂଧ୍ୟା

ସମ୍ + ଗତି = ସଙ୍ଗତି, ସଂଗତି
ସମ୍ + ଗୀତ = ସଙ୍ଗୀତ, ସଂଗୀତ
ସମ୍ + ଗୋପନ = ସଙ୍ଗୋପନ, ସଂଗୋପନ
ସମ୍ + ଘଟନ = ସଙ୍ଘଟନ, ସଂଘଟନ
ସମ୍ + ଚୟ = ସଞ୍ଚୟ, ସଂଚୟ
ସମ୍ + ଚିତ = ସଞ୍ଚିତ, ସଂଚିତ
ସମ୍ + ଚାର = ସଞ୍ଚାର, ସଂଚାର
ସମ୍ + ଚାଳନ = ସଞ୍ଚାଳନ, ସଂଚାଳନ
ସମ୍ + ଜୟ = ସଞ୍ଜୟ, ସଂଜୟ
ସମ୍ + ଜାତ = ସଞ୍ଜାତ, ସଂଜାତ
ସମ୍ + ଡିଶ = ସଣ୍ଡିଶ, ସଂଡିଶ
ସମ୍ + ଡୀନ=ସଣ୍ଡୀନ,ସଂଡ଼ୀନ(ଉଡ଼୍ଡ଼ୀନ)
ସମ୍ + ତତି = ସନ୍ତତି, ସଂତତି
ସମ୍ + ତାନ = ସନ୍ତାନ, ସଂତାନ
ସମ୍ + ତ୍ରାସ = ସନ୍ତ୍ରାସ, ସଂତ୍ରାସ
ସମ୍ + ପଦ = ସମ୍ପଦ, ସଂପଦ
ସମ୍ + ପାଦନ = ସମ୍ପାଦନ, ସଂପାଦନ
ସମ୍ + ପାଦ୍ୟ = ସମ୍ପାଦ୍ୟ, ସଂପାଦ୍ୟ
ସମ୍ + ପୂର୍ଣ୍ଣ = ସମ୍ପୂର୍ଣ୍ଣ, ସଂପୂର୍ଣ୍ଣ
ସମ୍ + ପ୍ରଦାନ = ସମ୍ପ୍ରଦାନ, ସଂପ୍ରଦାନ
ସମ୍ + ପ୍ରୀତି = ସମ୍ପ୍ରୀତି, ସଂପ୍ରୀତି
ସମ୍ + ଫୁଲ୍ଲ = ସମ୍ଫୁଲ୍ଲ, ସଂଫୁଲ୍ଲ
କିମ୍ + ବଦନ୍ତୀ = କିମ୍ବଦନ୍ତୀ, କିଂବଦନ୍ତୀ
କିମ୍ + ବା = କିମ୍ବା, କିଂବା
ସମ୍ + ବନ୍ଧ = ସମ୍ବନ୍ଧ, ସଂବନ୍ଧ
ସମ୍ + ବାଦ = ସମ୍ବାଦ, ସଂବାଦ
ସମ୍ + ବିଧାନ = ସମ୍ବିଧାନ, ସଂବିଧାନ
ସମ୍ + ଭବ = ସମ୍ଭବ, ସଂଭବ
ସମ୍ + ଭାର = ସମ୍ଭାର, ସଂଭାର
ସମ୍ + ମାନ = ସମ୍ମାନ, ସଂମାନ

ସୂତ୍ର- 'ମ୍' ପରେ ଯେଉଁ ବର୍ଗର ବର୍ଣ୍ଣ ଥାଏ, 'ମ୍' ସ୍ଥାନରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ । ବିକଳ୍ପରେ 'ମ୍' ସ୍ଥାନରେ ଅନୁସ୍ୱାର (ଂ) ହୁଏ ।

୧୩ । ସମ୍ + ଯମ = ସଂଯମ
ସମ୍ + ଯତ = ସଂଯତ
ସମ୍ + ଯୁକ୍ତ = ସଂଯୁକ୍ତ
ସମ୍ + ଯୋଗ = ସଂଯୋଗ
ସମ୍ + ଯୋଜନା - ସଂଯୋଜନା
ସମ୍ + ରମ୍ଭ = ସଂରମ୍ଭ (କ୍ରୋଧ)
(ସଂରମ୍ଭୀ-କ୍ରୋଧଶୀଳ)
ସମ୍ + ରକ୍ଷଣ = ସଂରକ୍ଷଣ
ସମ୍ + ଲଗ୍ନ = ସଂଲଗ୍ନ
ସମ୍ + ଲାପ = ସଂଲାପ
ସମ୍ + ଲୀନ = ସଂଲୀନ
ସମ୍ + ଶୟ = ସଂଶୟ
ସମ୍ + ଶୋଧନ = ସଂଶୋଧନ
ସମ୍ + ଶୋଧିତ = ସଂଶୋଧିତ
ସମ୍ + ସର୍ଗ = ସଂସର୍ଗ
ସମ୍ + ସାର = ସଂସାର
ସମ୍ + ସ୍ଥାନ = ସଂସ୍ଥାନ
ସମ୍ + ହନନ = ସଂହନନ
ସମ୍ + ହତି = ସଂହତି
ସମ୍ + ହାର = ସଂହାର
ସମ୍ + ହିତା = ସଂହିତା

ସୂତ୍ର- ଅବର୍ଗ୍ୟ ବର୍ଣ୍ଣ ପରେ ଥିଲେ ପୂର୍ବପଦର ଅନ୍ତସ୍ଥିତ 'ମ୍' ସ୍ଥାନରେ ଅନୁସ୍ୱାର (ଂ) ହୁଏ ।

୧୪ । ସମ୍ + ନତି = ସନ୍ନତି (ନମ୍ରତା)　　ସମ୍ + ନିକୃଷ୍ଟ = ସନ୍ନିକୃଷ୍ଟ
ସମ୍ + ନ୍ୟାସ = ସନ୍ନ୍ୟାସ　　ସମ୍ + ନିଧି = ସନ୍ନିଧି (ସନ୍ନିଧାନ)
ସମ୍ + ନ୍ୟାସୀ = ସନ୍ନ୍ୟାସୀ　　ସମ୍ + ନିବଦ୍ଧ = ସନ୍ନିବଦ୍ଧ (ଗ୍ରଥିତ)
ସମ୍ + ନିକଟ = ସନ୍ନିକଟ　　ସମ୍ + ନିବେଶ = ସନ୍ନିବେଶ
ସମ୍ + ନିଧାନ = ସନ୍ନିଧାନ　　ସମ୍ + ନିବିଷ୍ଟ = ସନ୍ନିବିଷ୍ଟ
ସମ୍ + ନିହିତ = ସନ୍ନିହିତ　　ସମ୍ + ନିରୋଧ = ସନ୍ନିରୋଧ
ସମ୍ + ନିପାତ = ସନ୍ନିପାତ　　ସମ୍+ନିର୍ବନ୍ଧ=ସନ୍ନିର୍ବନ୍ଧ(ଆଗ୍ରହାତିଶୟବିଶିଷ୍ଟ)
ସମ୍+ନିବୃତ୍ତ=ସନ୍ନିବୃତ୍ତ(ସଂପୂର୍ଣ୍ଣବିରତ)　　ସମ୍+ନିବନ୍ଧ = ସନ୍ନିବନ୍ଧ(ଦୃଢ଼ବନ୍ଧନ)

ସୂତ୍ର- 'ମ୍' ପରେ 'ନ' ଥିଲେ, 'ମ୍' ସ୍ଥାନରେ 'ନ୍' ହୁଏ ।

୧୫ । ସମ୍ + କରଣ = ସଂସ୍କରଣ　　ପରି + କରଣ = ପରିଷ୍କରଣ
ସମ୍ + କର୍ତ୍ତା = ସଂସ୍କର୍ତ୍ତା　　ପରି + କର୍ତ୍ତା = ପରିଷ୍କର୍ତ୍ତା
ସମ୍ + କାର = ସଂସ୍କାର　　ପରି + କାର = ପରିଷ୍କାର
ସମ୍ + କାରକ = ସଂସ୍କାରକ　　ପରି + କାରକ = ପରିଷ୍କାରକ
ସମ୍ + କୃତ = ସଂସ୍କୃତ　　ପରି + କୃତ = ପରିଷ୍କୃତ
ସମ୍ + କୃତି = ସଂସ୍କୃତି　　ପରି + କୃତି = ପରିଷ୍କୃତି
ସମ୍ + କ୍ରିୟା = ସଂସ୍କ୍ରିୟା　　ପରି + କ୍ରିୟା = ପରିଷ୍କ୍ରିୟା

ସୂତ୍ର- ସମ୍ ଓ ପରି ଉପସର୍ଗ ପରେ 'କୃ' ଧାତୁ ନିଷ୍ପନ୍ନ କରଣ, କର୍ତ୍ତା, କାର, କାରକ, କୃତ, କୃତି, କ୍ରିୟା ପ୍ରଭୃତି ଶବ୍ଦ ଥିଲେ, 'କ' ପୂର୍ବରୁ 'ସ'ର ଆଗମ ହୁଏ ଏବଂ ତାହା ପରବର୍ତ୍ତୀ ବର୍ଣ୍ଣ ସହିତ ଯୁକ୍ତ ହୁଏ । ସ୍ଥଳବିଶେଷରେ ଏହି 'ସ' ଷତ୍ୱବିଧି ଅନୁସାରେ 'ଷ' ହୁଏ ।

୧୬ । ତଦ୍ + କାଳ = ତତ୍କାଳ(ତତ୍‌କାଳ)　ତଦ୍ + ଫଣା = ତତ୍‌ଫଣା
ତଦ୍ + କାଳୀନ = ତତ୍କାଳୀନ　　ତଦ୍ + ଫଣୀ = ତତ୍‌ଫଣୀ
(ତତ୍କାଳିକ, ତାତ୍କାଳିକ)
ବିପଦ୍ + କାଳ = ବିପତ୍କାଳ　　ତଦ୍ + ଫଳ = ତତ୍‌ଫଳ
ଶରଦ୍ + କାଳ = ଶରତ୍କାଳ　　ମୃଦ୍ + ଫଳକ = ମୃତ୍‌ଫଳକ
ମଦ୍ + କୃତ = ମତ୍‌କୃତ　　ସମିଧ୍ + ଖଣ୍ଡ = ସମିତ୍‌ଖଣ୍ଡ
ବିପଦ୍ + ଖଣ୍ଡନ = ବିପଦ୍‌ଖଣ୍ଡନ　　ସୁହୃଦ୍ + ସାହାଯ୍ୟ = ସୁହୃତ୍‌ସାହାଯ୍ୟ
ତଦ୍ + କ୍ଷଣାତ୍ = ତତ୍‌କ୍ଷଣାତ୍　　ବିପଦ୍ + ସମୟ = ବିପତ୍ସ(ତ୍+ସ)ମୟ
ତଦ୍ + ପର = ତତ୍ପର(ତତ୍‌ପର)　　କ୍ଷୁଧ୍ + କ୍ଷାମ = କ୍ଷୁତ୍‌କ୍ଷାମ

ସୁହୃଦ୍ + ପରିଣୟ = ସୁହୃତ୍‌ପରିଣୟ କ୍ଷୁଧ୍ + ପିପାସା = କ୍ଷୁତ୍‌ପିପାସା

ଏତଦ୍ + ପରିଣାମ = ଏତତ୍‌ପରିମାଣ ଯୁଧ୍ + ସନ୍ଧି = ଯୁତ୍‌ସନ୍ଧି

ଏତଦ୍ + ପ୍ରାଚୀର = ଏତତ୍‌ପ୍ରାଚୀର ସଂପଦ୍ + ସଖା = ସମ୍ପତ୍‌ସଖା

ସୂତ୍ର- 'ଦ୍' ବା 'ଧ୍' ପରେ କ, ଖ, ପ, ଫ, ସ ଥିଲେ, 'ଦ୍' ଓ 'ଧ୍' ସ୍ଥାନରେ 'ତ୍' ହୁଏ ।

୧୭ । ଆବିଶ୍(ଷ୍) + ତ = ଆବିଷ୍ଟ ପିଷ୍ + ତ = ପିଷ୍ଟ

ପ୍ରବିଶ୍(ଷ୍) + ତ = ପ୍ରବିଷ୍ଟ ଶିଷ୍ + ତ = ଶିଷ୍ଟ

ତୁଷ୍ + ତ = ତୁଷ୍ଟ ତୁଷ୍ + ତି = ତୁଷ୍ଟି

ରୁଷ୍ + ତ = ରୁଷ୍ଟ କୃଷ୍ + ତି = କୃଷ୍ଟି

ଆକୃଷ୍ + ତ = ଆକୃଷ୍ଟ ପୁଷ୍ + ତି = ପୁଷ୍ଟି

ଉତ୍କୃଷ୍ + ତ = ଉତ୍କୃଷ୍ଟ ଷଷ୍ + ଥ = ଷଷ୍ଠ

ପ୍ରକୃଷ୍ + ତ = ପ୍ରକୃଷ୍ଟ ପୃଷ୍ + ଥ = ପୃଷ୍ଠ

ସନ୍ତୁଷ୍ + ତ = ସନ୍ତୁଷ୍ଟ ଓଷ୍ + ଥ = ଓଷ୍ଠ

ପୁଷ୍ + ତ = ପୁଷ୍ଟ କାଷ୍ + ଥ = କାଷ୍ଠ

କୃଷ୍ + ତ = କୃଷ୍ଟ କୋଷ୍ + ଥ = କୋଷ୍ଠ

ସୂତ୍ର- 'ଷ୍' ପରେ 'ତ' କିମ୍ବା 'ଥ' ଥିଲେ, ତ, ଥ ସ୍ଥାନରେ ଯଥାକ୍ରମେ 'ଟ' ଓ 'ଠ' ହୁଏ । ଉଭୟପଦର ସନ୍ଧି ହୁଏ ।

୧୮ । ଦିବ୍ + ଲୋକ = ଦ୍ୟୁଲୋକ(ସ୍ୱର୍ଗପୁର) ଦିବ୍ + ନିବାସ = ଦ୍ୟୁନିବାସ

ଦିବ୍ + ମଣି = ଦ୍ୟୁମଣି(ସୂର୍ଯ୍ୟ) ଦିବ୍ + ରେ = ଦ୍ୟୁରେ(ଆକାଶରେ)

ସୂତ୍ର- ବ୍ୟଞ୍ଜନ ବର୍ଣ୍ଣ ପରେ ଥାଇ 'ଦିବ୍' ସନ୍ଧି ହେଲେ, 'ଦିବ୍' ସ୍ଥାନରେ 'ଦ୍ୟୁ' ହୁଏ ।

## ବିସର୍ଗ ସନ୍ଧି

ଭାଷାରେ ବିସର୍ଗର ସ୍ୱତନ୍ତ୍ର ବ୍ୟବହାର ନାହିଁ । ଆମ୍ଭେମାନେ ବିସର୍ଗଯୁକ୍ତ କେତେକ ପଦର ବ୍ୟବହାର କରିଥାଉଁ । ସଂସ୍କୃତରେ ଉତ୍ପତ୍ତି ଦୃଷ୍ଟିରୁ ବିସର୍ଗକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା- ର୍‌ଜାତ ଓ ସ୍‌ଜାତ । ସାଧାରଣତଃ ପଦର ଅନ୍ତଃସ୍ଥିତ 'ର୍' ଓ 'ସ୍' ସ୍ଥାନରେ ବିସର୍ଗ(ଃ) ହୋଇଥାଏ । ଯେଉଁ ବିସର୍ଗ 'ର୍' ସ୍ଥାନରେ ହୋଇଥାଏ, ତାହା 'ର' ଜାତ ବିସର୍ଗ । ଯଥା-

ଅନ୍ତର-ଅନ୍ତଃ, ଦୁଃ-ଦୁର୍, ପୁନର୍-ପୁନଃ, ପ୍ରାତର୍-ପ୍ରାତଃ, ମୁହୁର-ମୁହୁଃ, ସ୍ୱର-ସ୍ୱଃ ।

ଯେଉଁ ବିସର୍ଗ 'ସ୍' ସ୍ଥାନରେ ହୋଇଥାଏ, ତାହା 'ସ' ଜାତ ବିସର୍ଗ । ଯଥା- ତମସ୍-ତମଃ, ପୟସ୍-ପୟଃ, ମନସ୍-ମନଃ, ଶିରସ୍-ଶିରଃ, ଶ୍ରେୟସ୍-ଶ୍ରେୟଃ ।

ସାଧାରଣତଃ ଅବ୍ୟୟ ପଦଗୁଡ଼ିକରେ ଥିବା ବିସର୍ଗ ର ଜାତ, ଅବ୍ୟୟ ଭିନ୍ନ ଅନ୍ୟ ପଦମାନଙ୍କରେ ଥିବା ବିସର୍ଗ ସଜାତ; ମାତ୍ର କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ଯଥା- 'ପୁରଃ' ଓ 'ନମଃ' ଅବ୍ୟୟ ପଦ ହେଲେ ମଧ୍ୟ ଏଥିରେ ଥିବା ବିସର୍ଗ ସଜାତ ଅଟେ ।

ବିସର୍ଗ ସହିତ ସ୍ୱରବର୍ଣ୍ଣ ବା ବ୍ୟଞ୍ଜନବର୍ଣ୍ଣର ସନ୍ଧି ହେଲେ, ତାହାକୁ ବିସର୍ଗ ସନ୍ଧି କୁହାଯାଏ ।

**ବିବିଧ ସୂତ୍ରାବଳୀ :**

୧ । ଅନ୍ତଃ + ଅଙ୍ଗ = ଅନ୍ତରଙ୍ଗ
ପୁନଃ + ଆଗମନ = ପୁନରାଗମନ
ଅନ୍ତଃ + ଆତ୍ମା = ଅନ୍ତରାତ୍ମା
ପ୍ରାତଃ + ଆଶ = ପ୍ରାତରାଶ
ପୁନଃ + ଉକ୍ତି = ପୁନରୁକ୍ତି
ପୁନଃ + ଉତ୍ଥାନ = ପୁନରୁତ୍ଥାନ
ପ୍ରାତଃ + ଉତ୍ଥାନ = ପ୍ରାତରୁତ୍ଥାନ
ସ୍ୱଃ + ଗତ = ସ୍ୱର୍ଗତ
ପୁନଃ + ଭବ = ପୁନର୍ଭବ
ସ୍ୱଃ + ନଦୀ = ସ୍ୱର୍ନଦୀ
ପୁନଃ + ମୂଷିକ = ପୁନର୍ମୂଷିକ
ଅନ୍ତଃ + ମୋହ = ଅନ୍ତର୍ମୋହ
ପୁନଃ + ଯୋଗ = ପୁନର୍ଯୋଗ
ପୁନଃ + ଲିଖନ = ପୁନର୍ଲିଖନ
ଅନ୍ତଃ + ହିତ = ଅନ୍ତର୍ହିତ
ପ୍ରାତଃ + ଭ୍ରମଣ = ପ୍ରାତର୍ଭ୍ରମଣ

ପୁନଃ + ଅପି = ପୁନରପି
ସ୍ୱଃ + ଓଷଧି = ସ୍ୱରୋଷଧି
ଅନ୍ତଃ + ଗତ = ଅନ୍ତର୍ଗତ
ଅନ୍ତଃ + ଦାହ = ଅନ୍ତର୍ଦାହ
ପୁନଃ + ଜନ୍ମ = ପୁନର୍ଜନ୍ମ
ପୁନଃ + ଡିଣ୍ଡିମ = ପୁନର୍ଡିଣ୍ଡିମ
ପୁନଃ + ବାର = ପୁନର୍ବାର
ଅନ୍ତଃ + ଧାନ = ଅନ୍ତର୍ଦ୍ଧାନ
ସ୍ୱଃ + ଭାନୁ = ସ୍ୱର୍ଭାନୁ
ପୁନଃ + ନବା = ପୁନର୍ନବା(ପୁରୁଣିଶାଗ)
ପୁନଃ + ମୀମାଂସା = ପୁନର୍ମୀମାଂସା
ଅନ୍ତଃ + ଯାମୀ = ଅନ୍ତର୍ଯ୍ୟାମୀ
ସ୍ୱଃ + ଲୋକ = ସ୍ୱର୍ଲୋକ
ପୁନଃ + ବାର = ପୁନର୍ବାର
ପୁନଃ + ବସତି = ପୁନର୍ବସତି (ଏକ ସ୍ଥାନରୁ ଯାଇ ଅନ୍ୟ ସ୍ଥାନରେ ବାସ)

ସୂତ୍ର- ଅ କାର ପରସ୍ଥିତ ର ଜାତ ବିସର୍ଗ ପରେ ସ୍ୱରବର୍ଣ୍ଣ, ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଳ, ବ, ହ ଥିଲେ, ବିସର୍ଗ ସ୍ଥାନରେ 'ର୍' ହୁଏ ।

୨ । ନିଃ + ଅବଲମ୍ବନ = ନିରବଲମ୍ବନ ନିଃ + ଅଳସ = ନିରଳସ

ନିଃ + ଆକାର = ନିରାକାର ନିଃ + ଅବଶେଷ = ନିରବଶେଷ

ନିଃ + ଆଡ଼ମ୍ବର = ନିରାଡ଼ମ୍ବର ନିଃ + ଅବଦ୍ୟ = ନିରବଦ୍ୟ

ନିଃ + ଆହାର = ନିରାହାର ଆୟୁଃ + ଆରୋଗ୍ୟ = ଆୟୁରାରୋଗ୍ୟ

ନିଃ + ଈକ୍ଷଣ = ନିରୀକ୍ଷଣ ବହିଃ + ଆବରଣ = ବହିରାବରଣ

ନିଃ + ଈଶ୍ୱର = ନିରୀଶ୍ୱର ନିଃ + ଉପଦ୍ରବ = ନିରୁପଦ୍ରବ

ଦୁଃ + ଗତି = ଦୁର୍ଗତି ନିଃ + ବଳ= ନିର୍ବଳ

ଦୁଃ + ଜୟ = ଦୁର୍ଜୟ ନିଃ + ବାଚନ = ନିର୍ବାଚନ(ନିର୍ଦ୍ଧାରଣ)

ନିଃ + ଜଳ = ନିର୍ଜଳ ନିଃ + ବାତ= ନିର୍ବାତ(ବାୟୁପ୍ରବାହହୀନ)

ନିଃ + ଜନ = ନିର୍ଜନ ଦୁଃ + ବାସନା = ଦୁର୍ବାସନା

ନିଃ + ଦେଶ = ନିର୍ଦ୍ଦେଶ ଧନୁଃ + ବାଣ = ଧନୁର୍ବାଣ

ବହିଃ + ଦେଶ = ବହିର୍ଦ୍ଦେଶ ନିଃ + ବେଦ = ନିର୍ବେଦ

ଦୁଃ + ଘଟନା = ଦୁର୍ଘଟନା ଆବିଃ + ଭାବ = ଆବିର୍ଭାବ

ନିଃ + ଝର = ନିର୍ଝର ବହିଃ + ଭାଗ = ବହିର୍ଭାଗ

ନିଃ + ଧନ = ନିର୍ଦ୍ଧନ ଦୁଃ + ଭାଗ୍ୟ = ଦୁର୍ଭାଗ୍ୟ

ଦୁଃ + ନୀତି = ଦୁର୍ନୀତି ନିଃ + ମାଲ୍ୟ = ନିର୍ମାଲ୍ୟ

ନିଃ + ମଳ = ନିର୍ମଳ ନିଃ + ମୋଚନ = ନିର୍ମୋଚନ

ନିଃ + ମାୟା = ନିର୍ମାୟା ନିଃ + ମମ = ନିର୍ମମ

ଦୁଃ + ଯୋଗ = ଦୁର୍ଯୋଗ ଦୁଃ + ଯବନ = ଦୁର୍ଯବନ

ନିଃ + ଲୋଭ = ନିର୍ଲୋଭ ଦୁଃ + ଲଭ = ଦୁର୍ଲଭ

ନିଃ + ଲଜ୍ଜ = ନିର୍ଲଜ୍ଜ ନିଃ + ଲିପ୍ତ = ନିର୍ଲିପ୍ତ

ଆୟୁଃ + ବେଦ = ଆୟୁର୍ବେଦ ଧନୁଃ + ବେଦ = ଧନୁର୍ବେଦ

ଆୟୁଃ + ବଳ = ଆୟୁର୍ବଳ ଆଶୀଃ + ବାଦ = ଆଶୀର୍ବାଦ

ମୁହୁଃ + ମୁହୁଃ = ମୁହୁର୍ମୁହୁଃ ଆୟୁଃ + ହାନି = ଆୟୁର୍ହାନି

ସୂତ୍ର– ଅ, ଆ ଭିନ୍ନ ସ୍ୱରବର୍ଣ୍ଣ ପର ସ୍ଥିତ ବିସର୍ଗ ପରେ ସ୍ୱରବର୍ଣ୍ଣ, ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଲ, ବ, ହ ଥିଲେ ବିସର୍ଗ 'ର୍' ହୁଏ । ପରେ ସ୍ୱରବର୍ଣ୍ଣ ଥିଲେ ତାହା 'ର୍'ରେ ମିଶିଯାଏ । ପରେ ବ୍ୟଞ୍ଜନବର୍ଣ୍ଣ ଥିଲେ, 'ର୍' ସେଥିରେ ରେଫ ( ର୍ ) ହୁଏ ।

୩ । ନିଃ + ରବ = ନୀରବ   ନିଃ + ରନ୍ଧ୍ର = ନୀରନ୍ଧ୍ର
ନିଃ + ରସ = ନୀରସ   ନିଃ + ରୋଗ = ନୀରୋଗ
ସ୍ୱଃ + ରାଜ୍ୟ = ସ୍ୱରାଜ୍ୟ   ଜ୍ୟୋତିଃ + ରାଜି = ଜ୍ୟୋତୀରାଜି
ଚକ୍ଷୁଃ + ରୋଗ = ଚକ୍ଷୂରୋଗ   ଧନୁଃ + ରାଶି = ଧନୂରାଶି
ହବିଃ + ରାଜି = ହବୀରାଜି   ହବିଃ + ରେଖା = ହବୀରେଖା

ସୂତ୍ର– ହ୍ରସ୍ୱସ୍ୱର ପରବର୍ତ୍ତୀ ବିସର୍ଗ ପରେ 'ର' ଥାଇ ସନ୍ଧି ହେଲେ, ବିସର୍ଗର ଲୋପ ହୁଏ ଏବଂ ପୂର୍ବବର୍ତ୍ତୀ ସ୍ୱର ଦୀର୍ଘ ହୁଏ ।

('ସ୍ୱରାଜ୍ୟ' ପଦ ଅନ୍ୟ ନିୟମରେ ସିଦ୍ଧ)

୪ । ଅତଃ + ଏବ = ଅତଏବ   ଯଶଃ + ଇନ୍ଦୁ = ଯଶଇନ୍ଦୁ

ସୂତ୍ର – ଅ ଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ, ଅ କାର ପର ସ୍ଥିତ ବିସର୍ଗର ଲୋପ ହୁଏ । ବିସର୍ଗ ଲୋପ ପରେ ଆଉ ସନ୍ଧି ହୁଏ ନାହିଁ ।

୫ । ମନଃ + ଗତ = ମନୋଗତ   ଅମ୍ଭଃ + ବିନ୍ଦୁ = ଅମ୍ଭୋବିନ୍ଦୁ(ଜଳବିନ୍ଦୁ)
ଅଧଃ + ଗତି = ଅଧୋଗତି   ବୟଃ + ବୃଦ୍ଧ = ବୟୋବୃଦ୍ଧ
ସଦ୍ୟଃ + ଜାତ = ସଦ୍ୟୋଜାତ   ବୟଃ + ବୃଦ୍ଧି = ବୟୋବୃଦ୍ଧି
ନଭଃ + ଡିଣ୍ଡିମ = ନଭୋଡିଣ୍ଡିମ   ମନଃ + ବ୍ୟଥା = ମନୋବ୍ୟଥା
ପୟଃ + ଦ = ପୟୋଦ   ଶିରଃ + ବ୍ୟଥା = ଶିରୋବ୍ୟଥା
ପୟଃ + ଦାନ = ପୟୋଦାନ   ତପଃ + ବନ = ତପୋବନ
ବଚଃ + ଘାତ = ବଚୋଘାତ   ପୟଃ + ଝରୀ = ପୟୋଝରୀ
ତପଃ + ଧନ = ତପୋଧନ   ଯଶଃ + ଧନ = ଯଶୋଧନ
ପୟଃ + ଧର = ପୟୋଧର   ଶିରଃ + ଧାର୍ଯ୍ୟ = ଶିରୋଧାର୍ଯ୍ୟ
ପୁରଃ + ଭାଗ = ପୁରୋଭାଗ   ଶିରଃ + ଭୂଷା = ଶିରୋଭୂଷା
ମନଃ + ନୟନ = ମନୋନୟନ   ବକ୍ଷଃ + ନାଦ = ବକ୍ଷୋନାଦ
ମନଃ + ନୀତ = ମନୋନୀତ   ତେଜଃ + ମୟ = ତେଜୋମୟ
ତମଃ + ମୟ = ତମୋମୟ   ଶିରଃ + ମଣି = ଶିରୋମଣି
ମନଃ + ଯୋଗ = ମନୋଯୋଗ   ନଭଃ + ଯାନ = ନଭୋଯାନ
ମନଃ + ରଂଜନ = ମନୋରଂଜନ   ମନଃ + ରଥ = ମନୋରଥ
ଶିରଃ + ରତ୍ନ = ଶିରୋରତ୍ନ   ଅହଃ + ରାତ୍ର = ଅହୋରାତ୍ର
ଯଶଃ + ରାଶି = ଯଶୋରାଶି   ଶ୍ରେୟଃ + ରାଶି = ଶ୍ରେୟୋରାଶି

ଯଶଃ + ଲାଭ = ଯଶୋଲାଭ ତପଃ + ଲୋକ = ତପୋଲୋକ

ମନଃ + ହର = ମନୋହର ତେଜଃ + ହାନି = ତେଜୋହାନି

ତେଜଃ + ହୀନ = ତେଜୋହୀନ ଯଶଃ + ଗାଥା = ଯଶୋଗାଥା

ସୂତ୍ର- ସଜାତ ବିସର୍ଗ ପୂର୍ବରୁ 'ଅ' ଥିଲେ ଏବଂ ପରେ କୌଣସି ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବର୍ଣ୍ଣ କିମ୍ବା ଯ, ର, ଳ, ଲ, ବ, ହ ଥିଲେ ବିସର୍ଗ ଓ ତାହାର ପୂର୍ବବର୍ତ୍ତୀ 'ଅ' ଉଭୟ ମିଶି 'ଓ' ହୋଇଥା'ନ୍ତି । 'ଓ' ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୬ । ତତଃ + ଅଧିକ = ତତୋଧିକ / ତତୋଽଧିକ

ମନଃ + ଅଭିଳାଷ = ମନୋଭିଳାଷ / ମନୋଽଭିଳାଷ

ମନଃ + ଅଭୀଷ୍ଟ = ମନୋଭିଷ୍ଟ / ମନୋଽଭୀଷ୍ଟ

ବୟଃ + ଅଧିକ = ବୟୋଧିକ / ବୟୋଽଧିକ

ଶିରଃ + ଅଳଙ୍କାର = ଶିରୋଳଙ୍କାର / ଶିରୋଽଳଙ୍କାର

ସୂତ୍ର- ଅ କାର ପରବର୍ତ୍ତୀ ସଜାତ ବିସର୍ଗ ପରେ ଯଦି 'ଅ' ଥାଏ, ତେବେ ଅ କାର ଓ ପର ସ୍ଥିତ ସଜାତ ବିସର୍ଗ ଦୁହେଁ ମିଶି 'ଓ' ହୁଅନ୍ତି । ଓ କାର ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ । ପରେ ଅ କାର ଥିଲେ, ତା'ର ଲୋପ ହୁଏ । ସଂସ୍କୃତରେ ଏପରି ସ୍ଥଳରେ 'ଓ'କାର ପରେ ଲୁପ୍ତ ବା ଖଣ୍ଡ ଅ କାର ଚିହ୍ନ (ଽ) ରହେ ।

୭ । ତପଃ + ଚରଣ = ତପଶ୍ଚରଣ ନଭଃ + ଛନ୍ଦ = ନଭଶ୍ଛନ୍ଦ

ତପଃ + ଚର୍ଯ୍ୟା = ତପଶ୍ଚର୍ଯ୍ୟା ସଦ୍ୟଃ + ଛିନ୍ନ = ସଦ୍ୟଶ୍ଛିନ୍ନ

ନିଃ + ଚୟ = ନିଶ୍ଚୟ ଦୁଃ + ଛେଦ୍ୟ = ଦୁଶ୍ଛେଦ୍ୟ

ନଭଃ + ଚର = ନଭଶ୍ଚର ଶିରଃ + ଛେଦ = ଶିରଶ୍ଛେଦ

ପୁରଃ + ଚରଣ = ପୁରଶ୍ଚରଣ ଶିରଃ + ଛେଦନ = ଶିରଶ୍ଛେଦନ

ଦୁଃ + ଚିନ୍ତା = ଦୁଶ୍ଚିନ୍ତା ଦୁଃ + ଚରିତ୍ର = ଦୁଶ୍ଚରିତ୍ର

ସୂତ୍ର- ପଦାନ୍ତ ବିସର୍ଗ ପରେ 'ଚ' ବା 'ଛ' ଥିଲେ, ବିସର୍ଗ ସ୍ଥାନରେ 'ଶ୍' ହୁଏ । 'ଶ୍' ସହିତ ପରବର୍ତ୍ତୀ ବର୍ଣ୍ଣ ଯୁକ୍ତ ହୋଇ ସନ୍ଧି ହୁଏ ।

୮ । ଧନୁଃ + ଟଙ୍କାର = ଧନୁଷ୍ଟଙ୍କାର ନିଃ + ଠୀବନ = ନିଷ୍ଠୀବନ(ଛେପା,ଥୁକ)

ଧନୁଃ + ଟଙ୍କଧର = ଧନୁଷ୍ଟଙ୍କଧର ନିଃ + ଠୁର = ନିଷ୍ଠୁର

ସୂତ୍ର- ବିସର୍ଗ ପରେ 'ଟ' ବା 'ଠ' ଥିଲେ, ବିସର୍ଗ ସ୍ଥାନରେ 'ଷ୍' ହୁଏ । 'ଷ୍' ସହିତ ପରବର୍ତ୍ତୀ ବର୍ଣ୍ଣ ମିଶି ସନ୍ଧି ହୁଏ ।

୯ । ଅଧଃ + ତନ = ଅଧସ୍ତନ — ନିଃ + ତାର = ନିସ୍ତାର

ଇତଃ + ତତଃ = ଇତସ୍ତତଃ — ନିଃ + ତାରକ = ନିସ୍ତାରକ

ନଭଃ + ତଳ = ନଭସ୍ତଳ — ନିଃ + ତାରଣ = ନିସ୍ତାରଣ

ନିଃ + ତରଙ୍ଗ = ନିସ୍ତରଙ୍ଗ — ନିଃ + ତେଜ = ନିସ୍ତେଜ

ମନଃ + ତାପ = ମନସ୍ତାପ — ମନଃ + ତୁଷ୍ଟି = ମନସ୍ତୁଷ୍ଟି

ସୂତ୍ର- ପଦାନ୍ତ ବିସର୍ଗ ପରେ 'ତ' ଥିଲେ, ବିସର୍ଗ ସ୍ଥାନରେ 'ସ୍' ହୁଏ । ସେହି 'ସ୍' ପରବର୍ତ୍ତୀ 'ତ୍' ସହିତ ଯୁକ୍ତ ହୁଏ ।

୧୦ । ତିରଃ + କାର = ତିରସ୍କାର — ଅୟଃ + କାନ୍ତ = ଅୟସ୍କାନ୍ତ

ନମଃ + କାର = ନମସ୍କାର — ବାଚଃ + ପତି = ବାଚସ୍ପତି

ପୁରଃ + କାର = ପୁରସ୍କାର — ଶ୍ରେୟଃ + କର = ଶ୍ରେୟସ୍କର

ଭାଃ + କର = ଭାସ୍କର — ମନଃ + କାମନା = ମନସ୍କାମନା

କେତେକ କ୍ଷେତ୍ରରେ ଷତ୍ୱବିଧି ଅନୁସାରେ 'ସ୍' ସ୍ଥାନରେ 'ଷ୍' ହୁଏ । ଯଥା-

ଦୁଃ + କର୍ମ = ଦୁଷ୍କର୍ମ — ଆବିଃ + କାର = ଆବିଷ୍କାର

ଦୁଃ + କୃତି = ଦୁଷ୍କୃତି — ବହିଃ + କାର = ବହିଷ୍କାର

ଚତୁଃ + ପଥ = ଚତୁଷ୍ପଥ — ଚତୁଃ + ପଦ = ଚତୁଷ୍ପଦ

ଚତୁଃ + ପାଠୀ = ଚତୁଷ୍ପାଠୀ — ଚତୁଃ + ପାଣି = ଚତୁଷ୍ପାଣି

ଦୁଃ + ପାଚ୍ୟ = ଦୁଷ୍ପାଚ୍ୟ — ଧନୁଃ + ପାଣି = ଧନୁଷ୍ପାଣି

ଗୀଃ + ପତି = ଗୀଷ୍ପତି — ନିଃ + ପାପ = ନିଷ୍ପାପ

ନିଃ + କର = ନିଷ୍କର — ଭ୍ରାତୁଃ + ପୁତ୍ର = ଭ୍ରାତୃଷ୍ପୁତ୍ର

ନିଃ + କମ୍ପ = ନିଷ୍କମ୍ପ — ନିଃ + ଫଳ = ନିଷ୍ଫଳ

ସୂତ୍ର- ବିସର୍ଗ ପରେ କ, ପ କିମ୍ବା ଫ ଥିଲେ, ଅନ୍ତଃସ୍ଥିତ ବିସର୍ଗ ସ୍ଥାନରେ 'ସ୍' ହୁଏ । କେତେକ ସ୍ଥଳରେ ଷତ୍ୱବିଧି ଅନୁସାରେ 'ଷ୍' ହୁଏ ।

**ସନ୍ଧିନିୟମ ବହିର୍ଭୂତ-**

ଅହ + ଅହ = ଅହରହ — ବନ + ପତି = ବନସ୍ପତି

ଆ + ପଦ = ଆସ୍ପଦ — ବୃହତ୍ + ପତି = ବୃହସ୍ପତି

ଏକ + ଦଶ = ଏକାଦଶ — ହରି + ଚନ୍ଦ୍ର = ହରିଶ୍ଚନ୍ଦ୍ର

ଗୋ + ପଦ = ଗୋଷ୍ପଦ — ସମ୍ + ରାଟ = ସମ୍ରାଟ୍

ତତ୍ + କର = ତସ୍କର — ତ୍ରି + ଅମ୍ବକ = ତ୍ରୟମ୍ବକ

ପତତ୍ + ଅଞ୍ଜଳି = ପତଞ୍ଜଳି — ମନ + ଅନ୍ତର = ମନାନ୍ତର

ପର + ପର = ପରସ୍ପର — ବାର + ବାର = ବାରମ୍ବାର

## ଅନୁଶୀଳନୀ

୧ । ସନ୍ଧି କାହାକୁ କହନ୍ତି ଏବଂ ଏହା କେତେ ପ୍ରକାର ଓ କ'ଣ କ'ଣ ?

୨ । ବ୍ୟଞ୍ଜନ ସନ୍ଧି କାହାକୁ କହନ୍ତି ? ତିନୋଟିର ଉଦାହରଣ ଦିଅ ।

୩ । ବିସର୍ଗ କେତେ ପ୍ରକାର ଓ କ'ଣ କ'ଣ ?

୪ । ବିସର୍ଗ ସନ୍ଧି କାହାକୁ କହନ୍ତି ? ପାଞ୍ଚଟିର ଉଦାହରଣ ଦିଅ ।

୫ । ସନ୍ଧିବିଚ୍ଛେଦ କର :

ବିଦ୍ୟାରମ୍ଭ, ସତ୍ୟାନ୍ୱେଷୀ, ମହୋତ୍ସବ, ମହୋଷଧି, ମହୈଶ୍ୱର୍ଯ୍ୟ, ଦୁର୍ଗେଶ, ଯଦ୍ୟପି, ରାଜର୍ଷି, ଭକ୍ତ୍ୟୁପହାର, ଚିତ୍ରୋତ୍ପଳା, କପିଳେନ୍ଦ୍ର, ଯଥେଚ୍ଛା, ପ୍ରତ୍ୟୁତ୍ତର, ବାଙ୍‌ନ୍ୟାସ, ପୁଷ୍ପ, ନିର୍ମାଣ, ବିପଚ୍ଛଙ୍କା, ଶରଲ୍ଲକ୍ଷ୍ମୀ, ସଞ୍ଚାଳକ, ଉଲ୍ଲୋଳ, ମରୁନ୍ମୟ, ସଂସ୍ଥାନ, ବାଗୀଶ, ଉତ୍ଥାନ, ପୂର୍ବଚ୍ଛେଦ, ବିଦ୍ୟୁଲ୍ଲତା, ଶିରୋମଣି, ନୀରବ, ଶିରୋଭୂଷଣ, ମନସ୍କାମ, ନିସ୍ତରଙ୍ଗ, ନିରୀକ୍ଷଣ, ଅଧୋଗତି, ଅନ୍ତର୍ଦାହ, ସ୍ୱର୍ଗତ, ଦୁର୍ଭାଗ୍ୟ, ପୟୋଧର, ଉଚ୍ଛୃଙ୍ଖଳ, ନଭୋଯାନ, ପିତ୍ରାବାସ, ତମୋମୟ, ସଜ୍ଜନ, ପୃଥ୍ୱୀଶ୍ୱର, ବିପର୍ଯ୍ୟସ୍ତ, ପ୍ରୌଢ଼, ତତୋଽଧିକ, ବୟୋବୃଦ୍ଧ, ବହିରାବଣ, ଅତ୍ୟୂର୍ଦ୍ଧ୍ୱ, ଗବାକ୍ଷ, ଦିଗ୍‌ଗଜ, ସଚ୍ଛାତ୍ର, ନୀଳାଚଳ, ସଂତ୍ରାସ, ନିର୍ବାଚନ, ଅଗ୍ରାଧିକାର, ନଭଶ୍ଚୁମ୍ବୀ, ମଣ୍ଡଳାଧୀଶ, ରମେଶ, ଦୁର୍ଦ୍ଦଶା, ଭସ୍ମାବଶିଷ୍ଟ, ସମୁଜ୍ଜ୍ୱଳ ।

୬ । ସନ୍ଧି କର –

| | | | |
|---|---|---|---|
| ସମ୍ + ନ୍ୟାସ | ଦୁର୍ଗା + ଉତ୍ସବ | ତତ୍ + କର | ସତ୍ + ନ୍ୟାସ |
| ପରି + କାର | ସୂଚୀ + ଅଗ୍ର | ଧନୁଃ + ଧର | ମନଃ + ତାପ |
| ସଦ୍ୟଃ + ଜାତ | ଅଭି + ଉଦୟ | ନିଃ + ଜର | କ୍ଷୁଧ୍ + ପିପାସା |
| ଈଷତ୍ + ହାସ୍ୟ | ଉତ୍ + ହାସ | ବୃକ୍ଷ + ଛାୟା | ନିଃ + ରନ୍ଧ୍ର |
| ମନଃ + ବୃତ୍ତି | ବାକ୍ + ବାହୁଲ୍ୟ | ଯୋଗ + ଐଶ୍ୱର୍ଯ୍ୟ | ମନୁ + ଅନ୍ତର |
| ସହ + ଉଦୟ | ଆଶୀଃ + ବାଦ | ନିଃ + ରବ | ପ୍ରାତଃ + ଆଶ |
| ସମ୍ + ଧାନ | ଉତ୍ + ସ୍ତମ୍ଭ | ଜଗତ୍ + ବନ୍ଧୁ | ତଦ୍ + ଫଳ |
| ଇତି + ଆଦି | ଧାତୁ + ଅଂଶ | ଶେ + ଅନ | ଅନୁ + ଛେଦ |
| ନିଃ + ଉପାୟ | ଏକ + ଊନ | ପୁନଃ + ରୋଷ | ପିଷ୍ + ତ |
| ସହ + ଉଦର | ପୟଃ + ଦାନ | ଅତଃ + ଏବ | ଶିରଃ + ଛେଦ |
| ମାତୃ + ଆଦେଶ | ମନଃ + ରଥ | ଉତ୍ + ଲଙ୍ଘନ | ଅପ୍ + ଜ |

୭ । ସଂଶୋଧନ କର-

| | | | |
|---|---|---|---|
| ଜଗମୋହନ | ପ୍ରୋଢ଼ | ମନବୃତ୍ତି | ପରପୋଜୀବୀ |
| ନବୌଢ଼ା | ଜଗତୀଶ୍ୱର | ଧନୁପାଣି | ପ୍ରତ୍ୟେହ |
| ବସ୍ତ୍ରବାସ | ସମ୍ପଛକା | ମନବାଞ୍ଛା | ଅହରାତ୍ର |
| ଦୁରାବସ୍ଥା | ସଦ୍ୟଜାତ | ଅଧକ୍ଷ | ମହଷଧି |
| ମନବ୍ୟଥା | ଜଗନିବାସ | ନଦ୍ୟାମ୍ବୁ | ଯାତାୟତ |
| ତପବନ | ତପଚାରୀ | ନିରୋଗ | ମନକାମନା |
| ଧନୁପାଣି | ଶିରଛେଦ | ଭୂମ୍ୟାଧିକାରୀ | ଚକ୍ଷୁରୋଗ |
| ଦିଗାମ୍ବର | ଯଶରାଶି | ଅଧୋପତନ | ମରୁଦ୍ୟାନ |
| ପୂର୍ବନୁମତି | ଉପରୋକ୍ତ | ପ୍ରତ୍ୟକ | ଗତ୍ୟାନ୍ତର |
| ସନ୍ମାନ | ନିରାପେକ୍ଷ | ପରିସ୍କାର | ମନଯୋଗ |
| ସତୁପାୟ | ବିପଜନକ | ଜଗତାନନ୍ଦ | ଅନ୍ତ୍ରଗତ |
| ଷଟ୍‌ମାସ | ପୁରଭାଗ | ନିରସ | ତୀର୍ଥଦୋକ |

୮ । ପ୍ରତ୍ୟେକ ପ୍ରଶ୍ନର ଚାରିଟି ସମ୍ଭାବ୍ୟ ଉତ୍ତର ଦିଆଯାଇଛି । ସେଗୁଡ଼ିକ ମଧ୍ୟରୁ ଠିକ୍ ଉତ୍ତରଟି ବାଛି ଲେଖ ।

'ନିରବଲମ୍ବ' ସନ୍ଧିବିଚ୍ଛେଦ କର ।

(କ) ନିର + ବଲମ୍ବନ (ଖ) ନିଃ + ବଲମ୍ବନ

(ଗ) ନିଃ + ଅବଲମ୍ବ (ଘ) ନିର + ଅବଲମ୍ବନ

'ଚକ୍ଷୂରୋଗ' ସନ୍ଧିବିଚ୍ଛେଦ କଲେ କ'ଣ ହେବ ?

(କ) ଚକ୍ଷୁ + ରୋଗ (ଖ) ଚକ୍ଷୂ + ରୋଗ

(ଗ) ଚକ୍ଷୂଃ + ରୋଗ (ଘ) ଚକ୍ଷୁଃ + ରୋଗ

ନିମ୍ନୋକ୍ତ ମଧ୍ୟରୁ ଠିକ୍ ଶବ୍ଦଟି ବାଛି ଲେଖ ।

(କ) ସଦ୍ୟଜାତ (ଖ) ସଦ୍ୟଃଜାତ (ଗ) ସଦ୍ୟଜାତଃ (ଘ) ସଦ୍ୟୋଜାତ

ନିମ୍ନୋକ୍ତ ମଧ୍ୟରୁ ଠିକ୍ ଶବ୍ଦଟି ବାଛି ଲେଖ ।

(କ) ଦୂରାବସ୍ଥା (ଖ) ଦୁରାବସ୍ଥା (ଗ) ଦୁରବସ୍ଥା (ଘ) ଦୂରବସ୍ଥା



# ସମାସ

**ତଳ ଉଦାହରଣଗୁଡ଼ିକୁ ଲକ୍ଷ୍ୟ କର-**

୧ । ଯାହାର ବୁଦ୍ଧି ତୀକ୍ଷ୍ଣ, ସେପରି ଲୋକ ଆକସ୍ମିକ ବିପଦକୁ ପ୍ରତିହତ କରିପାରେ ।
ସଂକ୍ଷିପ୍ତ ଉକ୍ତି- ତୀକ୍ଷ୍ଣବୁଦ୍ଧି ଲୋକ ଆକସ୍ମିକ ବିପଦକୁ ପ୍ରତିହତ କରିପାରେ ।

୨ । ଯେଉଁ ରାମଚନ୍ଦ୍ରଙ୍କ କମଳ ପରି ଲୋଚନ, ଯେ ପିତାଙ୍କର ଭକ୍ତ ସେ ସତତ ପ୍ରଜାଙ୍କଠାରେ ଅନୁରକ୍ତ ଥିଲେ ।

ସଂକ୍ଷିପ୍ତ ଉକ୍ତି- କମଳଲୋଚନ, ପିତୃଭକ୍ତ ରାମଚନ୍ଦ୍ର ସତତ ପ୍ରଜାନୁରକ୍ତ ଥିଲେ ।

୩ । ଅଯୋଧ୍ୟାର ଅଧିପତି ଦଶରଥ ପୁତ୍ରପାଇଁ ଶୋକ କରି ପ୍ରାଣତ୍ୟାଗ କଲେ ।
ସଂକ୍ଷିପ୍ତ ଉକ୍ତି- ଅଯୋଧ୍ୟାଧିପତି ଦଶରଥ ପୁତ୍ରଶୋକରେ ପ୍ରାଣତ୍ୟାଗ କଲେ ।

ଉପରେ ତିନୋଟି ଉଦାହରଣ ଦିଆଯାଇଛି । ପ୍ରତ୍ୟେକ ଉଦାହରଣରେ ଦୁଇଟି ଲେଖାଏଁ ଉକ୍ତି ଅଛି, ଗୋଟିଏ ବିସ୍ତୃତ ଓ ଅନ୍ୟଟି ସଂକ୍ଷିପ୍ତ । ଉଭୟ ଉକ୍ତି ବା ବାକ୍ୟର ଅର୍ଥ ସମାନ । ବିସ୍ତୃତଉକ୍ତି ବା ଦୀର୍ଘବାକ୍ୟରେ ପରସ୍ପର ସମ୍ପର୍କ ଥିବା ପଦଗୁଡ଼ିକୁ ଯୋଡ଼ି ଗୋଟିଏ ଗୋଟିଏ ପଦ କରାଯାଇଛି ଓ ସଂକ୍ଷିପ୍ତ ବାକ୍ୟରେ ବ୍ୟବହୃତ ହୋଇଛି ।

ପ୍ରଥମ ଉଦାହରଣରେ ସମ୍ପର୍କ ଥିବା ପଦ ହେଉଛି- 'ତୀକ୍ଷ୍ଣ' ଓ 'ବୁଦ୍ଧି' । ଦ୍ୱିତୀୟ ଉଦାହରଣରେ ସମ୍ପର୍କ ଥିବା ପଦଗୁଡ଼ିକ ହେଉଛି- 'କମଳ' ଓ 'ଲୋଚନ', 'ପିତା' ଓ ଭକ୍ତ, 'ପ୍ରଜା' ଓ ଅନୁରକ୍ତ । ତୃତୀୟ ଉଦାହରଣରେ ସମ୍ପର୍କ ଥିବା ପଦ ହେଉଛି- 'ଅଯୋଧ୍ୟା' ଓ 'ଅଧିପତି', 'ପୁତ୍ର' ଓ 'ଶୋକ' ।

ଏହି ଦୁଇ ଦୁଇ ପଦକୁ ଯୋଡ଼ି ଯଥାକ୍ରମେ ତୀକ୍ଷ୍ଣ ବୁଦ୍ଧି, କମଳଲୋଚନ, ପିତୃଭକ୍ତ, ପ୍ରଜାନୁରକ୍ତ, ଅଯୋଧ୍ୟାଧିପତି ଓ ପୁତ୍ରଶୋକ ପ୍ରଭୃତି ଗୋଟିଏ ଗୋଟିଏ ପଦ କରାହୋଇଛି ।

ପରସ୍ପର ସମ୍ବନ୍ଧ ଥିବା ଏକାଧିକ ପଦକୁ ଏକପଦ କରିବାର ନାମ ସମାସ ।

ସମ୍ବନ୍ଧଯୁକ୍ତ ଦୁଇ ବା ତତୋଽଧିକ ପଦର ମିଳନରେ ଯେଉଁ ଏକ ପଦ ଗଠିତ ହୁଏ, ତାହାକୁ ସମସ୍ତ ପଦ ବା ସମାସପଦ କୁହାଯାଏ । ଯଥା- ତୀକ୍ଷ୍ଣବୁଦ୍ଧି, କମଳଲୋଚନ, ପିତୃଭକ୍ତ, ପ୍ରଜାନୁରକ୍ତ, ଅଯୋଧ୍ୟାଧିପତି ଓ ପୁତ୍ରଶୋକ ।

ଯେଉଁ ଯେଉଁ ପଦମାନଙ୍କର ମିଳନରେ ସମସ୍ତ ପଦ ଗଠିତ ହୁଏ, ସେସବୁକୁ ସମସ୍ୟମାନ ପଦ କହନ୍ତି । ଯଥା- ତୀକ୍ଷ୍ଣ ଓ ବୁଦ୍ଧି, କମଳ ଓ ଲୋଚନ, ପିତା ଓ ଭକ୍ତ, ପ୍ରଜା ଓ ଅନୁରକ୍ତ, ଅଯୋଧ୍ୟା ଓ ଅଧିପତି, ପୁତ୍ର ଓ ଶୋକ ।

ସମସ୍ୟମାନ ପଦମାନଙ୍କ ମଧ୍ୟରେ ଥିବା ସମ୍ବନ୍ଧକୁ ବ୍ୟକ୍ତ କରିବାପାଇଁ ଯେଉଁ ବିସ୍ତୃତ ଉକ୍ତି ବା ବାକ୍ୟ ବା ବାକ୍ୟାଂଶ ବ୍ୟବହୃତ ହୁଏ, ତାହାକୁ ସମାସବାକ୍ୟ ବା ବ୍ୟାସବାକ୍ୟ ବା ବିଗ୍ରହବାକ୍ୟ କୁହାଯାଏ । ଯଥା- ତୀକ୍ଷ୍ଣ ବୁଦ୍ଧି ଯାହାର, କମଳ ପରି ଲୋଚନ, ପିତାଙ୍କର ଭକ୍ତ, ପ୍ରଜାଙ୍କ ଠାରେ ଅନୁରକ୍ତ, ଅଯୋଧ୍ୟାର ଅଧିପତି ଓ ପୁତ୍ରପାଇଁ ଶୋକ ଇତ୍ୟାଦି ।

ସମସ୍ତ ପଦ ମଧ୍ୟରୁ ପ୍ରଥମ ପଦଟି ପୂର୍ବପଦ ଓ ଦ୍ୱିତୀୟ ପଦଟି ପରପଦ ବା ଉତ୍ତରପଦ । ଯଥା- ବୀଣାପାଣି । 'ବୀଣା' ପୂର୍ବପଦ ଓ 'ପାଣି' ପରପଦ ବା ଉତ୍ତର ପଦ ।

**ସମାସର ଉଦ୍ଦେଶ୍ୟ :**

ସଂକ୍ଷେପରେ ଭାବପ୍ରକାଶ କରିବା ସମାସର ଉଦ୍ଦେଶ୍ୟ । ସମାସଦ୍ୱାରା ରଚନା ସରସ ଓ ଶ୍ରୁତିମଧୁର ହୁଏ । ଲେଖା ଓଜୋଗୁଣଦୀପ୍ତ ହୁଏ । ବିଭକ୍ତିଯୁକ୍ତ ପଦର ବ୍ୟବହାର ହ୍ରାସ ପାଏ । ପୁନଶ୍ଚ ସମାସ ପ୍ରକ୍ରିୟାଦ୍ୱାରା ବ୍ୟବହୃତ ପଦର ଅର୍ଥବୋଧଗମ୍ୟତା ଆସେ ।

**ସମାସସମ୍ବନ୍ଧରେ କେତେକ ଜ୍ଞାତବ୍ୟ ତଥ୍ୟ :**

ସମାସ ଅର୍ଥ ସଂକ୍ଷେପ ଓ ବ୍ୟାସ ଅର୍ଥ ବିସ୍ତାର । ସମାସରେ ସମ୍ବନ୍ଧ ଥିବା ପଦମାନଙ୍କର କେବଳ ସମାସ ହୁଏ, ସମ୍ବନ୍ଧ ନ ଥିବା ପଦମାନଙ୍କର ସମାସ ହୁଏ ନାହିଁ । ଯଥା- ନଦୀର ଜଳ ମଧୁର ଅଟେ । 'ନଦୀ'ର 'ଜଳ' ସହ ସମ୍ପର୍କ ଥିବାରୁ ନଦୀ ଓ ଜଳ ପଦ ଦୁଇଟି ସମାସ ହୋଇପାରିବ; ମାତ୍ର 'ନଦୀ'ର 'ମଧୁର' ସହ ସମ୍ପର୍କ ନ ଥିବାରୁ ନଦୀ ଓ ମଧୁର ଶବ୍ଦର ସମାସ ହୋଇପାରିବ ନାହିଁ । ଏଣୁ 'ନଦୀଜଳ' ସମାସ ପଦ ଏବଂ 'ନଦୀ ମଧୁର' ସମାସ ପଦ ନୁହେଁ ।

ଦୁଇରୁ ଅଧିକ ପଦକୁ ନେଇ ସମାସ କରାଯାଇପାରେ । ଯଥା- ବାତପିତ୍ତକଫଶ୍ଳେଷ୍ମା, ସାମଦାନଦଣ୍ଡଭେଦ, କାଳିକଲମକାଗଜ, ଖରାବର୍ଷାଶୀତ, ଗଙ୍ଗାଯମୁନାସରସ୍ୱତୀ, ଦହିକ୍ଷୀରଘିଅଗୁଡ଼ମହୁ ।

ସମାସରେ ଆବଶ୍ୟକ ସ୍ଥଳରେ ନିଶ୍ଚିତ ସନ୍ଧି କରିବାକୁ ହେବ । ଯଥା- ସତ୍ୟରେ ଆନନ୍ଦ ଯାହାର, ସେ ସତ୍ୟାନନ୍ଦ(ସତ୍ୟ + ଆନନ୍ଦ), ଗଣର ଈଶ= ଗଣେଶ (ଗଣ + ଈଶ), ସପ୍ତଅହର ସମାହାର = ସପ୍ତାହ (ସପ୍ତ + ଅହ), ନାହିଁ କଳଙ୍କ ଯାହାର = ନିଷ୍କଳଙ୍କ (ନିଃ + କଳଙ୍କ) ।

ସନ୍ଧିରେ ଦୁଇବର୍ଣ୍ଣର ମିଳନ ଘଟେ; ମାତ୍ର ସମାସରେ ଦୁଇପଦର ମିଳନ ଘଟେ । ଯେଉଁସ୍ଥଳରେ ସନ୍ଧି ହୋଇଥାଏ, ସେଠାରେ ସମାସ ରହିଥାଏ । ପ୍ରଥମେ ଦୁଇପଦର

ମିଳନ ହେଲାପରେ ବର୍ଣ୍ଣ ଦ୍ୱୟର ମିଳନ ଘଟିଥାଏ । ଯଥା- ବିଦ୍ୟାଳୟ । ବିଦ୍ୟା + ଆଳୟ – ଏହି ଦୁଇପଦର ମିଳନ ସହିତ 'ଆ + ଆ' ମିଳନ ବା ସନ୍ଧି ହୋଇ 'ଆ' ହୋଇଛି ।

ସମାସରେ ସମସ୍ତ ପଦଗୁଡ଼ିକୁ ଏକତ୍ର କରି ଲେଖାଯାଏ ବା ସମସ୍ୟମାନ ପଦଗୁଡ଼ିକ ମଧ୍ୟରେ ହାଇଫେନ୍ ବା ଯୋଜକଚିହ୍ନ ଦେଇ ଲେଖାଯାଏ । ଯଥା- ରାମଲକ୍ଷ୍ମଣସୀତା / ରାମ-ଲକ୍ଷ୍ମଣ-ସୀତା, ଉତ୍କଳକମଳାବିଳାସଦୀର୍ଘିକା / ଉତ୍କଳ-କମଳା-ବିଳାସ-ଦୀର୍ଘିକା, ସତ୍ୟଶିବସୁନ୍ଦର / ସତ୍ୟ-ଶିବ-ସୁନ୍ଦର ।

ସମାସରେ ପୂର୍ବପଦର ବିଭକ୍ତି ଚିହ୍ନ ଲୋପ ହୁଏ । ଯଥା- ନିଶାରେ ଚରେ ଯେ = ନିଶାଚର । ସମସ୍ୟ ମାନ ପଦ 'ନିଶା'ରେ ଥିବା ସପ୍ତମୀ ବିଭକ୍ତି ଚିହ୍ନ 'ରେ' ସମସ୍ତପଦ 'ନିଶାଚର'ରେ ଲୋପ ହୋଇଛି; ମାତ୍ର ବାକ୍ୟରେ ବ୍ୟବହାର ହେଲେ; ପରପଦ ବିଭକ୍ତି ଚିହ୍ନ ଗ୍ରହଣ କରେ । ଯଥା- ସମସ୍ତେ ନିଶାଚରକୁ ଭୟ କରନ୍ତି । ପରପଦ 'ଚର'ରେ ଦ୍ୱିତୀୟା ବିଭକ୍ତି ଚିହ୍ନ 'କୁ' ଲାଗିଛି ।

ସମାସ ପ୍ରକ୍ରିୟାରେ କେତେକ ସ୍ଥଳରେ ସମସ୍ୟମାନ ପଦରେ ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । କେଉଁଠି ସମସ୍ୟମାନ ପଦରୁ ପ୍ରତ୍ୟୟର ଲୋପହୁଏ ତ ଅନ୍ୟ କେଉଁଠି ପ୍ରତ୍ୟୟର ଆଗମ ହୋଇଥାଏ । ପୁଣି ଅନ୍ୟ କେଉଁଠି ସମସ୍ୟମାନ ପଦ ବଦଳିଯାଇ ଆଗପଛ ହୋଇଥା'ନ୍ତି । ଯଥା-

ଛାଗୀର ଦୁଗ୍ଧ = ଛାଗଦୁଗ୍ଧ ('ଛାଗୀ'ରୁ 'ୀ' ପ୍ରତ୍ୟୟ ଲୋପ)

ସ୍ଥିତ ପ୍ରଜ୍ଞା ଯାହାର = ସ୍ଥିତପ୍ରଜ୍ଞ ('ପ୍ରଜ୍ଞା'ରୁ 'ା' ପ୍ରତ୍ୟୟ ଲୋପ)

ଉଦାର ମନ ଯାହାର = ଉଦାରମନା ('ମନ'ରେ 'ା' ପ୍ରତ୍ୟୟର ଆଗମ)

ଅଳ୍ପ ବୟସ ଯାହାର = ଅଳ୍ପବୟସ୍କ ('ବୟସ'ରେ 'କ'ର ଆଗମ)

ନଈର ମଝି = ମଝିନଈ ('ନଈ' ପରପଦ ଓ 'ମଝି' ପୂର୍ବପଦ ହୋଇଛି)

ପଥମାନଙ୍କର ରାଜା = ରାଜପଥ ('ପଥ' ପରପଦ ଓ ରାଜା 'ରାଜ' ହୋଇ ପୂର୍ବପଦ ହୋଇଛି ।)

ମନେ ରଖିବାକୁ ହେବ ଯେ ସମାସ ହେଉଛି ଅର୍ଥାଶ୍ରୟୀ । ଗୋଟିଏ ସମସ୍ତ ପଦ ଅର୍ଥଭେଦରେ ଭିନ୍ନଭିନ୍ନ ସମାସ ହୋଇପାରେ । ଯେତେବେଳେ ତାହା ଯେଉଁ ଅର୍ଥ ପ୍ରକାଶ କରିବ, ସେତେବେଳେ ତାହାର ସେହି ପ୍ରକାର ବିଗ୍ରହବାକ୍ୟ କରିବାକୁ ହେବ । ଯଥା-

ମୁଖଚନ୍ଦ୍ର - ମୁଖଚନ୍ଦ୍ର ପରି = ଉପମିତ କର୍ମଧାରୟ

ମୁଖ ରୂପକ ଚନ୍ଦ୍ର = ରୂପକ କର୍ମଧାରୟ

ମୁଖ ଚନ୍ଦ୍ର ପରି ଯାହାର = ବହୁବ୍ରୀହି ସମାସ

ଚନ୍ଦ୍ରମୁଖ - ଚନ୍ଦ୍ର ପରି ମୁଖ ଯାହାର = ବହୁବ୍ରୀହି
ଚନ୍ଦ୍ର ସଦୃଶ ମୁଖ = ମଧ୍ୟପଦ ଲୋପୀ କର୍ମଧାରୟ

ପଞ୍ଚାନନ - ପଞ୍ଚ ଆନନର ସମାହାର = ପାଞ୍ଚୋଟି ମୁହଁ (ଦ୍ୱିଗୁ)
ପଞ୍ଚ ଆନନ ଯାହାର = ଶିବ (ବହୁବ୍ରୀହି)

ନୀଳାମ୍ବର - ନୀଳ ଅଟେ ଅମ୍ବର = ନେଳିଲୁଗା (କର୍ମଧାରୟ)
ନୀଳ ଅମ୍ବର ଯାହାର = ବଳରାମ (ବହୁବ୍ରୀହି)

ଚନ୍ଦ୍ରକାନ୍ତି - ଚନ୍ଦ୍ରର କାନ୍ତି = ଜ୍ୟୋତ୍ସ୍ନା (ଷଷ୍ଠୀ ତତ୍ପୁରୁଷ)
ଚନ୍ଦ୍ରର କାନ୍ତି ପରି କାନ୍ତି ଯାହାର (ଉପମିତ ବହୁବ୍ରୀହି)

ବାଲିଯାତ୍ରା - ବାଲିରେ ଯାତ୍ରା - ୭ମୀ ତତ୍ପୁରୁଷ
ବାଲିକୁ ଯାତ୍ରା - ୨ୟା ତତ୍ପୁରୁଷ

ଓଡ଼ିଆ ଭାଷାରେ ତତ୍ସମ, ତଦ୍ଭବ, ଦେଶଜ ଓ ବୈଦେଶିକ ଶବ୍ଦର ପ୍ରଚଳନ ଅଛି । ଏହି ଶବ୍ଦମାନଙ୍କୁ ନେଇ ସମାସର ବିଭାଗୀକରଣ କରାଯାଇଥାଏ ।

୧ । ତତ୍ସମ ସହିତ ତତ୍ସମ ଶବ୍ଦର, ଯଥା- ନୀଳପଦ୍ମ, ପୀତାମ୍ବର, ବୃଦ୍ଧଲୋକ, ଗୀତିକବିତା ।

୨ । ତତ୍ସମ ସହିତ ତଦ୍ଭବର, ଯଥା- ବୁଢ଼ାଲୋକ, ଅଲଣାକଥା, ନୀଳକଇଁ, ଘୋରାଚନ୍ଦନ ।

୩ । ତଦ୍ଭବ ସହିତ ତଦ୍ଭବର, ଯଥା- ଘିଅପିଠା (ଘୃତପିଷ୍ଟକ), ମୂଷାଦାନ୍ତ (ମୂଷିକଦନ୍ତ), ମିରିଗ ମାଉଁସ (ମୃଗମାଂସ), ନଈପୋଖରୀ, ଦିଅଁଦେଉଳ ଇତ୍ୟାଦି ।

୪ । ଦେଶଜ ସହିତ ଦେଶଜର, ଯଥା- ପାଲଟାଲୁଗା, ଚଢ଼େଇଡ଼େଣା, କୋରଡ଼ାମାଡ଼, ଛତରଖିଆ ।

୫ । ବୈଦେଶିକ ସହିତ ଦେଶଜର, ଯଥା- ଭଙ୍ଗାଟ୍ରଙ୍କ, ଟିକେଟବିକ୍ରି, ଘରତଲାସ ।

୬ । ବୈଦେଶିକ ସହିତ ବୈଦେଶିକର - ରେଳଷ୍ଟେସନ, ସମନଜାରୀ, ଟେବୁଲଚେୟାର, ଷ୍ଟଡିସେଣ୍ଟର, ଟାଉନ୍‌ବସ୍, ରିଲିଫ୍ କୋଡ୍ ।

ତତ୍ସମ ସହିତ ବୈଦେଶିକ ଶବ୍ଦର ମଧ୍ୟ ସମାସ କରାଯାଇ ପାରୁଛି । ଯଥା- ବୃହତ୍‌ଷ୍ଟେସନ, ରିଲିଫକାର୍ଯ୍ୟ, ଟ୍ରେନ୍‌ଦୁର୍ଘଟଣା, ଟ୍ରକ୍‌ଚାପା, ବସ୍‌ଧକ୍କା, ଗୃହକମିଟି, ଲାଇସେନ୍‌ସପ୍ରାପ୍ତ ।

ସମସ୍ୟମାନ ପଦମାନଙ୍କ ମଧ୍ୟରେ ସମ୍ବନ୍ଧ ଦୃଷ୍ଟିରୁ ସମାସକୁ ମଧ୍ୟ ଅନେକ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ତେବେ ଅର୍ଥପ୍ରାଧାନ୍ୟ ଦୃଷ୍ଟିରୁ ସମାସକୁ ଛଅ ଭାଗରେ ବିଭକ୍ତ କରାଯାଇଛି । ଯଥା-

୧ । ତତ୍‌ପୁରୁଷ    ୪ । ଦ୍ୱନ୍ଦ୍ୱ

୨ । କର୍ମଧାରୟ    ୫ । ବହୁବ୍ରୀହି

୩ । ଦ୍ୱିଗୁ    ୬ । ଅବ୍ୟୟୀଭାବ

ପ୍ରତ୍ୟେକ ସମାସର ମଧ୍ୟ କେତେକ ଉପବିଭାଗ ଅଛି ।

## ତତ୍‌ପୁରୁଷ ସମାସ

ଯେଉଁ ସମାସରେ ପ୍ରଥମା ଭିନ୍ନ (ଦ୍ୱିତୀୟାଠାରୁ ସପ୍ତମୀ ପର୍ଯ୍ୟନ୍ତ) ବିଭକ୍ତ୍ୟନ୍ତ ପଦ ସହିତ ଅନ୍ୟପଦର ସମାସ ହୁଏ ଏବଂ ପରପଦ ବା ଉତ୍ତର ପଦର ଅର୍ଥର ପ୍ରାଧାନ୍ୟ ରହେ, ତାକୁ ତତ୍‌ପୁରୁଷ ସମାସ କହନ୍ତି । ଏହି ସମାସରେ ସମସ୍ତ ପଦର ପୂର୍ବପଦର ବିଭକ୍ତି ଚିହ୍ନ ଲୋପ ପାଇଥାଏ । ପୂର୍ବପଦର ବିଭକ୍ତିକୁ ନେଇ ଏହି ସମାସ ଛଅ ପ୍ରକାର ।

**ଦ୍ୱିତୀୟା ତତ୍‌ପୁରୁଷ :**

ପୂର୍ବପଦରେ ଥିବା ଦ୍ୱିତୀୟା ବିଭକ୍ତିର ଲୋପ ହୋଇ ଯେଉଁ ସମାସ ହୁଏ, ତାହାକୁ ଦ୍ୱିତୀୟା ତତ୍‌ପୁରୁଷ ସମାସ କୁହାଯାଏ ।

ସଭାକୁ ଆଗତ = ସଭାଗତ

କରକୁ ଗତ = କରଗତ

ଚରଣକୁ ଆଶ୍ରିତ = ଚରଣାଶ୍ରିତ

ବିପଦକୁ ଆପନ୍ନ = ବିପଦାପନ୍ନ

ଧାନକୁ ବୁଣା = ଧାନବୁଣା

ପେଜକୁ ପିଆ = ପେଜପିଆ

ବର୍ଷକୁ ଭୋଗ୍ୟ = ବର୍ଷଭୋଗ୍ୟ

ଲୁଗାକୁ ବୁଣା = ଲୁଗାବୁଣା

ମାଛକୁ ମରା = ମାଛମରା

ଘରକୁ ବାହୁଡ଼ା = ଘରବାହୁଡ଼ା

ବିଦ୍ୟାକୁ ପ୍ରାପ୍ତି = ବିଦ୍ୟାପ୍ରାପ୍ତି

କାଳକୁ ଅତୀତ = କାଳାତୀତ

ମନକୁ ଛୁଆଁ = ମନଛୁଆଁ

ଘରକୁ ମୁହାଁ = ଘରମୁହାଁ

ବରକୁ ଧରା = ବରଧରା

ଚୋରକୁ ଭୟ = ଚୋରଭୟ

ଶରଣକୁ ଆପନ୍ନ = ଶରଣାପନ୍ନ

ବୃକ୍ଷକୁ ଆରୂଢ଼ = ବୃକ୍ଷାରୁଢ଼

ବାଘକୁ ଭୟ = ବାଘଭୟ

ପରକୁ ଆଶ୍ରିତ = ପରାଶ୍ରିତ

ବିରିକୁ ବଟା = ବିରିବଟା　　　　ଗୃହକୁ ଆଗତ = ଗୃହାଗତ

ତେଲକୁ ପିଆ = ତେଲପିଆ　　　　ନଈକୁ ପାରି = ନଈପାରି

ବିପଦକୁ ଉତ୍ତୀର୍ଣ୍ଣ = ବିପଦୁତ୍ତୀର୍ଣ୍ଣ　　　　ଧନକୁ ପ୍ରାପ୍ତି = ଧନପ୍ରାପ୍ତି

ନିମ୍ନଲିଖିତ ପଦଗୁଡ଼ିକରେ ବ୍ୟାପ୍ତି ଅର୍ଥରେ ଦ୍ୱିତୀୟା ବିଭକ୍ତି ହୋଇଥିବାରୁ ୨ୟା ତତ୍ପୁରୁଷ ସମାସ ହୋଇଅଛି ।

ଚିରଦିନ ବ୍ୟାପୀ ସ୍ଥାୟୀ = ଚିରସ୍ଥାୟୀ　　　　ମୁହୂର୍ତ୍ତ ବ୍ୟାପୀ ସୁଖ = ମୁହୂର୍ତ୍ତସୁଖ

ସମ୍ବତ୍ସର ବ୍ୟାପୀ ସେବା= ସମ୍ବତ୍ସରସେବା　　　　ଚିରକାଳ ବ୍ୟାପୀ ଦୁଃଖ = ଚିରଦୁଃଖ

ବହୁକାଳ ବ୍ୟାପୀ ପ୍ରଚଳିତ = ବହୁ ପ୍ରଚଳିତ　　　　ମାସେକାଳ ବ୍ୟାପୀ ଅଶୌଚ=ମାସାଶୌଚ

କ୍ଷଣକାଳ ବ୍ୟାପୀ ସ୍ଥାୟୀ = କ୍ଷଣସ୍ଥାୟୀ　　　　ଚିରକାଳ ବ୍ୟାପୀ ରୁଗ୍ଣ = ଚିରରୁଗ୍ଣ

ଚିରକାଳ ବ୍ୟାପୀ ସୁନ୍ଦର = ଚିରସୁନ୍ଦର　　　　ଚିରକାଳ ବ୍ୟାପୀ ଶତ୍ରୁ = ଚିରଶତ୍ରୁ

**ତୃତୀୟା ତତ୍ପୁରୁଷ :**

ପୂର୍ବପଦର ତୃତୀୟା ବିଭକ୍ତିର ଲୋପ ହୋଇ ଯେଉଁ ତତ୍ପୁରୁଷ ସମାସ ହୁଏ, ତାହାକୁ ତୃତୀୟା ତତ୍ପୁରୁଷ ସମାସ କହନ୍ତି । ଯଥା-

ଶୃଙ୍ଖଳାଦ୍ୱାରା ବଦ୍ଧ = ଶୃଙ୍ଖଳାବଦ୍ଧ　　　　ବ୍ୟାଧିରେ ପୀଡ଼ିତ = ବ୍ୟାଧିପୀଡ଼ିତ

କାରାଦ୍ୱାରା ଆବଦ୍ଧ = କାରାବଦ୍ଧ　　　　କାଳଦ୍ୱାରା ଗ୍ରାସ = କାଳଗ୍ରାସ

ସର୍ପଦ୍ୱାରା ଆଘାତ = ସର୍ପାଘାତ　　　　ଶୋକରେ ଆକୁଳ = ଶୋକାକୁଳ

ଶରଦ୍ୱାରା ଆହତ = ଶରାହତ　　　　ଧନରେ ହୀନ = ଧନହୀନ

ବନ୍ୟାଦ୍ୱାରା କ୍ଲିଷ୍ଟ = ବନ୍ୟାକ୍ଲିଷ୍ଟ　　　　ବାତ୍ୟାଦ୍ୱାରା ବିପନ୍ନ = ବାତ୍ୟାବିପନ୍ନ

କାମରେ ଅନ୍ଧ = କାମାନ୍ଧ　　　　ମନରେ ଗଢ଼ା = ମନଗଢ଼ା

କଳରେ ତିଆରି = କଳତିଆରି　　　　ଜରାଦ୍ୱାରା ଜୀର୍ଣ୍ଣ = ଜରାଜୀର୍ଣ୍ଣ

ଦୟାରେ ଆର୍ଦ୍ର = ଦୟାର୍ଦ୍ର　　　　ବେତରେ ବୁଣା = ବେତବୁଣା

ବୁଦ୍ଧିରେ ହୀନ = ବୁଦ୍ଧିହୀନ　　　　ଜ୍ଞାନରେ ହୀନ = ଜ୍ଞାନହୀନ

ଘଣା ଦ୍ୱାରା ପେଡ଼ା = ଘଣାପେଡ଼ା　　　　ଗୋଇଠା ଦ୍ୱାରା ମାଡ଼ = ଗୋଇଠାମାଡ଼

କଳ ଦ୍ୱାରା କୁଟା = କଳକୁଟା　　　　ପଶା ଦ୍ୱାରା ଖେଳ = ପଶାଖେଳ

ବଚନ ଦ୍ୱାରା ଦତ୍ତ = ବଚନଦତ୍ତ　　　　ମାଙ୍ଗଡ଼ ଦ୍ୱାରା ଖିଆ = ମାଙ୍କଡ଼ଖିଆ

ଶିରଃ ଦ୍ୱାରା ଧାର୍ଯ୍ୟ = ଶିରୋଧାର୍ଯ୍ୟ　　　　ସର୍ପ ଦ୍ୱାରା ଦଷ୍ଟ = ସର୍ପଦଷ୍ଟ

ମେଘଦ୍ୱାରା ଆଛନ୍ନ = ମେଘାଛନ୍ନ  ଛନ୍ଦ ଦ୍ୱାରା ଆବଦ୍ଧ = ଛନ୍ଦୋବଦ୍ଧ

ଶବ୍ଦ ଦ୍ୱାରା ପ୍ରଦୂଷଣ = ଶବ୍ଦ ପ୍ରଦୂଷଣ  ସ୍ୱେଚ୍ଛାରେ କୃତ = ସ୍ୱେଚ୍ଛାକୃତ

ତୈଳଦ୍ୱାରା ଲିପ୍ତ = ତୈଳଲିପ୍ତ  ସର୍ବଙ୍କ ଦ୍ୱାରା ସମ୍ମତ = ସର୍ବସମ୍ମତ

କଳହରେ ବ୍ୟାପୃତ = କଳହବ୍ୟାପୃତ  ହାତରେ ଲେଖା = ହାତଲେଖା

କ୍ରୋଧରେ ଜର୍ଜରିତ = କ୍ରୋଧଜର୍ଜରିତ  ଶିରରେ ଧାର୍ଯ୍ୟ = ଶିରୋଧାର୍ଯ୍ୟ

କପୋଳ ଦ୍ୱାରା କଳ୍ପିତ = କପୋଳକଳ୍ପିତ(କଳ୍ପନାଦ୍ୱାରା ବର୍ଣ୍ଣିତ, ମନଗଢ଼ା)

ଢିଙ୍କି ଦ୍ୱାରା କୁଟା = ଢିଙ୍କିକୁଟା  ରୋଗରେ ଆକ୍ରାନ୍ତ = ରୋଗାକ୍ରାନ୍ତ

ରୋଗଦ୍ୱାରା ଗ୍ରସ୍ତ = ରୋଗଗ୍ରସ୍ତ  ବ୍ୟାଧିଦ୍ୱାରା ଗ୍ରସ୍ତ = ବ୍ୟାଧିଗ୍ରସ୍ତ

ଶ୍ରୀଦ୍ୱାରା ହୀନ = ଶ୍ରୀହୀନ  ଶ୍ରୀଦ୍ୱାରା ଯୁକ୍ତ = ଶ୍ରୀଯୁକ୍ତ

କୁରାଢ଼ିଦ୍ୱାରା ହଣା = କୁରାଢ଼ିହଣା  ଅଗ୍ନିଦ୍ୱାରା ଦଗ୍ଧ = ଅଗ୍ନିଦଗ୍ଧ

ନିଶାଦ୍ୱାରା ଗ୍ରସ୍ତ = ନିଶାଗ୍ରସ୍ତ  ବର୍ଷା ଦ୍ୱାରା ସିକ୍ତ = ବର୍ଷାସିକ୍ତ

ଶାପଦ୍ୱାରା ଗ୍ରସ୍ତ = ଶାପଗ୍ରସ୍ତ  ମଦଦ୍ୱାରା ମତ୍ତ = ମଦମତ୍ତ

ଭାଲୁଦ୍ୱାରା ଖିଆ = ଭାଲୁଖିଆ  ଭାବଦ୍ୱାରା ଆବିଷ୍ଟ = ଭାବାବିଷ୍ଟ

ରାଜାଙ୍କ ଦ୍ୱାରା ଦତ୍ତ = ରାଜଦତ୍ତ  ବାତଦ୍ୱାରା କମ୍ପିତ = ବାତକମ୍ପିତ

(ଦ୍ର.- ହୀନ, ଊନ, ବାରଣ, ପ୍ରୟୋଜନ ଆଦି ଶବ୍ଦ ଯୋଗରେ ୩ୟା ବିଭକ୍ତି ହେଉଥିବାରୁ ସେଗୁଡ଼ିକ ତୃତୀୟା ତତ୍‌ପୁରୁଷ ହୁଏ ।)

**ଚତୁର୍ଥୀ ତତ୍‌ପୁରୁଷ :**

ପୂର୍ବ ପଦରେ ଥିବା ଚତୁର୍ଥୀ ବିଭକ୍ତିର ଲୋପ ହୋଇ ଯେଉଁ ତତ୍‌ପୁରୁଷ ସମାସ ହୁଏ, ତାହାକୁ ଚତୁର୍ଥୀ ତତ୍‌ପୁରୁଷ ସମାସ କହନ୍ତି । ଯଥା-

ପିଇବାପାଇଁ ପାଣି = ପିଇବାପାଣି  ସର୍ବଙ୍କପାଇଁ ଶିକ୍ଷା = ସର୍ବଶିକ୍ଷା

ରଙ୍ଗପାଇଁ ମଞ୍ଚ = ରଙ୍ଗମଞ୍ଚ  ଯାଦୁ ନିମିତ୍ତ ମଲମ = ଯାଦୁମଲମ

ବ୍ରାହ୍ମଣଙ୍କୁ ଦେୟ = ବ୍ରାହ୍ମଣଦେୟ  ଦେବଙ୍କୁ ଅର୍ପିତ = ଦେବାର୍ପିତ

ବ୍ରାହ୍ମଣଙ୍କୁ ଦତ୍ତ = ବ୍ରାହ୍ମଣଦତ୍ତ  ଧର୍ମ ନିମିତ୍ତ ପତ୍ନୀ = ଧର୍ମପତ୍ନୀ

ସନ୍ତାନପାଇଁ ଶୋକ = ସନ୍ତାନଶୋକ  ସ୍ନାନ ନିମିତ୍ତ ଆଗାର = ସ୍ନାନାଗାର

ଗାଧୁଆ ପାଇଁ ଘର = ଗାଧୁଆଘର  ପିତାଙ୍କ ପାଇଁ ଶ୍ରାଦ୍ଧ = ପିତୃଶ୍ରାଦ୍ଧ

ପିତାଙ୍କ ନିମିତ୍ତ ସୁଖ = ପିତୃସୁଖ  ହାତ ପାଇଁ ଘଣ୍ଟା = ହାତଘଣ୍ଟା

ଦ୍ୱିଜଙ୍କୁ ଦକ୍ଷିଣା = ଦ୍ୱିଜଦକ୍ଷିଣା  ଶେଣିପାଇଁ କାଠ = ଶେଣିକାଠ

ଧନପାଇଁ ଲୋଭ = ଧନଲୋଭ
ଖେଳପାଇଁ ପଡ଼ିଆ = ଖେଳପଡ଼ିଆ
ରାଜାଙ୍କୁ ଦେୟ = ରାଜଦେୟ
ତକିଆପାଇଁ ଖୋଳ = ତକିଆଖୋଳ
ଝାଡ଼ାପାଇଁ ଔଷଧ = ଝାଡ଼ାଔଷଧ
ଦେବଙ୍କୁ ଦତ୍ତ = ଦେବଦତ୍ତ
ଭୂତ ନିମିତ୍ତ ବଳି = ଭୂତବଳି
ରଣ ପାଇଁ ରଙ୍କ = ରଣରଙ୍କ
ବହି ପାଇଁ କାଗଜ = ବହିକାଗଜ

ସୁରକ୍ଷାପାଇଁ ମଞ୍ଚ = ସୁରକ୍ଷାମଞ୍ଚ
ପୂଜା ନିମିତ୍ତ ଅର୍ଘ୍ୟ = ପୂଜାର୍ଘ୍ୟ
ଦରିଦ୍ରକୁ ଦାନ = ଦରିଦ୍ରଦାନ
ଛତାପାଇଁ କନା = ଛତାକନା
ଦେଶପାଇଁ ହିତ = ଦେଶହିତ
ଦେବଙ୍କୁ ନିବେଦିତ= ଦେବନିବେଦିତ
କାକ ନିମିତ୍ତ ବଳି = କାକବଳି
ଲୋକଙ୍କ ପାଇଁ ଅର୍ପଣ = ଲୋକାର୍ପଣ
ବିପନ୍ନଙ୍କୁ ବିତରଣ = ବିପନ୍ନ ବିତରଣ

(ଦ୍ର. - ଚତୁର୍ଥୀ ବିଭକ୍ତି ଚିହ୍ନାଇବା ପାଇଁ କୁ, ଙ୍କୁ, ପାଇଁ, ନିମିତ୍ତ ପ୍ରଭୃତି ଶବ୍ଦ ବ୍ୟବହାର ହୁଏ । ସମାସରେ ଏଗୁଡ଼ିକ ଲୋପ ହୁଏ ।)

**ପଞ୍ଚମୀ ତତ୍‌ପୁରୁଷ :**

ପୂର୍ବପଦର ପଞ୍ଚମୀ ବିଭକ୍ତିର ଲୋପ ହୋଇ ଯେଉଁ ତତ୍‌ପୁରୁଷ ସମାସ ହୁଏ, ତାହାର ନାମ ପଞ୍ଚମୀ ତତ୍‌ପୁରୁଷ ସମାସ । ଯଥା-

ଆକାଶରୁ ପତିତ = ଆକାଶପତିତ
ଚୋରଠାରୁ ଭୟ = ଚୋରଭୟ
ପଥରୁ ଭ୍ରଷ୍ଟ = ପଥଭ୍ରଷ୍ଟ
ବିପଦ୍‌ରୁ ମୁକ୍ତ = ବିପନ୍ମୁକ୍ତ
ଗୋଠରୁ ଖଣ୍ଡିଆ = ଗୋଠଖଣ୍ଡିଆ
ବ୍ରାହ୍ମଣରୁ ଇତର = ବ୍ରାହ୍ମଣେତର
ନ୍ୟାୟରୁ ବଞ୍ଚିତ = ନ୍ୟାୟବଞ୍ଚିତ
ସତ୍ୟରୁ ଭ୍ରଷ୍ଟ = ସତ୍ୟଭ୍ରଷ୍ଟ
ମାନବରୁ ଇତର = ମାନବେତର
ବିଲାତରୁ ଫେରନ୍ତା= ବିଲାତଫେରନ୍ତା
ସମାଜରୁ ଚ୍ୟୁତ = ସମାଜଚ୍ୟୁତ
ଲକ୍ଷରୁ ଅଧିକ = ଲକ୍ଷାଧିକ
ଯୂଥରୁ ଭ୍ରଷ୍ଟ = ଯୂଥଭ୍ରଷ୍ଟ

ନୀତିରୁ ବିଚ୍ୟୁତ୍ = ନୀତିବିଚ୍ୟୁତ
ରଣରୁ ମୁକ୍ତ = ରଣମୁକ୍ତ
ପଦରୁ ସ୍ଖଳିତ = ପଦସ୍ଖଳିତ
ଜନ୍ମରୁ ଅନ୍ଧ = ଜନ୍ମାନ୍ଧ
ଜାପାନରୁ ଫେରନ୍ତା = ଜାପାନଫେରନ୍ତା
ଶାପରୁମୁକ୍ତ = ଶାପମୁକ୍ତ
ଲକ୍ଷ୍ମୀଙ୍କଠାରୁ ଚ୍ୟୁତ = ଲକ୍ଷ୍ମୀଚ୍ୟୁତ
ବନରୁ ସଂଗୃହୀତ = ବନ ସଂଗୃହୀତ
ଜଳରୁଜାତ = ଜଳଜାତ
ବନ୍ଧନରୁ ମୁକ୍ତ = ବନ୍ଧନ ମୁକ୍ତ
କକ୍ଷରୁ ଚ୍ୟୁତ = କକ୍ଷଚ୍ୟୁତ
ସ୍ନାତକରୁ ଉତ୍ତର = ସ୍ନାତକୋତ୍ତର
ବିପଦରୁ ଉଦ୍ଧାର = ବିପଦୁଦ୍ଧାର

ରାଜାଙ୍କ ଠାରୁ ଭୟ = ରାଜଭୟ
ଭୂତଙ୍କ ଠାରୁ ଭୟ = ଭୂତଭୟ
ଧର୍ମରୁ ଛଡ଼ା = ଧର୍ମଛଡ଼ା
ଘରରୁ ଛଡ଼ା = ଘରଛଡ଼ା
ଗଛରୁ ପାଚିଲା = ଗଛପାଚିଲା
ହିମାଳୟରୁ ନିର୍ଗତ = ହିମାଳୟନିର୍ଗତ
ବିଦେଶରୁ ଆଗତ = ବିଦେଶାଗତ
ରୋଗରୁ ମୁକ୍ତ = ରୋଗମୁକ୍ତ
କାରାରୁ ମୁକ୍ତ = କାରାମୁକ୍ତ
ବାଟରୁବଣା = ବାଟବଣା
ବଂଶରୁ ସମ୍ଭୂତ = ବଂଶସମ୍ଭୂତ
ଗଛରୁ ତୋଳା = ଗଛତୋଳା
ବୃକ୍ଷରୁ ପତିତ = ବୃକ୍ଷପତିତ
ବେଦି(ଦୀ)ରୁ ବାହୁଡ଼ା = ବେଦିବାହୁଡ଼ା
ବାସରୁଚ୍ୟୁତ = ବାସଚ୍ୟୁତ
ଏହାଠାରୁ ଭିନ୍ନ = ଏତଦ୍‌ଭିନ୍ନ
ଆଦିରୁ ଅନ୍ତ (ପର୍ଯ୍ୟନ୍ତ) = ଆଦ୍ୟନ୍ତ
ମନୁଷ୍ୟରୁ ଇତର = ମନୁଷ୍ୟେତର
ଯୁଦ୍ଧରୁ ଉତ୍ତର = ଯୁଦ୍ଧୋତ୍ତର
ଗଛରୁଝଡ଼ା = ଗଛଝଡ଼ା

**ଷଷ୍ଠୀ ତତ୍‌ପୁରୁଷ :**

ପୂର୍ବପଦର ଷଷ୍ଠୀ ବିଭକ୍ତିର ଲୋପ ହୋଇ ଯେଉଁ ତତ୍‌ପୁରୁଷ ସମାସ ହୁଏ, ତାହାକୁ ଷଷ୍ଠୀ ତତ୍‌ପୁରୁଷ ସମାସ କୁହାଯାଏ ।

୧ । ଜାତିମାନଙ୍କର ସଂଘ = ଜାତିସଂଘ
କୁଳର କଳଙ୍କ = କୁଳକଳଙ୍କ
ଗତିର ବିଧି = ଗତିବିଧି
ଗଣର ହତ୍ୟା = ଗଣହତ୍ୟା
ବିଶ୍ୱର ଈଶ୍ୱର = ବିଶ୍ୱେଶ୍ୱର
କର୍ମର ଫଳ = କର୍ମଫଳ
କବିର କଳ୍ପନା = କବିକଳ୍ପନା
ପୋଖରୀର ତୁଠ = ପୋଖରୀ ତୁଠ
ପୂଜ୍ୟମାନଙ୍କର ପୂଜା = ପୂଜ୍ୟପୂଜା
ଦାବ(ବନ)ର ଅଗ୍ନି = ଦାବାଗ୍ନି
ସର୍ବର ସମ୍ମତି = ସର୍ବସମ୍ମତି/ସର୍ବସମ୍ମତ
ଜଳରଛତ୍ର = ଜଳଛତ୍ର
ଫୁଲର ବଗିଚା = ଫୁଲବଗିଚା
ମନ୍ତ୍ରୀମାନଙ୍କର ପରିଷଦ= ମନ୍ତ୍ରିପରିଷଦ
ଫୁଲର ପେନ୍ଥା = ଫୁଲପେନ୍ଥା
ଫଳର ରସ = ଫଳରସ
ଗଣର ଧାରଣା = ଗଣଧାରଣା
ଅର୍ଥର ଆଗମ = ଅର୍ଥାଗମ
ନାରୀମାନଙ୍କର ଶିକ୍ଷା = ନାରୀଶିକ୍ଷା
ଗଣମାନଙ୍କର ତନ୍ତ୍ର = ଗଣତନ୍ତ୍ର
ପ୍ରଜାମାନଙ୍କର ତନ୍ତ୍ର = ପ୍ରଜାତନ୍ତ୍ର
ଧନର ଦାନ = ଧନଦାନ
ସହିଦମାନଙ୍କର ଦିବସ = ସହିଦଦିବସ
ଦରର ବୃଦ୍ଧି = ଦରବୃଦ୍ଧି
ଧ୍ୱଂସର ସ୍ତୂପ = ଧ୍ୱଂସସ୍ତୂପ
ସୂଚନାର ଅଧିକାର = ସୂଚନାଧିକାର
ବୃକ୍ଷରଶାଖା = ବୃକ୍ଷଶାଖା
ସୂର୍ଯ୍ୟଙ୍କର ଆଲୋକ = ସୂର୍ଯ୍ୟାଲୋକ

| | |
|---|---|
| ମାନବର ଧର୍ମ = ମାନବଧର୍ମ | ଛାତ୍ରମାନଙ୍କର ଆବାସ = ଛାତ୍ରାବାସ |
| ବିଦ୍ୟାରସାଗର = ବିଦ୍ୟାସାଗର | ଦେବୀ ଆରାଧନା = ଦେବ୍ୟାରଧାନ |
| କୁଳର ଅଙ୍ଗାର = କୁଳାଙ୍ଗାର | ଶୁଆର ରଙ୍ଗ = ଶୁଆରଙ୍ଗ |
| ଅନ୍ନର ଛତ୍ର = ଅନ୍ନଛତ୍ର | ଗିରିର ଚୂଡ଼ା = ଗିରିଚୂଡ଼ା |
| ମାମୁଙ୍କର ଘର = ମାମୁଘର | ହାତୀର ଦାନ୍ତ = ହାତୀଦାନ୍ତ |
| ଯୁବକମାନଙ୍କର ସଂଘ = ଯୁବକସଂଘ | କୂପର ଉଦକ = କୂପୋଦକ |
| ପାପର ଫଳ = ପାପଫଳ | ସର୍ବରଶିକ୍ଷା = ସର୍ବଶିକ୍ଷା |
| ଗଙ୍ଗାର ଜଳ = ଗଙ୍ଗାଜଳ | ମାତାଙ୍କର ଭାଷା = ମାତୃଭାଷା |
| ଦୀପର ଆବଳୀ = ଦୀପାବଳୀ | ଗ୍ରନ୍ଥର ଆବଳୀ = ଗ୍ରନ୍ଥାବଳୀ |
| ଲକ୍ଷ୍ମୀଙ୍କର ପୂଜା = ଲକ୍ଷ୍ମୀପୂଜା | ନଈର ଘାଟ = ନଈଘାଟ |
| ରତ୍ନରଆକର = ରତ୍ନାକର | ପରର ଉପକାର = ପରୋପକାର |
| ବୃକ୍ଷର ଶାଖା = ବୃକ୍ଷ ଶାଖା | ପଶୁମାନଙ୍କର ପତି = ପଶୁପତି |
| ମେଘର ବର୍ଣ୍ଣ = ମେଘବର୍ଣ୍ଣ | ବେଶ୍ୟାମାନଙ୍କର ଆଳୟ=ବେଶ୍ୟାଳୟ |

୨ । ଷଷ୍ଠୀ ତତ୍ପୁରୁଷ ସମାସରେ ଅର୍ଦ୍ଧ, ମଧ୍ୟ, ମଝି ପ୍ରଭୃତି କେତେକ ଶବ୍ଦ ଏବଂ ରାଜା (ଶ୍ରେଷ୍ଠାର୍ଥକ) ଶବ୍ଦ ସମସ୍ୟମାନ ପଦରେ ପରପର ରୂପେ ବ୍ୟବହୃତ ହୋଇ ସମସ୍ତ ପଦରେ ପୂର୍ବପଦ ହୋଇଥାଏ । ଯଥା-

| | |
|---|---|
| ଭାରତର ମଧ୍ୟ = ମଧ୍ୟଭାରତ | ଦେଶର ମଧ୍ୟ = ମଧ୍ୟଦେଶ |
| ନଈର ମଝି = ମଝିନଈ | ବାଟର ମଝି = ମଝିବାଟ |
| ଚନ୍ଦ୍ରର ଅର୍ଦ୍ଧ = ଅର୍ଦ୍ଧଚନ୍ଦ୍ର | ପଥର ଅର୍ଦ୍ଧ = ଅର୍ଦ୍ଧପଥ |

କିନ୍ତୁ ଗ୍ରାମର ଅର୍ଦ୍ଧ = ଗ୍ରାମାର୍ଦ୍ଧ, ମାସର ଅର୍ଦ୍ଧ=ମାସାର୍ଦ୍ଧ ଓ ବ୍ୟାସର ଅର୍ଦ୍ଧ=ବ୍ୟାସାର୍ଦ୍ଧ ହୁଏ । ପାତ୍ରମାନଙ୍କର ମୁଖ = ମୁଖପାତ୍ର (ମୁଖ - ଅଗ୍ରଭାଗ, ପାତ୍ର - ଯୋଗ୍ୟବ୍ୟକ୍ତି)

(ଖ)

| | |
|---|---|
| ପଥମାନଙ୍କର ରାଜା = ରାଜପଥ | ମାର୍ଗମାନଙ୍କର ରାଜା = ରାଜମାର୍ଗ |
| ହଂସମାନଙ୍କର ରାଜା = ରାଜହଂସ | ଯୋଗମାନଙ୍କର ରାଜା = ରାଜଯୋଗ |
| ନୀତିମାନଙ୍କର ରାଜା = ରାଜନୀତି | ନେତାମାନଙ୍କର ରାଜା = ରାଜନେତା |

୩ । 'ରାଜ' ଶବ୍ଦ ସହିତ ଅନ୍ୟ ଶବ୍ଦର ଷଷ୍ଠୀ ତତ୍ପୁରୁଷ ସମାସ ହେଲେ 'ରାଜା' ଶବ୍ଦ 'ରାଜ' ହୋଇଥାଏ ।

| | |
|---|---|
| କଳିଙ୍ଗର ରାଜା = କଳିଙ୍ଗରାଜ | ରାଜାଙ୍କର ପୁତ୍ର = ରାଜପୁତ୍ର |
| ଦେବମାନଙ୍କର ରାଜା = ଦେବରାଜ | ରାଜାଙ୍କର ନୀତି = ରାଜନୀତି |

| | |
|---|---|
| ରାଜାଙ୍କର ପୁରୁଷ = ରାଜପୁରୁଷ | ରାଜାଙ୍କର ପରିଷଦ = ରାଜପରିଷଦ |
| ମଗଧର ରାଜା = ମଗଧରାଜ | କୁରୁମାନଙ୍କର ରାଜା = କୁରୁରାଜ |
| ରାଜାଙ୍କର କର୍ମଚାରୀ = ରାଜକର୍ମଚାରୀ | ରାଜାଙ୍କର ଦଣ୍ଡ = ରାଜଦଣ୍ଡ |
| ରାଜାଙ୍କର ପରିଷଦ = ରାଜପରିଷଦ | ରାଜାଙ୍କର ଆଦେଶ = ରାଜାଦେଶ |
| ବିଦେହର ରାଜା = ବିଦେହରାଜ | ରାଜାଙ୍କର ରାଣୀ = ରାଜରାଣୀ |
| ପଶୁମାନଙ୍କର ରାଜା = ପଶୁରାଜ | ପକ୍ଷୀମାନଙ୍କର ରାଜା = ପକ୍ଷିରାଜ |
| ପୃଥ୍ୱୀର ରାଜା = ପୃଥ୍ୱୀରାଜ | ଅଙ୍ଗର ରାଜା = ଅଙ୍ଗରାଜ |
| ଧର୍ମର ରାଜା = ଧର୍ମରାଜ | ରାଜାଙ୍କର ସଭା = ରାଜସଭା |

୪ । ଓଡ଼ିଆ ଭାଷାରେ ରାଜା ଶବ୍ଦ 'ରଜା' ଭାବରେ ବ୍ୟବହୃତ ହୁଏ । 'ରଜା' ଶବ୍ଦ ସହିତ ଅନ୍ୟ ଶବ୍ଦର ତତ୍‌ପୁରୁଷ ସମାସ ହେଲେ 'ରଜା'ରୁ 'ଆ' କାର ଲୋପ ହୁଏ ନାହିଁ । ଯଥା-

| | |
|---|---|
| ରଜାଙ୍କର ଘର = ରଜାଘର | ବେଙ୍ଗମାନଙ୍କର ରଜା = ବେଙ୍ଗରଜା |
| ରଜାଙ୍କର ପୁଅ = ରଜାପୁଅ | ପାଟଣାର ରଜା = ପାଟଣାରଜା |

୫ । କେତେକ ସ୍ଥଳରେ ଷଷ୍ଠୀ ତତ୍‌ପୁରୁଷ ସମାସରେ ସ୍ତ୍ରୀଲିଙ୍ଗବାଚକ ଶବ୍ଦ ସମସ୍ତ ପଦରେ ପୁଂଲିଙ୍ଗ ଆକାର ଧାରଣ କରେ । ଯଥା-

| | |
|---|---|
| ସିଂହୀର ଶାବକ = ସିଂହଶାବକ | ଓଟୀର ଦୁଧ = ଓଟ ଦୁଧ |
| ହଂସୀର ଡିମ୍ବ = ହଂସଡିମ୍ବ | ଛାଗୀର ଦୁଗ୍ଧ = ଛାଗଦୁଗ୍ଧ |
| କୁକ୍‌କୁଟୀର ଅଣ୍ଡ = କୁକ୍‌କୁଟାଣ୍ଡ | ଗଧୀର କ୍ଷୀର = ଗଧକ୍ଷୀର |
| ମୃଗୀର ଶାବକ = ମୃଗଶାବକ | ହାତୁଣୀର ଛୁଆ = ହାତୀଛୁଆ |
| କରିଣୀର ଶାବକ = କରୀଶାବକ | ପକ୍ଷିଣୀର ଡିମ୍ବ = ପକ୍ଷୀଡିମ୍ବ |
| କାକୀର ଶାବକ = କାକଶାବକ | ମେଣ୍ଢୀର ଛୁଆ = ମେଣ୍ଢାଛୁଆ |

କିନ୍ତୁ କେତେକ ସ୍ଥଳରେ ଏହି ନିୟମର ବ୍ୟତିକ୍ରମ ହୁଏ ।

| | |
|---|---|
| ଘୋଡ଼ୀର ଦୁଧ = ଘୋଡ଼ୀଦୁଧ | ଗାଈର ଦୁଧ = ଗାଈଦୁଧ (ଗୋଦୁଗ୍ଧ) |
| ମାତାର କ୍ଷୀର = ମାତୃକ୍ଷୀର | ଛେଳିର ଛୁଆ = ଛେଳିଛୁଆ |

୬ । ତତ୍‌ପୁରୁଷ ସମାସରେ 'ଅହନ୍' ଶବ୍ଦର 'ଅହ' ଓ 'ରାତ୍ରି' ଶବ୍ଦର 'ରାତ୍ର' ହୁଏ ଏବଂ ପୂର୍ବ, ପର, ଅପର ଓ ମଧ୍ୟ ପ୍ରଭୃତି ଶବ୍ଦ ସହିତ 'ଅହନ୍' ଓ 'ରାତ୍ରି'ର ସମାସ ହୋଇ ଏହି ଶବ୍ଦଦ୍ୱୟ ସମସ୍ତ ପଦରେ ପରପଦ ହୁଏ ।

ଅହନ୍‌ର ପୂର୍ବ = ପୂର୍ବହ୍‌ଣ        ଅହନ୍‌ର ମଧ୍ୟ = ମଧ୍ୟାହ୍ନ

ଅହନ୍‌ର ଅପର = ଅପରାହ୍‌ଣ        ରାତ୍ରିର ଅର୍ଦ୍ଧ = ଅର୍ଦ୍ଧରାତ୍ର

ଅହନ୍‌ର ପର = ଅପରାହ୍‌ଣ        ରାତ୍ରିର ମଧ୍ୟ = ମଧ୍ୟରାତ୍ର

ଅହନ୍‌ର ସାୟ = ସାୟାହ୍ନ (ସାୟ - ସଂଧ୍ୟା)

କିନ୍ତୁ ଓଡ଼ିଆ ଭାଷାରେ ମଧ୍ୟରାତ୍ରି, ଅର୍ଦ୍ଧରାତ୍ରି, ଶେଷରାତ୍ରିର ମଧ୍ୟ ବ୍ୟବହାର ରହିଛି । ଓଡ଼ିଆରେ 'ରାତି' ଶବ୍ଦ ସହିତ ଅନ୍ୟ ଶବ୍ଦର ତତ୍‌ପୁରୁଷ ସମାସ ହେଲେ 'ରାତି'ରୁ ଅନ୍ତ୍ୟ 'ଇ' କାରର ଲୋପ ହୁଏ ନାହିଁ । ଯଥା-

ରାତିର ଅଧ = ଅଧରାତି        ରାତିର ଶେଷ = ଶେଷରାତି

ରାତିର ଅଧ = 'ରାତିଅଧ'ର ବ୍ୟବହାର ମଧ୍ୟ ଦେଖିବାକୁ ମିଳେ ।

**ସପ୍ତମୀ ତତ୍‌ପୁରୁଷ :**

ପୂର୍ବପଦର ସପ୍ତମୀ ବିଭକ୍ତିର ଲୋପ ହୋଇ ଅନ୍ୟ ପଦ ସହ ଯେଉଁ ତତ୍‌ପୁରୁଷ ସମାସ ହୁଏ, ତାହାକୁ ସପ୍ତମୀ ତତ୍‌ପୁରୁଷ ସମାସ କହନ୍ତି । ଯଥା-

ପେଡ଼ିରେ ସାଇତା = ପେଡ଼ିସାଇତା        ରଣରେ କୁଶଳ = ରଣକୁଶଳ

ସାଗରରେ ସ୍ନାନ = ସାଗରସ୍ନାନ        ଧର୍ମରେ ଆସକ୍ତ = ଧର୍ମାସକ୍ତ

ବନରେ ବାସ = ବନବାସ        ଭାଷଣରେ ନିପୁଣ = ଭାଷଣନିପୁଣ

ବଣରେ ଭୋଜି = ବଣଭୋଜି        ପ୍ରଜାଙ୍କଠାରେ ଅନୁରକ୍ତି = ପ୍ରଜାନୁରକ୍ତି

ବିଶ୍ୱରେ ଯୁଦ୍ଧ = ବିଶ୍ୱଯୁଦ୍ଧ        ଭ୍ରାତାଙ୍କଠାରେ ଭକ୍ତି = ଭ୍ରାତୃଭକ୍ତି

ପଙ୍କରେ ମଗ୍ନ = ପଙ୍କମଗ୍ନ        ଯୋଗରେ ଆସୀନ = ଯୋଗାସୀନ

ବିଦ୍ୟାରେ ପ୍ରବୀଣ = ବିଦ୍ୟାପ୍ରବୀଣ        ରାତିରେ ଅନିଦ୍ରା = ରାତିଅନିଦ୍ରା

ବିଶ୍ୱରେ ଶାନ୍ତି = ବିଶ୍ୱଶାନ୍ତି        କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ = କବିଶ୍ରେଷ୍ଠ

ବିଦ୍ୟାରେ ବାଗୀଶ = ବିଦ୍ୟାବାଗୀଶ        ପୁତ୍ରଠାରେ ସ୍ନେହ = ପୁତ୍ରସ୍ନେହ

ନରମାନଙ୍କ ମଧ୍ୟରେ ଉତ୍ତମ = ନରୋତ୍ତମ        ଜଳରେ ଯାତ୍ରା = ଜଳଯାତ୍ରା

ନରମାନଙ୍କ ମଧ୍ୟରେ ଅଧମ = ନରାଧମ        କାର୍ଯ୍ୟରେ କ୍ଷମ = କାର୍ଯ୍ୟକ୍ଷମ

ସଂଖ୍ୟାରେ ଗରିଷ୍ଠ = ସଂଖ୍ୟାଗରିଷ୍ଠ        ଶିରରେ ଧାର୍ଯ୍ୟ = ଶିରୋଧାର୍ଯ୍ୟ

ସିଂହାସନରେ ଆସୀନ = ସିଂହାସନାସୀନ        କାର୍ଯ୍ୟରେ ଦକ୍ଷ = କାର୍ଯ୍ୟଦକ୍ଷ

ମାସରେ ଦେୟ = ମାସଦେୟ        ଅଶ୍ୱରେ ଆରୋହଣ = ଅଶ୍ୱାରୋହଣ

କ୍ରୀଡ଼ାରେ କୁଶଳ = କ୍ରୀଡ଼ାକୁଶଳ
ନଈରେ ପହଁରା = ନଈପହଁରା
ସନ୍ତରଣରେ ପଟୁ = ସନ୍ତରଣ ପଟୁ
ରାଜନୀତିରେ ନିପୁଣ = ରାଜନୀତିନିପୁଣ
ପଲ୍ଲୀରେ ସଭା = ପଲ୍ଲୀସଭା
ବିଶ୍ୱରେ ବିଖ୍ୟାତ = ବିଶ୍ୱବିଖ୍ୟାତ
ତୀର୍ଥମାନଙ୍କ ମଧ୍ୟରେ ରାଜା = ତୀର୍ଥରାଜ
ପ୍ରାତଃରେ ସ୍ନାନ = ପ୍ରାତଃସ୍ନାନ
ସକାଳରେ ଗାଧୁଆ = ସକାଳଗାଧୁଆ
ମାତାଙ୍କ ଠାରେ ଭକ୍ତି = ମାତୃଭକ୍ତି
ଭ୍ରାତାଙ୍କ ଠାରେ ଭକ୍ତି = ଭ୍ରାତୃଭକ୍ତି
ମଧ୍ୟାହ୍ନରେ ଭୋଜନ = ମଧ୍ୟାହ୍ନଭୋଜନ
ଜଳରେ ମଗ୍ନ = ଜଳମଗ୍ନ
ପୁରୁଷମାନଙ୍କ ମଧ୍ୟରେ ଉତ୍ତମ = ପୁରୁଷୋତ୍ତମ
ଅନ୍ଧାରରେ କଣା = ଅନ୍ଧାରକଣା
ସତ୍ୟରେ ଅନୁରାଗୀ = ସତ୍ୟାନୁରାଗୀ
ବିଦ୍ୟାରେ ଅନୁରାଗୀ = ବିଦ୍ୟାନୁରାଗୀ
ଜ୍ଞାନରେ ଅନୁରାଗ = ଜ୍ଞାନାନୁରାଗ
ପୁରାଣରେ ପଣ୍ଡିତ = ପୁରାଣପଣ୍ଡିତ
ଯୋଗରେ ଆଚାର୍ଯ୍ୟ = ଯୋଗାଚାର୍ଯ୍ୟ
ଭୂମିରେ ପତିତ = ଭୂପତିତ
ସାଗରରେ ଶୟନ = ସାଗରଶୟନ
କର୍ତ୍ତବ୍ୟରେ ନିଷ୍ଠା= କର୍ତ୍ତବ୍ୟନିଷ୍ଠ
ଗଛରେ ପାଚିଲା = ଗଛପାଚିଲା
ଅଣ୍ଟାରେ ଗୁଞ୍ଜା = ଅଣ୍ଟାଗୁଞ୍ଜା
ଭୋଜନରେ ପଟୁ = ଭୋଜନପଟୁ
କୂପରେ ମଣ୍ଡୂକ = କୂପମଣ୍ଡୂକ
ତୀର୍ଥରେସ୍ନାନ = ତୀର୍ଥସ୍ନାନ
ଗୃହରେ ସ୍ଥିତ = ଗୃହସ୍ଥିତ
ପୁସ୍ତକରେ ସ୍ଥିତ = ପୁସ୍ତକସ୍ଥିତ
କାର୍ଯ୍ୟରେ ରତ = କାର୍ଯ୍ୟରତ
ସଲିଳରେ ସମାଧି = ସଲିଳସମାଧି
ସକାଳରେ ବୁଲା = ସକାଳବୁଲା
ସଂସ୍କୃତରେ ପଣ୍ଡିତ = ସଂସ୍କୃତପଣ୍ଡିତ
ସନ୍ଧ୍ୟାରେ ଆରତି = ସନ୍ଧ୍ୟାଆରତି
ଗୁରୁଙ୍କଠାରେ ଭକ୍ତି = ଗୁରୁଭକ୍ତି

## ନଞ୍ ତତ୍ପୁରୁଷ ସମାସ

ନିଷେଧାର୍ଥକ ନ (ସଂସ୍କୃତରେ 'ନଞ୍') ସହିତ ଅନ୍ୟପଦର ତତ୍ପୁରୁଷ ସମାସ ହେଲେ, ତାହାକୁ 'ନଞ୍ତତ୍ପୁରୁଷ' ସମାସ କହନ୍ତି ।

ଏହି ସମାସରେ ପରପଦର ଆରମ୍ଭରେ ସ୍ୱରବର୍ଣ୍ଣ ଥିଲେ 'ନ' ସ୍ଥାନରେ 'ଅନ୍' ହୁଏ । ପରବର୍ତ୍ତୀ ସ୍ୱରବର୍ଣ୍ଣ 'ନ୍' ସହିତ ମିଶିଯାଏ । ଯଥା-

ନ ଅଭିଜ୍ଞ = ଅନଭିଜ୍ଞ
ନ ଇଷ୍ଟ = ଅନିଷ୍ଟ
ନ ଅଶନ = ଅନଶନ
ନ ଉଚିତ = ଅନୁଚିତ
ନ ଆବରଣ = ଅନାବରଣ
ନ ଉନ୍ନତ = ଅନୁନ୍ନତ

ନ ଆଦର = ଅନାଦର
ନ ଉର୍ବର = ଅନୁର୍ବର
ନ ଆବିଳ = ଅନାବିଳ
ନ ଆହାର = ଅନାହାର
ନ ଆଗତ = ଅନାଗତ
ନ ଧୁଆ = ଅଧୁଆ(ବେଧୁଆ ମଧ୍ୟ ଗ୍ରହଣୀୟ)
ନ ଆବଶ୍ୟକ = ଅନାବଶ୍ୟକ
ନ ଉଦ୍ଧତ = ଅନୁଦ୍ଧତ
ନ ଅନୁମୋଦିତ = ଅନନୁମୋଦିତ
ନ ଅନ୍ୟ ସାଧାରଣ = ଅନନ୍ୟସାଧାରଣ
ନ ଅର୍ହ = ଅନର୍ହ (ଅନୁପଯୋଗୀ, ମୂଲ୍ୟହୀନ)
ନ ଶ୍ରଦ୍ଧା = ଅଶ୍ରଦ୍ଧା
ନ ଅନ୍ତ = ଅନନ୍ତ
ନ ଉଷ୍ଣ = ଅନୁଷ୍ଣ
ନ ଉଜ୍ଜ୍ୱଳ = ଅନୁଜ୍ଜ୍ୱଳ
ନ ଆବୃଷ୍ଟି = ଅନାବୃଷ୍ଟି(ବୃଷ୍ଟିଶୂନ୍ୟତା)
ନ ଉପଯୋଗୀ = ଅନୁପଯୋଗୀ
ନ ଉକ୍ତ = ଅନୁକ୍ତ
ନ ଆହତ = ଅନାହତ(ଅକ୍ଷତ)
ନ ଆମୟ = ଅନାମୟ(ସୁସ୍ଥତା)
ନ ଆର୍ଯ୍ୟ = ଅନାର୍ଯ୍ୟ
ନ ଆଘ୍ରାତ = ଅନାଘ୍ରାତ
ନ ଅଭ୍ୟାଶ = ଅନଭ୍ୟାଶ(ଦୂରବର୍ତ୍ତୀ)
ନ ଅଭ୍ୟାସ = ଅନଭ୍ୟାସ(ଅନନୁଶୀଳନ)
ଯେ ପୁରୁଷ ନୁହେଁ କି ସ୍ତ୍ରୀ ନୁହେଁ = ନପୁଂସକ
ନ ଆତୁର = ଅନାତୁର(ନିଶ୍ଚିନ୍ତ)
ନ ର୍ଗଳ = ଅନର୍ଗଳ
ନ ଇଚ୍ଛା = ଅନିଚ୍ଛା
ନ ଉଦାର = ଅନୁଦାର
ନ ଉଦ୍‌ବିଗ୍ନ = ଅନୁଦ୍‌ବିଗ୍ନ
ନ ଉତ୍ତମ = ଅନୁତ୍ତମ
ନ ଆସ୍ଥା = ଅନାସ୍ଥା
ନ ଆବୃତ = ଅନାବୃତ
ନ ଅଧିକାର = ଅନଧିକାର
ନ ଆବାଦୀ = ଅନାବାଦୀ
ନ ଆଚାରୀ = ଅନାଚାରୀ
ନ ଏକ = ଅନେକ
ନ ଔଚିତ୍ୟ = ଅନୌଚିତ୍ୟ(ଅସଙ୍ଗତତା)
ଅଭ୍ୟସ୍ତ = ଅନଭ୍ୟସ୍ତ
ନ ଆୟାସ = ଅନାୟାସ (ଅକ୍ଳେଶ)
ନ ଆତପ = ଅନାତପ
ନ ଆତ୍ମୀୟ = ଅନାତ୍ମୀୟ
ନ ଆଗତ = ଅନାଗତ
ନ ଅଭିମତ = ଅନଭିମତ
ନ ସ୍ୱୀକାର୍ଯ୍ୟ = ଅନସ୍ୱୀକାର୍ଯ୍ୟ
ନ ଅତିକ୍ରମଣୀୟ = ଅନତିକ୍ରମଣୀୟ
ନ ଅତିକ୍ରମ = ଅନତିକ୍ରମ
ନ ଅତିପୂର୍ବ = ଅନତିପୂର୍ବ
ନ ମାନୁଷିକ = ଅମାନୁଷିକ
ନ ଅର୍ଗଳ = ଅନର୍ଗଳ

କେତେକ ଶବ୍ଦରେ ବିକଳ୍ପରେ 'ନ୍'ର ପରିବର୍ତ୍ତନ ହୋଇ (ଉଭୟ ଭାବରେ) 'ଅ' ଓ 'ଅନ୍' ହୁଏ । ଯଥା-

ନ ଅତିଦୀର୍ଘ = ନାତିଦୀର୍ଘ / ଅନତିଦୀର୍ଘ

ନ ଅତିବିଳମ୍ବ = ନାତିବିଳମ୍ବ / ଅନତିବିଳମ୍ବ

ନ ଅତିଦୂର = ନାତିଦୂର / ଅନତିଦୂର

ନ ଅତିଶୀତୋଷ୍ଣ = ନାତିଶୀତୋଷ୍ଣ / ଅନତିଶୀତୋଷ୍ଣ

ନ ଅତିବିଷମ = ନାତିବିଷମ / ଅନତିବିଷମ

ଓଡ଼ିଆରେ 'ଅନ୍'ର 'ଅଣ' ରୂପେ ବ୍ୟବହାର ରହିଅଛି । ଏପରିକି ବ୍ୟଞ୍ଜନବର୍ଣ୍ଣ ପରେ ଥିଲେ ମଧ୍ୟ 'ନ' ସ୍ଥାନରେ 'ଅଣ' ହୁଏ । ଯଥା-

ନ ଆଖୁ = ଅଣଆଖୁ

ନ ଓସାରିଆ = ଅଣଓସାରିଆ

ନ ଓଡ଼ିଆ = ଅଣଓଡ଼ିଆ

ନ ଆଖୁଆ = ଅଣଆଖୁଆ

ନ ବାଟ = ଅଣବାଟ / ଅବାଟ

ନ ହଳଦିଆ = ଅଣହଳଦିଆ

ନ ବାବୁଆ = ଅଣବାବୁଆ

(ଯାହାର ବାପ କିଏ ଜଣାନାହିଁ)

ନାହିଁ ବାବୁ(ବାପ ଜଣାନାହିଁ) ଯାହାର = ଅଣବାବୁଆ(ନିଷେଧାର୍ଥକ ବହୁବ୍ରୀହି)

ନ ଆକାର = ଅଣାକାର

ନ ଆୟତ୍ତ = ଅଣାୟତ୍ତ

ନ ନିଃଶ୍ୱାସୀ = ଅଣନିଃଶ୍ୱାସୀ

ନ କଦଳିଆ = ଅଣକଦଳିଆ

ନ ହିନ୍ଦୁ = ଅଣହିନ୍ଦୁ / ଅହିନ୍ଦୁ

ନ ଉତ୍ପ୍ରୋଧ = ଅଣଉତ୍ପ୍ରୋଧ

ନ ହେଳା = ଅଣହେଳା

ନ ସୋରିଷ = ଅଣସୋରିଷ

ନ ମୁସଲମାନ = ଅଣମୁସଲମାନ

ନ ବାହୁଡ଼ା = ଅଣବାହୁଡ଼ା

ନ ଲେଉଟା = ଅଣଲେଉଟା

ନ ତୁଠ = ଅଣତୁଠ

'ନ' ପରେ ବ୍ୟଞ୍ଜନ ବର୍ଣ୍ଣ ଥିଲେ 'ନ' ସ୍ଥାନରେ 'ଅ' ହୁଏ । ଯଥା-

ନ କ୍ଷୟ = ଅକ୍ଷୟ

ନ ରୁଚି = ଅରୁଚି

ନ ଭାବ = ଅଭାବ

ନ ଶିକ୍ଷା = ଅଶିକ୍ଷା

ନ ବୈଧ = ଅବୈଧ

ନ ରୋଗୀ = ଅରୋଗୀ

ନ ନିଦ୍ରା = ଅନିଦ୍ରା

ନ ଚିନ୍ତା = ଅଚିନ୍ତା

ନ ଦିନ = ଅଦିନ

ନ କାଳ = ଅକାଳ

ନ ପାଳକ = ଅପାଳକ

ନ ସନ୍ତୁଷ୍ଟ = ଅସନ୍ତୁଷ୍ଟ

ନ ଲକ୍ଷ୍ମୀ = ଅଲକ୍ଷ୍ମୀ

ନ ଗଣ୍ୟ = ଅଗଣ୍ୟ

('ନଗଣ୍ୟ' ମଧ୍ୟ ଗ୍ରହଣୀୟ)

ନ ନ୍ୟାୟ = ଅନ୍ୟାୟ
ନ ଚଳ = ଅଚଳ
ନ ଭଦ୍ର = ଅଭଦ୍ର
ନ ମାନିଆ = ଅମାନିଆ
ନ ମାପ = ଅମାପ
ନ ଦେଖା = ଅଦେଖା
ନ ପରିମିତ = ଅପରିମିତ
ନ ମର = ଅମର
ନ ମାନୀ = ଅମାନୀ
ନ କାଳ = ଅକାଳ
ନ ବାଟ = ଅବାଟ
ନ ପାଠୁଆ = ଅପାଠୁଆ
ନ ଧୁଆ = ଅଧୁଆ
ନ କଟା = ଅକଟା
ନ ବଟା = ଅବଟା
ନ ପଚରା = ଅପଚରା
ନ ପ୍ରବାସୀ = ଅପ୍ରବାସୀ
ନ ଶରୀରୀ = ଅଶରୀରୀ
ନ ସୁଖୀ = ଅସୁଖୀ

ନ ସୁଖ = ଅସୁଖ
ନ ସତ୍ = ଅସତ୍
ନ ଲୁଣିଆ = ଅଲଣା
ନ ବଛା = ଅବଛା
ନ ଧୀର = ଅଧୀର
ନ ତଳ = ଅତଳ
ନ ଋଣୀ = ଅନୃଣୀ
ନ ଦରକାରୀ = ଅଦରକାରୀ
ନ ବିଶ୍ୱାସୀ = ଅବିଶ୍ୱାସୀ
ନ ମଣିଷ = ଅମଣିଷ
ନ ହିଂସା = ଅହିଂସା
ନ ଦୂର = ଅଦୂର
ନ ଗାଧୁଆ = ଅଗାଧୁଆ
ନ ପ୍ରାସଙ୍ଗିକ = ଅପ୍ରାସଙ୍ଗିକ
ନ ଫୁଟା = ଅଫୁଟା
ନ ଜ୍ଞାନୀ = ଅଜ୍ଞାନୀ
ନ ସୁବିଧା = ଅସୁବିଧା
ନ ବୈଧ = ଅବୈଧ
ନ ବିବେକୀ = ଅବିବେକୀ

ତତ୍ପୁରୁଷ ସମାସରେ କେତେକ ସ୍ଥଳରେ ନିଷେଧ ଅର୍ଥରେ 'ନ' ସ୍ଥାନରେ 'ନି', 'ନା', 'ବେ' ପ୍ରଭୃତି ହୋଇଥାଏ । ଯଥା-

ନ(ନାହିଁ) ଅଣ୍ଟେ = ନିଅଣ୍ଟ(ନିଅଣ୍ଟିଆ)
ନୁହେଁ ରାଜି = ନାରାଜ
ନୁହେଁ ସରକାରୀ = ବେସରକାରୀ
ନୁହେଁ ମରାମତ = ବେମରାମତ
ନାହିଁ ଖାତିର = ବେଖାତିର
ନୁହେଁ ଧୁଆ = ବେଧୁଆ

ନାହିଁ ନାମ = ବେନାମୀ
ନାହିଁ କସୁର = ବେକସୁର
ନୁହେଁ ନିୟମ = ବେନିୟମ
ନାହିଁ ବନ୍ଦୋବସ୍ତ= ବେବନ୍ଦୋବସ୍ତ
ନାହିଁ ପରବାୟ = ବେପରବାୟ
ନୁହେଁ ଢଙ୍ଗ = ବେଢଙ୍ଗ

## ଉପପଦ ତତ୍‌ପୁରୁଷ

ନୂତନ ଶବ୍ଦ ଗଠନପାଇଁ ଧାତୁର ପୂର୍ବରେ ଉପସର୍ଗ ଏବଂ ଧାତୁର ପରେ କୃତ୍ ପ୍ରତ୍ୟୟ ଲାଗିଥାଏ । ସେହିପରି ନୂତନ ଶବ୍ଦ ଗଠନପାଇଁ ଧାତୁର ପୂର୍ବରେ ଉପସର୍ଗ ବ୍ୟତୀତ କେତେକ ବିଶେଷ୍ୟ ପଦ ବ୍ୟବହୃତ ହୋଇଥା'ନ୍ତି । ସେଗୁଡ଼ିକୁ ଉପପଦ କହନ୍ତି । ଯଥା–

ଦିନ - କୃ + ଅ = ଦିନକର,  କୁମ୍ଭ - କୃ + ଅ = କୁମ୍ଭକାର

ଏଠାରେ 'ଦିନ' ଉପପଦ, କର (କୃ + ଅ) ଧାତୁନିଷ୍ପନ୍ନ ପଦ, ସେହିପରି 'କୁମ୍ଭ' ଉପପଦ ଓ 'କାର' ଧାତୁନିଷ୍ପନ୍ନ ପଦ । ଏହି ସମାସରେ ଉପପଦକୁ ବାଦ୍ ଦେଲେ ଧାତୁନିଷ୍ପନ୍ନ କୃଦନ୍ତ ପଦର ପ୍ରାୟ ସ୍ୱତନ୍ତ୍ର ବ୍ୟବହାର ହୁଏ ନାହିଁ ।

ଉପପଦ ସହିତ ଧାତୁନିଷ୍ପନ୍ନ ପଦର ତତ୍‌ପୁରୁଷ ସମାସ ହେଲେ, ତାହାକୁ ଉପପଦ ତତ୍‌ପୁରୁଷ ସମାସ କହନ୍ତି । ଯଥା–

ନିଶାକୁ କରେ ଯେ = ନିଶାକର
ମଧୁପାନ କରେ ଯେ = ମଧୁପ
ଦିବାକୁ କରେ ଯେ = ଦିବାକର
ସତ୍ୟ କହେ ଯେ = ସତ୍ୟବାଦୀ
ଆକାଶକୁ ଛୁଏଁ ଯେ = ଆକାଶଛୁଆଁ
ଆଗରେ ଚାଲେ ଯେ = ଆଗଚଲା
ଦେହରେ ଲାଗେ ଯେ = ଦେହଲଗା
ପ୍ରିୟ କହେ ଯେ = ପ୍ରିୟମ୍ବଦ
ସ୍ତନ୍ୟ ପାନ କରେ ଯେ = ସ୍ତନ୍ୟପାୟୀ
ପରକୁ ତାପ ଦିଏ ଯେ = ପରନ୍ତପ
ସର୍ବସହେ ଯେ = ସର୍ବଂସହା
ଜଳକୁ ଦାନ କରେ ଯେ = ଜଳଦ
ଘରକୁ ଭାଙ୍ଗେ ଯେ = ଘରଭଙ୍ଗା
କଥା କହେ ଯେ = କଥାକୁହା
ଧନୁକୁ ଧାରଣ କରେ ଯେ = ଧନୁର୍ଦ୍ଧର
ନିଶାରେ ଚରେ ଯେ = ନିଶାଚର
ଆଗରେ ବୋଲେ(କହେ) ଯେ = ଆଗବୋଲା
ଶଯ୍ୟାରେ ଶୟନ କରେ ଯେ = ଶଯ୍ୟାଶାୟୀ
ଧରାରେ ଶୟନ କରେ ଯେ = ଧରାଶାୟୀ
ମିଥ୍ୟା (ବଦ୍) କହେ ଯେ = ମିଥ୍ୟାବାଦୀ
ଟିକା ଦିଏ ଯେ = ଟିକାଦିଆ / ଟିକାଦାର
ମାଂସକୁ ଭୋଜନ କରେ ଯେ = ମାଂସଭୋଜୀ
କାନରେ କହେ ଯେ = କାନକୁହା
ଘରକୁ ବୁଡ଼ାଏ ଯେ = ଘରବୁଡ଼ା

ବଂଶକୁ ମାରେ ଯେ = ବଂଶମରା     କୁଳକୁ ବୁଡ଼ାଏ ଯେ = କୁଳବୁଡ଼ା

ଭାରକୁ ବହନ କରେ ଯେ = ଭାରବାହୀ     ଶୁଭକୁ କରନ୍ତି ଯେ = ଶୁଭଙ୍କର

ବିଶ୍ୱର ଭରଣପୋଷଣ କରନ୍ତି ଯେ = ବିଶ୍ୱମ୍ଭର

ଶମ୍ (ଶାନ୍ତି)କୁ କରନ୍ତି ଯେ = ଶଙ୍କର     ପ୍ରଭାକୁ କରନ୍ତି ଯେ = ପ୍ରଭାକର

ଚକ୍ରକୁ ଧାରଣ କରିଛନ୍ତି ଯେ = ଚକ୍ରଧର, ଚକ୍ରଧାରୀ

ହଳକୁ ଧାରଣ କରିଛନ୍ତି ଯେ = ହଳଧର     ତତ୍ତ୍ୱ ଜାଣନ୍ତି ଯେ = ତତ୍ତ୍ୱଜ୍ଞ

ପଛରେ କହନ୍ତି ଯେ = ପଛକୁହା     ଗୋଛିକୁ କାଟେ ଯେ = ଗୋଛିକଟା

ତଣ୍ଟିକୁ କାଟେ ଯେ = ତଣ୍ଟିକଟା     ମାଡ଼ଖାଏ ଯେ = ମାଡ଼ଖିଆ

ନଭକୁ ସ୍ପର୍ଶ କରେ ଯେ = ନଭସ୍ପର୍ଶୀ     ଜଳରେ ଚରେ ଯେ = ଜଳଚର

ତୃଣ ଭୋଜନ କରେ ଯେ = ତୃଣଭୋଜୀ     ମର୍ମକୁ ତୁଦ୍ କରେ ଯେ= ମର୍ମତୁଦ

ବହୁତ ଭୋଜନ କରେ ଯେ = ବହୁଭୋଜୀ     (ତୁଦ୍ - ତୁଦନ, ପୀଡ଼ନ)

ତତ୍ତ୍ୱଦର୍ଶନ କରେ ଯେ = ତତ୍ତ୍ୱଦର୍ଶୀ     ଶାଗକୁ ଖାଏ ଯେ = ଶାଗଖିଆ

ପେଜକୁ ପିଏ ଯେ = ପେଜପିଆ     ସର୍ବ ଗ୍ରାସ କରେ ଯେ = ସର୍ବଗ୍ରାସୀ

ଗୃହରେ ସ୍ଥିତ ଯେ = ଗୃହସ୍ଥ     ଶାକ ଆହାର କରନ୍ତି ଯେ = ଶାକାହାରୀ

ମାଂସ ଆହାର କରନ୍ତି ଯେ=ମାଂସାହାରୀ     ମର୍ମକୁ ଦହନ କରେ ଯେ = ମର୍ମଦାହ

ସର୍ବଭକ୍ଷଣ କରେ ଯେ = ସର୍ବଭକ୍ଷକ, ସର୍ବଭୁକ୍, ସର୍ବଭକ୍ଷୀ

ବେଦ ଜାଣନ୍ତି ଯେ = ବେଦଜ୍ଞ     ବୋଲ କରେ ଯେ = ବୋଲକରା

ମଣିଷକୁ ଖାଏ ଯେ = ମଣିଷଖିଆ     ସ୍ତନ୍ୟପାନ କରେ ଯେ = ସ୍ତନ୍ୟପାୟୀ

କ୍ଷଣକ ପାଇଁ ରହେ ଯେ = କ୍ଷଣସ୍ଥାୟୀ     ଆମିଷ ଅଶନ କରେ ଯେ = ଆମିଷାଶୀ

ନିତ୍ୟ ସ୍ନାନ କରେ ଯେ = ନିତ୍ୟସ୍ନାୟୀ     ମର୍ମକୁ ଜାଣେ ଯେ = ମର୍ମଜ୍ଞ

ନିରାମିଷ ଅଶନ କରେ ଯେ = ନିରାମିଷାଶୀ

ଧର୍ମକୁ ଛାଡ଼ିଛି ଯେ = ଧର୍ମଛଡ଼ା     ପକେଟ୍ ମାରେ ଯେ = ପକେଟମାରୁ

ଷଡ୍‌ଦର୍ଶନ କରଛନ୍ତି ଯେ = ଷଡ୍‌ଦର୍ଶୀ     ମିଥ୍ୟାଭାଷଇ ଯେ = ମିଥ୍ୟାଭାଷୀ

ମର୍ମକୁ ଭେଦ କରେ ଯେ = ମର୍ମଭେଦୀ     ବ୍ରହ୍ମରେ ଚରଇ ଯେ = ବ୍ରହ୍ମଚାରୀ

କୃତକୁ (କରିଥିବା କାମକୁ) ଜାଣେ (ମାନେ) ଯେ = କୃତଜ୍ଞ

ସହ ପଠନ କରେ ଯେ = ସହପାଠୀ    ସହ ଅଧ୍ୟୟନ କରେ ଯେ = ସହାଧ୍ୟାୟୀ

କୂଟ ନୀତି ଜାଣେ ଯେ = କୂଟନୀତିଜ୍ଞ    ପଙ୍କରେ ଜାତ ଯେ = ପଙ୍କଜ

ସମୀପରେ ବର୍ତ୍ତେ (ଥାଏ) ଯେ=ସମୀପବର୍ତ୍ତୀ    ବିହାୟସରେ ଗମନ କରେ ଯେ

ସହ ଚରଇ (ବିଚରଣ କରିବା) ଯେ = ସହଚର    = ବିହଗ, ବିହଙ୍ଗ

ମନକୁ ହରଣ କରେ ଯେ = ମନୋହର    ଗାତରେ ପଶେ ଯେ = ଗାତପଶା

ପାଦରେ ପିଏ (ପାନକରେ) ଯେ = ପାଦପ    ନିତି ବୁଲେ ଯେ = ନିତିବୁଲା

## ଅଲୁକ୍ ସମାସ

ସମାସରେ ସାଧାରଣତଃ ସମସ୍ତ ପଦର ବିଭକ୍ତି ଚିହ୍ନ ଲୋପ ପାଇଥାଏ । 'ଲୋପ'କୁ 'ଲୁକ୍' କହନ୍ତି । ଯେଉଁ ସମାସରେ ସମସ୍ୟମାନ ପଦମାନଙ୍କ ମଧ୍ୟରୁ ପୂର୍ବପଦର ବିଭକ୍ତି ଚିହ୍ନ ଲୋପ ହୁଏ ନାହିଁ, ତାକୁ 'ଅଲୁକ୍' ସମାସ କହନ୍ତି । ତତ୍ପୁରୁଷ ସମାସରେ କେତେକ ସ୍ଥଳରେ ପୂର୍ବପଦର ବିଭକ୍ତି ଲୋପ ହୋଇ ନ ଥାଏ । ଯଥା-

ଅନ୍ତେ(ଭିତରେ) ବାସକରେ ଯେ = ଅନ୍ତେବାସୀ(ଗୁରୁ ଗୃହରେ ରହି ପଢୁଥିବା ଶିଷ୍ୟ)

ଖେ (ଖ' ରେ ଅର୍ଥାତ୍ ଆକାଶରେ) ଚରେ ଯେ = ଖେଚର

ବନେ (ବଣରେ) ଚରେ ଯେ = ବନେଚର (ବନ୍ୟପଶୁ / ବ୍ୟାଧ / ଋଷି)

ଯୁଧି (ଯୁଦ୍ଧରେ) ସ୍ଥିର ଯେ = ଯୁଧିଷ୍ଠିର (ଜ୍ୟେଷ୍ଠପାଣ୍ଡବ)

ପରାତ୍ (ଶ୍ରେଷ୍ଠଠାରୁ) ପର (ଶ୍ରେଷ୍ଠ) ଯେ = ପରାତ୍ପର (ପରମେଶ୍ୱର)

ମନସି (ମନରେ) ଜନ୍ମେ ଯେ = ମନସିଜ (କନ୍ଦର୍ପ)

ସରସି (ସରୋବରରେ) ଜନ୍ମେ ଯେ = ସରସିଜ (ପଦ୍ମ)

ଅଗ୍ରେ (ଆଗରେ / ଆଗକୁ) ସରେ (ଯାଏ) ଯେ = ଅଗ୍ରେସର (ଅଗ୍ରଗାମୀ)

ଭ୍ରାତୁଃ (ଭାଇର) ପୁତ୍ର = ଭ୍ରାତୃଷ୍ପୁତ୍ର (ପୁତୁରା)

ଗେହେ (ଘରେ) ଶୂର (ବୀର) ଯେ = ଗେହେଶୂର (ଘରେ ଯାହାର ବଡ଼ପଣିଆ)

ପଙ୍କେ (ପଙ୍କରେ) ରୁହତି (ଉତ୍ପତ୍ତି) ଯେ = ପଙ୍କେରୁହ, ପଙ୍କରୁହ (ପଦ୍ମ)

କଣ୍ଠେ (କଣ୍ଠରେ) କାଳ (ବିଷ) ଯାହାଙ୍କର = କଣ୍ଠେକାଳ (ଶିବ)

ଏଗୁଡ଼ିକ ସବୁ ସଂସ୍କୃତ ଉଦାହରଣ । ବ୍ୟାସବାକ୍ୟରେ ଥିବା ପୂର୍ବପଦର ବିଭକ୍ତି ଲୋପ ହୋଇନାହିଁ ।

ଓଡ଼ିଆରେ ମଧ୍ୟ କ୍ୱଚିତ୍ ସ୍ଥଳରେ ଅଲୁକ୍ ସମାସର ବ୍ୟବହାର ରହିଛି । ଯଥା-

୧ । ସେ **ମନକୁମନ** କଥାହେଉଛି ।

୨ । **ଦିନକୁଦିନ** ଖରା ଟାଣ ହେଉଛି ।

୩ । **ସତକୁସତ** ସାଙ୍ଗ ଆସି ପହଞ୍ଚିଲା ।

୪ । ସାମ୍ବାଦିକମାନେ **ସ୍ଥାନରୁସ୍ଥାନ** ବୁଲି ସମ୍ବାଦ ସଂଗ୍ରହ କରନ୍ତି ।

## କର୍ମଧାରୟ ସମାସ

ଏକାଧିକ ପଦ ମିଳିତ ହୋଇ ଏକ ବିଷୟ (ବସ୍ତୁ ବା ବ୍ୟକ୍ତି)କୁ ବୁଝାଉଥିଲେ, କର୍ମଧାରୟ ସମାସ ହୁଏ । ଏହି ସମାସ ସାଧାରଣତଃ ବିଶେଷଣ ଓ ବିଶେଷ୍ୟ ପଦକୁ ନେଇ ହୋଇଥାଏ । ଏହି ସମାସରେ ପରପଦର ଅର୍ଥର ପ୍ରାଧାନ୍ୟ ରହେ । ଯଥା-

ସରୁ ଅଟେ ଧାନ = ସରୁଧାନ ।

ଏଠାରେ 'ସରୁଧାନ' କହିଲେ 'ସରୁ' ଓ ଧାନକୁ ଅଲଗା ଅଲଗା ନ ବୁଝାଇ କେବଳ ଗୋଟିଏ ବସ୍ତୁ ସରୁଧାନକୁ ବୁଝାଉଅଛି । ଧାନଠାରୁ 'ସରୁ'କୁ ଅଲଗା କରିହେବ ନାହିଁ ।

**ବିଭିନ୍ନ ପ୍ରକାର କର୍ମଧାରୟ ସମାସ :**

୧ । (କ) ପୂର୍ବପଦ ବିଶେଷଣ + ପରପଦ ବିଶେଷ୍ୟ :

| | |
|---|---|
| ଧଳା ଅଟେ ଧାନ = ଧଳାଧାନ | କଳା ଅଟେ ଲୋକ = କଳାଲୋକ |
| ପୂର୍ଣ୍ଣ ଅଟେ ଚନ୍ଦ୍ର = ପୂର୍ଣ୍ଣଚନ୍ଦ୍ର | ଉନ୍ନତ ଅଟେ ଭାରତ = ଉନ୍ନତଭାରତ |
| କର୍କଶ ଅଟେ ବଚନ = କର୍କଶ ବଚନ | ମଧୁର ଅଟେ ଜଳ = ମଧୁରଜଳ |
| ନିର୍ମଳ ଅଟେ ଆକାଶ = ନିର୍ମଳାକାଶ | ବାସି ଅଟେ ପଖାଳ = ବାସିପଖାଳ |
| ଅଲଣା ଅଟେ କଥା = ଅଲଣାକଥା | ପୀତ ଅଟେ ଅମ୍ବର = ପୀତାମ୍ବର |
| ପୂର୍ଣ୍ଣ ଅଟେ କୁମ୍ଭ = ପୂର୍ଣ୍ଣକୁମ୍ଭ | ଅସମ୍ପୂର୍ଣ୍ଣ ଅଟେ କାହାଣୀ = ଅସମ୍ପୂର୍ଣ୍ଣକାହାଣୀ |
| ସତ୍ ଅଟନ୍ତି ଜନ = ସଜ୍ଜନ | |
| ନୀଳ ଅଟେ ଉତ୍ପଳ = ନୀଳୋତ୍ପଳ | ନୀଳ ଅଟେ ଆକାଶ = ନୀଳାକାଶ |
| ବୃଦ୍ଧ ଅଟେ ଲୋକ = ବୃଦ୍ଧ ଲୋକ | ନୀଳ ଅଟନ୍ତି ମାଧବ= ନୀଳମାଧବ |
| ଧବଳ ଅଟେ ବସନ = ଧବଳବସନ | ଫଳନ୍ତି ଅଟେ ଗଛ = ଫଳନ୍ତିଗଛ |
| ଲଗାଣ ଅଟେ ବର୍ଷା = ଲଗାଣବର୍ଷା | ଗରମ ଅଟେ ଭାତ = ଗରମଭାତ |

ନୂଆ ଅଟେ ଛତା = ନୂଆ ଛତା
ଭଙ୍ଗାଅଟେ ହାଣ୍ଡି = ଭଙ୍ଗାହାଣ୍ଡି
ପୂର୍ଣ୍ଣ ଅଟେ ପାତ୍ର = ପୂର୍ଣ୍ଣପାତ୍ର
ଖୋଲା ଅଟେ ମନ = ଖୋଲାମନ
ଧୂର୍ତ୍ତଅଟେ ଶୃଗାଳ = ଧୂର୍ତ୍ତଶୃଗାଳ
କୁହାଳିଆ ଅଟେ ଲୋକ = କୁହାଳିଆଲୋକ
ମୂତୁରା ଅଟେ ପିଲା = ମୂତୁରାପିଲା
ଚଳ ଅଟେ ଚିତ୍ର = ଚଳଚିତ୍ର
ଚଳତ୍ ଅଟେ ଚିତ୍ର = ଚଳଚ୍ଚିତ୍ର
ମେଘୁଆ ଅଟେ ପାଗ = ମେଘୁଆପାଗ
ଶୀତଳ ଅଟେ ସମୀର = ଶୀତଳସମୀର
ସଫା ଅଟେ ଲୁଗା = ସଫାଲୁଗା
ପରମା ଅଟେ ପ୍ରୀତି = ପରମପ୍ରୀତି
ଲୁଣୀ ଅଟେ ପାଣି = ଲୁଣିପାଣି
ପୋଡ଼ା ଅଟେ ତିଅଣ = ପୋଡ଼ାତିଅଣ
ଧାରୁଆ ଅଟେ କାତି = ଧାରୁଆକାତି
ଲଘୁ ଅଟେ ଚାପ = ଲଘୁଚାପ
କାଳିଆ ଅଟେ ବଳଦ = କାଳିଆବଳଦ
ଶୁଖିଲା ଅଟେ ପାଗ = ଶୁଖିଲାପାଗ
ବୀର ଅଟେ ପୁରୁଷ = ବୀରପୁରୁଷ
କଞ୍ଚା ଅଟେ ମିଛ = କଞ୍ଚାମିଛ

ପୁରୁଣା ଅଟେ ଜୋତା = ପୁରୁଣାଜୋତା
ଚିରାଅଟେ ଲୁଗା = ଚିରାଲୁଗା
ଡେଙ୍ଗା ଅଟେ ମଣିଷ = ଡେଙ୍ଗାମଣିଷ
ଉଡ଼ନ୍ତା ଅଟେ ଥାଳିଆ = ଉଡ଼ନ୍ତା ଥାଳିଆ
ଧୂଳିଆ ଅଟେ ପାଦ = ଧୂଳିଆପାଦ
ପ୍ରିୟ ଅଟେ ବନ୍ଧୁ = ପ୍ରିୟବନ୍ଧୁ
ଶୀତ ଅଟେ ସକାଳ = ଶୀତସକାଳ
ସତ୍ୟ ଅଟେ ବଚନ = ସତ୍ୟବଚନ
ମନ୍ଦ ଅଟେ ବୁଦ୍ଧି = ମନ୍ଦବୁଦ୍ଧି
ପୋଷା ଅଟେ ଶୁଆ = ପୋଷାଶୁଆ
ବ୍ରହ୍ମପୁରୀ ଅଟେ ପାଟ=ବ୍ରହ୍ମପୁରୀପାଟ
ପରମା ଅଟେ ଧାର୍ମିକ= ପରମଧାର୍ମିକ
ମୁଖ୍ୟ ଅଟନ୍ତି ମନ୍ତ୍ରୀ = ମୁଖ୍ୟମନ୍ତ୍ରୀ
ଭଙ୍ଗା ଅଟ ଘର = ଭଙ୍ଗାଘର
ସଜ ଅଟେ ପରିବା = ସଜପରିବା
ପଣ୍ଡିତ ଅଟେ ଲୋକ=ପଣ୍ଡିତଲୋକ
ଫଟା ଅଟେ ଭୂଇ = ଫଟାଭୂଇଁ
ଭଙ୍ଗା ଅଟେ ଦେଉଳ=ଭଙ୍ଗାଦେଉଳ
ଅସହାୟ ଅଟେ ଜନତା=ଅସହାୟଜନତା
ତପ୍ତ ଅଟେ ପାଣି = ତପ୍ତପାଣି
ଅସ୍ଥିର ଅଟେ ମନ = ଅସ୍ଥିର ମନ

(ଖ) ପୂର୍ବପଦ ସ୍ତ୍ରୀଲିଙ୍ଗବାଚକ ଥାଇ ସମାସ ହେଲେ ସମସ୍ତ ପଦରେ ତାହା ପୁଂଲିଙ୍ଗ ଆକାର ଧାରଣ କରେ । ଯଥା-

ସୁନ୍ଦରୀ ଅଟେ ମହିଳା = ସୁନ୍ଦରମହିଳା
ଦୁର୍ବଳା ଅଟେ ନାରୀ = ଦୁର୍ବଳନାରୀ
ଶୁକ୍ଳା ଅଟେ ରଜନୀ = ଶୁକ୍ଳରଜନୀ
ସତ୍ ଅଟେ ପ୍ରବୃତ୍ତି = ସତ୍‌ପ୍ରବୃତ୍ତି

ପାଚିକା ଅଟେ ସ୍ତ୍ରୀ = ପାଚକସ୍ତ୍ରୀ
ସ୍ଥିରା ଅଟେ ମତି = ସ୍ଥିରମତି
କୃଷ୍ଣା ଅଟେ ଚତୁର୍ଦ୍ଦଶୀ = କୃଷ୍ଣଚତୁର୍ଦ୍ଦଶୀ
ଶୁକ୍ଳା ଅଟେ ପଞ୍ଚମୀ = ଶୁକ୍ଳ ପଞ୍ଚମୀ

ପୁଷ୍ପିତା ଅଟେ ଲତା = ପୁଷ୍ପିତ ଲତା
ପ୍ରିୟା ଅଟେ ଭାର୍ଯ୍ୟା = ପ୍ରିୟଭାର୍ଯ୍ୟା
କୃଷ୍ଣା ଅଟେ ଅଷ୍ଟମୀ = କୃଷ୍ଣଷ୍ଟମୀ
ଚତୁରା ଅଟେ ବାଳିକା = ଚତୁରବାଳିକା
ପ୍ରିୟା ଅଟେ କନ୍ୟା = ପ୍ରିୟକନ୍ୟା
କାଳୀ ଅଟେ ଝିଅ = କାଳୀ ଝିଅ (କଳାଝିଅ ମଧ୍ୟ ଗ୍ରହଣୀୟ)
ମହତୀ ଅଟେ ନବମୀ = ମହାନବମୀ
ମହତୀ ଅଟେ ନଦୀ = ମହାନଦୀ
ଭଦ୍ରା ଅଟେ ମହିଳା = ଭଦ୍ରମହିଳା
ଦୀର୍ଘ ଅଟେ ଛାୟା = ଦୀର୍ଘଛାୟା
ଦୁଷ୍ଟା ଅଟେ ପତ୍ନୀ = ଦୁଷ୍ଟପତ୍ନୀ
ସ୍ଥିରା ଅଟେ ମତି = ସ୍ଥିରମତି
ମହତୀ ଅଟେ ନିଦ୍ରା= ମହାନିଦ୍ରା(ମୃତ୍ୟୁ)

୨ । (କ) ପୂର୍ବପଦ ବିଶେଷଣ + ପରପଦ ବିଶେଷଣ

ଯେ ଧୀର ସେ ସ୍ଥିର = ଧୀରସ୍ଥିର
ଯେ ରୁଦ୍ର ସେ ସୁନ୍ଦର = ରୁଦ୍ରସୁନ୍ଦର
ଯେ ଧନୀ ସେ ମାନୀ = ଧନୀମାନୀ
ଯେ ଜ୍ଞାନୀ ସେ ଗୁଣୀ = ଜ୍ଞାନୀଗୁଣୀ
ଯେ ମୂର୍ଖ ସେ ପଣ୍ଡିତ = ମୂର୍ଖପଣ୍ଡିତ
ଯେ ଶାନ୍ତ ସେ ଶିଷ୍ଟ = ଶାନ୍ତଶିଷ୍ଟ
ଅଭିଜ୍ଞ ଅଟନ୍ତି ପଣ୍ଡିତ = ଅଭିଜ୍ଞପଣ୍ଡିତ
ମୂକ ଅଟେ ବଧିର = ମୂକବଧିର
ଯେ ଭୀମ ସେ କାନ୍ତ = ଭୀମକାନ୍ତ
ଯେ କ୍ଳାନ୍ତ ସେ ଶ୍ରାନ୍ତ = କ୍ଳାନ୍ତଶ୍ରାନ୍ତ
ଯେ ଶୀତ ସେ ଉଷ୍ଣ = ଶୀତୋଷ୍ଣ
ଯେ ଲମ୍ବା ସେ ସିଧା = ଲମ୍ବାସିଧା
ଯେ ସାଦା ସେ ସିଧା = ସାଦାସିଧା
ଯେ ପୀତ ସେ ଧବଳ = ପୀଦଧବଳ
ଯେ କୁଜା ସେ ଛୋଟା = କୁଜାଛୋଟା
ଯେ ଡହଳ ସେ ବିକଳ = ଡହଳବିକଳ
ଯେ ନରମ ସେ ଗରମ =ନରମଗରମ
ଯେ ମୃଦୁ ସେ ମନ୍ଦ = ମୃଦୁମନ୍ଦ
ଯେ ଚଲାକ ସେ ଚତୁର = ଚଲାକଚତୁର
ଯେ ତିକ୍ତ ସେଇମଧୁର = ତିକ୍ତମଧୁର
ଯେ ମୋଟା ସେ ବାଙ୍ଗରା = ମୋଟା ବାଙ୍ଗରା
ସେ ଶୁକ୍ଳ ସେ କୃଷ୍ଣ = ଶୁକ୍ଳକୃଷ୍ଣ
ଯେ ନୀଳ ସେ ଲୋହିତ = ନୀଳଲୋହିତ
ଯେ ଶ୍ୱେତ ସେ ଲୋହିତ = ଶ୍ୱେତଲୋହିତ

(ଖ) ଅତି ଅଟେ ଲୋଭୀ = ଅତିଲୋଭୀ
ଅତି ଅଟେ ଭୋଳ = ଅତିଭୋଳ
ଅତି ଅଟେ ସୁନ୍ଦର = ଅତିସୁନ୍ଦର
ଅତି ଅଟେ ବଡ଼ = ଅତିବଡ଼
ଅତି ଅଟେ ମନ୍ଦ = ଅତିମନ୍ଦ
ସୁ ଅଟେ ରମ୍ୟ = ସୁରମ୍ୟ
ଅତି ଅଟେ ଶୀତଳ = ଅତିଶୀତଳ
ସୁ ଅଟେ ସଂହତ = ସୁସଂହତ
ଖୁବ୍ ଅଟେ ମୋଟା = ଖୁବ୍‌ମୋଟା
ପରମ ଅଟେ ଧାର୍ମିକ = ପରମଧାର୍ମିକ
ପରମ ଅଟେ ରମଣୀୟ=ପରମ ରମଣୀୟ
ପରମ ଅଟେ ପାବନ = ପରମପାବନ

୩ । (କ) ପୂର୍ବପଦ ବିଶେଷ୍ୟ + ପରପଦ ବିଶେଷ୍ୟ

ଯେ ରାଜା ସେ ଋଷି / ରାଜା ଅଟନ୍ତି ଋଷି = ରାଜର୍ଷି

ଯେ ବିପ୍ର ସେ ଋଷି / ବିପ୍ର ଅଟନ୍ତି ଋଷି = ବିପ୍ରର୍ଷି

ଯେ ବ୍ରହ୍ମ ସେ ଋଷି / ବ୍ରହ୍ମ ଅଟନ୍ତି ଋଷି = ବ୍ରହ୍ମର୍ଷି

ଯେ ଦେବ ସେ ଋଷି / ଦେବ ଅଟନ୍ତି ଋଷି = ଦେବର୍ଷି

(ଖ) ପୂର୍ବପଦ ବିଶେଷ୍ୟ + ପରପଦ ବିଶେଷଣ

ନର ଅଟେ ଶ୍ରେଷ୍ଠ = ନରଶ୍ରେଷ୍ଠ    ନର ଅଟେ ଅଧମ = ନରାଧମ

କାବ୍ୟ ଅଟେ ଶ୍ରେଷ୍ଠ = କାବ୍ୟଶ୍ରେଷ୍ଠ    ପୁରୁଷ ଅଟେ ଉତ୍ତମ = ପୁରୁଷୋତ୍ତମ

ଏହି ଶ୍ରେଣୀର ସମାସକୁ 'ନରମାନଙ୍କ ମଧ୍ୟରେ ଅଧମ' ଏପରି ବ୍ୟାସବାକ୍ୟ କରି ସପ୍ତମୀ ତତ୍‌ପୁରୁଷ ସମାସ ମଧ୍ୟ କରାଯାଇପାରେ । ବ୍ୟାବହାରିକ ଦୃଷ୍ଟିକୋଣରୁ ସମସ୍ତ ପଦର ଯେପରି ଅର୍ଥ କଲେ ସମୀଚୀନ ହେବ, ସେହି ଅନୁସାରେ ସମାସ କରିବାକୁ ହେବ । କାରଣ ଅର୍ଥ ଉପରେ ନିର୍ଭର କରି ସମାସ କରାଯାଏ ।

**ମଧ୍ୟପଦଲୋପୀ କର୍ମଧାରୟ ସମାସ :**

ଯେଉଁ କର୍ମଧାରୟ ସମାସରେ ସମସ୍ୟମାନ ପଦମାନଙ୍କ ମଧ୍ୟରେ ଥିବା ମଧ୍ୟବର୍ତ୍ତୀ ପଦର ଲୋପହୋଇ ସମାସ ହୁଏ, ତାହାକୁ ମଧ୍ୟପଦଲୋପୀ କର୍ମଧାରୟ ସମାସ କହନ୍ତି । ଏହି ସମାସରେ ପୂର୍ବ ଓ ପର ଉଭୟପଦ ବିଶେଷ୍ୟ ଅଟେ । ଯଥା–

କାଠ ତିଆରି କଠଉ = କାଠକଠଉ    ମୟୂର ଆକୃତିର ସିଂହାସନ = ମୟୂରସିଂହାସନ

କୁଶ ନିର୍ମିତ ଆସନ = କୁଶାସନ

ପ୍ରଯୁକ୍ତି ସମ୍ବନ୍ଧୀୟ ବିଦ୍ୟା=ପ୍ରଯୁକ୍ତିବିଦ୍ୟା    ବିରାଡ଼ି ସଦୃଶ ବୈଷ୍ଣବ=ବିରାଡ଼ିବୈଷ୍ଣବ

ନଡ଼ା ଛପର ଚାଳ = ନଡ଼ାଚାଳ    ଦସ୍ତା ତିଆରି ଟ୍ରଙ୍କ = ଦସ୍ତାଟ୍ରଙ୍କ

ରେଳରେ ଚାଲୁଥିବା ଗାଡ଼ି = ରେଳଗାଡ଼ି    ଚନ୍ଦ୍ର ସଦୃଶ ମୁଖ = ଚନ୍ଦ୍ରମୁଖ

ଏକ ଅଧିକ ଦଶ = ଏକାଦଶ    ଖ୍ରୀଷ୍ଟଙ୍କ ପ୍ରବର୍ତ୍ତିତ ଧର୍ମ = ଖ୍ରୀଷ୍ଟଧର୍ମ

ଦ୍ୱି ଅଧିକ ଦଶ = ଏକାଦଶ    ନରମାନଙ୍କ ମଧ୍ୟରେ ପୁଙ୍ଗବ = ନରପୁଙ୍ଗବ

ଗଙ୍ଗା ନାମ୍ନୀ ନଦୀ = ଗଙ୍ଗାନଦୀ    ଚମଡ଼ାରେ ପ୍ରସ୍ତୁତ ଜୋତା=ଚମଡ଼ାଜୋତା

ପାଣି ସମ୍ବନ୍ଧୀୟ ପଞ୍ଚାୟତ = ପାଣିପଞ୍ଚାୟତ    ହାତବନ୍ଧା ଘଡ଼ି = ହାତଘଡ଼ି

ଦାବ(ବନ) ଜାତ ଅଗ୍ନି = ଦାବାଗ୍ନି    ମୁଖ ସମ୍ବନ୍ଧୀୟ ପତ୍ର = ମୁଖପତ୍ର

ବନ ଜାତ ଅଗ୍ନି = ବନାଗ୍ନି    ସୁନା ତିଆରି ହାର = ସୁନାହାର

ପଥର ନିର୍ମିତ ପାଚେରି = ପଥରପାଚେରି    ସିଂହ ସ୍ଥାପିତ ଦ୍ୱାର = ସିଂହଦ୍ୱାର
ଡିଜେଲ ଚାଳିତଗାଡ଼ି = ଡିଜେଲ୍‌ଗାଡ଼ି
ଦହି ମିଶା ପଖାଳ = ଦହିପଖାଳ    ବେତରେ ନିର୍ମିତ ଚୌକି = ବେତଚୌକି
ପଲାଶ ନାମକ ପାଦପ = ପଲାଶପାଦପ    ପଥର ନିର୍ମିତ ବନ୍ଧ = ପଥରବନ୍ଧ
ଛେନାରେ ତିଆରି ପଣା = ଛେନାପଣା    ବକ ସଦୃଶ ଧାର୍ମିକ = ବକଧାର୍ମିକ
ଖମ୍ବ ସଦୃଶ ଆଳୁ = ଖମ୍ବ ଆଳୁ    ସୁବର୍ଣ୍ଣ ନିର୍ମିତ ପ୍ରତିମା = ସୁବର୍ଣ୍ଣପ୍ରତିମା
ଚମ୍ପକ ସଦୃଶ ଅଙ୍ଗୁଳି = ଚମ୍ପକ ଅଙ୍ଗୁଳି    ଫୁଲ ରହୁଥିବା ଦାନି = ଫୁଲଦାନି
କଂସାରେ ନିର୍ମିତ କବାଟ = କଂସାକବାଟ    ଷ୍ଟିଲ୍ ତିଆରି ବାଲ୍‌ଟି = ଷ୍ଟିଲ୍‌ବାଲ୍‌ଟି
ଗଜ ସେବିତା ଲକ୍ଷ୍ମୀ = ଗଜଲକ୍ଷ୍ମୀ    ହୀରା ନିର୍ମିତ ମୁଦି = ହୀରାମୁଦି
ଆଧାର ଦେଉଥିବା କେନ୍ଦ୍ର = ଆଧାରକେନ୍ଦ୍ର    ବାଲିମିଶାମାଟି = ବାଲିମାଟି
ପିତ୍ତଳ ନିର୍ମିତ ଗରା = ପିତ୍ତଳଗରା    ଘୃତ ମିଶ୍ରିତ ଅନ୍ନ = ଘୃତାନ୍ନ
ବିନ୍ଧ୍ୟ ନାମକ ପର୍ବତ = ବିନ୍ଧ୍ୟପର୍ବତ    ଗଜ ସଦୃଶ ମୂର୍ଖ = ଗଜମୂର୍ଖ
ନାରଦ ଅଟନ୍ତି ଦେବର୍ଷି = ନାରଦଦେବର୍ଷି    ବୌଦ୍ଧ ନାମକ ଧର୍ମ = ବୌଦ୍ଧଧର୍ମ
ଲେମ୍ବୁରେ ପ୍ରସ୍ତୁତ ଆଚାର = ଲେମ୍ବୁଆଚାର    କାଚରେ ତିଆରି ଗ୍ଲାସ = କାଚଗ୍ଲାସ୍
ଖଜା ସଦୃଶ ପଣସ = ଖଜାପଣସ    ଗୋଡ଼ି ମିଶା ଚାଉଳ = ଗୋଡ଼ିଚାଉଳ
ଫୁଲରେ ତିଆରି ଶେଯ = ଫୁଲଶେଯ    ମେଘ ସଦୃଶ ବର୍ଣ୍ଣ = ମେଘବର୍ଣ୍ଣ

## ଉପମିତ କର୍ମଧାରୟ (ଉପମେୟ କର୍ମଧାରୟ)

କହିଲା ବା ଲେଖିଲାବେଳେ ବକ୍ତବ୍ୟକୁ ସରସସୁନ୍ଦର କରିବାପାଇଁ ଉପମାର ପ୍ରୟୋଗ କରାଯାଇଥାଏ । ଉପମା ଅର୍ଥ ତୁଳନା । ଉଦାହରଣ ସ୍ୱରୂପ ଆମେ କହୁ, 'ପିଠା ଛେନା ପରି **କୋମଳ** ହୋଇଛି ।' ଏହି ବାକ୍ୟରେ ପିଠାକୁ ଛେନା ସଙ୍ଗେ ତୁଳନା କରାଯାଇଛି । ଯାହାକୁ ଅନ୍ୟ ସହିତ ଉପମା ବା ତୁଳନା ଦିଆଯାଏ, ତାହାକୁ ଉପମେୟ କୁହାଯାଏ । 'ପିଠା' ହେଉଛି ଉପମେୟ । ଉପମେୟକୁ ଯାହା ସହିତ ତୁଳନା କରାଯାଏ, ତାହା **ଉପମାନ** । 'ଛେନା' ଉପମାନ । ଉପମେୟ ଓ ଉପମାନ ମଧ୍ୟରେ ଥିବା ସମାନଗୁଣ ବା ସାମ୍ୟକୁ **ସାଧାରଣଧର୍ମ** କୁହାଯାଏ । କୋମଳ ହେଉଛି ସାଧାରଣ ଧର୍ମବାଚକ ପଦ । ଏହାକୁ ବିଶେଷଣ ପଦରେ ପ୍ରକାଶ କରାଯାଇଛି । ସାଧାରଣ ଧର୍ମ ହେଉଛି 'କୋମଳତା' । ଏହା ବିଶେଷ୍ୟ ପଦ । ସାଧାରଣ ଧର୍ମକୁ ସାଧାରଣତଃ ବିଶେଷଣ ପଦରେ ପ୍ରକାଶ କରାଯାଇଥାଏ । ଉପମେୟ ଓ ଉପମାନ ମଧ୍ୟରେ ଥିବା ସାମ୍ୟ ବା ସାଧାରଣଧର୍ମକୁ ଯେଉଁ

ପଦଦ୍ୱାରା ପ୍ରକାଶ କରାଯାଏ, ତାହା **ଉପମାବାଚକ ପଦ** । ଏଠାରେ 'ପରି' ହେଉଛି ଉପମାବାଚକ ପଦ ।

ପୂର୍ବପଦ ଉପମେୟ ଏବଂ ପରପଦ ଉପମାନ ଥାଇ ଯେଉଁ ସମାସ ହୁଏ, ତାହା ଉପମିତ କର୍ମଧାରୟ ସମାସ । ଏହାକୁ **ଉପମେୟକର୍ମଧାରୟ** ସମାସ ମଧ୍ୟ କୁହାଯାଏ । ଯଥା-

| | |
|---|---|
| ମୁଖ ଚନ୍ଦ୍ର ପରି = ମୁଖଚନ୍ଦ୍ର | କର ପଲ୍ଲବ ପରି = କରପଲ୍ଲବ |
| ପାଦ ପଦ୍ମ ପରି = ପାଦପଦ୍ମ | ନର ସିଂହ ପରି = ନରସିଂହ |
| ନୟନ କମଳ ପରି = ନୟନକମଳ | ବଦନ ସୁଧାକର ପରି = ବଦନସୁଧାକର |
| ଶିଶୁ ସୁମନ ପରି = ଶିଶୁସୁମନ | |
| ପୁରୁଷ ବ୍ୟାଘ୍ର ପରି = ପୁରୁଷବ୍ୟାଘ୍ର | ନର ଇନ୍ଦ୍ର ପରି = ନରେନ୍ଦ୍ର |
| ଅଧର ବିମ୍ବପରି = ଅଧରବିମ୍ବ | କରକମଳ ପରି = କରକମଳ |
| ପୁରୁଷ ଋଷଭ(ଷଣ୍ଢ)ପରି = ପୁରୁଷର୍ଷଭ | କର କିଶଳୟ ପରି = କରକିଶଳୟ |
| ପୁରୁଷ ସିଂହପରି = ପୁରୁଷସିଂହ | ପଦ ପଙ୍କଜ ପରି = ପଦପଙ୍କଜ |
| ଅଧର ପଲ୍ଲବ ପରି = ଅଧରପଲ୍ଲବ | ନୃ(ନର)ସିଂହପରି = ନୃସିଂହ |
| ଶିଶୁ ସିଂହ ପରି = ଶିଶୁସିଂହ | ମୁନି ପୁଙ୍ଗବ ପରି = ମୁନିପୁଙ୍ଗବ |
| ବୀର କେଶରୀ ପରି = ବୀରକେଶରୀ | ଚରଣ ଅରବିନ୍ଦ ପରି = ଚରଣାରବିନ୍ଦ |

**ଉପମାନ କର୍ମଧାରୟ ସମାସ :**

ପୂର୍ବପଦରେ ଉପମାନ ଏବଂ ପରପଦରେ ଉପମେୟ ଉପମାନର ସାଧାରଣ ଧର୍ମବାଚକ ବିଶେଷଣ ପଦ ଥାଇ ଯେଉଁ ସମାସ ହୁଏ, ଏହା **ଉପମାନ କର୍ମଧାରୟ** ସମାସ । ଯଥା-

ଲହୁଣି ପରି କଅଁଳ = ଲହୁଣିକଅଁଳ (ଉପମାନ + ଉପମାବାଚକ ଶବ୍ଦ + ସାଧାରଣଧର୍ମବାଚକ ବିଶେଷଣ)

| | |
|---|---|
| ଅର୍ଣ୍ଣବ ପରି ଗଭୀର=ଅର୍ଣ୍ଣବଗଭୀର | * ହିମାଳୟ ପରି ଅଚଳ=ହିମାଳୟଅଚଳ |
| ଘନ ପରି ଶ୍ୟାମ = ଘନଶ୍ୟାମ | ଅଫିମ ପରି କଳା = ଅଫିମକଳା |
| ପୁଷ୍ପ ପରି କୋମଳ = ପୁଷ୍ପକୋମଳ | ବଜ୍ର ପରି କଠିନ = ବଜ୍ରକଠିନ |
| ତୁଷାର ସଦୃଶ ଧବଳ = ତୁଷାରଧବଳ | ଜଳ ପରି ତରଳ = ଜଳତରଳ |
| ବରଫ ପରି ଶୀତଳ = ବରଫଶୀତଳ | ତୈଳ ସଦୃଶ ଚିକ୍କଣ = ତୈଳଚିକ୍କଣ |

ସମୁଦ୍ର ପରି ଗମ୍ଭୀର = ସମୁଦ୍ର ଗମ୍ଭୀର
କର୍ପୂର ପରି ଗୌର = କର୍ପୂରଗୌର
ପଙ୍କ ସଦୃଶ ମଳିନ = ପଙ୍କମଳିନ
ଚନ୍ଦନ ପରି ଶୀତଳ = ଚନ୍ଦନଶୀତଳ
ଆକାଶ ପରି ପ୍ରଶାନ୍ତ = ଆକାଶପ୍ରଶାନ୍ତ
ବରଫ ପରି ଥଣ୍ଡା = ବରଫ ଥଣ୍ଡା
ମୃଣାଳ ପରି କୋମଳ = ମୃଣାଳକୋମଳ
କାକ ପରି କୃଷ୍ଣ = କାକକୃଷ୍ଣ
ପଥରପରି ଟାଣ = ପଥରଟାଣ
ନବନୀତ ପରି କୋମଳ = ନବନୀତକୋମଳ
ଶିଖର ପରି ସମୁନ୍ନତ = ଶିଖରସମୁନ୍ନତ
ମଧୁ ସଦୃଶ ମଧୁର = ମଧୁମଧୁର
କଜ୍ଜ୍ୱଳ ପରିକଳା = କଜ୍ଜ୍ୱଳକଳା
ଚମ୍ପା ପରି ଗୋରୀ = ଚମ୍ପାଗୋରୀ
ଫୁଲ ପରି କଅଁଳ = ଫୁଲକଅଁଳ
ପର୍ବତ ପରି ଅଟଳ= ପର୍ବତଅଟଳ
ହାଣ୍ଡି ପରି କଳା = ହାଣ୍ଡିକଳା
କନକ ପରି ଗୌର = କନକଗୌର

* ହିମାଳୟ ନାମକ ଅଚଳ (ବିଶେଷ୍ୟ) = ହିମାଳୟାଚଳ = ମଧ୍ୟପଦଲୋପୀ କର୍ମଧାରୟ

**ରୂପକ କର୍ମଧାରୟ ସମାସ :**

ଯେଉଁ ସମାସରେ ଉପମେୟ ଓ ଉପମାନ ମଧ୍ୟରେ ରୂପକ ଅର୍ଥାତ୍ ଅଭେଦ କଳ୍ପନା କରାଯାଇଥାଏ, ତାହାକୁ **ରୂପକ କର୍ମଧାରୟ** ସମାସ କୁହାଯାଏ । ଯଥା-

ସ୍ତ୍ରୀରୂପକ ରତ୍ନ = ସ୍ତ୍ରୀ ରତ୍ନ ।

ଏଠାରେ ସ୍ତ୍ରୀ ଓ ରତ୍ନ ମଧ୍ୟରେ ଅଭେଦ କଳ୍ପିତ ହୋଇଛି, ଅର୍ଥାତ୍ ସ୍ତ୍ରୀ ଓ ରତ୍ନ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଯେ ସ୍ତ୍ରୀ ସେ ରତ୍ନ - ଏହି ଅର୍ଥ ସୂଚିତ ହେଉଛି ।

ଅନ୍ୟ ଉଦାହରଣ-

ମାତୃ ରୂପିଣୀ ଦେବୀ = ମାତୃଦେବୀ
ହୃଦ ରୂପକ ବନ = ହୃଦବନ
ହୃଦୟ ରୂପକ କେଦାର = ହୃଦୟକେଦାର
ଦୁଃଖ ରୂପକ ଅନଳ = ଦୁଃଖାନଳ
ପ୍ରାଣ ରୂପକ ପକ୍ଷୀ = ପ୍ରାଣପକ୍ଷୀ
ଆଶା ରୂପକ ବୀଜ = ଆଶାବୀଜ
ପାପ ରୂପକ ପଙ୍କ = ପାପପଙ୍କ
ସଂସାର ରୂପକ ସାଗର = ସଂସାରସାଗର
ବାରିଦ ରୂପକ ବହିତ୍ର = ବାରିଦବହିତ୍ର
ଯଶଃ ରୂପକ ଧନ = ଯଶୋଧନ
କାମନା ରୂପକ ଅଗ୍ନି = କାମନାଗ୍ନି
ଜ୍ଞାନ ରୂପକ ଆଲୋକ = ଜ୍ଞାନାଲୋକ
ବିଦ୍ୟା ରୂପକ ଧନ = ବିଦ୍ୟାଧନ
ମୁଖ ରୂପକ ଚନ୍ଦ୍ର = ମୁଖଚନ୍ଦ୍ର
ନୟନ ରୂପକ ଉତ୍ପଳ = ନୟନୋତ୍ପଳ
ଭବ ରୂପକ କାରା = ଭବକାରା
ଦାରୁ ରୂପକ ଦେବତା=ଦାରୁଦେବତା
ନିଦ୍ରାରୂପକ ପାରାବାର=ନିଦ୍ରାପାରାବାର
ପିତୃରୂପକ ଦେବ = ପିତୃଦେବ
ଗୁରୁ ରୂପକ ଦେବ = ଗୁରୁଦେବ

| | |
|---|---|
| ଆଚାର୍ଯ୍ୟ ରୂପକ ଦେବ = ଆଚାର୍ଯ୍ୟଦେବ | ଜ୍ଞାନ ରୂପିଣୀ ଦେବୀ = ଜ୍ଞାନଦେବୀ |
| ବାକ୍ ରୂପିଣୀ ଦେବୀ = ବାଗ୍‌ଦେବୀ | କଳୁଷ ରୂପକ ପଙ୍କ = କଳୁଷପଙ୍କ |
| ଜ୍ଞାନ ରୂପକ ଅମୃତ = ଜ୍ଞାନାମୃତ | କାଳ ରୂପକ ପାରାବାର = କାଳପାରାବାର |
| କାଳ ରୂପକ ଚକ୍ର = କାଳଚକ୍ର | ତନୁ ରୂପକ ବଲ୍ଲରୀ = ତନୁବଲ୍ଲରୀ |
| ଦିଗରୂପକ ଅଙ୍ଗନା = ଦିଗଙ୍ଗନା | ଭବରୂପକ ସିନ୍ଧୁ = ଭବସିନ୍ଧୁ |
| ନୀହାର ରୂପକ ମୁକ୍ତା = ନୀହାରମୁକ୍ତା | ମାୟାରୂପକ ମହଲ = ମାୟାମହଲ |
| ନରରୂପକ ନାରାୟଣ = ନରନାରାୟଣ | ଜ୍ଞାନ ରୂପକ ଗଙ୍ଗା = ଜ୍ଞାନଗଙ୍ଗା |
| ବଚନ ରୂପକ ଅମୃତ = ବଚନାମୃତ | ଶସ୍ୟ ରୂପକ ସମ୍ପଦ = ଶସ୍ୟସମ୍ପଦ |
| ପାଦ ରୂପକ ପଦ୍ମ = ପାଦପଦ୍ମ | ଲଜ୍ଜା ରୂପକ ନଦୀ = ଲଜ୍ଜାନଦୀ |
| ଇଚ୍ଛା ରୂପକ ଶକ୍ତି = ଇଚ୍ଛାଶକ୍ତି | ଜଳ ରୂପକ ସମ୍ପଦ = ଜଳସମ୍ପଦ |
| ନାରୀ ରୂପକ ରତ୍ନ = ନାରୀରତ୍ନ | ଆଶା ରୂପକ ଦୀପ = ଆଶାଦୀପ |
| ଶୋକ ରୂପକ ସାଗର = ଶୋକସାଗର | ମନ ରୂପକ ମୀନ = ମନମୀନ |
| ଚିନ୍ତା ରୂପକ ଜଳ = ଚିନ୍ତାଜଳ | ବିଦ୍ୟା ରୂପକ ରତ୍ନ = ବିଦ୍ୟାରତ୍ନ |
| ମନ ରୂପକ ରଥ = ମନୋରଥ | ମନ ରୂପକ ଯାନ = ମନଯାନ |
| କାବ୍ୟ ରୂପକ ଅମୃତ = କାବ୍ୟାମୃତ | ପ୍ରାଣରୂପକ ପୋତ = ପ୍ରାଣପୋତ |
| ଅଜ୍ଞାନ ରୂପକ ଅନ୍ଧକାର = ଅଜ୍ଞାନଅନ୍ଧକାର | ଜୀବନ ରୂପକ ଦୀପ = ଜୀବନଦୀପ |
| ମୋହ ରୂପକ ନିଦ୍ରା = ମୋହନିଦ୍ରା | କର ରୂପକ ପଲ୍ଲବ = କରପଲ୍ଲବ |
| ପଦ ରୂପକ ଅରବିନ୍ଦ = ପଦାରବିନ୍ଦ | ପତି ରୂପକ ଦେବତା = ପତିଦେବତା |
| ମିଥ୍ୟା ରୂପକ ଶୈଳ = ମିଥ୍ୟାଶୈଳ | ଜୀବନ ରୂପକ ଜାହ୍ନବୀ = ଜୀବନଜାହ୍ନବୀ |
| ଲହରୀ ରୂପକ ହାର = ଲହରୀହାର | ଜ୍ଞାନ ରୂପକ ନେତ୍ର = ଜ୍ଞାନନେତ୍ର |
| ସୁଖ ରୂପକ ସାଗର = ସୁଖ ସାଗର | କରୁଣା ରୂପକ ସିନ୍ଧୁ = କରୁଣାସିନ୍ଧୁ |
| ମାନବ ରୂପକ ସମ୍ବଳ = ମାନବସମ୍ବଳ | ଦାରୁ ରୂପକ ବ୍ରହ୍ମ = ଦାରୁବ୍ରହ୍ମ |
| ଶୋକ ରୂପକ ଅଗ୍ନି = ଶୋକାଗ୍ନି | ମୁକ୍ତି ରୂପକ ସୂର୍ଯ୍ୟ = ମୁକ୍ତିସୂର୍ଯ୍ୟ |

**କର୍ମଧାରୟ ସମାସ ସମ୍ବନ୍ଧରେ ଆଉ କେତେକ ଜ୍ଞାତବ୍ୟ ତଥ୍ୟ :**

(କ) କର୍ମଧାରୟ ସମାସରେ 'ମହତ୍' ଶବ୍ଦ 'ମହା' ହୁଏ । ଅର୍ଥାତ୍ ପୂର୍ବପଦରେ ମହତ୍, ମହାନ୍ ଓ ମହତୀ ଥିଲେ, ସମସ୍ତ ପଦରେ ତାହା 'ମହା' ହୋଇଥାଏ । ଯଥା–

ମହତ୍ ଅଟେ ଦାନ = ମହାଦାନ　　ମହତ୍ ଅଟେ ପୁଣ୍ୟ = ମହାପୁଣ୍ୟ

| | |
|---|---|
| ମହତ୍ ଅଟେ ଜନ = ମହାଜନ | ମହତ୍ ଅଟେ ପଦ୍ମ = ମହାପଦ୍ମ |
| ମହାନ୍ ଅଟେ କବି = ମହାକବି | ମହାନ୍ ଅଟେ ଆକାଶ = ମହାକାଶ |
| ମହାନ୍ ଅଟେ ଗ୍ରହ = ମହାଗ୍ରହ | ମହାନ୍ ଅଟେ ଆତ୍ମା = ମହାତ୍ମା |
| ମହାନ୍ ଦେବ = ମହାଦେବ | ମହାନ୍ ପୁରୁଷ = ମହାପୁରୁଷ |
| ମହତୀ ଦେବୀ = ମହାଦେବୀ | ମହତୀ ନଦୀ = ମହାନଦୀ |
| ମହତୀ ନବମୀ = ମହାନବମୀ | ମହତୀ ବାରୁଣୀ = ମହାବାରୁଣୀ |
| ମହତୀ ଲକ୍ଷ୍ମୀ = ମହାଲକ୍ଷ୍ମୀ | ମହତୀ ନଗରୀ = ମହାନଗରୀ |
| ମହାନ ଅଟେ ମୂର୍ଖ = ମହାମୂର୍ଖ | ମହାନ୍ ଅଟେ ପଣ୍ଡିତ = ମହାପଣ୍ଡିତ |
| ମହାନ୍ ଅଟେ ନିଦ୍ରା= ମହାନିଦ୍ରା(ମୃତ୍ୟୁ) | ମହାନ୍ ଅଟେ ବ୍ୟାଧି = ମହାବ୍ୟାଧି |
| ମହାନ୍ ଅଟେ ସାଗର = ମହାସାଗର | ମହାନ୍ ଅଟେ ବୀର = ମହାବୀର |

ମହାନ୍ ଅଟେ ପ୍ରୟାଣ (ପ୍ରସ୍ଥାନ, ମୃତ୍ୟୁ) = ମହାପ୍ରୟାଣ

| | |
|---|---|
| ମହାନ୍ ଅଟେ ରାଷ୍ଟ୍ର = ମହାରାଷ୍ଟ୍ର | ମହାନ୍ ଅଟେ କାବ୍ୟ = ମହାକାବ୍ୟ |
| ମହାନ୍ ଅଟେ ଦୀପ = ମହାଦୀପ | ମହାନ୍ ଅଟେ ଧନ = ମହାଧନ |
| ମହାନ୍ ଅଟେ ପ୍ରସାଦ = ମହାପ୍ରସାଦ | ମହାନ୍ ଅଟେ ଭାରତ = ମହାଭାରତ |
| ମହାନ୍ ଅଟେ ଆକାଶ = ମହାକାଶ | ମହାନ୍ ଅଟେ ନଗର = ମହାନଗର |
| ମହାନ୍ ଅଟେ କର୍ଷଣ = ମହାକର୍ଷଣ | ମହାନ୍ ଅଟେ ଗୁରୁ = ମହାଗୁରୁ |
| ମହାନ୍ ଅଟେ ଦ୍ରୁମ = ମହାଦ୍ରୁମ | ମହାନ୍ ଅଟେ ଆନନ୍ଦ = ମହାନନ୍ଦ |
| ମହାନ୍ ଅଟେ ନାଦ = ମହାନାଦ | ମହତୀ ଅଟେ ବିଦ୍ୟା = ମହାବିଦ୍ୟା |
| ମହାନ୍ ଅଟେ ପୁରୁଷ = ମହାପୁରୁଷ | ମହାନ୍ ଅଟେ ମାରୀ = ମହାମାରୀ |

(ଖ) କର୍ମଧାରୟ ସମାସରେ 'ଅନ୍ୟ' ଶବ୍ଦ ସ୍ଥାନରେ 'ଅନ୍ତର' ହୁଏ । ଏହି 'ଅନ୍ତର' ସମସ୍ତ ପଦର ପରପଦ ରୂପେ ବ୍ୟବହୃତ ହୁଏ ।

| | |
|---|---|
| ଅନ୍ୟ ଦେଶ = ଦେଶାନ୍ତର | ଅନ୍ୟ ପାଠ = ପାଠାନ୍ତର |
| ଅନ୍ୟ ଗ୍ରାମ = ଗ୍ରାମାନ୍ତର | ଅନ୍ୟ ଧର୍ମ = ଧର୍ମାନ୍ତର |
| ଅନ୍ୟ ଜନ୍ମ = ଜନ୍ମାନ୍ତର | ଅନ୍ୟ ଗୃହ = ଗୃହାନ୍ତର |
| ଅନ୍ୟ ଦିନ = ଦିନାନ୍ତର | ଅନ୍ୟ ମନ = ମନାନ୍ତର |
| ଅନ୍ୟ ଗ୍ରହ = ଗ୍ରହାନ୍ତର | ଅନ୍ୟ ନାମ = ନାମାନ୍ତର |
| ଅନ୍ୟ ଭାଷା = ଭାଷାନ୍ତର | ଅନ୍ୟ ମତ = ମତାନ୍ତର |
| ଅନ୍ୟ ରୂପ = ରୂପାନ୍ତର | ଅନ୍ୟ ଭାବ = ଭାବାନ୍ତର |

ଅନ୍ୟ କର୍ମ = କର୍ମାନ୍ତର  ଅନ୍ୟ ଲୋକ = ଲୋକାନ୍ତର
ଅନ୍ୟ କାଳ = କାଳାନ୍ତର
ଅନ୍ୟ ଗୃହ = ଗୃହାନ୍ତର  ଅନ୍ୟ ଯୁଗ = ଯୁଗାନ୍ତର

* କେହି କେହି ଏହାକୁ ଅସ୍ୱପଦବିଗ୍ରହ ନିତ୍ୟସମାସ କହିଥା'ନ୍ତି ।

(ଗ) କୁ ଅଟେ ପୁରୁଷ = କୁପୁରୁଷ / କାପୁରୁଷ, (କୁ = କୁତ୍ସିତ)
କୁ ଅଟେ ଅନ୍ନ = କଦନ୍ନ  କୁ ଅଟେ ପୁତ୍ର = କୁପୁତ୍ର
କୁ ଅଟେ ଅର୍ଥ = କଦର୍ଥ  କୁ ଅଟେ ଚିନ୍ତନ = କୁଚିନ୍ତନ
କୁ ଅଟେ ଅର୍ଥନା = କଦର୍ଥନା(ପୀଡ଼ାଦାନ)  କୁ ଅଟେ ଜନ = କୁଜନ
କୁ ଅଟେ ଅଭ୍ୟାସ = କଦଭ୍ୟାସ  କୁ ଅଟେ ମତି = କୁମତି
କୁ ଅଟେ ଅର୍ଯ୍ୟ = କଦର୍ଯ୍ୟ (ନୀଚ)  କୁ ଅଟେ ଦିନ = କୁଦିନ
କୁ ଅଟେ ଆକାର = କଦାକାର  କୁ ଅଟେ ଗ୍ରହ = କୁଗ୍ରହ
କୁ ଅଟେ ଆଚାର = କଦାଚାର  କୁ ଅଟେ ଭାବନା = କୁଭାବନା
କୁ ଅଟେ ଆଚରଣ = କଦାଚରଣ  କୁ ଅଟେ କାର୍ଯ୍ୟ = କୁକାର୍ଯ୍ୟ
କୁ ଅଟେ ଚିନ୍ତା = କୁଚିନ୍ତା  କୁ ଅଟେ ପରିଚାଳନା = କୁପରିଚାଳନା
କୁ ଅଟେ ସମୟ = କୁସମୟ  କୁ ଅଟେ ଧର୍ମ = କୁଧର୍ମ

** କେତେକ କ୍ଷେତ୍ରରେ 'କୁ' ସ୍ଥାନରେ 'କତ୍' ଆଦେଶ ହୋଇଥାଏ ।

(ଘ) କର୍ମଧାରୟ ସମାସରେ ରାଜନ୍, ଅହନ୍ ଓ ସଖି ଶବ୍ଦ ଯଥାକ୍ରମେ ରାଜ, ଅହ ଓ ସଖ ହୋଇ ପରପଦ ରୂପେ ବ୍ୟବହୃତ ହୁଏ । ଯଥା-
ଯମ ଅଟେ ରାଜା = ଯମରାଜ  ଧାର୍ମିକ ଅଟେ ରାଜା = ଧାର୍ମିକରାଜ
ପୁଣ୍ୟ ଅଟେ ଅହ = ପୁଣ୍ୟାହ  ଧର୍ମ ଅଟେ ରାଜା = ଧର୍ମରାଜ
ପ୍ରିୟ ଅଟେ ସଖା = ପ୍ରିୟସଖ

(ଙ) ପୂର୍ବକାଳ ଓ ପରକାଳ ବୁଝାଇଲେ 'ତ' ପ୍ରତ୍ୟୟାନ୍ତ ପଦଯୁଗ୍ମର କର୍ମଧାରୟ ସମାସ ହୁଏ । ଯଥା-
ପୂର୍ବେ ଯାତ ପରେ ଆୟାତ = ଯାତାୟାତ
ପୂର୍ବେ ଦତ୍ତ ପରେ ଅପହୃତ = ଦତ୍ତାପହୃତ
ପୂର୍ବେ ସୁପ୍ତ ପରେ ଉତ୍‌ଥିତ = ସୁପ୍ତୋତ୍‌ଥିତ
ପୂର୍ବେ ସ୍ନାତ ପରେ ଅନୁଲିପ୍ତ = ସ୍ନାତାନୁଲିପ୍ତ
ପୂର୍ବେ ଭୁକ୍ତ ପରେ ଉଦ୍‌ଗୀର୍ଣ୍ଣ = ଭୁକ୍ତୋଦ୍‌ଗୀର୍ଣ୍ଣ

## ଦ୍ୱିଗୁ ସମାସ

ସଂଖ୍ୟାବାଚକ ପଦ ପୂର୍ବରେ ଥାଇ ପରପଦ (ବିଶେଷ୍ୟ) ସହିତ ସମାସ ହେଲେ ଏବଂ ସମସ୍ତ ପଦ ସମଷ୍ଟି ବା ସମାହାରକୁ ବୁଝାଉଥିଲେ, ତାହାକୁ **ଦ୍ୱିଗୁସମାସ** କୁହାଯାଏ । ଏହି ସମାସର ସମସ୍ତ ପଦରେ କେତେକ ସ୍ଥଳରେ ଅ କାର (।), 'ଇ' କାର ( ି ) ଓ ଈ କାର (ୀ) ର ଯୋଗ ହୋଇଥାଏ । ଯଥା-

ଦୁଇ ଛକର ସମାହାର = ଦୋଛକି

ତ୍ରି ଭୁବନର ସମାହାର = ତ୍ରିଭୁବନ

ତ୍ରି ଫଳର ସମାହାର / ସମଷ୍ଟି = ତ୍ରିଫଳା

ତିନି ମୁହାଣର ସମାହାର = ତିନିମୁହାଣୀ, ତେମୁହାଣୀ, ତିମୁହାଣି

ତିନି ଲୋକର ସମାହାର = ତ୍ରିଲୋକ / ତ୍ରିଲୋକୀ

ଚଉ ପଦର ସମାହାର = ଚଉପଦୀ

ପଞ୍ଚ ବଟର ସମାହାର = ପଞ୍ଚବଟୀ

ସାତ ସମୁଦ୍ରର ସମାହାର = ସାତସମୁଦ୍ର

ଅଷ୍ଟ ପ୍ରହରର ସମାହାର = ଅଷ୍ଟପ୍ରହର

ତ୍ରିବେଣୀ(ସ୍ରୋତ,ପ୍ରବାହ)ର ସମାହାର=ତ୍ରିବେଣୀ

ତ୍ରି ନାଥର ସମାହାର=ତ୍ରିନାଥ

ଚାରିଦ୍ୱାରର ସମାହାର = ଚୌଦ୍ୱାର

ଚାରିଯୁଗର ସମାହାର = ଚତୁର୍ଯ୍ୟୁଗ

ଚାରି ପଦର ସମାହାର=ଚତୁଷ୍ପଦୀ,ଚଉପଦୀ

ନବରାତ୍ରିର ସମାହାର=ନବରାତ୍ର

ଚାରି ଧାମର ସମାହାର = ଚତୁର୍ଧାମ

ଷଟ୍‌ଋତୁର ସମାହାର = ଷଡ଼ଋତୁ

ନବଗ୍ରହର ସମାହାର = ନବଗ୍ରହ

ନବ ରତ୍ନର ସମାହାର = ନବରତ୍ନ

ଦଶଦିଗର ସମାହାର = ଦଶଦିଗ

ଦଶମୂଳର ସମାହାର = ଦଶମୂଳ

ଦଶବିଦ୍ୟାର ସମାହାର = ଦଶବିଦ୍ୟା

ଚତୁଃ ପଥର ସମାହାର = ଚତୁଷ୍ପଥ

ପଞ୍ଚ ନଦର ସମାହାର = ପଞ୍ଚନଦ (ନଦ - ପୁଂଲିଙ୍ଗ / ନଦୀ- ସ୍ତ୍ରୀ.)

ଚାରି ମୁହାଣର ସମାହାର = ଚଉମୁହାଣୀ

ତେର ନଈର ସମାହାର = ତେରନଈ

ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ସମାହାର = ଚତୁର୍ଦ୍ଦଶବ୍ରହ୍ମାଣ୍ଡ

ତ୍ରି ପୁରର ସମାହାର=ତ୍ରିପୁର

ଚାରି ସୋରାର ସମାହାର = ଚଉସରି

ପଞ୍ଚ ଗଙ୍ଗାର ସମାହାର = ପଞ୍ଚଗଙ୍ଗା

ପଞ୍ଚ ଲବଣର ସମାହାର = ପଞ୍ଚଲବଣ

ତ୍ରିପିଟକର ସମାହାର = ତ୍ରିପିଟକ

ବାଇଶ ପାହାଚର ସମାହାର = ବାଇଶପାହାଚ

ପଞ୍ଚ ଗବ୍ୟର ସମଷ୍ଟି = ପଞ୍ଚଗବ୍ୟ

ପଞ୍ଚ ଗ୍ରାସର ସମାହାର=ପଞ୍ଚଗ୍ରାସୀ, ପଞ୍ଚୁଗ୍ରାସୀ

ସପ୍ତ ଅହର ସମାହାର = ସପ୍ତାହ

ଅଷ୍ଟ ରତ୍ନର ସମାହାର = ଅଷ୍ଟରତ୍ନ

ତ୍ରି ଦୋଷର ସମାହାର = ତ୍ରିଦୋଷ

ପଞ୍ଚ ଅମୃତର ସମାହାର = ପଞ୍ଚାମୃତ ପଞ୍ଚ ଇନ୍ଦ୍ରିୟର ସମାହାର = ପଞ୍ଚେନ୍ଦ୍ରିୟ
ପଞ୍ଚ ପାଣ୍ଡବଙ୍କର ସମାହାର = ପଞ୍ଚପାଣ୍ଡବ, ପଞ୍ଚୁପାଣ୍ଡବ
ପଞ୍ଚ ସଖାଙ୍କର ସମାହାର = ପଞ୍ଚସଖା ସାତ ଭାଇର ସମାହାର= ସାତଭାୟା
ପଞ୍ଚଦୋଳର ସମାହାର = ପଞ୍ଚଦୋଳ, ପଞ୍ଚୁଦୋଳ
ସପ୍ତଋଷିଙ୍କ ସମାହାର = ସପ୍ତର୍ଷି ପାଞ୍ଚ କଥାର ସମଷ୍ଟି = ପାଞ୍ଚକଥା
ଷଟ୍ ରିପୁର ସମାହାର = ଷଟ୍‌ରିପୁ ତ୍ରିପଦର ସମାହାର = ତ୍ରିପଦୀ
ଶତ ଅବ୍ଦର ସମାହାର = ଶତାବ୍ଦୀ ସପ୍ତ ଅହର ସମାହାର = ସପ୍ତାହ
ଅଷ୍ଟ ନାଗର ସମାହାର = ଅଷ୍ଟନାଗ ଅଷ୍ଟ ସିଦ୍ଧିର ସମାହାର = ଅଷ୍ଟସିଦ୍ଧି
ପଞ୍ଚ ପରମେଶ୍ୱରର ସମାହାର=ପଞ୍ଚପରମେଶ୍ୱର ତ୍ରିଗୁଣର ସମାହାର = ତ୍ରିଗୁଣ
ଚତୁଃ ବର୍ଗର ସମାହାର = ଚତୁର୍ବର୍ଗ ପଞ୍ଚ ଦେବଙ୍କର ସମାହାର= ପଞ୍ଚଦେବ
ଅଣଚାଶ ପବନର ସମାହାର = ଅଣଚାଶପବନ
ପଞ୍ଚ ଭୂତର ସମାହାର = ପଞ୍ଚଭୂତ ଷଟ୍ ମାସର ସମାହାର = ଷଣ୍ମାସ

## ଦ୍ୱନ୍ଦ୍ୱ ସମାସ

ଯେଉଁ ସମାସରେ ପ୍ରତ୍ୟେକ ସମସ୍ୟମାନ ପଦର ଅର୍ଥର ପ୍ରାଧାନ୍ୟ ଥାଏ, ତାହାକୁ **ଦ୍ୱନ୍ଦ୍ୱ ସମାସ** କହନ୍ତି ।

ଏହି ସମାସରେ ଦୁଇରୁ ଅଧିକ ସମସ୍ୟମାନପଦକୁ ନେଇ ସମାସ କରାଯାଇଥାଏ । ବ୍ୟାସବାକ୍ୟରେ ସମସ୍ୟମାନ ପଦମାନଙ୍କ ମଧ୍ୟରେ 'ଓ', 'ଏବଂ' ପ୍ରଭୃତି ସଂଯୋଜକ ଅବ୍ୟୟର ବ୍ୟବହାର ହୋଇଥାଏ । ଦ୍ୱନ୍ଦ୍ୱସମାସରେ ଦୁଇ ବା ତତୋଽଧିକ ବିଶେଷ୍ୟ ପଦର ଅଥବା ବିଶେଷଣ ପଦର ସମାସ ହୋଇଥାଏ ।

ଯଥା- **ପ୍ରତ୍ୟେକ ପଦ ବିଶେଷ୍ୟ-**

ପୁଅ ଓ ଝିଅ = ପୁଅଝିଅ ରୂପ, ବିଦ୍ୟା ଏବଂ ବିଭବ = ରୂପବିଦ୍ୟାବିଭବ
ଛାତ୍ର ଓ ଛାତ୍ରୀ = ଛାତ୍ରଛାତ୍ରୀ ସତ୍ୟ, ଶିବ ଓ ସୁନ୍ଦର = ସତ୍ୟ-ଶିବ-ସୁନ୍ଦର
ବାପା ଓ ମା = ବାପାମା ଧର୍ମ, ଅର୍ଥ, କାମ ଓ ମୋକ୍ଷ = ଧର୍ମାର୍ଥକାମମୋକ୍ଷ
ଦେବ ଓ ଅସୁର = ଦେବାସୁର ଧୂପ, ଦୀପ ଓ ନୈବେଦ୍ୟ = ଧୂପଦୀପନୈବେଦ୍ୟ
ଦିନ ଓ ରାତି = ଦିନରାତି ଧନ, ଜନ, ଗୋପ ଓ ଲକ୍ଷ୍ମୀ = ଧନଜନଗୋପଲକ୍ଷ୍ମୀ
ସୀତା ଓ ରାମ = ସୀତାରାମ କାଳି, କଲମ ଓ କାଗଜ = କାଳିକଲମକାଗଜ
ହରି ଓ ହର = ହରିହର ଟିଭି, ରେଡିଓ ଓ ଫ୍ରିଜ୍ = ଟିଭିରେଡିଓଫ୍ରିଜ୍

ସୁଖ ଓ ଦୁଃଖ = ସୁଖଦୁଃଖ  ସୂର୍ଯ୍ୟ, ଚନ୍ଦ୍ର ଓ ତାରା = ସୂର୍ଯ୍ୟଚନ୍ଦ୍ରତାରା

ଶଙ୍ଖା ଓ ସିନ୍ଦୂର = ଶଙ୍ଖାସିନ୍ଦୂର  ଶିବ ଓ କେଶବ = ଶିବକେଶବ

ପାନ, ଗୁଆ ଓ ଗୁଣ୍ଡି = ପାନଗୁଆଗୁଣ୍ଡି  ସଂଜ ଓ ସକାଳ = ସଂଜସକାଳ

କବି ଓ ଲେଖକ = କବିଲେଖକ  ପଶୁ ଓ ପକ୍ଷୀ = ପଶୁପକ୍ଷୀ

ଲକ୍ଷ୍ମୀ ଓ ନାରାୟଣ = ଲକ୍ଷ୍ମୀନାରାୟଣ  ଆୟ ଓ ବ୍ୟୟ = ଆୟବ୍ୟୟ

ଭୀମ ଓ କାନ୍ତ = ଭୀମକାନ୍ତ  ପାନ, ଗୁଆ, ଚୂନ ଓ ଖଇର = ପାନଗୁଆଚୂନଖଇର

ବିରି, ଚାଉଳ ଓ ମୁଗ = ବିରିଚାଉଳମୁଗ  ଆଳୁ ଓ ବାଇଗଣ = ଆଳୁବାଇଗଣ

ମାଛ ଓ ମାଂସ = ମାଛମାଂସ  ଜଳ ଓ ବାୟୁ = ଜଳବାୟୁ

ବାଟ ଓ ଘାଟ = ବାଟଘାଟ  ବୃକ୍ଷ ଓ ଲତା = ବୃକ୍ଷଲତା

ଆକାଶ ଓ ଅବନୀ = ଆକାଶଅବନୀ  ଗାଡ଼ି ଓ ଘୋଡ଼ା = ଗାଡ଼ିଘୋଡ଼ା

ବିକା ଓ କିଣା = ବିକାକିଣା  ଭାଇ ଓ ଭଉଣୀ = ଭାଇଭଉଣୀ

ଚର ଓ ଅଚର = ଚରାଚର  ଗମନ ଓ ଆଗମନ = ଗମନାଗମନ

ହାତ ଓ ଗୋଡ଼ = ହାତଗୋଡ଼  ଅଜା ଓ ନାତି = ଅଜାନାତି

ପ୍ୟାଣ୍ଟ ଓ ସାର୍ଟ = ପ୍ୟାଣ୍ଟସାର୍ଟ  ପାପ ଓ ପୁଣ୍ୟ = ପାପପୁଣ୍ୟ

ହରି ଓ ହର = ହରିହର  ଅଳୁ, ସାରୁ, କଦଳୀ ଓ ବାଇଗଣ = ଆଳୁସାରୁକଦଳୀବାଇଗଣ

ଲାଭ ଓ କ୍ଷତି = ଲାଭକ୍ଷତି  ଲେଖା ଓ ପଢ଼ା = ଲେଖାପଢ଼ା

ରାଧା ଓ କୃଷ୍ଣ = ରାଧାକୃଷ୍ଣ  ଫୁଲ ଓ ଫଳ = ଫୁଲଫଳ

ନର ଓ ନାରୀ = ନରନାରୀ  ଚାକର ଓ ଚାକରାଣୀ = ଚାକରଚାକରାଣୀ

ମୁଢ଼ି ଓ ଉଖୁଡ଼ା = ମୁଢ଼ିଉଖୁଡ଼ା  ବର ଓ ବଧୂ = ବରବଧୂ

ଆଳୁ ଓ ବାଇଗଣ = ଆଳୁବାଇଗଣ  ପିତାଓ ମାତା = ପିତାମାତା

ଦୁଧ, ଦହି, ଖିର ଓ ଛେନା = ଦୁଧ ଦହି ଖିର ଛେନା  ପାଣି ଓ ପବନ = ପାଣିପବନ

ସାଗର ଓ ସରିତ = ସାଗର ସରିତ  ରାମ ଓ କୃଷ୍ଣ = ରାମକୃଷ୍ଣ

ବିଦ୍ୟା ଓ ବୁଦ୍ଧି = ବିଦ୍ୟାବୁଦ୍ଧି  ଆଷାଢ଼ ଓ ଶ୍ରାବଣ = ଆଷାଢ଼ଶ୍ରାବଣ

ଗାଈ ଓ ଗୋରୁ = ଗାଈଗୋରୁ  ଗୁରୁ ଓ ଶିଷ୍ୟ = ଗୁରୁଶିଷ୍ୟ

ଶୀତ ଓ ବସନ୍ତ = ଶୀତ ବସନ୍ତ  ରାଜା ଓ ରାଣୀ = ରାଜାରାଣୀ

ମାମୁ ଓ ଭଣଜା = ମାମୁ ଭଣଜା  ପୁଅ ଓ ବୋହୂ = ପୁଅବୋହୂ

ଶୁଆ ଓ ଶାରି = ଶୁଆଶାରି  କୁଆ ଓ କୋଇଲି = କୁଆକୋଇଲି

ମଶା ଓ ମାଛି = ମଶାମାଛି

ପ୍ରତ୍ୟେକ ପଦ ବିଶେଷଣ-

| | |
|---|---|
| ବୃଦ୍ଧ ଓ ତରୁଣ = ବୃଦ୍ଧତରୁଣ | ସାନ ଓ ବଡ଼ = ସାନବଡ଼ |
| ପିଲା ଓ ବୁଢ଼ା = ପିଲାବୁଢ଼ା | କଳା ଓ ଧଳା = କଳାଧଳା |
| ନୂଆ ଓ ପୁରୁଣା = ନୂଆପୁରୁଣା | ଦୁଷ୍ଟ ଓ ଶିଷ୍ଟ = ଦୁଷ୍ଟଶିଷ୍ଟ |
| ଭଲ ଓ ମନ୍ଦ = ଭଲମନ୍ଦ | କଞ୍ଚା ଓ ପାଚିଲା = କଞ୍ଚାପାଚିଲା |
| ଓଦା ଓ ଶୁଖିଲା = ଓଦାଶୁଖିଲା | ମୋଟା ଏବଂ ପତଳା = ମୋଟାପତଳା |
| ବଙ୍କା ଓ ସିଧା = ବଙ୍କାସିଧା | ହିତ ଓ ଅହିତ = ହିତଅହିତ |
| ଭୁଲ ଓ ଠିକ୍ = ଭୁଲଠିକ୍ | ଡେଙ୍ଗା ଓ ବାଙ୍ଗରା = ଡେଙ୍ଗାବାଙ୍ଗରା |
| ଧନୀ ଓ ଦରିଦ୍ର = ଧନୀଦରିଦ୍ର | ବୁଢ଼ା ଓ ବୁଢ଼ୀ = ବୁଢ଼ାବୁଢ଼ୀ |
| ସତ ଓ ମିଛ = ସତମିଛ | ମଲା ଓ ଜୀଅନ୍ତା = ମଲାଜୀଅନ୍ତା |
| ବଡ଼ ଓ ସାନ = ବଡ଼ ସାନ | ମୂର୍ଖ ଓ ପଣ୍ଡିତ = ମୂର୍ଖପଣ୍ଡିତ |
| ସତୁଆ ଓ ମିଛୁଆ = ସତୁଆମିଛୁଆ | ନ୍ୟୂନ ଓ ଅଧିକ = ନ୍ୟୂନାଧିକ |

ଦ୍ୱନ୍ଦ୍ୱ ସମାସରେ କେତେକ ଶବ୍ଦର ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ ।

| | |
|---|---|
| ଅହନ୍ ଓ ରାତ୍ରି = ଅହୋରାତ୍ର | ଜାୟା ଓ ପତି = ଦମ୍ପତି, ଜମ୍ପତି |
| ଅହନ୍ ଓ ନିଶା = ଅହର୍ନିଶ | ପର ଓ ପର = ପରସ୍ପର |
| ରାତ୍ରି ଓ ଦିବା = ରାତ୍ରିଦିବ | କୁଶ ଓ ଲବ = କୁଶୀଲବ / କୁଶଲବ |
| ମିତ୍ର ଓ ବରୁଣ = ମିତ୍ରାବରୁଣ | ଦିବା ଓ ରାତ୍ରି = ଦିବାରାତ୍ର |

## ବହୁବ୍ରୀହି ସମାସ

ନୀଳ କଣ୍ଠରେ ଯାହାଙ୍କର ସେ = ନୀଳକଣ୍ଠ (ମହାଦେବ)

'ନୀଳ' ଓ 'କଣ୍ଠ' ଏହି ସମସ୍ୟମାନ ପଦ ଦୁଇଟିର ମିଳନରେ 'ନୀଳକଣ୍ଠ' ପଦଟି ନିଷ୍ପନ୍ନ ହୋଇଛି; ମାତ୍ର 'ନୀଳକଣ୍ଠ' ସମସ୍ତ ପଦଟି 'ନୀଳ' ଅଥବା 'କଣ୍ଠ' ବୁଝାଉନାହିଁ । ସେହି ଅର୍ଥବିଶିଷ୍ଟ ଅନ୍ୟ ଏକ ପଦର ଅର୍ଥକୁ ପ୍ରକାଶ କରୁଛି । ଅର୍ଥାତ୍ ନୀଳକଣ୍ଠ ଅର୍ଥ 'ମହାଦେବ' ।

ସେହିପରି- ଶୁକ୍ଳ ଅମ୍ବର ଯାହାର ସେ = ଶୁକ୍ଳାମ୍ବର (ବିଷ୍ଣୁ)

ଏଠାରେ ଶୁକ୍ଳାମ୍ବର ସମାସଟି ଶୁକ୍ଳ (ଧଳା) ଓ ଅମ୍ବର (ଲୁଗା)କୁ ନ ବୁଝାଇ ଧଳାଲୁଗା ପିନ୍ଧୁଥିବା ବିଷ୍ଣୁଙ୍କୁ ବୁଝାଉଅଛି ।

ଯେଉଁ ସମାସରେ ସମସ୍ତ ପଦ ସମସ୍ୟମାନ ପଦମାନଙ୍କ ଭିତରୁ କାହାରିକୁ ନ ବୁଝାଇ ତଦର୍ଥବିଶିଷ୍ଟ ଅନ୍ୟ କାହାକୁ ବୁଝାଏ, ତାହାକୁ **ବହୁବ୍ରୀହି** ସମାସ କୁହାଯାଏ। ଅର୍ଥକୁ ନେଇ ବିଗ୍ରହ ବାକ୍ୟ ଭିନ୍ନ ଭିନ୍ନ ହୋଇଥାଏ। ଯଥା-

ଷଟ୍ ଆନନ ଯାହାଙ୍କର ସେ = ଷଡ଼ାନନ (କାର୍ତ୍ତିକେୟ)

ଚକ୍ର ପାଣିରେ ଯାହାର ସେ = ଚକ୍ରପାଣି (ନାରାୟଣ)

ନୀଳ ଅମ୍ବର ଯାହାଙ୍କର ସେ = ନିଳାମ୍ବର (ବଳରାମ)

ତ୍ରିଲୋଚନ ଯାହାର ସେ = ତ୍ରିଲୋଚନ (ଶିବ)

ବିଡ଼ାଳର ଅକ୍ଷି ପରି ଅକ୍ଷି ଯାହାର ସେ = ବିଡ଼ାଳାକ୍ଷ (ଅସୁର)

କୃତ ହୋଇଛି କାର୍ଯ୍ୟ ଯାହାଦ୍ୱାରା = କୃତକାର୍ଯ୍ୟ (ବ୍ୟକ୍ତିବିଶେଷ)

ବହୁବ୍ରୀହି ସମାସନିଷ୍ପନ୍ନ ପଦ ସର୍ବଦା ବିଶେଷଣ। ସମସ୍ୟମାନ ପଦମାନଙ୍କରେ ବିଭକ୍ତି ଦୃଷ୍ଟିରୁ ଏହାକୁ ପ୍ରଥମେ ଦୁଇଭାଗରେ ବିଭକ୍ତ କରାଯାଏ। ଯଥା-

**୧। ସମାନାଧିକରଣ ବା ସମବିଭକ୍ତିକ ବହୁବ୍ରୀହି :**

ଏଥିରେ ପୂର୍ବପଦ ଓ ପରପଦ ଏକ ବିଭକ୍ତ୍ୟନ୍ତ ହୋଇଥା'ନ୍ତି। ଯଥା-

ପୀତ ଅମ୍ବର ଯାହାର ସେ = ପୀତାମ୍ବର

ଦଶ ଆନନ ଯାହାର ସେ = ଦଶାନନ

ପୀତ, ଅମ୍ବର, ଦଶ, ଆନନ ସମସ୍ୟମାନ ପଦଗୁଡ଼ିକ ସମାନ ଆଧାରରେ ଅର୍ଥାତ୍ ସମାନ ବିଭକ୍ତି ବା ରୂପରେ ଅଛନ୍ତି। ଏଣୁ 'ପୀତାମ୍ବର' ଓ 'ଦଶାନନ' ସମାନାଧିକରଣ ବହୁବ୍ରୀହି। ଏହି ସମାସରେ ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ।

ନୀଳ ଅମ୍ବର ଯାହାର ସେ = ନୀଳାମ୍ବର (ବଳରାମ)

ଚକାଡୋଳା ଯାହାର ସେ = ଚକାଡୋଳା (ଜଗନ୍ନାଥ)

ଚଉବାହା ଯାହାର ସେ = ଚଉବାହା (ନାରାୟଣ)

ଚକାଆଖି ଯାହାର ସେ = ଚକାଆଖି (ଜଗନ୍ନାଥ)

ମହାନ୍ ବାହୁ ଯାହାର ସେ = ମହାବାହୁ (ଜଗନ୍ନାଥ)

ଚତୁଃ ଭୁଜ ଯାହାରସେ = ଚତୁର୍ଭୁଜ (ବିଷ୍ଣୁ)

ଜିତ ଇନ୍ଦ୍ରିୟ ଯାହାର ସେ = ଜିତେନ୍ଦ୍ରିୟ

ବାଙ୍କ ଚୂଳ ଯାହାର ସେ = ବାଙ୍କଚୂଳିଆ

ହତ ହୋଇଛି ଆଶା ଯାହାର ସେ = ହତାଶ

ତ୍ରିଲୋଚନ ଯାହାର ସେ = ତ୍ରିଲୋଚନ

ସ୍ଥିତ (ସ୍ଥିର) ପ୍ରଜ୍ଞାଯାହାର ସେ = ସ୍ଥିତପ୍ରଜ୍ଞ

ବିରୂପ ଅକ୍ଷି ଯାହାର ସେ = ବିରୂପାକ୍ଷ (ଶିବ)

ସରଳ ମନ ଯାହାର ସେ = ସରଳମନା

ଲମ୍ବ ଉଦର ଯାହାର ସେ = ଲମ୍ବୋଦର    ଲମ୍ବକର୍ଣ୍ଣ ଯାହାର ସେ = ଲମ୍ବକର୍ଣ୍ଣ

ଊର୍ଣ୍ଣା ନାଭିରେ ଯାହାର ସେ = ଊର୍ଣ୍ଣନାଭ (ବୁଢ଼ିଆଣୀ, ମାଙ୍କଡ଼ସା)

ଉକୁଣି ମୁଣ୍ଡରେ ଯାହାର ସେ = ଉକୁଣିମୁଣ୍ଡୀ

ପଞ୍ଚଆନନ ଯାହାର ସେ = ପଞ୍ଚାନନ    ଦୀର୍ଘ ହସ୍ତ ଯାହାର ସେ = ଦୀର୍ଘହସ୍ତ

ପୂତ ନୀର ଯାହାର ସେ (ସ୍ତ୍ରୀ) = ପୂତନୀରା

ଦିକ୍ ଅମ୍ବର ଯାହାର ସେ = ଦିଗମ୍ବର (ଶିବ)

ଦିଗ ବାସ ଯାହାର ସେ = ଦିଗବାସ (ଶିବ)

ପୁଣ୍ୟ ତୋୟ ଯାହାର ସେ (ସ୍ତ୍ରୀ.) = ପୁଣ୍ୟତୋୟା

ମହାନ୍ ଆତ୍ମା ଯାହାର ସେ = ମହାତ୍ମା    ସ୍ୱଳ୍ପ ଆୟୁ ଯାହାର ସେ = ସ୍ୱଳ୍ପାୟୁ

ବିଗତ ପତ୍ନୀ ଯାହାର ସେ = ବିପତ୍ନୀକ    ଦ୍ୱିପତ୍ନୀ ଯାହାର ସେ = ଦ୍ୱିପତ୍ନୀକ

ଗରୁଡ଼ ଆସନ ଯାହାର ସେ = ଗରୁଡ଼ାସନ (ବିଷ୍ଣୁ)

ଗମ୍ଭୀର ନାଦ ଯାହାର ସେ = ଗମ୍ଭୀରନାଦ

୨ । **ବ୍ୟଧିକରଣ ବହୁବ୍ରୀହି ବା ଭିନ୍ନବିଭକ୍ତିକ ବହୁବ୍ରୀହି :**

ଯଥା -    ବୀଣା ପାଣିରେ ଯାହାର ସେ = ବୀଣାପାଣି

ଚନ୍ଦ୍ର ଶେଖରରେ ଯାହାର ସେ = ଚନ୍ଦ୍ରଶେଖର

'ବୀଣା' ପ୍ରଥମା ବିଭକ୍ତି, 'ପାଣିରେ' ସପ୍ତମୀ ବିଭକ୍ତି, 'ଚନ୍ଦ୍ର' ପ୍ରଥମା ବିଭକ୍ତି ଓ 'ଶେଖରରେ' ସପ୍ତମୀ ବିଭକ୍ତି ହୋଇଛି । ସୁତରାଂ ସମସ୍ୟମାନ ପଦଗୁଡ଼ିକ ସମାନ ବିଭକ୍ତିରେ ବା ରୂପରେ ନ ଥିବାରୁ ବୀଣାପାଣି ଓ ଚନ୍ଦ୍ରଶେଖର ବ୍ୟଧିକରଣ ବହୁବ୍ରୀହି ସମାସ ।

କୃତ ହୋଇଛି କର୍ମ ଯାହାଦ୍ୱାରା = କୃତକର୍ମା

ଚକ୍ର ପାଣିରେ ଯାହାର ସେ = ଚକ୍ରପାଣି (ବିଷ୍ଣୁ)

ଶଙ୍ଖ ହସ୍ତରେ ଯାହାର ସେ = ଶଙ୍ଖହସ୍ତ (ବିଷ୍ଣୁ)

କମ୍ବୁ(ଶଙ୍ଖ) ପାଣିରେ ଯାହାର ସେ = କମ୍ବୁପାଣି (ବିଷ୍ଣୁ)

ଗଦା ପାଣିରେ ଯାହାର ସେ = ଗଦାପାଣି (ବିଷ୍ଣୁ)
ଚନ୍ଦ୍ର ଚୂଡ଼ାରେ ଯାହାର ସେ = ଚନ୍ଦ୍ରଚୂଡ଼ (ଶିବ)
ପଦ୍ମନାଭିରେ ଯାହାର ସେ = ପଦ୍ମନାଭ (ବିଷ୍ଣୁ)
କୁଶ ପାଣିରେ ଯାହାର ସେ = କୁଶପାଣି (ବ୍ରହ୍ମା)
ଦଣ୍ଡ ପାଣିରେ ଯାହାର ସେ = ଦଣ୍ଡପାଣି (ରାଜା, ଯମ)
ଶୂଳ ପାଣିରେ ଯାହାର ସେ = ଶୂଳ ପାଣି (ଶିବ)
ଲଗୁଡ଼ (ବାଡ଼ି, ଠେଙ୍ଗା) ହସ୍ତରେ ଯାହାର ସେ = ଲଗୁଡ଼ହସ୍ତ
କପି ଧ୍ୱଜାରେ ଯାହାର ସେ = କପିଧ୍ୱଜ (ନନ୍ଦିଘୋଷ)
ଧନୁଃ ପାଣିରେ ଯାହାର ସେ = ଧନୁଷ୍ପାଣି
ସାରଗର୍ଭରେ ଯାହାର ସେ = ସାରଗର୍ଭକ
ନିନ୍ଦା ଗର୍ଭରେ ଯାହାର ସେ = ନିନ୍ଦାଗର୍ଭକ    ମହତ୍ ଯଶ ଯାହାର = ମହାଯଶା
ପୀତ ଅମ୍ବର ଯାହାର ସେ = ପୀତାମ୍ବର (ଶ୍ରୀକୃଷ୍ଣ)
ନଦୀ ମାତା ଯାହାର ସେ (ସ୍ତ୍ରୀ.) = ନଦୀମାତୃକା
ନଦୀ ମାତା ଯାହାର ସେ (ପୁଂ.) = ନଦୀମାତୃକ (ଦେଶ)
ପିନାକ ଧନୁ ଯାହାଙ୍କର ସେ = ପିନାକଧନ୍ୱା
ପିନାକ ପାଣିରେ ଯାହାଙ୍କର ସେ = ପିନାକପାଣି (ଶିବ)
ପୁଷ୍ପ ଧନୁ ଯାହାଙ୍କର ସେ = ପୁଷ୍ପଧନ୍ୱା    ଶାର୍ଙ୍ଗଧନୁ ଯାହାଙ୍କର ସେ = ଶାର୍ଙ୍ଗଧନ୍ୱା
ଯୁବତୀ ଜାୟା ଯାହାର ସେ = ଯୁବଜାନି    ବିଶାଳ ଅକ୍ଷି ଯାହାର ସେ = ବିଶାଳାକ୍ଷ

**୩ । ଉପମିତ ବହୁବ୍ରୀହି ବା ମଧ୍ୟପଦଲୋପୀ ବହୁବ୍ରୀହି :**

ଯେଉଁ ବହୁବ୍ରୀହି ସମାସରେ ପୂର୍ବପର ଉପମାନ ସହ ପରପଦ ଉପମେୟର ସମାସ ହୁଏ, ସମସ୍ତ ପଦରେ ଉପମାନର ଅଂଶବିଶେଷ ଲୋପପାଏ ଏବଂ ସମସ୍ତ ପଦ ଅନ୍ୟାର୍ଥକୁ ବୁଝାଏ, ତାହାକୁ **ଉପମିତ ବହୁବ୍ରୀହି** ବା **ମଧ୍ୟପଦଲୋପୀ** ବହୁବ୍ରୀହି କହନ୍ତି ।

ଯଥା- ଘୋଡ଼ାର ମୁହଁ ପରି ମୁହଁ ଯାହାର ସେ = ଘୋଡ଼ାମୁହାଁ ।

ଏଠାରେ 'ଘୋଡ଼ାର ମୁହଁ' ଉପମାନ; 'ମୁହଁ' ଉପମେୟ । ସମସ୍ତ ପଦରେ 'ମୁହଁପରି' ଉପମାନର ଏକ ଅଂଶ ଲୋପପାଇଛି । ଅବଶିଷ୍ଟ ଉପମାନ 'ଘୋଡ଼ା' ସହିତ ପରବର୍ତ୍ତୀ 'ମୁହଁ' ଉପମେୟର ସମାସ ହୋଇଛି । ଏଣୁ ଏହା ଉପମିତ ବହୁବ୍ରୀହି ସମାସ ବା ମଧ୍ୟପଦଲୋପୀ ବହୁବ୍ରୀହି ସମାସ ଅଟେ । ସେହିପରି-

ବଣିର ବେକପରି ବେକ ଯାହାର ସେ = ବଣିବେକା
ଓଟର ମୁହଁପରି ମୁହଁ ଯାହାର ସେ = ଓଟମୁହାଁ
ପିକର ବଚନ ପରି ବଚନ ଯାହାର ସେ (ସ୍ତ୍ରୀ) = ପିକବଚନ / ପିକବଚନୀ
ଗଜର ଗମନ ପରି ଗମନ ଯାହାର ସେ (ସ୍ତ୍ରୀ) = ଗଜଗମନା / ଗଜଗମନୀ
ଚିଲର ଆଖି ପରି ଆଖି ଯାହାର ସେ = ଚିଲଆଖିଆ
ବିମ୍ବ ପରି ଅଧର ଯାହାର ସେ = ବିମ୍ବାଧର (ସ୍ତ୍ରୀ-ବିମ୍ବାଧରୀ)
ଚନ୍ଦ୍ର ସଦୃଶ ମୁଖ ଯାହାର ସେ = ଚନ୍ଦ୍ରମୁଖ (ସ୍ତ୍ରୀ-ଚନ୍ଦ୍ରମୁଖୀ)
ଗରୁଡ଼ର ନାକ ପରି ନାକ ଯାହାର ସେ = ଗରୁଡ଼ନାକା
ପୁଣ୍ଡରୀକ ପରି ଅକ୍ଷି ଯାହାର = ପୁଣ୍ଡରୀକାକ୍ଷ
ମରାଳର ଗମନ ପରି ଗମନ ଯାହାର (ସ୍ତ୍ରୀ) = ମରାଳଗମନା
ହଂସର ଗମନ ପରି ଗମନ ଯାହାର (ସ୍ତ୍ରୀ) - ହଂସଗମନା
ସିଂହର କଟି ପରି କଟି ଯାହାର ସେ = ସିଂହକଟି
ମୃଗରନୟନ ପରିନୟନ ଯାହାର (ସ୍ତ୍ରୀ.) = ମୃଗନୟନା
ମୀନର ନୟନ ପରିନୟନ ଯାହାର (ସ୍ତ୍ରୀ.) = ମୀନନୟନା
କୁରଙ୍ଗ ନୟନ ପରି ନୟନ ଯାହାର (ସ୍ତ୍ରୀ.) = କୁରଙ୍ଗନୟନା, କୁରଙ୍ଗନୟନୀ
ବାଘର ମୁହଁ ପରି ମୁହଁ ଯାହାର ସେ = ବାଘମୁହାଁ
ପେଚାର ନାକ ପରି ନାକ ଯାହାର ସେ (ସ୍ତ୍ରୀ.) = ପେଚାନାକୀ
କୁନ୍ଦ ପରି ଦନ୍ତ ଯାହାର ସେ (ସ୍ତ୍ରୀ.) = କୁନ୍ଦଦନ୍ତୀ
ଚନ୍ଦ୍ରର କାନ୍ତି ପରି କାନ୍ତି ଯାହାର ସେ = ଚନ୍ଦ୍ରକାନ୍ତି
ମାଗୁରର ନିଶ ପରି ନିଶ ଯାହାର ସେ = ମାଗୁରନିଶୁଆ
ହରିଣର ବେକ ପରି ବେକ ଯାହାର ସେ = ହରିଣବେକା
ସୂର୍ପ ପରି ନଖ ଯାହାର = ସୂର୍ପଣଖା
ହାତୀର କାନ ପରି କାନ ଯାହାର ସେ = ହାତୀକାନିଆ
ଶୁଆର ନାକ ପରି ନାକ ଯାହାର ସେ = ଶୁଆନାକିଆ
ପେଚାର ଆଖି ପରି ଆଖି ଯାହାର ସେ = ପେଚାଆଖିଆ
ଡେଙ୍ଗେଇର ଗୋଡ଼ ପରି ଗୋଡ଼ ଯାହାର ସେ (ସ୍ତ୍ରୀ) = ଡେଙ୍ଗେଇଗୋଡ଼ୀ

ବଧୂଲି ପରି ଅଧର ଯାହାର ସେ = ବଧୂଲି ଅଧର

ମାଙ୍କଡ଼ ପରି ମୁହଁ ଯାହାର ସେ = ମାଙ୍କଡ଼ ମୁହାଁ

ଚାନ୍ଦପରି ମୁହଁ ଯାହାର ସେ (ସ୍ତ୍ରୀ.) = ଚାନ୍ଦମୁହାଁ

**ଦ୍ୱିତୀୟ ପ୍ରକାର ମଧ୍ୟପଦଲୋପୀ ବହୁବ୍ରୀହି-**

ଏହି ବହୁବ୍ରୀହି ସମାସରେ ଦୈର୍ଘ୍ୟ, ପରିମାଣ, ମୂଲ୍ୟ, ଓଜନ ବା ଦୂରତାବାଚକ ପ୍ରଭୃତି ପଦ ଲୋପ ପାଇଥାଏ ଏବଂ ପରପଦ ରୂପେ 'ଈ' ଓ 'ଇଆ' ପ୍ରତ୍ୟୟର ଯୋଗ ହୋଇଥାଏ । ଯଥା-

ଦଶହାତ ଦୈର୍ଘ୍ୟ ଯାହାର ତାହା = ଦଶହାତୀ / ଦଶହାତିଆ

ଆଠହାତ ଲମ୍ୱ ଯେ = ଆଠହାତୀ / ଆଠହାତିଆ

ପାଞ୍ଚ କେଜି ପରିମାଣ ଯାହାର ସେ = ପାଞ୍ଚକେଜି / ପାଞ୍ଚକେଜିଆ

ଦୁଇ କୁଇଣ୍ଟାଲ ଓଜନ ଯାହାର ସେ = ଦୁଇକୁଇଣ୍ଟାଲିଆ

ଶହେ ଟଙ୍କା ମୂଲ୍ୟ ଯାହାର ସେ = ଶହେଟଙ୍କିଆ

ସାତ କୋଶ ଦୂରତା ଯାହାର ତାହା = ସାତକୋଶିଆ

ପାଞ୍ଚ କୋଶ ଦୂରତା ଯାହାର ତାହା = ପଞ୍ଚ (ପଞ୍ଝୁ) କୋଶୀ

**୪ । ନିଷେଧାର୍ଥକ ବା ନଞ୍ ବହୁବ୍ରୀହି :**

ନାସ୍ତିସୂଚକ 'ନ', 'ନାହିଁ' ଶବ୍ଦ ସହିତ ଅନ୍ୟପଦର ବହୁବ୍ରୀହି ସମାସକୁ **ନିଷେଧାର୍ଥକ** ବା **ନଞ୍ ବହୁବ୍ରୀହି** ସମାସ କହନ୍ତି ।

ସ୍ୱରବର୍ଣ୍ଣ ପରେ ଥିଲେ 'ନ' ସ୍ଥାନରେ 'ଅନ୍' ହୁଏ 'ଅନ୍'ରେ ଥିବା 'ନ୍'ରେ ପରବର୍ତ୍ତୀ ସ୍ୱରବର୍ଣ୍ଣ ମିଶେ; ମାତ୍ର ବ୍ୟଞ୍ଜନବର୍ଣ୍ଣ ପରେ ଥିଲେ 'ନ' ସ୍ଥାନରେ 'ଅ' ହୁଏ ।

(କ) ନାହିଁ ଆଦି ଯାହାର ସେ = ଅନାଦି ନାହିଁ ଅନ୍ତ ଯାହାର ସେ = ଅନନ୍ତ

ନାହିଁ ଆକାର ଯାହାର ସେ = ଅନାକାର / ଅଣାକାର

ନାହିଁ ନାମ ଯାହାର ସେ = ଅନାମ ନାହିଁ ସୀମା ଯାହାର ସେ = ଅସୀମ

ନାହିଁ ତଳ ଯାହାର ସେ = ଅତଳ ନାହିଁ ଗାଧ ଯାହାର ସେ = ଅଗାଧ

ନାହିଁ ଲୁଣ ଯହିଁରେ ତାହା = ଅଲଣା ନାହିଁ ଜ୍ଞାନ ଯାହାର ସେ = ଅଜ୍ଞାନ

ନାହିଁ ବୋଧ ଯାହାର ସେ = ଅବୋଧ, ନିର୍ବୋଧ

ନାହିଁ ପାଠ ଯାହାର ସେ = ଅପାଠୁଆ ନାହିଁ କାରଣ ଯେଉଁଠି = ଅକାରଣ

ନାହିଁ ମୂଲ୍ୟ ଯାହାର ତାହା = ଅମୂଲ୍ୟ ନାହିଁ ମାପ ଯାହାର ତାହା = ଅମାପ

ନାହିଁ ପାର ଯାହାର ତାହା = ଅପାର

(ଖ) ସ୍ଥଳବିଶେଷରେ ଏହି 'ନଞ୍' ବା ନିଷେଧାର୍ଥରେ ବି, ନି, ନିର୍ ଏବଂ ଅଣ ମଧ୍ୟ ବ୍ୟବହୃତ ହୋଇଥାଏ । ଯଥା-

ବିଗତ ହୋଇଛି ଧବ ଯେଉଁ ସ୍ତ୍ରୀର = ବିଧବା

ନାହିଁ ଧନ ଯାହାର = ନିର୍ଦ୍ଧନ / ନିର୍ଧନ ନାହିଁ ଅଳସ ଯାହାର = ନିରଳସ

ନାହିଁ ଦୋଷ ଯାହାର = ନିର୍ଦ୍ଦୋଷ / ନିର୍ଦୋଷ

ନାହିଁ ଆକାର ଯାହାର = ନିରାକାର ନାହିଁ ଅବୟବ ଯାହାର = ନିରବୟବ

ନାହିଁ ଘୃଣା ଯାହାର = ନିର୍ଘୃଣ ନାହିଁ ବାବୁ ଯାହାର = ଅଣବାବୁଆ

ନାହିଁ ହଳଦି ଯହିଁରେ = ଅଣହଳଦିଆ ନାହିଁ କଳଙ୍କ ଯାହାର = ନିଷ୍କଳଙ୍କ

ନାହିଁ ଶଙ୍କା ଯାହାର = ନିଃଶଙ୍କ ନାହିଁ ପାପ ଯାହାର = ନିଷ୍ପାପ

ନାହିଁ ରୋଗ ଯାହାର = ନୀରୋଗ ନାହିଁ ଆପଦ ଯାହାର = ନିରାପଦ

ନାହିଁ ଭୟ ଯାହାର = ନିର୍ଭୟ ନାହିଁ ଅଙ୍କୁଶ ଯହିଁରେ = ନିରଙ୍କୁଶ

ନାହିଁ ଭୁଲ ଯହିଁରେ = ନିର୍ଭୁଲ ନାହିଁ ଭୀ(ଭୟ) ଯାହାର = ନିର୍ଭୀକ

ନାହିଁ ଅର୍ଥ ଯହିଁରେ = ନିରର୍ଥକ ନାହିଁ ଦୟା ଯାହାର = ନିର୍ଦ୍ଦୟ

ବିଗତ ହୋଇଛି (ନାହିଁ ପତ୍ନୀ ଯାହାର ସେ) = ବିପତ୍ନୀକ

ନାହିଁ ଲଜ୍ଜା ଯାହାର = ନିର୍ଲଜ୍ଜ ନାହିଁ ପୁତ୍ର ଯାହାର = ଅପୁତ୍ରକ

ନାହିଁ ମଳ ଯହିଁରେ = ନିର୍ମଳ ନାହିଁ ପକ୍ଷପାତ ଯାହାର = ନିଷ୍ପକ୍ଷପାତ

ନାହିଁ କାମ (କାମନା) ଯାହାର ସେ = ନିଷ୍କାମ

ପକ୍ଷ ନିଏ ନାହିଁ ଯେ (ନାହିଁ ପକ୍ଷ ଯାହାର) = ନିରପେକ୍ଷ

ନାହିଁ ସ୍ପନ୍ଦନ ଯାହାର ସେ = ନିଷ୍ପନ୍ଦ ନାହିଁ ଫଳ ଯହିଁରେ = ନିଷ୍ଫଳ

ନାହିଁ ସ୍ୱ ଯାହାର ସେ = ନିଃସ୍ୱ ନାହିଁ ତେଜ ଯାହାର = ନିସ୍ତେଜ

ନୁହେଁ ସଙ୍କୁଡ଼ି ଯାହା = ନିସଙ୍କୁଡ଼ି ନାହିଁ ସ୍ପୃହା ଯାହାର ସେ = ନିସ୍ପୃହ

ନାହିଁ କରୁଣା ଯାହାର ସେ = ନିଷ୍କରୁଣ

ନିଷେଧାର୍ଥକ 'ବେ' (ନାହିଁ) ସହିତ ଅନ୍ୟ ପଦର ନଞ୍ ବହୁବ୍ରୀହି ସମାସ ହୋଇଥାଏ । ଏହି ସମାସରେ ବ୍ୟାସବାକ୍ୟ ଦୁଇପ୍ରକାର ହୋଇଥାଏ ।

୧ । ବେ + ଅନ୍ୟପଦ = ବେ ହିସାବ ଯାହାର ସେ = ବେହିସାବୀ

୨ । ନାହିଁ + ଅନ୍ୟପଦ = ପୂର୍ବ ପଦର ଆରମ୍ଭରେ 'ବେ' ଯୁକ୍ତ ହୋଇ ନ ଥାଏ ନାହିଁ ହିସାବ ଯାହାର ସେ = ବେହିସାବୀ ଅଥବା ହିସାବ ନାହିଁ ଯାହାର ସେ = ବେହିସାବୀ

ଅନ୍ୟ ଉଦାହରଣ :

ବେ ତାର ଯହିଁରେ / ନାହିଁ ତାର ଯହିଁରେ ତାହା = ବେତାର

ବେ କାର୍ (କାର୍ଯ୍ୟ) ଯାହାର / ନାହିଁ କାର(କାର୍ଯ୍ୟ) ଯାହାର ସେ = ବେକାର

ବେ ହୋସ୍ ଯାହାର ସେ / ନାହିଁ ହୋସ୍ ଯାହାର ସେ = ବେହୋସ୍

ବେ ତାଳ ଯହିଁରେ ତାହା / ନାହିଁ ତାଳ ଯହିଁରେ ତାହା = ବେତାଳ

ବେ ହୁସିଆର ଯେ ସେ / ନୁହେଁ ହୁସିଆର ଯେ ସେ = ବେହୁସିଆର

ନାହିଁ କାଇଦା ଯାହାର = ବେକାଇଦା      ନାହିଁ ଖାତିର ଯାହାର = ବେଖାତିର

ନାହିଁ ଢଙ୍ଗ ଯାହାର = ବେଢଙ୍ଗ      ନାହିଁ ଖାପ ଯାହାର = ବେଖାପ

ନାହିଁ ଖୁସି ଯାହାର = ବେଖୁସି      ନାହିଁ ଜବାବ ଯାହାର = ବେଜବାବ

ନାହିଁ ଟାଇମ ଯହିଁରେ = ବେଟାଇମ      ନୁହେଁ ଠିକ୍ ଯାହା = ବେଠିକ୍

ନୁହେଁ ଠିକଣା ଯାହା = ବେଠିକଣା      ନାହିଁ ତାଳ ଯାହାର = ବେତାଳିଆ

ନୁହେଁ ନିୟମ ଯାହା = ବେନିୟମ      ନାହିଁ ପରବାୟ ଯାହାର = ବେପରବାୟ

ନୁହେଁ ପସନ୍ଦ ଯାହା = ବେପସନ୍ଦ      ନାହିଁ ସରମ ଯାହାର = ବେସରମ

ହୋଇନାହିଁ ବାନ୍ଦୋବସ୍ତ ଯାହାର = ବେବନ୍ଦୋବସ୍ତ

ମରାମତ ହୋଇନାହିଁ ଯାହା=ବେମରାମତ      ନାହିଁ ଜବାବ ଯାହାର=ବେଜବାବୀ

ନାହିଁ ସୁର ଯହିଁରେ = ବେସୁରା      ନୁହେଁ ସରକାରୀ ଯାହା = ବେସରକାରୀ

ନାହିଁ ହିସାବ ଯାହାର=ବେହିସାବୀ      ନାହିଁ ଇମାନ୍(ବିବେକ)ଯାହାର=ବେଇମାନ୍

ନାହିଁ ହୋସ ଯାହାର = ବେହୋସ      ନାହିଁ ନାମ ଯହିଁରେ = ବେନାମୀ

ନାହିଁ କସୁର (ଭୁଲ) ଯାହାର = ବେକସୁର      ନାହିଁ ଛପର ଯେଉଁଠି=ବେଛପରୀ

୫ । **ସହାର୍ଥ ବହୁବ୍ରୀହି ବା ତୁଲ୍ୟଯୋଗେ ବହୁବ୍ରୀହି :**

ଯେ କୌଣସି ପଦ (ବିଶେଷ୍ୟ) ସହିତ 'ସହ' ଶବ୍ଦର ଯେଉଁ ସମାସ ହୁଏ, ତାହାକୁ **ସହାର୍ଥ ବହୁବ୍ରୀହି** ବା **ତୁଲ୍ୟଯୋଗେ ବହୁବ୍ରୀହି** କହନ୍ତି ।

ବିକଳ୍ପରେ 'ସହ' / 'ସହିତ'ରୁ 'ସ' ରହେ ।

ଶିଷ୍ୟ ସହ ଯେ = ସଶିଷ୍ୟ / ସହଶିଷ୍ୟ

ପୁତ୍ର ସହିତ ଯେ = ସପୁତ୍ର      କୁଟୁମ୍ବ ସହ ଯେ = ସକୁଟୁମ୍ବ

ସୈନ୍ୟ ସହିତ ଯେ = ସସୈନ୍ୟ      ଅଶ୍ରୁ ସହ ଯେ = ସାଶ୍ରୁ

ସମ୍ମାନ ସହିତ ଯେ = ସସମ୍ମାନ      ବିନୟ ସହ ଯେ = ସବିନୟ

ବାନ୍ଧବ ସହ ଯେ = ସବାନ୍ଧବ      ଅନୁଜ ସହ ଯେ = ସାନୁଜ / ସହାନୁଜ

ଆନନ୍ଦ ସହ ଯେ = ସାନନ୍ଦ
ଦୟା ସହିତ ଯେ = ସଦୟ
ରସ ସହିତ ଥିବା = ସରସ
ଦଳ ସହିତ = ସଦଳ
ସୀମା ସହିତ = ସସୀମ
ନାଥ ସହିତ = ସନାଥ
ମୂଳ ସହିତ = ସମୂଳ
ବିସ୍ତାର ସହିତ = ସବିସ୍ତାର
ପରିବାର ସହିତ = ସପରିବାର
ବାକ୍ ସହିତ = ସବାକ୍
ଗୋତ୍ର ସହିତ = ସଗୋତ୍ର
ଅକ୍ଷର ସହିତ ଯେ = ସାକ୍ଷର
କୁଟୁମ୍ବ ସହିତ ଯେ = ସକୁଟୁମ୍ବ
ପତ୍ନୀ ସହିତ ଯେ = ସପତ୍ନୀକ
ସ୍ନେହ ସହିତ = ସସ୍ନେହ
ଧନ ସହିତ = ସଧନ
ପ୍ରାଣ ସହିତ = ସପ୍ରାଣ
ବିଶେଷ ସହ = ସବିଶେଷ
ଶ୍ରଦ୍ଧା ସହିତ = ସଶ୍ରଦ୍ଧ
ଅସ୍ତ୍ର ସହିତ = ସଶସ୍ତ୍ର
ସ୍ତ୍ରୀ ସହ ଯେ = ସସ୍ତ୍ରୀକ
ହୃଦୟ ସହିତ ଯେ = ସହୃଦୟ
ଧବ ସହିତ ଥିବା ସ୍ତ୍ରୀ = ସଧବା
ଆଦର ସହିତ = ସାଦର
ହର୍ଷ ସହିତ = ସହର୍ଷ
ପ୍ରମାଣ ସହିତ = ସପ୍ରମାଣ
ବଂଶ ସହିତ = ସବଂଶ
ଚରାଚର ସହ = ସଚରାଚର
ଶିଷ୍ୟ ସହିତ = ସଶିଷ୍ୟ
ଭକ୍ତି ସହିତ = ସଭକ୍ତି
ଲଜ୍ଜା ସହ ଯେ = ସଲଜ୍ଜ
ଅନୁନୟ ସହ ଯେ = ସାନୁନୟ
ବଳ ସହିତଥିବା = ସବଳ
ଚେଷ୍ଟା ସହିତ = ସଚେଷ୍ଟ
ସ୍ପୃହା ସହିତ = ସସ୍ପୃହ
ନିର୍ବନ୍ଧ ସହିତ = ସନିର୍ବନ୍ଧ
ଫଳ ସହିତ = ସଫଳ
ବିସ୍ମୟ ସହିତ = ସବିସ୍ମୟ
ଚିତ୍ର ସହିତ = ସଚିତ୍ର
ପ୍ରଣାମ ସହିତ = ସପ୍ରମାଣ
ଅର୍ଥ ସହିତ ବର୍ତ୍ତମାନ = ସାର୍ଥ/ସାର୍ଥକ

**ସମାନ ଶବ୍ଦଯୋଗେ ବହୁବ୍ରୀହି :**

'ସମାନ' ଶବ୍ଦ ପୂର୍ବ ପଦରେ ରହି ଅନ୍ୟପଦ ସହିତ ବହୁବ୍ରୀହି ସମାସ ହୁଏ । 'ସମାସ' ଶବ୍ଦରୁ 'ସ' ରହେ । କ୍ୱଚିତ୍ ସ୍ଥଳରେ 'ସମାନ'ର ସହ ହୁଏ ।

ସମାନ ଗୋତ୍ର ଯେଉଁମାନଙ୍କର ସେମାନେ = ସଗୋତ୍ର
ସମାନ ବର୍ଣ୍ଣ ଯେଉଁମାନେ ସେମାନେ = ସବର୍ଣ୍ଣ
ସମାନ ପତି ଯେଉଁମାନଙ୍କର ସେମାନେ = ସପତ୍ନୀ

ସମାନ ପିଣ୍ଡ ଯେଉଁମାନଙ୍କର ସେମାନେ = ସପିଣ୍ଡ

ସମାନ ତୀର୍ଥ (ଗୁରୁ) ଯେଉଁମାନଙ୍କର ସେମାନେ = ସତୀର୍ଥ

ସମାନ ଉଦର ଯେଉଁମାନଙ୍କର ସେମାନେ = ସୋଦର / ସହୋଦର

ସମାନ ପକ୍ଷ ଯେଉଁ ମାନଙ୍କର = ସପକ୍ଷ

ସମାନ ରୂପ ଯେଉଁମାନଙ୍କର = ସରୂପ

ସମାନ ଧର୍ମ ଯେଉଁମାନଙ୍କର ସେମାନେ = ସଧର୍ମା

ସମାନ ବୟସ ଯେଉଁମାନଙ୍କର ସେମାନେ = ସମବୟସ୍କ

ସମାନ ଜାତି ଯେଉଁମାନଙ୍କର = ସଜାତି

୬ । **ବ୍ୟତିହାର ବହୁବ୍ରୀହି ସମାସ :**

ପରସ୍ପର ଯୁଦ୍ଧ ଅର୍ଥରେ ଏକଜାତୀୟ ଦୁଇଟି ଦ୍ୱିତୀୟା ବା ତୃତୀୟା ବିଭକ୍ତ୍ୟନ୍ତ ପଦର ବହୁବ୍ରୀହି ସମାସ ହେଲେ, ତାହାକୁ **ବ୍ୟତିହାର** ବହୁବ୍ରୀହି ସମାସ କୁହାଯାଏ । 'ବ୍ୟତିହାର' ଅର୍ଥ କାର୍ଯ୍ୟର ବିନିମୟ ।

ଏହି ସମାସରେ ପୂର୍ବପଦ ଶେଷରେ 'ଆ' ଏବଂ ପରପଦଶେଷରେ 'ଇ' ଯୋଗ ହୁଏ । ଯଥା-

କେଶକୁ କେଶକୁ ଧରି ପରସ୍ପରର ଯେଉଁ ଯୁଦ୍ଧ = କେଶାକେଶି

ହାତକୁ ହାତକୁ ଧରି ପରସ୍ପରର ଯେଉଁ ଯୁଦ୍ଧ = ହାତାହାତି

ବା ହାତରେ ହାତରେ ପରସ୍ପରର ଯେଉଁ ଯୁଦ୍ଧ = ହାତାହାତି

ଟାଣିବାଦ୍ୱାରା ଟାଣିବାଦ୍ୱାରା ପରସ୍ପରର ଯେଉଁ ଯୁଦ୍ଧ = ଟଣାଟଣି

ବକିବାଦ୍ୱାରା ବକିବାଦ୍ୱାରା ପରସ୍ପରର ଯେଉଁ ଯୁଦ୍ଧ = ବକାବକି

ଧରାରେ ଧରାରେ ପରସ୍ପରର ଯେଉଁ ଯୁଦ୍ଧ = ଧରାଧରି

ବାଡ଼ିରେ ବାଡ଼ିରେ ପରସ୍ପରର ଯେଉଁ ଯୁଦ୍ଧ = ବାଡ଼ାବାଡ଼ି

ପରସ୍ପର ପିଟିବାରେ ବ୍ୟାପୃତ = ପିଟାପିଟି

ପରସ୍ପରକୁ ମାରିବା ଦ୍ୱାରା କଳହ = ମରାମରି

ପରସ୍ପରକୁ ଠେଲିବାରେ ଯେଉଁ କଳହ = ଠେଲାଠେଲି

ପରସ୍ପରକୁ ପେଲିବାରେ ଯେଉଁ କଳହ = ପେଲାପେଲି

ଠେଙ୍ଗାରେ ଠେଙ୍ଗାରେ ପରସ୍ପରର ଯେଉଁ ଯୁଦ୍ଧ = ଠେଙ୍ଗାଠେଙ୍ଗି

ପରସ୍ପର ଗଡ଼େଇବାରେ ଯେଉଁ କଳହ = ଗଡ଼ାଗଡ଼ି

ପରସ୍ପରକୁ ଘୋଷାରିବାରେ ବ୍ୟାପୃତ = ଘୋଷରାଘୋଷରି
ହସ୍ତରେ ହସ୍ତରେ ପାରସ୍ପରିକ ଯୁଦ୍ଧ = ହସ୍ତାହସ୍ତି
ପରସ୍ପରକୁ ବୋଲିବା (ଗାଳିଦେବା) ଦ୍ୱାରା କଳହ = ବୋଲାବୋଲି
ପରସ୍ପରକୁ ଭିଡ଼ିବାରେ ଯେଉଁ କଳହ = ଭିଡ଼ାଭିଡ଼ି
ପରସ୍ପରକୁ କାମୁଡ଼ିବାରେ ଯେଉଁ କଳହ = କାମୁଡ଼ାକାମୁଡ଼ି
ପରସ୍ପରକୁ ମୁଥ ମାରିବା ଦ୍ୱାରା ଯେଉଁ କଳହ = ମୁଥାମୁଥି
ପରସ୍ପରକୁ କହିବା (ବକିବା) ଦ୍ୱାରା ଯେଉଁ କଳହ = କୁହାକୁହି
ପରସ୍ପରକୁ ହାଣିବାରେ ଯେଉଁ ବିବାଦ = ହଣାହଣି
ପରସ୍ପରକୁ ଦଳିବାରେ ବ୍ୟାପୃତ = ଦଳାଦଳି
ପରସ୍ପରକୁ ଚିମୁଟିଚିମୁଟି ଯେଉଁ କଳହ = ଚିମୁଟାଚିମୁଟି
ପରସ୍ପର କଷି କଷି ଯେଉଁ ବିବାଦ = କଷାକଷି
ଗୋଡ଼ାଇ ଗୋଡ଼ାଇ ପାରସ୍ପରିକ ଯୁଦ୍ଧ = ଗୋଡ଼ାଗୋଡ଼ି
ଦେଖାରେ ଦେଖାରେ ଯେଉଁ କାର୍ଯ୍ୟ ହୁଏ = ଦେଖାଦେଖି
ପରସ୍ପର ରାମ୍ପୁଡ଼ି ରାମ୍ପୁଡ଼ି ଯେଉଁଯୁଦ୍ଧ = ରାମ୍ପୁଡ଼ାରାମ୍ପୁଡ଼ି

**ବହୁବ୍ରୀହି ସମାସର କେତେକ ବିଶେଷ ବ୍ୟବହାର :**

୧। ବହୁବ୍ରୀହି ସମାସରେ ଉଭୟପଦ ସ୍ତ୍ରୀଲିଙ୍ଗବାଚକ ହୋଇଥିଲେ ପୂର୍ବପଦ ପୁଂଲିଙ୍ଗ ଆକାର ଧାରଣ କରେ ଏବଂ ପରପଦ ଆକାରାନ୍ତ ସ୍ତ୍ରୀଲିଙ୍ଗ ହୋଇଥିଲେ ଅକାରାନ୍ତ ହୁଏ (ସମସ୍ତ ପଦଟି ଯଦି ପୁଂଲିଙ୍ଗବାଚକ ହୋଇଥାଏ) । ଯଥା–

ସରଳା ପ୍ରକୃତି ଯାହାର = ସରଳପ୍ରକୃତି / ସରଳପ୍ରକୃତିକ
ଦୃଢ଼ା ପ୍ରତିଜ୍ଞା ଯାହାର = ଦୃଢ଼ପ୍ରତିଜ୍ଞ
ସ୍ଥିତା ପ୍ରଜ୍ଞା ଯାହାର = ସ୍ଥିତପ୍ରଜ୍ଞ
ତୀକ୍ଷ୍ଣା ବୁଦ୍ଧି ଯାହାର = ତୀକ୍ଷ୍ଣବୁଦ୍ଧି
ଶୋଭନ ଗ୍ରୀବା ଯାହାର = ସୁଗ୍ରୀବ
କୃତା ବିଦ୍ୟା ଯାହାଦ୍ୱାରା = କୃତବିଦ୍ୟ
ମନ୍ଦ ପ୍ରକୃତି ଯାହାର = ମନ୍ଦପ୍ରକୃତି
ଧୀରା ମତି ଯାହାର = ଧୀରମତି
ସ୍ଥିରା ମତି ଯାହାର = ସ୍ଥିରମତି
ଭଗ୍ନ ଶାଖା ଯାହାର = ଭଗ୍ନଶାଖ
ବିଗତ ସ୍ପୃହା ଯାହାର = ବିଗତସ୍ପୃହ
ବୀତା (ଅତୀତ) ଶ୍ରଦ୍ଧା ଯାହାର = ବୀତଶ୍ରଦ୍ଧ
ଚପଳା ମତି ଯାହାର = ଚପଳମତି
ଧୀରା ଗତି ଯାହାର = ଧୀରଗତି
କ୍ଷୀଣା ଶକ୍ତି ଯାହାର = କ୍ଷୀଣଶକ୍ତି
ସ୍ଥିରା ବୁଦ୍ଧି ଯାହାର = ସ୍ଥିରବୁଦ୍ଧି (ସଂସ୍କୃତରେ ସ୍ଥିରାବୁଦ୍ଧିର୍ଯସ୍ୟ)

ବିଗତା ଶ୍ରଦ୍ଧା ଯାହାର = ବିଗତଶ୍ରଦ୍ଧ
ଚଞ୍ଚଳା ମତି ଯାହାର = ଚଞ୍ଚଳମତି
ଚପଳା ମତି ଯାହାର = ଚପଳମତି
ବିଶୁଦ୍ଧା ବୁଦ୍ଧି ଯାହାର = ବିଶୁଦ୍ଧବୁଦ୍ଧି
ସୁନ୍ଦରୀ ବୁଦ୍ଧି ଯାହାର = ସୁନ୍ଦରବୁଦ୍ଧି
ଚତୁରୀ ବୁଦ୍ଧି ଯାହାର = ଚତୁରବୁଦ୍ଧି
ଦୃଢ଼ାଭକ୍ତି ଯାହାର = ଦୃଢ଼ଭକ୍ତି
ଦୃଢ଼ ପ୍ରତିଜ୍ଞା ଯାହାର = ଦୃଢ଼ପ୍ରତିଜ୍ଞ (ସଂସ୍କୃତରେ ଦୃଢ଼ା ପ୍ରତିଜ୍ଞା ଯସ୍ୟ)

ଓଡ଼ିଆରେ ସମାସ କଲାବେଳେ ‘ଚପଳା ମତି ଯାହାର’ ଏପରି ବିଗ୍ରହ-ବାକ୍ୟ ନ କରି ‘ଚପଳ ମତି ଯାହାର’, ‘ସ୍ଥିତ ପ୍ରଜ୍ଞା ଯାହାର’ ଏହିପରି ବିଗ୍ରହବାକ୍ୟ କରିବା ଦେଖାଯାଉଛି । ଏହା ମଧ୍ୟ ଗ୍ରହଣୀୟ ।

୨ । ବହୁବ୍ରୀହି ସମାସରେ ‘ଅକ୍ଷି’ ଶବ୍ଦ ‘ଅକ୍ଷ’ ହୁଏ । ଯଥା-

ପଦ୍ମପରି ଅକ୍ଷି ଯାହାଙ୍କର ସେ = ପଦ୍ମାକ୍ଷ
ବିରୂପ ହୋଇଛି ଅକ୍ଷି ଯାହାଙ୍କର ସେ = ବିରୂପାକ୍ଷ
ବିଶାଳ ଅକ୍ଷି ଯାହାଙ୍କର ସେ = ବିଶାଳାକ୍ଷ
ସହସ୍ର ଅକ୍ଷି ଯାହାଙ୍କର ସେ = ସହସ୍ରାକ୍ଷ
ପୁଣ୍ଡରୀକ ପରି ଅକ୍ଷି ଯାହାଙ୍କର ସେ = ପୁଣ୍ଡରୀକାକ୍ଷ (ବିଷ୍ଣୁ)
ନଳିନୀ ପରି ଅକ୍ଷି ଯାହାଙ୍କର ସେ = ନଳିନାକ୍ଷ (ବିଷ୍ଣୁ)
ଆୟତ ଅକ୍ଷି ଯାହାର = ଆୟତାକ୍ଷ
କମଳ ପରି ଅକ୍ଷି ଯାହାର (ସ୍ତ୍ରୀ) = କମଳାକ୍ଷୀ (ଲକ୍ଷ୍ମୀ, ଦେବୀ)
ଶତ ଅକ୍ଷ ଯାହାଙ୍କର (ସ୍ତ୍ରୀ) = ଶତାକ୍ଷୀ (ଦୁର୍ଗା)
ବିଂଶ ଅକ୍ଷି ଯାହାର = ବିଂଶାକ୍ଷ (ରାବଣ)

* ଓଡ଼ିଆ ଭାଷାରେ ପୁରାଣମାନଙ୍କରେ ‘ବିଂଶାକ୍ଷି’ର ବ୍ୟବହାର ଦେଖାଯାଏ ।

୩ । ବହୁବ୍ରୀହି ସମାସରେ ‘ନାଭି’ ଶବ୍ଦ ପରପଦ ହୋଇଥିଲେ ତାହା ‘ନାଭ’ ହୁଏ । ଯଥା-

କମଳ ନାଭିରେ ଯାହାର ସେ = କମଳନାଭ
ପଦ୍ମ ନାଭିରେ ଯାହାର ସେ = ପଦ୍ମନାଭ
ଊର୍ଣ୍ଣା ନାଭିରେ ଯାହାର ସେ = ଊର୍ଣ୍ଣନାଭ

୪ । ବହୁବ୍ରୀହି ସମାସରେ ପରପଦରୂପେ ‘ଜାୟା’ ଶବ୍ଦ ଥିଲେ ତାହା ‘ଜାନି’ ହୁଏ । ଯଥା-

ଲକ୍ଷ୍ମୀ ଜାୟା ଯାହାଙ୍କର ସେ = ଲକ୍ଷ୍ମୀଜାନି
ସୀତା ଜାୟା ଯାହାଙ୍କର ସେ = ସୀତାଜାନି
ଯୁବତୀ ଜାୟା ଯାହାର ସେ = ଯୁବଜାନି

୫ । ବହୁବ୍ରୀହି ସମାସରେ ମନସ୍, ଚେତସ୍, ତେଜସ୍, ବୟସ୍ ପ୍ରଭୃତି 'ଅସ୍' ଭାଗାନ୍ତ ଶବ୍ଦ ପରପଦ ରୂପେ ବ୍ୟବହୃତ ହୋଇଥିଲେ 'ସ୍'ର ଲୋପ ହୁଏ ଏବଂ ଅ କାର ସ୍ଥାନରେ ଆ କାର ହୁଏ । କେତେକ ସ୍ଥଳରେ 'ସ୍'ର ଲୋପ ନ ହୋଇ 'କ'ର ଆଗମ ହୁଏ; ମାତ୍ର ଏବେ ଓଡ଼ିଆରେ 'ଅସ୍' ଭାଗାନ୍ତ ଶବ୍ଦର ସ୍ (ଃ)କୁ ବାଦ୍ ଦେଇ ଶବ୍ଦ ବ୍ୟବହୃତ ହେଉଛି । ଯଥା-

ଉଚ୍ଚ ମନ(ଃ) ଯାହାର ସେ = ଉଚ୍ଚମନା
ଉଦାର ଚେତ(ଃ) ଯାହାର ସେ = ଉଦାରଚେତା
ମହତ୍ ତେଜ(ଃ) ଯାହାର ସେ = ମହାତେଜା
ନିର୍ମଳ ଯଶ(ଃ) ଯାହାର ସେ = ନିର୍ମଳଯଶା
ମହତ୍ ତପ(ଃ) ଯାହାର ସେ = ମହାତପା
ଅନ୍ୟ ମନ(ଃ) ଯାହାର ସେ = ଅନ୍ୟମନା / ଅନ୍ୟମନସ୍କ
ବିଶାଳ ଯଶ(ଃ) ଯାହାର ସେ = ବିଶାଳଯଶା
ଉଗ୍ରତପ(ଃ) ଯାହାର ସେ = ଉଗ୍ରତପା
ସଂକୀର୍ଣ୍ଣ ମନ ଯାହାର ସେ = ସଂକୀର୍ଣ୍ଣମନା
ମହାନ୍ ଉରସ୍କ (ବକ୍ଷ) ଯାହାର ସେ = ମହୋରସ୍କ
ଶୁଦ୍ଧ ମନ(ଃ) ଯାହାର ସେ = ଶୁଦ୍ଧମନା

୬ । ବହୁବ୍ରୀହି ସମାସରେ ପରପଦରୂପେ 'ଧନୁସ୍' ଥିଲେ, ତାହା 'ଧନ୍ୱା' ହୁଏ; କିନ୍ତୁ ନାମ ବୁଝାଇଲେ ବିକଳ୍ପରେ 'ଧନୁ' ହୁଏ । ଯଥା-

ପୁଷ୍ପ ଧନୁ ଯାହାର = ପୁଷ୍ପଧନ୍ୱା (କନ୍ଦର୍ପ), ପୁଷ୍ପଧନୁ
ଶାର୍ଙ୍ଗଧନୁ ଯାହାର = ଶାର୍ଙ୍ଗଧନ୍ୱା (ବିଷ୍ଣୁ), ଶାର୍ଙ୍ଗଧନୁ
ପିନାକ ଧନୁ ଯାହାର ସେ = ପିନାକଧନ୍ୱା (ଶିବ), ପିନାକଧନୁ
ଭଗ୍ନ ଧନୁ ଯାହାର ସେ = ଭଗ୍ନଧନ୍ୱା (ବ୍ୟକ୍ତିବିଶେଷ), ଭଗ୍ନଧନୁ
ସୁ ଧନୁ ଯାହାର ସେ = ସୁଧନ୍ୱା (ବିଷ୍ଣୁ/ପ୍ରାଚୀନ ନୃପବିଶେଷ), ସୁଧନୁ
ଗାଣ୍ଡିବ ଧନୁ ଯାହାର ସେ = ଗାଣ୍ଡିବଧନ୍ୱା(ଅର୍ଜୁନ), ଗାଣ୍ଡିବଧନୁ

୭ । ବହୁବ୍ରୀହି ସମାସରେ କେତେକ କ୍ଷେତ୍ରରେ 'ଅ' କାରାନ୍ତ, 'ଇ' କାରାନ୍ତ ଓ ଋ କାରାନ୍ତ ପଦପରେ 'କ'ର ଆଗମ ହୁଏ । ଯଥା-

ନାହିଁ ପୁତ୍ର ଯାହାର ସେ = ଅପୁତ୍ରକ/ଅପୁତ୍ରିକ
ନାହିଁ ଅର୍ଥ ଯହିଁରେ ସେ = ନିରର୍ଥକ
ଦ୍ୱି ଅର୍ଥ ଅଛି ଯହିଁରେ ତାହା = ଦ୍ୱ୍ୟର୍ଥକ
ସାର ଗର୍ଭରେ ଯାହାର ସେ = ସାରଗର୍ଭକ

ଦ୍ୱି ପତ୍ନୀ ଅଛି ଯାହାର ସେ = ଦ୍ୱିପତ୍ନୀକ
ବହୁ ପତ୍ନୀ ଅଛି ଯାହାର ସେ = ବହୁପତ୍ନୀକ
ବିଗତ ପତ୍ନୀ ଯାହାର ସେ = ବିପତ୍ନୀକ (ପୁରୁଷ)
ନାହିଁ ସ୍ତ୍ରୀ ଯାହାର ସେ = ନିଃସ୍ତ୍ରୀକ
ବହୁ ତନ୍ତ୍ରୀ ଅଛି ଯାହାର ସେ = ବହୁତନ୍ତ୍ରିକା (ବୀଣା)
ପତ୍ନୀ ସହିତ ଅଛି ଯେ = ସପତ୍ନୀକ
ସ୍ତ୍ରୀ ସହିତ ଅଛି ଯେ = ସସ୍ତ୍ରୀକ
ନଦୀ ମାତା ଯାହାର ସେ = ନଦୀମାତୃକ
ନଦୀମାତା ଯାହାର ସେ (ସ୍ତ୍ରୀ) = ନଦୀମାତୃକା
ବୃଦ୍ଧ ପିତା ଯାହାର ସେ = ବୃଦ୍ଧପିତୃକ
ଜୀବତ୍ (ଜୀବିତ) ପିତା ଯାହାର ସେ = ଜୀବତ୍ପିତୃକ

୮ । ବହୁବ୍ରୀହି ସମାସରେ ପର ସ୍ଥିତ 'ନାମନ୍' ଶବ୍ଦ ସ୍ଥାନରେ 'ନାମା' ହୁଏ ଏବଂ ଅନ୍ୟ ପକ୍ଷରେ 'ନ'ର ଲୋପ ହୋଇଥାଏ ଓ 'କ'ର ଆଗମ ହୁଏ । ଯଥା-
ଆକବର ନାମ ଯାହାର ସେ = ଆକବରନାମା/ଆକବରନାମକ
ପ୍ରଭୁଦତ୍ତ ନାମ ଯାହାର ସେ = ପ୍ରଭୁଦତ୍ତନାମା/ପ୍ରଭୁଦତ୍ତନାମକ
ମାତ୍ର; ଗାୟତ୍ରୀ ନାମ ଯାହାର ସେ = ଗାୟତ୍ରୀନାମ୍ନୀ

୯ । ବହୁବ୍ରୀହି ସମାସରେ 'ଧର୍ମ' ଶବ୍ଦ 'ଧର୍ମା' ହୁଏ । ଯଥା-
ସୁ ଧର୍ମ ଯାହାର ସେ = ସୁଧର୍ମା
କୁ ଧର୍ମ ଯାହାର ସେ = କୁଧର୍ମା
ବିଗତ ଧର୍ମ ଯାହାର ସେ = ବିଧର୍ମା/ବିଧର୍ମୀ

## ବହୁବ୍ରୀହି ସମାସର କେତେକ ବିଶେଷ ଉଦାହରଣ

ସମଧର୍ମ ଯାହାର ସେ = ସମଧର୍ମା
ବୁଦ୍ଧି ଜୀବିକା ଯାହାର ସେ = ବୁଦ୍ଧିଜୀବୀ
ମୁଖ ଚନ୍ଦ୍ର ପରି ଯାହାର ସେ = ମୁଖଚନ୍ଦ୍ର
ଦିକ୍ ଅମ୍ବର ଯାହାଙ୍କର ସେ = ଦିଗମ୍ବର
ଶଶ ଅଙ୍କ (ଚିହ୍ନ) ଯାହାଙ୍କଠାରେ ସେ = ଶଶାଙ୍କ
ନାହିଁ ଭୟ ଯାହାର ସେ = ନିର୍ଭୀକ
ଚାନ୍ଦପରି ମୁହଁ ଯାହାଙ୍କର ସେ (ସ୍ତ୍ରୀ) = ଚାନ୍ଦମୁହାଁ
ପୋତା ମୁହଁ ଯାହାର ସେ = ପୋତାମୁହାଁ/ପୋତାମୁହାଁ

ଉପରକୁ ମୁହଁ ଯାହାର ସେ = ଉପରମୁହାଁ/ଉପରମୁହାଁ
କୃତ ହୋଇଛି କର୍ମ ଯାହାଦ୍ୱାରା ସେ = କୃତକର୍ମା
ନଦୀ ମାତା ଯାହାର ସେ = ନଦୀମାତୃକ (ଦେଶ) / ନଦୀମାତୃକା (ସ୍ତ୍ରୀ)
ଉଚ୍ଚ କପାଳ ଯାହାର ସେ (ସ୍ତ୍ରୀ) = ଉଚ୍ଚକପାଳୀ
ଚେପଟା ନାକ ଯାହାର ସେ (ସ୍ତ୍ରୀ) - ଚେପଟାନାକୀ
ନାହିଁ ଅପେକ୍ଷା ଯାହାର = ନିରପେକ୍ଷ
କମଳ ଧ୍ୱଜାରେ ଯାହାର ସେ = କମଳଧ୍ୱଜ
ହତ ହୋଇଛି ଆଶା ଯାହାର = ହତାଶ
ନାହିଁ ଆଶା ଯାହାର ସେ = ନିରାଶ
ନାହିଁ ଜଞ୍ଜାଳ ଯାହାର ସେ = ନିଜଞ୍ଜାଳ
ଉଦାର ମନ ଯାହାର ସେ = ଉଦାରମନା
ଉଗ୍ର ତେଜ ଯାହାର ସେ = ଉଗ୍ରତେଜା
ଅଳ୍ପ ବୟସ ଯାହାର ସେ = ଅଳ୍ପବୟସ୍କା, ଅଳ୍ପବୟା
ଦେବ ମାତା ଯାହାର ସେ = ଦେବମାତୃକ (ଦେଶ)
(ଯେଉଁ ଦେଶର କୃଷି ଦେବତା ଅର୍ଥାତ୍ ବର୍ଷା ଉପରେ ନିର୍ଭରଶୀଳ)
ବସନ୍ତମୁହଁରେ ଯାହାର ସେ = ବସନ୍ତମୁହାଁ/ବସନ୍ତମୁହାଁ
ପୋଡ଼ିଯାଇଛି ମୁହଁ ଯାହାର = ପୋଡ଼ାମୁହାଁ/ପୋଡ଼ାମୁହାଁ
ମାଡ଼ ହାତରେ ଯାହାର ସେ = ମାଡ଼ହାତା ଦଶ ଶିର ଯାହାର ସେ = ଦଶଶିର
ମଳି ମୁଣ୍ଡରେ ଯାହାର ସେ = ମଳିମୁଣ୍ଡା, ମଳିମୁଣ୍ଡିଆ
ପଞ୍ଚମ ରାତିରେ କରଣୀୟ ଉତ୍ସବ = ପଞ୍ଚୁଆତି
ହାଡ଼ ଭାଙ୍ଗିଛି ଯାହାର, ହାଡ଼ ଭାଙ୍ଗେ ଯେ ସେ = ହାଡ଼ଭଙ୍ଗା
ଶୋଭନ(ସୁ) ହୃଦୟ ଯାହାର ସେ = ସୁହୃଦ୍
ଦୂଷିତ (ଦୁଃ) ହୃଦୟ ଯାହାର ସେ = ଦୁର୍ହୃଦ୍
ସମା କକ୍ଷା (ପ୍ରତିଯୋଗିତା) ରେ ଯେ = ସେ ସମକକ୍ଷ
ବିଶ୍ୱ ବାସ ଯାହାର ସେ = ବିଶ୍ୱବାସ ଦୁଇଟି ଦନ୍ତ ଯାହାର = ଦ୍ୱିଦନ୍ତ (ଗଜ)
ଶ୍ୱାନର ପାଦ ପରି ପାଦ ଯାହାର = ଶ୍ୱାପଦ
ଦୁଇ ଦିଗରେ ଅପ୍ (ଜଳ) ଯାହାର = ଦ୍ୱୀପ
ଅନ୍ତର୍ଗତା ଅପ୍ (ଜଳ) ଯାହାର = ଅନ୍ତରୀପ
ସୂର୍ଯ୍ୟ ଦର୍ଶନ କରେ ନାହିଁ ଯେ = ଅସୂର୍ଯ୍ୟମ୍ପଶ୍ୟା(ସ୍ତ୍ରୀ)

## ଅବ୍ୟୟୀଭାବ ସମାସ

ଯେଉଁ ସମାସରେ ଅବ୍ୟୟ ପଦର ଅନ୍ୟପଦ ସହିତ ସମାସ ହୁଏ ଏବଂ ଅବ୍ୟୟ ପଦର ଅର୍ଥର ପ୍ରାଧାନ୍ୟ ରହେ, ତାହାକୁ ଅବ୍ୟୟୀଭାବ ସମାସ କୁହାଯାଏ । ବିଭିନ୍ନ ଅର୍ଥରେ ଅବ୍ୟୟୀଭାବ ସମାସ ହୁଏ ।

୧ । **ସାମୀପ୍ୟ ଅର୍ଥରେ :**

କଣ୍ଠର ସମୀପ = ଉପକଣ୍ଠ / ପ୍ରତିକଣ୍ଠ
ପଦର ସମୀପ = ଉପପଦ
କୂଳର ସମୀପ = ଉପକୂଳ
ଅକ୍ଷିର ସମୀପ = ସମକ୍ଷ
ବନର ସମୀପ = ଅନୁବନ
ଗଙ୍ଗାର ସମୀପ = ଅନୁଗଙ୍ଗ
ଅନ୍ତର ସମୀପ = ଉପାନ୍ତ
କୁମ୍ଭର ସମୀପ = ଉପକୁମ୍ଭ

୨ । **ସାଦୃଶ୍ୟ ଅର୍ଥରେ :**

ଶବ୍ଦର ସଦୃଶ = ପ୍ରତିଶବ୍ଦ
କୃତିର ସଦୃଶ = ପ୍ରତିକୃତି
ଭାଷାର ସଦୃଶ = ଉପଭାଷା
କଥାର ସଦୃଶ = ଉପକଥା
ଜୀବିକା ସଦୃଶ = ଉପଜୀବିକା
ନାୟକ ସଦୃଶ = ଉପନାୟକ
ବିମ୍ବର ସଦୃଶ = ପ୍ରତିବିମ୍ବ
କ୍ରିୟାର ସଦୃଶ = ପ୍ରତିକ୍ରିୟା
ବନର ସଦୃଶ = ଉପବନ
ବୃତ୍ତିର ସଦୃଶ = ଉପବୃତ୍ତି
ଦ୍ୱୀପର ସଦୃଶ = ଉପଦ୍ୱୀପ
ମୂର୍ତ୍ତିର ସଦୃଶ = ପ୍ରତିମୂର୍ତ୍ତି
ହରିଙ୍କ ସଦୃଶ = ସହରି
ଛବିର ସଦୃଶ = ପ୍ରତିଛବି
ଦ୍ୱନ୍ଦ୍ୱୀର ସଦୃଶ = ପ୍ରତିଦ୍ୱନ୍ଦ୍ୱୀ
ଶବ୍ଦର ସଦୃଶ = ପ୍ରତିଶବ୍ଦ
ଲିପି ସଦୃଶ = ପ୍ରତିଲିପି
ନଦୀ ସଦୃଶ = ଉପନଦୀ
ନିର୍ବାଚନ ସଦୃଶ = ଉପନିର୍ବାଚନ
ଆଖ୍ୟାନ ସଦୃଶ = ଉପାଖ୍ୟାନ
ଧ୍ୱନିର ସଦୃଶ = ପ୍ରତିଧ୍ୱନି

୩ । **'କ୍ଷୁଦ୍ର' ବା 'ନ୍ୟୂନ' ଅର୍ଥରେ :**

ମନ୍ତ୍ରୀଠାରୁ ନ୍ୟୂନ = ଉପମନ୍ତ୍ରୀ
ସାଗରଠାରୁ ନ୍ୟୂନ = ଉପସାଗର
ଗ୍ରହଠାରୁ କ୍ଷୁଦ୍ର = ଉପଗ୍ରହ
କଥାଠାରୁ ନ୍ୟୂନ = ଉପକଥା
କ୍ଷୁଦ୍ର ବିଭାଗ = ଉପବିଭାଗ
ମହାଦେଶଠାରୁ କ୍ଷୁଦ୍ର = ଉପମହାଦେଶ
ଦେବତାଙ୍କ ଠାରୁ ନ୍ୟୂନ = ଉପଦେବତା
ଅଧକ୍ଷଙ୍କ ଠାରୁ ନ୍ୟୂନ = ଉପାଧକ୍ଷ
ବାଚସ୍ପତିଙ୍କର ଅଧସ୍ତନ (ନ୍ୟୂନ) = ଉପବାଚସ୍ପତି

ନଗର ଠାରୁ କ୍ଷୁଦ୍ର = ଉପନଗର ମହାଦେଶଠାରୁ ନ୍ୟୂନ = ଉପମହାଦେଶ
ପଦ ଠାରୁ ନ୍ୟୂନ = ଉପପଦ ରାଜ୍ୟପାଳଙ୍କଠାରୁ ନ୍ୟୂନ= ଉପରାଜ୍ୟପାଳ
ଦ୍ୱୀପ ଠାରୁ ନ୍ୟୂନ (କ୍ଷୁଦ୍ର) = ଉପଦ୍ୱୀପ ସଚିବଙ୍କଠାରୁ ନ୍ୟୂନ = ଉପସଚିବ
ପୁରାଣ ଠାରୁ ନ୍ୟୂନ = ଉପପୁରାଣ ପତିଙ୍କ ଠାରୁ ନ୍ୟୂନ = ଉପପତି
ଗୁରୁଙ୍କ ଠାରୁ ନ୍ୟୂନ = ଉପଗୁରୁ ନେତାଙ୍କ ଠାରୁ ନ୍ୟୂନ = ଉପନେତା
ଧର୍ମ ଠାରୁ ନ୍ୟୂନ = ଉପଧର୍ମ ରାଷ୍ଟ୍ରପତିଙ୍କଠାରୁ ନ୍ୟୂନ = ଉପରାଷ୍ଟ୍ରପତି

୪ । **ପର୍ଯ୍ୟନ୍ତ ଓ ଆରମ୍ଭ ଅର୍ଥରେ :**

କଣ୍ଠ ପର୍ଯ୍ୟନ୍ତ = ଆକଣ୍ଠ ମରଣ ଯାଏଁ = ଆମରଣ
ସମୁଦ୍ର ପର୍ଯ୍ୟନ୍ତ = ଆସମୁଦ୍ର ବାଲ୍ୟରୁ ଆରମ୍ଭ କରି = ଆବାଲ୍ୟ
ଜୀବନ ଥିବା ପର୍ଯ୍ୟନ୍ତ = ଆଜୀବନ/ଯାବଜ୍ଜୀବନ
ପାଦଠାରୁ ଆରମ୍ଭ କରି ମସ୍ତକ ପର୍ଯ୍ୟନ୍ତ = ଆପାଦମସ୍ତକ
ମୂଳରୁ ଆରମ୍ଭ କରି ଚୂଳ ପର୍ଯ୍ୟନ୍ତ = ଆମୂଳଚୂଳ
କୁମାରିକା ଠାରୁ ଆରମ୍ଭ କରି ହିମାଳୟ ପର୍ଯ୍ୟନ୍ତ = ଆକୁମାରୀହିମାଳୟ
ବ୍ରାହ୍ମଣ ଠାରୁ ଆରମ୍ଭ କରି ଚଣ୍ଡାଳ ପର୍ଯ୍ୟନ୍ତ = ଆବ୍ରାହ୍ମଣ ଚଣ୍ଡାଳ
ଗଙ୍ଗା ଠାରୁ ଆରମ୍ଭ କରି ଗେଦାବରୀ ପର୍ଯ୍ୟନ୍ତ = ଆଗଙ୍ଗାଗୋଦାବରୀ
ପାତାଳ ଠାରୁ ଆରମ୍ଭ କରି=ଆପାତାଳ ଶୈଶବ ଠାରୁ ଆରମ୍ଭ କରି=ଆଶୈଶବ
ପାମର ଠାରୁ ଆରମ୍ଭ କରି = ଆପାମର ଜାନୁ ଠାରୁ ଆରମ୍ଭ କରି = ଆଜାନୁ

୫ । **ଅଭାବ ଅର୍ଥରେ :**

ଜନର ଅଭାବ = ନିର୍ଜନ ଆମିଷର ଅଭାବ = ନିରାମିଷ
ଭିକ୍ଷାର ଅଭାବ = ଦୁର୍ଭିକ୍ଷ ଭୟର ଅଭାବ = ନିର୍ଭୟ
ବିଘ୍ନର ଅଭାବ = ନିର୍ବିଘ୍ନ ହିସାବର ଅଭାବ = ବେହିସାବ
ଉତ୍ସାହର ଅଭାବ = ନିରୁତ୍ସାହ / ଅନୁତ୍ସାହ
ବିବାଦର ଅଭାବ = ନିର୍ବିବାଦ ବିରୋଧର ଅଭାବ = ନିର୍ବିରୋଧ
ବୋଧର ଅଭାବ = ନିର୍ବୋଧ ବନ୍ଦୋବସ୍ତର ଅଭାବ = ବେବନ୍ଦୋବସ୍ତ
ହାଜିରର ଅଭାବ = ଗରହାଜିର ଦମ୍‌ର ଅଭାବ = ବେଦମ୍
ଆନନ୍ଦର ଅଭାବ = ନିରାନନ୍ଦ ହଜମର ଅଭାବ = ବଦହଜମ
ବିଚାରର ଅଭାବ = ନିର୍ବିଚାର ବିଷର ଅଭାବ = ନିର୍ବିଷ

ମକ୍ଷିକାର (ମାଛି) ଅଭାବ = ନିର୍ମକ୍ଷିକ    ଦ୍ୱନ୍ଦ୍ୱର ଅଭାବ = ନିର୍ଦ୍ୱନ୍ଦ୍ୱ
କସୁରର (ଦୋଷ)ଅଭାବ = ବେକସୁର    ଖାତିରର ଅଭାବ = ବେଖାତିର

୬ । **ଅନତିକ୍ରମ ବା ଅନୁସାରେ ଅର୍ଥରେ :**

ଶକ୍ତିକୁ ଅତିକ୍ରମ ନ କରି = ଯଥାଶକ୍ତି    କ୍ରମକୁ ଅତିକ୍ରମ ନ କରି = ଯଥାକ୍ରମ
ବିଧିକୁ ଅତିକ୍ରମ ନ କରି = ଯଥାବିଧି    ଅର୍ଥକୁ ଅତିକ୍ରମ ନ କରି = ଯଥାର୍ଥ
ଉଚିତକୁ ଅତିକ୍ରମ ନ କରି = ଯଥୋଚିତ    ଦାନକୁ ଅତିକ୍ରମ ନ କରି = ଯଥାଦାନ
ରୀତି ଅନୁସାରେ = ଯଥାରୀତି    ନିୟମ ଅନୁସାରେ = ଯଥାନିୟମ
କାମକୁ ଅତିକ୍ରମ ନ କରି = ଯଥାକାମ    ସାଧ୍ୟକୁ ଅତିକ୍ରମ ନ କରି = ଯଥାସାଧ୍ୟ
କାଳକୁ ଅତିକ୍ରମ ନ କରି = ଯଥାକାଳ    ଯୋଗ୍ୟତାର ଅନୁରୂପ = ଯଥାଯୋଗ୍ୟ
ଇଚ୍ଛାକୁ ଅତିକ୍ରମ ନ କରି = ଯଥେଚ୍ଛା    ବଳ ଅନୁସାରେ = ଯଥାବଳ
ଲାଭକୁ ଅତିକ୍ରମ ନ କରି = ଯଥାଲାଭ    ରୁଚିକୁ ଅତିକ୍ରମ ନ କରି = ଯଥାରୁଚି
ସମୟକୁ ଅତିକ୍ରମ ନ କରି = ଯଥାସମୟ    ସମ୍ଭବ ଅନୁସାରେ= ଯଥାସମ୍ଭବ
ପୂର୍ବ ଅନୁସାରେ= ଯଥାପୂର୍ବ    ଇଷ୍ଟକୁ ଅତିକ୍ରମ ନ କରି = ଯଥେଷ୍ଟ
ଜ୍ଞାନ ଅନୁସାରେ = ଯଥାଜ୍ଞାନ    କର୍ତ୍ତବ୍ୟ ଅନୁସାରେ = ଯଥାକର୍ତ୍ତବ୍ୟ

୭ । **ଅତିକ୍ରମ ଅର୍ଥରେ :**

ମାତ୍ରାକୁ ଅତିକ୍ରମ କରି = ଅତିମାତ୍ର    ବଳକୁ ଅତିକ୍ରମ କରି = ଅତିବଳ
ମାନବକୁ ଅତିକ୍ରମ କରି = ଅତିମାନବ    ସମ୍ପଦକୁ ଅତିକ୍ରମ କରି = ଅତିସମ୍ପଦ
ମାନସକୁ ଅତିକ୍ରମ କରି = ଅତିମାନସ    ଦୁଃଖକୁ ଅତିକ୍ରମ କରି = ଅତିଦୁଃଖ
ଇନ୍ଦ୍ରିୟକୁ ଅତିକ୍ରମ କରି = ଅତୀନ୍ଦ୍ରିୟ    ରୂପକୁ ଅତିକ୍ରମ କରି = ଅପରୂପ
କାୟାକୁ ଅତିକ୍ରମ କରି = ଅତିକାୟ    ଶୀତକୁ ଅତିକ୍ରମ କରି = ଅତିଶୀତ
ତ୍ରାସକୁ ଅତିକ୍ରମ କରି = ଅତିତ୍ରାସ    ଆଚାରକୁ ଅତିକ୍ରମ କରି = ଅତ୍ୟାଚାର
ହିସାବକୁ ଅତିକ୍ରମ କରି = ବେହିସାବ    ସାରକୁ ଅତିକ୍ରମ କରି = ଅତିସାର

୮ । **ବୀପ୍‌ସା ବା ପୁନଃପୁନଃ ଅର୍ଥରେ :**

କ୍ଷଣକୁ କ୍ଷଣ = ପ୍ରତିକ୍ଷଣ/ଅନୁକ୍ଷଣ    ବର୍ଷକୁ ବର୍ଷ = ପ୍ରତିବର୍ଷ/ଫିବର୍ଷ
ଦିନକୁ ଦିନ = ପ୍ରତିଦିନ    ଅହକୁ ଅହ = ପ୍ରତ୍ୟହ
ଘରକୁ ଘର = ପ୍ରତିଘର    ଜଣକୁଜଣ = ପ୍ରତିଜଣ/ଫିଜଣ
ସାଲକୁ ସାଲ = ଫିସାଲ    ଥରକୁ ଥର = ପ୍ରତିଥର
ସନ୍ଧ୍ୟାକୁ ସନ୍ଧ୍ୟା = ପ୍ରତିସନ୍ଧ୍ୟା    କଥାକୁ କଥା = ପ୍ରତିକଥା
ରୋଜକୁ ରୋଜ = ଫିରୋଜ    କାମକୁ କାମ = ଫିକାମ

ନିତିକୁ ନିତି = ପ୍ରତିନିତି ଘଡ଼ିକୁ ଘଡ଼ି = ହରଘଡ଼ି
ଦିନକୁ ଦିନ = ଅନୁଦିନ, ପ୍ରତିଦିନ ସଂଧ୍ୟାକୁ ସଂଧ୍ୟା = ପ୍ରତିସଂଧ୍ୟା

ଓଡ଼ିଆ ଭାଷାରେ କେତେକ ସ୍ଥଳରେ ବୀପ୍‌ସାର୍ଥରେ ଅବ୍ୟୟ ପଦ ପରପଦ ରୂପେ ବ୍ୟବହୃତ ହୋଇଥାଏ । ଯଥା- ଜଣପିଛା, ଘରପିଛା, ଘରପ୍ରତି, ଲୋକପ୍ରତି, ସଭ୍ୟପ୍ରତି, ମୁଣ୍ଡପିଛା, କେଜିପ୍ରତି, ଘଣ୍ଟାପ୍ରତି, ଫିଘଣ୍ଟା, ଫିଘର ।

୯ । **ପଶ୍ଚାତ୍ ଅର୍ଥରେ :**

ପଶ୍ଚାତ୍ ଗମନ = ଅନୁଗମନ ପଶ୍ଚାତ୍‌ତାପ = ଅନୁତାପ
ପଶ୍ଚାତ୍ କରଣ = ଅନୁକରଣ ଅକ୍ଷିର ପଶ୍ଚାତ୍ = ଅନ୍ୱକ୍ଷ/ପରୋକ୍ଷ
ପଶ୍ଚାତ୍ ସନ୍ଧାନ = ଅନୁସନ୍ଧାନ ପଶ୍ଚାତ୍‌ଧାବନ = ଅନୁଧାବନ
ପଶ୍ଚାତ୍ ସରଣ (ଗମନ) = ଅନୁସରଣ ପଶ୍ଚାତ୍ ଗମ୍ (ଗମନ) = ଅନୁଗ
ସେନାପତିଙ୍କର ପଶ୍ଚାତ୍ = ଅନୁସେନାପତି ପଶ୍ଚାତ୍ ଲିଖନ = ଅନୁଲିଖନ
ପାଦର ପଶ୍ଚାତ୍ = ଅନୁପାଦ ପଶ୍ଚାତ୍ ଜାତ = ଅନୁଜାତ
ପଶ୍ଚାତ ଚିନ୍ତନ = ଅନୁଚିନ୍ତନ ପଶ୍ଚାତ୍ ଶୋଚନା = ଅନୁଶୋଚନା
ବିଷ୍ଣୁଙ୍କର ପଶ୍ଚାତ୍ = ଅନୁବିଷ୍ଣୁ ପଶ୍ଚାତ୍ ସଂଧାନ = ଅନୁସନ୍ଧାନ

ମାତ୍ର 'ଅନୁରାଧା'- ଏହାର ପଶ୍ଚାତ୍ ଅର୍ଥରେ ଅବ୍ୟୟୀଭାବ ସମାସ ହେବ ନାହିଁ; 'ଅନୁରାଧା' ଏକ ନକ୍ଷତ୍ରର ନାମ ।

୧୦ । **ବିପରୀତ ଅର୍ଥରେ :**

କୂଳର ବିପରୀତ = ପ୍ରତିକୂଳ ବିଧାନର ବିପରୀତ = ପ୍ରତିବିଧାନ
ଫଳର ବିପରୀତ = ପ୍ରତିଫଳ କାରର(କାର୍ଯ୍ୟ) ବିପରୀତ = ପ୍ରତିକାର
ବାଦୀର ବିପରୀତ = ପ୍ରତିବାଦୀ/ବିବାଦୀ ପକ୍ଷର ବିପରୀତ = ବିପକ୍ଷ/ପ୍ରତିପକ୍ଷ
କ୍ରିୟାର ବିପରୀତ = ପ୍ରତିକ୍ରିୟା ଘାତର ବିପରୀତ = ପ୍ରତିଘାତ
ହିଂସାର ବିପରୀତ = ପ୍ରତିହିଂସା ବଦଳର ବିପରୀତ = ପ୍ରତିବଦଳ
ଦାନର ବିପରୀତ = ପ୍ରତିଦାନ ବାଦର ବିପରୀତ = ପ୍ରତିବାଦ
ଗତିର ବିପରୀତ = ପଶ୍ଚାଦ୍‌ଗତି ରୋଧର ବିପରୀତ = ପ୍ରତିରୋଧ

୧୧ । **ଯୋଗ୍ୟତା ଅର୍ଥରେ / ଅନୁକୂଳ ଅର୍ଥରେ :**

ରୂପର ଯୋଗ୍ୟ = ଅନୁରୂପ ବର୍ଣ୍ଣର ଯୋଗ୍ୟ = ଅନୁବର୍ଣ୍ଣ
ଗୁଣର ଯୋଗ୍ୟ = ଅନୁଗୁଣ କୂଳର ଯୋଗ୍ୟ = ଅନୁକୂଳ
ବାତର ଅନୁକୂଳ = ଅନୁବାତ ଯୋଗର ଅନୁକୂଳ = ଉପଯୋଗ
ଭୋଗର ଅନୁକୂଳ = ଉପଭୋଗ ଚର୍ଯ୍ୟାର ଯୋଗ୍ୟ = ଉପଚର୍ଯ୍ୟା

**୧୨ । ସମ୍ମୁଖ ଅର୍ଥରେ :**

ଅଗ୍ନିର ସମ୍ମୁଖ = ଅଭ୍ୟଗ୍ନି
ମୁଖର ଆଗରେ = ଅଭିମୁଖ/ସମ୍ମୁଖ
ଅକ୍ଷିର ସମ୍ମୁଖ = ସମକ୍ଷ
ଅଗ୍ନିର ସମ୍ମୁଖ = ପ୍ରତ୍ୟଗ୍ନି
ଅକ୍ଷିର ପ୍ରତି = ପ୍ରତ୍ୟକ୍ଷ

**୧୩ । ଆତିଶଯ୍ୟ ବା ଆଧିକ୍ୟ ଅର୍ଥରେ :**

ଅତିଶୟ ଘଞ୍ଚ = ନିଘଞ୍ଚ
ଅତିଶୟ ବଦ୍ଧ = ନିବଦ୍ଧ
ଅତିଶୟ ଘନ = ନିଘନ, ସଘନ
ଅତିଶୟ ଘର୍ଷଣ = ନିଘର୍ଷଣ
ଅତିଶୟ ଗୁଢ଼ = ନିଗୁଢ଼
ଅତିଶୟ ଧାର୍ଯ୍ୟ = ନିଧାର୍ଯ୍ୟ
ଅତିଶୟ ଉଚ୍ଚ = ଅତ୍ୟୁଚ୍ଚ
ଅତିଶୟ ଆଧୁନିକ = ଅତ୍ୟାଧୁନିକ

**୧୪ । ସମ୍ବନ୍ଧ ବା ବିଷୟ ଅର୍ଥରେ :**

ଆତ୍ମା ସମ୍ବନ୍ଧରେ ବା ଆତ୍ମା ବିଷୟକ = ଅଧ୍ୟାତ୍ମ
ଭୂତ ସମ୍ବନ୍ଧରେ ବା ଭୂତ ବିଷୟରେ = ଅଧିଭୂତ
ଦୈବ ସମ୍ବନ୍ଧରେ ବା ଦୈବ ବିଷୟରେ = ଅଧିଦୈବ
ଗୃହ ସମ୍ବନ୍ଧରେ ବା ଗୃହ ବିଷୟରେ = ଅଧିଗୃହ

## ନିତ୍ୟ ସମାସ

ଯେଉଁ ସମାସରେ 'ସମସ୍ତ' ପଦ ଥିଲେ ମଧ ତା'ର ବିଗ୍ରହ ବାକ୍ୟ ବା ବ୍ୟାସବାକ୍ୟ ନ ଥାଏ କିମ୍ବା ବିଗ୍ରହ ବାକ୍ୟ ଥିଲେ ମଧ ସମସ୍ତ ପଦର ପ୍ରକୃତ ଅର୍ଥ ପ୍ରକାଶ କରୁ ନ ଥାଏ ଅଥବା ସମସ୍ତ ପଦରେ ବିଗ୍ରହବାକ୍ୟରେ ବ୍ୟବହୃତ ପଦମାନଙ୍କ ମଧ୍ୟରୁ ଗୋଟିକୁ ଛାଡ଼ି ଦିଆଯାଇଥାଏ, ତାହାକୁ ନିତ୍ୟସମାସ କହନ୍ତି ।

ଏହା ଦୁଇପ୍ରକାର । ଯଥା- ଅବିଗ୍ରହ ନିତ୍ୟସମାସ ଓ ଅସ୍ୱପଦବିଗ୍ରହ ନିତ୍ୟସମାସ ।

**ଅବିଗ୍ରହ ନିତ୍ୟ ସମାସ** - ବିଗ୍ରହବାକ୍ୟ ନ ଥାଏ । ନିର୍ଦ୍ଦିଷ୍ଟ ନାମବାଚକ ପଦକୁ ବୁଝାଏ ।

କାଠଯୋଡ଼ି - ଏକ ନଦୀର ନାମ । ଏହାର ବ୍ୟାସବାକ୍ୟ ନାହିଁ ।

କାଠକୁ ଯୋଡ଼ି ବା 'କାଠର ଯୋଡ଼ି' - ଏପରି ବ୍ୟାସବାକ୍ୟ ବା ବିଗ୍ରହ ବାକ୍ୟଦ୍ୱାରା ଅର୍ଥବୋଧ ହୁଏ ନାହିଁ ।

ସେହିପରି - ଚାନ୍ଦପୁର - ଏକ ଗ୍ରାମର ନାମ, ପୋକଶୁଙ୍ଘା - ଏକ ତୃଣର ନାମ, କୃଷ୍ଣସର୍ପ - ଏକଜାତୀୟ ନାଗସାପର ନାମ, କଳାସାପ ନୁହେଁ । ଯଦି କୃଷ୍ଣ ଅଟେ ସର୍ପ= 'କୃଷ୍ଣସର୍ପ' ବିଗ୍ରହ ବାକ୍ୟ କରାଯିବ, ତେବେ କର୍ମଧାରୟ ସମାସ ହେବ ।

ବିଲୁଆଖାଇ, କୁଆଖାଇ - ଏକ ଏକ ନଦୀର ନାମ ।

ନୀଳଶୈଳ, ନୀଳକନ୍ଦର - ମହାପ୍ରଭୁ ଜଗନ୍ନାଥଙ୍କ ବାସସ୍ଥାନ ।

ଛାରପୋକ - ଓଡ଼ଶକୁ ବୁଝାଏ ।

ଚାନ୍ଦବାଲି, କଲରାବାଙ୍କ, ହାଣ୍ଡିଧୁଆ, ଅଲଣ୍ଡା ପ୍ରଭୃତି ନିର୍ଦ୍ଦିଷ୍ଟ ସ୍ଥାନକୁ ବୁଝାଉଥିବାରୁ ଅବିଗ୍ରହ ନିତ୍ୟସମାସ ଅଟେ ।

ଅନ୍ୟ ଉଦାହରଣ - ତାଳଚେର, ଅସ୍ତରଙ୍ଗ, ପାଣିକୋଇଲି, ନିଶ୍ଚିନ୍ତକୋଇଲି ।

**ଅସ୍ୱପଦବିଗ୍ରହ ନିତ୍ୟସମାସ** - ସମସ୍ତ ପଦରେ ବିଗ୍ରହ ବାକ୍ୟରେ ବ୍ୟବହୃତ ପଦମାନଙ୍କ ମଧ୍ୟରୁ ଗୋଟିକର ବ୍ୟବହାର ହୋଇ ନ ଥାଏ ।

ଯଥା - ଅନ୍ୟ ଘଟ = ଘଟାନ୍ତର ।

'ଘଟାନ୍ତର' ସମସ୍ତପଦ 'ଘଟ ଓ ଅନ୍ତର' ଏହି ଦୁଇପଦର ମିଳନରେ ଗଠିତ । 'ଘଟରୁ ଅନ୍ତର' ଏପରି ବିଗ୍ରହ ବାକ୍ୟ କଲେ 'ଘଟାନ୍ତର' ସମସ୍ତ ପଦର ଯଥାର୍ଥ ଅର୍ଥବୋଧ ହେଉନାହିଁ । ବିଗ୍ରହ ବାକ୍ୟରେ ଥିବା ଅନ୍ୟ ଓ ଘଟ ସମସ୍ୟମାନ ପଦ ଦ୍ୱୟରୁ 'ଅନ୍ୟ' ପଦକୁ ସମସ୍ତ ପଦରେ ବାଦ୍ ଦିଆଯାଇଛି । ବିଗ୍ରହ ବାକ୍ୟରେ ଥିବା ସ୍ୱ (ନିଜ) ପଦ ମଧ୍ୟରୁ ଗୋଟିକୁ ବାଦ୍ ଦେଇ ସମାସ କରାଯାଇଥିବାରୁ ଏହା ଅସ୍ୱପଦବିଗ୍ରହ ନିତ୍ୟସମାସ ।

ସେହିପରି-

| | | |
|---|---|---|
| ୧ । | ଅନ୍ୟ ଦେଶ = ଦେଶାନ୍ତର | ଅନ୍ୟ ଗ୍ରାମ = ଗ୍ରାମାନ୍ତର |
| | ଅନ୍ୟ ପାଠ = ପାଠାନ୍ତର | ଅନ୍ୟ ଜନ୍ମ = ଜନ୍ମାନ୍ତର |
| | ଅନ୍ୟ ଗୃହ = ଗୃହାନ୍ତର | ଅନ୍ୟ ଗ୍ରନ୍ଥ = ଗ୍ରନ୍ଥାନ୍ତର |
| | କେବଳ ଜ୍ଞାନ = ଜ୍ଞାନମାତ୍ର | କୁତ୍ସିତ ପୁରୁଷ = କୁପୁରୁଷ |

ଏଗୁଡ଼ିକ କର୍ମଧାରୟ ସମାସର ମଧ୍ୟ ଉଦାହରଣ ଅଟେ ।

| | | |
|---|---|---|
| ୨ । | ଜଳ ନିମିତ୍ତ = ଜଳାର୍ଥ | ପାନ ନିମିତ୍ତ = ପାନାର୍ଥ |
| | ପୂଜା ନିମିତ୍ତ = ପୂଜାର୍ଥ | ଈଷତ୍ ଉଷ୍ଣ = କଦୁଷ୍ଣ |
| | ଧର୍ମ ନିମିତ୍ତ = ଧର୍ମାର୍ଥ | ସତ୍ୟ ନିମିତ୍ତ = ସତ୍ୟାର୍ଥ |
| | ପିତାଙ୍କ ତୁଲ୍ୟ = ପିତୃକଳ୍ପ / ପିତୃବ୍ୟ / ପିତୃପ୍ରତିମ | |
| | ଭ୍ରାତାଙ୍କ ତୁଲ୍ୟ = ଭ୍ରାତୃକଳ୍ପ | ଦେବଙ୍କ ତୁଲ୍ୟ = ଦେବକଳ୍ପ, ଦେବପ୍ରତିମ |
| | ନାତିର ପୁଅ = ଅଣନାତି | ଅଜାଙ୍କର ପିତା = ଅଣଅଜା |
| | ଅବତାରର ତୁଲ୍ୟ = ଅବତାରଭୂତ | ଶରୀରର ତୁଲ୍ୟ = ଶରୀରତୁଲ୍ୟ |
| | ଆତ୍ମାର ତୁଲ୍ୟ = ଆତ୍ମଭୂତ | |

## ଅନୁଶୀଳନୀ

୧ । ସମାସ କାହାକୁ କହନ୍ତି, ଉଦାହରଣ ସହ ବୁଝାଅ ।

୨ । ସମାସ କରିବାର ଉଦ୍ଦେଶ୍ୟ କ'ଣ ?

୩ । ସମସ୍ତପଦ ଓ ସମସ୍ୟମାନପଦ ମଧ୍ୟରେ ଥିବା ପାର୍ଥକ୍ୟ ଉଦାହରଣ ଦେଇ ବୁଝାଅ ।

୪ । ବିଗ୍ରହ ବାକ୍ୟ କାହାକୁ କହନ୍ତି, ଉଦାହରଣ ଦେଇ ଲେଖ ।

୫ । ଅର୍ଥ ଅନୁସାରେ ସମାସ କିପରି ଭିନ୍ନଭିନ୍ନ ହୋଇଥାଏ, ଉଦାହରଣ ଦେଇ ବୁଝାଅ ।

୬ । ନିମ୍ନଲିଖିତ ସମସ୍ତ ପଦଗୁଡ଼ିକର ବିଗ୍ରହବାକ୍ୟ ଲେଖି ସମାସର ନାମ ଲେଖ-
ନଳକୂପ, ପାଣିକଳ, କୁଟୀରଶିଳ୍ପ, ସକରୁଣ, ମଝିଦରିଆ, ସର୍ବଜ୍ଞ, ଇଚ୍ଛାଶକ୍ତି, ଯୁବଜାନି, ସପତ୍ନୀ, ସପତ୍ନୀକ, ଅନାବରଣ, ଲୋକାର୍ପଣ, ମନଛୁଆଁ, ମଧୁରସ୍ମୃତି, ରୋଗଗ୍ରସ୍ତ, କାରାମୁକ୍ତ, ବ୍ୟାସାର୍ଦ୍ଧ, ରାଜମାର୍ଗ, ଗଧକ୍ଷୀର, ନରାଧମ, ଧରାଶାୟୀ, ବେସରକାରୀ, ତୃଣଭୋଜୀ, ତୁହାକୁତୁହା, ଲଘୁଚାପ, ମହାନବମୀ, ଯୋଗଜନ୍ମା, ଦେବର୍ଷି, ବୌଦ୍ଧଧର୍ମ, ନରସିଂହ, ଫୁଲକଅଁଳ, ପତିଦେବତା, ରଣତରୀ, ମହାବିଦ୍ୟା, ଜନ୍ମାନ୍ତର, କଦର୍ଥ, ଶତାବ୍ଦୀ, ବୁଢ଼ାବୁଢ଼ୀ, ବୀଣାପାଣି, ସୂର୍ପଣଖା, ଶୁକ୍ଳାମ୍ବର, ହାତାହାତି, ପ୍ରତିଧ୍ୱନି, ଉପଗ୍ରହ, ଅନୁକୂଳ, ରତ୍ନଗର୍ଭା, କୋମଳମତି, ଶରଶଯ୍ୟା, ମଧ୍ୟାହ୍ନଭୋଜନ, ଶ୍ରମଦାନଶିବିର, ଶୁଭାରମ୍ଭ, କଳାକାର, ସତ୍ୟନିଷ୍ଠ, ନୋବେଲପୁରସ୍କାର, ମନପେଡ଼ି, ନାକେଦମ୍, ମୁନିପୁଙ୍ଗବ, ଶ୍ରୀହୀନ ।

୭ । ସମାସଦ୍ୱାରା ଏକପଦରେ ପ୍ରକାଶ କର-
ପିତାଙ୍କ ତୁଲ୍ୟ, ଅତିଶୟବଦ୍ଧ, ବାଦୀର ବିପରୀତ, ମାନସକୁ ଅତିକ୍ରମ କରି, ମତ୍ସ୍ୟଜୀବିକା ଯାହାର, ଉକୁଣି ମୁଣ୍ଡରେ ଯାହାର, ସାତକୋଶ ଦୂରତା ଯାହାର, ଚିଲର ଆଖି ପରି ଆଖି ଯାହାର, ଚତୁଃଯୁଗର ସମାହାର, ବଚନ ରୂପକ ଅମୃତ, ବଜ୍ର ପରି କଠିନ, ଯେ ଭୀମ ସେ କାନ୍ତ, ସର୍ବ ଗ୍ରାସ କରେ ଯେ, ନ ଅତି ବିଳମ୍ବ, ନେତାମାନଙ୍କର ରାଜା, ଯାଦୁ ନିମିତ୍ତ ମଲମ, ପୁଷ୍ପ ଧନୁ ଯାହାର, ଆତ୍ମା ସମ୍ବନ୍ଧରେ, ପଶ୍ଚାତ୍ ଗମନ କରେ ଯେ, ନାହିଁ ଆଶା ଯାହାର, ପରକୁ ତାପ ଦିଏ ଯେ, କପି ଧ୍ୱଜାରେ ଯାହାର, ମୂର୍ତ୍ତିର ସଦୃଶ, ଅହନ୍ ଓ ରାତ୍ରି, ଜାୟା ଓ ପତି, ବିଧି ଅନୁସାରେ, କର୍ମଜୀବିନୀ ମହିଳା ।

୮ । ନିମ୍ନଲିଖିତ ସମସ୍ତ ପଦଗୁଡ଼ିକର ଭିନ୍ନଭିନ୍ନ ବ୍ୟାସ ବାକ୍ୟ କରି ସମାସ ନାମ ଲେଖ ।
ସର୍ବଶିକ୍ଷା, ଘରମୁହାଁ, ପାଦପଦ୍ମ, ପୀତାମ୍ବର, ଚନ୍ଦ୍ରମୁଖ, ମୁଖଚନ୍ଦ୍ର, ଷଡ଼ାନନ ।

୯ । ସମାସଦ୍ୱାରା ତଳ ବାକ୍ୟଗୁଡ଼ିକୁ ସଂକ୍ଷିପ୍ତ କର ।

(କ) ଶକ୍ତିକୁ ଅତିକ୍ରମ ନ କରି ପରର ଉପକାର କର ।

(ଖ) ଦଶରଥଙ୍କର ପୁତ୍ର ରାମଚନ୍ଦ୍ର ଅନୁଜ ଓ ପତ୍ନୀ ସହିତ ବନରେ ବାସ କରିଥିଲେ ।

(ଗ) ଯାହାର ବିବେକ ନାହିଁ, ତାହାଠାରୁ ଦୂରରେ ରହ ।

(ଘ) ଛାତ୍ର ଓ ଛାତ୍ରୀମାନେ କ୍ରମ ଅନୁସାରେ ଖେଳ ହେଉଥିବା ପଡ଼ିଆକୁ ଯାଆନ୍ତୁ ।

(ଙ) ସ୍ୱାମୀଙ୍କଦ୍ୱାରା ପରିତ୍ୟକ୍ତା ସୀତା ଜନର ଅଭାବ ଥିବା ବନରେ ବିଳାପ କଲେ ।

(ଚ) ଯେ ସବୁ ଦେଖିପାରନ୍ତି, ଯାହାଙ୍କ ଠାରେ ସମସ୍ତ ଶକ୍ତି ଅଛି, ସେ ସବୁ ଜାଣିପାରନ୍ତି, ଯେ ସବୁଠାରେ ବ୍ୟାପୀ ରହିଛନ୍ତି, ସେ ସମସ୍ତଙ୍କର ଈଶ୍ୱର, ସେହି ପରଠାରୁ ପର ପରମ ଈଶ୍ୱରଙ୍କୁ ଭକ୍ତିବଳରେ ଲାଭ କରିହୁଏ ।

(ଛ) ଦ୍ରୌପଦୀଙ୍କର କ୍ରୋଧ ଓ ଅପମାନ ରୂପକ ଅନଳରେ କୌରବଙ୍କର କୁଳ ଧ୍ୱଂସ ପାଇଥିଲା ।

(ଜ) ଜୀବନ ଥିବା ପର୍ଯ୍ୟନ୍ତ ମୁଁ ତୁମର ନିନ୍ଦା ଓ ଅପମାନକୁ ଭୁଲିପାରିବି ନାହିଁ ।

(ଝ) ସମାନ ଗୋତ୍ର ଯେଉଁମାନଙ୍କର ସେମାନଙ୍କ ଭିତରେ ବିବାହ ଉଚିତ ନୁହେଁ ।

(ଞ) କାନରେ କହେ ଯେ, ଖଳ ପ୍ରକୃତି ଯାହାର ସେଭଳି ଲୋକ ବିଶ୍ୱାସର ଯୋଗ୍ୟ ନୁହେଁ ।

୧୦। ତଳଲିଖିତ ଶବ୍ଦଗୁଡ଼ିକୁ ପୂର୍ବପଦ ରୂପେ ବ୍ୟବହାର କରି ସମସ୍ତପଦ ଗଢ଼ ଓ ବ୍ୟାସବାକ୍ୟ ସହ ସମାସର ନାମ ଲେଖ ।

ସ୍ନାନ, ପତି, ଧର୍ମ, ଲବ୍ଧ, ରତ୍ନ, ସୁ, ପୂଜା, ପୋଡ଼ା, ପ୍ରାଣ, ମହା

୧୧। ନିମ୍ନଲିଖିତ ଶବ୍ଦଗୁଡ଼ିକୁ ପରପଦରୂପେ ବ୍ୟବହାର କରି ସମାସ କର ଓ ସମାସ ନାମ ଲେଖ ।

ଭ୍ରଷ୍ଟ, ନାଭି, ସିଂହ, ବୃକ୍ଷ, ଇନ୍ଦ୍ର, ପାଣି, ମାର୍ଗ, ରୁଚି, ଧନ, ମା

୧୨। ନିମ୍ନଲିଖିତ ବିଗ୍ରହ ବାକ୍ୟଗୁଡ଼ିକର ସମସ୍ତ ପଦ ଲେଖ ।

ମଗଧର ରାଜା, ରାଜାଙ୍କର ପରିଷଦ, ଖଗ ବାହନ ଯାହାର, ନଳଯୁକ୍ତ କୂପ, ଖଣ୍ଡାଦ୍ୱାରା ହଣା, ପତିଟି ବ୍ରତ ଯେଉଁ ନାରୀର, ଅରିକୁ ଦମନ କରେ ଯେ, ଶ୍ୟାମ ଘନ ପରି, ଘନ ପରି ଶ୍ୟାମ, ପଶ୍ଚାତ୍ ଗମନ, ପୁଷ୍ପ ଧ୍ୱଜାରେ ଯାହାର, ପତିଟି ପର ଅୟନ ଯେଉଁ ନାରୀର, ବିନ୍ଧ୍ୟ ନାମକ ଅଚଳ, ଲକ୍ଷ୍ମୀ ଛାଡ଼ିଛନ୍ତି ଯାହାକୁ, ଆଚାର ଓ ବିଚାର ।



# ସନନ୍ତ

ସଂସ୍କୃତ ଭାଷାରେ ସନନ୍ତ ଧାତୁ, ସନନ୍ତ କ୍ରିୟା ଓ ସନନ୍ତ ଶବ୍ଦର ବ୍ୟବହାର ରହିଛି । ଓଡ଼ିଆ ଭାଷାରେ କେବଳ ସନନ୍ତ ଶବ୍ଦର ସ୍ୱଳ୍ପ ବ୍ୟବହାର ଅଛି । ଏହି ସନନ୍ତ ଶବ୍ଦଗୁଡ଼ିକ ବିଶେଷ୍ୟ ଓ ବିଶେଷଣ ପଦ ଭାବରେ ବ୍ୟବହୃତ ହୁଅନ୍ତି ।

'ସନ୍' ଅନ୍ତରେ (ଶେଷରେ) ଲାଗି ଗଠିତ ହୁଏ ବୋଲି ଏହାର ନାମ ସନନ୍ତ । ଇଚ୍ଛା କରିବା ଅର୍ଥରେ ମୂଳ ସଂସ୍କୃତ ଧାତୁରେ ସନ୍ ପ୍ରତ୍ୟୟ କରି ସନନ୍ତ ଧାତୁ ଗଠିତ ହୁଏ । 'ସନ୍'ରୁ 'ସ୍' ରହେ । ପରେ ସନନ୍ତ ଧାତୁରୁ 'ଅ' ପ୍ରତ୍ୟୟ ପରେ ସ୍ତ୍ରୀଲିଙ୍ଗରେ 'ଆ' ପ୍ରତ୍ୟୟ ବା 'ଉ' ପ୍ରତ୍ୟୟ କରି ସନନ୍ତ ଶବ୍ଦ ଗଢ଼ାଯାଏ । 'ଆ' ପ୍ରତ୍ୟୟାନ୍ତ ଶବ୍ଦ ବିଶେଷ୍ୟ ଓ 'ଉ' ପ୍ରତ୍ୟୟାନ୍ତ ଶବ୍ଦ ବିଶେଷଣ ଅଟେ । 'ତ' ପ୍ରତ୍ୟୟ ଯୋଗରେ ବିଶେଷଣ ପଦ ମଧ୍ୟ ନିଷ୍ପନ୍ନ ହୁଏ । ଯଥା-

(କ) ପା + ସନ୍ = ପିପାସ୍ (ସନନ୍ତଧାତୁ) ପିପାସ୍ + ଅ = ପିପାସ

ପିପାସ + ଆ = ପିପାସା - ବିଶେଷ୍ୟ - ପିଇବାର ଇଚ୍ଛା

ପିପାସ + ଉ = ପିପାସୁ = ବିଶେଷଣ - ପିଇବାକୁ ଇଚ୍ଛୁକ

କେତେକ ପ୍ରଚଳିତ ବିଶେଷ୍ୟ ଓ ବିଶେଷଣ ସମ୍ବନ୍ଧୀୟ ସନନ୍ତ ଶବ୍ଦ-

| ମୂଳଧାତୁ | | ଅର୍ଥ | ସନନ୍ତ ଧାତୁ | ବିଶେଷ୍ୟ | ବିଶେଷଣ |
|---|---|---|---|---|---|
| ଦୃଶ୍ | - | ଦେଖିବା | ଦିଦୃକ୍ଷ୍ | ଦିଦୃକ୍ଷା | ଦିଦୃକ୍ଷୁ |
| ଜି | - | ଜୟ କରିବା | ଜିଗୀଷ୍ | ଜିଗୀଷା | ଜିଗୀଷୁ |
| କୃ | - | କରିବା | ଚିକୀର୍ଷ୍ | ଚିକୀର୍ଷା | ଚିକୀର୍ଷୁ |
| ଗମ୍ | - | ଯିବା | ଜିଗମିଷ୍ | ଜିଗମିଷା | ଜିଗମିଷୁ |
| ଜ୍ଞା | - | ଜାଣିବା | ଜିଜ୍ଞାସ୍ | ଜିଜ୍ଞାସା | ଜିଜ୍ଞାସୁ, ଜିଜ୍ଞାସିତ |
| ପଠ୍ | - | ପଢ଼ିବା | ପିପଠିସ୍ | ପିପଠିଷା | ପିପଠିଷୁ |
| ଭୁଜ୍ | - | ଖାଇବା | ବୁଭୁକ୍ଷ୍ | ବୁଭୁକ୍ଷା | ବୁଭୁକ୍ଷୁ, ବୁଭୁକ୍ଷିତ |
| ମୁଚ୍ | - | ମୁକ୍ତ କରିବା | ମୁମୁକ୍ଷ୍ | ମୁମୁକ୍ଷା | ମୁମୁକ୍ଷୁ |
| ମୃ | - | ମରିବା | ମୁମୂର୍ଷ୍ | ମୁମୂର୍ଷା | ମୁମୂର୍ଷୁ |
| ଲଭ୍ | - | ପାଇବା | ଲିପ୍ସ୍ | ଲିପ୍ସା | ଲିପ୍ସୁ |
| ବଦ୍ | - | କହିବା | ବିବକ୍ଷ୍ | ବିବକ୍ଷା | ବିବକ୍ଷୁ, ବିବକ୍ଷିତ |
| ଶ୍ରୁ | - | ଶୁଣିବା | ଶୁଶ୍ରୂଷ୍ | ଶୁଶ୍ରୂଷା | ଶୁଶ୍ରୂଷୁ |
| ହନ୍ | - | ହତ୍ୟାକରିବା | ଜିଘାସ୍ | ଜିଘାସା | ଜିଘାସୁ |
| ପା | - | ପିଇବା | ପିପାସ୍ | ପିପାସା | ପିପାସୁ, ପିପାସିତ |

ସନନ୍ତ ଶବ୍ଦର ବାକ୍ୟରେ ବ୍ୟବହାର :

୧ । ଗ୍ରୀଷ୍ମକାଳରେ ଲୋକଙ୍କର ପିପାସା ବୃଦ୍ଧି ପାଏ ।

୨ । ପ୍ରତ୍ୟେକଙ୍କର ଜ୍ଞାନପିପାସା ରହିବା ଉଚିତ ।

୩ । ପିପାସୁ ଲୋକକୁ ଜଳଦିଅ ।

୪ । ରମେଶ ଏକ ଜ୍ଞାନପିପାସୁ ଛାତ୍ର ।

୫ । ମୋର ଚଳଚ୍ଚିତ୍ର-ଦିଦୃକ୍ଷା ନାହିଁ ।

୬ । ଆଲୋକ ପରି ଚଳଚ୍ଚିତ୍ର-ଦିଦୃକ୍ଷୁ କମ୍ ଅଛନ୍ତି ।

୭ । ସାମ୍ପ୍ରତିକ ପୃଥିବୀରେ ବୃହତ୍‌ଶକ୍ତିମାନଙ୍କର ଯୁଦ୍ଧଜିଗୀଷା ହ୍ରାସ ପାଇଛି ।

୮ । ବିଜ୍ଞାନ ବଳରେ ମଣିଷ ଆଜି ବିଭିନ୍ନ ଗ୍ରହଜିଗୀଷୁ ହୋଇଛି ।

୯ । ମୁମୁକ୍ଷା ଜୀବନର ଲକ୍ଷ୍ୟ ।

୧୦ । ମୁମୁକ୍ଷୁ ପରୀକ୍ଷିତଙ୍କୁ ଶୁକଦେବ ଭାଗବତ ଶୁଣାଇଥିଲେ ।

୧୧ । ଜିଜ୍ଞାସା ଛାତ୍ରର ଏକ ମହତ୍ ଗୁଣ ।

୧୨ । ଜିଜ୍ଞାସୁ ଛାତ୍ର ବହୁଜ୍ଞାନର ଅଧିକାରୀ ହୋଇପାରେ ।

୧୩ । ଜିଜ୍ଞାସିତ ପ୍ରଶ୍ନର ଉତ୍ତର ଦିଅ ।

୧୪ । ଧନଲିପ୍‌ସା ମଣିଷକୁ ଆଜି ପାଗଳ କରିଛି ।

୧୫ । ବ୍ୟକ୍ତି ସମ୍ମାନଲିପ୍‌ସୁ ହେବା ଉଚିତ ।

୧୬ । ବାର୍ଦ୍ଧକ୍ୟରେ ଲୋକର ପୁରାଣଶୁଶ୍ରୂଷା ଜାତ ହୁଏ ।

୧୭ । ସମ୍ପ୍ରତି ପୁରାଣଶୁଶ୍ରୂଷୁଙ୍କ ସଂଖ୍ୟା ହ୍ରାସ ପାଉଛି ।

୧୮ । ଦୁସ୍ଥ ମାନବର ଶୁଶ୍ରୂଷାରେ ରେଡକ୍ରସ୍ ସର୍ବଦା କାର୍ଯ୍ୟରତ ।

୧୯ । ଗୋପବନ୍ଧୁ ଅସହାୟ, ପୀଡ଼ିତ ମଣିଷର ସେବାଶୁଶ୍ରୂଷା ପାଇଁ ନିଜକୁ ଅର୍ପଣ କରିଥିଲେ ।

କିନ୍ତୁ ଗୁପ୍, ତିଜ୍, କିତ୍, ମାନ୍ ଓ ବଧ୍ ଧାତୁ ସନ୍ ପ୍ରତ୍ୟାୟାନ୍ତ ହୋଇ ବ୍ୟବହୃତ ହୁଅନ୍ତି ସତ; ମାତ୍ର ଏଗୁଡ଼ିକର ଇଚ୍ଛା ଅର୍ଥ ପ୍ରକାଶ ପାଏ ନାହିଁ । ଏଗୁଡ଼ିକ ବିଶିଷ୍ଟ ଅର୍ଥକୁ ପ୍ରକାଶ କରିଥା'ନ୍ତି । ଯଥା-

ଗୁପ୍ - ଜୁଗୁପ୍‌ସା (ଘୃଣା)

ତିଜ୍ - ତିତିକ୍ଷା (କ୍ଷମା)

କିତ୍ - ଚିକିତ୍ସା (ରୋଗ ପ୍ରତିକାର)

ମାନ୍ - ମୀମାଂସା (ବିଚାର, ନିଷ୍ପତ୍ତି)

ବଧ୍ - ବୀଭତ୍ସ (ନିନ୍ଦା), ବୀଭତ୍ସ + ଆ = ବୀଭତ୍ସା, ବୀଭତ୍ସ + ଉ = ବୀଭତ୍ସୁ

# ଯଙନ୍ତ

ଅତିଶୟ ବା ପୁନଃପୁନଃ ଅର୍ଥରେ ସଂସ୍କୃତ ଧାତୁରେ 'ଯଙ୍' ପ୍ରତ୍ୟୟ ଯୋଗ କରାଯାଇ ଯେଉଁ ଧାତୁ ନିଷ୍ପନ୍ନ ହୁଏ, ତାକୁ ଯଙନ୍ତ ଧାତୁ କହନ୍ତି । ଓଡ଼ିଆରେ ଏଗୁଡ଼ିକ କ୍ରିୟାରୂପେ ବ୍ୟବହୃତ ନ ହୋଇ କେବଳ ବିଶେଷଣ ପଦରୂପେ ବ୍ୟବହୃତ ହୁଅନ୍ତି । ଯଙନ୍ତ ଧାତୁର ପରେ 'ମାନ' ପ୍ରତ୍ୟୟ ଯୋଗ କରିବାଦ୍ୱାରା ବିଶେଷଣ ପଦ ଗଠିତ ହୁଏ । ତଳେ କେତେକ ଦୃଷ୍ଟାନ୍ତ ଦିଆଗଲା ।

| ମୂଳଧାତୁ | ଅର୍ଥ | ଯଙନ୍ତଧାତୁ-ଅର୍ଥ | ନିଷ୍ପନ୍ନ ବିଶେଷଣ ଶବ୍ଦ |
|---|---|---|---|
| ଜ୍ୱଲ୍ | ଜଳିବା | ଜାଜ୍ୱଲ୍ୟ (ପୁନଃପୁନଃ ଜଳିବା) | ଜାଜ୍ୱଲ୍ୟମାନ (ପୁନଃପୁନଃ ଜଳୁଥିବା) |
| ଦୀପ୍ | ଉଜ୍ଜ୍ୱଳହେବା | ଦେଦୀପ୍ୟ (ଅତିଶୟ ଦୀପ୍ତ ହେବା) | ଦେଦୀପ୍ୟମାନ (ଯେ ଅତିଶୟ ଉଜ୍ଜ୍ୱଳ) |
| ଦୃଶ୍ | ଦେଖିବା | ଦରୀଦୃଶ୍ୟ (ପୁନଃପୁନଃ ଦେଖିବା) | ଦରୀଦୃଶ୍ୟମାନ (ଯେ ବାରମ୍ବାର ଦେଖା ହେଉଛି) |
| ପା | ପିଇବା | ପେପୀୟ (ବାରମ୍ବାର ପିଇବା) | ପେପୀୟମାନ (ଯେ ମୁହୁର୍ମୁହୁଃ ପିଆ ହେଉଛି) |
| ରୁଦ୍ | କାନ୍ଦିବା | ରୋରୁଦ୍ୟ(ବାରମ୍ବାର କାନ୍ଦିବା) | ରୋରୁଦ୍ୟମାନ (ଯେ ବାରମ୍ବାର କାନ୍ଦୁଛି) |

**ବାକ୍ୟରେ ବ୍ୟବହାର :**

୧ । ଆକାଶରୁ ଜାଜ୍ୱଲ୍ୟମାନ ଉଲ୍କା ଭୂପତିତ ହେଲା ।

୨ । ନରସିଂହ ଦେବଙ୍କ କୀର୍ତ୍ତି କୋଣାର୍କମନ୍ଦିର ଏବେ ମଧ୍ୟ ଦେଦୀପ୍ୟମାନ ରହିଛି ।

୩ । ଦରୀଦୃଶ୍ୟମାନ ଚଳଚ୍ଚିତ୍ର ଦର୍ଶନକୁ ଆନନ୍ଦ ଦେଇପାରେ ନାହିଁ ।

୪ । ରାମରସାମୃତ ପେପୀୟମାନ ହେଲେ, ଲୋକର ସଂସାରମମତା କଟିଯାଏ ।

୫ । ବନଭୂମିରେ ବାଲ୍ମୀକି ରୋରୁଦ୍ୟମାନା ସୀତାଙ୍କୁ ସାନ୍ତ୍ୱନା ଦେଲେ ।

# କୃଦନ୍ତ

ଶବ୍ଦ ଗଠନ କରିବାପାଇଁ ବିଭିନ୍ନ ପଦ୍ଧତି ଅଛି । ଧାତୁରେ ପ୍ରତ୍ୟୟ ଯୋଗ କରି ଶବ୍ଦ ଗଠନ କରିବା ସେଥିରୁ ଅନ୍ୟତମ । ଧାତୁର ପରେ ଅ, ଅକ, ଅନ, ତ, ତି, ତବ୍ୟ ଓ ଅନୀୟ ପ୍ରଭୃତି ପ୍ରତ୍ୟୟ ଲାଗେ । ଧାତୁରେ ଲାଗୁଥିବା ଏହି ପ୍ରତ୍ୟୟସବୁକୁ 'କୃତ୍' ପ୍ରତ୍ୟୟ ବୋଲି କହନ୍ତି ।

ଧାତୁର ଅନ୍ତରେ 'କୃତ୍' ପ୍ରତ୍ୟୟ ଲାଗି ଯେଉଁ ଶବ୍ଦ ଗଠିତ ହୁଏ, ତାକୁ **କୃଦନ୍ତ ଶବ୍ଦ** କୁହାଯାଏ । ଯଥା-

| | |
|---|---|
| ହସ୍ + ଅ = ହସ | ବସ୍ + ଅ = ବାସ |
| ପଠ୍ + ଅକ = ପାଠକ | ନୀ + ତି = ନୀତି |
| ଗମ୍ + ଅନ = ଗମନ | କୃ + ତବ୍ୟ = କର୍ତ୍ତବ୍ୟ |
| ଭୀ + ତ = ଭୀତ | ଦା + ଅନୀୟ = ଦାନୀୟ |

ଧାତୁର ପରେ ପ୍ରତ୍ୟୟଗୁଡ଼ିକ ବିଭିନ୍ନ ଅର୍ଥରେ ଯୁକ୍ତ ହୋଇଥାଏ । ସେହି ଅର୍ଥକୁ ବାଚ୍ୟ କହନ୍ତି । ବାଚ୍ୟ ଦୁଇପ୍ରକାର । ଯଥା- କାରକ ବାଚ୍ୟ ଓ ଭାବ ବାଚ୍ୟ ।

କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ ପ୍ରଭୃତି କାରକ ଅର୍ଥରେ ଧାତୁରେ ପ୍ରତ୍ୟୟ ଲାଗିଥିଲେ, ସେହି ଅର୍ଥକୁ **କାରକ ବାଚ୍ୟ** କହନ୍ତି ।

ଧାତୁର ଅର୍ଥକୁ **ଭାବ** କୁହାଯାଏ । ଯେଉଁଠାରେ କୃଦନ୍ତ ଶବ୍ଦରୁ କେବଳ ଭାବ ବା ଧାତୁର ଅର୍ଥ ପ୍ରକାଶ ପାଏ, ତାହା **ଭାବ ବାଚ୍ୟ** । କାରକବାଚ୍ୟ- କାରକ **ଛଅ**ପ୍ରକାର ହୋଇଥିବାରୁ କାରକବାଚ୍ୟ ଛଅପ୍ରକାର ।

୧ । **କର୍ତ୍ତୃକାରକ ବାଚ୍ୟ :**

ପଠ୍ + ଅକ = ପାଠକ - ଯେ ପଢ଼େ

ଲିଖ୍ + ଅକ = ଲେଖକ - ଯେ ଲେଖେ

କୃ + ତୃ = କର୍ତ୍ତା = ଯେ କରେ

ମୃ + ତ = ମୃତ - ଯେ ମରିଛି

ପରି-ଶ୍ରମ + ଇନ୍ = ପରିଶ୍ରମୀ - ଯେ ପରିଶ୍ରମ କରେ

ଜଗ୍ + ଆଳି = ଜଗାଳି - ଯେ ଜଗେ

ବଢ଼୍ + ଅନ୍ତା = ବଢ଼ନ୍ତା - ଯେ ବଢୁଛି

୨ । **କର୍ମକାରକ ବାଚ୍ୟ :**

ଦୃଶ୍ + ଅନୀୟ = ଦର୍ଶନୀୟ - ଯାହାକୁ ଦର୍ଶନ କରିବାର କଥା

ପଠ୍ + ତ = ପଠିତ - ଯାହାକୁ ପଢ଼ାଯାଇଛି

ଲିଖ୍ + ତ = ଲିଖିତ - ଯାହାକୁ ଲେଖାଯାଇଛି

ଦା + ତବ୍ୟ = ଦାତବ୍ୟ - ଯାହାକୁ ଦେବା ଉଚିତ

ଭାଳ୍ + ଏଣି = ଭାଳେଣି - ଯାହାକୁ ଭାଳନ୍ତି

ବାଜ୍ + ଆ = ବାଜା - ଯାହାକୁ ବଜାନ୍ତି

୩ । **କରଣକାରକ ବାଚ୍ୟ :**

ଖେଳ୍ + ଅଣା = ଖେଳଣା (ନା) - ଯାହାଦ୍ୱାରା ଖେଳନ୍ତି

ବିଞ୍ଚ୍ + ଅଣା = ବିଞ୍ଚଣା - ଯାହାଦ୍ୱାରା ବିଞ୍ଚି ହୁଅନ୍ତି

ପିଟ୍ + ଅଣା = ପିଟଣା - ଯାହାଦ୍ୱାରା ପିଟାଯାଏ

ଦା + ତ୍ର = ଦାତ୍ର - ଯାହାଦ୍ୱାରା କାଟନ୍ତି (ଦା-କାଟିବା)

ଲିଖ୍ + ଅନ + ସ୍ତ୍ରୀପ୍ରତ୍ୟୟ ଈ(1) = ଲେଖନୀ - ଯାହାଦ୍ୱାରା ଲେଖନ୍ତି

ଶ୍ରୁ + ଅନ = ଶ୍ରବଣ - ଯାହାଦ୍ୱାରା ଶୁଣାଯାଏ ।

୪ । **ସମ୍ପ୍ରଦାନକାରକ ବାଚ୍ୟ :**

ଦା + ଅନୀୟ = ଦାନୀୟ - ଯାହାକୁ ଦାନ କରାଯାଏ

ସମ୍ - ପ୍ର - ଦା + ଅନ = ସମ୍ପ୍ରଦାନ - ଯେ ଦାନର ଯୋଗ୍ୟ

୫ । **ଅପାଦାନକାରକ ବାଚ୍ୟ :**

ଭୀ + ମ = ଭୀମ - ଯାହାଠାରୁ ଭୟ ମିଳେ

ଭୀ + ଆନକ = ଭୟାନକ - ଯାହାଠାରୁ କାହାର ଭୟଜାତ ହୁଏ

ଝର୍ + ଇ = ଝରି - ଯହିଁରୁ ଝରେ

ଗଡ଼୍ + ଉ = ଗଡ଼ୁ - ଯହିଁରୁ ଗଡ଼େ

୬ । **ଅଧିକରଣକାରକ ବାଚ୍ୟ :**

ଶୀ + ଯ + ସ୍ତ୍ରୀଲିଙ୍ଗରେ ଆ = ଶଯ୍ୟା - ଯହିଁରେ ଶୁଅନ୍ତି

ବାରି - ଧା + ଇ = ବାରିଧି - ଯେଉଁଠାରେ ବାରି ରହେ

ବସ୍ + ଅ = ବାସ - ଯହିଁରେ ବାସ କରାଯାଏ

ସ୍ଥା + ଅନ = ସ୍ଥାନ - ଯେଉଁଠାରେ ରହନ୍ତି ।

**ଭାବବାଚ୍ୟ :**

ଗମ୍ + ଅନ = ଗମନ (ଗମ୍ - ଯିବା, ଗମନ - ଯିବା)

| | |
|---|---|
| ଶୀ + ଅନ = ଶୟନ | କ୍ରୁଧ୍ + ଅ = କ୍ରୋଧ |
| ମୃ + ଅନ = ମରଣ | ହସ୍ + ଅ = ହାସ |
| ଚଳ୍ + ଅଣି = ଚଳଣି | ଖଟ୍ + ଅଣି = ଖଟଣି |
| ଗା + ଉଣା = ଗାଉଣା | ବାଜ୍ + ଅଣା = ବାଜଣା |
| ବନ୍ଦ୍ + ଆଣ = ବନ୍ଦାଣ | ମାଗ୍ + ଅଣ = ମାଗଣ |
| ଗମ୍ + ତି = ଗତି | କୃ + ଯ = କାର୍ଯ୍ୟ |

ଧାତୁରେ 'କୃତ୍' ପ୍ରତ୍ୟୟ ଲାଗି କୃଦନ୍ତ ଶବ୍ଦ ଗଠିତ ହେଲାବେଳେ, କେତେକ ସ୍ଥଳରେ ଧାତୁରେ କିଛି ପରିବର୍ତ୍ତନ ହେବାର ଦେଖାଯାଏ । ସେହି ପରିବର୍ତ୍ତନ ସାଧାରଣତଃ ପାଞ୍ଚପ୍ରକାର । ଯଥା- ଆଦେଶ, ଆଗମ, ଗୁଣ, ବୃଦ୍ଧି, ଲୋପ ।

ଆଦେଶ- ଗୋଟିଏ ବର୍ଣ୍ଣ ବଦଳରେ ଆଉ ଗୋଟିଏ ବର୍ଣ୍ଣ ବ୍ୟବହୃତ ହେଲେ, ତାହାକୁ **ଆଦେଶ** କହନ୍ତି । ଯଥା-

ଦୀ + ତ = ଦୀନ - 'ତ' ସ୍ଥାନରେ 'ନ'ର ଆଦେଶ ହୋଇଛି

ରୁଜ୍ + ଅ = ରୋଗ - 'ଜ୍' ସ୍ଥାନରେ 'ଗ୍'ର ଆଦେଶ ହୋଇଛି

ପଚ୍ + ଅ = ପାକ - 'ଚ୍' ସ୍ଥାନରେ 'କ୍'ର ଆଦେଶ ହୋଇଛି

ସେହିପରି - ହୀନ, କ୍ଷୀଣ, ଲୀନ, ଭିନ୍ନ

ଆଗମ - ଗୋଟିଏ ବର୍ଣ୍ଣ ସମୀପରେ ବା ଦୁଇ ବର୍ଣ୍ଣ ମଧ୍ୟରେ ଅନ୍ୟ ଏକ ବର୍ଣ୍ଣର ସ୍ଥାପନା ଘଟିଲେ, ତାହାକୁ **ଆଗମ** କହନ୍ତି । ଯଥା-

ନୃ + ୟ = ନୃତ୍ୟ - ଏଠାରେ 'ତ'ର ଆଗମ ହୋଇଛି ।

ସେହିପରି - କୃତ୍ୟ, ଭୃତ୍ୟ, ସ୍ତୁତ୍ୟ, ସ୍ରାବ୍ୟ

ଗୁଣ - ଇ ବା ଈ ସ୍ଥାନରେ 'ଏ'; ଉ ବା ଊ ସ୍ଥାନରେ 'ଓ'; ଋ, ୠ ସ୍ଥାନରେ 'ଅର୍' ହେବାକୁ **'ଗୁଣ'** କୁହାଯାଏ । ଯଥା-

ଭିଦ୍ + ଅ = ଭେଦ

ନୀ + ଅନ = ନୟନ 'ଇ', 'ଈ' ସ୍ଥାନରେ 'ଏ' ହୋଇଛି ।

('ନୀ' ରେ ଥିବା 'ଈ' କାରର 'ଏ' ହେବା ପରେ ସନ୍ଧି ହୋଇଅଛି ।)

ପୁଷ୍ + ଅନ = ପୋଷଣ 'ଉ', 'ଊ' ସ୍ଥାନରେ 'ଓ' ହୋଇଛି ।

ଭୂ + ଅନ = ଭବନ

ମୃ + ଅନ = ମରଣ

ଦୃ + ଉ = ଦାରୁ 'ଋ', 'ୠ' ସ୍ଥାନରେ 'ଅର୍' ହୋଇଛି ।

ସେହିପରି - ବେଦ, ଖେଦ, ଜୟ, ନୟନ, ବୋଧନ, ଲୋପ, ଭବନ, ଶ୍ରବଣ, ଦୀର୍ଣ୍ଣ, ଜୀର୍ଣ୍ଣ, ଜୀର (ଜ୍ଞ + ଅ, ଜୀରା) ।

ବୃଦ୍ଧି - 'ଅ' ସ୍ଥାନରେ 'ଆ'; ଇ, ଈ ସ୍ଥାନରେ ଐ; ଉ, ଊ ସ୍ଥାନରେ ଔ, ଋ, ୠ ସ୍ଥାନରେ 'ଆର୍' ହେବାକୁ **ବୃଦ୍ଧି** କୁହାଯାଏ । ଯଥା-

ପଠ୍ + ଅକ = ପାଠକ

ପଚ୍ + ଅକ = ପାଚକ 'ଅ' ସ୍ଥାନରେ 'ଆ' ହୋଇଛି ।

ଜି + ତ୍ର = ଜୈତ୍ର

ନୀ + ଅକ = ନାୟକ 'ଇ', 'ଈ' ସ୍ଥାନରେ 'ଐ' ହୋଇଛି ।

(ନୀ = ନୈ, ନୈ + ଅକ = ନାୟକ (ସନ୍ଧି) )

ସ୍ତୁ + ଅକ = ସ୍ତାବକ

ଭୂ + ଉକ = ଭାବୁକ 'ଉ', 'ଊ' ସ୍ଥାନରେ 'ଔ' ହୋଇଛି ।

କୃ + ଅକ = କାରକ

ବି - ଦୃ + ଅନ = ବିଦାରଣ 'ଋ', 'ୠ' ସ୍ଥାନରେ 'ଆର୍‌' ହୋଇଛି ।

ସେହିପରି- ପାଠ, ହାସ, ବାଧା, ଗାୟକ, କାର୍ଯ୍ୟ, ଧାର୍ଯ୍ୟ

**ଲୋପ** - କୌଣସି ବର୍ଣ୍ଣ ଅଦୃଶ୍ୟ ହେଲେ ବା କାଟ ଖାଇଲେ, ତାହାକୁ 'ଲୋପ' କହନ୍ତି । ଯଥା-

ମନ୍‌ + ତ = ମତ

ହନ୍‌ + ତ = ହତ ଧାତୁରୁ 'ନ୍‌'ର ଲୋପ ହୋଇଅଛି ।

**ସଂସ୍କୃତ କୃଦନ୍ତ-ପ୍ରତ୍ୟୟ :**

ଓଡ଼ିଆ ଭାଷାରେ ବହୁସଂଖ୍ୟକ କୃଦନ୍ତ ଶବ୍ଦର ପ୍ରଚଳନ ଅଛି । ସେଥିରୁ କେତେକ କୃଦନ୍ତ ପଦର ପ୍ରକୃତି(ଧାତୁ) ଓ ପ୍ରତ୍ୟୟର ଉଦାହରଣ ତଳେ ପ୍ରଦତ୍ତ ହେଲା । ଓଡ଼ିଆ ପ୍ରତ୍ୟୟ ପାର୍ଶ୍ୱରେ ସଂସ୍କୃତ ପ୍ରତ୍ୟୟର ନାମୋଲ୍ଲେଖ କରାଯାଇଛି ।

**୧ । 'ଅ' ପ୍ରତ୍ୟୟ :**

## ଅ-ପ୍ରତ୍ୟୟ (ଅଚ୍‌)

| | | |
|---|---|---|
| ଚି + ଅ = ଚୟ | ବୃଷ୍‌ + ଅ = ବର୍ଷ | ରୁଧ୍‌ + ଅ = ରୋଧ |
| ଜି + ଅ = ଜୟ | ହୃଷ୍‌ + ଅ = ହର୍ଷ | ଜପ୍‌ + ଅ = ଜପ୍‌ |
| ଭୀ + ଅ = ଭୟ | ସୃପ୍‌ + ଅ = ସର୍ପ | କୁପ୍‌ + ଅ = କୋପ |
| ଲୀ + ଅ = ଲୟ | ଦ୍ରୁହ୍‌ + ଅ = ଦ୍ରୋହ | ତୁଷ୍‌ + ଅ = ତୋଷ |
| କ୍ଷୀ + ଅ = କ୍ଷୟ | କ୍ରୁଧ୍‌ + ଅ = କ୍ରୋଧ | ସ୍ତୁ + ଅ = ସ୍ତବ |
| ଆ-ଶୀ + ଅ = ଆଶୟ | ଖିଦ୍‌ + ଅ = ଖେଦ | ରୁ + ଅ = ରବ |
| ବି-ନୀ + ଅ = ବିନୟ | ଗ୍ରହ୍‌ + ଅ = ଗ୍ରହ୍‌ | ଦ୍ରୁ + ଅ = ଦ୍ରବ |
| ଆ-ଶ୍ରି + ଅ = ଆଶ୍ରୟ | କ୍ଷୁଭ୍‌ + ଅ = କ୍ଷୋଭ | ଲମ୍ବ୍‌ + ଅ = ଲମ୍ବ |
| ବି-ସ୍ମି + ଅ = ବିସ୍ମୟ | ମୁଦ୍‌ + ଅ = ମୋଦ | ଅନୁ-ଭୂ + ଅ = ଅନୁଭବ |
| ପ୍ର-ନୀ + ଅ = ପ୍ରଣୟ | ଭିଦ୍‌ + ଅ = ଭେଦ | ପୂଜା-ଅର୍ହ୍‌ + ଅ = ପୂଜାର୍ହ |

ଶୋକ-ହୃ + ଅ = ଶୋକହର, ଦୁଃଖ-ହୃ + ଅ = ଦୁଃଖହର, ଶମ୍‌-କୃ + ଅ = ଶଙ୍କର

## ଅ-ପ୍ରତ୍ୟୟ (ଘଞ୍)

| | | |
|---|---|---|
| ପଚ୍ + ଅ = ପାକ | କୁପ୍ + ଅ = କୋପ | ଶପ୍ + ଅ = ଶାପ |
| ପଦ୍ + ଅ = ପାଦ | ଶୁଚ୍ + ଅ = ଶୋକ | ଭଜ୍ + ଅ = ଭାଗ |
| ବସ୍ + ଅ = ବାସ | ଯୁଜ୍ + ଅ = ଯୋଗ | ହନ୍ + ଅ = ଘାତ |
| ଲଭ୍ + ଅ = ଲାଭ | ଭୂ + ଅ = ଭାବ | ଭନ୍‌ଜ୍ + ଅ = ଭଙ୍ଗ |
| ପଠ୍ + ଅ = ପାଠ | ଲୁଭ୍ + ଅ = ଲାଭ | ରନ୍‌ଜ୍ + ଅ = ରଙ୍ଗ |
| ଦହ୍ + ଅ = ଦାହ | ବସ୍ + ଅ = ବାସ | ସ୍ପୃଶ୍ + ଅ = ସ୍ପର୍ଶ |
| ତ୍ୟଜ୍ + ଅ = ତ୍ୟାଗ | ନଶ୍ + ଅ = ନାଶ | ଶ୍ରମ୍ + ଅ = ଶ୍ରମ |
| ବି-ବହ୍ + ଅ = ବିବାହ | ଆ-ଚର୍ + ଅ = ଆଚାର | ଅପ-କୃ + ଅ = ଅପକାର |
| ଅନୁ-ତପ୍ + ଅ = ଅନୁତାପ | ସମ୍-ସୃ + ଅ = ସଂସାର | ଆ-କୃ + ଅ = ଆକାର |
| ବି-ଭିଦ୍ + ଅ = ବିଭେଦ | ସମ୍-ହୃ + ଅ = ସଂହାର | ପ୍ର-ଚର୍ + ଅ = ପ୍ରଚାର |
| ପ୍ର-ଭିଦ୍ + ଅ = ପ୍ରଭେଦ | ଅବ-ତୃ + ଅ = ଅବତାର | ପ୍ର-ସଦ୍ + ଅ = ପ୍ରସାଦ |
| ବି-ବଦ୍ + ଅ = ବିବାଦ | ଉପ-କୃ + ଅ = ଉପକାର | ବି-କୃ + ଅ = ବିକାର |
| ଅଭି-ଶପ୍ + ଅ = ଅଭିଶାପ | ପ୍ର-ହୃ + ଅ = ପ୍ରହାର | ବି-ହୃ + ଅ = ବିହାର |

## ଅ-ପ୍ରତ୍ୟୟ (ଖଙ୍, ଖଚ୍, ଖଶ୍)

| | |
|---|---|
| ଅରି-ଦମ୍ + ଅ = ଅରିନ୍ଦମ | ଅଭ୍ର-କଷ୍ + ଅ = ଅଭ୍ରଂକଷ |
| ପର-ତପ୍ + ଅ = ପରନ୍ତପ | ବିଧୁ-ତୁଦ୍ + ଅ = ବିଧୁନ୍ତୁଦ |
| ଭୟ-କୃ + ଅ = ଭୟଙ୍କର | ଅଭ୍ର-ଲିହ୍ + ଅ = ଅଭ୍ରଂଲିହ |
| ବିଶ୍ୱ-ଭୃ + ଅ = ବିଶ୍ୱମ୍ଭର | ଭଗ-ଦୃ + ଅ = ଭଗନ୍ଦର |
| ବାଚ-ଯମ୍ + ଅ = ବାଚଂଯମ | ସ୍ତନ-ଧେ + ଅ = ସ୍ତନଂଧୟ(ଶିଶୁ) |
| ଇର-ମଦ୍ + ଅ = ଇରମ୍ମଦ | ତିଳ-ତୁଦ୍ + ଅ = ତିଳନ୍ତୁଦ (ତେଲୀ) |

## ଅ-ପ୍ରତ୍ୟୟ (ଖଲ୍)

| | |
|---|---|
| ସୁ-କୃ + ଅ = ସୁକର | ଦୁଃ-କୃ + ଅ = ଦୁଷ୍କର |
| ଦୁଃ-ଲଭ୍ + ଅ = ଦୁର୍ଲ୍ଲଭ | ସୁ-ଲଭ୍ + ଅ = ସୁଲଭ |

## ଅ-ପ୍ରତ୍ୟୟ (ଡ)

| | | |
|---|---|---|
| ଜଳ-ଜନ୍+ଅ = ଜଳଜ | ଅନୁ-ଜନ୍+ଅ = ଅନୁଜ | ଅଗ୍ର-ଜନ୍+ଅ = ଅଗ୍ରଜ |
| ପଙ୍କ-ଜନ୍+ଅ = ପଙ୍କଜ | ଅଣ୍ଡ-ଜନ୍+ଅ = ଅଣ୍ଡଜ | ମନଃ-ଜନ୍+ଅ=ମନୋଜ |

ବିହାୟସ୍-ଗମ୍+ଅ=ବିହଗ  ପାର-ଗମ୍+ଅ=ପାରଗ  ନ-ଗମ୍+ଅ = ନଗ

ଦୁଃ-ଗମ୍ + ଅ = ଦୁର୍ଗମ  ଦ୍ୱି-ଜନ୍+ଅ = ଦ୍ୱିଜ  ପ୍ର-ଜନ୍+ଅ(ସ୍ତ୍ରୀଆ)=ପ୍ରଜା

ସରଃ-ଜନ୍+ଅ=ସରୋଜ  ଆତ୍ମ-ଜନ୍+ଅ=ଆତ୍ମଜ  ବାରି-ଜନ୍+ଅ=ବାରିଜ

ଅଧ୍ୱ - ଗମ୍ + ଅ = ଅଧ୍ୱଗ (ପଥିକ, ସୂର୍ଯ୍ୟ)

## ଅ-ପ୍ରତ୍ୟୟ (ଖଚ୍)

ଭୁଜ-ଗମ୍ + ଅ = ଭୁଜଗ, ଭୁଜଙ୍ଗ, ଭୁଜଙ୍ଗମ

ତ୍ୱରା-ଗମ୍ + ଅ = ତୁରଗ, ତୁରଙ୍ଗ, ତୁରଙ୍ଗମ

ପତତ୍-ଗମ୍ + ଅ = ପତଗ, ପତଙ୍ଗ, ପତଙ୍ଗମ

ବିହାୟସ୍-ଗମ୍ + ଅ = ବିହଗ, ବିହଙ୍ଗ, ବିହଙ୍ଗମ

ବଶ-ବଦ୍ + ଅ = ବଶଂବଦ  ପୁର-ଦୃ + ଅ = ପୁରନ୍ଦର

ପ୍ରିୟ-ବଦ୍ + ଅ = ପ୍ରିୟମ୍ବଦ  ପ୍ରିୟ-କୃ+ଅ = ପ୍ରିୟଙ୍କର

ସର୍ବଂ-ସହ୍ + ଅ(ସ୍ତ୍ରୀ.ଆ) ସର୍ବଂସହା  ଭୟ-କୃ + ଅ = ଭୟଙ୍କର

## ଅ-ପ୍ରତ୍ୟୟ (ଅଣ୍)

କୁମ୍ଭ-କୃ + ଅ = କୁମ୍ଭକାର  ସୂତ୍ର- ଧୃ + ଅ = ସୂତ୍ରଧାର

ସ୍ୱର୍ଣ୍ଣ-କୃ + ଅ = ସ୍ୱର୍ଣ୍ଣକାର  ଟୀକା-କୃ + ଅ = ଟୀକାକାର

ଭାଷ୍ୟ-କୃ + ଅ = ଭାଷ୍ୟକାର  ତନ୍ତୁ-ବେ + ଅ = ତନ୍ତୁବାୟ

ଶାସ୍ତ୍ର-କୃ + ଅ = ଶାସ୍ତ୍ରକାର  ବାରି-ବହ୍ + ଅ = ବାରିବାହ

ମାଳା-କୃ + ଅ = ମାଳାକାର  କର୍ଣ୍ଣ-ଧୃ + ଅ = କର୍ଣ୍ଣଧାର

## ଅ-ପ୍ରତ୍ୟୟ(ଟ)

ଦିବା-କୃ + ଅ = ଦିବାକର  ଚିତ୍ର-କୃ + ଅ = ଚିତ୍ରକର

ନିଶା-କୃ + ଅ = ନିଶାକର  ହିତ-କୃ + ଅ = ହିତକର

କ୍ଳେଶ-କୃ + ଅ = କ୍ଳେଶକର  ହାସ୍ୟ-କୃ + ଅ = ହାସ୍ୟକର

ଜଳ-ଚର୍ + ଅ = ଜଳଚର  ସ୍ଥଳ-ଚର୍ + ଅ = ସ୍ଥଳଚର

ବନ-ଚର୍ + ଅ = ବନଚର  ନିଶା-ଚର୍ + ଅ = ନିଶାଚର

କୃତ-ହନ୍ + ଅ = କୃତଘ୍ନ  ଶତ୍ରୁ-ହନ୍ + ଅ = ଶତ୍ରୁଘ୍ନ

କିମ୍-କୃ + ଅ = କିଙ୍କର  ଭାଃ-କୃ + ଅ = ଭାସ୍କର

ଭିକ୍ଷା-ଚର୍ + ଅ = ଭିକ୍ଷାଚର  ଅଗ୍ରେ-ସୃ + ଅ = ଅଗ୍ରେସର

## ଅ-ପ୍ରତ୍ୟୟ(କ)

ଧର୍ମ-ଜ୍ଞା+ଅ = ଧର୍ମଜ୍ଞ ବାରି-ଦା+ଅ = ବାରିଦ ଭୂମି-ପା+ଅ = ଭୂମିପ

ସର୍ବ-ଜ୍ଞା+ଅ = ସର୍ବଜ୍ଞ ଅନ୍ନ-ଦା+ଅ = ଅନ୍ନଦ ନୃ-ପା+ଆ = ନୃପ

ତତ୍ତ୍ୱ-ଜ୍ଞା+ଅ = ତତ୍ତ୍ୱଜ୍ଞ ଜଳ-ଦା+ଅ = ଜଳଦ ମଦ୍ୟ-ପା+ଅ = ମଦ୍ୟପ

ରସ-ଜ୍ଞା+ଅ = ରସଜ୍ଞ ଧନ-ଦା+ଅ = ଧନଦ ପାଦ-ପା+ଅ = ପାଦପ

ଗୃହ-ସ୍ଥା+ଅ = ଗୃହସ୍ଥ ମଧ-ସ୍ଥା+ଅ = ମଧସ୍ଥ ବନ-ସ୍ଥା+ଅ = ବନସ୍ଥ

କଣ୍ଠ-ସ୍ଥା+ଅ = କଣ୍ଠସ୍ଥ ଦୁଃ-ସ୍ଥା+ଅ = ଦୁଃସ୍ଥ ସୁ-ସ୍ଥା+ଅ = ସୁସ୍ଥ

## ଅ-ପ୍ରତ୍ୟୟ (ଅଣ୍, କ୍ୱିପ୍, କଞ୍)

ତଦ୍-ଦୃଶ୍ + ଅ = ତାଦୃଶ ଇଦମ୍-ଦୃଶ୍ + ଅ = ଈଦୃଶ

ଯଦ୍-ଦୃଶ୍ + ଅ = ଯାଦୃଶ ସମାନ-ଦୃଶ୍ + ଅ = ସଦୃଶ

କିମ୍-ଦୃଶ୍ + ଅ = କୀଦୃଶ ଅସ୍ମଦ୍-ଦୃଶ୍ + ଅ = ଅସ୍ମାଦୃଶ

ସଭା-ସଦ୍ + ଅ = ସଭାସଦ୍ ଧର୍ମ-ବିଦ୍ + ଅ = ଧର୍ମବିତ୍

ପରି-ସଦ୍ + ଅ = ପରିଷଦ ଇନ୍ଦ୍ର-ଜି + ଅ = ଇନ୍ଦ୍ରଜିତ୍

ଭବତ୍-ଦୃଶ୍ + ଅ = ଭବାଦୃଶ ଯୁଷ୍ମଦ୍-ଦୃଶ୍ + ଅ = ତ୍ୱାଦୃଶ/ଯୁଷ୍ମାଦୃଶ

## ଅ-ପ୍ରତ୍ୟୟ (ଅପ୍)

ସ୍ତୁ + ଅ = ସ୍ତବ ବୃ + ଅ = ବର ଜପ୍ + ଅ = ଜପ

ଭୂ + ଅ = ଭବ ସମ୍-ହନ୍ + ଅ = ସଂଘ ଧନ-ମଦ୍ + ଅ = ଧନମଦ

ନି + ଲିମ୍ପ୍ = ନିଲିମ୍ପ ନି-କ୍ୱଣ୍ + ଅ = ନିକ୍ୱଣ ନି-ନଦ୍ + ଅ = ନିନଦ

ରକ୍ଷ୍ + ଅ + (ସ୍ତ୍ରୀ-ଆ) = ରକ୍ଷା ପୀଡ଼ି + ଅ +(ସ୍ତ୍ରୀ-ଆ)=ପୀଡ଼ା

ଶୋଭି + ଅ + (ସ୍ତ୍ରୀ-ଆ) = ଶୋଭା

## ଅ-ପ୍ରତ୍ୟୟ (ଶ) + (ସ୍ତ୍ରୀ ପ୍ରତ୍ୟୟ-ଆ)

ନିନ୍ଦ୍ + ଅ (ସ୍ତ୍ରୀ-ଆ) = ନିନ୍ଦା ଭିକ୍ଷ୍ + ଅ (ସ୍ତ୍ରୀ-ଆ) = ଭିକ୍ଷା

ଗୋ-ବିଦ୍ + ଅ = ଗୋବିନ୍ଦ ସେବ୍+ଅ (ସ୍ତ୍ରୀ-ଆ) = ସେବା

ନି-ଲିମ୍ପ୍ + ଅ = ନିଲିମ୍ପ (ମରୁତ) ଦୀକ୍ଷ୍ + ଅ (ସ୍ତ୍ରୀ-ଆ) = ଦୀକ୍ଷା

ପରି-ଈକ୍ଷ୍ + ଅ (ସ୍ତ୍ରୀ.ଆ) = ପରୀକ୍ଷା ହିଂସ୍ + ଅ (ସ୍ତ୍ରୀ-ଆ) = ହିଂସା

ପ୍ର-ଶଂସ୍ + ଅ (ସ୍ତ୍ରୀ-ଆ) = ପ୍ରଶଂସା ଖେଳ୍ + ଅ (ସ୍ତ୍ରୀ-ଆ) = ଖେଳା

ଆ-କାଙ୍କ୍ଷ + ଅ (ସ୍ତ୍ରୀ.ଆ) = ଆକାଙ୍କ୍ଷା

## ଅ-ପ୍ରତ୍ୟୟ + (ସ୍ତ୍ରୀ ପ୍ରତ୍ୟୟ-ଆ)

ଆ-ଜ୍ଞା + ଅ (ସ୍ତ୍ରୀ-ଆ) = ଆଜ୍ଞା
ଅବ-ଜ୍ଞା + ଅ (ସ୍ତ୍ରୀ-ଆ) = ଅବଜ୍ଞା
ଆ-ସ୍ଥା + ଅ (ସ୍ତ୍ରୀ-ଆ) = ଆସ୍ଥା
ଆ-ଖ୍ୟା + ଅ (ସ୍ତ୍ରୀ-ଆ) = ଆଖ୍ୟା
ଅବ-ସ୍ଥା + ଅ (ସ୍ତ୍ରୀ-ଆ) = ଅବସ୍ଥା
ପ୍ରତି-ମା + ଅ (ସ୍ତ୍ରୀ-ଆ) = ପ୍ରତିମା
ବି-ଅବ+ସ୍ଥା +ଅ(ସ୍ତ୍ରୀ-ଆ)=ବ୍ୟବସ୍ଥା
ପ୍ରତି-ସ୍ଥା + ଅ (ସ୍ତ୍ରୀ-ଆ) = ପ୍ରତିଷ୍ଠା
ପ୍ର-ଜ୍ଞା + ଆ (ସ୍ତ୍ରୀ-ଆ) = ପ୍ରଜ୍ଞା
ପ୍ରତି-ଭା + ଅ (ସ୍ତ୍ରୀ-ଆ) = ପ୍ରତିଭା
ପ୍ର-ଭା + ଅ (ସ୍ତ୍ରୀ-ଆ) = ପ୍ରଭା
ପ୍ରତି-ଜ୍ଞା + ଅ (ସ୍ତ୍ରୀ-ଆ) = ପ୍ରତିଜ୍ଞା

## ଅକ-ପ୍ରତ୍ୟୟ(ଣ୍ୱୁଲ)

ବଚ୍ + ଅକ = ବାଚକ
ବେ + ଅକ = ବାୟକ (ବୟନକାରୀ)
କଥ୍ + ଅକ = କଥକ
ଭକ୍ଷ୍ + ଅକ = ଭକ୍ଷକ
କୃ + ଅକ = କାରକ
ଜନ୍ + ଅକ = ଜନକ
ପଚ୍ + ଅକ = ପାଚକ
ରକ୍ଷ୍ + ଅକ = ରକ୍ଷକ
ହନ୍ + ଅକ = ଘାତକ
ଶାସ୍ + ଅକ = ଶାସକ
ପଠ୍ + ଅକ = ପାଠକ
ଦା + ଅକ = ଦାୟକ
ବି-ଧା + ଅକ = ବିଧାୟକ
ପୂ + ଅକ = ପାବକ
ନଶ୍ + ଅକ = ନାଶକ
ଗୈ + ଅକ = ଗାୟକ
ଦୃଶ୍ + ଅକ = ଦର୍ଶକ
ଶିକ୍ଷ୍ + ଅକ = ଶିକ୍ଷକ
ସ୍ମୃ + ଅକ = ସ୍ମାରକ
ତୃ + ଅକ = ତାରକ
ସ୍ତୁ + ଅକ = ସ୍ତାବକ
ରୁଧ୍ + ଅକ = ରୋଧକ
ଖାଦ୍ + ଅକ = ଖାଦକ
ନୀ + ଅକ = ନାୟକ
ଶୁଷ୍ + ଅକ = ଶୋଷକ
ଶ୍ରୁ + ଅକ = ଶ୍ରାବକ
ବି - ବିଚ୍ + ଅକ = ବିବେଚକ
ବି - ରିଚ୍ + ଅକ = ବିରେଚକ
ଯୁଜ୍ + ଅକ = ଯୋଜକ
ପାତି + ଅକ = ପାତକ
ଉତ୍-ପାଦି+ଅକ=ଉତ୍ପାଦକ
ଉତ୍ - ପଦ୍ + ଅକ = ଉତ୍ପାଦକ
ଉପ - ଆସ୍ + ଅକ = ଉପାସକ
କୃଷ୍ + ଅକ = କୃଷକ, କର୍ଷକ
ନୃତ୍+ଅକ=ନର୍ତ୍ତକ
ନିର୍-ବାଚି+ଅକ=ନିର୍ବାଚକ
ଯାଚ୍ + ଅକ = ଯାଚକ
ଯଜ୍ + ଅକ = ଯାଜକ
ବାଦି + ଅକ = ବାଦକ

## ଅତ୍-ପ୍ରତ୍ୟୟ (ଶତୃ)

ଜ୍ୱଲ୍ + ଶତୃ = ଜ୍ୱଳତ୍
ଚଲ୍ + ଶତୃ = ଚଳତ୍
ବିଦ୍ + ଶତୃ = ବିଦ୍ୱତ୍

## (୧) ଅନ ପ୍ରତ୍ୟୟ - (ଲ୍ୟୁଟ୍ / ଅନଟ୍)

ପା + ଅନ = ପାନ
ପଠ୍ + ଅନ = ପଠନ
ସିଚ୍ + ଅନ = ସେଚନ
ମା + ଅନ = ମାନ
ଘଟ୍ + ଅନ = ଘଟନ
ନୀ + ଅନ = ନୟନ
ଦା + ଅନ = ଦାନ
ଦମ୍ + ଅନ = ଦମନ
ଶ୍ରୁ + ଅନ = ଶ୍ରବଣ

| | | |
|---|---|---|
| ଘ୍ରା + ଅନ = ଘ୍ରାଣ | ସହ୍ + ଅନ = ସହନ | ଗୈ + ଅନ = ଗାନ |
| ସ୍ନା + ଅନ = ସ୍ନାନ | ଲିଖ୍ + ଅନ = ଲିଖନ | ବୃଜ୍ + ଅନ = ବର୍ଜନ |
| ଜ୍ଞା + ଅନ = ଜ୍ଞାନ | ଗମ୍ + ଅନ = ଗମନ | ଭାଷ୍ + ଅନ = ଭାଷଣ |
| ଘ୍ରା + ଅନ = ଘ୍ରାଣ | ପତ୍ + ଅନ = ପତନ | ଚର୍ + ଅନ = ଚରଣ |
| ଶୀ + ଅନ = ଶୟନ | ଜୀବ୍ + ଅନ = ଜୀବନ | ଚଲ୍ + ଅନ = ଚଳଣ |
| ସ୍ମୃ + ଅନ = ସ୍ମରଣ | ଖଣ୍ଡ୍ + ଅନ = ଖଣ୍ଡନ | ମିଶ୍ର + ଅନ = ମିଶ୍ରଣ |
| ବୃ + ଅନ = ବରଣ | ମଣ୍ଡ୍ + ଅନ = ମଣ୍ଡନ | ଦୃଶ୍ + ଅନ = ଦର୍ଶନ |
| ମୃ + ଅନ = ମରଣ | ଗ୍ରହ୍ + ଅନ = ଗ୍ରହଣ | ସ୍ଖଲ୍ + ଅନ = ସ୍ଖଳନ |
| ନୃତ୍ + ଅନ = ନର୍ତ୍ତନ | ମନ୍ଥ + ଅନ = ମନ୍ଥନ | ମସ୍ଜ୍ + ଅନ = ମଜ୍ଜନ |
| ବୃତ୍ + ଅନ = ବର୍ତ୍ତନ | ରନ୍ଜ୍ + ଅନ = ରଞ୍ଜନ | ଲୁଚ୍ + ଅନ = ଲୋଚନ |
| ସମ୍ - ତୃ + ଅନ=ସନ୍ତରଣ | ଶୁଧ୍ + ଅନ = ଶୋଧନ | ବି - ତୃ + ଅନ=ବିତରଣ |
| ବି-ଧା + ଅନ = ବିଧାନ | ପରି-ମା + ଅନ = ପରିମାଣ | ବମ୍ + ଅନ = ବମନ |
| ନି-ଦା + ଅନ = ନିଦାନ | ଗର୍ଜ୍ + ଅନ = ଗର୍ଜନ | ଭୁଜ୍ + ଅନ = ଭୋଜନ |
| ଆ-ରୁହ୍ + ଅନ = ଆରୋହଣ | ସମ୍-ପାଦି + ଅନ = ସମ୍ପାଦନ | |

## (୨) ଅନ-ପ୍ରତ୍ୟୟ (ଲ୍ୟୁ)

| | | |
|---|---|---|
| ନନ୍ଦି + ଅନ = ନନ୍ଦନ | ମଦି + ଅନ = ମଦନ | ରମ୍ + ଅନ = ରମଣ |
| କୁପ୍ + ଅନ = କୋପନ | ସାଧି + ଅନ = ସାଧନ | ଶୋଭି + ଅନ = ଶୋଭନ |
| ଶୁଧ୍ + ଅନ = ଶୋଧନ | ମଧୁ-ସୂଦ୍ + ଅନ = ମଧୁସୂଦନ | |
| ଜନ୍ + ଅର୍ଦ୍ + ଅନ = ଜନାର୍ଦ୍ଦନ | ବି-ଭୀ + ଅନ = ବିଭୀଷଣ | |

## (୩) ଅନପ୍ରତ୍ୟୟ (ଯୁତ୍)

| | | |
|---|---|---|
| ଚଲ + ଅନ = ଚଳନ | ଜ୍ୱଲ୍ + ଅନ = ଜ୍ୱଳନ | ରୁଷ୍ + ଅନ = ରୋଷଣ |
| ଭୂଷ୍ + ଅନ = ଭୂଷଣ | ମଣ୍ଡ୍ + ଅନ = ମଣ୍ଡନ | କ୍ରୁଧ୍ + ଅନ = କ୍ରୋଧନ |

## (୪) ଅନ-ପ୍ରତ୍ୟୟ

| | |
|---|---|
| ଶୁଭ୍ + ଅନ = ଶୋଭନ | ସୁ-ଦୃଶ୍ + ଅନ = ସୁଦର୍ଶନ |
| ସୁ-ଶାସ୍ + ଅନ = ସୁଶାସନ | ଦୁଃ-ଶାସ୍ + ଅନ = ଦୁଃଶାସନ |

## (୫) ଅନ-ପ୍ରତ୍ୟୟ + (ସ୍ତ୍ରୀ ପ୍ରତ୍ୟୟ-ଆ)

| | |
|---|---|
| ଘଟ୍+ଅନ+ଆ = ଘଟନା | ଚାଳି+ଅନ+ଆ = ଚାଳନା |
| ବନ୍ଦ୍+ଅନ+ଆ = ବନ୍ଦନା | ଅର୍ଚ୍ଚ୍+ଅନ+ଆ = ଅର୍ଚ୍ଚନା |
| ଗଣ୍+ଅନ+ଆ = ଗଣନା | ବାସି+ଅନ+ଆ = ବାସନା |

କଳ୍ପ୍+ଅନ+ଆ = କଳ୍ପନା
ସାଧ୍+ଅନ+ଆ = ସାଧନା
ମାନ୍+ଅନ+ଆ = ମାନନା
ଧୃ+ଅନ+ଆ = ଧାରଣା
ସ୍ଥାପି+ଅନ+ଆ = ସ୍ଥାପନା
ଖେଳ୍+ଅନ+ଆ = ଖେଳନା
ବିଦ୍+ଅନ+ଆ = ବେଦନା
ପ୍ର+ତାରି+ଅନ+ଆ = ପ୍ରତାରଣା
ତୁଳ୍-ଅନ+ଆ = ତୁଳନା
ମନ୍ତ୍-ଅନ + ଆ = ମନ୍ତ୍ରଣା
ପାର୍+ଅନ+ଆ = ପାରଣା

ଯନ୍ତ୍ର+ଅନ+ଆ = ଯନ୍ତ୍ରଣା
ଯାଚ୍+ଅନ+ଆ = ଯାଚନା
ଯତ୍+ଅନ+ଆ = ଯାତନା
ଅନ୍ଗ୍+ଅନ+ଆ = ଅଙ୍ଗନା
ଲଲ୍+ଅନ+ଆ = ଲଳନା
ପ୍ର+ଇର୍+ଅନ+ଆ = ପ୍ରେରଣା
ଅବ+ମାନ୍+ଅନ+ଆ = ଅବମାନନା
ଅନୁ+ଇଷ୍+ଅନ+ଆ = ଅନ୍ୱେଷଣା
ଛଳ୍+ଅନ+ଆ = ଛଳନା
କଳ୍+ଅନ+ଆ = କଳନା
ଶୋଭି+ଅନ+ଆ = ଶୋଭନା

## ଅନୀୟ ପ୍ରତ୍ୟୟ (ଅନୀୟ)

ପଠ୍ + ଅନୀୟ = ପଠନୀୟ
ନିନ୍ଦ୍ + ଅନୀୟ = ନିନ୍ଦନୀୟ
କୃ + ଅନୀୟ = କରଣୀୟ
ଦା + ଅନୀୟ = ଦାନୀୟ
ଶ୍ରୁ + ଅନୀୟ = ଶ୍ରବଣୀୟ
ପ୍ର-ଶନ୍ସ୍ + ଅନୀୟ = ପ୍ରଶଂସନୀୟ
ଦୃଶ୍ + ଅନୀୟ = ଦର୍ଶନୀୟ
ନମ୍ + ଅନୀୟ = ନମନୀୟ
ବନ୍ଦ୍ + ଅନୀୟ = ବନ୍ଦନୀୟ

ପୂଜ୍ + ଅନୀୟ = ପୂଜନୀୟ
ମାନ୍ + ଅନୀୟ = ମାନନୀୟ
ଶୁଚ୍ + ଅନୀୟ = ଶୋଚନୀୟ
ରମ୍ + ଅନୀୟ = ରମଣୀୟ
ବୃ + ଅନୀୟ = ବରଣୀୟ
ପାଳ୍ + ଅନୀୟ = ପାଳନୀୟ
ମାର୍ଜ୍ + ଅନୀୟ = ମାର୍ଜନୀୟ
ଚଳ୍ + ଅନୀୟ = ଚଳନୀୟ
ସ୍ମୃ + ଅନୀୟ = ସ୍ମରଣୀୟ

## ଆଳୁ-ପ୍ରତ୍ୟୟ

ଦୟ୍ + ଆଳୁ = ଦୟାଳୁ
କୃପ୍ + ଆଳୁ = କୃପାଳୁ
ନି-ଦ୍ରା + ଆଳୁ = ନିଦ୍ରାଳୁ
ତନ୍ଦ୍ର + ଆଳୁ = ତନ୍ଦ୍ରାଳୁ
ଶ୍ରତ୍-ଧା + ଆଳୁ = ଶ୍ରଦ୍ଧାଳୁ

## ଇ-ପ୍ରତ୍ୟୟ (କି)

ଜଳ-ଧା + ଇ = ଜଳଧି
ସମ୍-ଧା + ଇ = ସମାଧି
ଉପ-ଆ + ଧା + ଇ = ଉପାଧି
ଆ-ଧା + ଇ = ଆଧି

ବି-ଧା + ଇ = ବିଧି
ନି-ଧା + ଇ = ନିଧି
ବି-ଆ + ଧା + ଇ = ବ୍ୟାଧି
ସମ୍-ଧା + ଇ = ସନ୍ଧି

## ଇନ୍-ପ୍ରତ୍ୟୟ (ଣିନ୍)

ସଂସ୍କୃତରେ ଏହି 'ଣିନ୍'ରୁ 'ଇନ୍' ରହେ ଓ ଓଡ଼ିଆରେ 'ଈ' ରହେ । ଯେଉଁ ଧାତୁର ପରେ ଏହି ପ୍ରତ୍ୟୟ ଲାଗିଥାଏ, ସେହି ଧାତୁର ପୂର୍ବରୁ ସାଧାରଣତଃ ଉପସର୍ଗ ବା ଉପପଦ ରହିଥାଏ ।

ରକ୍ଷ୍ + ଇନ୍ = ରକ୍ଷୀ
ସ୍ଥା + ଇନ୍ = ସ୍ଥାୟୀ
ଗ୍ରହ + ଇନ୍ = ଗ୍ରାହୀ
ବି-ରୁଧ୍ + ଇନ୍ = ବିରୋଧୀ
ମର୍ମ-ଭିଦ୍ + ଇନ୍ = ମର୍ମଭେଦୀ
ବି-ଦା + ଇନ୍ = ବିଦାୟୀ
ବି-ହୃ + ଇନ୍ = ବିହାରୀ
ସ୍ତନ୍ୟ-ପା + ଇନ = ସ୍ତନ୍ୟପାୟୀ
ଧରା-ଶୀ + ଇନ୍ = ଧରାଶାୟୀ
ପ୍ର-ବସ୍ + ଇନ୍ = ପ୍ରବାସୀ
ବି-ଦ୍ରୁହ୍ + ଇନ୍ = ବିଦ୍ରୋହୀ
ପ୍ରିୟ-ବଦ୍ + ଇନ୍ = ପ୍ରିୟବାଦୀ
ସତ୍ୟ-ବାଦ୍ + ଇନ୍ = ସତ୍ୟବାଦୀ
ଅଧି-କୃ + ଇନ୍ = ଅଧିକାରୀ
ବି-ଦ୍ୱିଷ୍ + ଇନ୍ = ବିଦ୍ୱେଷୀ
ଅଭି-ଲସ୍ + ଇନ୍ = ଅଭିଳାଷୀ
ମତ୍ସ୍ୟ-ଜୀବ୍ + ଇନ୍ = ମତ୍ସ୍ୟଜୀବୀ
ତୃଣ- ଭୁଜ୍ + ଇନ୍ = ତୃଣଭୋଜୀ
ବୁଦ୍ଧି-ଜୀବ୍ + ଇନ୍ = ବୁଦ୍ଧିଜୀବୀ
ଭିକ୍ଷା-ଅଶ୍ + ଇନ୍ = ଭିକ୍ଷାଶୀ
ମାଂସ-ଅଶ୍ + ଇନ୍ = ମାଂସାଶୀ
ଅପ-କୃ + ଇନ୍ = ଅପକାରୀ
ଉପ-କୃ + ଇନ୍ = ଉପକାରୀ
ମିଥ୍ୟା-ଚର୍ + ଇନ୍ = ମିଥ୍ୟାଚାରୀ
ଅନୁ-ଗମ୍ + ଇନ୍ = ଅନୁଗାମୀ
ସର୍ବ-ଭକ୍ଷ୍ + ଇନ୍ = ସର୍ବଭକ୍ଷୀ
ଜଳ-ସ୍ରୁ + ଇନ୍ = ଜଳସ୍ରାବୀ
ମନଃ-ହୃ + ଇନ୍ = ମନୋହାରୀ
ସହ-ଗମ୍ + ଇନ୍ = ସହଗାମୀ
ପରି-ଶ୍ରମ୍ + ଇନ୍ = ପରିଶ୍ରମୀ
ସମ୍-ଯମ୍ + ଇନ୍ = ସଂଯମୀ

## ଈ-ପ୍ରତ୍ୟୟ(ଘିନୁଣ୍)

ଯୁଜ୍ + ଈ = ଯୋଗୀ
ଭୁଜ୍ + ଈ = ଭୋଗୀ
ରୁଜ୍ + ଈ = ରୋଗୀ
ତ୍ୟଜ୍ + ଈ = ତ୍ୟାଗୀ
ଶ୍ରମ୍ + ଈ = ଶ୍ରମୀ
ଦମ୍ + ଈ = ଦମୀ
ସମ୍-ସୃଜ୍+ଈ = ସଂସର୍ଗୀ
ବି-ବିଚ୍+ଈ = ବିବେକୀ
ପ୍ରତି-ଯୁଜ୍+ଈ=ପ୍ରତିଯୋଗୀ

## ଉ-ପ୍ରତ୍ୟୟ (ଉ)

ବି-ଭୂ + ଉ = ବିଭୁ
ପ୍ର-ଭୁ + ଉ = ପ୍ରଭୁ
ଭିକ୍ଷ୍ + ଉ = ଭିକ୍ଷୁ
ଶତ-ଦ୍ରୁ + ଉ = ଶତଦ୍ରୁ
ବନ୍ଧ୍ + ଉ = ବନ୍ଧୁ
ସାଧ୍ + ଉ = ସାଧୁ
ମନ୍ + ଉ = ମନୁ
ଅନ୍ବ୍ + ଉ = ଅମ୍ବୁ
ଶିଶ୍ + ଉ = ଶିଶୁ
ଶମ୍-ଭୂ + ଉ = ଶମ୍ଭୁ
ମନ୍ + ଉ = ମଧୁ
ଇନ୍ଦ୍ + ଉ = ଇନ୍ଦୁ
ବନ୍ + ଉ = ବେଣୁ
ତନ୍ + ଉ = ତନୁ
କମ୍ବ୍ + ଉ = କମ୍ବୁ

## ଉକ-ପ୍ରତ୍ୟୟ (ଉକଙ୍)

| | | |
|---|---|---|
| ନିନ୍ଦ୍ + ଉକ = ନିନ୍ଦୁକ | ବୃଷ୍ + ଉକ = ବର୍ଷୁକ | କାମ୍ + ଉକ = କାମୁକ |
| ହନ୍ + ଉକ = ଘାତୁକ | ଜାଗୃ + ଉକ = ଜାଗରୁକ | ଭୂ + ଉକ = ଭାବୁକ |

## ଉର-ପ୍ରତ୍ୟୟ (ଘୁରଚ୍, କୁରଚ୍)

| | | |
|---|---|---|
| ବିଦ୍ + ଉର = ବିଦୁର | ମିଦ୍ + ଉର = ମେଦୁର | ଭାସ୍ + ଉର = ଭାସୁର |
| ଭିଦ୍ + ଉର = ଭିଦୁର | ଭନ୍ଜ୍ + ଉର = ଭଙ୍ଗୁର | |

## ତ-ପ୍ରତ୍ୟୟ (କ୍ତ) (୧)

| | | |
|---|---|---|
| ସ୍ମି + ତ = ସ୍ମିତ | ଶକ୍ + ତ = ଶକ୍ତ | ପଚ୍ + ତ = ପକ୍ୱ |
| ନୀ + ତ = ନୀତ | ଭଜ୍ + ତ = ଭକ୍ତ | ବ୍ୟଧ୍ + ତ = ବିଦ୍ଧ |
| କ୍ରୀ + ତ = କ୍ରୀତ | ନମ୍ + ତ = ନତ | ସ୍ୱପ୍ + ତ = ସୁପ୍ତ |
| ସିଚ୍ + ତ = ସିକ୍ତ | ଗମ୍ + ତ = ଗତ | ତ୍ୟଜ୍ + ତ = ତ୍ୟକ୍ତ |
| କ୍ଷିପ୍ + ତ = କ୍ଷିପ୍ତ | ମଦ୍ + ତ = ମତ୍ତ | ହୃ + ତ = ହୃତ |
| ଇଷ୍ + ତ = ଇଷ୍ଟ | ହନ୍ + ତ = ହତ | ଶ୍ରୁ + ତ = ଶ୍ରୁତ |
| ବି-ରମ୍ + ତ = ବିରତ | ମନ୍ + ତ = ମତ | ଭୁଜ୍ + ତ = ଭୁକ୍ତ |
| ରିଚ୍ + ତ = ରିକ୍ତ | ଜନ୍ + ତ = ଜାତ | ସ୍ତୁ + ତ = ସ୍ତୁତ |
| ଗ୍ରସ୍ + ତ = ଗ୍ରସ୍ତ | ବଚ୍ + ତ = ଉକ୍ତ | ଭୂ + ତ = ଭୂତ |
| ଶମ୍ + ତ = ଶାନ୍ତ | ପ୍ରଚ୍ଛ୍ + ତ = ପୃଷ୍ଟ | ମୁହ୍ + ତ = ମୂଢ଼/ମୁଗ୍ଧ |
| ଦହ୍ + ତ = ଦଗ୍ଧ | ଦୃପ୍ + ତ = ଦୃପ୍ତ | ଦା + ତ = ଦତ୍ତ |
| ସ୍ନିହ୍ + ତ = ସ୍ନିଗ୍ଧ | ଶୁଷ୍ + ତ = ଶୁଷ୍କ | ଖ୍ୟା + ତ = ଖ୍ୟାତ |
| ସ୍ପୃଶ୍ + ତ = ସ୍ପୃଷ୍ଟ | ବୁଧ୍ + ତ = ବୁଦ୍ଧ | ଶୁଧ୍ + ତ = ଶୁଦ୍ଧ |
| ମୃ + ତ = ମୃତ | ଭୀ + ତ = ଭୀତ | ସ୍ନିହ୍ + ତ = ସ୍ନିଗ୍ଧ |
| ଧୃ + ତ = ଧୃତ | ରଚ୍ + ତ = ରଚିତ | ସ୍ନା + ତ = ସ୍ନାତ |
| ସ୍ତୁ + ତ = ସ୍ତୁତ | ଶାସ୍ + ତ = ଶିଷ୍ଟ | ଯା + ତ = ଯାତ |
| କୃ + ତ = କୃତ | ପୁଷ୍ + ତ = ପୁଷ୍ଟ | କ୍ରୁଧ୍ + ତ = କ୍ରୁଦ୍ଧ |
| ହୃ + ତ = ହୃତ | ତୁଷ୍ + ତ = ତୁଷ୍ଟ | ଧାବ୍ + ତ = ଧୌତ |
| ଚି + ତ = ଚିତ | ଧୃ + ତ = ଧୃତ | ଧ୍ୱନ୍ସ୍ + ତ = ଧ୍ୱସ୍ତ |
| ଲିପ୍ + ତ = ଲିପ୍ତ | ଭ୍ରନ୍ସ୍ + ତ = ଭ୍ରଷ୍ଟ | ଅନୁ-ରନ୍ଜ୍ + ତ = ଅନୁରକ୍ତ |
| ତପ୍ + ତ = ତପ୍ତ | ଲଭ୍ + ତ = ଲବ୍ଧ | ଆ-ସନ୍ଜ୍ + ତ = ଆସକ୍ତ |

| | | |
|---|---|---|
| ଦହ୍ + ତ = ଦଗ୍ଧ | ନି-ଯୁଜ୍ + ତ = ନିଯୁକ୍ତ | ବି-ଯୁଜ୍ + ତ = ବିଯୁକ୍ତ |
| ଆ-ରୁହ୍ + ତ = ଆରୂଢ଼ | ଆ-କ୍ରମ୍ + ତ = ଆକ୍ରାନ୍ତ | ଆ-ରଭ୍ + ତ = ଆରବ୍ଧ |
| ବି-ଶ୍ୱସ୍ + ତ = ବିଶ୍ୱସ୍ତ | ଆ-ହ୍ୱେ + ତ = ଆହୂତ | ଆ-ହୁ + ତ = ଆହୁତ |
| ଅନୁ-ବଦ୍ + ତ = ଅନୂଦିତ | ଯୁଧ୍ + ତ = ଯୁଦ୍ଧ | ଉପ-ବିଶ୍ + ତ = ଉପବିଷ୍ଟ |
| ସମ୍-ତନ୍ + ତ = ସନ୍ତତ | ରୁଧ୍ + ତ = ରୁଦ୍ଧ | ତିରସ୍-ଧା + ତ = ତିରୋହିତ |
| ପ୍ର-ଆପ୍ + ତ = ପ୍ରାପ୍ତ | ସମ୍-ଯମ୍+ତ = ସଂଯତ | ଅନୁ-ସୃ + ତ = ଅନୁସୃତ |
| ଆ-କୃଷ୍ + ତ = ଆକୃଷ୍ଟ | ଅଭି-ଶପ୍ + ତ = ଅଭିଶପ୍ତ | ଉତ୍-ନମ୍ + ତ = ଉନ୍ନତ |

(୨)

| | | |
|---|---|---|
| ଦଳ୍ + ତ = ଦଳିତ | ବଞ୍ଚ୍ + ତ = ବଞ୍ଚିତ | ଅର୍ଚ୍ଚ୍ + ତ = ଅର୍ଚ୍ଚିତ |
| ମିଳ୍ + ତ = ମିଳିତ | ପଠ୍ + ତ = ପଠିତ | ଲୁଣ୍ଠ୍ + ତ = ଲୁଣ୍ଠିତ |
| ଗଳ୍ + ତ = ଗଳିତ | କୁପ୍ + ତ = କୁପିତ | ଯାଚ୍ + ତ = ଯାଚିତ |
| ସ୍ଖଳ୍ + ତ = ସ୍ଖଳିତ | ବିଦ୍ + ତ = ବିଦିତ | ଚର୍ଚ୍ଚ୍ + ତ = ଚର୍ଚ୍ଚିତ |
| ପତ୍ + ତ = ପତିତ | ଜୀବ୍ + ତ = ଜୀବିତ | କମ୍ପ୍ + ତ = କମ୍ପିତ |
| ବାଧ୍ + ତ = ବାଧିତ | ରହ୍ + ତ = ରହିତ | ବ୍ୟଥ୍ + ତ = ବ୍ୟଥିତ |
| ଚର୍ + ତ = ଚରିତ | ରକ୍ଷ୍ + ତ = ରକ୍ଷିତ | ବେଷ୍ଟ୍ + ତ = ବେଷ୍ଟିତ |
| ନିନ୍ଦ୍ + ତ = ନିନ୍ଦିତ | ରାଜ୍ + ତ = ରାଜିତ | ଚେଷ୍ଟ୍ + ତ = ଚେଷ୍ଟିତ |
| ଚର୍ବ୍ + ତ = ଚର୍ବିତ | ଧାବ୍ + ତ = ଧାବିତ | ଚୁମ୍ବ୍ + ତ = ଚୁମ୍ବିତ |
| ତୃଷ୍ + ତ = ତୃଷିତ | ଗର୍ଜ୍ + ତ = ଗର୍ଜିତ | ଆ-ନନ୍ଦ୍ + ତ = ଆନନ୍ଦିତ |
| ସ୍ତିମ୍ + ତ = ସ୍ତିମିତ | ଶିକ୍ଷ୍ + ତ = ଶିକ୍ଷିତ | ପ୍ର-ଶନ୍ସ୍ + ତ = ପ୍ରଶଂସିତ |
| ଗର୍ହ୍ + ତ = ଗର୍ହିତ | ଲମ୍ବ + ତ = ଲମ୍ବିତ | ଆ-ଚର୍ + ତ = ଆଚରିତ |
| ତ୍ୱର୍ + ତ = ତ୍ୱରିତ | ମୁଣ୍ଡ୍ + ତ = ମୁଣ୍ଡିତ | ଉତ୍-ସ୍ଥା + ତ = ଉତ୍ଥିତ |

(୩)

| | | |
|---|---|---|
| ଦୀ + ତ = ଦୀନ | ରୁଜ୍ + ତ = ରୁଗ୍ଣ | ର + ତ = ରଣ |
| ହୀ + ତ = ହୀନ | ମସ୍ଜ୍ + ତ = ମଗ୍ନ | ପୂର + ତ = ପୂର୍ଣ୍ଣ |
| କ୍ଷୀ + ତ = କ୍ଷୀଣ | ଭନ୍ଜ + ତ = ଭଗ୍ନ | ତ୍ରୈ + ତ = ତ୍ରାଣ |
| ଲୀ + ତ = ଲୀନ | ଲସ୍ଜ୍ + ତ = ଲଗ୍ନ | ମ୍ଲୈ + ତ = ମ୍ଳାନ |
| ପ୍ୟାୟ୍ + ତ = ପୀନ | ଲଗ୍ + ତ = ଲଗ୍ନ | ଚୂର୍ + ତ = ଚୂର୍ଣ୍ଣ |
| ଉତ୍-ବିଜ୍ + ତ = ଉଦ୍‌ବିଗ୍ନ | ପଦ୍ + ତ = ପନ୍ନ | ଉତ୍-ଡୀ + ତ = ଉଡ୍‌ଡୀନ |

(୪)

ଅଦ୍ + ତ = ଅନ୍ନ
ଖିଦ୍ + ତ = ଖିନ୍ନ
ଭିଦ୍ + ତ = ଭିନ୍ନ
ଛିଦ୍ + ତ = ଛିନ୍ନ
କ୍ଷୁଦ୍ + ତ = କ୍ଷୁଣ୍ଣ
ବି-ସଦ୍ + ତ = ବିଷଣ୍ଣ
ପ୍ର-ସଦ୍ + ତ = ପ୍ରସନ୍ନ
ପ୍ର-ଛଦ୍ + ତ = ପ୍ରଛନ୍ନ
ଆ-ସଦ୍ + ତ = ଆସନ୍ନ
ସମ୍-ପଦ୍ + ତ = ସମ୍ପନ୍ନ
ଆ-ପଦ୍ + ତ = ଆପନ୍ନ
ପ୍ର-ପଦ୍ + ତ = ପ୍ରପନ୍ନ
ବି-ପଦ୍ + ତ = ବିପନ୍ନ
ବି-ଭିଦ୍ + ତ = ବିଭିନ୍ନ
ବି-ଛିଦ୍ + ତ = ବିଚ୍ଛିନ୍ନ

(୫)

ଦୃ + ତ = ଦୀର୍ଣ୍ଣ
ତୃ + ତ = ତୀର୍ଣ୍ଣ
ଜୃ + ତ = ଜୀର୍ଣ୍ଣ
ଉତ୍-କୃ + ତ = ଉତ୍କୀର୍ଣ୍ଣ
ବି-ଦୃ + ତ = ବିଦୀର୍ଣ୍ଣ
ଉତ୍-ତୃ + ତ = ଉତ୍ତୀର୍ଣ୍ଣ
ସମ୍-କୃ + ତ = ସଂକୀର୍ଣ୍ଣ
ପ୍ର-କୃ+ତ = ପ୍ରକୀର୍ଣ୍ଣ
ବି-ସ୍ତୃ + ତ = ବିସ୍ତୀର୍ଣ୍ଣ
ବି-କୃ + ତ = ବିକୀର୍ଣ୍ଣ
ଉତ୍-ଗୃ + ତ = ଉଦ୍ଗୀର୍ଣ୍ଣ
ବି-ଶୃ + ତ = ବିଶୀର୍ଣ୍ଣ

(୬)

ସନନ୍ତ ଓ ନାମଧାତୁର ପରେ 'ତ' ପ୍ରତ୍ୟୟ ହେଲେ 'ଇ' କାରର ଆଗମ ହୁଏ ।

ବଚ୍-ବିବକ୍ଷ୍ + ତ = ବିବକ୍ଷିତ
ମାନ୍-ମୀମାଂସ୍ + ତ = ମୀମାଂସିତ
ଆପ୍-ଈପ୍ସ୍ + ତ = ଈପ୍ସିତ
ଲଭ୍-ଲିପ୍ସ୍ + ତ = ଲିପ୍ସିତ
ଭୁଜ୍-ବୁଭୁକ୍ଷ୍ + ତ = ବୁଭୁକ୍ଷିତ
କିତ୍-ଚିକିତ୍ସ୍ + ତ = ଚିକିତ୍ସିତ
ଦୋଳ୍-ଦୋଳାୟ + ତ = ଦୋଳାୟିତ
ଲାଳ୍-ଲାଳାୟ + ତ = ଲାଳାୟିତ
ବାଷ୍ପ-ବାଷ୍ପାୟ + ତ = ବାଷ୍ପାୟିତ
ଧୂମ-ଧୂମାୟ + ତ = ଧୂମାୟିତ
ତରଙ୍ଗ-ତରଙ୍ଗାୟ + ତ = ତରଙ୍ଗାୟିତ
ଶବ୍ଦ-ଶବ୍ଦାୟ + ତ = ଶବ୍ଦାୟିତ

## ତବ୍ୟ ପ୍ରତ୍ୟୟ (ତବ୍ୟ)

ପଠ୍ + ତବ୍ୟ = ପଠିତବ୍ୟ
କୃ + ତବ୍ୟ = କର୍ତ୍ତବ୍ୟ
ଜ୍ଞା + ତବ୍ୟ = ଜ୍ଞାତବ୍ୟ
ଦା + ତବ୍ୟ = ଦାତବ୍ୟ
ହା + ତବ୍ୟ = ହାତବ୍ୟ
ମୃ + ତବ୍ୟ = ମର୍ତ୍ତବ୍ୟ
ଧୃ + ତବ୍ୟ = ଧର୍ତ୍ତବ୍ୟ
ସ୍ନା + ତବ୍ୟ = ସ୍ନାତବ୍ୟ
ଶ୍ରୁ + ତବ୍ୟ = ଶ୍ରୋତବ୍ୟ
ଗ୍ରହ୍ + ତବ୍ୟ = ଗ୍ରହୀତବ୍ୟ
ଦୃଶ୍ + ତବ୍ୟ = ଦ୍ରଷ୍ଟବ୍ୟ
ପ୍ରଚ୍ଛ୍ + ତବ୍ୟ = ପ୍ରଷ୍ଟବ୍ୟ
ଧୃ + ତବ୍ୟ = ଧର୍ତ୍ତବ୍ୟ
ମନ୍ + ତବ୍ୟ = ମନ୍ତବ୍ୟ
ହୃ + ତବ୍ୟ = ହର୍ତ୍ତବ୍ୟ
ଗମ୍ + ତବ୍ୟ = ଗନ୍ତବ୍ୟ
ବଚ୍ + ତବ୍ୟ = ବକ୍ତବ୍ୟ
ବାଞ୍ଛ୍+ତବ୍ୟ = ବାଞ୍ଛିତବ୍ୟ
କ୍ଷମ୍ + ତବ୍ୟ = କ୍ଷନ୍ତବ୍ୟ
ଭୁଜ୍+ତବ୍ୟ = ଭୋକ୍ତବ୍ୟ
ସ୍ମୃ + ତବ୍ୟ = ସ୍ମର୍ତ୍ତବ୍ୟ

## ତି-ପ୍ରତ୍ୟୟ (କ୍ତିନ୍)

| | | |
|---|---|---|
| ନୀ + ତି = ନୀତି | ଖ୍ୟା + ତି = ଖ୍ୟାତି | ମନ୍ + ତି = ମତି |
| ଗୀ + ତି = ଗୀତି | ସ୍ଥା + ତି = ସ୍ଥିତି | କମ୍ + ତି = କାନ୍ତି |
| ପ୍ରୀ + ତି = ପ୍ରୀତି | ଧୃ + ତି = ଧୃତି | ରମ୍ + ତି = ରତି |
| ଭୀ + ତି = ଭୀତି | କୃ + ତି = କୃତି | ଗମ୍ + ତି = ଗତି |
| ବୁଧ୍ + ତି = ବୁଦ୍ଧି | ସୃଜ୍ + ତି = ସୃଷ୍ଟି | ଶମ୍ + ତି = ଶାନ୍ତି |
| ମୁଚ୍ + ତି = ମୁକ୍ତି | ଦୃଶ୍ + ତି = ଦୃଷ୍ଟି | ଭ୍ରମ୍ + ତି = ଭ୍ରାନ୍ତି |
| ଦୀପ୍ + ତି = ଦୀପ୍ତି | ତୃପ୍ + ତି = ତୃପ୍ତି | ଶ୍ରମ୍ + ତି = ଶ୍ରାନ୍ତି |
| ଶୁଧ୍ + ତି = ଶୁଦ୍ଧି | ଗ୍ଲୈ + ତି = ଗ୍ଲାନି | ମ୍ଲୈ + ତି = ମ୍ଲାନି |
| ବୃଷ୍ + ତି = ବୃଷ୍ଟି | ଭଜ୍ + ତି = ଭକ୍ତି | ସ୍ମୃ + ତି = ସ୍ମୃତି |
| ବୃତ୍ + ତି = ବୃତ୍ତି | ଶକ୍ + ତି = ଶକ୍ତି | ନମ୍ + ତି = ନତି |
| କ୍ଲମ୍ + ତି = କ୍ଲାନ୍ତି | ଦୀପ୍ + ତି = ଦୀପ୍ତି | ଜନ୍ + ତି = ଜାତି |
| ଶ୍ରୁ + ତି = ଶ୍ରୁତି | ସ୍ତୁ + ତି = ସ୍ତୁତି | ବଚ୍ + ତି = ଉକ୍ତି |
| ମୁଚ୍ + ତି = ମୁକ୍ତି | ହା + ତି = ହାନି | ସ୍ୱପ୍ + ତି = ସୁପ୍ତି |
| କୃଷ୍ + ତି = କୃଷ୍ଟି | ତୁଷ୍ + ତି = ତୁଷ୍ଟି | ଶକ୍ + ତି = ଶକ୍ତି |
| ବି-ପଦ୍ + ତି = ବିପତ୍ତି | ସମ୍-ପଦ୍ + ତି = ସମ୍ପତ୍ତି | ପ୍ର-ଆପ୍ + ତି = ପ୍ରାପ୍ତି |

** ଓଡ଼ିଆରେ ଦୀର୍ଘ ର ବର୍ଣ୍ଣର ବ୍ୟବହାର ନ ଥିବାରୁ ସଂସ୍କୃତରେ କୃ, ଗୃ, ଜୃ, ତୃ, ଦୃ, ଶୃ, ସ୍ତୃ ଧାତୁଗୁଡ଼ିକୁ ଯଥାକ୍ରମେ କୃ, ଗୃ, ଜୃ, ତୃ, ଦୃ, ଶୃ, ସ୍ତୃ ଭାବରେ ଲେଖାଯାଉଛି ।

## ତୃ-ପ୍ରତ୍ୟୟ (ତୃ, ତୃନ୍, ତୃଚ୍)

ଧାତୁର ପରେ କର୍ତ୍ତୃବାଚ୍ୟରେ ତୃନ୍ ଓ ତୃଚ୍ ପ୍ରତ୍ୟୟ ହୋଇଥାଏ । ଏହି ପ୍ରତ୍ୟୟ ଦ୍ୱୟରୁ ଅବଶେଷ 'ତୃ' ରହେ । ଓଡ଼ିଆରେ 'ତୃ' ରୁ 'ତା' ହୋଇଥାଏ । ସ୍ତ୍ରୀ ଲିଙ୍ଗରେ 'ତ୍ରୀ' ହୁଏ । ଯଥା- କର୍ତ୍ତା-କର୍ତ୍ତ୍ରୀ, ନେତା-ନେତ୍ରୀ ସମାସରେ ମୂଳଶବ୍ଦରେ 'ତୃ' ରହେ । ଯଥା- ଭ୍ରାତୃଭକ୍ତି, ଶ୍ରୋତୃମଣ୍ଡଳୀ ।

| | | |
|---|---|---|
| ପା + ତୃ = ପିତା | କୃ + ତୃ = କର୍ତ୍ତା | ବଚ୍ + ତୃ = ବକ୍ତା |
| ମା + ତୃ = ମାତା | ଶ୍ରୁ + ତୃ = ଶ୍ରୋତା | ରଚ୍ + ତୃ = ରଚୟିତା |
| ଦା + ତୃ = ଦାତା | ଭୃ + ତୃ = ଭର୍ତ୍ତା | ହୃ + ତୃ = ହର୍ତ୍ତା |
| ଧା + ତୃ = ଧାତା | କ୍ରୀ + ତୃ = କ୍ରେତା | ଜ୍ଞା + ତୃ = ଜ୍ଞାତା |
| ଭ୍ରାଜ୍ + ତୃ = ଭ୍ରାତା | ନୀ + ତୃ = ନେତା | ସୃଜ୍ + ତୃ = ସ୍ରଷ୍ଟା |

ପାଳ୍ + ତୃ = ପାଳୟିତା　ହନ୍ + ତୃ = ହନ୍ତା　ଯୁଧ୍ + ତୃ = ଯୋଦ୍ଧା
ଶିକ୍ଷ୍ + ତୃ = ଶିକ୍ଷୟିତା (ଏଥିରୁ ସ୍ତ୍ରୀ ଲିଙ୍ଗରେ 'ଶିକ୍ଷୟିତ୍ରୀ' ହୋଇଛି ।)
ଗ୍ରହ୍ + ତୃ = ଗ୍ରହୀତା　ଜି + ତୃ = ଜେତା　ସ୍ଥାପି + ତୃ = ସ୍ଥାପୟିତା
ନି-ଯମ୍ + ତୃ = ନିୟନ୍ତା　ଉପ-ଦିଶ୍ + ତୃ = ଉପଦେଷ୍ଟା　ହୃ + ତୃ = ହୋତା
ସମ୍-ଚି + ତୃ = ସଞ୍ଚୟିତା　ଉତ୍-ଗୈ + ତୃ = ଉଦ୍‌ଗାତା　ବପ୍ + ତୃ = ବପ୍ତା
ବି-ଜି + ତୃ = ବିଜେତା　ନି-ଯମ୍ + ତୃ = ନିୟନ୍ତା　ବି- ଧା + ତୃ = ବିଧାତା

## ତ୍ର-ପ୍ରତ୍ୟୟ

ନୀ + ତ୍ର = ନେତ୍ର　ଅସ୍ + ତ୍ର = ଅସ୍ତ୍ର　ବଚ୍ + ତ୍ର = ବକ୍ତ୍ର
ବୀ + ତ୍ର = ବେତ୍ର　ଶସ୍ + ତ୍ର = ଶସ୍ତ୍ର　ଦୋ + ତ୍ର=ଦାତ୍ର(ଦାଆ)
କ୍ଷି + ତ୍ର = କ୍ଷେତ୍ର　ଗମ୍ + ତ୍ର = ଗାତ୍ର　ପା + ତ୍ର = ପାତ୍ର
ସଦ୍ + ତ୍ର = ସତ୍ର　ବସ୍ + ତ୍ର = ବସ୍ତ୍ର　ଶାସ୍ + ତ୍ର = ଶାସ୍ତ୍ର
ଛଦ୍ + ତ୍ର = ଛତ୍ର　ପତ୍ + ତ୍ର = ପତ୍ର　ସ୍ତୁ + ତ୍ର = ସ୍ତୋତ୍ର
ମା + ତ୍ର + ସ୍ତ୍ରୀ-ଆ = ମାତ୍ରା　ଦଂଶ୍ + ତ୍ର = ଦଂଷ୍ଟ୍ର　ସିଚ୍ + ତ୍ର = ସୂତ୍ର(ସିଚ୍-ସୂ)

## ୱର / ବର-ପ୍ରତ୍ୟୟ (କ୍ୱରପ୍)

ଈଶ୍ + ୱର = ଈଶ୍ୱର　ନଶ୍ + ୱର = ନଶ୍ୱର
ଭାସ୍ + ୱର = ଭାସ୍ୱର　ସ୍ଥା + ବର = ସ୍ଥାବର

## ମନ୍-ପ୍ରତ୍ୟୟ

ଧୃ + ମନ୍ = ଧର୍ମ　ଶୃ + ମନ୍ = ଶର୍ମ　ବୃ + ମନ୍ = ବର୍ମ
ଚର୍ + ମନ୍ = ଚର୍ମ　କୃ + ମନ୍ = କର୍ମ　ଭସ୍ + ମନ୍ = ଭସ୍ମ
ନୃ + ମନ୍ = ନର୍ମ　ଶ୍ଳିଷ୍+ମନ୍+ଆ = ଶ୍ଳେଷ୍ମା　ଜନ୍ + ମନ୍ = ଜନ୍ମ

## ମାନ, ଆନ, ଈନ-ପ୍ରତ୍ୟୟ
## (ଶାନଚ୍)

ବୃତ୍ + ମାନ = ବର୍ତ୍ତମାନ　ସେବ୍ + ମାନ = ସେବମାନ
ଲଭ୍ + ମାନ = ଲଭମାନ　ଦୀପ୍ + ମାନ = ଦୀପ୍ୟମାନ
ଲସ୍ଜ୍ + ମାନ = ଲଜ୍ଜମାନ　ମୃ + ମାନ = ମ୍ରିୟମାଣ
ବୃଧ୍ + ମାନ = ବର୍ଦ୍ଧମାନ　ଭାସ୍ + ମାନ = ଭାସମାନ

ଶୀ + ଆନ = ଶୟାନ ଅଧି-ଇ + ଆନ = ଅଧୀୟାନ

ଯଜ୍ + ମାନ = ଯଜମାନ ବନ୍ଦ୍ + ମାନ = ବନ୍ଦମାନ

ଣିଜନ୍ତ ଧାତୁରୁ - ଦର୍ଶି + ମାନ = ଦର୍ଶୟମାଣ, କାରି + ମାନ = କାରୟମାଣ

ସନନ୍ତ ଧାତୁରୁ - ଜିଜ୍ଞାସ୍ + ମାନ = ଜିଜ୍ଞାସମାଣ, ଦିଦୃକ୍ଷ୍ + ମାନ = ଦିଦୃକ୍ଷମାଣ

ଯଙନ୍ତ ଧାତୁରୁ - ରୋରୁଦ୍ୟ + ମାନ = ରୋରୁଦ୍ୟମାନ ଦଣ୍ଡାୟ+ମାନ=ଦଣ୍ଡାୟମାନ

ଦେଦୀପ୍ୟ + ମାନ = ଦେଦୀପ୍ୟମାନ, ନାମଧାତୁରୁ - ଶବ୍ଦାୟ + ମାନ = ଶବ୍ଦାୟମାନ

## ୟ(ଯ) ପ୍ରତ୍ୟୟ - (ଘ୍ୟଣ୍ ବା ଣ୍ୟତ୍, ଯତ୍, କ୍ୟପ୍, ଖ୍ୟ)

### (୧)

| | | |
|---|---|---|
| ପଠ୍ + ୟ = ପାଠ୍ୟ | ଧୃ + ୟ = ଧାର୍ଯ୍ୟ | ଛିଦ୍ + ୟ = ଛେଦ୍ୟ |
| ହସ୍ + ୟ = ହାସ୍ୟ | କୃ + ୟ = କାର୍ଯ୍ୟ | ଭିଦ୍ + ୟ = ଭେଦ୍ୟ |
| ଦହ୍ + ୟ = ଦାହ୍ୟ | ଋ + ୟ = ଆର୍ଯ୍ୟ | ଲିହ୍ + ୟ = ଲେହ୍ୟ |
| ବହ୍ + ୟ = ବାହ୍ୟ | ଦୃଶ୍ + ୟ = ଦୃଶ୍ୟ | ଯୁଜ୍ + ୟ = ଯୋଗ୍ୟ |
| ଭକ୍ଷ + ୟ = ଭକ୍ଷ୍ୟ | ଶ୍ରୁ + ୟ = ଶ୍ରାବ୍ୟ | ତ୍ୟଜ୍ + ୟ = ତ୍ୟାଜ୍ୟ |
| ଭଜ୍ + ୟ = ଭାଜ୍ୟ | ଭୁଜ୍ + ୟ = ଭୋଜ୍ୟ | ବଚ୍ + ୟ = ବାଚ୍ୟ/ବାକ୍ୟ |
| ମନ୍ + ୟ = ମାନ୍ୟ | ଶୁଚ୍ + ଯ = ଶୋଚ୍ୟ | ହନ୍ + ୟ = ଘାତ୍ୟ |
| ପଚ୍ + ୟ = ପାଚ୍ୟ/ପାକ୍ୟ | ସିଚ୍ + ଯ = ସେଚ୍ୟ | ପରି-ହୃ + ଯ = ପରିହାର୍ଯ୍ୟ |

### (୨)

| | | |
|---|---|---|
| ଜି + ୟ = ଜେୟ | ଦା + ୟ = ଦେୟ | ହନ୍ + ୟ = ବଧ୍ୟ |
| ଚି + ୟ = ଚେୟ | ହା + ୟ = ହେୟ | ଗମ୍ + ୟ = ଗମ୍ୟ |
| ନୀ + ୟ = ନେୟ | ପା + ୟ = ପେୟ | ମଦ୍ + ୟ = ମଦ୍ୟ |
| କ୍ରୀ + ୟ = କ୍ରେୟ | ପରି-ଧା+ୟ = ପରିଧେୟ | ରମ୍ + ୟ = ରମ୍ୟ |
| ଶକ୍ + ୟ = ଶକ୍ୟ | ସହ୍ + ୟ = ସହ୍ୟ | ଗଦ୍ + ୟ = ଗଦ୍ୟ |
| ନୃତ୍ + ୟ = ନୃତ୍ୟ | ଲଭ୍ + ୟ = ଲଭ୍ୟ | ପଦ୍ + ୟ = ପଦ୍ୟ |
| ବି-ଧା + ୟ = ବିଧେୟ | ସମ୍-ଧା + ୟ = ସଂଧେୟ | ହୁ + ୟ = ହବ୍ୟ |

### (୩)

କୃ + ୟ = କୃତ୍ୟ କୃ + ୟ (ସ୍ତ୍ରୀ-ଆ) କୃତ୍ୟା, କ୍ରିୟା

ଶୀ + ୟ (ସ୍ତ୍ରୀ-ଆ) = ଶଯ୍ୟା

ଭୃ + ୟ = ଭୃତ୍ୟ   ଭୃ + ୟ (ସ୍ତ୍ରୀ-ଆ) ଭାର୍ଯ୍ୟା

ବିଦ୍ + ୟ (ସ୍ତ୍ରୀ-ଆ) = ବିଦ୍ୟା

ସ୍ତୁ + ୟ = ସ୍ତୁତ୍ୟ   ହନ୍ + ୟ (ସ୍ତ୍ରୀ-ଆ) = ହତ୍ୟା

ଚର୍ + ୟ (ସ୍ତ୍ରୀ-ଆ) = ଚର୍ଯ୍ୟା

ସୃ + ୟ = ସୂର୍ଯ୍ୟ   ଶାସ୍ + ୟ = ଶିଷ୍ୟ

ରାଜନ୍-ସୂ + ୟ = ରାଜସୂୟ

(୪)

ଆତ୍ମନ୍-ମନ୍ + ଯ = ଆତ୍ମମ୍ମନ୍ୟ   ଦାତାରଂ-ମନ୍+ଯ=ଦାତାରମ୍ମନ୍ୟ

ଧନ୍ୟ-ମନ୍ + ୟ = ଧନ୍ୟମ୍ମନ୍ୟ,   ପଣ୍ଡିତ-ମନ୍ + ଯ = ପଣ୍ଡିତମ୍ମନ୍ୟ,

କୃତାର୍ଥ-ମନ୍ + ୟ = କୃତାର୍ଥମ୍ମନ୍ୟ ।   ବିଜ୍ଞ-ମନ୍ + ଯ = ବିଜ୍ଞମ୍ମନ୍ୟ

ନେତାରଂ- ମନ୍ + ଯ = ନେତାରମ୍ମନ୍ୟ

## ର-ପ୍ରତ୍ୟୟ

କମ୍ + ର = କମ୍ର   ନମ୍ + ର = ନମ୍ର   ହିନ୍ସ୍ + ର = ହିଂସ୍ର

କ୍ଷୁଦ୍ + ର = କ୍ଷୁଦ୍ର   କ୍ଷିପ୍ + ର = କ୍ଷିପ୍ର   ରୁଦ୍ + ର = ରୁଦ୍ର

ସ୍ମି + ର = ସ୍ମେର   ଛିଦ୍ + ର = ଛିଦ୍ର   କମ୍ପ୍ + ର = କମ୍ପ୍ର

## ଇ-ପ୍ରତ୍ୟୟ (ରି)

ଆତ୍ମ-ଭୃ + ଇ = ଆତ୍ମମ୍ଭରି   ଉଦର-ଭୃ + ଇ = ଉଦରମ୍ଭରି

## ଇଷ୍ଣୁ-ପ୍ରତ୍ୟୟ

ବୃଧ୍ + ଇଷ୍ଣୁ = ବର୍ଦ୍ଧିଷ୍ଣୁ   କ୍ଷି + ଇଷ୍ଣୁ = କ୍ଷୟିଷ୍ଣୁ

ଚଲ୍ + ଇଷ୍ଣୁ = ଚଳିଷ୍ଣୁ   ସହ୍ + ଇଷ୍ଣୁ = ସହିଷ୍ଣୁ

## ଇତ୍ର-ପ୍ରତ୍ୟୟ

ଖନ୍ + ଇତ୍ର = ଖନିତ୍ର   ପୂ + ଇତ୍ର = ପବିତ୍ର

ବହ୍ + ଇତ୍ର = ବହିତ୍ର   ଚର୍ + ଇତ୍ର = ଚରିତ୍ର

## ନ-ପ୍ରତ୍ୟୟ

ପ୍ରଚ୍ଛ + ନ = ପ୍ରଶ୍ନ (ଚ୍ଛ=ଶ)   ଯଜ୍ + ନ = ଯଜ୍ଞ   ଯତ୍ + ନ = ଯତ୍ନ

ତୃଷ୍ + ନ(ସ୍ତ୍ରୀ-ଆ) = ତୃଷ୍ଣା   ରମ୍ + ନ = ରତ୍ନ   ଯାଚ୍ + ନ (ସ୍ତ୍ରୀ.ଆ) = ଯାଚ୍ଞା

ସ୍ୱପ୍ + ନ = ସ୍ୱପ୍ନ   କୃଷ୍ + ନ = କୃଷ୍ଣ   ଗୃଧ୍ + ନ = ଗୃଧ୍ନ

## ଅଭୂତ ତଦ୍‌ଭାବେ 'ଚ୍ୱି' ପ୍ରତ୍ୟୟ
## [ ଓଡ଼ିଆ ଈ (ī) ପ୍ରତ୍ୟୟ ]

ଅଭୂତ ତଦ୍‌ଭାବର ଅର୍ଥ ହେଉଛି- ପୂର୍ବେ ବା ପ୍ରଥମେ ନ ଥିବା, ପରେ ହେବା । ସଂସ୍କୃତ 'ଭୂ' ଓ 'କୃ' ଧାତୁ ପ୍ରତ୍ୟୟନିଷ୍ପନ୍ନ ପଦର ପୂର୍ବରେ ଉପପଦ ଥିଲେ, ସେହି ଉପପଦର ଅନ୍ତ୍ୟ 'ଅ' ଅଭୂତ ତଦ୍‌ଭାବ ଅର୍ଥରେ 'ଚ୍ୱି' ରେ ପରିଣତ ହୁଏ । ସେହି 'ଚ୍ୱି'ରୁ ଈ(ī) ରହେ ।

'ଭୂ' ଓ 'କୃ' ଧାତୁରୁ ପ୍ରତ୍ୟୟ ଯୋଗରେ ଭୂତ, ଭବନ, କୃତ, କାର, କରଣ ପ୍ରଭୃତି ପଦ ନିଷ୍ପନ୍ନ ହୋଇଥାଏ । ଉଦାହରଣ-

ବାଷ୍ପ + ଚ୍ୱି (ଈ) + ଭୂ + ତ = ବାଷ୍ପୀଭୂତ (ପୂର୍ବେ ବାଷ୍ପ ନ ଥିଲା, ପରେ ହେଲା)

ବାଷ୍ପ + ଚ୍ୱି (ଈ) + ଭୂ + ଅନ = ବାଷ୍ପୀଭବ (ପୂର୍ବେ ବାଷ୍ପ ନ ଥିବା, ପରେ ହେବା)

ଅଙ୍ଗ + ଚ୍ୱି (ଈ) + କୃ + ଅ = ଅଙ୍ଗୀକାର (ପୂର୍ବେ ଅଙ୍ଗ କରା ହୋଇ ନ ଥିବା, ପରେ ଅଙ୍ଗ କରାହେବା)

ଅଙ୍ଗୀ + ଚ୍ୱି (ଈ) + କୃ + ତ = ଅଙ୍ଗୀକୃତ (ପୂର୍ବେ ଅଙ୍ଗ କରା ହୋଇ ନ ଥିଲା, ପରେ କରାହେଲା)

ଉପପଦଗୁଡ଼ିକ ସାଧାରଣତଃ 'ଅ' କାରାନ୍ତ ବିଶେଷ୍ୟ ଓ ବିଶେଷଣ ପଦ ହୋଇଥାଏ । 'ଅନ' ଓ 'ତ' ପ୍ରତ୍ୟୟାନ୍ତ 'ଚ୍ୱି' ପ୍ରତ୍ୟୟଯୁକ୍ତ ପଦର ବିଶେଷ ବ୍ୟବହାର କରାଯାଏ ।

### ଅନ-ପ୍ରତ୍ୟୟାନ୍ତ 'ଚ୍ୱି' ପ୍ରତ୍ୟୟର ଉଦାହରଣ-(୧)

ଅପରାଧୀକରଣ - ଅପରାଧ + ଚ୍ୱି(ଈ) + କରଣ (କୃ+ଅନ)

ଆଧୁନିକୀକରଣ - ଆଧୁନିକ + ଚ୍ୱି (ଈ) + କରଣ

ଉଦାରୀକରଣ - ଉଦାର + ଚ୍ୱି (ଈ) + କରଣ

ଉଦ୍ୟୋଗୀକରଣ - ଉଦ୍ୟୋଗ + ଚ୍ୱି (ଈ) + କରଣ

ଉତ୍ସର୍ଗୀକରଣ - ଉତ୍ସର୍ଗ + ଚ୍ୱି (ଈ) + କରଣ

ଉନ୍ନୀତୀକରଣ - ଉନ୍ନୀତ + ଚ୍ୱି (ଈ) + କରଣ

ଉନ୍ମୋଚନୀକରଣ - ଉନ୍ମୋଚନ + ଚ୍ୱି (ଈ) + କରଣ

ଏକୀକରଣ - ଏକ + ଚ୍ୱି (ଈ) + କରଣ

ଏକତ୍ରୀକରଣ - ଏକତ୍ର + ଚ୍ୱି (ଈ) + କରଣ

କମ୍ପ୍ୟୁଟରୀକରଣ - କମ୍ପ୍ୟୁଟର + ଚ୍ୱି (ଈ) + କରଣ

କୁଶାସନୀକରଣ - କୁଶାସନ + ଚ୍ୱି (ଈ) + କରଣ
କୃଶୀକରଣ - କୃଶ + ଚ୍ୱି (ଈ) + କରଣ
କୃଷୀକରଣ - କୃଷ + ଚ୍ୱି (ଈ) + କରଣ
ଗୈରିକୀକରଣ - ଗୈରିକ + ଚ୍ୱି (ଈ) + କରଣ
ଚୂର୍ଣ୍ଣୀକରଣ - ଚୂର୍ଣ୍ଣ + ଚ୍ୱି (ଈ) + କରଣ
ଠୁଳୀକରଣ - ଠୁଳ + ଚ୍ୱି (ଈ) + କରଣ
ତୁଷ୍ଟୀକରଣ - ତୁଷ୍ଟ + ଚ୍ୱି (ଈ) + କରଣ
ଥଇଥାନୀକରଣ - ଥଇଥାନ + ଚ୍ୱି (ଈ) + କରଣ
ଦଗ୍ଧୀକରଣ - ଦଗ୍ଧ + ଚ୍ୱି (ଈ) + କରଣ
ଦୀର୍ଘୀକରଣ - ଦୀର୍ଘ + ଚ୍ୱି (ଈ) + କରଣ
ଦୂଷିତୀକରଣ - ଦୂଷିତ + ଚ୍ୱି (ଈ) + କରଣ
ଦୃଢ଼ୀକରଣ - ଦୃଢ଼ + ଚ୍ୱି (ଈ) + କରଣ
ଦ୍ରବୀକରଣ - ଦ୍ରବ + ଚ୍ୱି (ଈ) + କରଣ
ଧବଳୀକରଣ - ଧବଳ + ଚ୍ୱି (ଈ) + କରଣ
ଧର୍ମାନ୍ତରୀକରଣ - ଧର୍ମାନ୍ତର + ଚ୍ୱି (ଈ) + କରଣ
ନବୀକରଣ - ନବ + ଚ୍ୱି (ଈ) + କରଣ
ନିର୍ବୀର୍ଯ୍ୟୀକରଣ - ନିର୍ବୀର୍ଯ୍ୟ + ଚ୍ୱି (ଈ) + କରଣ
ନିଯୁକ୍ତୀକରଣ - ନିଯୁକ୍ତ + ଚ୍ୱି (ଈ) + କରଣ
ପବିତ୍ରୀକରଣ - ପବିତ୍ର + ଚ୍ୱି (ଈ) + କରଣ
ପ୍ରଶସ୍ତୀକରଣ - ପ୍ରଶସ୍ତ + ଚ୍ୱି (ଈ) + କରଣ
ପୁଞ୍ଜିନିବେଶୀକରଣ - ପୁଞ୍ଜିନିବେଶ + ଚ୍ୱି (ଈ) + କରଣ
ବନୀକରଣ - ବନ + ଚ୍ୱି (ଈ) + କରଣ
ବଳୟୀକରଣ - ବଳୟ + ଚ୍ୱି (ଈ) + କରଣ
ବଶୀକରଣ - ବଶ + ଚ୍ୱି (ଈ) + କରଣ
ବିକୃତୀକରଣ - ବିକୃତ + ଚ୍ୱି (ଈ) + କରଣ
ବିଭେଦୀକରଣ - ବିଭେଦ + ଚ୍ୱି (ଈ) + କରଣ
ବିରୋଧୀକରଣ - ବିରୋଧ + ଚ୍ୱି (ଈ) + କରଣ
ବିଶ୍ୱୀକରଣ - ବିଶ୍ୱ + ଚ୍ୱି (ଈ) + କରଣ

ବିସ୍ଥାପିତୀକରଣ - ବିସ୍ଥାପିତ + ଚ୍ୱି (ଈ) + କରଣ
ବୈଠକୀକରଣ - ବୈଠକ + ଚ୍ୱି (ଈ) + କରଣ
ବୈଦ୍ୟୁତିକୀକରଣ - ବୈଦ୍ୟୁତିକ + ଚ୍ୱି (ଈ) + କରଣ
ବୈଧୀକରଣ - ବୈଧ + ଚ୍ୱି (ଈ) + କରଣ
ବ୍ୟକ୍ତୀକରଣ - ବ୍ୟକ୍ତ + ଚ୍ୱି (ଈ) + କରଣ
ମଞ୍ଜୁସ୍ଥୀକରଣ - ମଞ୍ଜୁସ୍ଥ + ଚ୍ୱି (ଈ) + କରଣ
ମନ୍ଦୀକରଣ - ମନ୍ଦ + ଚ୍ୱି (ଈ) + କରଣ
ମଧ୍ୟସ୍ଥୀକରଣ - ମଧ୍ୟସ୍ଥ + ଚ୍ୱି (ଈ) + କରଣ
ଶୀତଳୀକରଣ - ଶୀତଳ + ଚ୍ୱି (ଈ) + କରଣ
ଶୁଦ୍ଧୀକରଣ - ଶୁଦ୍ଧ + ଚ୍ୱି (ଈ) + କରଣ
ଶ୍ୱେତୀକରଣ - ଶ୍ୱେତ + ଚ୍ୱି (ଈ) + କରଣ
ସଂକରୀକରଣ - ସଂକର + ଚ୍ୱି (ଈ) + କରଣ
ସଂତୁଷ୍ଟୀକରଣ - ସଂତୁଷ୍ଟ + ଚ୍ୱି (ଈ) + କରଣ
ସଂଯୋଗୀକରଣ - ସଂଯୋଗ + ଚ୍ୱି (ଈ) + କରଣ
ସାମ୍ପ୍ରଦାୟିକୀକରଣ - ସାମ୍ପ୍ରଦାୟିକ + ଚ୍ୱି (ଈ) + କରଣ
ସନ୍ଦେହୀକରଣ - ସନ୍ଦେହ + ଚ୍ୱି (ଈ) + କରଣ
ସପିଣ୍ଡୀକରଣ - ସପିଣ୍ଡ + ଚ୍ୱି (ଈ) + କରଣ
ସଫଳୀକରଣ - ସଫଳ + ଚ୍ୱି (ଈ) + କରଣ
ସରଳୀକରଣ - ସରଳ + ଚ୍ୱି (ଈ) + କରଣ
ସଶକ୍ତୀକରଣ - ସଶକ୍ତ + ଚ୍ୱି (ଈ) + କରଣ
ସହଯୋଗୀକରଣ - ସହଯୋଗ + ଚ୍ୱି (ଈ) + କରଣ
ସହରୀକରଣ - ସହର + ଚ୍ୱି (ଈ) + କରଣ
ସାମାଜିକୀକରଣ - ସାମାଜିକ + ଚ୍ୱି (ଈ) + କରଣ
ସୀମିତୀକରଣ - ସୀମିତ + ଚ୍ୱି (ଈ) + କରଣ
ସ୍ତୂପୀକରଣ - ସ୍ତୂପ + ଚ୍ୱି (ଈ) + କରଣ
ସ୍ପଷ୍ଟୀକରଣ - ସ୍ପଷ୍ଟ + ଚ୍ୱି (ଈ) + କରଣ
ସ୍ତମ୍ଭୀକରଣ - ସ୍ତମ୍ଭ + ଚ୍ୱି (ଈ) + କରଣ
ସ୍ତରୀକରଣ - ସ୍ତର + ଚ୍ୱି (ଈ) + କରଣ

ସ୍ଥିରୀକରଣ - ସ୍ଥିର + ଚ୍ୱି (ଈ) + କରଣ
ସ୍ଥୂଳୀକରଣ - ସ୍ଥୂଳ + ଚ୍ୱି (ଈ) + କରଣ
ସ୍ଥଗିତୀକରଣ - ସ୍ଥଗିତ + ଚ୍ୱି (ଈ) + କରଣ
ସ୍ୱଚ୍ଛଳୀକରଣ - ସ୍ୱଚ୍ଛଳ + ଚ୍ୱି (ଈ) + କରଣ
ସ୍ୱଦେଶୀକରଣ - ସ୍ୱଦେଶ + ଚ୍ୱି (ଈ) + କରଣ

(୨)

ଘନୀଭବନ - ଘନ + ଚ୍ୱି (ଈ) + ଭବନ (ଭୂ + ଅନ)
ଚୂର୍ଣ୍ଣୀଭବନ - ଚୂର୍ଣ୍ଣ + ଚ୍ୱି (ଈ) + ଭବନ
ଦ୍ରବୀଭବନ - ଦ୍ରବ + ଚ୍ୱି (ଈ) + ଭବନ
ବାଷ୍ପୀଭବନ - ବାଷ୍ପ + ଚ୍ୱି (ଈ) + ଭବନ
ଦଗ୍ଧୀଭବନ - ଦଗ୍ଧ + ଚ୍ୱି (ଈ) + ଭବନ
ଦୃଢ଼ୀକରଣ - ଦୃଢ଼ୀ + ଚ୍ୱି (ଈ) + ଭବନ

**ତ-ପ୍ରତ୍ୟୟାନ୍ତ 'ଚ୍ୱି' ପ୍ରତ୍ୟୟର ଉଦାହରଣ-**

ଅଙ୍ଗୀକୃତ - ଅଙ୍ଗ + ଚ୍ୱି (ଈ) + କୃତ (କୃ + ତ)
ଅତ୍ସର୍ଗୀକୃତ - ଉତ୍ସର୍ଗ + ଚ୍ୱି (ଈ) + କୃତ
ଏକୀକୃତ - ଏକ + ଚ୍ୱି (ଈ) + କୃତ (କୃ + ତ)
ଦଗ୍ଧୀକୃତ - ଦଗ୍ଧ + ଚ୍ୱି (ଈ) + କୃତ (କୃ + ତ)
ଦୀର୍ଘୀକୃତ - ଦୀର୍ଘ + ଚ୍ୱି (ଈ) + କୃତ (କୃ + ତ)
ଦୂରୀକୃତ - ଦୂର + ଚ୍ୱି (ଈ) + କୃତ (କୃ + ତ)
ନବୀକୃତ = ନବ + ଚ୍ୱି(ଈ) + କୃତ (କୃ + ତ)
ପବିତ୍ରୀକୃତ = ପବିତ୍ର + ଚ୍ୱି (ଈ) + କୃତ (କୃ + ତ)
ପ୍ରଶସ୍ତୀକୃତ = ପ୍ରଶସ୍ତ + ଚ୍ୱି (ଈ) + କୃତ (କୃ +ତ )
ବଶୀକୃତ = ବଶ୍ + ଚ୍ୱି (ଈ) + କୃତ (କୃ + ତ)
ବୈଧୀକୃତ = ବୈଧ + ଚ୍ୱି (ଈ) + କୃତ (କୃ + ତ)
ବ୍ୟକ୍ତୀକୃତ = ବ୍ୟକ୍ତି + ଚ୍ୱି (ଈ) + କୃତ (କୃ + ତ)
ଭସ୍ମୀକୃତ = ଭସ୍ମ + ଚ୍ୱି (ଈ) + କୃତ (କୃ + ତ)
ମନ୍ଦୀକୃତ = ମନ୍ଦ + ଚ୍ୱି (ଈ) + କୃତ (କୃ + ତ)

ସଂଯୋଗୀକୃତ = ସଂଯୋଗ + ଚ୍ୱି (ଈ) + କୃତ (କୃ + ତ)
ସ୍ତୂପୀକୃତ = ସ୍ତୂପ + ଚ୍ୱି (ଈ) + କୃତ (କୃ + ତ)
ସନ୍ଦେହୀକୃତ = ସନ୍ଦେହ + ଚ୍ୱି (ଈ) + କୃତ (କୃ + ତ)
ସରଳୀକୃତ = ସରଳ + ଚ୍ୱି (ଈ) + କୃତ (କୃ + ତ)
ସ୍ଥିରୀକୃତ = ସ୍ଥିର + ଚ୍ୱି (ଈ) + କୃତ (କୃ + ତ)
ବ୍ୟଙ୍ଗ୍ୟୀକୃତ = ବ୍ୟଙ୍ଗ + ଚ୍ୱି (ଈ) + କୃତ (କୃ + ତ)
ସମାନୀକୃତ = ସମାନ + ଚ୍ୱି (ଈ) + କୃତ (କୃ + ତ)
ସ୍ଥୂଳୀକୃତ = ସ୍ଥୂଳ + ଚ୍ୱି (ଈ) + କୃତ (କୃ + ତ)
ସ୍ପଷ୍ଟୀକୃତ = ସ୍ପଷ୍ଟ + ଚ୍ୱି (ଈ) + କୃତ (କୃ + ତ)
ସ୍ତରୀକୃତ = ସ୍ତର + ଚ୍ୱି (ଈ) + କୃତ (କୃ + ତ)

(୩)

ଅଙ୍ଗୀଭୂତ - ଅଙ୍ଗ + ଚ୍ୱି (ଈ) - ଭୂତ (ଭୂ + ତ)
ଅନ୍ଧୀଭୂତ - ଅନ୍ଧ + ଚ୍ୱି (ଈ) - ଭୂତ (ଭୂ + ତ)
କୃଷ୍ଣୀଭୂତ - କୃଷ୍ଣ + ଚ୍ୱି (ଈ) - ଭୂତ (ଭୂ + ତ)
ଚୂର୍ଣ୍ଣୀଭୂତ - ଚୂର୍ଣ୍ଣ + ଚ୍ୱି (ଈ) - ଭୂତ (ଭୂ + ତ)
ଠୁଳୀଭୂତ - ଠୁଳ + ଚ୍ୱି (ଈ) - ଭୂତ (ଭୂ + ତ)
ଘନୀଭୂତ - ଘନ + ଚ୍ୱି (ଈ) - ଭୂତ (ଭୂ + ତ)
ସ୍ଥୂଳୀଭୂତ - ସ୍ଥୂଳ + ଚ୍ୱି (ଈ) - ଭୂତ (ଭୂ + ତ)
ଦଗ୍ଧୀଭୂତ - ଦଗ୍ଧ + ଚ୍ୱି (ଈ) - ଭୂତ (ଭୂ + ତ)
ଦୂରୀଭୂତ - ଦୂର + ଚ୍ୱି (ଈ) - ଭୂତ (ଭୂ + ତ)
ଦୃଢ଼ୀଭୂତ - ଦୃଢ଼ + ଚ୍ୱି (ଈ) - ଭୂତ (ଭୂ + ତ)
ଦ୍ରବୀଭୂତ - ଦ୍ରବ + ଚ୍ୱି (ଈ) - ଭୂତ (ଭୂ + ତ)
ବଶୀଭୂତ - ବଶ + ଚ୍ୱି (ଈ) - ଭୂତ (ଭୂ + ତ)
ବାଷ୍ପୀଭୂତ - ବାଷ୍ପ + ଚ୍ୱି (ଈ) - ଭୂତ (ଭୂ + ତ)
ସ୍ପଷ୍ଟୀଭୂତ - ସ୍ପଷ୍ଟ + ଚ୍ୱି (ଈ) - ଭୂତ (ଭୂ + ତ)
ଭସ୍ମୀଭୂତ - ଭସ୍ମ + ଚ୍ୱି (ଈ) - ଭୂତ (ଭୂ + ତ)
ସନ୍ଦେହୀଭୂତ - ସନ୍ଦେହ + ଚ୍ୱି (ଈ) - ଭୂତ (ଭୂ + ତ)

ସ୍ତୂପୀଭୂତ - ସ୍ତୂପ + ଚ୍ୱି (ଈ) - ଭୂତ (ଭୂ + ତ)
ମନ୍ଦୀଭୂତ - ମନ୍ଦ + ଚ୍ୱି (ଈ) - ଭୂତ (ଭୂ + ତ)
ସ୍ତମ୍ଭୀଭୂତ - ସ୍ତମ୍ଭ + ଚ୍ୱି (ଈ) - ଭୂତ (ଭୂ + ତ)
ଜଡ଼ୀଭୂତ - ଜଡ଼ + ଚ୍ୱି (ଈ) - ଭୂତ (ଭୂ + ତ)
ସ୍ତରୀଭୂତ - ସ୍ତର + ଚ୍ୱି (ଈ) - ଭୂତ (ଭୂ + ତ)
ସ୍ଥିରୀଭୂତ - ସ୍ଥିର + ଚ୍ୱି (ଈ) - ଭୂତ (ଭୂ + ତ)
ବ୍ୟକ୍ତୀଭୂତ - ବ୍ୟକ୍ତି + ଚ୍ୱି (ଈ) - ଭୂତ (ଭୂ + ତ)
ବ୍ୟଙ୍ଗ୍ୟୀଭୂତ - ବ୍ୟଙ୍ଗ + ଚ୍ୱି (ଈ) - ଭୂତ (ଭୂ + ତ)
ସମାନୀଭୂତ - ସମାନ + ଚ୍ୱି (ଈ) - ଭୂତ (ଭୂ + ତ)

**(୪)**

**ଉପପଦାନ୍ତ 'ଅ' ଭିନ୍ନ ବ୍ୟଞ୍ଜନବର୍ଣ୍ଣ ସ୍ଥାନରେ 'ଚ୍ୱି' (ଈ)ର ବ୍ୟବହାର ପରିଲକ୍ଷିତ ହୁଏ । ଯଥା-**

ଜଗତୀକରଣ - ଜଗତ୍ + ଚ୍ୱି (ଈ) + କରଣ
ପୃଥକୀକରଣ - ପୃଥକ୍ + ଚ୍ୱି (ଈ) + କରଣ
ବିଦ୍ୟୁତୀକରଣ - ବିଦ୍ୟୁତ୍ + ଚ୍ୱି (ଈ) + କରଣ
ଅସ୍ତୋପଚାରୀକରଣ - ଅସ୍ତୋପଚାର + ଚ୍ୱି (ଈ) + କରଣ
ଚକ୍ରୀକରଣ - ଚକ୍ର + ଚ୍ୱି (ଈ) + କରଣ
ଧ୍ରୁବୀକରଣ - ଧ୍ରୁବ + ଚ୍ୱି (ଈ) + କରଣ
ନିରସ୍ତ୍ରୀକରଣ - ନିରସ୍ତ୍ର + ଚ୍ୱି (ଈ) + କରଣ
ନିର୍ମଳୀକରଣ - ନିର୍ମଳ + ଚ୍ୱି (ଈ) + କରଣ
ବିଶୁଦ୍ଧୀକରଣ - ବିଶୁଦ୍ଧ + ଚ୍ୱି (ଈ) + କରଣ
ଔଷଧୀକରଣ - ଔଷଧ + ଚ୍ୱି (ଈ) + କରଣ
ନିଲମ୍ବିତୀକରଣ - ନିଲମ୍ବିତ + ଚ୍ୱି (ଈ) + କରଣ
ସ୍ୱୀକାର - ସ୍ୱୀ + ଚ୍ୱି (ଈ) + କାର (କୃ + ଅ)
ସ୍ୱୀକୃତି - ସ୍ୱୀ + ଚ୍ୱି (ଈ) + କୃତି (କୃ + ତି)
ସ୍ୱୀକାର୍ଯ୍ୟ - ସ୍ୱୀ + ଚ୍ୱି (ଈ) + କାର୍ଯ୍ୟ (କୃ + ଯ)
ସ୍ୱୀକରଣ - ସ୍ୱୀ + ଚ୍ୱି (ଈ) + କରଣ (କୃ + ଅନ)

ଦ୍ରବୀକୃତ - ଦ୍ରବ + ଚ୍ୱି (ଈ) + କୃତ (କୃ + ତ)

ଦ୍ରବୀଭାବ - ଦ୍ରବ + ଚ୍ୱି (ଈ) + ଭାବ (ଭୂ + ଅ)

ବୈଦ୍ୟୁତିକୀକରଣ - ବୈଦ୍ୟୁତିକ + ଚ୍ୱି (ଈ) + କରଣ

ନୀରୋଗୀକରଣ - ନୀରୋଗ + ଚ୍ୱି (ଈ) + କରଣ

ବିଚ୍ଛେଦୀକରଣ - ବିଚ୍ଛେଦ + ଚ୍ୱି (ଈ) + କରଣ

ବିଜ୍ଞାପିତୀକରଣ - ବିଜ୍ଞାପିତ + ଚ୍ୱି (ଈ) + କରଣ

ବିଫଳୀକୃତ - ବିଫଳ + ଚ୍ୱି (ଈ) + କୃତ (କୃ + ତ)

ବିଭକ୍ତୀକରଣ - ବିଭକ୍ତ + ଚ୍ୱି (ଈ) + କରଣ

ବାଷ୍ପୀକରଣ - ବାଷ୍ପ + ଚ୍ୱି (ଈ) + କରଣ

ଅଙ୍ଗୀକରଣ - ଅଙ୍ଗ + ଚ୍ୱି (ଈ) + କରଣ

ସମାନୀକରଣ - ସମାନ + ଚ୍ୱି (ଈ) + କରଣ

ବିଫଳୀଭାବ - ବିଫଳ + ଚ୍ୱି (ଈ) + ଭାବ (ଭୂ + ଅ)

ସଫଳୀଭାବ - ସଫଳ + ଚ୍ୱି (ଈ) + ଭାବ (ଭୂ + ଅ)

ପବିତ୍ରୀଭାବ - ପବିତ୍ର + ଚ୍ୱି (ଈ) + ଭାବ (ଭୂ + ଅ)

ସଦୁପଯୋଗୀକରଣ - ସଦୁପଯୋଗ + ଚ୍ୱି (ଈ) + କରଣ

ବ୍ୟଙ୍ଗ୍ୟୀକରଣ - ବ୍ୟଙ୍ଗ + ଚ୍ୱି (ଈ) + କରଣ

ପରମୀକରଣ - ପରମ + ଚ୍ୱି (ଈ) + କରଣ

ଘନୀକରଣ - ଘନ + ଚ୍ୱି (ଈ) + କରଣ

ଗାଢ଼ୀକରଣ - ଗାଢ଼ + ଚ୍ୱି (ଈ) + କରଣ

ଅମୃତୀକରଣ - ଅମୃତ + ଚ୍ୱି (ଈ) + କରଣ

ଶିଥିଳୀକରଣ - ଶିଥିଳ + ଚ୍ୱି (ଈ) + କରଣ

ସ୍ଥୂଳୀକରଣ - ସ୍ଥୂଳ + ଚ୍ୱି (ଈ) + କରଣ

ସତର୍କୀକରଣ - ସତର୍କ + ଚ୍ୱି (ଈ) + କରଣ

**ଚ୍ୱି ପ୍ରତ୍ୟୟ ଭିନ୍ନ 'କରଣ' ଶବ୍ଦ ଯୁକ୍ତ ଉଦାହରଣ-**

ଅବହେଳାକରଣ - ଅବହେଳା + କରଣ (କୃ+ଅନ)

ଆବୃତ୍ତିକରଣ - ଆବୃତ୍ତି + କରଣ

ଆତ୍ମଘାତୀକରଣ - ଆତ୍ମଘାତୀ + କରଣ

ଉନ୍ନତିକରଣ - ଉନ୍ନତି + କରଣ
କଲମିକରଣ - କଲମି + କରଣ
କୃଷିକରଣ - କୃଷି + କରଣ
ଘରୋଇକରଣ - ଘରୋଇ + କରଣ
ଛଟେଇକରଣ - ଛଟେଇ + କରଣ
ଜାଗୃତିକରଣ - ଜାଗୃତି + କରଣ
ଜାତୀୟକରଣ - ଜାତୀୟ+କରଣ
ଜାଲିଆତିକରଣ - ଜାଲିଆତି + କରଣ
ଟିକାକରଣ - ଟିକା + କରଣ
ତୁଷ୍ଟିକରଣ - ତୁଷ୍ଟି + କରଣ
ଦୁର୍ନୀତିକରଣ - ଦୁର୍ନୀତି + କରଣ
ଧର୍ମାନ୍ତରକରଣ - ଧର୍ମାନ୍ତର + କରଣ
ନିଯୁକ୍ତିକରଣ - ନିଯୁକ୍ତି + କରଣ
ନିରାକରଣ - ନିରା (ନିର୍ + ଆ) + କରଣ
ପଞ୍ଜିକରଣ - ପଞ୍ଜି + କରଣ
ପଞ୍ଜୀକରଣ - ପଞ୍ଜୀ + କରଣ
ପୃଥକ୍‌କରଣ - ପୃଥକ୍ + କରଣ
ପ୍ରକ୍ରିୟାକରଣ - ପ୍ରକ୍ରିୟା + କରଣ
ପ୍ରଲୁବ୍ଧକରଣ - ପ୍ରଲୁବ୍ଧ + କରଣ
ପ୍ରାଧିକରଣ - ପ୍ରାଧି (ପ୍ର+ଅଧି) + କରଣ
ବିଦ୍ୟୁତ୍‌କରଣ - ବିଦ୍ୟୁତ୍ + କରଣ
ବୀମାକରଣ - ବୀମା + କରଣ
ବୃଦ୍ଧିକରଣ - ବୃଦ୍ଧି + କରଣ
ଭଦ୍ରାକରଣ - ଭଦ୍ରା (ଭଦ୍ର + ଆ) + କରଣ (ମଙ୍ଗଳସୂଚକ ମୁଣ୍ଡନ)
ଭାଣ୍ଡାମିକରଣ - ଭାଣ୍ଡାମି + କରଣ
ରକ୍ଷାକରଣ - ରକ୍ଷା + କରଣ
ରାଜନୀତିକରଣ - ରାଜନୀତି + କରଣ
ଶାନ୍ତିକରଣ - ଶାନ୍ତି + କରଣ
ସମୃଦ୍ଧିକରଣ - ସମୃଦ୍ଧି + କରଣ
ସରକାରୀକରଣ - ସରକାରୀ + କରଣ
ସୃଷ୍ଟିକରଣ - ସୃଷ୍ଟି + କରଣ
ସ୍ଥାୟୀକରଣ - ସ୍ଥାୟୀ + କରଣ
ଶିଳ୍ପକରଣ - ଶିଳ୍ପ + କରଣ
ଯାଞ୍ଚକରଣ - ଯାଞ୍ଚ + କରଣ
ପ୍ରସ୍ତତିକରଣ - ପ୍ରସ୍ତୁତି + କରଣ
ବିଭ୍ରାନ୍ତିକରଣ - ବିଭ୍ରାନ୍ତି+କରଣ
ଅସୂୟାକରଣ - ଅସୂୟା + କରଣ
ଲଘୁକରଣ - ଲଘୁ + କରଣ

## ଓଡ଼ିଆ କୃତ୍-ପ୍ରତ୍ୟୟ

### ଅ-ପ୍ରତ୍ୟୟ

| | | |
|---|---|---|
| ଖେଳ୍ + ଅ = ଖେଳ | ହସ୍ + ଅ = ହସ | ହାଣ୍ + ଅ = ହାଣ |
| ଫେଡ଼୍ + ଅ = ଫେଡ଼ | ଦଉଡ଼୍ + ଅ = ଦଉଡ଼ | କାଟ୍ + ଅ = କାଟ |
| ବୋଲ୍ + ଅ = ବୋଲ | ରଗଡ଼୍ + ଅ = ରଗଡ଼ | ମାର୍ + ଅ = ମାର |
| କୁଦ୍ + ଅ = କୁଦ | ଡର୍ + ଅ = ଡର | କାନ୍ଦ୍ + ଅ = କାନ୍ଦ |

| | | |
|---|---|---|
| ଭିଡ଼୍ + ଅ = ଭିଡ଼ | ଛନ୍ଦ୍ + ଅ = ଛନ୍ଦ | ଡାକ୍ + ଅ = ଡାକ |
| ଲେଖ୍ + ଅ = ଲେଖ | ମୂତ୍ + ଅ = ମୂତ | ନାଚ୍ + ଅ = ନାଚ |

## ଅଣ-ପ୍ରତ୍ୟୟ

| | | |
|---|---|---|
| ଗଢ଼୍ + ଅଣ = ଗଢ଼ଣ | ମାର୍ + ଅଣ = ମାରଣ | ହର୍ + ଅଣ = ହରଣ |
| ଘଟ୍ + ଅଣ = ଘଟଣ | ମାଗ୍ + ଅଣ = ମାଗଣ | ମାଠ୍ + ଅଣ = ମାଠଣ |
| ସୁମର୍ + ଅଣ = ସୁମରଣ | ତାର୍ + ଅଣ = ତାରଣ | ସହ୍ + ଅଣ = ସହଣ |
| ମେଣ୍ଢ୍ + ଅଣ = ମେଣ୍ଢଣ | ବାନ୍ଧ୍ + ଅଣ = ବାନ୍ଧଣ | ଘଟ୍ + ଅଣ = ଘଟଣ |
| ଝୁଲ୍ + ଅଣ = ଝୁଲଣ | ଝାଡ଼୍ + ଅଣ = ଝାଡ଼ଣ | ନେ + ଅଣ = ନିଅଣ, ନେଣ |
| ଫୁଟ୍ + ଅଣ = ଫୁଟଣ | ମେଳ୍+ଅଣ = ମେଳଣ | ଦେ + ଅଣ = ଦିଅଣ, ଦେଣ |

ବେଢ଼ଣ - ବେଢ଼୍ + ଅଣ = ବେଢ଼ଣ (ବେଢ଼୍ = ବେଢ଼ିବା)

## ଅଣା-ପ୍ରତ୍ୟୟ

| | | |
|---|---|---|
| ଝର୍ + ଅଣା = ଝରଣା | ମାର୍ + ଅଣା = ମାରଣା | ବୋଲ୍ + ଅଣା = ବୋଲଣା |
| କହ୍ + ଅଣା = କହଣା | ମାଗ୍ + ଅଣା = ମାଗଣା | ଦେଖ୍ + ଅଣା = ଦେଖଣା |
| ମାଜ୍ + ଅଣା = ମାଜଣା | ଖେଳ୍ + ଅଣା = ଖେଳଣା | ବାଜ୍ + ଅଣା = ବାଜଣା |
| ଘଟ୍ + ଅଣା = ଘଟଣା | ବିଞ୍ଚ୍ + ଅଣା = ବିଞ୍ଚଣା | ସୁମର୍ + ଅଣା = ସୁମରଣା |
| ଭର୍ + ଅଣା = ଭରଣା | ରାନ୍ଧ୍ + ଅଣା = ରାନ୍ଧଣା | କାନ୍ଦ୍ + ଅଣା = କାନ୍ଦଣା |
| ଦେ + ଅଣା = ଦେଣା | ନେ + ଅଣା = ନେଣା | ଚାଖ୍ + ଅଣା = ଚାଖଣା |
| ଗଞ୍ଜ୍ + ଅଣା = ଗଞ୍ଜଣା | ବାଟ୍ + ଅଣା = ବାଟଣା | ଘୋର୍ + ଅଣା = ଘୋରଣା |
| ଭେଟ୍ + ଅଣା = ଭେଟଣା | ପିଟ୍ + ଅଣା = ପିଟଣା | ଛୁଟ୍ + ଅଣା = ଛୁଟଣା |
| ଖୁଣ୍ଟ୍ + ଅଣା = ଖୁଣ୍ଟଣା | ବେଲ୍ + ଅଣା = ବେଲଣା | ଗୋଞ୍ଜ୍ + ଅଣା = ଗୋଞ୍ଜଣା |
| ଫୁଟ୍ + ଅଣା = ଫୁଟଣା | | |

## ଅଣି-ପ୍ରତ୍ୟୟ

| | | |
|---|---|---|
| ସହ୍ + ଅଣି = ସହଣି | ମଣ୍ଡ୍ + ଅଣି = ମଣ୍ଡଣି | ଖୋଷ୍ + ଅଣି = ଖୋଷଣି |
| ରହ୍ + ଅଣି = ରହଣି | ଖଟ୍ + ଅଣି = ଖଟଣି | ଲୋଟ୍ + ଅଣି = ଲୋଟଣି |
| ଛନ୍ଦ୍ + ଅଣି = ଛନ୍ଦଣି | କର୍ + ଅଣି = କରଣି | ଚଳ୍ + ଅଣି = ଚଳଣି |
| ବାନ୍ଧ୍ + ଅଣି = ବାନ୍ଧଣି | ଘୋଡ଼୍ + ଅଣି = ଘୋଡ଼ଣି | ବେଢ଼୍ + ଅଣି = ବେଢ଼ଣି |

## ଅତି-ପ୍ରତ୍ୟୟ

ଗଣ୍ + ଅତି = ଗଣତି   ଖଟ୍ + ଅତି = ଖଟତି   ଭର୍ + ଅତି = ଭରତି

ଭଣ୍ + ଅତି = ଭଣତି   ମଣ୍ + ଅତି = ମଣତି   ଢଳ୍ + ଅତି = ଢଳତି

## ଅନ୍ତା-ପ୍ରତ୍ୟୟ

ଫେର୍ + ଅନ୍ତା = ଫେରନ୍ତା   ଜଳ୍ + ଅନ୍ତା = ଜଳନ୍ତା   ଉଡ୍ + ଅନ୍ତା = ଉଡ଼ନ୍ତା

ବହ୍ + ଅନ୍ତା = ବହନ୍ତା   ଫଳ୍ + ଅନ୍ତା = ଫଳନ୍ତା   ଘୂର + ଅନ୍ତା = ଘୂରନ୍ତା

ବଢ଼୍ + ଅନ୍ତା = ବଢ଼ନ୍ତା   ଚଳ୍ + ଅନ୍ତା = ଚଳନ୍ତା   ଜୀ + ଅନ୍ତା = ଜୀଅନ୍ତା

ସର୍ + ଅନ୍ତା = ସରନ୍ତା   ବୁଡ୍ + ଅନ୍ତା = ବୁଡ଼ନ୍ତା   ହସ୍ + ଅନ୍ତା = ହସନ୍ତା

ଫୁଟ୍ + ଅନ୍ତା = ଫୁଟନ୍ତା   ଖେଳ୍ + ଅନ୍ତା = ଖେଳନ୍ତା   ମର୍ + ଅନ୍ତା = ମରନ୍ତା

## ଅନ୍ତି-ପ୍ରତ୍ୟୟ

ଚଳ୍ + ଅନ୍ତି = ଚଳନ୍ତି   ଫେର୍ + ଅନ୍ତି = ଫେରନ୍ତି   କହ୍ + ଅନ୍ତି = କହନ୍ତି

ଫଳ୍ + ଅନ୍ତି = ଫଳନ୍ତି   ସର୍ + ଅନ୍ତି = ସରନ୍ତି   ବହ୍ + ଅନ୍ତି = ବହନ୍ତି

ପ୍ରୟୋଗ –

୧ । ଆଜି କାର୍ତ୍ତିକର ସରନ୍ତି ସୋମବାର

୨ । କହନ୍ତି ଯେଡ଼େ ନୁହନ୍ତି ତେଡ଼େ ।

୩ । ଫଳନ୍ତି ଗଛ ଫୋପଡ଼ ସହେ ।

## ଆ-ପ୍ରତ୍ୟୟ

କୋଡ୍ + ଆ = କୋଡ଼ା   ଖେଳ୍ + ଆ = ଖେଳା   ଗଢ୍ + ଆ = ଗଢ଼ା

ଫୋଡ୍ + ଆ = ଫୋଡ଼ା   ମେଳ୍ + ଆ = ମେଳା   ଧର୍ + ଆ = ଧରା

ଘୋଡ୍ + ଆ = ଘୋଡ଼ା   ଛାଣ୍ + ଆ = ଛଣା   ମାର୍ + ଆ = ମରା

ଦୋଳ୍ + ଆ = ଦୋଳା   ଗଣ୍ + ଆ = ଗଣା   ଚିହ୍ନ୍ + ଆ = ଚିହ୍ନା

ବୁଣ୍ + ଆ = ବୁଣା   ରାନ୍ଧ୍ + ଆ = ରନ୍ଧା   ପଢ୍ + ଆ = ପଢ଼ା

ଖା + ଆ = ଖିଆ   ନେ + ଆ = ନିଆ   ଦେ + ଆ = ଦିଆ

ବାଟ୍ + ଆ = ବଟା   ରୁଷ୍ + ଆ = ରୁଷା   ସଢ୍ + ଆ = ସଢ଼ା

ଶୁଣ୍ + ଆ = ଶୁଣା   ଲେଖ୍ + ଆ = ଲେଖା   ବାନ୍ଧ୍ + ଆ = ବନ୍ଧା

ଛାପ୍ + ଆ = ଛପା   ଚାଖ୍ + ଆ = ଚଖା   ଆଣ୍ + ଆ = ଅଣା

| | | |
|---|---|---|
| ପୋଛ୍ + ଆ = ପୋଛା | ଲିପ୍ + ଆ = ଲିପା | ଖୋଜ୍ + ଆ = ଖୋଜା |
| ଶୋ + ଆ = ଶୁଆ | ଜଗ୍ + ଆ = ଜଗା | ଜାଣ୍ + ଆ = ଜଣା |
| ଧୋ + ଆ = ଧୁଆ | ହଗ୍ + ଆ = ହଗା | କାଟ୍ + ଆ = କଟା |
| ତୋଳ୍ + ଆ = ତୋଳା | ସହ୍ + ଆ = ସୁହା | ବାଟ୍ + ଆ = ବଟା |
| ଖୋଳ୍ + ଆ = ଖୋଳା | ବିକ୍ + ଆ = ବିକା | ଟାଣ୍ + ଆ = ଟଣା |
| ଟେକ୍ + ଆ = ଟେକା | ପି + ଆ = ପିଆ | ଦେଖ୍ + ଆ = ଦେଖା |
| ସେକ୍ + ଆ = ସେକା | ବାଜ୍ + ଆ = ବାଜା | ରାନ୍ଧ୍ + ଆ = ରନ୍ଧା |
| ବାଢ଼୍ + ଆ = ବଢ଼ା | ଆଙ୍କ୍ + ଆ = ଅଙ୍କା | ରଖ୍ + ଆ = ରଖା |
| ଦଉଡ଼୍ + ଆ = ଦଉଡ଼ା | ମିଶ୍ + ଆ = ମିଶା | ଫେଡ଼୍ + ଆ = ଫେଡ଼ା |
| ଯାଚ୍ + ଆ = ଯଚା | ପାଚ୍ + ଆ = ପଚା | ଝୁଲ୍ + ଆ = ଝୁଲା |
| ଜିଣ୍ + ଆ = ଜିଣା | ହାଣ୍ + ଆ = ହଣା | ଫିଙ୍ଗ୍ + ଆ = ଫିଙ୍ଗା |
| ଭେଟ୍ +ଆ = ଭେଟା | ହସ୍ + ଆ = ହସା | ବୁଡ୍ + ଆ = ବୁଡ଼ା |
| ଲଢ୍ + ଆ = ଲଢା | ଚଢ୍ + ଆ = ଚଢା | ବୋଳ୍ + ଆ=ବୋଳା |
| ଗୋଳ୍ + ଆ = ଗୋଳା | କାମୁଡ୍ + ଆ = କାମୁଡ଼ା | ଛିଞ୍ଚ୍ + ଆ = ଛିଞ୍ଚା |
| କାଚ୍ + ଆ = କଚା | ଥୋ + ଆ = ଥୁଆ | ରୋ + ଆ = ରୁଆ |
| କିଣ୍ + ଆ = କିଣା | ବାଛ୍ + ଆ = ବଛା | କୁଦ୍ + ଆ = କୁଦା |
| ଶୁଖ୍ + ଆ = ଶୁଖା | ସୁଝ୍ + ଆ = ସୁଝା | ବସ୍ + ଆ = ବସା |

## ଆଇ-ପ୍ରତ୍ୟୟ

| | |
|---|---|
| ବାନ୍ଧ୍ + ଆଇ = ବନ୍ଧାଇ | ଗଢ଼୍ + ଆଇ = ଗଢ଼ାଇ |
| ଲେଖ୍ + ଆଇ = ଲେଖାଇ | ମାଜ୍ + ଆଇ = ମଜାଇ |

## ଆଣ-ପ୍ରତ୍ୟୟ

| | | |
|---|---|---|
| ମିଶ୍ର + ଆଣ = ମିଶାଣ | ବନ୍ଦ୍ + ଆଣ = ବନ୍ଦାଣ | କାଢ଼୍ + ଆଣ = କଢ଼ାଣ |
| ଫେଡ଼୍ + ଆଣ = ଫେଡ଼ାଣ | ଡର୍ + ଆଣ = ଡରାଣ | ଭେ + ଆଣ = ଭିଆଣ |
| ଗୁଣ୍ + ଆଣ = ଗୁଣାଣ | ଉଠ୍ + ଆଣ = ଉଠାଣ | ଲାଗ୍ + ଆଣ = ଲଗାଣ |
| ଭାସ୍ + ଆଣ = ଭସାଣ | ବସ୍ + ଆଣ = ବସାଣ | ବେଢ଼୍ + ଆଣ=ବେଢ଼ାଣ |
| ଲଢ଼୍ + ଆଣ = ଲଢ଼ାଣ | ମାଡ଼୍ + ଆଣ = ମଡ଼ାଣ | ବିନ୍ଧ୍ + ଆଣ = ବିନ୍ଧାଣ |

## ଆଣି-ପ୍ରତ୍ୟୟ

| | | |
|---|---|---|
| ଭାସ୍ + ଆଣି = ଭସାଣି | ଉଠ୍ + ଆଣି = ଉଠାଣି | ବିନ୍ଧ୍ + ଆଣି = ବିନ୍ଧାଣି |
| ଚାହଁ + ଆଣି = ଚାହାଁଣି | ଗଡ଼୍ + ଆଣି = ଗଡ଼ାଣି | ଶୁଣ୍ + ଆଣି = ଶୁଣାଣି |
| ଫୁଟ୍ + ଆଣି = ଫୁଟାଣି | ଦା + ଆଣି = ଦାଆଣି | ନଅଁ + ଆଣି = ନୁଆଁଣି |
| ମାଡ଼୍+ଆଣି = ମଡ଼ାଣି | ବାହୁଡ଼୍+ଆଣି = ବାହୁଡ଼ାଣି | ଛୋ+ଆଣି=ଛୁଆଣି, ଛାଆଣି |

## ଆଣିଆ-ପ୍ରତ୍ୟୟ

| | |
|---|---|
| ଦେଖ୍ + ଆଣିଆ = ଦେଖାଣିଆ | ଭୁଲ୍ + ଆଣିଆ = ଭୁଲାଣିଆ |
| ମିଶ୍ + ଆଣିଆ = ମିଶାଣିଆ | ଉଠ୍ + ଆଣିଆ = ଉଠାଣିଆ |
| ଗଡ଼୍ + ଆଣିଆ = ଗଡ଼ାଣିଆ | ଭାସ୍ + ଆଣିଆ = ଭସାଣିଆ |
| ଲାଗ୍ + ଆଣିଆ = ଲଗାଣିଆ | ବିନ୍ଧ୍ + ଆଣିଆ = ବିନ୍ଧାଣିଆ |
| ମାତ୍ + ଆଣିଆ = ମତାଣିଆ | ମିଶ୍ + ଆଣିଆ = ମିଶାଣିଆ |

## ଆଳ-ପ୍ରତ୍ୟ

| | |
|---|---|
| କାଟ୍ + ଆଳ = କଟାଳ | ଦୁହଁ + ଆଳ = ଦୁହାଁଳ |

## ଆଳି-ପ୍ରତ୍ୟୟ

| | | |
|---|---|---|
| ଛୋ + ଆଳି = ଛୁଆଳି | ଚଢ଼୍ + ଆଳି = ଚଢ଼ାଳି | ଜଗ୍ + ଆଳି = ଜଗାଳି |
| ଧୋ + ଆଳି = ଧୁଆଳି | ଧର୍ + ଆଳି = ଧରାଳି | ରଖ୍ + ଆଳି = ରଖାଳି |
| ବୋବ୍ + ଆଳି = ବୋବାଳି | ପଢ଼୍ + ଆଳି = ପଢ଼ାଳି | ବିକ୍ + ଆଳି = ବିକାଳି |
| ବାନ୍ଧ + ଆଳି = ବନ୍ଧାଳି | ଛାପ୍ + ଆଳି = ଛପାଳି | ଦେଖ୍ + ଆଳି = ଦେଖାଳି |
| କାଟ୍ + ଆଳି = କଟାଳି | କାଢ଼୍ + ଆଳି = କଢ଼ାଳି | ଖେଳ୍ + ଆଳି = ଖେଳାଳି |
| ବୁଣ୍ + ଆଳି = ବୁଣାଳି | ଧର୍ + ଆଳି = ଧରାଳି | ମାର୍ + ଆଳି = ମରାଳି |
| ବୁଡ଼୍ + ଆଳି = ବୁଡ଼ାଳି | ଚିହ୍ନ + ଆଳି = ଚିହ୍ନାଳି | ରାନ୍ଧ୍ + ଆଳି = ରନ୍ଧାଳି |
| କିଣ୍ + ଆଳି = କିଣାଳି | ବାଛ୍ + ଆଳି = ବଛାଳି | ହାଣ୍ + ଆଳି = ହଣାଳି |
| ଶୁଣ୍ + ଆଳି = ଶୁଣାଳି | ଲେଖ୍ + ଆଳି = ଲେଖାଳି | |

## ଆଳିଆ-ପ୍ରତ୍ୟୟ

| | |
|---|---|
| ଦୁହଁ + ଆଳିଆ = ଦୁହାଁଳିଆ | କହ୍ + ଆଳିଆ = କୁହାଳିଆ |
| ବହ୍ + ଆଳିଆ = ବୁହାଳିଆ | ହସ୍ + ଆଳିଆ = ହସାଳିଆ |

## ଇ-ପ୍ରତ୍ୟୟ

ଧୋ + ଇ = ଧୋଇ
ପୋଡ୍ + ଇ = ପୋଡ଼ି
ଝର୍ + ଇ = ଝରି
ରଡ୍ + ଇ = ରଡ଼ି
କର୍ + ଇ = କରି
ବୋଲ୍ + ଇ = ବୋଲି
ମେଳ୍ + ଇ = ମେଳି
ଲୁଟ୍ + ଇ = ଲୁଟି
ବଢ୍ + ଇ = ବଢ଼ି
ଶୋ + ଇ = ଶୋଇ
ଦୋଳ୍ + ଇ = ଦୋଳି
ଚାଲ୍ + ଇ = ଚାଲି
ଛୁଟ୍ + ଇ = ଛୁଟି
ଯୋଡ୍ + ଇ = ଯୋଡ଼ି
କହ୍ + ଇ = କହି

ପ୍ରୟୋଗ- ସେ କହି (କହିବା) ଜାଣେ, କରି ଜାଣେ ନାହିଁ ।

## ଇଆ-ପ୍ରତ୍ୟୟ

ଜଗ୍ + ଇଆ = ଜଗିଆ

## ଇଆଳ-ପ୍ରତ୍ୟୟ

ବଢ୍ + ଇଆଳ = ବଢ଼ିଆଳ
ଜଗ୍ + ଇଆଳ = ଜଗିଆଳ
ସିନ୍ଧ୍ + ଇଆଳ = ସିନ୍ଧିଆଳ (ଯିଏ ସିନ୍ଧି କରେ)

## ଇଥିବା-ପ୍ରତ୍ୟୟ

ବସ୍ + ଇଥିବା = ବସିଥିବା
ଦେଖ୍ + ଇଥିବା = ଦେଖିଥିବା
ରହ୍ + ଇଥିବା = ରହିଥିବା
କର୍ + ଇଥିବା = କରିଥିବା
ଯା + ଇଥିବା = ଯାଇଥିବା
ଧର୍ + ଇଥିବା = ଧରିଥିବା
ଶୁଣ୍ + ଇଥିବା = ଶୁଣିଥିବା
ଲେଖ୍ + ଇଥିବା = ଲେଖିଥିବା
କହ୍ + ଇଥିବା = କହିଥିବା

## ଇଥିଲା-ପ୍ରତ୍ୟୟ

ଗା + ଇଥିଲା = ଗାଇଥିଲା
ଶୁଣ୍ + ଇଥିଲା = ଶୁଣିଥିଲା
ଦେଖ୍ + ଇଥିଲା = ଦେଖିଥିଲା
ବସ୍ + ଇଥିଲା = ବସିଥିଲା
ଧର୍ + ଇଥିଲା = ଧରିଥିଲା
ଯା + ଇଥିଲା = ଯାଇଥିଲା
ଲେଖ୍ + ଇଥିଲା = ଲେଖିଥିଲା
ପଢ୍ + ଇଥିଲା = ପଢ଼ିଥିଲା
ଶୋ + ଇଥିଲା = ଶୋଇଥିଲା

## ଉଥିବା/ଉଥିଲା-ପ୍ରତ୍ୟୟ

ଯା + ଉଥିବା = ଯାଉଥିବା
ହସ୍ + ଉଥିବା = ହସୁଥିବା
ଯା + ଉଥିଲା = ଯାଉଥିଲା
ହସ୍ + ଉଥିଲା = ହସୁଥିଲା

ପଢ୍ + ଉଥିବା = ପଢୁଥିବା
ଗଡ୍ + ଉଥିବା = ଗଡୁଥିବା
ଲଢ୍ + ଉଥିବା = ଲଢୁଥିବା
ମାଗ୍ + ଉଥିବା = ମାଗୁଥିବା
ଗଡ୍ + ଉଥିଲା= ଗଡୁଥିଲା
କହ୍ + ଉଥିଲା = କହୁଥିଲା
କହ୍ + ଉଥିବା = କହୁଥିବା
ଧାଁ + ଉଥିବା = ଧାଉଁଥିବା
କାନ୍ଦ୍ + ଉଥିବା = କାନ୍ଦୁଥିବା
ପଢ୍ + ଉଥିଲା = ପଢୁଥିଲା
ଲଢ୍ + ଉଥିଲା = ଲଢୁଥିଲା
କାନ୍ଦ୍ + ଉଥିଲା = କାନ୍ଦୁଥିଲା

### ଇବା/ବା-ପ୍ରତ୍ୟୟ

ହସ୍ + ଇବା = ହସିବା
ଗା + ଇବା = ଗାଇବା
ଦେ + ବା = ଦେବା
ଶୋ + ଇବା = ଶୋଇବା
କହ୍ + ଇବା = କହିବା
ନେ + ବା = ନେବା
ପା + ଇବା = ପାଇବା
ଲେଖ୍ + ଇବା = ଲେଖିବା
ହୋ + ବା = ହେବା

ପ୍ରୟୋଗ-

୧ । ହସିବା ଲୋକ ମଧ୍ୟ ବେଳ ପଡ଼ିଲେ କାନ୍ଦେ ।
୨ । ଛତାଟି ଶୋଇବା ଘରେ ଅଛି ।
୩ । ମୋତେ ଗ୍ଲାସେ ପିଇବା ପାଣି ଦିଅ ।
୪ । କହିବା ଲୋକ ତ ମହତ ନୁହଁଇ ସହିବା ମହତ ଜନ ।

### ଇବାର-ପ୍ରତ୍ୟୟ

ଖା + ଇବାର = ଖାଇବାର
ପଢ୍ + ଇବାର = ପଢ଼ିବାର
କହ୍ + ଇବାର = କହିବାର
ଶୋ + ଇବାର = ଶୋଇବାର

ପ୍ରୟୋଗ-

୧ । ଖାଇବାର ପୁତ୍ରଗଲା ମଥୁରାପୁରକୁ ଲୋ କୋଇଲି ।
୨ । ଏବେ ଶୋଇବାର ବେଳ ନୁହେଁ ।
୩ । ତୁମର ଯାହା କହିବାର ଅଛି କହ ।

### ଇଲା/ଲା-ପ୍ରତ୍ୟୟ

ଶୋ + ଇଲା = ଶୋଇଲା
ବସ୍ + ଇଲା = ବସିଲା
ଗର୍ଜ୍ + ଇଲା = ଗର୍ଜିଲା
ବଢ୍ + ଇଲା = ବଢ଼ିଲା
ଗଢ୍ + ଇଲା = ଗଢ଼ିଲା
ଖା + ଇଲା = ଖାଇଲା
ପିନ୍ଧ୍ + ଇଲା = ପିନ୍ଧିଲା
ଚଢ୍ + ଇଲା = ଚଢ଼ିଲା
ଭୁକ୍ + ଇଲା = ଭୁକିଲା
ପିନ୍ଧ୍ + ଇଲା = ପିନ୍ଧିଲା
ଦେ + ଲା = ଦେଲା
ନେ + ଲା = ନେଲା
ଗମ୍ + ଲା = ଗଲା
ମର୍ + ଲା = ମଲା
ଶୁଖ୍ + ଇଲା= ଶୁଖିଲା

ପ୍ରୟୋଗ-

୧ । ଖାଇଲା ଲୋକକୁ ପେଟପୂରା ଖାଇବାକୁ ଦିଅ ।

୨ । ଭୁକିଲା କୁକୁର କାମୁଡ଼େ ନାହିଁ ।

୩ । ଶୋଇଲା ଲୋକର ଭାଗ ନ ଥାଏ ।

୪ । ହଜିଲା ବଳଦ ଖୋଜିଲା ଠେଇଁ ମିଳିଲା ।

୫ । ଗର୍ଜିଲା (ଗରଜିଲା) ମେଘ ବର୍ଷେ ନାହିଁ ।

### ଉ-ପ୍ରତ୍ୟୟ

ଗଡ଼୍ + ଉ = ଗଡ଼ୁ  ଚାଲ୍ + ଉ = ଚାଲୁ  କାଢ଼୍ + ଉ = କାଢ଼ୁ

ଝାଡ଼୍ + ଉ = ଝାଡ଼ୁ  ମାର୍ + ଉ = ମାରୁ  ଚଲ୍ + ଉ = ଚଲୁ

ଖା + ଉ = ଖାଉ  କାଟ୍ + ଉ = କାଟୁ  ଚଷ୍ + ଉ = ଚଷୁ

ଲାଗ୍ + ଉ = ଲାଗୁ  ପା + ଉ = ପାଉ (ଠକ)

### ଉଆ-ପ୍ରତ୍ୟୟ

ଲଢ଼୍ + ଉଆ = ଲଢ଼ୁଆ  ପଢ଼୍ + ଉଆ = ପଢ଼ୁଆ  କାଢ଼୍ + ଉଆ = କାଢ଼ୁଆ

ଡାକ୍ + ଉଆ = ଡାକୁଆ  ଡର୍ + ଉଆ = ଡରୁଆ  ଛେର + ଉଆ = ଛେରୁଆ

ହାଣ୍ + ଉଆ = ହାଣୁଆ  ଧାର୍ + ଉଆ = ଧାରୁଆ  ଧୋ + ଉଆ = ଧୁଆ

ଥୋ + ଉଆ = ଥୁଆ  ଶୋ + ଉଆ = ଶୁଆ  କହ + ଉଆ = କୁହା

### ଉଆଳ/ଉଆଡ଼୍-ପ୍ରତ୍ୟୟ

ଜଗ୍ + ଉଆଳ = ଜଗୁଆଳ  ରଖ୍ + ଉଆଳ = ରଖୁଆଳ

ଖେଳ୍ + ଉଆଳ = ଖେଳୁଆଳ  ଖେଳ୍ + ଉଆଡ଼୍ = ଖେଳୁଆଡ଼୍

ବଢ଼୍ + ଉଆଳ = ବଢ଼ୁଆଳ  ମାତ୍ + ଉଆଳ = ମତୁଆଳ

### ଉଆଳି-ପ୍ରତ୍ୟୟ

ଜଗ୍ + ଉଆଳି = ଜଗୁଆଳି  ରଖ୍ + ଉଆଳି = ରଖୁଆଳି

### ଉଣା-ପ୍ରତ୍ୟୟ

ଗା + ଉଣା = ଗାଉଣା  ପା + ଉଣା = ପାଉଣା

### ଉଣି/ଉଣିଆ-ପ୍ରତ୍ୟୟ

ରାନ୍ଧ + ଉଣି = ରାନ୍ଧୁଣି  ମାଗ୍ + ଉଣି = ମାଗୁଣି

ମାପ୍ + ଉଣି = ମାପୁଣି  ଚାଖ୍ + ଉଣି = ଚାଖୁଣି

ଢାଙ୍କ୍ + ଉଣି = ଢାଙ୍କୁଣି
ଚାଲ୍ + ଉଣି = ଚାଲୁଣି
ପରଷ୍ + ଉଣି = ପରଷୁଣି
ରାନ୍ଧ୍ + ଉଣିଆ = ରାନ୍ଧୁଣିଆ
ଚାଖ୍ + ଉଣିଆ = ଚାଖୁଣିଆ
ମାଗ୍ + ଉଣିଆ = ମାଗୁଣିଆ

## ଏଇ-ପ୍ରତ୍ୟୟ / ଆଇ-ପ୍ରତ୍ୟୟ

ଲଢ଼୍ + ଏଇ = ଲଢେ଼ଇ
ଗଢ଼୍ + ଏଇ =ଗଢେ଼ଇ
ବାନ୍ଧ୍ + ଏଇ = ବନ୍ଧେଇ
ଯୋଡ଼୍ + ଏଇ = ଯୋଡେ଼ଇ
ଖୋଦ୍ + ଏଇ = ଖୋଦେଇ
ମାଜ୍ + ଏଇ = ମଜେଇ
ଖୋଦ୍ + ଆଇ = ଖୋଦାଇ
ଲଢ଼୍ + ଆଇ = ଲଢ଼ାଇ
ବାନ୍ଧ୍ + ଆଇ = ବନ୍ଧାଇ
ଗଢ଼୍ + ଆଇ = ଗଢ଼ାଇ
ଯୋଡ଼୍ + ଆଇ = ଯୋଡ଼ାଇ

## ଏଣି-ପ୍ରତ୍ୟୟ

ବାଜ୍ + ଏଣି = ବାଜେଣି
ଭାଲ୍ + ଏଣି = ଭାଲେଣି
ବାନ୍ଧ୍ + ଏଣି = ବାନ୍ଧେଣି
ଖାଟ୍ + ଏଣି = ଖାଟେଣି
ଛାଟ୍ + ଏଣି = ଛାଟେଣି
ଜାଲ୍ + ଏଣି = ଜାଲେଣି

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକର ପ୍ରକୃତି ପ୍ରତ୍ୟୟ ଲେଖ ।

ହୀନ, ଘାତ, ଦ୍ରଷ୍ଟବ୍ୟ, ପ୍ରସନ୍ନ, ପଠନୀୟ, ମୁଗ୍ଧ, ଦୃଷ୍ଟ, ସୃଷ୍ଟି, ପଢ଼ିବା, ଦେଣା, ସହିଷ୍ଣୁ, ରୋଗ, ମୁକ୍ତି, ଲିପ୍‌ସା, ଲିପା, ମାରଣା, ଚରିତ୍ର, ପିଟଣା, ଆସୀନ, କଟାଳି, ମତୁଆଳ, ଭୀତ, ନଶ୍ୱର, ନାୟକ, ଛୁଆଳି, ବନ୍ଧା, ବଶୀଭୂତ, ଅଙ୍ଗୀକାର, ପ୍ରଶ୍ନ, ହିଂସ୍ର, ଭୃତ୍ୟ, ମ୍ରିୟମାଣ, ଦେୟ, ନେତା, ବସ୍ତ୍ର, ବିଧାନ, ଧର୍ମଜ୍ଞ, ଜୀଅନ୍ତା, ବନ୍ଧାଇ, କଢ଼ାଣ, ଛନ୍ଦଣି, ଗତି, ଜଳଧି, ସ୍ତାବକ, ଶୋକ, ଅଣ୍ଡଜ, ବାଜଣା, ବଢ଼ି, ଭଣତି, ଜଳଦ

୨ । ଏକ ଶବ୍ଦରେ ପ୍ରକାଶ କର-

ଯାହାଦ୍ୱାରା ଖେଳନ୍ତି, ଯାହାପାଇଁ ଲୋଭ କରାଯାଏ, ଯେ ସହେ, ଯେ ଜଳୁଛି, ଯେ ଗାଏ, ଯେ ବାଟେ, ସମୁଦ୍ରରେ ଜାତ, ପର୍ବତର କନ୍ୟା, ଯାହା ଦେଖିବାର ଯୋଗ୍ୟ, ଯେ ଶତ୍ରୁକୁ ହତ୍ୟାକରେ, ଯେ ପରକୁ ତାପ ଦିଏ, ପଛରେ ଜନ୍ମ ହୋଇଛି

ଯେ, ଯାହା ଚାଲିଛି, ଧର୍ମକୁ ଜାଣେ ଯେ, ବାରମ୍ବାର ଦୀପ୍ତ, ଜୀଇ ରହିବାର ଇଚ୍ଛା, ଶୁଣିବାକୁ ଯେ ଇଚ୍ଛା କରେ, ସୁଖରେ ଲାଭ କରାଯାଏ ଯାହା, ଯେ ନିନ୍ଦା କରେ, ଯାହା ପଢ଼ିବାର ଯୋଗ୍ୟ, ନିଜକୁ ସଭ୍ୟ ମନେକରେ ଯେ, ଯହିଁରେ ପିଟନ୍ତି, ଯାହାକୁ ବଜାଇବାକୁ ହୁଏ, ବେଦକୁ ଜାଣେ ଯେ, ଯେ ମାରେ, ପୂର୍ବେ ଭସ୍ମ ହୋଇ ନ ଥିଲା ଏବେ ହେଲା, ପୂର୍ବେ ବିକୃତ ହୋଇ ନ ଥିବା ପରେ ହେବା, ଯହିଁରେ ଖୋଳାଯାଏ, ରାନ୍ଧେ ଯେ, କୋପ କରିଛି ଯେ

୩ । ନିମ୍ନଲିଖିତ ପ୍ରତ୍ୟୟଦ୍ୱାରା ନିଷ୍ପନ୍ନ ହେଉଥିବା ପଦର ଦୁଇଟି ଲେଖାଏଁ ଉଦାହରଣ ଦିଅ–

ଅନ୍ତା, ଉଣି, ଅଣା, ତ, ତି, ଅନୀୟ, ତବ୍ୟ, ଇଷ୍ଣୁ, ଅନ, ଆଳି

୪ । ତଳଲିଖିତ ଧାତୁଗୁଡ଼ିକରେ ବିଭିନ୍ନ ପ୍ରତ୍ୟୟ ଯୋଗ କରି କୃଦନ୍ତ ଶବ୍ଦ ଗଠନ କର ।

ଗମ୍, ଶୋ, ଖା, ମାଗ୍, ନେ, ଉଡ଼୍, କୃ, ପଠ୍, ଦୃଶ୍, ନୀ, ବିଞ୍ଚ୍, ଶୁଣ୍, ଧର୍

୫ । କୃତନ୍ତ କାହାକୁ କହନ୍ତି ଉଦାହରଣ ସହ ବୁଝାଅ ।

୬ । ପ୍ରତ୍ୟେକ ପ୍ରଶ୍ନର ବନ୍ଧନୀରେ ପ୍ରଦତ୍ତ ଚାରିଟି ସମ୍ଭାବ୍ୟ ଉତ୍ତର ମଧ୍ୟରୁ ଠିକ୍ ଉତ୍ତରଟିକୁ ବାଛି ଲେଖ ।

(କ) ଭୂଷଣ — ଏଠାରେ ଥିବା ପ୍ରତ୍ୟୟଟି ଲେଖ ।

(ଅଣ / ଣ / ଆଣ / ଅନ)

(ଖ) ହିଂସ୍ର — ଏଠାରେ ଥିବା ପ୍ରତ୍ୟୟଟି ଲେଖ ।

(ଅର୍ / ଅର / ର / ଆର୍)

(ଗ) — + ଆ = ରନ୍ଧା

(ରନ୍ଧ / ରାନ୍ଧ୍ / ରନ୍ଧ / ରିନ୍ଧ୍)

(ଘ) 'ସିକ୍ତ' ଶବ୍ଦଟିରେ ଥିବା ଧାତୁଟି ଲେଖ ।

(ସଚ୍ / ସେଚ୍ / ସିଚ୍ / ସିତ୍)

(ଙ) କେଉଁଟି 'ଉର' ପ୍ରତ୍ୟୟାନ୍ତ ଶବ୍ଦ ନୁହେଁ ?

(ମେଦୁର / ଭଙ୍ଗୁର / ବଧିର / ବନ୍ଧୁର)



# ତଦ୍ଧିତ

ତଦ୍ଧିତ ହେଉଛି କୃଦନ୍ତ ପରି ଶବ୍ଦଗଠନର ଆଉ ଏକ ପଦ୍ଧତି । କୃଦନ୍ତରେ ଧାତୁରୁ ଶବ୍ଦ ଗଠିତ ହେଉଥିଲାବେଳେ, ତଦ୍ଧିତରେ ଶବ୍ଦରୁ ଶବ୍ଦ ଗଠିତ ହୁଏ । ଶବ୍ଦରେ ପ୍ରତ୍ୟୟ ଲାଗି ଯେଉଁ ଶବ୍ଦ ଗଠିତ ହୁଏ, ତାହାକୁ ତଦ୍ଧିତ ବା ତଦ୍ଧିତ ଶବ୍ଦ କୁହାଯାଏ, ଯଥା- 'ଗ୍ରାମ' ଏକ ଶବ୍ଦ । ଏଥିରୁ 'ଯ' ପ୍ରତ୍ୟୟ ଯୋଗରେ 'ଗ୍ରାମ୍ୟ' ଶବ୍ଦ ଗଠିତ । 'ଗ୍ରାମ୍ୟ' ଏକ ତଦ୍ଧିତ ଶବ୍ଦ । ସେହିପରି 'ଦଶରଥ' ଶବ୍ଦରେ 'ଇ' ପ୍ରତ୍ୟୟ ଲାଗି 'ଦାଶରଥି', 'ଠକ' ଶବ୍ଦରେ 'ଆମି' ପ୍ରତ୍ୟୟ ଲାଗି 'ଠକାମି' ତଦ୍ଧିତ ଶବ୍ଦ ଗଠିତ । 'ଯ', 'ଇକ' ଓ 'ଆମି' ଏକ ଏକ ତଦ୍ଧିତ ପ୍ରତ୍ୟୟ । ତଦ୍ଧିତର ଅର୍ଥ ହେଉଛି 'ତାହାର' ହିତକାରୀ (ତତ୍+ହିତ) । 'ତାହାର' କହିଲେ ମୂଳ ଶବ୍ଦର ତଦ୍ଧିତ ପ୍ରତ୍ୟୟଦ୍ୱାରା ମୂଳ ବା ପ୍ରଥମ ଶବ୍ଦର ଉନ୍ନତି ଘଟେ । ସେଥିରୁ ନୂତନ ଶବ୍ଦ ସୃଷ୍ଟି ହୁଏ । ତେଣୁ ମୂଳଶବ୍ଦର ପରବର୍ତ୍ତୀ ଦ୍ୱିତୀୟ ଶବ୍ଦକୁ ତଦ୍ଧିତ କହନ୍ତି । ଧାତୁରେ ବ୍ୟବହୃତ ପ୍ରତ୍ୟୟକୁ କୃତ୍ କୁହାଯାଉଥିଲାବେଳେ, ଶବ୍ଦରେ ଲାଗୁଥିବା ପ୍ରତ୍ୟୟର ସେମିତି ସ୍ୱତନ୍ତ୍ର ନାମ ନାହିଁ । ତେବେ ପ୍ରଥମ ବା ମୂଳ ଶବ୍ଦର ହିତସାଧକ ହେଉଥିବାରୁ ପ୍ରତ୍ୟୟକୁ ତଦ୍ଧିତ ପ୍ରତ୍ୟୟ କୁହାଯାଏ ।

ତଦ୍ଧିତରେ ପ୍ରତ୍ୟୟ ଯୋଗଦ୍ୱାରା ବିଶେଷ୍ୟରୁ ବିଶେଷ୍ୟ କିମ୍ବା ବିଶେଷଣରୁ ବିଶେଷଣ ପଦ ଗଠନ କରିବା ବ୍ୟାକରଣଗତ ତ୍ରୁଟି ଅଟେ । ଯଥା- ତାଙ୍କର ସାଧୁତାତ୍ୱରେ ସମସ୍ତେ ମୁଗ୍ଧ ।

**ସାଧୁତାତ୍ୱ-** ଏହି ପଦଟିକୁ ବିଶ୍ଳେଷଣ କଲେ ଦେଖିବା ଯେ, ମୂଳ ମଧ୍ୟ 'ସାଧୁ' ଏକ ବିଶେଷଣ ପଦ । ସେଥିରୁ 'ତା' ଲାଗି 'ସାଧୁତା' ବିଶେଷ୍ୟ ପଦ ନିଷ୍ପନ୍ନ । ଏହା ଶୁଦ୍ଧ; ମାତ୍ର 'ସାଧୁତା' ବିଶେଷ୍ୟ ପଦରେ ପୁଣି 'ତ୍ୱ' ପ୍ରତ୍ୟୟ ଲଗାଇ 'ସାଧୁତାତ୍ୱ' ବିଶେଷ୍ୟ ପଦ ଗଠନ କରିବା ଦୋଷାବହ । ସେହିପରି 'ବୈଦିକ' ଓ 'କୁଳୀନ' ବିଶେଷଣ ପଦରୁ ବୈଦିକ + ଈୟ = ବୈଦିକୀୟ, କୁଳୀନ + ଇକ = କୁଳୀନିକ ବିଶେଷଣ ପଦ ଗଠନ ଅଶୁଦ୍ଧ ଅଟେ; ମାତ୍ର କ୍ୱଚିତ୍ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ଯଥା- ରାଧେୟ (ରାଧା + ଏୟ) । 'ରାଧା' ବିଶେଷ୍ୟ ପଦ, 'ଏୟ' ପ୍ରତ୍ୟୟଦ୍ୱାରା ନିଷ୍ପନ୍ନ ରାଧେୟ ମଧ୍ୟ ବିଶେଷ୍ୟ ପଦ । ପୁଣି 'ରାଧେୟ' ପଦର ବିଶେଷଣ ଭାବରେ ପ୍ରୟୋଗ କରାଯାଇଥାଏ । ଯଥା-

୧ । ରାଧେୟ ମହାଭାରତର ଏକ ଅନୁପମ ଉଜ୍ଜ୍ୱଳ ଚରିତ୍ର । (ବିଶେଷ୍ୟ)

୨ । ରାଧେୟ କର୍ଣ୍ଣଙ୍କର ଦାନ ଓ ସଖ୍ୟ ମାନବ ଜାତିର ପଥପ୍ରଦର୍ଶକ । (ବିଶେଷଣ)

ଶବ୍ଦରେ ବିଭିନ୍ନ ଅର୍ଥରେ ତଦ୍ଧିତ ପ୍ରତ୍ୟୟ ଲାଗେ । ତେବେ ତଦ୍ଧିତ ପ୍ରତ୍ୟୟଟି କେଉଁ ଅର୍ଥରେ ଲାଗିଛି, ତାହା ମୂଳ ଶବ୍ଦ ଓ ତଦ୍ଧିତ ଶବ୍ଦର ବିଶ୍ଳେଷଣରୁ ଜଣାଯାଏ ।

ତଦ୍ଧିତ ପ୍ରତ୍ୟୟ ଯୋଗ କରାଯିବା ପରେ ମୂଳଶବ୍ଦର କେତେକ କ୍ଷେତ୍ରରେ ପ୍ରଥମ ସ୍ୱରର ବୃଦ୍ଧି, କେତେକ କ୍ଷେତ୍ରରେ ଅନ୍ତ୍ୟବର୍ଣ୍ଣର ଲୋପ ଆଉ କେତେକ ସ୍ଥାନରେ ରୂପର ପରିବର୍ତ୍ତନ ଘଟେ । ଯଥା-

ପଶୁପତି - ପାଶୁପତ    ନବ - ନବ୍ୟ

ଜନ୍ତୁ - ଜାନ୍ତବ    ଯୁବନ୍ - ଯୁବତ୍ୱ

ତଦ୍ଧିତ ଶବ୍ଦଦ୍ୱାରା ଭାବକୁ ଅଳ୍ପାକ୍ଷରବିଶିଷ୍ଟ ବାକ୍ୟରେ ପ୍ରକାଶ କରାଯାଏ । ତଦ୍ଧିତ ଶବ୍ଦ ଭାଷାର ଶ୍ରୀ ଓ ସୌଷ୍ଠବ ବୃଦ୍ଧି କରେ । ତଦ୍ଧିତ ପ୍ରତ୍ୟୟାନ୍ତ ଶବ୍ଦଗୁଡ଼ିକୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଏ ।

୧ । ସଂସ୍କୃତ ବ୍ୟାକରଣ ନିୟମରେ ନିଷ୍ପନ୍ନ ତଦ୍ଧିତ ଶବ୍ଦ-

ଆରଣ୍ୟ, ସାଧୁତା, ପାବନି, ଗାଙ୍ଗେୟ

୨ । ଓଡ଼ିଆ ଶବ୍ଦରେ ଓଡ଼ିଆ ପ୍ରତ୍ୟୟ ଯୋଗରେ ନିଷ୍ପନ୍ନ ତଦ୍ଧିତ ଶବ୍ଦ-

ମାଛବାଲା, ଶଙ୍ଖାରି, ତେଲୀ, ମାଟିଆ, ପାନରା

ଗୋଟିଏ ଅର୍ଥରେ ତଦ୍ଧିତରେ ଭିନ୍ନଭିନ୍ନ ପ୍ରତ୍ୟୟ ହୋଇଥାଏ । କେତେକ କ୍ଷେତ୍ରରେ ଭିନ୍ନଭିନ୍ନ ପ୍ରତ୍ୟୟ ଲାଗିଲେ ମଧ୍ୟ ଶବ୍ଦର ଅର୍ଥ ବଦଳେ ନାହିଁ । ଯଥା- ଦୃଢ଼ + ଯ = ଦାର୍ଢ୍ୟ, ଦୃଢ଼ + ତା = ଦୃଢ଼ତା, ଦୃଢ଼ + ଇମନ = ଦ୍ରଢ଼ିମା

ଅନ୍ୟ କ୍ଷେତ୍ରରେ ଗୋଟିଏ ପ୍ରକାର ପ୍ରତ୍ୟୟ ଲାଗି ମଧ୍ୟ ଶବ୍ଦର ଅର୍ଥ ବଦଳିଯାଏ । ଯଥା-

ମାସ + ଇକ = ମାସିକ - ମାସକ ଭିତରେ ଯାହା ଦିଆଯାଏ

ଧର୍ମ + ଇକ = ଧାର୍ମିକ - ଯେ ଧର୍ମ ଆଚରଣ କରେ

ତାମ୍ବୂଳ + ଇକ = ତାମ୍ବୂଳିକ - ଯେ ତାମ୍ବୂଳ ବିକ୍ରି କରେ

ସମୁଦ୍ର + ଇକ = ସାମୁଦ୍ରିକ - ଯାହା ସମୁଦ୍ରରେ ଜାତ

## ୧ । ଅପତ୍ୟ (ସନ୍ତାନସନ୍ତତି) ଅର୍ଥକ ପ୍ରତ୍ୟୟ

### ଅ-ପ୍ରତ୍ୟୟ

| | | |
|---|---|---|
| ମନୁ + ଅ = ମାନବ | ଗୋତମ + ଅ = ଗୌତମ | ଦୁହିତୃ + ଅ = ଦୌହିତ୍ର |
| ଦନୁ + ଅ = ଦାନବ | ପୁତ୍ର + ଅ = ପୌତ୍ର | ବିମାତୃ + ଅ = ବୈମାତ୍ର |
| ଯଦୁ + ଅ = ଯାଦବ | ଭରଦ୍ୱାଜ + ଅ = ଭାରଦ୍ୱାଜ | କୃତ୍ତିକା + ଅ = କାର୍ତ୍ତିକ |
| ରଘୁ + ଅ = ରାଘବ | ଧୃତରାଷ୍ଟ୍ର + ଅ = ଧାର୍ତ୍ତରାଷ୍ଟ୍ର | ବିଶ୍ରବସ୍ + ଅ = ବୈଶ୍ରବଣ |

କୁରୁ+ଅ = କୌରବ   ବିଶ୍ୱନର + ଅ = ବୈଶ୍ୱାନର   ପୃଥା + ଅ = ପାର୍ଥ
ପୁରୁ + ଅ = ପୌରବ   ବିରୋଚନ+ଅ = ବୈରୋଚନ   ଭୃଗୁ + ଅ = ଭାର୍ଗବ
ଭୃଗୁ + ଅ-ସ୍ତ୍ରୀ ପ୍ରତ୍ୟୟ-ଈ = ଭାର୍ଗବୀ   ବିଶ୍ୱଦେବ + ଅ = ବୈଶ୍ୱଦେବ
କୁଶିକ + ଅ = କୌଶିକ   ଦ୍ୱିମାତୃ + ଅ = ଦ୍ୱୈମାତୁର   ପଣ୍ଡୁ + ଅ = ପାଣ୍ଡବ
ଷଣ୍ମାତା (ଷଣ୍ମାତୃ) + ଅ = ଷାଣ୍ମାତୁର   ଦ୍ୱିମାତା(ଦ୍ୱିମାତୃ) + ଅ = ଦ୍ୱୈମାତୁର
ଷଟ୍ - ମାତୃ + ଅ = ଷାଣ୍ମାତୁର   ମରୀଚି + ଅ = ମାରୀଚ
ଜନକ + ଅ + ସ୍ତ୍ରୀ ପ୍ରତ୍ୟୟ - ଈ = ଜାନକୀ
କଶ୍ୟପ + ଅ = କାଶ୍ୟପ   ଦ୍ରୁପଦ + ଅ = ସ୍ତ୍ରୀ ପ୍ରତ୍ୟୟ - ଈ = ଦ୍ରୌପଦୀ
ବସୁଦେବ + ଅ = ବାସୁଦେବ   ପର୍ବତ + ଅ + ସ୍ତ୍ରୀ ପ୍ରତ୍ୟୟ - ଈ = ପାର୍ବତୀ
ଦ୍ରୁପଦ + ଅ = ଦ୍ରୌପଦ   ଭୀମ + ଅ + ସ୍ତ୍ରୀ ପ୍ରତ୍ୟୟ - ଈ = ଭୈମୀ
ଗର୍ଗ + ଅ + ସ୍ତ୍ରୀ ପ୍ରତ୍ୟୟ - ଈ = ଗାର୍ଗୀ

## ଆୟନ-ପ୍ରତ୍ୟୟ

ବତ୍ସ୍ୟ + ଆୟନ = ବାତ୍ସ୍ୟାୟନ   ଦ୍ୱୀପ + ଆୟନ = ଦ୍ୱୈପାୟନ
ଶକଟ + ଆୟନ = ଶାକଟାୟନ   ଦ୍ରୋଣ + ଆୟନ = ଦ୍ରୋଣାୟନ
ଦକ୍ଷ + ଆୟନ = ଦାକ୍ଷାୟଣ   ଅଶ୍ୱଳ + ଆୟନ = ଆଶ୍ୱଳାୟନ
ଦକ୍ଷ + ଆୟନ + ଈ(ସ୍ତ୍ରୀ) = ଦାକ୍ଷାୟଣୀ   ବଦରୀ + ଆୟନ = ବାଦରାୟଣ

## ଇ-ପ୍ରତ୍ୟୟ

ମରୁତ + ଇ = ମାରୁତି   ରାବଣ + ଇ = ରାବଣି   ଅରୁଣ + ଇ = ଆରୁଣି
ସୁମିତ୍ରା + ଇ = ସୌମିତ୍ରି   ପବନ + ଇ = ପାବନି   ଦଶରଥ + ଇ = ଦାଶରଥି
ଅର୍ଜୁନ + ଇ = ଆର୍ଜୁନି   ଦ୍ରୋଣ + ଇ = ଦ୍ରୌଣି   ଦକ୍ଷ + ଇ = ଦାକ୍ଷି
ଭଗୀରଥ + ଇ = ଭାଗୀରଥି   ଭଗୀରଥ+ସ୍ତ୍ରୀ-ଈ=ଭାଗୀରଥୀ   କୃଷ୍ଣ + ଇ = କାର୍ଷ୍ଣି
ବ୍ୟାସ + ଇ = ବୟାସକି   ସୂର + ଇ = ସୌରି(ଶନି)   ଶୂର + ଇ = ଶୌରି(କୃଷ୍ଣ)

## ଇକ-ପ୍ରତ୍ୟ

ରେବତୀ + ଇକ = ରୈବତିକ

## ଈୟ-ପ୍ରତ୍ୟୟ (ଅପତ୍ୟାର୍ଥରେ)

ପିତୃଷ୍ୱସୃ + ଈୟ = ପିତୃଷ୍ୱସ୍ରୀୟ (ପିଉସୀ ପୁଅ ଭାଇ)   ସ୍ୱସୃ + ଈୟ = ସ୍ୱସ୍ରୀୟ
ମାତୃଷ୍ୱସୃ + ଈୟ = ମାତୃଷ୍ୱସ୍ରୀୟ (ମାଉସୀ ପୁଅ ଭାଇ)

## ଏୟ-ପ୍ରତ୍ୟୟ (ଅପତ୍ୟାର୍ଥରେ)

ରାଧା + ଏୟ = ରାଧେୟ
କୁନ୍ତୀ + ଏୟ = କୌନ୍ତେୟ
ମିତ୍ର + ଏୟ = ମୈତ୍ରେୟ
ଭଗିନୀ + ଏୟ = ଭାଗିନେୟ
ଗଙ୍ଗା + ଏୟ = ଗାଙ୍ଗେୟ
ବୃଷ୍ଣି + ଏୟ = ବାର୍ଷ୍ଣେୟ
ସୁଭଦ୍ରା + ଏୟ = ସୌଭଦ୍ରେୟ
କଶ୍ୟପ + ଏୟ = କାଶ୍ୟପେୟ
କୁରୁ + ଏୟ = କୌରବେୟ
ବିରୋଚନ + ଏୟ = ବୈରୋଚନେୟ
ରୋହିଣୀ + ଏୟ = ରୌହିଣେୟ
ବିନତା + ଏୟ = ବୈନତେୟ
ସୁମିତ୍ରା + ଏୟ = ସୌମିତ୍ରେୟ
ସରମା + ଏୟ = ସାରମେୟ
ଅତ୍ରି + ଏୟ = ଆତ୍ରେୟ
କୃତ୍ତିକା + ଏୟ = କାର୍ତ୍ତିକେୟ
ଦ୍ରୌପଦୀ + ଏୟ = ଦ୍ରୌପଦେୟ
ଶକୁନ୍ତଳା + ଏୟ = ଶାକୁନ୍ତଳେୟ
ବିମାତୃ + ଏୟ = ବୈମାତ୍ରେୟ
ମୃକଣ୍ଡ + ଏୟ = ମାର୍କଣ୍ଡେୟ
ଦାସୀ + ଏୟ = ଦାସେୟ
ନିକଷା + ଏୟ = ନୈକଷେୟ

## ୟ-ପ୍ରତ୍ୟୟ(ଅପତ୍ୟାର୍ଥରେ)

ଅଦିତି + ୟ = ଆଦିତ୍ୟ
ଯଜ୍ଞବଲ୍କ + ୟ = ଯାଜ୍ଞବଲ୍କ୍ୟ
ଗର୍ଗ + ୟ = ଗାର୍ଗ୍ୟ
ଯମଦଗ୍ନି + ୟ = ଯାମଦଗ୍ନ୍ୟ
ମୁଦ୍‌ଗଲ + ୟ = ମୌଦ୍‌ଗଲ୍ୟ
ପ୍ରଜାପତି + ୟ = ପ୍ରାଜାପତ୍ୟ
ଚଣକ + ୟ = ଚାଣକ୍ୟ
ଦିତି + ୟ = ଦୈତ୍ୟ
କୁଟିଳ + ୟ = କୌଟିଲ୍ୟ
ପୁଲସ୍ତି + ୟ = ପୌଲସ୍ତ୍ୟ
କୋଶଳ + ଯ + ସ୍ତ୍ରୀ-ଆ= କୌଶଲ୍ୟା
ଜମଦଗ୍ନି + ୟ = ଜାମଦଗ୍ନ୍ୟ
ବତ୍ସ + ୟ = ବାତ୍ସ୍ୟ

୨ । ଅଛି ଅର୍ଥରେ ପ୍ରତ୍ୟୟ

## ଆଳୁ-ପ୍ରତ୍ୟୟ (ଅଛି ଅର୍ଥରେ)

ଦୟା + ଆଳୁ = ଦୟାଳୁ
ନିଦ୍ରା + ଆଳୁ = ନିଦ୍ରାଳୁ
କୃପା + ଆଳୁ = କୃପାଳୁ
ତନ୍ଦ୍ରା + ଆଳୁ = ତନ୍ଦ୍ରାଳୁ
ଶ୍ରଦ୍ଧା + ଆଳୁ = ଶ୍ରଦ୍ଧାଳୁ
ଭୟ + ଆଳୁ = ଭୟାଳୁ

## ଆମିନ୍-ପ୍ରତ୍ୟୟ

ସ୍ୱ (ଐଶ୍ୱର୍ଯ୍ୟ) + ଆମିନ୍ = ସ୍ୱାମିନ୍ (ସ୍ୱାମୀ) + ସ୍ତ୍ରୀ.ଆ = ସ୍ୱାମିନୀ

## ଇନ୍-ପ୍ରତ୍ୟୟ (ଅଛି ଅର୍ଥରେ)

ଧନ + ଇନ୍ = ଧନୀ
ମାନ + ଇନ୍ = ମାନୀ
ଜ୍ଞାନ + ଇନ୍ = ଜ୍ଞାନୀ
ଦୁଃଖ + ଇନ୍ = ଦୁଃଖୀ
ସୁଖ + ଇନ୍ = ସୁଖୀ
ହସ୍ତ + ଇନ୍ = ହସ୍ତୀ
ଗୁଣ + ଇନ୍ = ଗୁଣୀ
ପକ୍ଷ + ଇନ୍ = ପକ୍ଷୀ
ତ୍ୟାଗ + ଇନ୍ = ତ୍ୟାଗୀ
ପ୍ରତିଦ୍ୱନ୍ଦ୍ୱ+ଇନ୍ = ପ୍ରତିଦ୍ୱନ୍ଦ୍ୱୀ
ଯୋଗ + ଇନ୍ = ଯୋଗୀ
ଜୀବ + ଇନ୍ = ଜୀବୀ
ରୋଷ + ଇନ୍ = ରୋଷୀ
ରୋଗ + ଇନ୍ = ରୋଗୀ
ସଙ୍ଗ + ଇନ୍ = ସଙ୍ଗୀ
ଋଣ + ଇନ୍ = ଋଣୀ
ଦୋଷ + ଇନ୍ = ଦୋଷୀ
ଉଦ୍ୟମ+ଇନ୍ = ଉଦ୍ୟମୀ
ଗର୍ବ + ଇନ୍ = ଗର୍ବୀ
ଗୃହ + ଇନ୍ = ଗୃହୀ
କୌତୁକ+ଇନ୍=କୌତୁକୀ
ଅହଙ୍କାର+ଇନ୍=ଅହଙ୍କାରୀ
କୁଶଳ+ଇନ୍ = କୁଶଳୀ
କୌତୂହଳ+ଇନ୍=କୌତୂହଳୀ
ସାହସ + ଇନ୍ = ସାହସୀ
ଲାଙ୍ଗୁଳ+ଇନ୍ = ଲାଙ୍ଗୁଳୀ
ବଳ + ଇନ୍ = ବଳୀ
ଲୋଭ + ଇନ୍ = ଲୋଭୀ
କୁଟୁମ୍ବ+ଇନ୍ = କୁଟୁମ୍ବୀ
ଅର୍ଥ + ଇନ୍ = ଅର୍ଥୀ
ଉତ୍ସାହ + ଇନ୍ = ଉତ୍ସାହୀ
ସଂସାର+ଇନ୍ = ସଂସାରୀ
କାମ + ଇନ୍ = କାମୀ
କ୍ରୋଧ + ଇନ୍ = କ୍ରୋଧୀ
ଅପରାଧ+ଇନ୍ = ଅପରାଧୀ
କୁଷ୍ଠ + ଇନ୍ = କୁଷ୍ଠୀ
ଭୋଗ + ଇନ୍ = ଭୋଗୀ
ବିବେକ+ଇନ୍ = ବିବେକୀ
ନୀଳ + ଇନ୍ = ନୀଳୀ

## ଇଳ-ପ୍ରତ୍ୟୟ (ଅଛିଅର୍ଥରେ)

ଫେନ + ଇଳ = ଫେନିଳ
ଜଟା + ଇଳ = ଜଟିଳ
ପଙ୍କ + ଇଳ = ପଙ୍କିଳ
ସ୍ୱପ୍ନ + ଇଳ = ସ୍ୱପ୍ନିଳ
ପିଚ୍ଛ + ଇଳ = ପିଚ୍ଛିଳ
କୁଟ + ଇଳ = କୁଟିଳ
ଟଙ୍କ + ଇଳ = ଟଙ୍କିଳ
ସିକତା + ଇଳ = ସିକତିଳ
ପ୍ରଶ୍ନ + ଇଳ = ପ୍ରଶ୍ନିଳ

## ଉର-ପ୍ରତ୍ୟୟ

ଦନ୍ତ + ଉର = ଦନ୍ତୁର

## 'ବ' ପ୍ରତ୍ୟୟ

ଅର୍ଣ୍ଣ + ବ = ଅର୍ଣ୍ଣବ
କେଶ + ବ = କେଶବ
ଗାଣ୍ଡି (ଗ୍ରନ୍ଥି) + ବ = ଗାଣ୍ଡିବ, ଗାଣ୍ଡୀବ

## ବଳ-ପ୍ରତ୍ୟୟ

ଶିଖା + ବଳ = ଶିଖାବଳ
କୃଷି + ବଳ = କୃଷୀବଳ
ଦନ୍ତା + ବଳ = ଦନ୍ତାବଳ
ମହା + ବଳ = ମହାବଳ
ଊର୍ଜସ୍ + ବଳ = ଊର୍ଜସ୍ୱଳ
ଶାଦ୍ + ବଳ = ଶାଦ୍ୱଳ

## ବତ୍/ମତ୍-ପ୍ରତ୍ୟୟ

ଧନ + ବତ୍ = ଧନବତ୍ / ଧନବାନ୍-ଧନବତୀ (ସ୍ତ୍ରୀ)

ଦୟା + ବତ୍ = ଦୟାବାନ୍
ଶ୍ରଦ୍ଧା + ବତ୍ = ଶ୍ରଦ୍ଧାବାନ୍
ମୂଲ୍ୟ + ବତ୍ = ମୂଲ୍ୟବାନ୍
ନ୍ୟାୟ + ବତ୍ = ନ୍ୟାୟବାନ୍
ଜ୍ଞାନ + ବତ୍ = ଜ୍ଞାନବାନ୍
ଭଗ + ବତ୍ = ଭଗବାନ୍
ଲକ୍ଷ୍ମୀ + ବତ୍ = ଲକ୍ଷ୍ମୀବାନ୍
ବିଦ୍ୟା + ବତ୍ = ବିଦ୍ୟାବାନ୍
ଭାଗ୍ୟ + ବତ୍ = ଭାଗ୍ୟବାନ୍
ପ୍ରଜ୍ଞା + ବତ୍ = ପ୍ରଜ୍ଞାବାନ୍
ବୁଦ୍ଧି + ମତ୍ = ବୁଦ୍ଧିମାନ୍
ଶ୍ରୀ + ମତ୍ = ଶ୍ରୀମାନ୍, ଶ୍ରୀମତୀ(ସ୍ତ୍ରୀ)
ଅଂଶୁ + ମତ୍ = ଅଂଶୁମାନ୍
ହନୁ + ମତ୍ = ହନୁମାନ୍
ଆୟୁଃ + ମତ୍ = ଆୟୁଷ୍ମାନ୍
ବପୁଃ + ମତ୍ = ବପୁଷ୍ମାନ୍
ଧୀ + ମତ୍ = ଧୀମାନ୍
ମତି + ମତ୍ = ମତିମାନ୍

## ବିନ୍-ପ୍ରତ୍ୟୟ

ମେଧା+ବିନ୍ = ମେଧାବୀ
ମାୟା+ବିନ୍ = ମାୟାବୀ
ତେଜଃ+ବିନ୍ = ତେଜସ୍ୱୀ
ସ୍ରକ୍+ବିନ୍ = ସ୍ରଗ୍‌ବୀ
ଓଜଃ+ବିନ୍ = ଓଜସ୍ୱୀ
ଯଶଃ+ବିନ୍ = ଯଶସ୍ୱୀ
ତପଃ+ବିନ୍ = ତପସ୍ୱୀ
ପୟଃ+ବିନ୍ = ପୟସ୍ୱୀ
ମନଃ+ବିନ୍ = ମନସ୍ୱୀ

## ର-ପ୍ରତ୍ୟୟ

ପାଣ୍ଡୁ + ର = ପାଣ୍ଡୁର
ମଧୁ + ର = ମଧୁର
ମୁଖ + ର = ମୁଖର
ନଖ + ର = ନଖର
କୁଞ୍ଜ + ର = କୁଞ୍ଜର
ନଗ + ର = ନଗର

## 'ଳ' ପ୍ରତ୍ୟୟ (ଅଛି ଅର୍ଥରେ)

ମାଂସ + ଳ = ମାଂସଳ
ଶିରା +ଳ = ଶିରାଳ
ଅଶ୍ରୁ + ଳ = ଅଶ୍ରୁଳ
ଛବି + ଳ = ଛବିଳ
ବତ୍ସ + ଳ = ବତ୍ସଳ
ଶ୍ମଶ୍ରୁ + ଳ = ଶ୍ମଶ୍ରୁଳ
ବହୁ + ଳ = ବହୁଳ
ଶ୍ରୀ + ଳ = ଶ୍ରୀଳ
ଶୀତ + ଳ = ଶୀତଳ
ମଞ୍ଜୁ + ଳ = ମଞ୍ଜୁଳ
ପାଂଶୁ + ଳ = ପାଂଶୁଳ
ତୁଣ୍ଡି + ଳ = ତୁଣ୍ଡିଳ (ଥନ୍ତଲପେଟା,ସ୍ଥୂଳୋଦର)
ଶ୍ୟାମ + ଳ = ଶ୍ୟାମଳ
ପୃଥୁ + ଳ = ପୃଥୁଳ
ଗ୍ରନ୍ଥି + ଳ = ଗ୍ରନ୍ଥିଳ
ତୁନ୍ଦି + ଳ = ତୁନ୍ଦିଳ (ଥନ୍ତଲପେଟା, ସ୍ଥୂଳୋଦର)
ପକ୍ଷ୍ମ + ଳ = ପକ୍ଷ୍ମଳ
କୁଶ + ଳ = କୁଶଳ
ପିଙ୍ଗ + ଳ = ପିଙ୍ଗଳ
ମୃଦୁ + ଳ = ମୃଦୁଳ
ଚଟୁ + ଳ = ଚଟୁଳ
ଶିରା + ଳ = ଶିରାଳ

## 'ଶ' ପ୍ରତ୍ୟୟ(ଅଛି ଅର୍ଥରେ)

ଲୋମ + ଶ = ଲୋମଶ    ରୋମ + ଶ = ରୋମଶ    କପି + ଶ = କପିଶ

କର୍କ + ଶ = କର୍କଶ

## ଶାଳିନ୍-ପ୍ରତ୍ୟୟ(ଅଛି ଅର୍ଥରେ)

ଗୁଣ + ଶାଳିନ୍ = ଗୁଣଶାଳୀ    ଧନ + ଶାଳିନ୍ = ଧନଶାଳୀ

ସମୃଦ୍ଧି + ଶାଳିନ୍ = ସମୃଦ୍ଧିଶାଳୀ    ବଳ + ଶାଳିନ୍ = ବଳଶାଳୀ

ବିଭବ + ଶାଳିନ୍ = ବିଭବଶାଳୀ    ଶକ୍ତି + ଶାଳିନ୍ = ଶକ୍ତିଶାଳୀ

ଐଶ୍ୱର୍ଯ୍ୟ + ଶାଳିନ୍ = ଐଶ୍ୱର୍ଯ୍ୟଶାଳୀ, ଐଶ୍ୱର୍ଯ୍ୟଶାଳିନୀ (ସ୍ତ୍ରୀ)

## (୩) ଭବ (ଜାତ) ବା ସମ୍ବନ୍ଧୀୟ ଅର୍ଥରେ ପ୍ରତ୍ୟୟ

## ଅ-ପ୍ରତ୍ୟୟ (ଜାତ ଅର୍ଥରେ)

ଅରଣ୍ୟ + ଅ = ଆରଣ୍ୟ    ଭୂମି + ଅ = ଭୌମ    ମଗଧ + ଅ = ମାଗଧ

ଶରଦ୍ + ଅ = ଶାରଦ    ବିଦେହ + ଅ = ବୈଦେହ    ମଥୁରା + ଅ = ମାଥୁର

ନିଷଧ + ଅ = ନୈଷଧ    ଜନପଦ + ଅ = ଜାନପଦ    ତିଳ + ଅ = ତୈଳ

ମିଥିଳା + ଅ + ସ୍ତ୍ରୀ.ଈ. = ମୈଥିଳୀ    କୋଶଳ + ଯ + ସ୍ତ୍ରୀ.ଆ = କୌଶଲ୍ୟା

ପୁର + ଅ = ପୌର    ପଞ୍ଚାଳ + ଅ = ପାଞ୍ଚାଳ

## ଈୟ-ପ୍ରତ୍ୟୟ (ଜାତ ବା ସଂବନ୍ଧ ଅର୍ଥରେ)

ଉତ୍କଳ+ଈୟ = ଉତ୍କଳୀୟ    ବଂଗ+ଈୟ = ବଙ୍ଗୀୟ    ଭାରତ+ଈୟ = ଭାରତୀୟ

ଆମେରିକା + ଈୟ = ଆମେରିକୀୟ    କର୍ଣ୍ଣାଟକ + ଈୟ = କର୍ଣ୍ଣାଟକୀୟ

## ଇକ-ପ୍ରତ୍ୟୟ (ସମ୍ବନ୍ଧୀୟ ଅର୍ଥରେ)

ସମୁଦ୍ର+ଇକ = ସାମୁଦ୍ରିକ    ହେମନ୍ତ+ଇକ = ହୈମନ୍ତିକ    ମନସ୍+ଇକ = ମାନସିକ

ତତ୍କାଳ+ଇକ = ତାତ୍କାଳିକ    ଅକାଳ+ଇକ = ଆକାଳିକ    ଲୋକ+ଇକ= ଲୌକିକ

## ଈନ-ପ୍ରତ୍ୟୟ

ନବ+ଈନ = ନବୀନ    କୁଳ+ଈନ = କୁଳୀନ, କୌଳୀନ    ଗ୍ରାମ+ଈନ=ଗ୍ରାମୀଣ

କନ୍ୟା + ଈନ = କାନୀନ    ପ୍ରତୀଚୀ + ଈନ୍ = ପ୍ରତୀଚୀନ

## ମ, ଇମ-ପ୍ରତ୍ୟୟ (ସମ୍ବନ୍ଧ ଅର୍ଥରେ)

ଆଦି + ମ = ଆଦିମ    ମଧ୍ୟ + ମ = ମଧ୍ୟମ    ଅନ୍ତ + ଇମ = ଅନ୍ତିମ

ପଶ୍ଚାତ୍ + ଇମ = ପଶ୍ଚିମ    ଅଗ୍ର + ଇମ = ଅଗ୍ରିମ

### ୟ-ପ୍ରତ୍ୟୟ

| | | |
|---|---|---|
| ବନ + ୟ = ବନ୍ୟ | ଗ୍ରାମ + ୟ = ଗ୍ରାମ୍ୟ | ଅନ୍ତ + ୟ = ଅନ୍ତ୍ୟ |
| ପଶ୍ଚାତ୍ + ୟ = ପାଶ୍ଚାତ୍ୟ | ଦିବ୍ + ୟ = ଦିବ୍ୟ | ବହିଃ + ୟ = ବାହ୍ୟ |
| ପ୍ରାଚ୍ + ୟ = ପ୍ରାଚ୍ୟ | ପର୍ବତ + ୟ = ପାର୍ବତ୍ୟ | ପ୍ରତୀଚୀ+ଯ = ପ୍ରତୀଚ୍ୟ |

## (୪) ସମ୍ବନ୍ଧ ଅର୍ଥରେ ପ୍ରତ୍ୟୟ

### ଅ-ପ୍ରତ୍ୟୟ

| | | |
|---|---|---|
| ଅସୁର + ଅ = ଆସୁର | ଭରତ + ଅ = ଭାରତ | ପୃଥିବୀ + ଅ = ପାର୍ଥିବ |
| ଅସୁର + ଅ + ଈ = ଆସୁରୀ | ଈଶ + ଅ = ଐଶ | |
| ନିଶା + ଅ = ନୈଶ | ଈଶ + ଅ + ଈ = ଐଶୀ | ପଶୁ + ଅ = ପାଶବ |
| ଜନ୍ତୁ + ଅ = ଜାନ୍ତବ | ସିନ୍ଧୁ + ଅ = ସୈନ୍ଧବ | ମନସ୍ + ଅ = ମାନସ |
| ହେମ + ଅ = ହୈମ | ମହିଷ + ଅ = ମାହିଷ | ଚକ୍ଷୁଷ୍ + ଅ = ଚାକ୍ଷୁଷ |
| ସୂର + ଅ = ସୌର | ଶୂର + ଅ = ଶୌର | ଦିନଦିନ+ଅ = ଦୈନନ୍ଦିନ |

### ଇକ-ପ୍ରତ୍ୟୟ

| | | |
|---|---|---|
| ଶରୀର + ଇକ = ଶାରୀରିକ | କାୟ + ଇକ = କାୟିକ | ବର୍ଷ + ଇକ = ବାର୍ଷିକ |
| ସମାଜ + ଇକ = ସାମାଜିକ | ମନସ୍ + ଇକ = ମାନସିକ | ସତ୍ତ୍ୱ + ଇକ = ସାତ୍ତ୍ୱିକ |
| ମୂଳ+ଇକ = ମୌଳିକ | ଅଣୁ+ଇକ = ଆଣବିକ | ପ୍ରଦେଶ+ଇକ = ପ୍ରାଦେଶିକ |
| ବ୍ୟବହାର+ଇକ=ବ୍ୟାବହାରିକ | କୁଳ+ଇକ=କୌଳିକ | ଲୋକ+ଇକ=ଲୌକିକ |

| | |
|---|---|
| ମାଳବ + ଇକ + (ସ୍ତ୍ରୀ.ଆ.) = ମାଳବିକା | ଚନ୍ଦ୍ର + ଇକ + ଆ = ଚନ୍ଦ୍ରିକା |
| ନଗର + ଇକ = ନାଗରିକ | ସଂସାର + ଇକ = ସାଂସାରିକ |
| ସମୟ + ଇକ = ସାମୟିକ | ଇହ + ଇକ = ଐହିକ |
| ତତ୍କାଳ + ଇକ = ତାତ୍କାଳିକ / ତତ୍କାଳିକ | ଇଷ୍ଟି + ଇକ = ଐଷ୍ଟିକ |
| ଅଧିଦେବ + ଇକ = ଆଧିଦୈବିକ | ଈଶ୍ୱର + ଇକ - ଐଶ୍ୱରିକ |
| ଅଧିଭୂତ + ଇକ = ଆଧିଭୌତିକ | ଇନ୍ଦ୍ରଜାଲ + ଇକ = ଐନ୍ଦ୍ରଜାଲିକ |
| ଅଧୁନା + ଇକ = ଆଧୁନିକ | ଈଶ + ଇକ = ଐଶିକ |
| ଅଧିକାର + ଇକ = ଆଧିକାରିକ | ଇତିହାସ + ଇକ = ଐତିହାସିକ |
| ଅହନ୍ + ଇକ = ଆହ୍ନିକ | ସମ୍ବତ୍ସର + ଇକ = ସାମ୍ବତ୍ସରିକ |
| ବିଷୟ + ଇକ = ବୈଷୟିକ | ଦେହ + ଇକ = ଦୈହିକ |
| ଦ୍ୱାର + ଇକ = ଦୌବାରିକ | ଦେବ + ଇକ = ଦୈବିକ |

ରଜସ୍ + ଇକ = ରାଜସିକ
ତମସ୍ + ଇକ = ତାମସିକ
ବାଚ୍ + ଇକ = ବାଚିକ
ବଚନ + ଇକ = ବାଚନିକ
ପରସ୍ପର+ ଇକ = ପାରସ୍ପରିକ
ସଂକେତ + ଇକ = ସାଂକେତିକ, ସାଙ୍କେତିକ
ସଂଗଠନ + ଇକ = ସାଂଗଠନିକ
ସଂବିଧାନ + ଇକ = ସାଂବିଧାନିକ
ସଂଖ୍ୟା + ଇକ = ସାଂଖ୍ୟିକ
ଆଧ୍ୟାତ୍ମ + ଇକ = ଆଧ୍ୟାତ୍ମିକ
ମଙ୍ଗଳ + ଇକ = ମାଙ୍ଗଳିକ
ନଗର + ଇକ = ନାଗରିକ
ନିମିତ୍ତ + ଇକ = ନୈମିତ୍ତିକ
ପରତ୍ର + ଇକ = ପାରତ୍ରିକ

ସମୁଦ୍ର + ଇକ = ସାମୁଦ୍ରିକ
ଦିନ + ଇକ = ଦୈନିକ
ବସନ୍ତ + ଇକ = ବାସ୍ତବିକ
ପରଲୋକ + ଇକ = ପାରଲୌକିକ
ପାରସ୍ୟ + ଇକ = ପାରସିକ
ପରମ୍ପରା + ଇକ = ପାରମ୍ପରିକ
ସଂପ୍ରଦାୟ + ଇକ = ସାଂପ୍ରଦାୟିକ
ସଂଶୟ + ଇକ = ସାଂଶୟିକ
ସଂସର୍ଗ + ଇକ = ସାଂସର୍ଗିକ
ସଂସ୍କୃତି + ଇକ = ସାଂସ୍କୃତିକ
ରଥ + ଇକ= ରଥିକ(ରଥ ସଂଚାରକ)
ସନ୍ନିପାତ+ଇକ = ସାନ୍ନିପାତିକ
ନିଷ୍ଠା + ଇକ = ନୈଷ୍ଠିକ
ଅସ୍ତି + ଇକ = ଆସ୍ତିକ

ସଂଯାତ୍ରା + ଇକ = ସଂଯାତ୍ରିକ, ସଂଯାତ୍ରୀ (ଜଳଯାତ୍ରୀ, ଶୋଭାଯାତ୍ରୀ)

## ଈୟ-ପ୍ରତ୍ୟୟ

| | | |
|---|---|---|
| ସ୍ୱର୍ଗ+ଈୟ = ସ୍ୱର୍ଗୀୟ | ବାୟୁ+ଈୟ=ବାୟବୀୟ | ମାନବ+ଈୟ=ମାନବୀୟ |
| ଦେଶ+ଈୟ=ଦେଶୀୟ | ଗ୍ରୀସ+ଈୟ=ଗ୍ରୀସୀୟ | ଦାନବ+ଈୟ=ଦାନବୀୟ |
| ଜାତି+ଈୟ=ଜାତୀୟ | ଆତ୍ମା+ଈୟ=ଆତ୍ମୀୟ | ଭବତ୍+ଈୟ=ଭବଦୀୟ |
| ଜଳ+ଈୟ=ଜଳୀୟ | ବଂଶ+ଈୟ=ବଂଶୀୟ | ବିବାଦ+ଈୟ=ବିବାଦୀୟ |
| ସ୍ୱ+ଈ=ସ୍ୱୀୟ, ସ୍ୱକୀୟ | ବର୍ଗ+ଈୟ=ବର୍ଗୀୟ | ଲେଖକ+ଈୟ=ଲେଖକୀୟ |
| ସମ୍ପାଦକ+ଈୟ=ସମ୍ପାଦକୀୟ | ପ୍ରାନ୍ତ+ଈୟ=ପ୍ରାନ୍ତୀୟ | ରାଷ୍ଟ୍ର+ଈୟ=ରାଷ୍ଟ୍ରୀୟ |
| ପର+ଈୟ=ପରକୀୟ | ମତ୍+ଈୟ=ମଦୀୟ, ଅସ୍ମଦୀୟ | ତ୍ୱତ୍+ଈୟ=ତ୍ୱଦୀୟ |
| ମତ୍ + ଈୟ = ମଦୀୟ | ଶରଦ୍ + ଈୟ = ଶାରଦୀୟ | ତାବତ୍ + ଈୟ = ତାବତୀୟ |
| ଯାବତ୍+ଈୟ=ଯାବତୀୟ | ରାଜା+ଈୟ=ରାଜକୀୟ | ବାଷ୍ପ+ଈୟ=ବାଷ୍ପୀୟ |
| ନରକ+ଈୟ=ନାରକୀୟ | ତତ୍+ଈୟ = ତଦୀୟ(ତାଙ୍କର) | ଯୁଷ୍ମଦ୍+ଈୟ=ଯୁଷ୍ମଦୀୟ |
| ବିଦେଶ+ଈୟ=ବିଦେଶୀୟ | ପାଣିନି+ଈୟ=ପାଣିନୀୟ | ଜୈମିନି+ଈୟ=ଜୈମିନୀୟ |
| ଔଷଧ+ଈୟ=ଔଷଧୀୟ | ଗୋତ୍ର+ଈୟ=ଗୋତ୍ରୀୟ | ଧର୍ମ+ଈୟ=ଧର୍ମୀୟ |

### ଏୟ-ପ୍ରତ୍ୟୟ (ସମ୍ବନ୍ଧାର୍ଥରେ)

ଅଗ୍ନି + ଏୟ = ଆଗ୍ନେୟ    ମିତ୍ର + ଏୟ = ମୈତ୍ରେୟ

### କ-ପ୍ରତ୍ୟୟ (ସମ୍ବନ୍ଧାର୍ଥରେ)

ପିତୃ + କ = ପୈତୃକ    ଭ୍ରାତୃ + କ = ଭ୍ରାତୃକ    ବିମାତୃ + କ = ବୈମାତୃକ

### ୟ-ପ୍ରତ୍ୟୟ (ସମ୍ବନ୍ଧାର୍ଥରେ)

ଗୋ + ୟ = ଗବ୍ୟ    କଣ୍ଠ + ୟ = କଣ୍ଠ୍ୟ    ତାଲୁ + ୟ = ତାଲବ୍ୟ

ଓଷ୍ଠ + ୟ = ଓଷ୍ଠ୍ୟ    ଦନ୍ତ + ୟ = ଦନ୍ତ୍ୟ    ମୂର୍ଦ୍ଧନ୍ + ୟ = ମୂର୍ଦ୍ଧନ୍ୟ

ଗୃହସ୍ଥ + ୟ = ଗାର୍ହସ୍ଥ୍ୟ    ଈଶାନ + ୟ = ଐଶାନ୍ୟ    ବାୟୁ + ୟ = ବାୟବ୍ୟ

ନାସିକା + ୟ = ନାସିକ୍ୟ    ଇତିହ + ୟ = ଐତିହ୍ୟ    ଈଶ୍ୱର + ୟ = ଐଶ୍ୱର୍ଯ୍ୟ

## ୫ । ଭକ୍ତ/ଉପାସକ ଅର୍ଥରେ ପ୍ରତ୍ୟୟ :

### ଅ-ପ୍ରତ୍ୟୟ

ବିଷ୍ଣୁ + ଅ = ବୈଷ୍ଣବ    ଶିବ + ଅ = ଶୈବ    ବ୍ରହ୍ମ + ଅ = ବ୍ରାହ୍ମ

ବୁଦ୍ଧ + ଅ = ବୌଦ୍ଧ    ସୂର + ଅ = ସୌର    ଶକ୍ତି + ଅ = ଶାକ୍ତ

ମହେଶ୍ୱର + ଅ = ମାହେଶ୍ୱର    ପଶୁପତି + ଅ = ପାଶୁପତ    ଜିନ + ଅ = ଜୈନ

### ୟ-ପ୍ରତ୍ୟୟ (ଭକ୍ତ ବା ଉପାସକ ଅର୍ଥରେ)

ଗଣପତି + ୟ = ଗାଣପତ୍ୟ    ପଶୁପତି + ୟ = ପାଶୁପତ୍ୟ

ପ୍ରଜାପତି + ୟ = ପ୍ରାଜାପତ୍ୟ

## ୬ । ସ୍ୱ ଅର୍ଥକ ପ୍ରତ୍ୟୟ :

### ଅ-ପ୍ରତ୍ୟୟ

ଚଣ୍ଡାଳ + ଅ = ଚାଣ୍ଡାଳ    ବନ୍ଧୁ + ଅ = ବାନ୍ଧବ    କୁତୁକ + ଅ = କୌତୁକ

ରକ୍ଷସ୍ + ଅ = ରାକ୍ଷସ    ଚୋର + ଅ = ଚୌର    ମରୁତ + ଅ = ମାରୁତ

ମନସ୍ + ଅ = ମାନସ    ପ୍ରଜ୍ଞା + ଅ = ପ୍ରାଜ୍ଞ    ଭେଷଜ + ଅ = ଭୈଷଜ

ଅଗାର + ଅ = ଆଗାର    ଦେବତା + ଅ = ଦୈବତ    ବିଭବ + ଅ = ବୈଭବ

ସାଧୁ + ଅ = ସାଧବ    ବିଦ୍ୟା + ଅ = ବୈଦ୍ୟ    ବିତାନ + ଅ = ବୈତାନ (ହୋମ ନୈବେଦ୍ୟ)

## କ-ପ୍ରତ୍ୟୟ (ସ୍ୱାର୍ଥରେ)

ବାଳ + କ = ବାଳକ
ଯାବ + କ = ଯାବକ
ଲୁବ୍ଧ + କ = ଲୁବ୍ଧକ
ଚୂର୍ଣ୍ଣ + କ = ଚୂର୍ଣ୍ଣକ
ଲତା+କ+ସ୍ତ୍ରୀ+ଆ=ଲତିକା
ମୂଷା + କ = ମୂଷିକ
ବାଳ+କ+ଆ=ବାଳିକା
ଦୂତୀ+କ+ଆ=ଦୂତିକା
ତାରା+କ+ଅ=ତାରକା
ଚଣ୍ଡୀ+କ+ଆ=ଚଣ୍ଡିକା
କୁମାରୀ+କ+ଆ=କୁମାରିକା
ମାଳା+କ+ଆ=ମାଳିକା
ବର୍ତ୍ତୀ+କ+ଆ(ସ୍ତ୍ରୀ) = ବର୍ତ୍ତିକା
ବଟ୍+କ+ଆ(ସ୍ତ୍ରୀ) = ବଟିକା (ଛୋଟଗୁଳି)
ବୀଥ୍+କ+ଆ(ସ୍ତ୍ରୀ) = ବୀଥିକା
ବେଦୀ+କ+ଆ(ସ୍ତ୍ରୀ) = ବେଦିକା
ବଦରୀ+କ+ଆ(ସ୍ତ୍ରୀ) = ବଦରିକା
ସୂଚୀ+କ+ଆ(ସ୍ତ୍ରୀ) = ସୂଚିକା
ନାସା+କ+ଆ(ସ୍ତ୍ରୀ) = ନାସିକା
ମାଧବୀ+କ+ଆ(ସ୍ତ୍ରୀ) = ମାଧବିକା
ଶାରୀ+କ+ଆ(ସ୍ତ୍ରୀ) = ଶାରିକା
କନ୍ୟା+କ+ଆ(ସ୍ତ୍ରୀ) = କନ୍ୟକା
କାଳୀ+କ+ଆ(ସ୍ତ୍ରୀ) = କାଳିକା
ପୁତ୍ତଳୀ+କ+ଆ(ସ୍ତ୍ରୀ) = ପୁତ୍ତଳିକା
ମାଳବ+କ+ଆ(ସ୍ତ୍ରୀ) = ମାଳବିକା
ନୌ+କ+ଆ(ସ୍ତ୍ରୀ) = ନୌକା
ଯୂଥୀ + କ + ଆ(ସ୍ତ୍ରୀ) = ଯୂଥିକା

## ତନ୍-ପ୍ରତ୍ୟୟ

ନବ + ତନ = ନୂତନ (ନିପାତନସିଦ୍ଧ)

## ତା-ପ୍ରତ୍ୟୟ

ଦେବ + ତା = ଦେବତା

## ତିକ-ପ୍ରତ୍ୟୟ

ମୃତ୍ + ତିକ + ସ୍ତ୍ରୀ-ଆ = ମୃତ୍ତିକା

## ଯ-ପ୍ରତ୍ୟୟ (ସ୍ୱାର୍ଥରେ)

ନବ + ଯ = ନବ୍ୟ
ଅର୍ଘ + ଯ = ଅର୍ଘ୍ୟ
ସୂର + ଯ = ସୂର୍ଯ୍ୟ
ମଦ + ଯ = ମଦ୍ୟ
ସୁଖ + ଯ = ସୌଖ୍ୟ
ତ୍ରିଲୋକ + ଯ = ତ୍ରୈଲୋକ୍ୟ
ସେନା + ଯ = ସୈନ୍ୟ
ମର୍ତ୍ତ + ଯ = ମର୍ତ୍ତ୍ୟ
କରୁଣ + ଯ = କାରୁଣ୍ୟ
ସୁଖ + ଯ = ସୌଖ୍ୟ
ସୁଗନ୍ଧ + ଯ = ସୌଗନ୍ଧ୍ୟ
ସନ୍ନିଧି + ଯ = ସାନ୍ନିଧ୍ୟ
ସମାନ + ଯ = ସାମାନ୍ୟ
ରୂପା + ଯ = ରୂପ୍ୟ, ରୌପ୍ୟ

## ୭ । ଭାବ ଅର୍ଥକ ପ୍ରତ୍ୟୟ- (ଭାବ- ଗୁଣ, କର୍ମ, ଅବସ୍ଥା)

### ଅ-ପ୍ରତ୍ୟୟ

ଗୁରୁ + ଅ = ଗୌରବ  ଶିଶୁ + ଅ = ଶୈଶବ  ଲଘୁ + ଅ = ଲାଘବ
ସୁରଭି + ଅ = ସୌରଭ  ମୁନି + ଅ = ମୌନ  ଶୁଚି + ଅ = ଶୌଚ
ଯୁବା+ଅ=ଯୌବନ, ଯୁବନ୍  କୁମାର+ଅ=କୌମାର  କୁଶଳ+ଅ=କୌଶଳ
ପଟୁ + ଅ = ପାଟବ  ସୁଷ୍ଠୁ + ଅ = ସୌଷ୍ଠବ  ପୁରୁଷ + ଅ = ପୌରୁଷ
ସୁହୃଦ୍+ଅ= ସୌହାର୍ଦ୍ଦ, ସୌହୃଦ  ଋଜୁ + ଅ = ଆର୍ଜବ  ମୃଦୁ + ଅ = ମାର୍ଦ୍ଦବ
ଅଶୁଚି + ଅ = ଅଶୌଚ  ଚତୁର+ଅ+ସ୍ତ୍ରୀ-ଈ=ଚାତୁରୀ  ମଧୁର+ସ୍ତ୍ରୀ-ଈ=ମାଧୁରୀ
ସ୍ତୃ + ଅ = ସ୍ତର  ସ୍ତୁ + ଅ = ସ୍ତବ

### ଇମନ୍ (ଇମା)-ପ୍ରତ୍ୟୟ (ଭାବାର୍ଥରେ)

ଅରୁଣ+ଇମନ୍ = ଅରୁଣିମା
ନୀଳ+ଇମନ୍ = ନୀଳିମା  ଅଣୁ+ଇମନ୍ = ଅଣିମା  ରକ୍ତ+ଇମନ୍ = ରକ୍ତିମା
ଗୁରୁ+ଇମନ୍ = ଗରିମା  ଲଘୁ+ଇମନ୍ = ଲଘିମା  ମହତ୍+ଇମନ୍ = ମହିମା
ଦୀର୍ଘ+ଇମନ୍ = ଦ୍ରାଘିମା  ଶୁକ୍ଳ+ଇମନ୍ = ଶୁକ୍ଳିମା  ଦୃଢ଼+ଇମନ୍ = ଦ୍ରଢ଼ିମା
ବକ୍ର+ଇମନ୍ = ବକ୍ରିମା  ଜଡ଼+ଇମନ୍ = ଜଡ଼ିମା  ମଧୁର+ଇମନ୍= ମଧୁରିମା
ବହୁ+ଇମନ୍ = ଭୂମା  ଧବଳ+ଇମନ୍ = ଧବଳିମା  ତନୁ+ଇମନ୍ = ତନିମା
ମୂର୍ଖ+ଇମନ୍ = ମୂର୍ଖିମା  ଉଷ୍ଣ+ଇମନ୍ = ଉଷ୍ଣିମା  ସ୍ଥିର+ଇମନ୍ = ସ୍ଥେମା
ବଡ଼+ଇମନ୍ = ବଡ଼ିମା  ବର+ଇମନ୍ = ବରିମା (ଶ୍ରେଷ୍ଠତା)

### ତା-ପ୍ରତ୍ୟୟ (ଭାବାର୍ଥରେ)

ବନ୍ଧୁ + ତା = ବନ୍ଧୁତା  ସାଧୁ + ତା = ସାଧୁତା  ଜଡ଼ + ତା = ଜଡ଼ତା
ଗୁରୁ + ତା = ଗୁରୁତା  ଲଘୁ + ତା = ଲଘୁତା  ସରଳ + ତା = ସରଳତା
ଦୃଢ଼ + ତା = ଦୃଢ଼ତା  କାତର + ତା = କାତରତା  ସୁନ୍ଦର + ତା = ସୁନ୍ଦରତା
ମୂଢ଼ + ତା = ମୂଢ଼ତା  ଚପଳ + ତା = ଚପଳତା  ମଧୁର + ତା = ମଧୁରତା
ସ୍ଥିର + ତା = ସ୍ଥିରତା  ବିଜନ + ତା = ବିଜନତା  ବିଧୁର + ତା = ବିଧୁରତା
ଧୀର + ତା = ଧୀରତା  ପଶୁ + ତା = ପଶୁତା  ମହତ୍ + ତା = ମହତ୍ତା
କୃତଜ୍ଞ+ତା = କୃତଜ୍ଞତା  ଉପକାରୀ+ତା = ଉପକାରିତା  ମଧ୍ୟସ୍ଥ+ତା = ମଧ୍ୟସ୍ଥତା
ପ୍ରତିଯୋଗୀ+ତା = ପ୍ରତିଯୋଗିତା  ବୁଦ୍ଧିମତ୍+ତା = ବୁଦ୍ଧିମତ୍ତା  ପଟୁ+ତା = ପଟୁତା
କବି + ତା = କବିତା  ଉଦାର + ତା = ଉଦାରତା  ସ୍ଥୂଳ + ତା = ସ୍ଥୂଳତା

| | | |
|---|---|---|
| ତିକ୍ତ + ତା = ତିକ୍ତତା | ଯୁବ + ତା = ଯୁବତା | ନିରଙ୍କୁଶ+ତା=ନିରଙ୍କୁଶତା |
| ନିରର୍ଥକ+ତା = ନିରର୍ଥକତା | ନିରୁତ୍ସାହ+ତା=ନିରୁତ୍ସାହତା | ନିରସ+ତା = ନିରସତା |
| ନିର୍ଦ୍ଦୋଷ+ତା= ନିର୍ଦ୍ଦୋଷତା | ନିରୀହ+ତା= ନିରୀହତା | ନିର୍ଦ୍ଦୟ+ତା= ନିର୍ଦ୍ଦୟତା |
| ନିର୍ବଂଶ+ତା = ନିର୍ବଂଶତା | ବିଦ୍ୱସ+ତା = ବିଦ୍ୱତ୍ତା | ଇୟତ୍+ତା = ଇୟତ୍ତା |
| ସାରବତ୍+ତା = ସାରବତ୍ତା | ବହୁଳ+ତା = ବହୁଳତା | ସଂକୀର୍ଣ୍ଣ+ତା= ସଂକୀର୍ଣ୍ଣତା |
| ପ୍ରତିଦ୍ୱନ୍ଦ୍ୱିନ୍ + ତା = ପ୍ରତିଦ୍ୱନ୍ଦ୍ୱିତା | ଚାରୁ + ତା = ଚାରୁତା | ନୀଚ+ତା = ନୀଚତା |

## ତ୍ୱ-ପ୍ରତ୍ୟୟ (ଭାବାର୍ଥରେ)

| | | |
|---|---|---|
| ଦେବ + ତ୍ୱ = ଦେବତ୍ୱ | ନର + ତ୍ୱ = ନରତ୍ୱ | ମହତ୍ + ତ୍ୱ = ମହତ୍ତ୍ୱ |
| ପଶୁ + ତ୍ୱ = ପଶୁତ୍ୱ | ଅମର + ତ୍ୱ = ଅମରତ୍ୱ | ଦିବ୍ୟ + ତ୍ୱ = ଦିବ୍ୟତ୍ୱ |
| ନେତୃ + ତ୍ୱ = ନେତୃତ୍ୱ | ବୀର + ତ୍ୱ = ବୀରତ୍ୱ | ପ୍ରଭୁ + ତ୍ୱ = ପ୍ରଭୁତ୍ୱ |
| ଗୁରୁ + ତ୍ୱ = ଗୁରୁତ୍ୱ | ଲଘୁ + ତ୍ୱ = ଲଘୁତ୍ୱ | ସାର + ତ୍ୱ = ସାରତ୍ୱ |
| କବି + ତ୍ୱ = କବିତ୍ୱ | ସତୀ + ତ୍ୱ = ସତୀତ୍ୱ | କର୍ତ୍ତୃ + ତ୍ୱ = କର୍ତ୍ତୃତ୍ୱ |
| ଶିଷ୍ୟ + ତ୍ୱ = ଶିଷ୍ୟତ୍ୱ | ବନ୍ଧୁ + ତ୍ୱ = ବନ୍ଧୁତ୍ୱ | ରାଜନ୍ + ତ୍ୱ = ରାଜତ୍ୱ |
| ପିତୃ + ତ୍ୱ = ପିତୃତ୍ୱ | ଦାସ + ତ୍ୱ = ଦାସତ୍ୱ | ସ୍ଥାୟି + ତ୍ୱ = ସ୍ଥାୟିତ୍ୱ |
| କବି + ତ୍ୱ = କବିତ୍ୱ | ନଗ୍ନ + ତ୍ୱ = ନଗ୍ନତ୍ୱ | ବିଶା + ତ୍ୱ = ବିଶାଳତ୍ୱ |
| ଶୂର + ତ୍ୱ = ଶୂରତ୍ୱ | ମନୁଷ୍ୟ + ତ୍ୱ = ମନୁଷ୍ୟତ୍ୱ | ବ୍ୟକ୍ତି + ତ୍ୱ = ବ୍ୟକ୍ତିତ୍ୱ |
| ଖଳ + ତ୍ୱ = ଖଳତ୍ୱ | ଖର + ତ୍ୱ = ଖରତ୍ୱ | କଠିନ + ତ୍ୱ = କଠିନତ୍ୱ |
| ଦାୟି + ତ୍ୱ = ଦାୟିତ୍ୱ | ବିଶେଷ + ତ୍ୱ = ବିଶେଷତ୍ୱ | ଦ୍ରବ + ତ୍ୱ = ଦ୍ରବତ୍ୱ |
| ପ୍ରାର୍ଥୀ + ତ୍ୱ = ପ୍ରାର୍ଥିତ୍ୱ | ସତ୍ + ତ୍ୱ = ସତ୍ତ୍ୱ | ତତ୍ + ତ୍ୱ = ତତ୍ତ୍ୱ |

## ଯ, ୟ-ପ୍ରତ୍ୟୟ

| | | |
|---|---|---|
| ଧୀର + ଯ = ଧୈର୍ଯ୍ୟ | ସୁଜନ + ୟ = ସୌଜନ୍ୟ | ପଣ୍ଡିତ + ୟ = ପାଣ୍ଡିତ୍ୟ |
| ସ୍ଥିର + ଯ = ସ୍ଥୈର୍ଯ୍ୟ | ସୁହୃଦ୍ + ୟ = ସୌହାର୍ଦ୍ଦ୍ୟ | ଚପଳ + ୟ = ଚାପଲ୍ୟ |
| ସୁନ୍ଦର + ଯ = ସୌନ୍ଦର୍ଯ୍ୟ | ସମର୍ଥ + ୟ = ସାମର୍ଥ୍ୟ | ବିଷମ + ୟ = ବୈଷମ୍ୟ |
| କୁମାର + ଯ = କୌମାର୍ଯ୍ୟ | ତରୁଣ + ୟ = ତାରୁଣ୍ୟ | ବାର୍ଦ୍ଧକ + ୟ = ବାର୍ଦ୍ଧକ୍ୟ |
| ଗମ୍ଭୀର + ଯ = ଗାମ୍ଭୀର୍ଯ୍ୟ | କରୁଣ + ୟ = କାରୁଣ୍ୟ | ସମ + ୟ = ସାମ୍ୟ |
| ବତ୍ସଳ + ୟ = ବାତ୍ସଲ୍ୟ | ଲଳିତ + ୟ = ଲାଳିତ୍ୟ | ବାଳ + ୟ = ବାଲ୍ୟ |
| ପୁରୋହିତ+ୟ=ପୌରୋହିତ୍ୟ | ଦୂତ + ୟ = ଦୌତ୍ୟ | ବୀର + ଯ = ବୀର୍ଯ୍ୟ |

ଚୋର + ଯ = ଚୌର୍ଯ୍ୟ ସଖା + ଯ = ସଖ୍ୟ ବଣିକ୍ + ଯ = ବାଣିଜ୍ୟ
ଦୁରାତ୍ମା+ଯ = ଦୌରାତ୍ମ୍ୟ ମହାତ୍ମା+ଯ = ମାହାତ୍ମ୍ୟ ଗୃହସ୍ଥ+ଯ = ଗାର୍ହସ୍ଥ୍ୟ
ଗୃହପତି+ଯ = ଗାର୍ହପତ୍ୟ ଚଞ୍ଚଳ+ଯ = ଚାଞ୍ଚଲ୍ୟ ଅଧିପତି+ଯ = ଆଧିପତ
ଅଧିକ+ଯ = ଆଧିକ୍ୟ ନିପୁଣ+ଯ = ନୈପୁଣ୍ୟ ନିରାଶ+ଯ = ନୈରାଶ୍ୟ
ନିଷ୍ଠୁର+ଯ = ନୈଷ୍ଠୁର୍ଯ୍ୟ ବହୁଳ+ଯ = ବାହୁଲ୍ୟ ପ୍ରଚୁର+ଯ = ପ୍ରାଚୁର୍ଯ୍ୟ
ସେନା+ଯ = ସୈନ୍ୟ ସୁଭଗ+ଯ = ସୌଭାଗ୍ୟ ଅଳସ+ଯ = ଆଳସ୍ୟ
ସହିତ+ଯ = ସାହିତ୍ୟ ସୋମ+ଯ = ସୌମ୍ୟ ମଧୁର+ଯ = ମାଧୁର୍ଯ୍ୟ
କୃପଣ+ଯ = କାର୍ପଣ୍ୟ ଉଦାର+ଯ = ଔଦାର୍ଯ୍ୟ ସମୀପ+ଯ = ସାମୀପ୍ୟ
ସମ୍ମୁଖ+ଯ = ସାମ୍ମୁଖ୍ୟ ମାନ+ଯ = ମାନ୍ୟ ମନ୍ଦ+ଯ = ମାନ୍ଦ୍ୟ
ଜଡ଼+ଯ = ଜାଡ଼୍ୟ ଦାସ+ଯ = ଦାସ୍ୟ ଦୃଢ଼+ଯ = ଦାର୍ଢ଼୍ୟ
ଶୀତ+ଯ = ଶୈତ୍ୟ ଦୁରାତ୍ମନ+ଯ = ଦୌରାତ୍ମ୍ୟ ତରଳ+ଯ = ତାରଲ୍ୟ
ବ୍ରାହ୍ମଣ+ଯ = ବ୍ରାହ୍ମଣ୍ୟ ରାଜା+ଯ = ରାଜ୍ୟ ଦନ୍ତ+ଯ = ଦନ୍ତ୍ୟ
ଓଷ୍ଠ + ଯ = ଓଷ୍ଠ୍ୟ ଦଣ୍ଡ + ଯ = ଦଣ୍ଡ୍ୟ ଉଦାର + ଯ = ଔଦାର୍ଯ୍ୟ

୮ । **ବୃତ୍ତି ଅର୍ଥରେ ୟ, ଯ-ପ୍ରତ୍ୟୟ :**

ବଣିକ୍ + ୟ = ବାଣିଜ୍ୟ ପୁରୋହିତ + ୟ = ପୌରୋହିତ୍ୟ
ଦୂତ + ୟ = ଦୌତ୍ୟ ଚୋର + ଯ = ଚୌର୍ଯ୍ୟ
ସାରଥି + ୟ = ସାରଥ୍ୟ ସଖା + ଯ = ସଖ୍ୟ

୯ । **ନିମିତ୍ତ ଅର୍ଥରେ- ୟ-ପ୍ରତ୍ୟୟ :**

ପଦ + ୟ = ପାଦ୍ୟ ଅର୍ଘ + ୟ = ଅର୍ଘ୍ୟ ଅତିଥି + ୟ = ଆତିଥ୍ୟ

**୧୦ । ପ୍ରବୀଣ/ଦକ୍ଷ/କୁଶଳ/ସାଧୁ ବା ସମ୍ବନ୍ଧୀୟ ଅର୍ଥକ ପ୍ରତ୍ୟୟ-**

ଅ-ପ୍ରତ୍ୟୟ : ପଥିନ୍ + ଅ = ପାନ୍ଥ
ଇକ-ପ୍ରତ୍ୟୟ : ବେଦ + ଇକ = ବୈଦିକ
ଜ୍ୟୋତିଷ + ଇକ = ଜ୍ୟୋତିଷିକ
ବିଜ୍ଞାନ + ଇକ = ବୈଜ୍ଞାନିକ
ସାହିତ୍ୟ + ଇକ = ସାହିତ୍ୟିକ
ଦର୍ଶନ + ଇକ = ଦାର୍ଶନିକ
ଇତିହାସ + ଇକ = ଐତିହାସିକ
ବିତଣ୍ଡା + ଇକ = ବୈତଣ୍ଡିକ

ବିଦ୍ୟା + ଅ = ବୈଦ୍ୟ
ସଂଗ୍ରାମ + ଇକ = ସାଂଗ୍ରାମିକ
ଭୂଗୋଳ + ଇକ = ଭୌଗୋଳିକ
ତର୍କ + ଇକ = ତାର୍କିକ
ନ୍ୟାୟ + ଇକ = ନୈୟାୟିକ
ବ୍ୟାକରଣ+ଇକ = ବୈୟାକରଣିକ
ଅଳଙ୍କାର + ଇକ = ଆଳଙ୍କାରିକ
ମାୟା + ଇକ = ମାୟିକ

**ଏୟ-ପ୍ରତ୍ୟୟ :** ଅତିଥି + ଏୟ = ଆତିଥେୟ   ଗଣିତ + ଇକ = ଗାଣିତିକ

**ଠ-ପ୍ରତ୍ୟୟ :** କର୍ମ + ଠ = କର୍ମଠ

### ୧୧ । ବିଭିନ୍ନ ଅର୍ଥକ 'ମୟ' ପ୍ରତ୍ୟୟ :

ବିକାର ବା ରୂପାନ୍ତର ଅର୍ଥରେ - ମୃତ୍ + ମୟ = ମୃଣ୍ମୟ   ହେମ + ମୟ=ହେମମୟ
ହିରଣ୍ୟ+ମୟ=ହିରଣ୍ମୟ   ସ୍ୱର୍ଣ୍ଣ+ମୟ = ସ୍ୱର୍ଣ୍ଣମୟ

ବ୍ୟାପ୍ତି ଅର୍ଥରେ- ଜଳ + ମୟ = ଜଳମୟ   ଧୂମ + ମୟ = ଧୂମମୟ
ରୋଗ + ମୟ = ରୋଗମୟ   ତମଃ +ମୟ = ତମୋମୟ
ତେଜଃ + ମୟ = ତେଜୋମୟ   ଯଶଃ + ମୟ = ଯଶୋମୟ

ପ୍ରାଚୁର୍ଯ୍ୟ ଅର୍ଥରେ- ଘୃତ + ମୟ = ଘୃତମୟ   ଅନ୍ନ + ମୟ = ଅନ୍ନମୟ
ପାପ + ମୟ = ପାପମୟ   ଜ୍ଞାନ + ମୟ = ଜ୍ଞାନମୟ

ଗୋବର ଅର୍ଥରେ- ଗୋ + ମୟ = ଗୋମୟ   କର୍ମ + ମୟ = କର୍ମମୟ

ସ୍ୱରୂପ ଅର୍ଥରେ- ବାକ୍ + ମୟ = ବାଙ୍ମୟ   ଚିତ୍ + ମୟ = ଚିନ୍ମୟ
ବିଷ୍ଣୁ + ମୟ = ବିଷ୍ଣୁମୟ   କୃଷ୍ଣ + ମୟ = କୃଷ୍ଣମୟ
କର୍ମ + ମୟ = କର୍ମମୟ   ପ୍ରାଣ + ମୟ = ପ୍ରାଣମୟ

### ୧୨ । ଭିନ୍ନାର୍ଥକ ସାତ୍-ପ୍ରତ୍ୟୟ

ପରିଣତ ଅର୍ଥରେ - ଭସ୍ମ + ସାତ୍ = ଭସ୍ମସାତ୍   ଧୂଳି + ସାତ୍ = ଧୂଳିସାତ୍
ଜଳ + ସାର = ଜଳସାତ୍   ଅଗ୍ନି + ସାତ୍ = ଅଗ୍ନିସାତ୍

ଅପହରଣ ଅର୍ଥରେ- ଆତ୍ମନ୍ + ସାତ୍ = ଆତ୍ମସାତ୍

ନିକ୍ଷିପ୍ତ ଅର୍ଥରେ - ଉଦର + ସାତ୍ = ଉଦରସାତ   ଜଳ + ସାତ୍ = ଜଳସାତ୍
ଗର୍ଭ + ସାତ୍ = ଗର୍ଭସାତ୍

### ୧୩ । ତୁଳନାର୍ଥକ ପ୍ରତ୍ୟୟ : ତର, ତମ, ଈୟସ୍, ଇଷ୍ଠ

ଦୁଇଟି ମଧ୍ୟରେ ତୁଳନା କରିବାପାଇଁ ବିଶେଷଣ ପଦରୁ 'ତର' ଓ 'ଈୟସ୍' ପ୍ରତ୍ୟୟ ହୁଏ ଏବଂ ଅନେକଙ୍କ ମଧ୍ୟରେ ତୁଳନା କରିବାପାଇଁ 'ତମ' ଓ 'ଇଷ୍ଠ' ପ୍ରତ୍ୟୟ ହୁଏ । ଦୁଇଟି ମଧ୍ୟରେ ଓ ଅନେକଙ୍କ ମଧ୍ୟରେ ଗୋଟିକର ଉତ୍କର୍ଷ ଓ ଅପକର୍ଷ ବୁଝାଇବା ପାଇଁ ଏହି ପ୍ରତ୍ୟୟ ହୋଇଥାଏ ।

#### ତର ଓ ତମ-ପ୍ରତ୍ୟୟ

ଦୀର୍ଘ+ତର=ଦୀର୍ଘତର + ସ୍ତ୍ରୀ.ଆ. = ଦୀର୍ଘତରା   ଦୀର୍ଘ + ତମ = ଦୀର୍ଘତମ
ଗୁରୁ + ତର = ଗୁରୁତର   ଗୁରୁ + ତମ = ଗୁରୁତମ

କ୍ଷୁଦ୍ର + ତର = କ୍ଷୁଦ୍ରତର
କ୍ଷୁଦ୍ର + ତମ = କ୍ଷୁଦ୍ରତମ
ସୁନ୍ଦର + ତର = ସୁନ୍ଦରତର
ସୁନ୍ଦର + ତମ = ସୁନ୍ଦରତମ
ମଧୁର + ତର = ମଧୁରତର
ମଧୁର + ତମ = ମଧୁରତମ
ବୃହତ୍ + ତର = ବୃହତ୍ତର
ବୃହତ୍ + ତମ = ବୃହତ୍ତମ
ମହତ୍ + ତର = ମହତ୍ତର
ମହତ୍ + ତମ = ମହତ୍ତମ
ପ୍ରିୟ + ତର = ପ୍ରିୟତର
ପ୍ରିୟ + ତମ = ପ୍ରିୟତମ
କୃଶ + ତର = କୃଶତର
କୃଶ + ତମ = କୃଶତମ

### ଈୟସ୍ ଓ ଇଷ୍ଠ ପ୍ରତ୍ୟୟ

ଉରୁ + ଈୟସ୍ = ବରୀୟାନ୍ (ଶ୍ରେଷ୍ଠତର)
ଉରୁ + ଇଷ୍ଠ = ବରିଷ୍ଠ
ଗୁରୁ + ଈୟସ୍ = ଗରୀୟାନ୍
ଗୁରୁ + ଇଷ୍ଠ = ଗରିଷ୍ଠ
ଲଘୁ + ଈୟସ୍ = ଲଘୀୟାନ୍
ଲଘୁ + ଇଷ୍ଠ = ଲଘିଷ୍ଠ
ବଳବାନ୍ + ଈୟସ୍ = ବଳୀୟାନ୍
ବଳବାନ୍ + ଇଷ୍ଠ = ବଳିଷ୍ଠ
ବହୁ + ଈୟସ୍ = ଭୂୟାନ୍
ବହୁ + ଇଷ୍ଠ = ଭୂୟିଷ୍ଠ
ବୃଦ୍ଧ + ଈୟସ୍ = ବର୍ଷୀୟାନ୍, ଜ୍ୟାୟାନ୍
ବୃଦ୍ଧ + ଇଷ୍ଠ = ବର୍ଷିଷ୍ଠ/ଜ୍ୟେଷ୍ଠ
ପଟୁ + ଈୟସ୍ = ପଟୀୟାନ୍ (ଦକ୍ଷତର)
ପଟୁ + ଇଷ୍ଠ = ପଟିଷ୍ଠ
ପ୍ରଶସ୍ୟ(ପ୍ରଶଂସାଯୋଗ୍ୟ)+ଈୟସ୍=ଶ୍ରେୟାନ୍, ଜ୍ୟାୟାନ୍
ପ୍ରଶସ୍ୟ+ଇଷ୍ଠ=ଶ୍ରେଷ୍ଠ, ଜ୍ୟେଷ୍ଠ
ଯୁବା/ଯୁବନ୍+ଈୟସ୍=ଯବୀୟାନ୍, କନୀୟାନ୍
ଯୁବ + ଇଷ୍ଠ = ଯବିଷ୍ଠ, କନିଷ୍ଠ
ଅଳ୍ପ + ଈୟସ୍ = ଅଳ୍ପୀୟାନ୍, କନୀୟାନ୍
ଅଳ୍ପ + ଇଷ୍ଠ = ଅଳ୍ପିଷ୍ଠ, କନିଷ୍ଠ
ମହତ୍ + ଈୟସ୍ = ମହୀୟାନ୍
ମହତ୍ + ଇଷ୍ଠ = ମହିଷ୍ଠ
ପ୍ରିୟ + ଈୟସ୍ = ପ୍ରେୟାନ୍
ପ୍ରିୟ + ଇଷ୍ଠ = ପ୍ରେଷ୍ଠ
ମେଧାବିନ୍ + ଈୟସ୍ = ମେଧୀୟାନ୍
ମେଧାବିନ୍ + ଇଷ୍ଠ = ମେଧିଷ୍ଠ
କ୍ଷିପ୍ର + ଈୟସ୍ = କ୍ଷେପୀୟାନ୍
କ୍ଷିପ୍ର + ଇଷ୍ଠ = କ୍ଷେପିଷ୍ଠ
ସ୍ଥୂଳ + ଈୟସ୍ = ସ୍ଥୂଳୀୟାନ୍
ସ୍ଥୂଳ + ଇଷ୍ଠ = ସ୍ଥବିଷ୍ଠ
କୃଶ + ଈୟସ୍ = କ୍ରଶୀୟାନ୍
କୃଶ + ଇଷ୍ଠ = କ୍ରଶିଷ୍ଠ
କ୍ଷୁଦ୍ର + ଈୟସ୍ = କ୍ଷୋଦୀୟାନ୍
କ୍ଷୁଦ୍ର + ଇଷ୍ଠ = କ୍ଷୋଦିଷ୍ଠ

## ୧୪ । ତୁଲ୍ୟାର୍ଥକ ପ୍ରତ୍ୟୟ-ବତ୍, ସ୍ଥାନୀୟ

### ବତ୍ ପ୍ରତ୍ୟୟ

ପୁମାନ + ବତ୍ = ପୁଂବତ୍

ପିତୃ + ବତ୍ = ପିତୃବତ୍    ମାତୃ + ବତ୍ = ମାତୃବତ୍    ପୁତ୍ର + ବତ୍ =ପୁତ୍ରବତ୍

ମିତ୍ର + ବତ୍ = ମିତ୍ରବତ୍    ଆତ୍ମନ୍+ବତ୍ = ଆତ୍ମବତ୍    ଲୋଷ୍ଟ୍ର+ବତ୍ = ଲୋଷ୍ଟ୍ରବତ୍

ଗୃହ + ବତ୍ = ଗୃହବତ୍    ଭ୍ରାତୃ + ବତ୍ = ଭ୍ରାତୃବତ୍    ଅମୃତ+ବତ୍ = ଅମୃତବତ୍

ଶ୍ମଶାନ+ବତ୍= ଶ୍ମଶାନବତ୍    ରାଜନ୍+ବତ୍=ରାଜବତ୍    ଚନ୍ଦ୍ର+ବତ୍ = ଚନ୍ଦ୍ରବତ୍

### ସ୍ଥାନୀୟ ପ୍ରତ୍ୟୟ

ପିତୃ + ସ୍ଥାନୀୟ = ପିତୃସ୍ଥାନୀୟ    ମାତୃ + ସ୍ଥାନୀୟ (ସ୍ତ୍ରୀ-ଆ)=ମାତୃସ୍ଥାନୀୟା

ଭ୍ରାତୃ + ସ୍ଥାନୀୟ = ଭ୍ରାତୃସ୍ଥାନୀୟ    ପୁତ୍ରୀ + ସ୍ଥାନୀୟା = ପୁତ୍ରୀସ୍ଥାନୀୟା

ପୁତ୍ର + ସ୍ଥାନୀୟ = ପୁତ୍ରସ୍ଥାନୀୟ    ଭଗିନୀ + ସ୍ଥାନୀୟା = ଭଗିନୀସ୍ଥାନୀୟା

ଗୁରୁଜନ + ସ୍ଥାନୀୟ = ଗୁରୁଜନସ୍ଥାନୀୟ    ଗୁରୁ+ସ୍ଥାନୀୟ = ଗୁରୁସ୍ଥାନୀୟ

## ୧୫ । ତୁଲ୍ୟପ୍ରାୟ ବା ଈଷତ୍‌ନ୍ୟୂନ ଅର୍ଥରେ କଳ୍ପ-ପ୍ରତ୍ୟୟ

ପିତୃ + କଳ୍ପ = ପିତୃକଳ୍ପ    ମାତୃ + କଳ୍ପ (ସ୍ତ୍ରୀ-ଆ) = ମାତୃକଳ୍ପା

ଭ୍ରାତୃ + କଳ୍ପ = ଭ୍ରାତୃକଳ୍ପ    ଗୁରୁ + କଳ୍ପ = ଗୁରୁକଳ୍ପ

କୁମାର + କଳ୍ପ = କୁମାରକଳ୍ପ    ଋଷି + କଳ୍ପ = ଋଷିକଳ୍ପ

(ବୀରତାରେ କାର୍ତ୍ତିକେୟଙ୍କଠାରୁ ଟିକିଏ ଊଣା)    ବିଦ୍ୱସ୍ + କଳ୍ପ = ବିଦ୍ୱତ୍‌କଳ୍ପ

## ୧୬ । କାଳ ଅର୍ଥରେ ପ୍ରତ୍ୟୟ- ଦା

ଏକ + ଦା = ଏକଦା    ସର୍ବ + ଦା = ସର୍ବଦା, ସଦା

ସତ୍ + ଦା = ସଦା    କିମ୍ + ଦା = କଦା    ତଦ୍+ଦା = ତଦା

## ୧୭ । ପ୍ରକାର ଅର୍ଥରେ ପ୍ରତ୍ୟୟ- ଥା, ଧା

ଅନ୍ୟ + ଥା = ଅନ୍ୟଥା    ଦ୍ୱି + ଧା = ଦ୍ୱିଧା

ଯଦ୍ + ଥା = ଯଥା    ବହୁ + ଧା = ବହୁଧା

ତଦ୍ + ଥା = ତଥା    ଶତ + ଧା = ଶତଧା

ସର୍ବ + ଥା = ସର୍ବଥା    ସହସ୍ର + ଧା = ସହସ୍ରଧା

ଉଭୟ + ଥା = ଉଭୟଥା

## ୧୮ ।ଅଧ୍ୟୟନ, ଜ୍ଞାନ ଆହରଣ, ତାଙ୍କଠାରୁ ପ୍ରାପ୍ତ ଅର୍ଥରେ ପ୍ରତ୍ୟୟ- ଅ, ଇକ, କ

**ଅ**

ବ୍ୟାକରଣ + ଅ = ବୈୟାକରଣ — ସ୍ମୃତି + ଅ = ସ୍ମାର୍ତ୍ତ

**ଇକ**

ପୁରାଣ + ଇକ = ପୌରାଣିକ — ତର୍କ + ଇକ = ତାର୍କିକ
ବେଦାନ୍ତ + ଇକ = ବୈଦାନ୍ତିକ — ଜ୍ୟୋତିଷ + ଇକ = ଜ୍ୟୋତିଷିକ
ବେଦ + ଇକ = ବୈଦିକ — ଭୂଗୋଳ + ଇକ = ଭୌଗୋଳିକ
ବ୍ୟାକରଣ+ଇକ = ବୈୟାକରଣିକ — ନ୍ୟାୟ + ଇକ = ନୈୟାୟିକ

**କ**

ପିତୃ + କ = ପୈତୃକ — ମାତୃ + କ = ମାତୃକ
ଶିକ୍ଷା + କ = ଶିକ୍ଷକ — ମୀମାଂସା + କ = ମୀମାଂସକ
ଭ୍ରାତୃ + କ = ଭ୍ରାତୃକ

**ସ୍ୱାର୍ଥରେ 'କ' ପ୍ରତ୍ୟୟ**

ବାଳ + କ = ବାଳକ — ନୌ + କ + (ସ୍ତ୍ରୀ.ଅ.) = ନୌକା
ଚୂର୍ଣ୍ଣ + କ = ଚୂର୍ଣ୍ଣକ — ଘଟି + କ + (ସ୍ତ୍ରୀ.ଅ.) = ଘଟିକା
ଯୁବନ୍ + କ = ଯୁବକ — ଏକ + କ = ଏକକ

## ୧୯ ।ଯୁକ୍ତ ବା ଜାତ ଅର୍ଥରେ ପ୍ରତ୍ୟୟ- ଇତ

ତାରକା + ଇତ = ତାରକିତ — କଣ୍ଟକ + ଇତ = କଣ୍ଟକିତ
ପୁଷ୍ପ + ଇତ = ପୁଷ୍ପିତ — କୋରକ + ଇତ = କୋରକିତ
ରୋମାଞ୍ଚ + ଇତ = ରୋମାଞ୍ଚିତ — ଫଳ + ଇତ = ଫଳିତ
ପୁଲକ + ଇତ = ପୁଲକିତ — କୁସୁମ + ଇତ = କୁସୁମିତ
କ୍ଷୁଧା + ଇତ = କ୍ଷୁଧିତ — ବୁଭୁକ୍ଷା + ଇତ = ବୁଭୁକ୍ଷିତ
କଲ୍ଲୋଳ + ଇତ = କଲ୍ଲୋଳିତ — ଚିତ୍ର + ଇତ = ଚିତ୍ରିତ
କର୍ଦ୍ଦମ + ଇତ = କର୍ଦ୍ଦମିତ — ଉଚ୍ଚାର + ଇତ = ଉଚ୍ଚାରିତ
ମୂର୍ଚ୍ଛା + ଇତ = ମୂର୍ଚ୍ଛିତ — ବ୍ୟଥା + ଇତ = ବ୍ୟଥିତ
ପଲ୍ଲବ + ଇତ = ପଲ୍ଲବିତ — ଲଜ୍ଜା + ଇତ = ଲଜ୍ଜିତ
ସ୍ତବକ + ଇତ = ସ୍ତବକିତ — ବିମ୍ବ + ଇତ = ବିମ୍ବିତ
ତରଙ୍ଗ + ଇତ = ତରଙ୍ଗିତ — ଫଳ + ଇତ = ଫଳିତ

ଗର୍ବ + ଇତ = ଗର୍ବିତ
ନିଦ୍ରା + ଇତ = ନିଦ୍ରିତ
ଦୁଃଖ + ଇତ = ଦୁଃଖିତ
ତୃଷା + ଇତ = ତୃଷିତ
ପ୍ରତିଧ୍ୱନି + ଇତ = ପ୍ରତିଧ୍ୱନିତ
ପ୍ରଚାର + ଇତ = ପ୍ରଚାରିତ
ପିପାସା + ଇତ = ପିପାସିତ
ଅଙ୍କୁର + ଇତ = ଅଙ୍କୁରିତ
ପ୍ରତିବିମ୍ବ + ଇତ = ପ୍ରତିବିମ୍ବିତ
ଖଣ୍ଡ + ଇତ = ଖଣ୍ଡିତ
ଦଣ୍ଡ + ଇତ = ଦଣ୍ଡିତ
ପଣ୍ଡା + ଇତ = ପଣ୍ଡିତ
ଅଙ୍କୁର + ଇତ = ଅଙ୍କୁରିତ
ଉତ୍କଣ୍ଠା + ଇତ = ଉତ୍କଣ୍ଠିତ
ମୁକୁଳ + ଇତ = ମୁକୁଳିତ

**୨୦ । ଯୁକ୍ତ ଅର୍ଥରେ ଅ-ପ୍ରତ୍ୟୟ (କାଳ ବା ନକ୍ଷତ୍ର ବାଚକ ଶବ୍ଦରୁ)**

ବିଶାଖା + ଅ = ବୈଶାଖ
ଜ୍ୟେଷ୍ଠା + ଅ = ଜ୍ୟେଷ୍ଠ
ଆଷାଢ଼ା + ଅ = ଆଷାଢ଼
ଶ୍ରବଣା + ଅ = ଶ୍ରାବଣ
ଭଦ୍ରା + ଅ = ଭାଦ୍ର
ଅଶ୍ୱିନୀ + ଅ = ଆଶ୍ୱିନ
କୃତ୍ତିକା + ଅ = କାର୍ତ୍ତିକ
ମୃଗଶିରା + ଅ = ମାର୍ଗଶିର
ପୁଷ୍ୟା + ଅ = ପୌଷ
ମଘା + ଅ = ମାଘ
ଫାଲଗୁନି + ଅ = ଫାଲ୍‌ଗୁନ
ଚିତ୍ରା + ଅ = ଚୈତ୍ର

**୨୧ । ଜୀବିକା ଅର୍ଥରେ ପ୍ରତ୍ୟୟ- ଇକ**

ତିଳ + ଇକ = ତୈଳିକ
ଲବଣ + ଇକ = ଲାବଣିକ
ନୌ + ଇକ = ନାବିକ
କ୍ରୟ + ଇକ = କ୍ରୟିକ (କିଣିଖିଆ)
ତାମ୍ବୁଳ + ଇକ = ତାମ୍ବୁଳିକ
ଜାଲ + ଇକ = ଜାଲିକ
ବେତନ + ଇକ = ବୈତନିକ
ବିକ୍ରୟ + ଇକ = ବ୍ରିକ୍ରୟିକ
(ବିକ୍ରୀ କରି ଯେ ଜୀବିକା ଚଳାଏ)

**୨୨ ।ହିତାର୍ଥ ପ୍ରତ୍ୟୟ- ଈୟ, ଈନ**

(କ) ଜନ + ଈନ = ଜନୀନ
ଯଜ୍ଞ + ଈୟ = ଯଜ୍ଞୀୟ
ସର୍ବଜନ + ଈନ = ସାର୍ବଜନୀନ/ସର୍ବଜନୀନ
ବିଶ୍ୱଜନ + ଈନ = ବିଶ୍ୱଜନୀନ

(ଖ) ଭବ ଅର୍ଥରେ 'ଈନ' ପ୍ରତ୍ୟୟ

କୁଳ + ଈନ = କୁଳୀନ
ପ୍ରାଚ୍‌ + ଈନ = ପ୍ରାଚୀନ
ଅର୍ବାଚ୍‌ + ଈନ = ଅର୍ବାଚୀନ
ଅବାଚ୍‌ + ଈନ = ଅବାଚୀନ
କାଳ + ଈନ = କାଳୀନ

(ଗ) ସ୍ୱାର୍ଥରେ : ନବ + ଈନ୍ = ନବୀନ

(ଘ) ବହନ ଅର୍ଥରେ : ଧୁର୍ + ଈନ = ଧୁରୀଣ

(ଙ) ବିନୟ ଅର୍ଥରେ : ଶାଳା + ଈନ = ଶାଳୀନ (ବିନୀତ, ଭଦ୍ର)

(ଚ) ବ୍ୟାପ୍ତି ଅର୍ଥରେ : ସର୍ବାଙ୍ଗ + ଈନ = ସର୍ବାଙ୍ଗୀଣ (ସର୍ବାଙ୍ଗବ୍ୟାପୀ)

**୨୩ । ପୂରଣ ଅର୍ଥରେ ପ୍ରତ୍ୟୟ- ତୀୟ, ଥ, ମ, ତମ**

ତୀୟ - ଦ୍ୱି + ତୀୟ = ଦ୍ୱିତୀୟ ତ୍ରି + ତୀୟ = ତୃତୀୟ

ଥ - ଚତୁଃ + ଥ = ଚତୁର୍ଥ ଷଷ୍ + ଥ = ଷଷ୍ଠ

ମ/ତମ - ପଞ୍ଚନ୍ + ମ = ପଞ୍ଚମ

ଦ୍ର - 'ଏକ'ର ପୂରଣ = ପ୍ରଥମ (ଏହା ଏକ୍ କୃଦନ୍ତ ପଦ)

ସପ୍ତନ୍ + ମ = ସପ୍ତମ

ଅଷ୍ଟନ୍ + ମ = ଅଷ୍ଟମ ତ୍ରିଂଶତ୍ + ତମ = ତ୍ରିଂଶତ୍ତମ

ନବନ୍ + ମ = ନବମ ଶତ + ତମ = ଶତତମ

ଦଶନ୍ + ମ = ଦଶମ ସହସ୍ର + ତମ = ସହସ୍ରତମ

**ପୂରଣ ଅର୍ଥରେ 'ମ' ପ୍ରତ୍ୟୟ ନ ହୋଇ 'ଅ' ପ୍ରତ୍ୟୟ ହୁଏ ଏବଂ ଅନ୍ତ୍ୟବର୍ଣ୍ଣର ଲୋପ ହୁଏ ।**

ଏକାଦଶନ୍ + ଅ = ଏକାଦଶ ଷୋଡ଼ଶନ୍ + ଅ = ଷୋଡ଼ଶ

ଦ୍ୱାଦଶନ୍ + ଅ = ଦ୍ୱାଦଶ ସପ୍ତଦଶନ୍ + ଅ = ସପ୍ତଦଶ

ତ୍ରୟୋଦଶନ୍ + ଅ = ତ୍ରୟୋଦଶ ଅଷ୍ଟାଦଶନ୍ + ଅ = ଅଷ୍ଟାଦଶ

ଚତୁର୍ଦ୍ଦଶନ୍ + ଅ = ଚତୁର୍ଦ୍ଦଶ ନବଦଶନ୍ + ଅ = ନବଦଶ

ପଞ୍ଚଦଶନ୍ + ଅ = ପଞ୍ଚଦଶ

**ପୂରଣ ଅର୍ଥରେ 'ତମ' ଓ 'ଅ' ପ୍ରତ୍ୟୟ ହୁଏ ଏବଂ 'ଅ' ପ୍ରତ୍ୟୟ ହେଲେ ସ୍ୱର ସହିତ ଅନ୍ତ୍ୟ ବର୍ଣ୍ଣର ଲୋପ ହୁଏ ।**

ଊନବିଂଶତି + ଅ = ଊନବିଂଶ ଊନବିଂଶତି + ତମ = ଊନବିଂଶତିତମ

ବିଂଶତି + ଅ = ବିଂଶ ବିଂଶତି + ତମ = ବିଂଶତିତମ

ଏକବିଂଶତି + ଅ = ଏକବିଂଶ ଏକବିଂଶତି + ତମ = ଦ୍ୱାବିଂଶତମ

ଦ୍ୱାବିଂଶତି + ଅ = ଦ୍ୱାବିଂଶ ଦ୍ୱାବିଂଶତି + ତମ = ଦ୍ୱାବିଂଶତମ

ତ୍ରୟୋବିଂଶତି+ଅ=ତ୍ରୟୋବିଂଶ ତ୍ରୟୋବିଂଶତି+ତମ = ତ୍ରୟୋବିଂଶତିତମ

| | |
|---|---|
| ଚତୁର୍ବିଂଶତି + ଅ = ଚତୁର୍ବିଂଶ | ଚତୁର୍ବିଂଶତି + ତମ = ଚତୁର୍ବିଂଶତିତମ |
| ପଞ୍ଚବିଂଶତି + ଅ = ପଞ୍ଚବିଂଶ | ପଞ୍ଚବିଂଶତି + ତମ = ପଞ୍ଚବିଂଶତିତମ |
| ଷଡ଼ବିଂଶତି + ଅ = ଷଡ଼ବିଂଶ | ଷଡ଼ବିଂଶତି + ତମ = ଷଡ଼ବିଂଶତିତମ |
| ସପ୍ତବିଂଶତି + ଅ = ସପ୍ତବିଂଶ | ସପ୍ତବିଂଶତି + ତମ = ସପ୍ତବିଂଶତିତମ |
| ଅଷ୍ଟାବିଂଶତି + ଅ = ଅଷ୍ଟାବିଂଶ | ଅଷ୍ଟାବିଂଶତି + ତମ = ଅଷ୍ଟାବିଂଶତିତମ |
| ଊନତ୍ରିଶତି + ଅ = ଊନତ୍ରିଂଶ | ଊନତ୍ରିଂଶତି + ତମ = ଊନତ୍ରିଂଶତିତମ |
| ତ୍ରିଂଶତ୍ + ଅ = ତ୍ରିଂଶ | ତ୍ରିଂଶତ୍ + ତମ = ତ୍ରିଂଶତ୍ତମ |
| ଏକତ୍ରିଂଶତ୍ + ଅ = ଏକତ୍ରିଂଶ | ଏକତ୍ରିଂଶତ୍ + ତମ = ଏକତ୍ରିଂଶତ୍ତମ |
| ଦ୍ୱାତ୍ରିଂଶତ୍ + ଅ = ଦ୍ୱାତ୍ରିଂଶ | ଦ୍ୱାତ୍ରିଂଶତ୍ + ତମ = ଦ୍ୱାତ୍ରିଂଶତ୍ତମ |
| ତ୍ରୟସ୍ତ୍ରିଂଶତ୍ + ଅ = ତ୍ରୟସ୍ତ୍ରିଂଶ | ତ୍ରୟତ୍ରିଂଶତ୍ + ତମ = ତ୍ରୟତ୍ରିଂଶତ୍ତମ |
| ଚତ୍ୱାରିଂଶତ୍ + ଅ = ଚତ୍ୱାରିଂଶ | ଚତ୍ୱାରିଂଶତ୍ + ତମ = ଚତ୍ୱାରିଂଶତ୍ତମ |
| ପଞ୍ଚାଶତ୍ + ଅ = ପଞ୍ଚାଶ | ପଞ୍ଚାଶତ୍ + ତମ = ପଞ୍ଚାଶତ୍ତମ |

| | |
|---|---|
| **ପୂରଣ ଅର୍ଥରେ 'ତମ' ପ୍ରତ୍ୟୟ** | ସହସ୍ର + ତମ = ସହସ୍ରତମ |
| ଷଷ୍ଟି + ତମ = ଷଷ୍ଟିତମ | ଅୟୁତ + ତମ = ଅୟୁତତମ |
| ସପ୍ତତି + ତମ = ସପ୍ତତିତମ | ଲକ୍ଷ + ତମ = ଲକ୍ଷତମ |
| ଅଶୀତି + ତମ = ଅଶୀତିତମ | ନିୟୁତ + ତମ = ନିୟୁତତମ |
| ନବତି + ତମ = ନବତିତମ | କୋଟି + ତମ = କୋଟିତମ |
| ଶତ + ତମ = ଶତତମ | ଶତକୋଟି + ତମ = ଶତକୋଟିତମ |
| ଏକଷଷ୍ଟି + ତମ = ଏକଷଷ୍ଟିତମ | ଏକଷଷ୍ଟି + ତମ = ଏକଷଷ୍ଟ |
| ଦ୍ୱିଷଷ୍ଟି + ତମ = ଦ୍ୱିଷଷ୍ଟିତମ | ଦ୍ୱିଷଷ୍ଟି + ଅ = ଦ୍ୱିଷଷ୍ଟ |
| ପଞ୍ଚଶତ + ତମ = ପଞ୍ଚଶତତମ | ପଞ୍ଚଶତ + ଅ = ପଞ୍ଚଶତ |
| ଦଶସହସ୍ର+ତମ = ଦଶସହସ୍ରତମ | ଦଶସହସ୍ର + ଅ = ଦଶସହସ୍ର |
| ଶତଲକ୍ଷ + ତମ = ଶତଲକ୍ଷତମ | ଶତଲକ୍ଷ + ଅ = ଶତଲକ୍ଷ |

## ୨୪ ।ଅନିଶ୍ଚୟ ଅର୍ଥରେ ଚନ, ଚିତ୍-ପ୍ରତ୍ୟୟ

| | | |
|---|---|---|
| କଦା + ଚନ = କଦାଚନ | କଦା + ଚିତ୍ = କଦାଚିତ୍ | କ୍ୱ + ଚିତ୍ = କ୍ୱଚିତ୍ |
| କିମ୍ + ଚନ = କିଞ୍ଚନ | ନ-କିମ୍ + ଚନ = ଅକିଞ୍ଚନ | କିମ୍ + ଚିତ୍ = କିଞ୍ଚିତ୍ |

## ୨୫। ଅନ୍ୟାନ୍ୟ ବିଭିନ୍ନାର୍ଥ ତଦ୍ଧିତ ପ୍ରତ୍ୟୟ

ସଭ୍ୟ ଅର୍ଥରେ ଅ-ପ୍ରତ୍ୟୟ - ସଂସଦ୍ + ଅ = ସାଂସଦ

ଆଚରଣ ଅର୍ଥରେ ଇକ - ପ୍ରତ୍ୟୟ - ଧର୍ମ + ଇକ = ଧାର୍ମିକ

ନିଯୁକ୍ତି ଅର୍ଥରେ ଇକ - ପ୍ରତ୍ୟୟ - ଦ୍ୱାର + ଇକ = ଦୌବାରିକ

ଅସହାୟ ଅର୍ଥରେ ଆକିନ୍ - ପ୍ରତ୍ୟୟ - ଏକ + ଆକିନ୍ = ଏକାକୀ

ପିତୃ, ମାତୃ ଅର୍ଥରେ - ଆମହ - ପ୍ରତ୍ୟୟ- ପିତୃ+ଆମହ = ପିତାମହ(ପିତାଙ୍କର ପିତା)

ପ୍ରପିତୃ + ଆମହ = ପ୍ରପିତାମହ (ପିତାମହଙ୍କର ପିତା)

ମାତୃ + ଆମହ = ମାତାମହ (ମାତାଙ୍କର ପିତା)

ପ୍ରମାତୃ + ଆମହ = ପ୍ରମାତାମହ (ମାତାମହଙ୍କ ପିତା)

(ସ୍ତ୍ରୀଲିଙ୍ଗରେ ପିତାମହୀ, ମାତାମହୀ ପ୍ରଭୃତି ହୋଇଥାଏ ।)

ମାତାଙ୍କର ଭାଇ ଅର୍ଥରେ ଉଳ - ପ୍ରତ୍ୟୟ - ମାତୃ + ଉଳ = ମାତୁଳ

## ୨୬ । ଯୋଗ୍ୟ ବା ଉପଯୁକ୍ତ ଅର୍ଥରେ 'ଯ' -ପ୍ରତ୍ୟୟ-

ଦଣ୍ଡ + ଯ = ଦଣ୍ଡ୍ୟ　　ଛେଦ + ଯ = ଛେଦ୍ୟ

ବଧ + ଯ = ବଧ୍ୟ　　ଭେଦ + ଯ = ଭେଦ୍ୟ

ସଭା + ଯ = ସଭ୍ୟ

## ୨୭ । ବାହୁଲ୍ୟ ଅର୍ଥରେ 'ଯ' - ପ୍ରତ୍ୟୟ -

ବାତ+ଯ(ସ୍ତ୍ରୀ-ଆ) = ବାତ୍ୟା　　ବନ(ଜଳ)+ଯ(ସ୍ତ୍ରୀ-ଆ) = ବନ୍ୟା

## ୨୮ । ପ୍ରୟୋଜନାର୍ଥେ 'ଯ'- ପ୍ରତ୍ୟୟ - ନାସା + ଯ = ନସ୍ୟ

## ୨୯ । ବଚନପ୍ରବୀଣ ଅର୍ଥରେ 'ମିନ୍' ପ୍ରତ୍ୟୟ - ବାଚ୍+ମିନ୍ = ବାଗ୍ମୀ

## ୩୦ । ସମୂହ ଅର୍ଥରେ 'ତା' ପ୍ରତ୍ୟୟ - ଜନ + ତା = ଜନତା

## ୩୧ । ସ୍ଥାନ ସମ୍ବନ୍ଧୀୟ 'ତ୍ୟ' ପ୍ରତ୍ୟୟ -

ଅତ୍ର + ତ୍ୟ = ଅତ୍ରତ୍ୟ (ଏଠାକାର)　　ତତ୍ର + ତ୍ୟ = ତତ୍ରତ୍ୟ (ସେଠାକାର)

ଦକ୍ଷିଣ + ତ୍ୟ = ଦାକ୍ଷିଣାତ୍ୟ　　ପଶ୍ଚାତ୍ + ତ୍ୟ = ପାଶ୍ଚାତ୍ୟ

(ପଶ୍ଚାତ୍ + ଯ = ପାଶ୍ଚାତ୍ୟ)

**୩୨ । ସମୟବୋଧକ 'ତନ'-ପ୍ରତ୍ୟୟ -** ଊର୍ଦ୍ଧ୍ୱ + ତନ = ଊର୍ଦ୍ଧ୍ୱତନ

ଅଧୁନା + ତନ = ଅଧୁନାତନ ପ୍ରାଚ୍ + ତନ = ପ୍ରାକ୍ତନ ସଦା + ତନ = ସନାତନ

ସାୟଂ + ତନ = ସାୟଂତନ ପୂର୍ବ + ତନ = ପୂର୍ବତନ ଚିରଂ + ତନ = ଚିରନ୍ତନ

ସାୟମ୍ + ତନ = ସାୟନ୍ତନ ଅଧସ୍ + ତନ = ଅଧସ୍ତନ

ପୁରା + ତନ = ପୁରାତନ ତଦାନୀଂ + ତନ = ତଦାନୀନ୍ତନ

**୩୩ । ବୀପ୍‌ସାର୍ଥକ 'ଶଃ'-ପ୍ରତ୍ୟୟ -**

ପ୍ରାୟ + ଶଃ = ପ୍ରାୟଶଃ ଖଣ୍ଡ + ଶଃ = ଖଣ୍ଡଶଃ କ୍ରମ + ଶଃ = କ୍ରମଶଃ

ବହୁ + ଶଃ = ବହୁଶଃ ଅନେକ + ଶସ୍ = ଅନେକଶଃ (ଅନେକଥର)

ଅଳ୍ପ + ଶସ୍ = ଅଳ୍ପଶଃ

**୩୪ । ସପ୍ତମୀ ବିଭକ୍ତି ଅର୍ଥରେ 'ତ୍ର'-ପ୍ରତ୍ୟୟ -**

କିମ୍ + ତ୍ର = କୁତ୍ର ଏକ + ତ୍ର = ଏକତ୍ର

ଯଦ୍ + ତ୍ର = ଯତ୍ର ଅନ୍ୟ + ତ୍ର = ଅନ୍ୟତ୍ର

ତଦ୍ + ତ୍ର = ତତ୍ର ସର୍ବ + ତ୍ର = ସର୍ବତ୍ର

ଇଦମ୍ + ତ୍ର = ଅତ୍ର(ଏଠାରେ) ଉଭୟ + ତ୍ର = ଉଭୟତ୍ର

**୩୫ । ପଞ୍ଚମୀ ଓ ସପ୍ତମୀ ବିଭକ୍ତି ଅର୍ଥରେ 'ତସ୍' ପ୍ରତ୍ୟୟ-**

ସର୍ବ + ତସ୍ = ସର୍ବତଃ ବସ୍ତୁ + ତସଃ = ବସ୍ତୁତଃ

ଦୂର + ତସ୍ = ଦୂରତଃ ଅନ୍ତ + ତସ୍ = ଅନ୍ତତଃ

ଫଳ + ତସ୍ = ଫଳତଃ ସମ୍ଭବ + ତସ୍ = ସମ୍ଭବତଃ

**୩୬ । 'ପ୍ରୋକ୍ତ', 'କୃତ' ବା 'ରଚିତ' ଅର୍ଥରେ-**

ପତଞ୍ଜଳି + ଅ = ପାତଞ୍ଜଳ ଋଷି + ଅ = ଆର୍ଷ

ବଶିଷ୍ଠ + ଅ = ବାଶିଷ୍ଠ କଣାଦ + ଅ = କାଣାଦ

କପିଳ + ଅ = କାପିଳ ଶଂଖ + ଅ = ଶାଂଖ

ଦେବ + ଅ = ଦୈବ ଶିବ + ଅ = ଶୈବ

**୩୭ । କ୍ଷୁଦ୍ରାର୍ଥରେ 'ଈ' ପ୍ରତ୍ୟୟ-**

ନଦ + ଈ = ନଦୀ ଘଟ + ଈ = ଘଟୀ

**୩୮ । ରଞ୍ଜିତ ଅର୍ଥରେ 'ଅ' ପ୍ରତ୍ୟୟ-**

ହରିଦ୍ରା+ଅ = ହାରିଦ୍ର କପିଶ+ଅ = କାପିଶ ମଞ୍ଜିଷ୍ଠା+ଅ = ମାଞ୍ଜିଷ୍ଠ

## ଓଡ଼ିଆ ତଦ୍ଧିତ ପ୍ରତ୍ୟୟ

### ୧ । ଅଛି ଅର୍ଥକ ପ୍ରତ୍ୟୟ-

#### ଆ-ପ୍ରତ୍ୟୟ

ଚୁଟି + ଆ = ଚୁଟିଆ　　ପେଟ + ଆ = ପେଟା　　କାଛୁ + ଆ = କାଛୁଆ
ଗଣ୍ଠି + ଆ = ଗଣ୍ଠିଆ　　ରୋଗ + ଆ = ରୋଗା　　ଜାଦୁ + ଆ = ଜାଦୁଆ
ଜାତି + ଆ = ଜାତିଆ　　କୁଜ + ଆ = କୁଜା　　ପାଣି + ଆ = ପାଣିଆ
ଦାଢ଼ି + ଆ = ଦାଢ଼ିଆ　　ଦନ୍ତ + ଆ = ଦନ୍ତା　　କୁହୁଡ଼ି + ଆ = କୁହୁଡ଼ିଆ

#### ଆଳ-ପ୍ରତ୍ୟୟ

ଗଣ୍ଠି + ଆଳ = ଗଣ୍ଠିଆଳ　　ଶିଙ୍ଗ + ଆଳ = ଶିଙ୍ଗାଳ　　ପଙ୍କ + ଆଳ = ପଙ୍କାଳ

#### ଆଳିଆ-ପ୍ରତ୍ୟୟ

କଣ୍ଟା + ଆଳିଆ = କଣ୍ଟାଳିଆ　　ମୁଣ୍ଡ + ଆଳିଆ = ମୁଣ୍ଡାଳିଆ
ଝଙ୍କା + ଆଳିଆ = ଝଙ୍କାଳିଆ　　କଷା + ଆଳିଆ = କଷାଳିଆ
ଖଦା + ଆଳିଆ = ଖଦାଳିଆ　　ଖଟା + ଆଳିଆ = ଖଟାଳିଆ

#### ଇଆଳି(ଳୀ)ପ୍ରତ୍ୟୟ

କଣ୍ଟା + ଇଆଳି = କଣ୍ଟିଆଳି　　ଦୁଧ + ଇଆଳୀ = ଦୁଧିଆଳୀ

#### ଇଆ-ପ୍ରତ୍ୟୟ

ମୁନ + ଇଆ = ମୁନିଆ　　ଜଟା + ଇଆ = ଜଟିଆ
ଲୁଣ + ଇଆ = ଲୁଣିଆ　　ଗନ୍ଧ + ଇଆ = ଗନ୍ଧିଆ
କପଟ + ଇଆ = କପଟିଆ　　ହଟ + ଇଆ = ହଟିଆ
ଲାଙ୍ଗୁଡ଼ + ଇଆ = ଲାଙ୍ଗୁଡ଼ିଆ　　ଅନ୍ଧାର + ଇଆ = ଅନ୍ଧାରିଆ

#### ଇଆର-ପ୍ରତ୍ୟୟ

ହୋସ୍ + ଇଆର = ହୋସିଆର, ହୁସିଆର　　ବଳ + ଇଆର = ବଳିଆର

#### ଈ-ପ୍ରତ୍ୟୟ

ଦାଗ + ଈ = ଦାଗୀ　　ଭାର + ଈ = ଭାରୀ　　ମଉଜ + ଈ = ମଉଜୀ
ହିସାବ + ଈ = ହିସାବୀ　　ଭୋକ + ଈ = ଭୋକୀ　　ରୋଗ + ଈ = ରୋଗୀ
ଶୋଷ + ଈ = ଶୋଷୀ　　ଧନ + ଈ = ଧନୀ　　ଅଭାବ + ଈ = ଅଭାବୀ

### ଉଆ-ପ୍ରତ୍ୟୟ

ଧାର + ଉଆ = ଧାରୁଆ    ପେଜ + ଉଆ = ପେଜୁଆ    ପେଟ + ଉଆ = ପେଟୁଆ
ରସ + ଉଆ = ରସୁଆ    ପାଠ + ଉଆ = ପାଠୁଆ    ପଙ୍କ + ଉଆ = ପଙ୍କୁଆ
ନିଶ + ଉଆ = ନିଶୁଆ    ହାଡ଼ + ଉଆ = ହାଡୁଆ    ଫାଟ + ଉଆ = ଫାଟୁଆ
ମେଘ + ଉଆ = ମେଘୁଆ    ଦଳ + ଉଆ = ଦଳୁଆ    ଲାଳ + ଉଆ = ଲାଳୁଆ
ଦାଢ଼ + ଉଆ = ଦାଢୁଆ    ରାଗ + ଉଆ = ରାଗୁଆ    ଟାଣ + ଉଆ = ଟାଣୁଆ

### ଉଆଳ-ପ୍ରତ୍ୟୟ

ରସ + ଉଆଳ = ରସୁଆଳ

### ଉରା-ପ୍ରତ୍ୟୟ

ଦାନ୍ତ + ଉରା = ଦାନ୍ତୁରା    କାନ୍ଦ + ଉରା = କାନ୍ଦୁରା    ମନ୍ତ୍ର(ମନ୍ତ)+ଉରା = ମନ୍ତୁରା

### ଉକ-ପ୍ରତ୍ୟୟ

ଲାଜ + ଉକ = ଲାଜୁକ    ପେଟ + ଉକ = ପେଟୁକ

### ଏଇ-ପ୍ରତ୍ୟୟ

ମିଠା + ଏଇ = ମିଠେଇ    ଖଟା + ଏଇ = ଖଟେଇ

### ଡା-ପ୍ରତ୍ୟୟ

ଚମ + ଡା = ଚମଡ଼ା    ଚକ + ଡା = ଚକଡ଼ା    ବାଙ୍କ + ଡା = ବାଙ୍କଡ଼ା

### ଦାର-ପ୍ରତ୍ୟୟ (ଅଛି ବା ଆଧିପତ୍ୟ ଅର୍ଥରେ)

ଭାଗ + ଦାର = ଭାଗୀଦାର, ଭାଗଦାର    ଅଂଶ + ଦାର = ଅଂଶୀଦାର
ଜମି + ଦାର = ଜମିଦାର    ଦୋକାନ + ଦାର = ଦୋକାନଦାର
ସୁବା + ଦାର = ସୁବାଦାର

### ବନ୍ତ, ମନ୍ତ-ପ୍ରତ୍ୟୟ (ଅଛି ଅର୍ଥରେ)

ଶ୍ରୀ + ବନ୍ତ = ଶ୍ରୀବନ୍ତ    ଗୁଣ + ମନ୍ତ = ଗୁଣମନ୍ତ
ଗୁଣ + ବନ୍ତ = ଗୁଣବନ୍ତ    ଶ୍ରୀ + ମନ୍ତ = ଶ୍ରୀମନ୍ତ
ଯଶଃ + ବନ୍ତ = ଯଶୋବନ୍ତ    ବୁଦ୍ଧି + ମନ୍ତ = ବୁଦ୍ଧିମନ୍ତ
ବାଲି + ବନ୍ତ = ବାଲିବନ୍ତ    ହନୁ + ମନ୍ତ = ହନୁମନ୍ତ
ବଳ + ବନ୍ତ = ବଳବନ୍ତ    ଭାଗ୍ୟ + ବନ୍ତ = ଭାଗ୍ୟବନ୍ତ

### ବାଲା-ପ୍ରତ୍ୟୟ (ଅଧିକାର ବା ବୃତ୍ତି ଅର୍ଥରେ)

ମାଛ + ବାଲା = ମାଛବାଲା    ଜମି + ବାଲା = ଜମିବାଲା

ମୁଢ଼ି + ବାଲା = ମୁଢ଼ିବାଲା ପାଲା + ବାଲା = ପାଲାବାଲା
ଚୁଡ଼ା + ବାଲା = ଚୁଡ଼ାବାଲା ବାଜା + ବାଲା = ବାଜାବାଲା
ପହରା + ବାଲା = ପହରାବାଲା
ପଇସା + ବାଲା = ପଇସାବାଲା ଗାଡ଼ି + ବାଲା = ଗାଡ଼ିବାଲା
ଘର + ବାଲା = ଘରବାଲା ଥିବା + ବାଲା = ଥିବାବାଲା
ରିକ୍ସା + ବାଲା = ରିକ୍ସାବାଲା ଖିର + ବାଲା = ଖିରବାଲା

**ଟିଆ-ପ୍ରତ୍ୟୟ (ପ୍ରଚୁର ଅର୍ଥରେ)**

କଷା + ଟିଆ = କଷାଟିଆ (ଈଷତ୍ ଅର୍ଥରେ) ଧୂଆଁ + ଟିଆ = ଧୂଆଁଟିଆ
ଖରା + ଟିଆ = ଖରାଟିଆ (ସମ୍ବନ୍ଧ ଅର୍ଥରେ)
ଏକା + ଟିଆ = ଏକାଟିଆ, ଏକୁଟିଆ (ଅସହାୟ ଅର୍ଥରେ)

**୨ । ଅଭ୍ୟାସ ବା ନିପୁଣ ଅର୍ଥର ପ୍ରତ୍ୟୟ- ଆ, ଆଳି, ଉଆ, ଉରା, ଖୋର, ବାଜ**

**ଆ-ପ୍ରତ୍ୟୟ**

ଅଫିମ + ଆ = ଅଫିମା ଆପୁ + ଆ = ଆପୁଆ ଗାଲୁ + ଆ = ଗାଲୁଆ

**ଆଳି-ପ୍ରତ୍ୟୟ**

ଖେଳ+ଆଳି = ଖେଳାଳି ପଢ଼ା+ଆଳି = ପଢ଼ାଳି ଦେଖା+ଆଳି = ଦେଖାଳି
ପହଁରା+ଆଳି = ପହଁରାଳି ଚଳା+ଆଳି = ଚଳାଳି ଚଖା+ଆଳି = ଚଖାଳି

**ଉଆ-ପ୍ରତ୍ୟୟ**

ମିଛ+ଉଆ = ମିଛୁଆ ଲାଞ୍ଚ+ଉଆ = ଲାଞ୍ଚୁଆ ଖଚ+ଉଆ = ଖଚୁଆ
ମାଡ଼+ଉଆ = ମାଡୁଆ ଡର+ଉଆ = ଡରୁଆ ପାଢ଼+ଉଆ = ପାଢୁଆ
ଗାଲ+ଉଆ = ଗାଲୁଆ ମଦ+ଉଆ = ମଦୁଆ ଭାଙ୍ଗ+ଉଆ = ଭାଙ୍ଗୁଆ

**ଉରା-ପ୍ରତ୍ୟୟ**

ହଗ+ଉରା = ହଗୁରା ମୂତ+ଉରା = ମୂତୁରା କାନ୍ଦ+ଉରା = କାନ୍ଦୁରା
ସତ+ଉରା = ସତୁରା ମିଛ+ଉରା = ମିଛୁରା

**ଖୋର-ପ୍ରତ୍ୟୟ**

ନିଶା + ଖୋର = ନିଶାଖୋର ଅଫିମ + ଖୋର = ଅଫିମଖୋର
ଗଞ୍ଜା + ଖୋର = ଗଞ୍ଜାଖୋର ମଦ + ଖୋର = ମଦଖୋର

ଚା + ଖୋର = ଚାଖୋର
ଟିଭି + ଖୋର = ଟିଭିଖୋର
ଗୁଲି + ଖୋର = ଗୁଲିଖୋର
ଯୁଦ୍ଧ + ଖୋର = ଯୁଦ୍ଧଖୋର
ଜିଦ୍ + ଖୋର = ଜିଦ୍‌ଖୋର
କ୍ଷମତା + ଖୋର = କ୍ଷମତାଖୋର
ମାମଲା + ଖୋର = ମାମଲାଖୋର
ସୁଧ + ଖୋର = ସୁଧଖୋର

### ବାଜ-ପ୍ରତ୍ୟୟ

ମାମଲା + ବାଜ = ମାମଲାବାଜ
ଧପା + ବାଜ = ଧପାବାଜ
ଅକଡ଼ + ବାଜ = ଅକଡ଼ବାଜ
ଅକଲ + ବାଜ = ଅକଲବାଜ
ଦଗା + ବାଜ = ଦଗାବାଜ
ଫନ୍ଦି + ବାଜ = ଫନ୍ଦିବାଜ
ଧୋକା + ବାଜ = ଧୋକାବାଜ
ଫୁର୍ତ୍ତି + ବାଜ = ଫୁର୍ତ୍ତିବାଜ

## ୩ । ଅନାଦର/ସମ୍ବୋଧନ ଅର୍ଥରେ ପ୍ରତ୍ୟୟ (ଆ, ଇଆ, ଟା)

### ଆ-ପ୍ରତ୍ୟୟ

ଦାମ + ଆ = ଦାମା
ରାମ + ଆ = ରାମା
ହରି + ଆ = ହରିଆ
ମଧୁ+ ଆ = ମଧୁଆ
ସାଧୁ + ଆ = ସାଧୁଆ
ଯଦୁ + ଆ = ଯଦୁଆ

### ଇଆ-ପ୍ରତ୍ୟୟ

ଗୋପାଳ + ଇଆ = ଗୋପାଳିଆ
ରାମ + ଇଆ = ରାମିଆ
ମାଧବ (ମାଧ) + ଇଆ = ମାଧିଆ
ଦାମ + ଇଆ = ଦାମିଆ
ଶ୍ୟାମ + ଇଆ = ଶାମିଆ (ଶ୍ୟାମିଆ)

### ଟା-ପ୍ରତ୍ୟୟ

ଛୋଟା+ଟା = ଛୋଟାଟା
ଲୋକ+ଟା = ଲୋକଟା
ବୋକା+ଟା = ବୋକାଟା
ବୁଢ଼ା+ଟା = ବୁଢ଼ାଟା
ଭେଣ୍ଡା+ଟା = ଭେଣ୍ଡାଟା
ଟୋକା+ଟା = ଟୋକାଟା
ମୂର୍ଖ+ଟା = ମୂର୍ଖଟା
ଅଳସୁଆ+ଟା= ଅଳସୁଆଟା
ନିର୍ବୋଧ+ଟା= ନିର୍ବୋଧଟା

## ୪ । ଅତିଶୟ ଅର୍ଥରେ- ଇଆ ପ୍ରତ୍ୟୟ

କପାଳ+ଇଆ = କପାଳିଆ
ମୁନ+ଇଆ = ମୁନିଆ
ଲୁଣ+ଇଆ = ଲୁଣିଆ
ପାଣି+ଇଆ = ପାଣିଆ
ତେଲ+ଇଆ=ତେଲିଆ
ଆମ୍ବିଳ+ଇଆ=ଆମ୍ବିଳିଆ

## ୫ । ଅଧିକାର ଅର୍ଥରେ- (ଦାର, ବାଲା-ପ୍ରତ୍ୟୟ)

### ଦାର-ପ୍ରତ୍ୟୟ

ଜମି + ଦାର = ଜମିଦାର
ଅଂଶ + ଦାର = ଅଂଶୀଦାର

ଦୋକାନ + ଦାର = ଦୋକାନଦାର        ଭାଗ + ଦାର = ଭାଗୀଦାର
ସିରସ୍ତା + ଦାର = ସିରସ୍ତାଦାର

**ବାଲା-ପ୍ରତ୍ୟୟ**

ଘର + ବାଲା = ଘରବାଲା        ଗାଡ଼ି + ବାଲା = ଗାଡ଼ିବାଲା
ଜମି + ବାଲା = ଜମିବାଲା        ଦୋକାନ + ବାଲା = ଦୋକାନବାଲା

**୬ । ଅସହାୟ ଅର୍ଥରେ- ଟିଆ ପ୍ରତ୍ୟୟ**

ଏକା + ଟିଆ = ଏକାଟିଆ, ଏକୁଟିଆ

**୭ । ଆଦର ଅର୍ଥରେ-ଟି**

ପୁଅ + ଟି = ପୁଅଟି    ଝିଅ + ଟି = ଝିଅଟି    ପିଲା + ଟି = ପିଲାଟି
ବହି + ଟି = ବହିଟି    ଫୁଲ + ଟି = ଫୁଲଟି    କଥା + ଟି = କଥାଟି

**୮ । ଆକୃତି ବା ସାଦୃଶ୍ୟାର୍ଥକ ପ୍ରତ୍ୟୟ**

**ଆଳିଆ-ପ୍ରତ୍ୟୟ**

ଧୂଆଁ + ଆଳିଆ = ଧୂଆଁଳିଆ

**ଇଆ-ପ୍ରତ୍ୟୟ**

ବାଇଗଣ + ଇଆ = ବାଇଗଣିଆ        ଶୁଆନାକ + ଇଆ = ଶୁଆନାକିଆ
ଚାଉଳ + ଇଆ = ଚାଉଳିଆ        ମଢ଼ + ଇଆ = ମଢ଼ିଆ
ସୋରିଷ + ଇଆ = ସୋରିଷିଆ        କରମଙ୍ଗା + ଇଆ = କରମଙ୍ଗିଆ
କଲରାପତର + ଇଆ = କଲରାପତରିଆ        ଚାଉଳ + ଇଆ = ଚାଉଳିଆ
ପରବତ + ଇଆ = ପରବତିଆ        ପଥର + ଇଆ = ପଥୁରିଆ
ହଳଦି + ଇଆ = ହଳଦିଆ        ଶୁଆପକ୍ଷୀ + ଇଆ = ଶୁଆପକ୍ଷିଆ
ବଉଳଫୁଲ + ଇଆ = ବଉଳଫୁଲିଆ        ହରଡ଼ଫାଳ + ଇଆ = ହରଡ଼ଫାଳିଆ
ବିରୁଡ଼ି + ଇଆ = ବିରୁଡ଼ିଆ        କୁକୁର + ଇଆ = କୁକୁରିଆ

**'ଈ' ପ୍ରତ୍ୟୟ**

ଗୋଲାପ + ଈ = ଗୋଲାପୀ        କଳାମେଘ + ଈ = କଳାମେଘୀ
ମୟୂରକଣ୍ଠ + ଈ = ମୟୂରକଣ୍ଠୀ        ବାଇଗଣ + ଈ = ବାଇଗଣୀ

**ଉଆ-ପ୍ରତ୍ୟୟ**

କାଠ + ଉଆ = କାଠୁଆ        ବାଘ + ଉଆ = ବାଘୁଆ

ସିଠା + ଉଆ = ସିଠୁଆ ଶାଗ + ଉଆ = ଶାଗୁଆ

ରାହୁ + ଉଆ = ରାହୁଆ ଭାଲୁ + ଉଆ = ଭାଲୁଆ

କଖାରୁ + ଉଆ = କଖାରୁଆ

**ଉରା-ପ୍ରତ୍ୟୟ**

ଭୂତ + ଉରା = ଭୂତୁରା (ମୁଣ୍ଡ)

**ଏଲି-ପ୍ରତ୍ୟୟ**

ସୁନା + ଏଲି = ସୁନେଲି ରୁପା + ଏଲି = ରୁପେଲି

**ଚିଆ-ପ୍ରତ୍ୟୟ**

ମାଈ + ଚିଆ = ମାଈଚିଆ ପାଣି + ଚିଆ = ପାଣିଚିଆ

**ଡା-ପ୍ରତ୍ୟୟ**

ଆମ୍ବ + ଡା = ଆମ୍ବଡ଼ା ଶିଙ୍ଗ + ଡ଼ା = ଶିଙ୍ଗଡ଼ା

**ରା-ପ୍ରତ୍ୟୟ**

ପେଟ + ରା = ପେଟରା

**୯ । ଭାବ ଅର୍ଥକ ପ୍ରତ୍ୟୟ (ଭାବ-ଗୁଣ, ଅବସ୍ଥା, କର୍ମ)**

**ଆ-ପ୍ରତ୍ୟୟ**

ବେଠି + ଆ = ବେଠିଆ ମେଳି + ଆ = ମେଳିଆ

**ଆନି-ପ୍ରତ୍ୟୟ**

ବାବୁ + ଆନି = ବାବୁଆନି ସାହେବ + ଆନି = ସାହେବାନି

**ଆମି-ପ୍ରତ୍ୟୟ**

ଠକ+ଆମି = ଠକାମି ବୋକା+ଆମି = ବୋକାମି ପାଗଳ+ଆମି = ପାଗଳାମି

ଦୁଷ୍ଟ+ଆମି = ଦୁଷ୍ଟାମି ମୂର୍ଖ+ଆମି = ମୂର୍ଖାମି ଚଗଲା+ଆମି = ଚଗଲାମି

ଭଣ୍ଡ+ଆମି = ଭଣ୍ଡାମି ଛତର+ଆମି = ଛତରାମି ବାଚାଳ+ଆମି= ବାଚାଳାମି

ଗୁଣ୍ଡା+ଆମି = ଗୁଣ୍ଡାମି ଭଦ୍ର+ଆମି = ଭଦ୍ରାମି ଛିଗୁଲା+ଆମି = ଛିଗୁଲାମି

**ଇ-ପ୍ରତ୍ୟୟ**

ଡାକ୍ତର + ଇ = ଡାକ୍ତରି ନବାବ + ଇ = ନବାବି

ମୁକ୍ତାର + ଇ = ମୁକ୍ତାରି ଚାକର + ଇ = ଚାକିରି

ହାକିମ + ଇ = ହାକିମି ମାଷ୍ଟର + ଇ = ମାଷ୍ଟରି

ଦଗାଦାର + ଇ = ଦଗାଦାରି ଗହଳ + ଇ = ଗହଳି

ଦଫାଦାର + ଇ = ଦଫାଦାରି    ମହାଜନ + ଇ = ମହାଜନି
ଜମିଦାର + ଇ = ଜମିଦାରି    ବାହାଦୁର + ଇ = ବାହାଦୁରି
କାରିଗର + ଇ = କାରିଗରି    ଦଗାବାଜ + ଇ = ଦଗାବାଜି

### ଇମା-ପ୍ରତ୍ୟୟ

ବଡ଼ + ଇମା = ବଡ଼ିମା    ବଙ୍କା + ଇମା = ବଙ୍କିମା

### ଏଇ-ପ୍ରତ୍ୟୟ

ବଡ଼+ଏଇ = ବଡ଼େଇ    ସଫା+ଏଇ = ସଫେଇ    ମଜା+ଏଇ = ମଜେଇ
ଲିପା+ଏଇ = ଲିପେଇ    ପୋଛା+ଏଇ = ପୋଛେଇ    ବଛା+ଏଇ = ବଛେଇ
ମୋଟା+ଏଇ = ମୋଟେଇ    ଲେଖା+ଏଇ = ଲେଖେଇ    ଭଜା+ଏଇ = ଭଜେଇ

### ଗିରି-ପ୍ରତ୍ୟୟ

ବାବୁ + ଗିରି = ବାବୁଗିରି    ଦାଦା + ଗିରି = ଦାଦାଗିରି
କିରାଣି + ଗିରି = କିରାଣିଗିରି    ମାଷ୍ଟର + ଗିରି = ମାଷ୍ଟରଗିରି
ଗୁଣ୍ଡା + ଗିରି = ଗୁଣ୍ଡାଗିରି    ଗୁମାସ୍ତା + ଗିରି = ଗୁମାସ୍ତାଗିରି

### ପଣ/ପଣିଆ-ପ୍ରତ୍ୟୟ

ସୁନ୍ଦର + ପଣ = ସୁନ୍ଦରପଣ    ସୁନ୍ଦର + ପଣିଆ = ସୁନ୍ଦରପଣିଆ
ଦାତା + ପଣ = ଦାତାପଣ    ଦାତା + ପଣିଆ = ଦାତାପଣିଆ
ମୂର୍ଖ + ପଣ = ମୂର୍ଖପଣ    ମୂର୍ଖ + ପଣିଆ = ମୂର୍ଖପଣିଆ
ପଣ୍ଡିତ + ପଣ = ପଣ୍ଡିତପଣ    ପଣ୍ଡିତ + ପଣିଆ = ପଣ୍ଡିତପଣିଆ
ବ୍ରାହ୍ମଣ + ପଣ = ବ୍ରାହ୍ମଣପଣ    ବ୍ରାହ୍ମଣ + ପଣିଆ = ବ୍ରାହ୍ମଣପଣିଆ
ବଡ଼ + ପଣ = ବଡ଼ପଣ    ବଡ଼ + ପଣିଆ = ବଡ଼ପଣିଆ
ମହତ + ପଣ = ମହତପଣ    ମହତ + ପଣିଆ = ମହତପଣିଆ
ବୀର + ପଣ = ବୀରପଣ    ବୀର + ପଣିଆ = ବୀରପଣିଆ

## ୧୦ । ବୃତ୍ତି ବା ବ୍ୟବସାୟ ଅର୍ଥରେ ପ୍ରତ୍ୟୟ

### ଆ-ପ୍ରତ୍ୟୟ

ମାଟି + ଆ = ମାଟିଆ (ଜାତିବିଶେଷ-ମାଟି ଖୋଳିବା ବୃତ୍ତି ଯାହାର)
ଛେଳି + ଆ = ଛେଳିଆ    ଘୁଷୁରି + ଆ = ଘୁଷୁରିଆ

### ଆତି-ପ୍ରତ୍ୟୟ

ଓକିଲ + ଆତି = ଓକିଲାତି

### ଆରି-ପ୍ରତ୍ୟୟ

ପୂଜା + ଆରି = ପୂଜାରି    କଂସା + ଆରି = କଂସାରି    ସୁନା + ଆରି = ସୁନାରି

ଭିକ + ଆରି = ଭିକାରି    ଶଂଖା + ଆରି = ଶଂଖାରି

### ଆଳ-ପ୍ରତ୍ୟୟ

ମଇଁଷି + ଆଳ = ମଇଁଷିଆଳ    ଗାଈ + ଆଳ = ଗାଈଆଳ

ପାଇଟି + ଆଳ = ପାଇଟିଆଳ    ହାତୀ + ଆଳ = ହାତୀଆଳ

### ଆଳି-ପ୍ରତ୍ୟୟ

ବୁଣା + ଆଳି = ବୁଣାଳି    ଜଗା + ଆଳି = ଜଗାଳି

ବଟା + ଆଳି = ବଟାଳି    ଖେଳ + ଆଳି = ଖେଳାଳି

ଛପର + ଆଳି = ଛପରାଳି    ଛୁଆ + ଆଳି = ଛୁଆଳି

ଧାନକଟା + ଆଳି = ଧାନକଟାଳି    ବଛା + ଆଳି = ବଛାଳି

### ଇ-ପ୍ରତ୍ୟୟ

ଡାକ୍ତର + ଇ = ଡାକ୍ତରି    ମୁକ୍ତାର + ଇ = ମୁକ୍ତାରି

ମୋହରିର + ଇ = ମୋହରିରି    ଚାକର + ଇ = ଚାକିରି, ଚାକରି

ନୌକର + ଇ = ନୌକରି

### ଇଆ-ପ୍ରତ୍ୟୟ

ମୂଳ + ଇଆ = ମୂଳିଆ    ହଳ + ଇଆ = ହଳିଆ

ଢୋଲ + ଇଆ = ଢୋଲିଆ    ଚାକର + ଇଆ = ଚାକିରିଆ, ଚାକରିଆ

କୀର୍ତ୍ତନ + ଇଆ = କୀର୍ତ୍ତନିଆ    ଶଗଡ଼ + ଇଆ = ଶଗଡ଼ିଆ

ପଥୁରି + ଇଆ = ପଥୁରିଆ    ଗୁଡ଼ + ଇଆ = ଗୁଡ଼ିଆ

ଘାଟ + ଇଆ = ଘାଟିଆ    ଜାଲ + ଇଆ = ଜାଲିଆ

ମହୁରି + ଇଆ = ମହୁରିଆ    କାହାଳୀ + ଇଆ = କାହାଳିଆ

ମାଦଳ + ଇଆ = ମାଦଳିଆ

### ଈ-ପ୍ରତ୍ୟୟ

ଦୋକାନ + ଈ = ଦୋକାନୀ    ତନ୍ତ + ଈ = ତନ୍ତୀ    ମାଳା + ଈ = ମାଳୀ

ତେଲ + ଈ = ତେଲୀ

### ଉଆ-ପ୍ରତ୍ୟୟ

ହାଟ + ଉଆ = ହାଟୁଆ ନାଟ + ଉଆ = ନାଟୁଆ ବାଣ + ଉଆ = ବାଣୁଆ

ସାପ + ଉଆ = ସାପୁଆ ଭାର + ଉଆ = ଭାରୁଆ ଦାନ + ଉଆ = ଦାନୁଆ

ହଳ + ଉଆ = ହଳୁଆ ଜଗା + ଉଆ = ଜଗୁଆ ଶଂଖ + ଉଆ = ଶଂଖୁଆ

ମାଛ + ଉଆ = ମାଛୁଆ ଜାଲ + ଉଆ = ଜାଲୁଆ ଘଣ୍ଟ + ଉଆ = ଘଣ୍ଟୁଆ

### ଉଆଳ-ପ୍ରତ୍ୟୟ

ଜଗା + ଉଆଳ = ଜଗୁଆଳ ରଖା + ଉଆଳ = ରଖୁଆଳ

ଖେଳ + ଉଆଳ = ଖେଳୁଆଳ ମଙ୍ଗ + ଉଆଳ = ମଙ୍ଗୁଆଳ

### ଉରିଆ-ପ୍ରତ୍ୟୟ

ନାଆ + ଉରିଆ = ନାଉରିଆ କାଠ + ଉରିଆ = କାଠୁରିଆ

### ଗର-ପ୍ରତ୍ୟୟ

ସୌଦା + ଗର = ସୌଦାଗର କାରି + ଗର = କାରିଗର

ବାଜି + ଗର = ବାଜିଗର ଯାଦୁ + ଗର = ଯାଦୁଗର

### ଦାର-ପ୍ରତ୍ୟୟ

ଖରିଦ + ଦାର = ଖରିଦଦାର ସିରସ୍ତା + ଦାର = ସିରସ୍ତାଦାର

ଚୌକି + ଦାର = ଚୌକିଦାର ଖାତା + ଦାର = ଖାତାଦାର

ପେସା + ଦାର = ପେସାଦାର ବାଜା + ଦାର = ବାଜାଦାର

ଦଗା + ଦାର = ଦଗାଦାର ଦଫା + ଦାର = ଦଫାଦାର

ଟିକା + ଦାର = ଟିକାଦାର ପଟା + ଦାର = ପଟାଦାର

ନିଲାମ + ଦାର = ନିଲାମଦାର ମାରଫତ୍ + ଦାର = ମାରଫତ୍‌ଦାର

### ବାଲା-ପ୍ରତ୍ୟୟ

ଘର + ବାଲା = ଘରବାଲା

ଚୁଡ଼ି + ବାଲା = ଚୁଡ଼ିବାଲା ଠୁଙ୍ଗା + ବାଲା = ଠୁଙ୍ଗାବାଲା

ଫେରି + ବାଲା = ଫେରିବାଲା କ୍ଷୀର + ବାଲା = କ୍ଷୀରବାଲା

ପାଲା + ବାଲା = ପାଲାବାଲା ବାଜା + ବାଲା = ବାଜାବାଲା

ମୁଢ଼ି + ବାଲା = ମୁଢ଼ିବାଲା ପାନ + ବାଲା = ପାନବାଲା

ପରିବା + ବାଲା = ପରିବାବାଲା ମାଛ + ବାଲା = ମାଛବାଲା

ପହରା + ବାଲା = ପହରାବାଲା    ପେପର + ବାଲା = ପେପରବାଲା
କାଠ + ବାଲା = କାଠବାଲା    କାବୁଲି + ବାଲା = କାବୁଲିବାଲା

**ରା-ପ୍ରତ୍ୟୟ**

ପାନ + ରା - ପାନରା    କାଚ + ରା = କାଚରା    ଚୂନ + ରା = ଚୂନରା
ପାଟ + ରା = ପାଟରା    ଖଡ୍ଡୁ + ରା = ଖଡ୍ଡୁରା    ଟିଣ + ରା = ଟିଣରା

**୧୧ । ସମ୍ବନ୍ଧ ଅର୍ଥକ ପ୍ରତ୍ୟୟ**

**ଆ-ପ୍ରତ୍ୟୟ**

ଆଣ୍ଠୁ + ଆ = ଆଣ୍ଠୁଆ    କହୁଣୀ + ଆ = କହୁଣିଆ

**ଆଣ-ପ୍ରତ୍ୟୟ**

ଛାତି + ଆଣ = ଛାତିଆଣ

**ଆଳି-ପ୍ରତ୍ୟୟ**

ଭାଇ + ଆଳି = ଭାଇଆଳି    ଚଇତ + ଆଳି = ଚଇତାଳି

**ଇଆ-ପ୍ରତ୍ୟୟ**

ଖରାଦିନ + ଇଆ = ଖରାଦିନିଆ    ସହର + ଇଆ = ସହରିଆ
ଦେଉଳ + ଇଆ = ଦେଉଳିଆ    ଗଉଡ଼ + ଇଆ = ଗଉଡ଼ିଆ
ରବିବାର + ଇଆ = ରବିବାରିଆ    ଫାଳ + ଇଆ = ଫାଳିଆ
ବଜାର + ଇଆ = ବଜାରିଆ    ମଫସଲ + ଇଆ = ମଫସଲିଆ
ପହରକ + ଇଆ = ପହରକିଆ    ସକାଳ + ଇଆ = ସକାଳିଆ
ଦିଓଳି + ଇଆ = ଦିଓଳିଆ    କାର୍ତ୍ତିକ + ଇଆ = କାର୍ତ୍ତିକିଆ
ମାସକ + ଇଆ = ମାସିକିଆ    ବର୍ଷକ + ଇଆ= ବର୍ଷକିଆ, ବର୍ଷିକିଆ
ଗଡ଼ଜାତ + ଇଆ = ଗଡ଼ଜାତିଆ    ଦ୍ୱିପହର + ଇଆ = ଦ୍ୱିପହରିଆ

**ଇ-ପ୍ରତ୍ୟୟ**

ଓଡ଼ିଶା + ଇ = ଓଡ଼ିଶୀ    କଟକ + ଇ = କଟକୀ
ସମ୍ବଲପୁର + ଇ = ସମ୍ବଲପୁରୀ    ବନାରସ + ଇ = ବନାରସୀ
କାନ୍‌ପୁର + ଇ = କାନପୁରୀ    ଦକ୍ଷିଣ + ଇ = ଦକ୍ଷିଣୀ
କଲିକତା + ଇ = କଲିକତୀ    ବିଲାତ + ଇ = ବିଲାତୀ
ବାଣପୁର + ଇ = ବାଣପୁରୀ    ରଣପୁର + ଇ = ରଣପୁରୀ
ସିଂହଳ + ଇ = ସିଂହଳୀ    ନେପାଳ + ଇ = ନେପାଳୀ

### ଉଆ-ପ୍ରତ୍ୟୟ

ଅନ୍ଧାର + ଉଆ = ଅନ୍ଧାରୁଆ   ସକାଳ + ଉଆ = ସକାଳୁଆ
ସଂଜ + ଉଆ = ସଂଜୁଆ   ଆଗ + ଉଆ = ଆଗୁଆ
ପଛ + ଉଆ = ପଛୁଆ   ଘର + ଉଆ = ଘରୁଆ

### ଉଲି-ପ୍ରତ୍ୟୟ

ଗାଁ + ଉଲି = ଗାଉଁଲି

### ଏଇ-ପ୍ରତ୍ୟୟ

ପୂବ(ପୂର୍ବ)+ଏଇ = ପୂବେଇ   ବାଟ + ଏଇ = ବାଟେଇ
ନଟୁ + ଏଇ = ନଟେଇ   ଦବ+ଏଇ= ଦବେଇ, ଦବାଇ (ଓଷଦ)

### ଓଇ-ପ୍ରତ୍ୟୟ

ଘର + ଓଇ = ଘରୋଇ

### ଟିଆ-ପ୍ରତ୍ୟୟ

ଖରା + ଟିଆ = ଖରାଟିଆ   ଲୁହା + ଟିଆ = ଲୁହାଟିଆ
ତମ୍ବା + ଟିଆ = ତମ୍ବାଟିଆ   ଭଡ଼ା + ଟିଆ = ଭଡ଼ାଟିଆ

## ୧୨ । ସ୍ୱ-ଅର୍ଥରେ ପ୍ରତ୍ୟୟ

### ଆ-ପ୍ରତ୍ୟୟ

ସରୁ + ଆ = ସରୁଆ   ଗୋଳି + ଆ = ଗୋଳିଆ   ନାଲି + ଆ = ନାଲିଆ
ମୋଟ + ଆ = ମୋଟା   ଭାର + ଆ = ଭାରା   ଗରୁ + ଆ = ଗରୁଆ
ଚାପ + ଆ = ଚାପା   କୁଦ + ଆ = କୁଦା   ଚାପଡ଼+ଆ = ଚାପଡ଼ା
ମୂଳ + ଆ = ମୂଳା   ଏକ + ଆ = ଏକା   ନେଳି+ଆ = ନେଳିଆ

### ଇ-ପ୍ରତ୍ୟୟ

ମେଳ + ଇ = ମେଳି   ଗହଳ + ଇ = ଗହଳି   କାଙ୍ଗାଳ+ଇ = କାଙ୍ଗାଳି
ପୁଣ + ଇ = ପୁଣି   ଚଳଣ + ଇ = ଚଳଣି   ଚହଳ + ଇ = ଚହଳି

### ଇଆ-ପ୍ରତ୍ୟୟ

କଅଁଳ + ଇଆ = କଅଁଳିଆ   ମଧୁର + ଇଆ = ମଧୁରିଆ
ପାକଳ + ଇଆ = ପାକଳିଆ   ଗହଳ + ଇଆ = ଗହଳିଆ

କଳା + ଇଆ = କାଳିଆ
ବହଳ + ଇଆ = ବହଳିଆ
ଭେଣ୍ଡା + ଇଆ = ଭେଣ୍ଡିଆ
ଛୋଟ + ଇଆ = ଛୋଟିଆ
ନୀଳ + ଇଆ = ନେଳିଆ
ଟାଉଟର + ଇଆ = ଟାଉଟରିଆ
ଗହୀର + ଇଆ = ଗହୀରିଆ
ସୁଆଦ + ଇଆ = ସୁଆଦିଆ

**ଉଆ-ପ୍ରତ୍ୟୟ**

ଅଳସ + ଉଆ = ଅଳସୁଆ
ଆଣ୍ଠ + ଉଆ = ଆଣ୍ଠୁଆ
ଟାଣ + ଉଆ = ଟାଣୁଆ
ଖାଲ + ଉଆ = ଖାଲୁଆ
ମଠ + ଉଆ = ମଠୁଆ

**କ-ପ୍ରତ୍ୟୟ**

ମେଳ + କ = ମେଳକ
ବାଳ + କ = ବାଳକ
କାଳ + କ = କାଳକ

**ଟା-ପ୍ରତ୍ୟୟ**

ଚେପା + ଟା = ଚେପ୍‌ଟା

**ଡ଼ା-ପ୍ରତ୍ୟୟ**

ଚମ + ଡ଼ା = ଚମଡ଼ା
ଚକ + ଡ଼ା = ଚକଡ଼ା
ବାଙ୍କ + ଡ଼ା = ବାଙ୍କଡ଼ା
ଖାଦ + ଡ଼ା = ଖଦଡ଼ା
ଚାଞ୍ଚ + ଡ଼ା = ଚାଞ୍ଚଡ଼ା

**ରା-ପ୍ରତ୍ୟୟ**

ଡାକ + ରା = ଡାକରା
ଚାଞ୍ଚ + ରା = ଚାଞ୍ଚରା
ହାକ + ରା = ହାକରା
ଠେକ+ରା = ଠେକରା

## ୧୩ । ଜାତ-ଅର୍ଥରେ ପ୍ରତ୍ୟୟ

**ଆ-ପ୍ରତ୍ୟୟ**

ପୂର୍ବ + ଆ = ପୂର୍ବା
ପଶ୍ଚିମ + ଆ = ପଶ୍ଚିମା
ଦକ୍ଷିଣ + ଆ = ଦକ୍ଷିଣା
ଉତ୍ତର + ଆ = ଉତ୍ତରା

**ଆଳି-ପ୍ରତ୍ୟୟ**

ଚଇତ + ଆଳି = ଚଇତାଳି

**ଇ-ପ୍ରତ୍ୟୟ**

ଚଇତ + ଇ = ଚଇତି

**ଇଆ-ପ୍ରତ୍ୟୟ**

କଟକ + ଇଆ = କଟିକିଆ
ଗଡ଼ଜାତ + ଇଆ = ଗଡ଼ଜାତିଆ
ପାହାନ୍ତା + ଇଆ = ପାହାନ୍ତିଆ
କୋରାପୁଟ + ଇଆ = କୋରାପୁଟିଆ
ସହର + ଇଆ = ସହରିଆ
ଦଶମାସ + ଇଆ = ଦଶମାସିଆ
ସୁନ୍ଦରଗଡ଼ + ଇଆ = ସୁନ୍ଦରଗଡ଼ିଆ
ଉପକୂଳ + ଇଆ = ଉପକୂଳିଆ
ନଈକୂଳ + ଇଆ = ନଈକୂଳିଆ
ପାହାଡ଼ + ଇଆ = ପାହାଡ଼ିଆ
ପାରିକୁଦ + ଇଆ = ପାରିକୁଦିଆ
ଦକ୍ଷିଣ + ଇଆ = ଦକ୍ଷିଣିଆ
ଲେଉଟ + ଇଆ = ଲେଉଟିଆ
ସମ୍ବଲପୁର + ଇଆ = ସମ୍ବଲପୁରିଆ

**ଈ-ପ୍ରତ୍ୟୟ**

ମଣିପୁର+ଈ = ମଣିପୁରୀ
ସ୍ୱଦେଶ+ଈ = ସ୍ୱଦେଶୀ
ବାଲେଶ୍ୱର+ଈ = ବାଲେଶ୍ୱରୀ
ଓଡ଼ିଶା+ଈ = ଓଡ଼ିଶୀ
ବଙ୍ଗଳା+ଈ = ବଙ୍ଗାଳୀ
ବିଦେଶୀ+ଈ = ବିଦେଶୀ
ସହର+ଈ = ସହରୀ
ବନାରସ+ଈ = ବନାରସୀ
ଉଆଁସ+ଈ = ଉଆଁସୀ
ପରଦେଶ+ଈ=ପରଦେଶୀ
କାବୁଲ୍+ଈ = କାବୁଲୀ
ସମ୍ବଲପୁର+ଈ=ସମ୍ବଲପୁରୀ

**ଉଆ-ପ୍ରତ୍ୟୟ**

ବଣ + ଉଆ = ବଣୁଆ
ସକାଳ + ଉଆ = ସକାଳୁଆ
ମାଳ + ଉଆ = ମାଳୁଆ
ଆଷାଢ଼ + ଉଆ = ଆଷାଢ଼ୁଆ

**ଉଲି-ପ୍ରତ୍ୟୟ**

ଗାଁ + ଉଲି = ଗାଉଁଲି

**କା/କାର-ପ୍ରତ୍ୟୟ**

ଆଜି + କା = ଆଜିକା
ଏବ + କା = ଏବକା
କାଲି + କା = କାଲିକା
ଆଜି + କାର = ଆଜିକାର
ଏବ + କାର = ଏବକାର
କାଲି + କାର = କାଲିକାର

## ୧୪ । ରଂଜିତ ବା ଲିପ୍ତ ଅର୍ଥରେ ପ୍ରତ୍ୟୟ

**ଆ-ପ୍ରତ୍ୟୟ**

ଧୂଳି + ଆ = ଧୂଳିଆ
କାଳି + ଆ = କାଳିଆ
ଗେରୁ + ଆ = ଗେରୁଆ
ମାଟି + ଆ = ମାଟିଆ
ହଳଦି + ଆ = ହଳଦିଆ
ନାଲି + ଆ = ନାଲିଆ
ଫଗୁ + ଆ = ଫଗୁଆ
ବାଲି + ଆ = ବାଲିଆ

**ଇଆ-ପ୍ରତ୍ୟୟ**

ପାଉଁଶ + ଇଆ = ପାଉଁଶିଆ　　ହଳଦି + ଇଆ = ହଳଦିଆ

ବାଇଗଣ + ଇଆ = ବାଇଗଣିଆ　　ଖଇର + ଇଆ = ଖଇରିଆ

## ୧୫ । କ୍ଷୁଦ୍ର ଅର୍ଥରେ ପ୍ରତ୍ୟୟ

ଆ-ପ୍ରତ୍ୟୟ – ଥାଳି + ଆ = ଥାଳିଆ

**ଇ-ପ୍ରତ୍ୟୟ**

| | | |
|---|---|---|
| କାଠ + ଇ = କାଠି | ଘଣ୍ଟ + ଇ = ଘଣ୍ଟି | ଖଣ୍ଡ + ଇ = ଖଣ୍ଡି |
| ମାଳ + ଇ = ମାଳି | ଚକ + ଇ = ଚକି | ଘଡ଼ା + ଇ = ଘଡ଼ି |
| ଛାଲ + ଇ = ଛାଲି | ଚାଳ + ଇ = ଚାଳି | ମୂଷା + ଇ = ମୂଷି |
| ଛଡ଼ + ଇ = ଛଡ଼ି | ଗଡ଼ + ଇ = ଗଡ଼ି | କୁଣ୍ଡ + ଇ = କୁଣ୍ଡି |
| ହଣ୍ଡା + ଇ = ହାଣ୍ଡି | ଚୋପା + ଇ = ଚୋପି | ଟାଟ + ଇ = ଟାଟି |

**ଇଆ-ପ୍ରତ୍ୟୟ**

ଖଟ + ଇଆ = ଖଟିଆ　　ଟାଟ + ଇଆ = ଟାଟିଆ

**ଈ-ପ୍ରତ୍ୟୟ**

ପାତ୍ର + ଈ = ପାତ୍ରୀ

**ଉଲି-ପ୍ରତ୍ୟୟ**

ଖଟ + ଉଲି = ଖଟୁଲି　　ବେତା + ଉଲି = ବେତୁଲି

**ଏଇ-ପ୍ରତ୍ୟୟ**

କୁଲା + ଏଇ = କୁଲେଇ

## ୧୬ । ପରିମାଣ ବା ଦୈର୍ଘ୍ୟ ଅର୍ଥରେ ପ୍ରତ୍ୟୟ

**ଆ-ପ୍ରତ୍ୟୟ**

ପାଞ୍ଚକେଜି + ଆ = ପାଞ୍ଚକେଜିଆ　　ଦୁଇକେଜି + ଆ = ଦୁଇକେଜିଆ

**ଆଣି-ପ୍ରତ୍ୟୟ**

ଆଣ୍ଠୁ + ଆଣି = ଆଣ୍ଠୁଆଣି (ପାଣି)

**ଇଆ-ପ୍ରତ୍ୟୟ**

ପାଞ୍ଚଟଙ୍କା + ଇଆ = ପାଞ୍ଚଟଙ୍କିଆ　　ଆଠହାତ + ଇଆ = ଆଠହାତିଆ

ତିନିଫୁଟ + ଇଆ = ତିନିଫୁଟିଆ

### ଈ-ପ୍ରତ୍ୟୟ

ଆଠହାତ + ଈ = ଆଠହାତୀ    ତିନିଗଜ + ଈ = ତିନିଗଜୀ

### ଏ-ପ୍ରତ୍ୟୟ

ମେଞ୍ଚା + ଏ = ମେଞ୍ଚାଏ    ଆଞ୍ଜୁଳା + ଏ = ଆଞ୍ଜୁଳାଏ

ହତା + ଏ = ହତାଏ    ବୋଝ + ଏ = ବୋଝେ

ଆଙ୍ଗୁଳ + ଏ = ଆଙ୍ଗୁଳେ    ଇଞ୍ଚ + ଏ = ଇଞ୍ଚେ

## ୧୭ । ସ୍ୱଭାବେ ଅର୍ଥରେ ପ୍ରତ୍ୟୟ- (କୁଳା, ଦାର, ଉଆ)

### କୁଳା-ପ୍ରତ୍ୟୟ

ଲାଜ + କୁଳା = ଲାଜକୁଳା    ଡର + କୁଳା = ଡରକୁଳା

### ଦାର-ପ୍ରତ୍ୟୟ

ମଜା + ଦାର = ମଜାଦାର    ଦଗା + ଦାର = ଦଗାଦାର

### ଉଆ-ପ୍ରତ୍ୟୟ

ମିଛ + ଉଆ = ମିଛୁଆ    ଲାଞ୍ଚ + ଉଆ = ଲାଞ୍ଚୁଆ

ମାଡ଼ + ଉଆ = ମାଡୁଆ    ଖଚ + ଉଆ = ଖଚୁଆ

## ୧୮ । ବାସ ବା ସମ୍ପର୍କ ଅର୍ଥରେ ଉଆ-ପ୍ରତ୍ୟୟ

ଗାତ + ଉଆ = ଗାତୁଆ    ଚାଳ + ଉଆ = ଚାଳୁଆ    ବଣ + ଉଆ = ବଣୁଆ

ମାଳ + ଉଆ = ମାଳୁଆ    ଘର + ଉଆ = ଘରୁଆ    ମନ + ଉଆ = ମନୁଆ

ବିଲ + ଉଆ = ବିଲୁଆ

## ୧୯ । ବାସ ଅର୍ଥରେ 'ଟିଆ'-ପ୍ରତ୍ୟୟ

ଭଡ଼ା + ଟିଆ = ଭଡ଼ାଟିଆ

## ୨୦ । ବିଭିନ୍ନ ଅର୍ଥରେ ଅନ୍ୟକେତେକ ତଦ୍ଧିତ ପ୍ରତ୍ୟୟ

ତୁଳନା ଅର୍ଥରେ - ଇଆ -

ମଲ୍ଲିଫୁଲ + ଇଆ = ମଲ୍ଲିଫୁଲିଆଚମ୍ପାଫୁଲ + ଇଆ = ଚମ୍ପାଫୁଲିଆ

### ପୂରଣ ଅର୍ଥରେ-କ

ପାଞ୍ଚ + କ = ପାଞ୍ଚକ    ଦଶ + କ = ଦଶକ

### ତିଆରି ଅର୍ଥରେ-ଆ/ଇଆ

ବେତ + ଆ = ବେତା    ବାଉଁଶ + ଇଆ = ବାଉଁଶିଆ

**ପୀଡ଼ିତ ଅର୍ଥରେ-ଆ**

କାଛୁ + ଆ = କାଛୁଆ  ଜାଦୁ + ଆ = ଜାଦୁଆ  କାରୁ + ଆ = କାରୁଆ

**ଉଆ**

ଜର + ଉଆ = ଜରୁଆ

**ଦକ୍ଷ ବା ନିପୁଣ ଅର୍ଥରେ-ଇଆ**

କାହାଳୀ + ଇଆ = କାହାଳିଆ  ମହୁରୀ + ଇଆ = ମହୁରିଆ

**ଆଧିପତ୍ୟ ବା ନେତୃତ୍ୱ ଅର୍ଥରେ-ଏଇ**

ଦଳ + ଏଇ = ଦଳେଇ

**ସଂଯୋଗ ଅର୍ଥରେ - ଇଆ/ଟିଆ**

ବାଲି + ଇଆ = ବାଲିଆ  ଧୂଆଁ + ଟିଆ = ଧୂଆଁଟିଆ

**କାର୍ଯ୍ୟସ୍ଥାନ ବା ଘର ଅର୍ଥରେ - ଖାନା ପ୍ରତ୍ୟୟ**

ଡାକ୍ତର + ଖାନା = ଡାକ୍ତରଖାନା  ମୁସାଫିର+ଖାନା = ମୁସାଫିରଖାନା

ଛାପା + ଖାନା = ଛାପାଖାନା  କାର + ଖାନା = କାରଖାନା

ବୈଠକ + ଖାନା = ବୈଠକଖାନା  ଜେଲ୍ + ଖାନା = ଜେଲ୍‌ଖାନା

ଚିଡ଼ିଆ + ଖାନା = ଚିଡ଼ିଆଖାନା

**କାର୍ଯ୍ୟାର୍ଥରେ - ଏଇ**

ସଫା + ଏଇ = ସଫେଇ  ବୁଲା + ଏଇ = ବୁଲେଇ

ଦେଖା + ଏଇ = ଦେଖେଇ  ବଙ୍କା + ଏଇ = ବଙ୍କେଇ

**ନିୟୋଗ ଅର୍ଥରେ - 'ଏତ' ବା 'ୟତ' ପ୍ରତ୍ୟୟ**

ଖଣ୍ଡା + ଏତ = ଖଣ୍ଡାଏତ  ଖଣ୍ଡା + ୟତ = ଖଣ୍ଡାୟତ

ପଟା + ଏତ = ପଟାଏତ  ପଟା + ୟତ = ପଟାୟତ

ଟିକା + ଏତ = ଟିକାଏତ  ଟିକା + ୟତ = ଟିକାୟତ

ସେବା + ଏତ = ସେବାଏତ  ସେବା + ୟତ = ସେବାୟତ

**ଈଷତ୍ ନ୍ୟୂନ ଅର୍ଥରେ - ଉରା**  - ପୁତ + ଉରା = ପୁତୁରା

**ଯୋଗ୍ୟତା ଅର୍ଥରେ - ରା**  - ଚିହ୍ନ + ରା = ଚିହ୍ନରା

**ପ୍ରତ୍ୟେକ ଅର୍ଥରେ - 'ପିଛା'**

ଜଣ + ପିଛା = ଜଣପିଛା  ପିଲା + ପିଛା = ପିଲାପିଛା

ଛାତ୍ର + ପିଛା = ଛାତ୍ରପିଛା  ଘର + ପିଛା = ଘରପିଛା

**ନିପୁଣ ଅର୍ଥରେ - 'ଓଇ'** - ବାଟ + ଓଇ = ବାଟୋଇ    ଛାଟ + ଓଇ = ଛାଟୋଇ

**ପରିମାଣ ଅର୍ଥରେ - ତେ, ତିକି, ଡେ଼, ଡ଼ିକି**

ଏ + ତେ = ଏତେ    ଯେ + ତେ = ଯେତେ    କେ + ତେ = କେତେ
ଏ + ତିକି = ଏତିକି    ଯେ + ତିକି = ଯେତିକି    ସେ + ତିକି = ସେତିକି
ଏ + ଡେ଼ = ଏଡେ଼    ଯେ + ଡେ଼ = ଯେଡେ଼    ତେ + ଡେ଼ = ତେଡେ଼
ଏ + ଡ଼ିକି = ଏଡ଼ିକି    ଯେ + ଡ଼ିକି = ଯେଡ଼ିକି    ସେ + ଡ଼ିକି = ସେଡ଼ିକି

**ଦିଗ ଅର୍ଥରେ - ଆଡେ଼**

ଘର + ଆଡେ଼ = ଘରଆଡେ଼    ଗାଁ + ଆଡେ଼ = ଗାଁ ଆଡେ଼
ବାଡ଼ି + ଆଡେ଼ = ବାଡ଼ିଆଡେ଼    ଏ + ଆଡେ଼ = ଏଆଡେ଼, ଇଆଡେ଼
ସେ + ଆଡେ଼ = ସେଆଡେ଼/ସିଆଡେ଼    କେଉଁ + ଆଡେ଼ = କେଉଁଆଡେ଼/କୁଆଡେ଼
ଯେଉଁ + ଆଡେ଼ = ଯେଉଁଆଡେ଼/ଯୁଆଡେ଼

**ଏକତ୍ର ଅର୍ଥରେ- ହେଁ**

ଦୁଇ + ହେଁ = ଦୁହେଁ    ତିନି + ହେଁ = ତିନିହେଁ

## ଅନୁଶୀଳନୀ

୧ । ତଦ୍ଧିତ କାହାକୁ କହନ୍ତି ଉଦାହରଣ ଦେଇ ଲେଖ ।

୨ । ଗୋଟିଏ ତଦ୍ଧିତ ପ୍ରତ୍ୟୟ ବିଭିନ୍ନ ଅର୍ଥରେ କିପରି ବ୍ୟବହୃତ ହୁଏ, ଉଦାହରଣ ସହ ବୁଝାଅ ।

୩ । ନିମ୍ନଲିଖିତ ଶବ୍ଦଗୁଡ଼ିକର ପ୍ରକୃତି ପ୍ରତ୍ୟୟ ନିର୍ଦ୍ଦେଶ କର ।

ବାଲିବନ୍ତ, କାଚରା, ପାଲାବାଲା, ଚୌକିଦାର, ଜିଦ୍‌ଖୋର, ସୌଦାଗର, ଦାନ୍ତୁରା, ଶତକ, ଖରାଟିଆ, ଶଂଖାରି, ମାଟିଆ, ପାର୍ଥ, ଆତ୍ରେୟ, ପକ୍ଷୀ, ପଙ୍କିଳ, କେଶବ, କୃଷୀବଳ, ଭଗବାନ୍, ମଧୁର, ପୃଥୁଳ, ଲୋମଶ, ଚାଣକ୍ୟ, ରାଧେୟ, ଆଦିତ୍ୟ, ଭୌମ, ତୈଳ, ମାନସ, ଗ୍ରାମ୍ୟ, ଆଣବିକ, ବାଷ୍ପୀୟ, ଦନ୍ତ୍ୟ, ପାଶୁପତ, ପୌରୁଷ, ଶୁକ୍ଳିମା, ସାରବତ୍ତା, ନରତ୍ୱ, ବାଲ୍ୟ, ବୈୟାକରଣିକ, ହିରଣ୍ମୟ, ଦାର୍ଢ୍ୟ, ବୃହତ୍ତମ, ଜ୍ୟେଷ୍ଠ, ଆତ୍ମବତ୍, ରୋମାଞ୍ଚିତ, ପୌଷ, ଧୋକାବାଜ, ହୁସିଆର, କଣ୍ଟିଆଳ, ଛାପାଖାନା, ବାଟୋଇ, ବେତୁଲି, ଠୁଙ୍ଗାବାଲା, ହଳଦିଆ, ତିନିଗଜୀ, ନଟେଇ, ଗୋଳିଆ।

୪ । ଏକପଦରେ ପ୍ରକାଶ କର-

ଧୂଳିରେ ପରିଣତ, ମୂଳ ଲାଗିବା ବୃତ୍ତି ଯାହାର, ଯେଉଁଘରେ ବୈଠକ କରାଯାଏ, ମାଳରେ ବାସ କରେ ଯେ, ମାଡ଼ ଖାଇବା ଅଭ୍ୟାସ ଯାହାର, ତାଟଠାରୁ ଯାହା ଛୋଟ, ପୁତ୍ର ପରି, ପାଣିର ସଦୃଶ, ମୁନ ଅଛି ଯାହାର, ଭଦ୍ରର କର୍ମ; ପଲ୍ଲବ ଜାତ ହୋଇଛି ଯହିଁରେ, ନ୍ୟାୟ ଅଧ୍ୟୟନ କରିଛନ୍ତି ଯେ, ଅନେକଙ୍କ ମଧ୍ୟରେ ଯେ ଲଘୁ, ଧୂମରେ ବ୍ୟାପ୍ତ, ରାଜନୀତିସମ୍ବନ୍ଧୀୟ, ଭୂମିରୁ ଜାତ ଯେ, ପୁରୁଙ୍କର ଅପତ୍ୟ, ପିତାଙ୍କ ତୁଲ୍ୟ, ଅନ୍ୟପ୍ରକାରେ, ବିଜ୍ଞାନରେ ଯେ ପ୍ରବୀଣ, ଶକ୍ତିଙ୍କର ଉପାସକ, ଚୋର ସ୍ୱାର୍ଥରେ, ଖଟଠାରୁ ଛୋଟ, ଅତିଶୟ କପାଳ ।

୫ । ନିମ୍ନଲିଖିତ ଶବ୍ଦଗୁଡ଼ିକରେ ତଦ୍ଧିତ ପ୍ରତ୍ୟୟ ଯୋଗ କରି ନୂତନ ଶବ୍ଦ ଗଠନ କର ।

ଚମ, ଗୋଲାପ, କିରାଣି, ଗୁଣ, ସଂସଦ, ଚିତ୍ର, ସାହିତ୍ୟ, ଶକ୍ତି, ଗଙ୍ଗା, କୂଳ, ଶରୀର, ତାଲୁ, ପଣ୍ଡିତ, ମହତ୍, ଧୀର, ପୂର୍ବ, ଅନ୍ତ, ପଶୁ, ବୁଦ୍ଧ, କୁମାର

୬ । କୃଦନ୍ତ ଓ ତଦ୍ଧିତ ମଧ୍ୟରେ ଥିବା ପାର୍ଥକ୍ୟ, ଉଦାହରଣ ସହ ଦର୍ଶାଅ ।

୭ । ପ୍ରତ୍ୟେକରୁ ଦୁଇଟି ଲେଖାଏଁ ଉଦାହରଣ ଦିଅ ।

(କ) ଅଛି ଅର୍ଥରେ 'ବନ୍ତ' ପ୍ରତ୍ୟୟ

(ଖ) ଅଭ୍ୟାସ ଅର୍ଥରେ 'ଖୋର' ପ୍ରତ୍ୟୟ

(ଗ) ସାଦୃଶ୍ୟ ଅର୍ଥରେ 'ଇଆ' ପ୍ରତ୍ୟୟ

(ଘ) ଭାବାର୍ଥରେ 'ଆମି' ପ୍ରତ୍ୟୟ

(ଙ) ବୃତ୍ତି ଅର୍ଥରେ 'ରା' ପ୍ରତ୍ୟୟ

(ଚ) ତୁଳନାର୍ଥରେ 'ତର' ପ୍ରତ୍ୟୟ

(ଛ) ଅପତ୍ୟ ଅର୍ଥରେ 'ଏୟ' ପ୍ରତ୍ୟୟ

(ଜ) ସ୍ୱାର୍ଥରେ 'ଅ' ପ୍ରତ୍ୟୟ

(ଝ) ସମ୍ବନ୍ଧାର୍ଥରେ 'ଇକ' ପ୍ରତ୍ୟୟ

(ଞ) ପ୍ରକାର ଅର୍ଥରେ 'ଥା' ପ୍ରତ୍ୟୟ

୮ । ନିମ୍ନ ଶବ୍ଦଗୁଡ଼ିକରେ ଭିନ୍ନଭିନ୍ନ ପ୍ରତ୍ୟୟ ଯୋଗ କରି ବିଶେଷ ପଦ ଗଠନ କର ।

ପୁରୋହିତ, ସୁନା, ଲଘୁ, ପଟୁ, ବଡ଼, ଡାକ୍ତର, ମୂର୍ଖ, ସାଧୁ, ସୁମିତ୍ରା, ମୈଥିଳୀ ।

୯ । ତଳଲିଖିତ ଶବ୍ଦମାନଙ୍କରେ ଅପତ୍ୟାର୍ଥରେ ପ୍ରତ୍ୟୟ ଯୋଗ କରି ତଦ୍ଧିତ ଶବ୍ଦ ଗଠନ କର ।

ସରମା, ଅଦିତି, ସ୍ୱସ୍ତୃ, ବସୁଦେବ, ବ୍ୟାସ, ମନୁ, ଧୃତରାଷ୍ଟ୍ର, ଭଗୀରଥ, କୃତିକା, ଦକ୍ଷ, ମୌଦ୍‌ଗଲ୍ୟ, ପୌଲସ୍ତ୍ୟ, କୌଟିଲ୍ୟ, ଆରୁଣି

୧୦ । ଶବ୍ଦ ଗଠନ କର–

ପଶ୍ଚାତ୍ + ତ୍ୟ, ପଶ୍ଚାତ୍ + ୟ, ଭୂତ + ଉରା, କୁଲା + ଏଇ, ଖଚ + ଉଆ, ଅର୍ଣ୍ଣ + ବ, ସୁଭଗ + ୟ, ସମ୍ଭବ + ତସ୍, ଶ୍ରଦ୍ଧା + ଆଲୁ, ଅରଣ୍ୟ + ଅ ।

୧୧ । ନିମ୍ନଲିଖିତ ପଦଗୁଡ଼ିକରେ ବ୍ୟବହୃତ ହୋଇଥିବା ଶବ୍ଦଗୁଡ଼ିକୁ ଲେଖ ।

ସୌଭଦ୍ରେୟ, ପାଶ୍ଚାତ୍ୟ, ବୈରୋଚନ, ସୌଜନ୍ୟ, ପାଟବ, ଆସୁରୀ, ଆଧ୍ୟାତ୍ମିକ, ଅର୍ବାଚୀନ, ନୂତନ, ଅରୁଣିମା, ଅହଂକାରୀ, ବୁଭୁକ୍ଷିତ, ପେଞ୍ଚୁଆ, ସୁନାରି, ନବ୍ୟ, ନୌକା, ଦାକ୍ଷିଣାତ୍ୟ, ଠେକରା, ମୁଣ୍ଡାଳିଆ, କାନପୁରୀ, ଖଟେଇ, କଅଁଳିଆ, ପେଟରା, ସଫେଇ, ବାର୍ଷିକ, ଖଟୁଲି ।

୧୨ । 'ବିଭବଶାଳୀ' ଶବ୍ଦରେ ଥିବା ପ୍ରତ୍ୟୟ ନାମ କ'ଣ ?

(କ) ଶାଳୀ (ଖ) ଆଳୀ (ଗ) ଶାଳିନ୍ (ଘ) ଇନ୍

୧୩ । 'ତୈଳିକ' ଏହି ଶବ୍ଦରେ ଥିବା ପ୍ରତ୍ୟୟଟି କେଉଁ ଅର୍ଥରେ ବ୍ୟବହୃତ ?

(କ) ଅଛି ଅର୍ଥରେ (ଖ) ବୃତ୍ତି ଅର୍ଥରେ (ଗ) ଜୀବିକା ଅର୍ଥରେ (ଘ) ହିତାର୍ଥରେ

୧୪ । ବିତାନ + ଅ = — । ଏକ ପଦରେ ପ୍ରକାଶ କଲେ କ'ଣ ହେବ ?

(କ) ବିତାନି (ଖ) ବେତାନ (ଗ) ବୈତାନ (ଘ) ବୈତାନିକ

୧୫ । 'ଅଭ୍ୟାସ' ଅର୍ଥରେ ଉଆ ପ୍ରତ୍ୟୟ କେଉଁଟି ?

(କ) ମିଛୁଆ (ଖ) ଶାଗୁଆ (ଗ) ନାଟୁଆ (ଘ) ବଳୁଆ

୧୬ । ସମୂହ ଅର୍ଥରେ 'ଆଳି' ପ୍ରତ୍ୟୟ କେଉଁଟି ?

(କ) ରନ୍ଧାଳି, (ଖ) ଚଇତାଳି (ଗ) ଖେଳାଳି (ଘ) ଦୀପାଳି



# ପଦପରିବର୍ତ୍ତନ

ବିଶେଷ୍ୟକୁ ବିଶେଷଣରେ ଓ ବିଶେଷଣକୁ ବିଶେଷ୍ୟରେ ପରିଣତ କରିବାକୁ **ପଦପରିବର୍ତ୍ତନ** କୁହାଯାଏ । ସାଧାରଣତଃ କୃଦନ୍ତ ଓ ତଦ୍ଧିତ ପ୍ରଣାଳୀରେ ଏହା କରାଯାଏ ।

ପ୍ରାୟତଃ ଧାତୁର ପରେ ଅ, ଅନ, ତି ପ୍ରତ୍ୟୟ ଯୋଗ କଲେ, ବିଶେଷ୍ୟ ପଦ ହୁଏ ଏବଂ ତ, ତବ୍ୟ, ଅନୀୟ, ଯ ପ୍ରକୃତି ପ୍ରତ୍ୟୟ କଲେ, ବିଶେଷଣ ପଦ ନିଷ୍ପନ୍ନ ହୁଏ । ଯଥା-

| ବିଶେଷ୍ୟ | ବିଶେଷଣ |
|---|---|
| ଆ - ଗମ୍ + ଅ = ଆଗମ | ପଠ୍ + ତ = ପଠିତ |
| ଆ - ଗମ୍ + ଅନ = ଆଗମନ | ପଠ୍ + ତବ୍ୟ = ପଠିତବ୍ୟ |
| ଆ - କୃ + ତି = ଆକୃତି | ପଠ୍ + ଅନୀୟ = ପଠନୀୟ |
| | ପଠ୍ + ଯ = ପାଠ୍ୟ |

ତଦ୍ଧିତ ପ୍ରତ୍ୟୟଦ୍ୱାରା ବିଶେଷ୍ୟ ପଦରୁ ବିଷେଣ ପଦ ଗଠିତ ହୋଇଥାଏ । ସାଧାରଣତଃ ଶବ୍ଦର ପରେ ଅ, ଆଳୁ, ଇନ୍, ଏୟ, ତା, ମତ୍, ବତ୍, ମୟ ପ୍ରଭୃତି ଯୋଗ କଲେ ବିଶେଷ୍ୟ ପଦ ବିଶେଷଣରେ ପରିଣତ ହୁଏ ।

## ୧ । କୃତନ୍ତ ପ୍ରଣାଳୀରେ ପଦପରିବର୍ତ୍ତନ :

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଅର୍ଜନ, ଅର୍ଚ୍ଚନା | ଅର୍ଚ୍ଚିତ | ଅନୁମାନ | ଅନୁମିତ |
| ଅଧିବାସ | ଅଧ୍ୟୁଷିତ | ଆନୟନ | ଆନୀତ |
| ଅଧ୍ୟୟନ | ଅଧୀତ | ଆହରଣ | ଆହୃତ |
| ଅବଶେଷ | ଅବଶିଷ୍ଟ | ଆଘ୍ରାଣ | ଆଘ୍ରାତ |
| ଅବରୋଧ | ଅବରୁଦ୍ଧ | ଆକର୍ଷଣ | ଆକୃଷ୍ଟ, ଆକର୍ଷିତ |
| ଅନୁରାଗ | ଅନୁରାଗୀ/ଅନୁରକ୍ତ | ଆଘାତ | ଆହତ |
| ଅନୁସରଣ | ଅନୁସୃତ | ଆରମ୍ଭ | ଆରବ୍ଧ |
| ଅବତାର/ଅବତରଣ | ଅବତୀର୍ଣ୍ଣ | ଆଶ୍ରୟ | ଆଶ୍ରିତ |
| ଅଭିନିବେଶ | ଅଭିନିବିଷ୍ଟ | ଆଦର | ଆଦୃତ |
| ଅତିରେକ | ଅତିରିକ୍ତ | ଆଚ୍ଛାଦନ | ଆଚ୍ଛନ୍ନ, ଆଚ୍ଛାଦିତ |
| ଅନୁବାଦ | ଅନୂଦିତ | ଆରୋହଣ | ଆରୂଢ଼ |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଅବସାଦ | ଅବସନ୍ନ | ଆହ୍ୱାନ | ଆହୂତ |
| ଅବଧାନ | ଅବହିତ | ଆରାଧନା | ଆରାଧିତ |
| ଅଭିଧାନ | ଅଭିହିତ | ଆରୋହଣ | ଆରୋପିତ |
| ଅଭିଯୋଗ | ଅଭିଯୁକ୍ତ, | ଆଳାପ | ଆଳାପିତ |
| | ଅଭିଯୋକ୍ତା | ଆବାସ | ଆବାସିକ |
| ଇୟତ୍ତା | ଇୟତ୍ | ଆବିଷ୍କାର | ଆବିଷ୍କୃତ |
| ଆକ୍ରମଣ | ଆକ୍ରାନ୍ତ | ଆସ୍ୱାଦନ | ଆସ୍ୱାଦିତ |
| ଇଚ୍ଛା | ଇଚ୍ଛିତ | ଗଣନ | ଗଣିତ |
| ଈକ୍ଷଣ | ଈକ୍ଷିତ | ଗମନ | ଗତ |
| ଉନ୍ନତି, ଉନ୍ନୟନ | ଉନ୍ନତ, ଉନ୍ନୀତ | ଗର୍ଜନ | ଗର୍ଜିତ, ଗର୍ଜମାନ |
| | | ଗର୍ହଣ(ଣା) | ଗର୍ହିତ, ଗର୍ହ୍ୟ |
| ଉଦ୍ଧାର | ଉଦ୍ଧୃତ | ଗ୍ଲାନି | ଗ୍ଲାନ, ଗ୍ଲେୟ |
| ଉତ୍ତାପ | ଉତ୍ତପ୍ତ | ଗ୍ରହଣ | ଗୃହୀତ |
| ଉପହାସ | ଉପହସିତ | ଗାନ | ଗୀତ |
| ଉତ୍‌ଥାନ | ଉତ୍‌ଥିତ | ଗ୍ରାସ | ଗ୍ରସ୍ତ |
| ଉଡ୍ଡୟନ | ଉଡ୍ଡୀନ | ଘର୍ଷଣ | ଘୃଷ୍ଟ, ଘର୍ଷିତ, ଘର୍ଷଣୀୟ |
| ଉଦ୍‌ବେଗ | ଉଦ୍‌ବିଗ୍ନ | ଘାତ | ହତ, ଘାତକ |
| ଉଚ୍ଛ୍ୱାସ | ଉଚ୍ଛ୍ୱସିତ | ଜ୍ଞାନ | ଜ୍ଞାତ |
| ଉନ୍ମାଦ | ଉନ୍ମତ୍ତ | ଚଳନ | ଚଳିତ |
| ଉତ୍ପାଦନ | ଉତ୍ପାଦିତ | ଚୟନ | ଚିତ, ଚୟିତ, ଚୟନୀୟ |
| ଉତ୍ତରଣ ଉତ୍ତୀର୍ଣ୍ଣ | ଚାଳନା | ଚାଳିତ | |
| କରଣ, କୃତି | କୃତ | ଚୂରଣ | ଚୂର୍ଣ୍ଣ |
| କଥନ | କଥିତ | ଛେଦନ | ଛିନ୍ନ, ଛେଦ୍ୟ |
| କଳ୍ପନା | କଳ୍ପିତ, କାଳ୍ପନିକ | ଜନ୍ମ | ଜାତ |
| କଣ୍ଟକ | କଣ୍ଟକିତ | ଜୀବନ | ଜୀବିତ |
| କମ୍ପନ | କମ୍ପିତ | ତୋଷ | ତୁଷ୍ଟ |
| କର୍ତ୍ତନ | କର୍ତ୍ତିତ | ତ୍ୱରା, ତ୍ୱରଣ | ତ୍ୱରିତ |
| କ୍ରାନ୍ତି | କ୍ରାନ୍ତ | ତ୍ରାସ | ତ୍ରସ୍ତ |
| କ୍ରୋଧ | କ୍ରୁଦ୍ଧ | ତୁଳନା | ତୁଳିତ, ତୁଳନୀୟ |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| କ୍ରୟ | କ୍ରୀତ | ତୃପ୍ତି, ତର୍ପଣ | ତୃପ୍ତ, ତର୍ପିତ |
| କ୍ଲେଶ | କ୍ଲିଷ୍ଟ | ତ୍ୟାଗ | ତ୍ୟକ୍ତ |
| କୁଞ୍ଚନ | କୁଞ୍ଚିତ | ତୁନ୍ଦ, ତୁନ୍ଦି(ପେଟ) | ତୁନ୍ଦିକ, ତୁଣ୍ଡିଳ |
| କୁତ୍ସା, କୁତ୍ସନ | କୁତ୍ସିତ | | |
| ଖେଦ | ଖିନ୍ନ | ତାଡ଼ନ | ତାଡ଼ିତ |
| ଖଣ୍ଡନ | ଖଣ୍ଡିତ | ତାପ | ତାପିତ, ତପ୍ତ |
| ଖୋଦନ | ଖୋଦିତ | ଦଂଶନ | ଦଷ୍ଟ, ଦଂଶିତ |
| କ୍ଷତି | କ୍ଷତ | ଦର୍ପ | ଦୃପ୍ତ |
| କ୍ଷୟ | କ୍ଷୀଣ, କ୍ଷୟିତ | ଦଣ୍ଡ | ଦଣ୍ଡିତ |
| ଦାନ | ଦତ୍ତ | ଦର୍ଶନ | ଦୃଷ୍ଟ |
| ଦୀପ୍ତି | ଦୀପ୍ତ | ବନ୍ଧନ | ବଦ୍ଧ |
| ଦମନ | ଦମିତ | ବିଦାରଣ | ବିଦୀର୍ଣ୍ଣ |
| ଦାହ, ଦହନ | ଦଗ୍ଧ | ବିକିରଣ | ବିକୀର୍ଣ୍ଣ |
| ଦୃଷ୍ଟି, ଦର୍ଶନ | ଦୃଷ୍ଟ | ବ୍ୟଥା | ବ୍ୟଥିତ |
| ଦ୍ରବ | ଦ୍ରବିତ | ବିକାଶ | ବିକଶିତ |
| ଦ୍ରୋହ | ଦ୍ରୋହୀ | ବିଧ୍ୱଂସ | ବିଧ୍ୱସ୍ତ |
| ଧାରଣ | ଧାରିତ, ଧୃତ | ବିନାଶ | ବିନଷ୍ଟ |
| ଧ୍ୱଂସ | ଧ୍ୱସ୍ତ | ବିଭାଜନ, ବିଭାଗ | ବିଭକ୍ତ |
| ଧୌତି | ଧୌତ | ବିରତି, ବିରାମ | ବିରତ |
| ନିଧାନ | ନିହିତ | ବିସ୍ତାର | ବିସ୍ତୀର୍ଣ୍ଣ |
| ନିଷେଧ | ନିଷିଦ୍ଧ | ବିଶେଷ | ବିଶିଷ୍ଟ |
| ନାଶ | ନଷ୍ଟ | ବେଧ | ବିଦ୍ଧ |
| ନିମଜ୍ଜନ | ନିମଜ୍ଜିତ | ବିକ୍ରୟ | ବିକ୍ରିତ |
| ନିରୁଦ୍‌ବେଗ | ନିରୁଦ୍‌ବିଗ୍ନ | ବିଲୟ | ବିଲୀନ |
| ପାକ, ପାଚନ | ପକ୍ୱ | ବାଧା | ବାଧିତ |
| ପୂଜା, ପୂଜନ | ପୂଜିତ | ବିକ୍ଷୋଭ | ବିକ୍ଷୁବ୍ଧ |
| ପୂରଣ | ପୂର୍ଣ୍ଣ | ବିସ୍ମରଣ | ବିସ୍ମୃତ |
| ପତନ | ପତିତ | ବିକାର | ବିକୃତ |
| ପୀଡ଼ନ, ପୀଡ଼ା | ପୀଡ଼ିତ | ଭଙ୍ଗ, ଭଞ୍ଜନ | ଭଗ୍ନ, ଭଙ୍ଗିଳ |
| ପ୍ରତିଷେଧ | ପ୍ରତିଷିଦ୍ଧ | ଭଜନ, ଭକ୍ତି | ଭକ୍ତ |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ପ୍ରସାଦ | ପ୍ରସନ୍ନ | ଭର୍ତ୍ସନା | ଭର୍ତ୍ସିତ |
| ପ୍ରଣତି, ପ୍ରଣାମ | ପ୍ରଣତ | ଭ୍ରଂଶ | ଭ୍ରଷ୍ଟ |
| ପ୍ରେରଣ, ପ୍ରେରଣା | ପ୍ରେରିତ | ଭେଦ, ଭେଦନ | ଭିନ୍ନ |
| ପୁଷ୍ଟି | ପୁଷ୍ଟ | ଭୋଜନ | ଭୁକ୍ତ |
| ପ୍ରସଙ୍ଗ | ପ୍ରାସଙ୍ଗିକ | ଭୀତି | ଭୀତ |
| ପ୍ରାଶନ(ଭୋଜନ) | ପ୍ରାଶିତ | ଭକ୍ଷ | ଭକ୍ଷିତ, ଭୁକ୍ତ |
| ପ୍ରସ୍ଥାନ | ପ୍ରସ୍ଥିତ | ଭକ୍ଷଣ | ଭକ୍ଷିତ, ଭକ୍ଷ୍ୟ |
| ପ୍ରାପ୍ତି | ପ୍ରାପ୍ତ | ଭ୍ରମ | ଭ୍ରାନ୍ତ |
| ପ୍ରକର୍ଷ | ପ୍ରକୃଷ୍ଟ | ଭାଷଣ | ଭାଷିତ |
| ପ୍ରବେଶ | ପ୍ରବିଷ୍ଟ | ମୋହ | ମୁଗ୍ଧ, ମୂଢ଼ |
| ବଚନ, ଉକ୍ତି | ଉକ୍ତ | ମରଣ, ମୃତ୍ୟୁ | ମୃତ |
| ବାଚନ | ବାଚକ | | |
| ବନ୍ଦନ, ବନ୍ଦନା | ବନ୍ଦିତ | ମ୍ଳାନି | ମ୍ଳାନ |
| ବରଣ | ବୃତ, ବରଣୀୟ | ମୋଚନ, ମୁକ୍ତି | ମୁକ୍ତ |
| ବିଧାନ | ବିହିତ | ମଦ | ମତ୍ତ |
| ବିଷାଦ | ବିଷଣ୍ଣ | ମନ୍ତ୍ରଣା | ମନ୍ତ୍ରିତ |
| ବିଜୟ | ବିଜିତ | ରଂଜନ | ରଂଜିତ |
| ରତି | ରତ | ସ୍ୱେଦ | ସ୍ୱିନ୍ନ, ସ୍ୱେଦାକ୍ତ |
| ରୋଦନ | ରୁଦିତ | ସ୍ତମ୍ଭନ | ସ୍ତବ୍ଧ |
| ରୂପାୟଣ | ରୂପାୟିତ, ରୂପିତ | ସମ୍ପାଦନ | ସମ୍ପାଦିତ, ସମ୍ପନ୍ନ |
| ରେଶମ | ରେଶମୀ | | |
| ରୋଗ | ରୁଗ୍‌ଣ, ରୋଗୀ | ରୋଧ | ରୁଦ୍ଧ |
| ରୋଷ | ରୁଷ୍ଟ, ରୋଷିତ | ଲାଭ | ଲବ୍ଧ |
| ଲୋଭ | ଲୁବ୍‌ଧ | ଲୟ | ଲୀନ |
| ଲକ୍ଷଣ | ଲକ୍ଷିତ, ଲାକ୍ଷଣିକ | ଲିଖନ | ଲିଖିତ |
| ଲେପନ | ଲେପିତ | ଶାସ୍ତି | ଶାସିତ |
| ଶୟନ | ଶୟିତ, ଶୟାନ | ଶାପ | ଶପ୍ତ |
| ଶବ୍ଦ | ଶବ୍ଦିତ, ଶାବ୍ଦିକ | ଶୁକ୍ତି | ଶୌକ୍ତେୟ |
| ଶ୍ରବଣ | ଶ୍ରୁତ, ଶ୍ରାବ୍ୟ | ଶ୍ଳେଷ | ଶ୍ଳିଷ୍ଟ |
| ଶାସନ | ଶାସିତ, ଶିଷ୍ଟ | ଶୋଧ | ଶୁଦ୍ଧ |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଶ୍ରମ, ଶାନ୍ତି | ଶ୍ରାନ୍ତ | ଶୋଷ | ଶୋଷୀ, ଶୋଷିତ |
| ଶିକ୍ଷା, ଶିକ୍ଷଣ | ଶିକ୍ଷିତ | ଶକ୍ତି | ଶକ୍ତ, ଶାକ୍ତ |
| ସଞ୍ଚୟନ | ସଞ୍ଚିତ | ସଂଘାତ, ସଂହତି | ସଂହତ, ସାଂଘାତିକ |
| ସଙ୍ଗଠନ | ସଙ୍ଗଠିତ | ସନ୍ତୋଷ | ସନ୍ତୁଷ୍ଟ |
| ସେଚନ, ସେଚ | ସିକ୍ତ | ସୁପ୍ତି | ସୁପ୍ତ |
| ସାଧନ | ସାଧିତ | ସ୍ନେହ | ସ୍ନିଗ୍ଧ |
| ସ୍ମରଣ, ସ୍ମୃତି | ସ୍ମୃତ | ସୃଷ୍ଟି | ସୃଷ୍ଟ |
| ସ୍ତୁତି, ସ୍ତବ | ସ୍ତୁତ | ସଂଚରଣ | ସଂଚରିତ |
| ସୁଗନ୍ଧ | ସୁଗନ୍ଧିତ | ସଂଚାରଣ | ସଂଚାରିତ |
| ସୁଗମ | ସୁଗମ୍ୟ | ସଂକ୍ଷେପ,ସଂକ୍ଷେପଣ | ସଂକ୍ଷିପ୍ତ |

## ୨ । ବିଶେଷଣରୁ ବିଶେଷ୍ୟରେ ପରିବର୍ତ୍ତନ :

| ବିଶେଷଣ | ବିଶେଷ୍ୟ | ବିଶେଷଣ | ବିଶେଷ୍ୟ |
|---|---|---|---|
| ଅନୁରକ୍ତ | ଅନୁରକ୍ତି | ଅନୁପସ୍ଥିତ | ଅନୁପସ୍ଥିତି |
| ଅନୁମିତ | ଅନୁମିତି | ଅପ୍ରିୟ | ଅପ୍ରୀତି |
| ଅବିକୃତ | ଅବିକୃତି, ଅବିକାର | ଆରବ୍ଧ | ଆରବ୍ଧି, ଆରମ୍ଭ |
| ଆସକ୍ତ | ଆସକ୍ତି | ଆହୂତ | ଆହୂତି, ଆହ୍ୱାନ |
| ଆହୁତ | ଆହୁତି | ଉକ୍ତ | ଉକ୍ତି, ବଚନ |
| ଉନ୍ନତ | ଉନ୍ନତି | କୃତ | କୃତି, କାର୍ଯ୍ୟ |
| ଗୀତ | ଗୀତି, ଗାନ | ଗୃହୀତ | ଗ୍ରହଣ |
| ତୃପ୍ତ | ତୃପ୍ତି | ଦତ୍ତ | ଦାନ |
| ନିହିତ | ନିଧାନ | ପ୍ରଣତ | ପ୍ରଣତି, ପ୍ରଣାମ |
| ପ୍ରଶାନ୍ତ | ପ୍ରଶାନ୍ତି | ପ୍ରଶମନ | ପ୍ରଶମିତ |
| ଭ୍ରାନ୍ତ | ଭ୍ରାନ୍ତି | ଶ୍ରୁତ | ଶ୍ରୁତି |
| ଶ୍ଳୀଳ | ଶ୍ଳୀଳତା | ସଂକ୍ଷିପ୍ତ | ସଂକ୍ଷିପ୍ତତା, ସଂକ୍ଷିପ୍ତି, ସଂକ୍ଷେପ |
| ସଂକ୍ଷେପିତ | ସଂକ୍ଷେପଣ | ବ୍ୟକ୍ତ | ବ୍ୟକ୍ତି |
| ପ୍ଲାବିତ | ପ୍ଲାବନ | ପ୍ରୀତ | ପ୍ରୀତି |
| ପର୍ଯ୍ୟାପ୍ତ | ପର୍ଯ୍ୟାପ୍ତି, ପର୍ଯ୍ୟାପ୍ତତା | ନିଷିକ୍ତ | ନିଷେକ |
| | | ନୈଷୁପ୍ତି | ନିଷୁପ୍ତ(ଗାଢ଼ନିଦ୍ରିତ) |

| ବିଶେଷଣ | ବିଶେଷ୍ୟ | ବିଶେଷଣ | ବିଶେଷ୍ୟ |
|---|---|---|---|
| ନିଷ୍କ୍ରିୟ | ନିଷ୍କ୍ରିୟତା | ଧ୍ୟାତ | ଧ୍ୟାନ |
| ଦୀପ୍ତ | ଦୀପ୍ତି | ଜିତ | ଜୟ |
| | | ଝଙ୍କାରିତ, ଝଙ୍କୃତ | ଝଙ୍କାର, ଝଙ୍କୃତି |

## ୩ । ତଦ୍ଧିତ ପ୍ରଣାଳୀରେ ବିଶେଷ୍ୟରୁ ବିଶେଷଣରେ ପରିବର୍ତ୍ତନ :

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଅହଙ୍କାର | ଅହଙ୍କାରୀ | ରୋଗୀ | ରୋଗା, ରୋଗଣା |
| ଅପରାଧ | ଅପରାଧୀ | ମାଟି | ମାଟିଆ |
| ଅନ୍ଧାର | ଅନ୍ଧାରୀ, ଅନ୍ଧାରିଆ, | ପଙ୍କ | ପଙ୍କୁଆ, ପଙ୍କିଳ |
| | ଅନ୍ଧାରୁଆ | ପୁନରାବୃତ୍ତି | ପୁନରାବୃତ୍ତ |
| | | ପୁନରୁକ୍ତି | ପୁନରୁକ୍ତ |
| ଅଭ୍ୟନ୍ତର | ଆଭ୍ୟନ୍ତର, ଆଭ୍ୟନ୍ତରିକ, | ଋଣ | ଋଣୀ |
| | ଆଭ୍ୟନ୍ତରୀଣ | ବିବେକ | ବିବେକୀ |
| ଅରୁଣ,ଅରୁଣିମା | ଅରୁଣିତ,ଅରୁଣିମ | ବଳ | ବଳୀ, ବଳବାନ୍ |
| ଅଭିମାନ | ଅଭିମାନୀ | ସାହସ | ସାହସୀ, ସାହସିକ |
| ଅର୍ପଣ | ଅର୍ପିତ, ଅର୍ପଣୀୟ | ସଂକ୍ରାନ୍ତ | ସଂକ୍ରାନ୍ତୀୟ |
| ଅଲକ୍ଷ | ଅଲକ୍ଷିତ | ସଂଖ୍ୟା | ସାଂଖ୍ୟିକ |
| ଅପେକ୍ଷା | ଆପେକ୍ଷିକ | ଗର୍ବ | ଗର୍ବୀ, ଗର୍ବିତ |
| ଆଣ୍ଠୁ | ଆଣ୍ଠୁଆଣି | ମାଂସ | ମାଂସଳ, ମାଂସିକ |
| ଆଣ୍ଠ | ଆଣ୍ଠୁଆ | | |
| ଜ୍ଞାନ | ଜ୍ଞାନୀ, ଜ୍ଞାନବାନ୍ | ଶ୍ମଶ୍ରୁ | ଶ୍ମଶ୍ରୁଳ |
| ତେଜଃ | ତେଜସ୍ୱୀ | ଶୀତ | ଶୀତଳ, ଶୀତୁଆ |
| | | | ଶୀତୁଳିଆ |
| ବୁଦ୍ଧି | ବୌଦ୍ଧିକ | | |
| | | ଶୋଚନା | ଶୋଚ୍ୟ, ଶୋଚନୀୟ |
| ମାୟା | ମାୟାବୀ, ମାୟିକ | ଫେନ | ଫେନିଳ |
| ମେଧା | ମେଧାବୀ | ମୃତ୍ | ମୃଣ୍ମୟ |
| ନିଶା | ନୈଶ | ସ୍ୱର୍ଣ୍ଣ | ସ୍ୱର୍ଣ୍ଣମୟ |
| ଧନ | ଧନୀ, ଧନବାନ୍, | ବଂଶ | ବଂଶୀୟ |
| | ଧନିକ, ଧନଶାଳୀ | ଜଳ | ଜଳୀୟ |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଧର୍ମ | ଧର୍ମୀ, ଧର୍ମିଷ୍ଠ, ଧର୍ମୀୟ | | |
| ଦିନ | ଦୈନିକ | ପୁଷ୍ପ | ପୁଷ୍ପିତ |
| ଚୁଟି | ଚୁଟିଆ | ଭୟ | ଭୟାଳୁ |
| ପାହାଡ଼ | ପାହାଡ଼ିଆ | ଦୟା | ଦୟାଳୁ, ଦୟାବନ୍ତ |
| ମୁନ | ମୁନିଆ | ଚକ୍ଷୁ | ଚାକ୍ଷୁଷ |
| ହଳ | ହଳିଆ, ହଳୁଆ | ରୁଦ୍ର | ରୌଦ୍ର |
| ଦାଢ଼ | ଦାଢ଼ୁଆ | ଜାତି | ଜାତୀୟ, ଜାତିଆ |
| ଖରା | ଖରାଟିଆ | ପଶୁ | ପାଶବ, ପାଶବିକ |
| ଦାନ୍ତ | ଦାନ୍ତୁରା | ମାନବ | ମାନବୀୟ, ମାନବିକ |
| ଧ୍ୱନି | ଧ୍ୱନିତ, ଧ୍ୱନନ | ସଂଚୟ | ସଚୟୀ |
| ଲାଜ | ଲାଜକୁଳା, ଲାଜୁଆ | ସମାଜ | ସାମାଜିକ |
| କାନ୍ଦ | କାନ୍ଦୁରା | ସମୟ | ସାମୟିକ |
| ନିଶା | ନିଶାଖୋର, ନୈଶିକ | ପର୍ବତ | ପାର୍ବତ୍ୟ, ପାର୍ବତୀୟ |
| କୃପା | କୃପାଳୁ | ସ୍ୱର୍ଗ | ସ୍ୱର୍ଗୀୟ |
| ମୂଲ୍ୟ | ମୂଲ୍ୟବାନ୍ | ରାଷ୍ଟ୍ର | ରାଷ୍ଟ୍ରୀୟ |
| ପୁତ୍ର | ପୁତ୍ରକ, ପୁତ୍ରବାନ୍ | ବର୍ଷ | ବାର୍ଷିକ |
| ଲକ୍ଷ୍ମୀ | ଲକ୍ଷ୍ମୀବାନ୍ | ଲାଞ୍ଛ | ଲାଞ୍ଛୁଆ |
| ରୋଗ | ରୋଗା, ରୋଗଣିଆ | ଗାଲ | ଗାଲୁଆ |
| ମାଛ | ମାଛୁଆ | ସହର | ସହରୀ, ସହରିଆ |
| ମନୀଷା | ମନୀଷୀ | ସକାଳ | ସକାଳୁଆ |
| ମନ | ମନୁଆ | ସଜ୍ଜା | ସଜ୍ଜିତ |
| ଖରାବେଳ | ଖରାବେଳିଆ | ସକାଳ | ସକାଳୁଆ |
| ଗୋ | ଗବ୍ୟ | ନବ | ନବ୍ୟ |
| ଶରୀର | ଶାରୀରିକ | ସମୁଦ୍ର | ସାମୁଦ୍ରିକ |
| ତମ | ତାମସିକ | ଦେହ | ଦୈହିକ |
| ଲୁଣ | ଲୁଣିଆ, ଲୁଣୀ | ମେଘ | ମେଘୁଆ |
| ବଣ | ବଣୁଆ | ଗେରୁ | ଗେରୁଆ, ଗୈରିକ |
| ବନ | ବନ୍ୟ | | |

| ବିଶେଷ୍ୟ | ବିଶେଷଣ | ବିଶେଷ୍ୟ | ବିଶେଷଣ |
|---|---|---|---|
| ଚଇତ | ଚଇତି | କୁଜ | କୁଜା |
| ଦାଢ଼ି | ଦାଢ଼ିଆ | କଷା | କଷାଳିଆ |
| ଧୂଆଁ | ଧୂଆଁଳିଆ | ଜଟା | ଜଟିଆ |
| ସୂର | ସୌର | ବୁଦ୍ଧ | ବୌଦ୍ଧ |
| ଶୂର | ଶୌର | | |

## ୪ । ତଦ୍ଧିତ ପ୍ରଣାଳୀରେ ବିଶେଷଣରୁ ବିଶେଷ୍ୟରେ ପରିବର୍ତ୍ତନ :

| ବିଶେଷଣ | ବିଶେଷ୍ୟ | ବିଶେଷଣ | ବିଶେଷ୍ୟ |
|---|---|---|---|
| କୃତଜ୍ଞ | କୃତଜ୍ଞତା | କୁଶଳ | କୌଶଳ, କୁଶଳତା |
| ସାଧୁ | ସାଧୁତା, ସାଧୁତ୍ୱ | ଉପକାରୀ | ଉପକାରିତା |
| ଉପାଦେୟ | ଉପାଦେୟତା | ନିର୍ଲୋଭ | ନିର୍ଲୋଭତା |
| ପଣ୍ଡିତ | ପାଣ୍ଡିତ୍ୟ | ଲଳିତ | ଲାଳିତ୍ୟ |
| ଚଞ୍ଚଳ | ଚାଞ୍ଚଲ୍ୟ, ଚଞ୍ଚଳତା | ସୁନ୍ଦର | ସୌନ୍ଦର୍ଯ୍ୟ, ସୁନ୍ଦରତା |
| ମଧୁର | ମାଧୁର୍ଯ୍ୟ, ମଧୁରତା, | ବତ୍ସଳ | ବାତ୍ସଲ୍ୟ, ବତ୍ସଳତା |
| | ମାଧୁରୀ, ମଧୁରିମା | ବିଜନ | ବିଜନତା |
| ମରାମତ | ମରାମତି | | |
| ବିଷମ | ବୈଷମ୍ୟ, ବିଷମତା | ସମର୍ଥ | ସାମର୍ଥ୍ୟ, ସମର୍ଥତା |
| ବିଭିନ୍ନ | ବୈଭିନ୍ନ୍ୟ, ବିଭିନ୍ନତା | ଶୂର | ଶୌର୍ଯ୍ୟ, ଶୂରତ୍ୱ, ଶୂରତା |
| ବିପୁଳ | ବିପୁଳତା | ସଂଖ୍ୟକ | ସଂଖ୍ୟା |
| ବହୁଳ | ବାହୁଲ୍ୟ, ବହୁଳତା | ଗମ୍ଭୀର | ଗାମ୍ଭୀର୍ଯ୍ୟ, ଗମ୍ଭୀରତା |
| ଗୃହସ୍ଥ | ଗାର୍ହସ୍ଥ୍ୟ | ବୃଦ୍ଧ | ବାର୍ଦ୍ଧକ୍ୟ, ବୃଦ୍ଧତା, ବୃଦ୍ଧତ୍ୱ |
| ମହାତ୍ମା | ମହାତ୍ମ୍ୟ | ଦୁରାତ୍ମା | ଦୌରାତ୍ମ୍ୟ |
| ଧୀର | ଧୈର୍ଯ୍ୟ, ଧୀରତା | ସମ | ସାମ୍ୟ, ସମତା |
| ସୁଜନ | ସୌଜନ୍ୟ, ସୁଜନତା | ତରୁଣ | ତାରୁଣ୍ୟ, ତରୁଣତା |
| ନୀଳ | ନୀଳିମା | ଗୁରୁ | ଗରିମା, ଗୁରୁତ୍ୱ |
| ନୈତିକ | ନୈତିକତା | କରୁଣ | କାରୁଣ୍ୟ |
| ନୌକରୀ | ନୌକର | କୃପଣ | କାର୍ପଣ୍ୟ |
| ଲଘୁ | ଲଘିମା, ଲଘୁତ୍ୱ | ରକ୍ତ | ରକ୍ତିମା |
| ପାଗଳ | ପାଗଳାମି | ଠକ | ଠକାମି |
| ଚଗଲା | ଚଗଲାମି | ଦୁଷ୍ଟ | ଦୁଷ୍ଟାମି |
| ବଡ଼ | ବଡ଼ିମା, ବଡ଼େଇ | ମୂର୍ଖ | ମୂର୍ଖତା |

| ବିଶେଷଣ | ବିଶେଷ୍ୟ | ବିଶେଷଣ | ବିଶେଷ୍ୟ |
|---|---|---|---|
| ବୁଦ୍ଧିମାନ୍ | ବୁଦ୍ଧିମତ୍ତା | ଲଘୁ | ଲଘୁତା, ଲାଘବ |
| ପଟୁ | ପଟୁତା, ପାଟବ | ବୀର | ବୀରତ୍ୱ,ବୀରତା, ବୀର୍ଯ୍ୟ |
| ମୃଦୁ | ମାର୍ଦ୍ଦବ, ମୃଦୁତା | ସାର୍ଥକ | ସାର୍ଥକତା |
| ମହାନ୍ | ମହତ୍ତ୍ୱ, ମହିମା | ସାରବାନ୍ | ସାରବତ୍ତା |
| ଦାୟୀ | ଦାୟିତ୍ୱ | ସ୍ଥାୟୀ | ସ୍ଥାୟିତ୍ୱ |
| ପ୍ରତିଯୋଗୀ | ପ୍ରତିଯୋଗିତା | ପ୍ରତିଦ୍ୱନ୍ଦ୍ୱୀ | ପ୍ରତିଦ୍ୱନ୍ଦ୍ୱିତା |
| ପ୍ରଭୁ | ପ୍ରଭୁତ୍ୱ | ବିଦ୍ୱାନ୍ | ବିଦ୍ୱତ୍ତା |
| ମତ୍ତ | ମଦ | ଅରୁଣ,ଅରୁଣିମ | ଅରୁଣିମା |
| ଭଣ୍ଡ | ଭାଣ୍ଡାମି | ସମଗ୍ର | ସମଗ୍ରତା, ସାମଗ୍ର୍ୟ |
| ଚପଳ | ଚାପଲ୍ୟ, ଚପଳତା | ଯୁବା | ଯୁବତା, ଯୌବନ |
| ଦୃଢ଼ | ଦୃଢ଼ତା, ଦାର୍ଢ୍ୟ, ଦୃଢ଼ତ୍ୱ | ଦୀର୍ଘ | ଦୀର୍ଘତା,ଦୈର୍ଘ୍ୟ,ଦ୍ରାଘିମା |
| ଧୃଷ୍ଟ | ଧୃଷ୍ଟତା | ଦ୍ୱନ୍ଦ୍ୱୀ | ଦ୍ୱନ୍ଦ୍ୱ |
| ନିପୁଣ | ନିପୁଣତା, ନୈପୁଣ୍ୟ | ବକ୍ର | ବକ୍ରତା, ବକ୍ରତ୍ୱ, ବକ୍ରିମା |
| ନିଷ୍ଠୁର | ନିଷ୍ଠୁରତା, ନୈଷ୍ଠୁର୍ଯ୍ୟ | ଯୁବା | ଯୌବନ, ଯୁବତ୍ୱ |
| ଦୃଢ଼ | ଦାର୍ଢ୍ୟ, ଦୃଢ଼ତା | ସ୍ଥୂଳ | ସ୍ଥୂଳତା, ସ୍ଥୂଳତ୍ୱ |

**୫ । ତଦ୍ଧିତ ପ୍ରଣାଳୀରେ ବିଶେଷ୍ୟରୁ ବିଶେଷ୍ୟରେ ପରିବର୍ତ୍ତନ :**

| ବିଶେଷ୍ୟ | ବିଶେଷ୍ୟ | ବିଶେଷ୍ୟ | ବିଶେଷ୍ୟ |
|---|---|---|---|
| ଅଭିମୁଖ | ଆଭିମୁଖ୍ୟ | ଚୋର | ଚୌର |
| ବାଳ | ବାଳକ | ମରୁତ | ମାରୁତ |
| ବାଳକ | ବାଳକତ୍ୱ | ମର୍କଟ | ମର୍କଟକ |
| ମନ | ମାନସ | ସେନା | ସୈନ୍ୟ |
| ବନ୍ଧୁ | ବାନ୍ଧବ,ବନ୍ଧୁତା | ଅର୍ଘ | ଅର୍ଘ୍ୟ |
| ଲତା | ଲତିକା | ତାରା | ତାରକା |
| ନାସା | ନାସିକା | ଦେବ | ଦେବତା |
| ଅଙ୍ଗ | ଅଙ୍ଗି, ଅଙ୍ଗୀ | ବିଭବ | ବୈଭବ |
| ଅପୂପ | ଅପୂପ୍ୟ(ପିଠାର ଉପକରଣ) | ବଧୂ | ବଧୂଜନ |
| ନୌ | ନୌକା | ସୁଖ | ସୌଖ୍ୟ |
| ନର | ନରତ୍ୱ | କବି | କବିତା, କବିତ୍ୱ |
| ସୂର | ସୂର୍ଯ୍ୟ | ତ୍ରିଲୋକ | ତ୍ରୈଲୋକ୍ୟ |
| ବନ୍ଧୁ | ବାନ୍ଧବ, ବନ୍ଧୁତା, ବନ୍ଧୁତ୍ୱ | ରକ୍ଷ | ରାକ୍ଷସ |

| ବିଶେଷ୍ୟ | ବିଶେଷ୍ୟ | ବିଶେଷ୍ୟ | ବିଶେଷ୍ୟ |
|---|---|---|---|
| ପୁରୁଷ | ପୌରୁଷ, ପୁରୁଷତ୍ୱ | ଅତିଥି | ଆତିଥ୍ୟ |
| ସଖା | ସଖ୍ୟ | ବାବୁ | ବାବୁଆନି, ବାବୁଗିରି |
| ମିତ୍ର | ମିତ୍ରତା | ଗୋଲାମ | ଗୋଲାମଗିରି, |
| ଚକ | ଚକା, ଚକି | | ଗୋଲାମପଣ |
| ବିଭୀତ | ବିଭୀତି | ଦାସ | ଦାସତ୍ୱ, ଦାସ୍ୟ |
| କୁଲି | କୁଲିଗିରି | ହାକିମ | ହାକିମି |
| ଓକିଲ | ଓକିଲାତି | ଅବଧାନ | ଅବଧାନି |

### ୬ । ତଦ୍ଧିତ ପ୍ରତ୍ୟୟଦ୍ୱାରା ବିଶେଷଣରୁ ବିଶେଷଣ ଗଠିତ :

| ବିଶେଷଣ | ବିଶେଷଣ |
|---|---|
| ଗୁରୁ | ଗୁରୁତର, ଗୁରୁତମ, ଗରୀୟାନ୍, ଗରିଷ୍ଠ |
| ଲଘୁ | ଲଘୁତର, ଲଘୁତମ, ଲଘୀୟାନ୍, ଲଘିଷ୍ଠ |
| ମହାନ୍ | ମହତ୍ତର, ମହତ୍ତମ, ମହୀୟାନ୍, ମହିଷ୍ଠ |
| ବୃଦ୍ଧ | ବୃଦ୍ଧତର, ବୃଦ୍ଧତମ, ବର୍ଷୀୟାନ, ବର୍ଷିଷ୍ଠ, ଜ୍ୟାୟାନ୍, ଜ୍ୟେଷ୍ଠ |
| ବୃହତ୍ | ବୃହତ୍ତର, ବୃହତ୍ତମ |
| ବଳବତ୍(ବଳବାନ୍) | ବଳବତ୍ତର, ବଳବତ୍ତମ |

ଦିତ୍ସା (ଦାନକରିବାର ଇଚ୍ଛା - ଦିତ୍ସୁ

ଦିଦୃକ୍ଷମାଣ - ଦିଦୃକ୍ଷୁ

## ଅନୁଶୀଳନୀ

୧ । ନିମ୍ନଲିଖିତ ବିଶେଷଣ ଶବ୍ଦଗୁଡ଼ିକ ବିଶେଷ୍ୟରେ ପରିଣତ କର ।

ଦୀର୍ଘ, ମଧୁର, ମୂର୍ଖ, ଲଘୁ, ବଡ଼, ଗୃହୀତ, ବୈଧ, ଦୟାଳୁ, ଦାଢ଼ିଆ, ନିଶୁଆ, ଉପକାରୀ, ସମର୍ଥ, ଅମର, ଲଜ୍ଜିତ, ଦୁଷ୍ଟ, ପାଗଳ, ମଥିତ, ମୁଗ୍ଧ, ବଦ୍ଧ, ବିସ୍ମିତ, ଉନ୍ନୀତ, ମୃତ, ଗ୍ରସ୍ତ, ଅଭିଷିକ୍ତ, ହୃଷ୍ଟ, ସ୍ତବ୍ଧ, ଲବ୍ଧ, ଲୁବ୍ଧ, ବିସ୍ମୃତ, ସଂସ୍କୃତ, ତୃପ୍ତ, ଦ୍ରବିତ, ସଂକୁଆ, ରୋମାଞ୍ଚିତ, କ୍ଷୁଦ୍ର, ଦାର୍ଶନିକ, ଶୀତଳ, ବୁଦ୍ଧିମାନ୍, ଗୁଣଶାଳୀ, ଦୃଷ୍ଟ, ସ୍ତବ୍ଧ, ଉତ୍ତୀର୍ଣ୍ଣ, ଦୃପ୍ତ, ପ୍ରତିଯୋଗୀ, ପ୍ରଭୁ, ଗୁରୁ, ନୀଳ, ଗମ୍ଭୀର, ପଙ୍କିଳ, ଗବ୍ୟ, ସାମୁଦ୍ରିକ, ରାଷ୍ଟ୍ରୀୟ, ଶୈବ, ପଣ୍ଡିତ, ଚପଳ, ରମଣୀୟ, ପାଠ୍ୟ, ଶ୍ରୋତବ୍ୟ, ଶୋଚନୀୟ, ଦୋହନୀୟ, ସୌର, ଶୌର, ବିମର୍ଷ, ବୈମାତ୍ରେୟ, ବିଭୀତ, ବିଶେଷଜ୍ଞ, ବିଶିଷ୍ଟ ।

୨ । ନିମ୍ନଲିଖିତ ବିଶେଷ୍ୟ ଶବ୍ଦଗୁଡ଼ିକୁ ବିଶେଷଣରେ ପରିଣତ କର ।
ମଦ, ବାର୍ଦ୍ଧକ୍ୟ, ମୂର୍ଖତା, ନୀଳିମା, ବଡ଼େଇ, ଚଗଲାମି, କୃତଜ୍ଞତା, ଗାର୍ହସ୍ଥ୍ୟ, ପ୍ରତିଯୋଗିତା, ସାରବତ୍ତା, ସମତା, ଧୂଆଁ, ବୀର୍ଯ୍ୟ, ମହିମା, ଗାଁ, ଚଇତ, ମାଟି, ଦଳ, ତାଳୁ, ସଂସଦ, ଔଷଧି, ଆଜି, ଅନ୍ଧାର, ପେଟ, ଖାର, ସହର, ମାଛ, ମାଡ଼, ବୁଦ୍ଧ, ଦେହ, ଅପରାଧ, ରାଜା, ସମାଜ, ପୁଷ୍ଟ, ଗର୍ବ, ଗ୍ରାସ, ସ୍ତବ, ଆହ୍ୱାନ, ପୋଷଣ, ଭଞ୍ଜନ, ଶକ୍ତି, ପ୍ରସ୍ଥାନ, ମୋହ, ଆଦର, ପ୍ରକର୍ଷ, ତୃପ୍ତି, ବ୍ୟବଧାନ, ପାକ, ଦୋହନ, ଦୁଧ, ବିକ୍ରୟ, କ୍ଷୁଧା, ମାସ, କଣ୍ଠ, ସ୍ୱର, ବିଷାଦ, ଅବସାଦ, ଆହରଣ, ଜ୍ଞାନ, ଆଘ୍ରାଣ, ସ୍ନେହ, ସ୍ୱପ୍ନ, ସ୍ମୃତି, ଭଜନ, ଭକ୍ତି, ଭାଷଣ, କାର୍ଯ୍ୟ, ଅର୍ଚ୍ଚନା, ଅବଧାନ, ବିନାଶ, ଘାତ, ବୈଶିଷ୍ଟ୍ୟ, ବିଶୃଙ୍ଖଳା, ବୈଷମ୍ୟ ।

୩ । ଯେ ମରିଛି ସେ ମୃତ । ସେହିପରି ତଳ ଶବ୍ଦଗୁଡ଼ିକର ଅର୍ଥ ପ୍ରକାଶ କର–
ଗତ, ପଠିତ, ଭୁକ୍ତ, ସଂସ୍କୃତ, ଆରବ୍ଧ, ଉତ୍‌ଥିତ, ଅନୁମିତ, ଦୃଷ୍ଟ, ପ୍ରାପ୍ତ, ଆନୀତ, ଧ୍ୱସ୍ତ, ବିଦୀର୍ଣ୍ଣ, ଆରୂଢ଼, ଲୁବ୍‌ଧ, ସମ୍ପାଦିତ, ରୁଷ୍ଟ, ବ୍ୟଥିତ, ଆଶ୍ରିତ, ଲିଖିତ, ଗୀତ, ପକ୍ୱ, ବୈଶାଖୀ, ବୈମାନିକ, ମର୍ତ୍ତବ୍ୟ, ମନୋଗତ ।

୪ । ଦଶଟି 'ତା' ପ୍ରତ୍ୟୟାନ୍ତ ବିଶେଷ୍ୟ ଶବ୍ଦ ଲେଖ ।

୫ । 'କ' ସ୍ତମ୍ଭରେ ଥିବା ବିଶେଷ୍ୟ ପଦ ସହିତ 'ଖ' ସ୍ତମ୍ଭରେ ଥିବା ଉପଯୁକ୍ତ ବିଶେଷ୍ୟ ପଦ ଯୋଗକର ।

| 'କ' ସ୍ତମ୍ଭ | 'ଖ' ସ୍ତାମ୍ଭ |
|---|---|
| ମନୋନାୟନ | ବିଘ୍ନେଶ |
| ବୈରଲ୍ୟ | ବିକ୍ରାନ୍ତ |
| ବିମୁକ୍ତି | ବିଦ୍ରୋହୀ |
| ବିମୂର୍ତ୍ତତା | ବିରଳ |
| ବିଦ୍ରୋହ | ମନୋନୀତ |
| ବୀର୍ଯ୍ୟ | ବିମୁକ୍ତ |
| ବିଘ୍ନ | ବିମୂର୍ତ୍ତ |
| ବିକ୍ରମ | ବୀର |
| | ବିଘ୍ନିତ |



# ବାକ୍ୟର ଲକ୍ଷଣ

ନିମ୍ନରେ ପ୍ରଦତ୍ତ କେତୋଟି ଉଦାହରଣକୁ ଲକ୍ଷ୍ୟ କରାଯାଉ-

(୧) ପକ୍ଷିମାନେ ଆକାଶରେ...

(୨) ପକ୍ଷିମାନେ ଆକାଶରେ ଚକ୍‌କର କାଟୁଛନ୍ତି ।

(୩) ଧୋବା ନିଆଁରେ ଲୁଗା ଧୋଉଅଛି ।

(୪) ପିଲାଟି ପାଣିରେ ଲୁଗା ଧୋଉଅଛି ।

(୫) ସୃଷ୍ଟି କରି ସୁନ୍ଦର ଚମତ୍କାରିତା ତାଙ୍କର କରିଛନ୍ତି ଜଗତଟିକୁ ପ୍ରକାଶ ଏହି ଈଶ୍ୱର ।

(୬) ଈଶ୍ୱର ଏହି ସୁନ୍ଦର ଜଗତଟିକୁ ସୃଷ୍ଟି କରି ତାଙ୍କର ଚମତ୍କାରିତା ପ୍ରକାଶ କରିଛନ୍ତି ।

ବର୍ତ୍ତମାନ ଉପରୋକ୍ତ ଉଦାହରଣଗୁଡ଼ିକୁ ବିଶ୍ଳେଷଣ କରାଯାଉ-

ପ୍ରଥମ ଉଦାହରଣ "ପକ୍ଷିମାନେ ଆକାଶରେ..." ଏଥିରୁ କୌଣସି ନିର୍ଦ୍ଦିଷ୍ଟ ଅର୍ଥ ବୁଝାପଡୁ ନାହିଁ । କାରଣ "ପକ୍ଷିମାନେ ଆକାଶରେ-" ପରେ ଭାବ ପ୍ରକାଶ ନିମିତ୍ତ ଆଉ କେତେକ ପଦପାଇଁ ଅପେକ୍ଷା ରଖୁଅଛନ୍ତି । ଦ୍ୱିତୀୟ ଉଦାହରଣ "ପକ୍ଷୀମାନେ ଆକାଶରେ ଚକ୍‌କର କାଟୁଛନ୍ତି" ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟ । ପ୍ରଥମ ଉଦାହରଣଟିରେ ଅଭାବ ରହିଥିବା "ଚକ୍‌କର କାଟୁଛନ୍ତି" ଏଥିରେ ପୂରଣ ହୋଇପାରିଛି ଓ ଜିଜ୍ଞାସାର ଅନବଚ୍ଛିନ୍ନ ଧାରା ଅପ୍ରତିହତ ରହିପାରିଛି । ସେହି କାରଣରୁ ପ୍ରଥମ ଉଦାହରଣଟି ବାକ୍ୟ ହୋଇ ନ ଥିବା ସତ୍ତ୍ୱେ ଦ୍ୱିତୀୟ ଉଦାହରଣଟି ସମ୍ପୂର୍ଣ୍ଣ ବାକ୍ୟ ହୋଇପାରିଛି ।

ତୃତୀୟ ଉଦାହରଣରେ କର୍ତ୍ତା, କର୍ମ, କ୍ରିୟା ଇତ୍ୟାଦି ରହିଥିଲେ ହେଁ ତାହା ବାକ୍ୟ ଉପଯୋଗୀ ହୋଇପାରିନାହିଁ । କାରଣ ଲୁଗା ଧୋଇବାର ଯୋଗ୍ୟତା ନିଆଁର ନାହିଁ, ପାଣିର ରହିଛି । ଏହି ଦୃଷ୍ଟିରୁ ଚତୁର୍ଥ ଉଦାହରଣଟି "ପିଲାଟି ପାଣିରେ ଲୁଗା ଧୋଉଅଛି" ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟ । କାରଣ ଲୁଗା ଧୋଇବାର ଯୋଗ୍ୟତା ପାଣିର ରହିଛି ।

ପଞ୍ଚମ ଉଦାହରଣ "ସୃଷ୍ଟି କରି ସୁନ୍ଦର ଚମତ୍କାରିତା ତାଙ୍କର କରିଛନ୍ତି ଜଗତଟିକୁ ପ୍ରକାଶ ଏହି ଈଶ୍ୱର" ଗୋଟିଏ ବାକ୍ୟ ନୁହେଁ । କାରଣ ଏଥିରେ ସଂଯୁକ୍ତ ପଦ ବିନ୍ୟାସ ତ୍ରୁଟିପୂର୍ଣ୍ଣ ଓ ବୋଧ ସଂହତି ଅନବଚ୍ଛିନ୍ନ ନୁହେଁ । ଅଥଚ ଷଷ୍ଠ ବାକ୍ୟରେ ସେହି ପଦଗୁଡ଼ିକ ରହିଥିଲେହେଁ ସେଗୁଡ଼ିକୁ ଠିକ୍ ଭାବରେ ସଜାଇ ରଖାଯାଇ ଥିବାରୁ ଗୋଟିଏ ପଦ ଶ୍ରବଣ କରି ପରବର୍ତ୍ତୀ ପଦ ଶ୍ରବଣଦ୍ୱାରା ଜ୍ଞାନର ଧାରା ଅନବଚ୍ଛିନ୍ନ ରହିଅଛି ଓ ପୂର୍ଣ୍ଣ ଅର୍ଥ ପ୍ରକାଶିତ ହୋଇଅଛି ।

ଉପରୋକ୍ତ ବିଶ୍ଳେଷଣରୁ ଜଣାପଡ଼ିଲା ଯେ, ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟର କେତେଗୁଡ଼ିଏ ବୈଶିଷ୍ଟ୍ୟ ରହିଛି, ଯାହାକୁ ଆମେ ବାକ୍ୟର ଲକ୍ଷଣ ବୋଲି କହିପାରିବା । ସେହି ଲକ୍ଷଣ ଗୁଡ଼ିକ ହେଉଛି ଆକାଙ୍‌କ୍ଷା, ଯୋଗ୍ୟତା ଓ ଆସତ୍ତି ।

**ଆକାଙ୍‌କ୍ଷା–** ଗୋଟିଏ ବାକ୍ୟରେ ବିନ୍ୟସ୍ତ କରାଯାଇଥିବା ପଦ ଅର୍ଥବୋଧ ନିମିତ୍ତ ପୂର୍ବପଦ ପରବର୍ତ୍ତୀ ପଦକୁ ଅପେକ୍ଷା ରଖିଥାଏ । ଅର୍ଥାତ୍ ବାକ୍ୟର ସମ୍ପୂର୍ଣ୍ଣ ଅର୍ଥବୋଧ ନିମିତ୍ତ ଗୋଟିଏ ପଦ ଅନ୍ୟପଦ ବା ପଦମାନଙ୍କର ଆକାଙ୍‌କ୍ଷା ବା ଅପେକ୍ଷା ରଖିଥାଏ । ବ୍ୟାକରଣରେ ଏହି ଅପେକ୍ଷାର ନାମ ହେଉଛି ଆକାଙ୍‌କ୍ଷା । ଯଥା–

ପକ୍ଷିମାନେ ଆକାଶରେ...

ପିଲାମାନେ ପଡ଼ିଆରେ...

ଉଦାହରଣ ଦୁଇଟି ସମ୍ପୂର୍ଣ୍ଣ ଅର୍ଥବୋଧ ନିମିତ୍ତ ଅନ୍ୟ କେତୋଟି ପଦର ଅପେକ୍ଷା ବା ଆକାଙ୍‌କ୍ଷା ରଖିଛନ୍ତି । ସେହି ପଦଗୁଡ଼ିକର ଅଭାବ ଥିବାରୁ ଏ ଦୁଇଟି ବାକ୍ୟ ନୁହନ୍ତି । ସେହି ପଦଗୁଡ଼ିକର ଅଭାବ ପୂରଣ ହେଲେ, ଅର୍ଥ ସମ୍ପୂର୍ଣ୍ଣ ପ୍ରକାଶ ପାଇବ ଓ ତାହା ବାକ୍ୟରେ ପରିଣତ ହୋଇପାରିବ । ଯଥା–

ପକ୍ଷିମାନେ ଆକାଶରେ ଉଡୁଛନ୍ତି ।

ପିଲାମାନେ ପଡ଼ିଆରେ ଖେଳୁଛନ୍ତି ।

**ଯୋଗ୍ୟତା–** ଯୋଗ୍ୟତାର ଅର୍ଥ ହେଉଛି ବାକ୍ୟ ମଧ୍ୟରେ ବ୍ୟବହୃତ ହୋଇଥିବା ପଦମାନଙ୍କର ପରସ୍ପରସମ୍ବନ୍ଧରେ ପ୍ରତିବନ୍ଧକ ବା ବାଧାର ଅଭାବ । ବାକ୍ୟରେ ବ୍ୟବହୃତ ପଦମାନଙ୍କ ମଧ୍ୟରେ ଭାବ ବା ଅର୍ଥ ପ୍ରତୀତିରେ ବ୍ୟାଘାତ ଘଟିଲେ, ତାହା ବାକ୍ୟ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ–

ବିରାଡ଼ିଟି ଆକାଶରେ ଉଡୁଅଛି ।

ମଧୁ ଖାଇସାରି ନିଆଁ ପିଉଛି ।

ଉପରୋକ୍ତ ବାକ୍ୟ ଦ୍ୱୟରେ ଯଥାକ୍ରମେ ବିରାଡ଼ିର ଉଡ଼ିବାର କିମ୍ବା ମଧୁ (ମଣିଷ)ର ନିଆଁ ପିଇବାର ଯୋଗ୍ୟତା ନାହିଁ । କାରଣ ପକ୍ଷୀମାନଙ୍କର ଉଡ଼ିବାର ବା ମଧୁର (ମଣିଷ) ପାଣି ପିଇବାର ଯୋଗ୍ୟତା ରହିଛି । ଉପର ବାକ୍ୟରେ ଯୋଗ୍ୟତାର ଅଭାବ ହେତୁ ସେଗୁଡ଼ିକ ବାକ୍ୟ ହୋଇପାରିବ ନାହିଁ; ମାତ୍ର ଏହାକୁ ପରିବର୍ତ୍ତନ କରି ଲେଖିଲେ ହେବ–

ପକ୍ଷିଟି ଆକାଶରେ ଉଡୁଅଛି ।

ମଧୁ ଖାଇସାରି ପାଣି ପିଉଛି ।

ବର୍ତ୍ତମାନ ଏଗୁଡ଼ିକ ଯଥାର୍ଥରେ ବାକ୍ୟ ହୋଇପାରିଛନ୍ତି ।

ଆସତ୍ତି- ଆସତ୍ତିର ଅର୍ଥ ହେଉଛି ସମୀପବର୍ତ୍ତିତା ବା ପାଖାପାଖି । ବାକ୍ୟ ମଧ୍ୟରେ ପଦଗୁଡ଼ିକ ଏପରି ବିନ୍ୟାସ କରାଯିବା ଉଚିତ, ଯାହାଦ୍ୱାରା ଗୋଟିଏ ପଦ ଶ୍ରବଣ କରି ପରବର୍ତ୍ତୀ ପଦ ଶ୍ରବଣ କରିବାଦ୍ୱାରା ବୋଧସଂହତି ଅନବଚ୍ଛିନ୍ନ ରହୁଥିବା ଆବଶ୍ୟକ । ଅନ୍ୟ ଭାବରେ କହିଲେ ପଦମାନଙ୍କର ଅବିଳମ୍ବ ଉଚ୍ଚାରଣ ବା ଉଚିତ ସ୍ଥାନରେ ଅବସ୍ଥିତି ତଥା ଅସଂହତିହୀନତାକୁ ଆସତ୍ତି କୁହାଯାଏ । ଯଦି ଜଣେ ବ୍ୟକ୍ତି 'ମୁଁ' କହି କିଛି ସମୟପରେ 'କଟକ' ଓ ତତ୍‌ପରବର୍ତ୍ତୀ ସମୟରେ 'ଯିବି' ଉଚ୍ଚାରଣ କରେ, ତେବେ ତାହା ବାକ୍ୟ ହୋଇପାରିବ ନାହିଁ । 'ମୁଁ କଟକ ଯିବି' ଏହି ତିନୋଟି ପଦର ଅବିଳମ୍ବ ଉଚ୍ଚାରଣ ଓ ସଂହତି ରହିଲେ ଅର୍ଥାତ୍ ପଦମାନଙ୍କ ମଧ୍ୟରେ ଆସତ୍ତି ରହିଲେ, ବାକ୍ୟ ହୋଇପାରିବ । ଉଦାହରଣ ସ୍ୱରୂପ-

କହିଲ ନାହିଁ ତାହାର ତୁମେ ଯାହା ପ୍ରମାଣ କୌଣସି ।

ଜଗତର କରିଥା'ନ୍ତି ମୁନିଋଷିମାନେ ପ୍ରାର୍ଥନା ମଙ୍ଗଳପାଇଁ ଈଶ୍ୱରଙ୍କୁ ।

ଉପରୋକ୍ତ ଉଦାହରଣ ଦ୍ୱୟରେ ପଦଗୁଡ଼ିକ ଉଚିତ ବିନ୍ୟସ୍ତ ହୋଇ ନ ଥିବାରୁ ପଦମାନଙ୍କର ଶ୍ରବଣ ସମୟରେ ଜ୍ଞାନର ଧାରା ଅନବଚ୍ଛିନ୍ନ ରହୁ ନ ଥିବାରୁ ଅର୍ଥାତ୍ ଆସତ୍ତି ଅଭାବରୁ ଏଗୁଡ଼ିକ ବାକ୍ୟ ନୁହେଁ; ମାତ୍ର ଏଥିରେ ସନ୍ନିବେଶିତ ପଦମାନଙ୍କୁ ଯଥାରୀତି ସଜାଇ ରଖିଲେ ଭାବ ଓ ଜ୍ଞାନର ଧାରା ଅଭଙ୍ଗ ରହିବ ଓ ସେମାନେ ଉଚିତ ବାକ୍ୟରେ ପରିଣତ ହୋଇପାରିବେ । ଯଥା-

ତୁମେ ଯାହା କହିଲ ତାହାର କୌଣସି ପ୍ରମାଣ ନାହିଁ ।

ମୁନିଋଷିମାନେ ଜଗତର ମଙ୍ଗଳପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିଥା'ନ୍ତି ।

## ଅନୁଶୀଳନୀ

୧ । ଗୋଟିଏ ସାର୍ଥକ ବାକ୍ୟର ଲକ୍ଷଣ ସମ୍ପର୍କରେ ସୂଚନା ପ୍ରଦାନ କର ।

୨ । 'ଆସତ୍ତି' କହିଲେ କ'ଣ ବୁଝ ? ଉଦାହରଣ ସହିତ ବାକ୍ୟରେ ଏହାର ପ୍ରୟୋଜନୀୟତା ଦର୍ଶାଅ ।

୩ । ଯୋଗ୍ୟତା କ'ଣ ? ବାକ୍ୟରେ ଏହାର ପ୍ରୟୋଜନୀୟତା ଦର୍ଶାଅ ।

୪ । ନିମ୍ନଲିଖିତ ଉଦାହରଣ ଗୁଡ଼ିକରେ କାହାର ଅଭାବ ରହିଛି, ସୂଚନା ପ୍ରଦାନ କର-

(କ) ପିଲାଟି ଦୌଡ଼ୁ ଦୌଡ଼ୁ...

(ଖ) ଆଜିକାଲି ନାହାନ୍ତି କଥା ବଡ଼ମାନଙ୍କର ପିଲାମାନେ ମାନୁ ।

(ଗ) ପାହାଡ଼ ଆକାଶରେ ଉଡୁଛି ।

(ଘ) ପିଲାଟି ଚାରାଗଛରେ ଅଗ୍ନି ସିଞ୍ଚନ କରୁଅଛି ।



# ବାକ୍ୟର ଉଦ୍ଦେଶ୍ୟ ଓ ବିଧେୟ

ତଳେ ଦିଆଯାଇଥିବା ବାକ୍ୟ ଦୁଇଟିକୁ ଲକ୍ଷ୍ୟ କରାଯାଉ-

(କ) ନରୋତ୍ତମ ବିଦ୍ୟାଳୟକୁ ଯାଉଛି ।

(ଖ) ମଧୁସୂଦନ ଜଣେ ଜାତୀୟବାଦୀ ନେତା ଥିଲେ ।

'କ' ବାକ୍ୟରେ ନରୋତ୍ତମ ବିଷୟରେ ଓ 'ଖ' ବାକ୍ୟରେ ମଧୁସୂଦନଙ୍କ ବିଷୟରେ କିଛି କୁହାଯାଇଛି । ପ୍ରଥମ ବାକ୍ୟରେ ନରୋତ୍ତମ ଓ ଦ୍ୱିତୀୟ ବାକ୍ୟରେ ମଧୁସୂଦନ ହିଁ ମୁଖ୍ୟ, ଯାହାଙ୍କ ସମ୍ପର୍କରେ ପରବର୍ତ୍ତୀ ଅଂଶରେ କୌଣସି ବିବରଣୀ ପ୍ରଦାନ କରାଯାଇଛି । ତେଣୁ ନରୋତ୍ତମ ଓ ମଧୁସୂଦନ ଯଥାକ୍ରମେ ବାକ୍ୟ ଦୁଇଟିର କର୍ତ୍ତା ।

କୌଣସି ବାକ୍ୟରେ ଯାହାଙ୍କ ଉଦ୍ଦେଶ୍ୟରେ ଅର୍ଥାତ୍ ଯାହା ସମ୍ପର୍କରେ କିଛି କୁହାଯାଇଥାଏ, ତାହାକୁ ଉଦ୍ଦେଶ୍ୟ କହନ୍ତି । ଉପରୋକ୍ତ ଉଦାହରଣ ଦୁଇଟିରେ 'ନରୋତ୍ତମ' ଏବଂ 'ମଧୁସୂଦନ'ଙ୍କ ସମ୍ପର୍କରେ କୁହାଯାଇଥିବାରୁ ସେମାନେ ବାକ୍ୟର ଉଦ୍ଦେଶ୍ୟ । ପ୍ରଥମ ବାକ୍ୟରେ ନରୋତ୍ତମ ବିଷୟରେ କୁହାଯାଇଛି- "ବିଦ୍ୟାଳୟକୁ ଯାଉଛି ।"

ଦ୍ୱିତୀୟ ବାକ୍ୟରେ ମଧୁସୂଦନଙ୍କ ବିଷୟରେ କୁହାଯାଇଛି- "ଜଣେ ଜାତୀୟବାଦୀ ନେତା ଥିଲେ ।" ତେଣୁ କୌଣସି ବାକ୍ୟର କର୍ତ୍ତା ହିଁ ହେଉଛି, ସେହି ବାକ୍ୟର ଉଦ୍ଦେଶ୍ୟ ।

ସେହିପରି "ବିଦ୍ୟାଳୟକୁ ଯାଉଛି", "ଜଣେ ଜାତୀୟବାଦୀ ନେତା ଥିଲେ"- ଯଥାକ୍ରମେ "ନରୋତ୍ତମ" ଓ "ମଧୁସୂଦନ"ଙ୍କ ଉଦ୍ଦେଶ୍ୟରେ କୁହାଯାଇଛି । ତେଣୁ ବାକ୍ୟରେ ଉଦ୍ଦେଶ୍ୟ ବିଷୟରେ ଯାହା କୁହାଯାଇଥାଏ, ତାହା ବିଧେୟ । ପ୍ରଥମ ବାକ୍ୟରେ ନରୋତ୍ତମ (ଉଦ୍ଦେଶ୍ୟ) ସମ୍ପର୍କରେ କୁହାଯାଇଛି- "ବିଦ୍ୟାଳୟକୁ ଯାଉଛି" ଏବଂ ଦ୍ୱିତୀୟ ବାକ୍ୟରେ ମଧୁସୂଦନଙ୍କ (ଉଦ୍ଦେଶ୍ୟ) ସମ୍ବନ୍ଧରେ କୁହାଯାଇଛି "ଜଣେ ଜାତୀୟବାଦୀ ନେତା ଥିଲେ ।" ଏଠାରେ "ବିଦ୍ୟାଳୟକୁ ଯାଉଛି" ଓ "ଜଣେ ଜାତୀୟବାଦୀ ନେତା ଥିଲେ" ଯଥାକ୍ରମେ ଉପରୋକ୍ତ ଦୁଇଟି ବାକ୍ୟର ବିଧେୟ ।

ବାକ୍ୟରେ ସାଧାରଣତଃ କର୍ତ୍ତା ଓ କ୍ରିୟା ମୁଖ୍ୟ ଅଂଶ ହୋଇଥିଲେ ହେଁ, ଅନେକ କ୍ଷେତ୍ରରେ 'କର୍ତ୍ତା' ଓ 'କ୍ରିୟା' ବ୍ୟତୀତ ବାକ୍ୟରେ ଅନ୍ୟାନ୍ୟ ପଦ ମଧ୍ୟ ରହିଥାଏ । ସେହି ପଦମାନଙ୍କ ମଧ୍ୟରୁ କେତେକ କର୍ତ୍ତାର ଓ ଅନ୍ୟ କେତେକ କ୍ରିୟାକୁ ଅନୁସରଣ କରିଥା'ନ୍ତି । ଅର୍ଥାତ୍ କର୍ତ୍ତା ଓ କ୍ରିୟାକୁ ବିଶେଷିତ କରିଥା'ନ୍ତି । ଉଦାହରଣ ସ୍ୱରୂପ-

"ଅସହାୟ ଦରିଦ୍ର ପିଲାଟି ରାସ୍ତାରେ ଢଳି ଢଳି ଧୀରେ ଧୀରେ ଚାଲୁଅଛି ।"

ଉକ୍ତ ବାକ୍ୟରେ 'ପିଲାଟି' କର୍ତ୍ତାପଦ ଏବଂ 'ଚାଲୁଅଛି' କ୍ରିୟାପଦ । 'ଅସହାୟ' ଏବଂ 'ଦରିଦ୍ର' ପଦ ଦୁଇଟି କର୍ତ୍ତା 'ପିଲାଟି'କୁ ବିଶେଷିତ କରୁଅଛି । ସେହିପରି 'ଢଳି ଢଳି' ଏବଂ 'ଧୀରେ ଧୀରେ' ପଦ ଦ୍ୱୟ କ୍ରିୟା 'ଚାଲୁଅଛି'କୁ ବିଶେଷିତ କରୁଅଛି ।

ତେଣୁ ଯେଉଁ ପଦ ବା ପଦସମଷ୍ଟି କର୍ତ୍ତାକୁ ବର୍ଦ୍ଧିତ ବା ବିଶେଷିତ କରିଥା'ନ୍ତି, ସେମାନଙ୍କୁ କର୍ତ୍ତାର ବିବର୍ଦ୍ଧକ ବା ଅନୁବନ୍ଧ ଏବଂ ଯେଉଁ ପଦ ବା ପଦ ସମଷ୍ଟି କ୍ରିୟାକୁ ବିଶେଷିତ କରିଥା'ନ୍ତି, ସେମାନଙ୍କୁ କ୍ରିୟାର ଅନୁବନ୍ଧ ବା ବିବର୍ଦ୍ଧକ କୁହାଯାଏ । ଉପର ଲିଖିତ ବାକ୍ୟରେ 'ଅସହାୟ', 'ଦରିଦ୍ର' କର୍ତ୍ତାର ଅନୁବନ୍ଧ ଏବଂ 'ଢଳିଢଳି', 'ଧୀରେ ଧୀରେ' କ୍ରିୟାର ଅନୁବନ୍ଧ । ଏଥିରୁ ଜଣାପଡ଼ିଲା ଯେ କର୍ତ୍ତା ଓ କର୍ତ୍ତାର ଅନୁବନ୍ଧ ଅଂଶଟି 'ଉଦ୍ଦେଶ୍ୟ' ଏବଂ କ୍ରିୟା ଏବଂ କ୍ରିୟାର ଅନୁବନ୍ଧ ଅଂଶ 'ବିଧେୟ' ନାମରେ ପରିଚିତ ।

ସାଧାରଣତଃ ସମ୍ବନ୍ଧପଦ, ନାମ ବିଶେଷଣ, ନାମ ବିଶେଷଣର ବିଶେଷଣ ଏବଂ ନାମ ବିଶେଷଣୀୟ ବାକ୍ୟାଂଶ 'ଉଦ୍ଦେଶ୍ୟ' ବା 'କର୍ତ୍ତା'ର ଅନୁବନ୍ଧ ହୋଇଥା'ନ୍ତି । ଯଥା-

**ମୋର** କଲମଟି ଛାଡ଼ି ଆସିଛି । (ସମ୍ବନ୍ଧପଦ)

**ଧୋବା ଘରର** କୁକୁର ନା ଘରର ନା ଗାଆଁର । (ସମ୍ବନ୍ଧପଦ)

**ବୁଦ୍ଧିମାନ୍** ବ୍ୟକ୍ତି ସବୁଠାରେ ଶ୍ରଦ୍ଧା ପାଇଥା'ନ୍ତି । (ନାମ ବିଶେଷଣ)

**ଚତୁର** ଲୋକ ବିପଦରେ ପଡ଼େ ନାହିଁ । (ନାମ ବିଶେଷଣ)

ଅତି ସୁନ୍ଦର ଝିଅଟି ରାସ୍ତାରେ ଯାଉଅଛି । (ନାମବିଶେଷଣର ବିଶେଷଣ)

**ନିତାନ୍ତ** ଦୁଃଖୀ ବ୍ୟକ୍ତିଟି ଭୋକରେ ଆଉଟୁ ପାଉଟୁ ହେଉଛି (ନାମ ବିଶେଷଣର ବିଶେଷଣ)

**ପୋଥିରେ ଥିବା** ବିଦ୍ୟା କୌଣସି କାମରେ ଆସେ ନାହିଁ । (ନାମ ବିଶେଷଣୀୟ ବାକ୍ୟାଂଶ)

**ପର ହାତରେ ଥିବା** ଧନ କୌଣସି କାମର ନୁହେଁ । (ନାମ ବିଶେଷଣୀୟ ବାକ୍ୟାଂଶ)

ଅନୁରୂପ ଭାବେ କ୍ରିୟାବିଶେଷଣ, କ୍ରିୟାବିଶେଷଣର ବିଶେଷଣ, କ୍ରିୟା ବିଶେଷଣୀୟ ବାକ୍ୟାଂଶ ତଥା କେତେକ କ୍ଷେତ୍ରରେ କାରକର ପଦମାନେ କ୍ରିୟାର ଅନୁବନ୍ଧ ହୋଇଥା'ନ୍ତି । ଯଥା-

ପବନ **ଧୀରେ** ବହୁଅଛି । (କ୍ରିୟାବିଶେଷଣ)

ପିଲାଟି **ଧୀରେ** ଚାଲୁଅଛି । (କ୍ରିୟାବିଶେଷଣ)

ପବନ **ଅତି** ଧୀରେ ବହୁଅଛି । (କ୍ରିୟାବିଶେଷଣର ବିଶେଷଣ)

ମଧୁ ଅତି ଧୀରେ କଥା କହୁଅଛି । (କ୍ରିୟାବିଶେଷଣର ବିଶେଷଣ)

**ଲୋକଟି ନଇଁ ପଡ଼ିଥିବା ବେଳେ,** ତା' ପ୍ରତି ନିଷ୍ଠୁର ହେବନାହିଁ । (କ୍ରିୟା ବିଶେଷଣୀୟ ବାକ୍ୟାଂଶ)

**ବାଘ ଘାଇଲା ହୋଇଥିବା ସମୟରେ** ତା'ପାଖକୁ ଯିବ ନାହିଁ । (କ୍ରିୟା ବିଶେଷଣୀୟ ବାକ୍ୟାଂଶ)

କେତେକ ବାକ୍ୟରେ କର୍ତ୍ତା ଓ କ୍ରିୟା ପଦ ଉହ୍ୟ ରହିଥା'ନ୍ତି । ଏହା ସତ୍ତ୍ୱେ ବାକ୍ୟରେ ସେମାନଙ୍କର ଉପସ୍ଥିତି ବୋଧଗମ୍ୟ ହେବାରେ କୌଣସି ଅସୁବିଧା ହୋଇ ନ ଥାଏ । ଯଥା-

"କାଲି କଟକ ଯିବି"- ଏହି ବାକ୍ୟରେ କର୍ତ୍ତା 'ମୁଁ' ଉହ୍ୟ ରହିଅଛି ।

"କେତେବେଳେ ଆସିବ ?"- ଏହି ବାକ୍ୟରେ କର୍ତ୍ତା 'ତୁମେ' ଉହ୍ୟ ରହିଅଛି ।

"ପିଲାଟି ଅତି ସୁନ୍ଦର"- ଏହି ବାକ୍ୟରେ କ୍ରିୟା 'ଅଟେ' ଉହ୍ୟ ରହିଅଛି ।

"ମୋ ବାପା ଜଣେ ଡାକ୍ତର"- ଏହି ବାକ୍ୟରେ କ୍ରିୟା 'ଅଟନ୍ତି' ଉହ୍ୟ ରହିଅଛି ।

## ଅନୁଶୀଳନୀ

୧ । ଉଦ୍ଦେଶ୍ୟ ଓ ବିଧେୟ କାହାକୁ କୁହାଯାଏ ?

୨ । ନିମ୍ନଲିଖିତ ବାକ୍ୟଗୁଡ଼ିକରୁ ଉଦ୍ଦେଶ୍ୟ ଏବଂ ବିଧେୟ ଅଂଶ ଚିହ୍ନାଅ ।

(କ) ରାମଚନ୍ଦ୍ର ଅଯୋଧ୍ୟାର ରାଜା ଥିଲେ ।

(ଖ) ଚଢ଼େଇଟି ଗଛ ଡାଳରେ ବସିଛି ।

(ଗ) ଇନ୍ଦ୍ରଧନୁ ଶୋଭିତ ଆକାଶ ଅତ୍ୟନ୍ତ ମନୋହର ଦେଖାଯାଉଅଛି ।

(ଘ) ହିଂସ୍ର ବ୍ୟାଘ୍ର ପ୍ରତି ସତର୍କ ରହିବା ଉଚିତ ।

୩ । ନିମ୍ନଲିଖିତ ବାକ୍ୟଗୁଡ଼ିକରୁ କର୍ତ୍ତାର ବିବର୍ଦ୍ଧନ ଓ କ୍ରିୟାର ବିବର୍ଦ୍ଧନ ଅଂଶ ଚିହ୍ନାଅ ।

(କ) ଅନ୍ଧ ଭିକାରିଟି ବାଡ଼ି ଧରି ରାସ୍ତା ଉପରେ ଧୀରେ ଧୀରେ ଚାଲୁଅଛି ।

(ଖ) ହିଂସ୍ର ଓ ଭୟଙ୍କର ବାଘଟି ଜଙ୍ଗଲରେ ଦୁମ୍‌ଦୁମ୍ ହୋଇ ଡେଉଁଅଛି ।



# ବାକ୍ୟାଂଶ, ଖଣ୍ଡବାକ୍ୟ ଓ ଉପବାକ୍ୟ

ଆମେ ଜାଣୁ, ଯେତେବେଳେ କେତେଗୁଡ଼ିଏ ପଦ ମିଳିତ ହୋଇ ମନର ଏକ ପୂର୍ଣ୍ଣଭାବ ପ୍ରକାଶ କରନ୍ତି, ସେତେବେଳେ ତାହାକୁ ବାକ୍ୟ କୁହାଯାଇଥାଏ । ଉଦାହରଣ ସ୍ୱରୂପ- ରାମଚନ୍ଦ୍ର ଅଯୋଧ୍ୟାର ରାଜା ଥିଲେ । ଏହି ବାକ୍ୟରେ ଚାରୋଟି ପଦ ରହିଛି ଓ ସେମାନେ ପରସ୍ପର ସହିତ ମିଳିତ ହୋଇ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରୁଛନ୍ତି । ପ୍ରତ୍ୟେକ ବାକ୍ୟରେ ଗୋଟିଏ କର୍ତ୍ତା ଓ ଗୋଟିଏ ସମାପିକା କ୍ରିୟା ରହିଥା'ନ୍ତି । ସମୟେ ସମୟେ କର୍ତ୍ତାହୀନ ଗୋଟିଏ ସମାପିକା କ୍ରିୟା ମଧ୍ୟ ମନୋଭାବ ପ୍ରକାଶରେ ସମର୍ଥ ହୋଇଥାଏ । ଯେପରି ଖାଆନ୍ତୁ, ଚାଲନ୍ତୁ, ବସନ୍ତୁ, ଆସନ୍ତୁ ଇତ୍ୟାଦି । ତେଣୁ ସଂକ୍ଷେପରେ କହିଲେ 'ଭାବପ୍ରକାଶକ ପୂର୍ଣ୍ଣାଙ୍ଗ ଉକ୍ତି ବିଶେଷ ହିଁ ବାକ୍ୟ' ।

**ବାକ୍ୟାଂଶ :**

ବକ୍ତାଟିଏ ତା'ର ଭାବପ୍ରକାଶ କରିବାକୁ ଯିବା ସମୟରେ ପ୍ରସଙ୍ଗ ଓ ପରିସ୍ଥିତିକୁ ଚାହିଁ ଉଭୟ ବଡ଼ ବାକ୍ୟ ବା ଛୋଟ ବାକ୍ୟ ପ୍ରକାଶ କରିପାରେ; ମାତ୍ର ପ୍ରତ୍ୟେକ ବାକ୍ୟରେ କେତେଗୁଡ଼ିଏ ଅଂଶ ରହିଥାଏ । ଉଦାହରଣ ସ୍ୱରୂପ ଏଠାରେ ଗୋଟିଏ ବାକ୍ୟ ଉଦ୍ଧାର କରାଯାଇପାରେ-

ଆଜିକାଲି ଲୋକମାନେ    କିଛି ବୁଝି ନ ପାରି    ନିଜର ଅହଂ ପାଇଁ
ପରସ୍ପର ମଧ୍ୟରେ    ମାଡ଼ପିଟି କରିଥା'ନ୍ତି ।

ଉପରୋକ୍ତ ବାକ୍ୟରେ ପାଞ୍ଚୋଟି ଅଂଶ ରହିଥିବାର ଦେଖିବାକୁ ମିଳେ, ଯେଉଁଗୁଡ଼ିକୁ ରେଖାଙ୍କିତ କରି ଚିହ୍ନାଇ ଦିଆଯାଇଛି । ଏହି ରେଖାଙ୍କିତ ଅଂଶଗୁଡ଼ିକ କେତେଗୁଡ଼ିଏ ପଦକୁ ନେଇ ଗଠିତ ଏବଂ ସେହି ଅଂଶଗୁଡ଼ିକ ମିଳିତ ଭାବରେ ଗୋଟିଏ ସାମଗ୍ରିକ ଅର୍ଥ ପ୍ରକାଶ କରିଥା'ନ୍ତି । ବାକ୍ୟ ମଧ୍ୟରେ ରହିଥିବା ଏହି ଅର୍ଥ ପ୍ରକାଶକ ଅଂଶଗୁଡ଼ିକୁ ବାକ୍ୟାଂଶ କୁହାଯାଇଥାଏ । ଏହି ବାକ୍ୟରେ ପାଞ୍ଚୋଟି ବାକ୍ୟାଂଶ ରହିଛି । ବାକ୍ୟାଂଶର ସଂଜ୍ଞା ସ୍ୱରୂପ କୁହାଯାଇପାରେ- ଯେତେବେଳେ ସମାପିକା କ୍ରିୟାହୀନ କେତେଗୁଡ଼ିଏ ପଦ ଗୋଟିଏ ଅର୍ଥ ପ୍ରକାଶ କରୁଥିଲେ ହେଁ ସମ୍ପୂର୍ଣ୍ଣ ମନୋଭାବ ପ୍ରକାଶରେ ଅସମର୍ଥ ହୋଇଥା'ନ୍ତି, ସେତେବେଳେ ତାହା ବାକ୍ୟାଂଶ ରୂପେ ପରିଚିତ ହୋଇଥା'ନ୍ତି । ତେଣୁ ବାକ୍ୟାଂଶର ଲକ୍ଷଣ ସ୍ୱରୂପ କୁହାଯାଇପାରେ-

(କ) ବାକ୍ୟାଂଶରେ ସମାପିକା କ୍ରିୟା ନ ଥାଏ ।

(ଖ) କିଛି ଅର୍ଥ ପ୍ରକାଶ କରିଥାଏ ।

(ଗ) ପୂର୍ଣ୍ଣ ମନୋଭାବ ପ୍ରକାଶରେ ଅସମର୍ଥ ।

ଯଥା- ରାମଚନ୍ଦ୍ର ପ୍ରତି ରାତ୍ରିରେ...

ଛାତ୍ରମାନେ ସନ୍ଧ୍ୟା ସମୟରେ...

ଗଙ୍ଗାନଦୀ ଭାରତର ଏକ...

ସୂର୍ଯ୍ୟ ପୂର୍ବ...

ଉପରୋକ୍ତ ବାକ୍ୟାଂଶଗୁଡ଼ିକର କୌଣସିଟିରେ ସମାପିକା କ୍ରିୟା ନାହିଁ କିମ୍ବା ବକ୍ତାର ଏକ ପୂର୍ଣ୍ଣ ମନୋଭାବ ପ୍ରକାଶିତ ହୋଇନାହିଁ। ଏଣୁ ଏଗୁଡ଼ିକ ବାକ୍ୟ ନ ହୋଇ ଏକ ଏକ ବାକ୍ୟାଂଶ । ସମାପିକା କ୍ରିୟା ଯୋଗ କଲେ, ଏଗୁଡ଼ିକ ପ୍ରତ୍ୟେକେ ପୂର୍ଣ୍ଣ ବାକ୍ୟରେ ପରିଣତ ହୋଇପାରିବ । ଯଥା-

ରାମଚନ୍ଦ୍ର ପ୍ରତି ରାତ୍ରିରେ ନିଜ ରାଜ୍ୟ ବୁଲି ଦେଖୁଥିଲେ ।

ଛାତ୍ରମାନେ ସନ୍ଧ୍ୟା ସମୟରେ ପାଠ ପଢ଼ିଥା'ନ୍ତି ।

ଗଙ୍ଗାନଦୀ ଭାରତର ଏକ ପବିତ୍ର ନଦୀ ଅଟେ ।

ସୂର୍ଯ୍ୟ ପୂର୍ବଦିଗରେ ଉଦୟ ହୋଇଥା'ନ୍ତି ।

ଉପରୋକ୍ତ ପୂର୍ଣ୍ଣବାକ୍ୟରେ ରାମଚନ୍ଦ୍ର, ଛାତ୍ର, ଗଙ୍ଗାନଦୀ, ସୂର୍ଯ୍ୟ ଇତ୍ୟାଦି ଅଂଶଗୁଡ଼ିକ ଉଦ୍ଦେଶ୍ୟ ଏବଂ ଅନ୍ୟ ଅଂଶଗୁଡ଼ିକ ବିଧେୟ । ଉଦ୍ଦେଶ୍ୟ ଅଂଶଟି ବାକ୍ୟର କର୍ତ୍ତା । ସାଧାରଣତଃ ଏହା ବିଶେଷ୍ୟ ବା ସର୍ବନାମ ପଦ ହୋଇଥାଏ । ବିଧେୟର ମୁଖ୍ୟ ଅଂଶ କ୍ରିୟାପଦ । କେତେକ କ୍ଷେତ୍ରରେ କର୍ମପଦ ମଧ୍ୟ ଏହାର ଅନ୍ତର୍ଭୁକ୍ତ ହୋଇଥାଏ । ଏହି ବାକ୍ୟାଂଶକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ଯଥା-

(କ) ବିଶେଷ୍ୟାତ୍ମକ ବାକ୍ୟାଂଶ

(ଖ) ବିଶେଷଣାତ୍ମକ ବାକ୍ୟାଂଶ

(ଗ) କ୍ରିୟା ବିଶେଷଣାତ୍ମକ ବାକ୍ୟାଂଶ

**ବିଶେଷ୍ୟାତ୍ମକ ବାକ୍ୟାଂଶ-** ଯେଉଁଠାରେ ବାକ୍ୟାଂଶ ବା ସମାପିକା କ୍ରିୟାବିହୀନ ପଦସମୂହ ବିଶେଷ୍ୟପଦର କାର୍ଯ୍ୟ କରେ, ତାହାକୁ ବିଶେଷ୍ୟାତ୍ମକ ବାକ୍ୟାଂଶ କୁହାଯାଏ । ଯଥା-

(i) **ତାଙ୍କର ଏହି ଅକୃପଣ ସାହାଯ୍ୟପାଇଁ** କୃତଜ୍ଞତା ଜଣାଉଛି ।

(ii) **ମେଘମାଳବିମଣ୍ଡିତଆକାଶ** ଚିତ୍ରପଟ ପରି ଦୃଶ୍ୟ ହେଉଅଛି ।

ଉପରୋକ୍ତ କଳାଅକ୍ଷର କ୍ରିୟାବିହୀନ ପଦଗୁଡ଼ିକ ବିଶେଷ୍ୟର କାର୍ଯ୍ୟ କରୁଅଛି ।

**ବିଶେଷଣାତ୍ମକ ବାକ୍ୟାଂଶ-** ଯେଉଁ କ୍ଷେତ୍ରରେ ବାକ୍ୟାଂଶ ବା ସମାପିକା କ୍ରିୟାବିହୀନ ପଦଗୁଡ଼ିକ ବିଶେଷଣର କାର୍ଯ୍ୟ କରିଥା'ନ୍ତି, ସେଠାରେ ବିଶେଷଣାତ୍ମକ ବାକ୍ୟାଂଶ ହୋଇଥାଏ ।

(i) ପ୍ରେମ ବିରହ-ବିଧୁରା ରାଧାଙ୍କ ଦୁଃଖରେ କୁଞ୍ଜବନ ମଧ୍ୟ ସମ୍ବେଦନା ପ୍ରକାଶ କଲେ ।

(ii) ଲାଲକିଲ୍ଲା ଶୀର୍ଷ ଭାଗରେ ଉଡୁଥିବା/ଉଡ଼ନ୍ତା ପତାକା ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିଥାଏ ।

ଏଠାରେ ରେଖାଙ୍କିତ ବାକ୍ୟାଂଶ ବିଶେଷଣର କାର୍ଯ୍ୟ କରୁଅଛି ।

**କ୍ରିୟାବିଶେଷଣାତ୍ମକ ବାକ୍ୟାଂଶ-** ଯେଉଁଠାରେ ବାକ୍ୟାଂଶ ବା ସମାପିକା କ୍ରିୟାବିହୀନ ପଦସମୂହ କ୍ରିୟାବିଶେଷଣର କାର୍ଯ୍ୟ କରିଥାଏ, ସେଠାରେ କ୍ରିୟା ବିଶେଷଣାତ୍ମକ ବାକ୍ୟାଂଶ ହୋଇଥାଏ । ଯଥା-

(i) **ସେ ଅତ୍ୟନ୍ତ ଖୁସି ମନରେ** ବିଦେଶ ଯାତ୍ରା କଲେ ।

(ii) ମଧୁବାବୁ **ଖୁବ୍ ଦୁଃଖରେ** ଜୀବନ ଅତିବାହିତ କରୁଛନ୍ତି ।

ଏହି ବାକ୍ୟ ଦ୍ୱୟରେ କଳାଅକ୍ଷର ବାକ୍ୟାଂଶ ବା ସମାପିକା କ୍ରିୟାବିହୀନ ପଦଗୁଡ଼ିକ କ୍ରିୟାବିଶେଷଣର କାର୍ଯ୍ୟ କରୁଅଛି ।

**ଖଣ୍ଡବାକ୍ୟ ଓ ଉପବାକ୍ୟ :**

ଆମେ ଜାଣିଛୁ ଯେ କୌଣସି ବାକ୍ୟରେ ସମାପିକା କ୍ରିୟା ରହିଥିଲେ, ବାକ୍ୟଟିର ସମାପ୍ତି ବା ଶେଷ ଜଣାପଡ଼ିଥାଏ । ଯଥା- ରାମବାବୁ ଭାତ ଖାଇଲେ; ମାତ୍ର କେତେକ କ୍ଷେତ୍ରରେ ଦେଖାଯାଇଥାଏ ଯେ ସମାପିକା କ୍ରିୟା ଥିବା ସତ୍ତ୍ୱେ ବାକ୍ୟଟି ସମ୍ପୂର୍ଣ୍ଣ ହୋଇପାରି ନ ଥାଏ । ଉଦାହରଣ ସ୍ୱରୂପ- 'ସେମାନେ ଯେତେବେଳେ ଯାଉଥିଲେ', ଏହି ଉଦାହରଣଟିରେ 'ଯାଉଥିଲେ' ସମାପିକା କ୍ରିୟାଟି ଥିବା ସତ୍ତ୍ୱେ ବାକ୍ୟଟି ସ୍ୱୟଂସମ୍ପୂର୍ଣ୍ଣ ହୋଇପାରିନାହିଁ । ସମ୍ପୂର୍ଣ୍ଣ ହେବା ନିମିତ୍ତ ଏଥିରେ ଆଉ କିଛି ଅଂଶ ଯୋଡ଼ିବାର ଆବଶ୍ୟକ ରହିଛି । ଯେପରି- ସେମାନେ ଯେତେବେଳେ ଯାଉଥିଲେ, ସେତେବେଳେ ମୁଁ ଘରେ ବସିଥିଲି ।

ତେଣୁ କର୍ତ୍ତା ଓ ସମାପିକା କ୍ରିୟା ଥାଇ ମଧ୍ୟ କେତେକ ପଦ ସମଷ୍ଟି ଯେତେବେଳେ ସମ୍ପୂର୍ଣ୍ଣ ଭାବ ବା ମନୋଭାବ ପ୍ରକାଶ କରିବାକୁ ଅସମର୍ଥ ହୋଇଥା'ନ୍ତି ଏବଂ ସେହି ପଦ ସମଷ୍ଟି ଯଦି ଗୋଟିଏ ବୃହତ୍ତର ବାକ୍ୟର ଅଂଶ ବିଶେଷ ହୋଇଥାଏ, ତେବେ ତାହାକୁ **ଖଣ୍ଡବାକ୍ୟ** କୁହାଯାଇଥାଏ । ଅନ୍ୟ ଭାବରେ କହିଲେ କର୍ତ୍ତା ଓ ସମାପିକା କ୍ରିୟା ଥିବା ସତ୍ତ୍ୱେ ଯଦି ବାକ୍ୟଟି ଅସମ୍ପୂର୍ଣ୍ଣ ମନେହୋଇଥାଏ, ତେବେ ତାହା **ଖଣ୍ଡବାକ୍ୟ** (Clause) ନାମରେ ପରିଚିତ ହୋଇଥାଏ ।

ଉପରୋକ୍ତ ଉଦାହରଣଟିରେ "ସେମାନେ ଯେତେବେଳେ ଯାଉଥିଲେ" ଏବଂ "ସେତେବେଳେ ମୁଁ ଘରେ ବସିଥିଲି" ପ୍ରତ୍ୟେକ ଗୋଟିଏ ଗୋଟିଏ ଖଣ୍ଡବାକ୍ୟ । ଏହି ଦୁଇଟି ବାକ୍ୟର ସଂଯୋଗରେ ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟ ଗଠିତ ହୋଇଅଛି ।

ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟରେ ଏକାଧିକ ଖଣ୍ଡବାକ୍ୟ ରହିଥିଲେ, ତନ୍ମଧ୍ୟରୁ ଗୋଟିଏ ଖଣ୍ଡବାକ୍ୟ ପ୍ରଧାନ ଏବଂ ଅନ୍ୟ ବାକ୍ୟଗୁଡ଼ିକ ଅପ୍ରଧାନ । ଏହି ଅପ୍ରଧାନ ଖଣ୍ଡବାକ୍ୟ **ଉପବାକ୍ୟ** ବା ଆଶ୍ରିତ ବାକ୍ୟ ନାମରେ ପରିଚିତ । ଉପର ଉଦାହରଣଟିରେ 'ସେତେବେଳେ ମୁଁ ଘରେ ବସିଥିଲି' ଖଣ୍ଡବାକ୍ୟଟି ପ୍ରଧାନ ଏବଂ 'ସେମାନେ ଯେତେବେଳେ ଯାଉଥିଲେ' ଖଣ୍ଡବାକ୍ୟଟି ଅପ୍ରଧାନ । ଉପବାକ୍ୟଗୁଡ଼ିକ ମୁଖ୍ୟତଃ ତିନି ପ୍ରକାର ଯଥା- (କ) ବିଶେଷ୍ୟ ଉପବାକ୍ୟ, (ଖ) ବିଶେଷଣ ଉପବାକ୍ୟ, (ଗ) କ୍ରିୟା ବିଶେଷଣ ଉପବାକ୍ୟ ।

**(କ) ବିଶେଷ୍ୟ ଉପବାକ୍ୟ-** ଯେଉଁ ଉପବାକ୍ୟ ବିଶେଷ୍ୟ ରୂପେ ବ୍ୟବହୃତ ହୋଇଥାଏ ବା ଯାହା ବିଶେଷ୍ୟର କାର୍ଯ୍ୟ କରିଥାଏ, ତାହାକୁ ବିଶେଷ୍ୟ ଉପବାକ୍ୟ କୁହାଯାଇଥାଏ । ଏହା କର୍ତ୍ତା, କର୍ମ ବା ପୂରକପଦ ରୂପେ ବ୍ୟବହୃତ ହୋଇଥାଏ । ଯଥା-

(i) **ଈଶ୍ୱର କହିଛନ୍ତି,** ସବୁ କିଛି ରହସ୍ୟ ପୂର୍ଣ୍ଣ (ଅଟେ) (କର୍ତ୍ତା)

(ii) ପିଲାଟି କହୁଛି, **କୋଳି ଖାଇବ** (କର୍ମ)

(iii) ମୋର ବିଶ୍ୱାସ ଥିଲା, **ସେ ନିଶ୍ଚୟ ସଫଳତା ପାଇବ** (ପୂରକପଦ)

କଳାଅକ୍ଷରର ପ୍ରଥମ ଉପବାକ୍ୟଟି କର୍ତ୍ତା ରୂପେ, ଦ୍ୱିତୀୟ ଉପବାକ୍ୟଟି କର୍ମରୂପେ ଓ ତୃତୀୟ ଉପବାକ୍ୟଟି ପୂରକ ପଦ ରୂପେ ବ୍ୟବହୃତ ହୋଇଛି ।

**(ଖ) ବିଶେଷଣ ଉପବାକ୍ୟ-** ଯେଉଁ ଉପବାକ୍ୟଟି ବିଶେଷଣ ରୂପେ ବ୍ୟବହୃତ ହୋଇଥାଏ, ଅର୍ଥାତ୍ ଯାହା ବାକ୍ୟସ୍ଥିତ ବିଶେଷ୍ୟ ବା ସର୍ବନାମ ପଦକୁ ବିଶେଷିତ କରିଥାଏ, ତାହାକୁ ବିଶେଷଣ ଉପବାକ୍ୟ କୁହାଯାଏ ।

(i) **ଯେଉଁ ଲୋକ କାର୍ଯ୍ୟ କରେ ନାହିଁ,** (ସେ) ମନୁଷ୍ୟ ପଦବାଚ୍ୟ ନୁହେଁ ।

(ii) **ଯେଉଁମାନଙ୍କୁ ବିଶ୍ୱାସ କରିଥିଲି,** ସେମାନେ ବିଶ୍ୱାସଘାତକତା କଲେ ।

ଉପରୋକ୍ତ କଳାଅକ୍ଷରର ପ୍ରଥମ ଉପବାକ୍ୟ 'ମନୁଷ୍ୟ' ବିଶେଷ୍ୟପଦ ଏବଂ ଦ୍ୱିତୀୟ ରେଖାଙ୍କିତ ଉପବାକ୍ୟ 'ସେମାନେ' ସର୍ବନାମ ପଦକୁ ବିଶେଷିତ କରୁଅଛନ୍ତି । ପୁଣି କଳାଅକ୍ଷରର ପ୍ରଥମ ଓ ଦ୍ୱିତୀୟ ଖଣ୍ଡବାକ୍ୟ ଅପ୍ରଧାନ ଓ ପରବର୍ତ୍ତୀ ଖଣ୍ଡବାକ୍ୟ ଅର୍ଥାତ୍ 'ସେ ମନୁଷ୍ୟ ପଦବାଚ୍ୟ ନୁହେଁ', 'ସେମାନେ ବିଶ୍ୱାସଘାତକତା କଲେ' ପ୍ରଧାନ । ପ୍ରଥମ ଦୁଇଟି ଖଣ୍ଡବାକ୍ୟ (କଳାଅକ୍ଷର) ଅପ୍ରଧାନ ହୋଇଥିବାରୁ ଉପବାକ୍ୟ ଏବଂ ପ୍ରଧାନ ଖଣ୍ଡବାକ୍ୟରେ ଥିବା 'ମନୁଷ୍ୟ', 'ସେମାନେ' ପଦର ବିଶେଷଣ ପରି କାର୍ଯ୍ୟ କରୁଥିବାରୁ, ଏଗୁଡ଼ିକୁ ବିଶେଷଣ ଉପବାକ୍ୟ କୁହାଯାଇଥାଏ ।

**(ଗ) କ୍ରିୟାବିଶେଷଣ ଉପବାକ୍ୟ** – ଯେଉଁ ଉପବାକ୍ୟ କ୍ରିୟା ବିଶେଷଣର କାର୍ଯ୍ୟ କରେ, ଅର୍ଥାତ୍ କ୍ରିୟା ବିଶେଷଣ ପରି ବ୍ୟବହୃତ ହୋଇଥାଏ, ତାହାକୁ କ୍ରିୟା ବିଶେଷଣ ଉପବାକ୍ୟ କୁହାଯାଏ । ଅନ୍ୟ ଭାବରେ କହିଲେ ଏହି ଉପବାକ୍ୟ କ୍ରିୟାର ସ୍ଥାନ, ସମୟ, କାରଣ ଇତ୍ୟାଦି ପ୍ରକାଶ କରିଥାଏ । ଯଥା-

(i) **ତା'ର ଯେଉଁଠାରେ ଇଚ୍ଛା ହେବ,** ସେଠାରେ ଶୋଇପଡ଼ିବ । (ସ୍ଥାନ)

ଏଠାରେ କଳାଅକ୍ଷରର ଉପବାକ୍ୟଟି ପ୍ରଧାନ ଖଣ୍ଡବାକ୍ୟରେ ଥିବା 'ଶୋଇ ପଡ଼ିବ' କ୍ରିୟାର କ୍ରିୟାବିଶେଷଣ ପରି କାର୍ଯ୍ୟ କରୁଛି ।

(ii) **ସେ ଯେତେବେଳେ ଆସିଲେ,** ରାମ ସେତେବେଳେ ପଢୁଥିଲା । (ସମୟ)

ଏଠାରେ କଳାଅକ୍ଷରର ଉପବାକ୍ୟଟି ପ୍ରଧାନ ଖଣ୍ଡବାକ୍ୟରେ ଥିବା 'ପଢୁଥିଲା' କ୍ରିୟାର କ୍ରିୟାବିଶେଷଣ ଭଳି କାର୍ଯ୍ୟ କରୁଛି ।

(iii) **ଯେହେତୁ ତୁମେ ରାତି ଅନିଦ୍ରା ରହିଛ** ତେଣୁ ତୁମେ ଶୋଇପଡ଼ିବ(କାରଣ)

ଏଠାରେ କଳାଅକ୍ଷରର ଉପବାକ୍ୟଟି ପ୍ରଧାନ ଖଣ୍ଡବାକ୍ୟରେ ଥିବା 'ଶୋଇ ପଡ଼ିବ' କ୍ରିୟାର କ୍ରିୟାବିଶେଷଣ ଭଳି କାର୍ଯ୍ୟ କରୁଛି ।

## ଅନୁଶୀଳନୀ

୧ । ବାକ୍ୟ ଓ ଖଣ୍ଡବାକ୍ୟ ମଧ୍ୟରେ ପାର୍ଥକ୍ୟ ଦର୍ଶାଅ ।

୨ । ଖଣ୍ଡବାକ୍ୟ ଓ ଉପବାକ୍ୟ ମଧ୍ୟରେ କ'ଣ ପାର୍ଥକ୍ୟ ରହିଛି ?

୩ । ପ୍ରଧାନ ଖଣ୍ଡବାକ୍ୟ କାହାକୁ କହନ୍ତି ?

୪ । ଗୋଟିଏ କ୍ରିୟା ବିଶେଷଣ ଉପବାକ୍ୟ ଓ ଗୋଟିଏ ବିଶେଷଣ ଉପବାକ୍ୟର ଉଦାହରଣ ଦିଅ ।

୫ । ବାକ୍ୟାଂଶ କାହାକୁ କୁହାଯାଏ ?

୬ । ନିମ୍ନଲିଖିତ ବାକ୍ୟାଂଶରୁ ପ୍ରଧାନ ଖଣ୍ଡବାକ୍ୟ ଓ ଉପବାକ୍ୟମାନଙ୍କୁ ଚିହ୍ନାଇ ଦିଅ ।
ତୁମେ ଯେବେ ପାଠ ପଢ଼ିବ, ଠିକ୍ ସମୟରେ ପରିଶ୍ରମ କରିବ, ତେବେ ଜୀବନରେ ଉନ୍ନତି କରିବ ।

୭ । କଳାଅକ୍ଷରର ଅଂଶଗୁଡ଼ିକ କି ପ୍ରକାର ଉପବାକ୍ୟ ଚିହ୍ନାଇ ଦିଅ ।

(କ) **ତୁ ଯେତେ ମାଠିବୁ ମାଠ,** ମୁଁ ସେଇ ଦରପୋଡ଼ା କାଠ ।

(ଖ) କିଏ ଜାଣିଥିଲା, **ଅକାଳରେ ଚଡ଼କ ପଡ଼ିବ** ।

(ଗ) **ରାମ ଯେତେବେଳେ ଘରକୁ ଆସିଲା,** ସେତେବେଳେ ମୁଁ ଶୋଇଥିଲି ।

(ଘ) **କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ,** ସେ ପରୀକ୍ଷାରେ ପାସ୍ କରିବ ।



# ବାକ୍ୟର ଶ୍ରେଣୀବିଭାଗ

ପୂର୍ବରୁ ପଢ଼ିଛେ, ଅର୍ଥବୋଧକ ବା ଭାବବୋଧକ ପୂର୍ଣ୍ଣାଙ୍ଗ ଉକ୍ତିକୁ ବାକ୍ୟ କୁହାଯାଏ । ଭାବପ୍ରକାଶ ତଥା ଗଠନ ବା ରୂପ ଦୃଷ୍ଟିରୁ ବାକ୍ୟକୁ ଦୁଇଭାଗରେ ବିଭକ୍ତ କରାଯାଏ । ଯଥା- (୧) ଭାବବୋଧକ ବା ଭାବସୂଚକ ବାକ୍ୟ, (୨) ଗଠନମୂଳକ ବା ରୂପସୂଚକ ବାକ୍ୟ

## ଭାବସୂଚକ ବାକ୍ୟ

ଭାବସୂଚକ ବାକ୍ୟକୁ ଚାରିଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- (୧) ବିବୃତିସୂଚକ ବା ବିବରଣାତ୍ମକ ବାକ୍ୟ, (୨) ପ୍ରଶ୍ନସୂଚକ ବାକ୍ୟ, (୩) ଆଦେଶସୂଚକ ବା ଅନୁଜ୍ଞାମୂଳକ ବାକ୍ୟ, (୪) ବିସ୍ମୟସୂଚକ ବାକ୍ୟ ।

**(୧) ବିବୃତିସୂଚକ ବାକ୍ୟ-** ଯେଉଁ ବାକ୍ୟରେ କୌଣସି ବିଷୟରେ କିଛି ବର୍ଣ୍ଣନା ବା ବିବରଣୀ ଦିଆଯାଇଥାଏ, ତାହାକୁ ବିବୃତିସୂଚକ ବା ବିବରଣାତ୍ମକ ବାକ୍ୟ କୁହାଯାଏ । ଉଦାହରଣ-

(କ) ପ୍ରତିବର୍ଷ ଅର୍କକ୍ଷେତ୍ରରେ କୋଣାର୍କ-ଉତ୍ସବ ଅନୁଷ୍ଠିତ ହେଉଛି ।

(ଖ) ସାମାଜିକ ସମତା ଦେଶରୁ ହିଂସା ଓ ବିଶୃଙ୍ଖଳାକୁ ଦୂର କରିପାରିବ ।

(ଗ) ଓଡ଼ିଆମାନେ ସରଳ ଓ ଅତିଥିପରାୟଣ ଅଟନ୍ତି ।

(ଘ) ମହାଭାରତରେ ଅନେକ ଶିକ୍ଷଣୀୟ ଓ ଉପାଦେୟ କାହାଣୀ ଅଛି ।

(ଙ) ଶରତ ଋତୁରେ ଗଙ୍ଗଶିଉଳି ଫୁଟେ ।

(ଚ) ବିଦ୍ୟାଳୟରେ ପାଠପଢ଼ା ଦିନ ୧୦ଟାରେ ଆରମ୍ଭ ହୁଏ ।

**(୨) ପ୍ରଶ୍ନସୂଚକ ବାକ୍ୟ -** ଯେଉଁ ବାକ୍ୟରେ କୌଣସି ପ୍ରଶ୍ନ ପଚରାଯାଇଥାଏ, ତାହା ପ୍ରଶ୍ନସୂଚକ ବା ପ୍ରଶ୍ନାତ୍ମକ ବାକ୍ୟ । ଉଦାହରଣ-

(କ) ତୁମେ ଦିଲ୍ଲୀ ଦେଖିଛ ?

(ଖ) ଦୈନିକ ସମ୍ବାଦପତ୍ର 'ସମାଜ'ର ପ୍ରତିଷ୍ଠାତା କିଏ ?

(ଗ) ତୁମେ କେଉଁ ଶ୍ରେଣୀରେ ପଢୁଛ ?

(ଘ) କିଏ ବିପଦରେ ସାହାଯ୍ୟ କରେ ?

(ଙ) ଶିଶୁଦିବସ କେବେ ପାଳିତ ହୁଏ ?

**(୩) ଆଦେଶସୂଚକ ବାକ୍ୟ-** ଯେଉଁ ବାକ୍ୟରୁ ଆଦେଶ, ଉପଦେଶ, ଅନୁରୋଧ, କାମନା, ଆଶୀର୍ବାଦ ବା ଅନୁମତି ଭାବ ସୂଚିତ ହୁଏ, ତାହାକୁ ଆଦେଶସୂଚକ ବାକ୍ୟ କହନ୍ତି । ଏହାକୁ ମଧ୍ୟ ଅନୁଜ୍ଞାତ୍ମକ ବା ଆଦେଶମୂଳକ ବାକ୍ୟ କୁହାଯାଇଥାଏ ।

(କ) ଏଠାକୁ ଆସ । ଗୀତ ଗାଅ । (ଆଦେଶ)
(ଖ) ପରିଶ୍ରମ କର । ପୋଷାକପତ୍ର ସଫା ରଖ । (ଉପଦେଶ)
(ଗ) ଦୟାକରି ମୋ କଥା ଶୁଣନ୍ତୁ । ବହିଟି ପଢ଼ିବାକୁ ଦିଅନ୍ତୁ । (ଅନୁରୋଧ)
(ଘ) ତୁମେ ଯଥାଶୀଘ୍ର ଆରୋଗ୍ୟ ହୁଅ । (କାମନା)
(ଙ) ତୁମେ ଦୀର୍ଘଜୀବୀ ହୁଅ । (ଆଶୀର୍ବାଦ)
(ଚ) ମୋତେ ଯିବାକୁ ଦିଅନ୍ତୁ । (ଅନୁମତି)

**(୪) ବିସ୍ମୟସୂଚକ ବାକ୍ୟ-** ଯେଉଁ ବାକ୍ୟ ମନର ବିସ୍ମୟ ବା ଆଶ୍ଚର୍ଯ୍ୟ ଭାବକୁ ପ୍ରକାଶ କରେ, ତାହା ବିସ୍ମୟସୂଚକ ବା ବିସ୍ମୟାତ୍ମକ ବାକ୍ୟ ।

(କ) ଇନ୍ଦ୍ରଧନୁ କି ସୁନ୍ଦର ! (ଖ) ବରଫ କେତେ ଶୀତଳ !
(ଗ) କି ଭୟଙ୍କର ବର୍ଷା ! (ଘ) କି ବୀଭତ୍ସ ଦୃଶ୍ୟ !
(ଙ) ଏତେ ସୁନ୍ଦର ହସ୍ତାକ୍ଷର ! (ଚ) ଆହା କି ମଧୁର ମୂର୍ଚ୍ଛନା !
(ଛ) ଭାରତ ପୁଣି କ୍ରିକେଟରେ ହାରିଗଲା ! (ଜ) ସତେ ଅବିନାଶ ବଞ୍ଚିଛି !

ଉପର ବର୍ଣ୍ଣିତ ଚାରିଶ୍ରେଣୀର ବାକ୍ୟକୁ ଅସ୍ତିବାଚକ ଓ ନାସ୍ତିବାଚକ ଭେଦରେ ଦୁଇଭାଗରେ ବିଭକ୍ତ କରାଯାଏ । ଅସ୍ତିବାଚକ ବାକ୍ୟକୁ ବିଧିସୂଚକ ଓ ନାସ୍ତିବାଚକ ବାକ୍ୟକୁ ନିଷେଧସୂଚକ ବାକ୍ୟ କୁହାଯାଇଥାଏ । ଉଦାହରଣ-

**ବିବୃତିସୂଚକ ବାକ୍ୟ**

| **ଅସ୍ତିସୂଚକ** | **ନାସ୍ତିସୂଚକ** |
|---|---|
| ଶୀତ ହେଉଛି । | ଶୀତ ହେଉନାହିଁ । |
| ବର୍ଷା ହୋଇଥିଲା । | ବର୍ଷା ହୋଇ ନ ଥିଲା । |
| ସମସ୍ତେ ସୁରଭିକୁ ଶ୍ରଦ୍ଧା କରନ୍ତି । | ସମସ୍ତେ ସୁରଭିକୁ ଶ୍ରଦ୍ଧା କରନ୍ତି ନାହିଁ । |

**ପ୍ରଶ୍ନସୂଚକ ବାକ୍ୟ**

| **ଅସ୍ତିବାଚକ** | **ନାସ୍ତିବାଚକ** |
|---|---|
| ତୁମେ ମୋତେ ମନେ ପକାଉଥିଲ ? | ତୁମେ ମୋତେ ମନେ ପକାଉ ନ ଥିଲ ? |
| ଆଜି କ୍ରିକେଟ ମ୍ୟାଚ୍ ହେବ ? | ଆଜି କ୍ରିକେଟ ମ୍ୟାଚ୍ ହେବନାହିଁ ? |
| ସୁମନ କ'ଣ ପୁରୀ ଯାଉଛି ? | ସୁମନ କ'ଣ ପୁରୀ ଯାଉନାହିଁ ? |

**ଆଦେଶସୂଚକ ବାକ୍ୟ**

| **ଅସ୍ତିବାଚକ** | **ନାସ୍ତିବାଚକ** |
|---|---|
| ପାଠ ପଢ଼ । | ପାଠ ପଢ଼ନାହିଁ । |
| ଆପଣ ହସନ୍ତୁ । | ଆପଣ ନ ହସନ୍ତୁ । |
| ଛାତ୍ର ପରିଶ୍ରମ କରୁ । | ଛାତ୍ର ପରିଶ୍ରମ ନ କରୁ । |

## ବିସ୍ମୟସୂଚକ ବାକ୍ୟ

| ଅସ୍ତିସୂଚକ | ନାସ୍ତିସୂଚକ |
|---|---|
| ଲୋକଟା କି ଭୟଙ୍କର ! | ଲୋକଟା କି ଭୟଙ୍କର ନୁହେଁ ! |
| ସତରେ କି ବର୍ଷା ହେଲା ! | ସତରେ କି ବର୍ଷା ନ ହେଲା ! |
| ସୁନାମିର ବିଭୀଷିକା କେଡ଼େ ଲୋମହର୍ଷକ ! | ସୁନାମିର ବିଭୀଷିକା କେଡ଼େ ଲୋକହର୍ଷକ ନୁହେଁ ! |

## ଗଠନମୂଳକ ବା ରୂପସୂଚକ ବାକ୍ୟ

ଗଠନମୂଳକ ବା ରୂପସୂଚକ ବାକ୍ୟକୁ ତିନିଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- ସରଳ ବାକ୍ୟ, ଯୌଗିକ ବାକ୍ୟ ଓ ଜଟିଳ ବାକ୍ୟ ।

ସରଳ ବାକ୍ୟ- ଗୋଟିଏ ମାତ୍ର ସମାପିକା କ୍ରିୟା ଥିବା ବାକ୍ୟକୁ ସରଳ ବାକ୍ୟ କୁହାଯାଏ । ଉଦାହରଣ-

(କ) ଫୁଲ **ଫୁଟିଛି** ।

(ଖ) ସୂର୍ଯ୍ୟ ସକାଳୁ **ଉଏଁ** ।

(ଗ) ଛୁଆଟି ଭୋକରେ **କାନ୍ଦିଲା** ।

(ଘ) ପରିଶ୍ରମୀ ସୁଖ **ପାଏ** ।

(ଙ) ଗୋପବନ୍ଧୁ ବଢ଼ି ମରୁଡ଼ି କଥା ଶୁଣୁଶୁଣୁ **କାନ୍ଦୁଥିଲେ** ।

ଉପରଲିଖିତ ବାକ୍ୟମାନଙ୍କରେ ଗୋଟିଏ ଲେଖାଏଁ ସମାପିକା କ୍ରିୟା ଅଛି । ଏଣୁ ସେଗୁଡ଼ିକ ସରଳ ବାକ୍ୟ ।

ସରଳ ବାକ୍ୟରେ ଏକ ବା ଏକାଧିକ ଅସମାପିକା କ୍ରିୟା ଥାଇପାରେ । ଯଥା-

୧ । ଶିକ୍ଷକ ଛାତ୍ରଛାତ୍ରୀଙ୍କୁ **ଧରି** ଖେଳପଡ଼ିଆକୁ ଗଲେ ।

୨ । ମେଘ **ବର୍ଷିବାରୁ** ସମସ୍ତେ ଖୁସିହେଲେ ।

୩ । ଘଣ୍ଟା **ବାଜନ୍ତେ** ପ୍ରାର୍ଥନା ଆରମ୍ଭ ହେଲା ।

୪ । ହିମାଳୟର ଦୃଶ୍ୟ **ଦେଖି** ମୁଁ ବିସ୍ମିତ ହେଲି ।

୫ । ବୁଢ଼ାଟି **ଚାଲୁଚାଲୁ** ପଡ଼ିଗଲା ।

୬ । ଭାଇଙ୍କର ଡାକ **ଶୁଣି** ମୁଁ **ଧାଇଁଧାଇଁ** ଘରକୁ ଆସିଲି ।

ଏଥିରୁ ଜଣାଗଲା, ବାକ୍ୟରେ ଯେତେଗୁଡ଼ିଏ ଅସମାପିକା କ୍ରିୟା ଥିଲେ ମଧ୍ୟ ଯଦି ଗୋଟିଏ ସମାପିକା କ୍ରିୟା ଥାଏ, ତେବେ ତାହା ସରଳ ବାକ୍ୟ ।

ବାକ୍ୟରେ ଏକାଧିକ କର୍ତ୍ତା 'ଓ', 'ଏବଂ' ପ୍ରଭୃତି ଅବ୍ୟୟଦ୍ୱାରା ଯୁକ୍ତ ହୋଇଥିଲେ ଅର୍ଥବୋଧକୁ ନେଇ ସରଳବାକ୍ୟ କି ନୁହେଁ, ତାହା ସ୍ଥିର କରାଯାଏ । ଯଥା-

୧ । ଚୁଡ଼ା, ଚିନି, ନଡ଼ିଆ ଓ ଦହି ମୋର ପ୍ରିୟ ଜଳଖିଆ ।

୨ । କଂସା ଓ ପିତ୍ତଳ ମିଶି ବ୍ରୋଞ୍ଜ ହୁଏ ।

୩ । ମନସ୍ୱିନୀ ଓ ତପସ୍ୱିନୀ ଦୁଇ ଭଉଣୀ ।

୪ । ଶିବ ସୁନ୍ଦର ଭଲ ପଢ଼େ ଏବଂ ଭଲ ଖେଳେ ।

ପ୍ରଥମ ତିନୋଟି ବାକ୍ୟରେ ଏକାଧିକ କର୍ତ୍ତା ଥିଲେ ସୁଦ୍ଧା ଏଗୁଡ଼ିକୁ ପୃଥକ୍ କରିହେବ ନାହିଁ । କଲେ ଅର୍ଥହାନି ହେବ । ଉଦାହରଣସ୍ୱରୂପ ପ୍ରଥମ ବାକ୍ୟଟିକୁ ଭାଙ୍ଗିଲେ ହେବ- (୧) ଚୁଡ଼ା ମୋର ପ୍ରିୟ ଜଳଖିଆ । (୨) ଚିନି ମୋର ପ୍ରିୟ ଜଳଖିଆ । (୩) ନଡ଼ିଆ ମୋ ପ୍ରିୟ ଜଳଖିଆ । (୪) ଦହି ମୋର ପ୍ରିୟ ଜଳଖିଆ; କିନ୍ତୁ ଏହାଦ୍ୱାରା ମୂଳବାକ୍ୟର ପ୍ରକୃତ ଅର୍ଥ ବୋଧ ହେଉନାହିଁ । ଚୁଡ଼ା, ଚିନି, ନଡ଼ିଆ ଓ ଦହିର ମିଶ୍ରଣରେ ପ୍ରସ୍ତୁତ ଜଳଖିଆ ହିଁ ମୋର ପ୍ରିୟ । ଏଣୁ ଏପରି ବାକ୍ୟ ସରଳ ବାକ୍ୟର ଅନ୍ତର୍ଗତ ।

**ଯୌଗିକ ବାକ୍ୟ-** ଏକାଧିକ ସରଳ ବାକ୍ୟର ସଂଯୋଗରେ ଯେଉଁ ବାକ୍ୟ ଗଠିତ ହୁଏ, ତାହାକୁ ଯୌଗିକ ବାକ୍ୟ କହନ୍ତି ।

ସରଳ ବାକ୍ୟଗୁଡ଼ିକ ଓ, ଏବଂ, କିନ୍ତୁ, କିମ୍ବା, ନଚେତ୍, ତଥାପି ପ୍ରଭୃତି ଅବ୍ୟୟପଦ ଦ୍ୱାରା ସଂଯୁକ୍ତ ହୋଇ ଯୌଗିକ ବାକ୍ୟରେ ପରିଣତ ହୋଇଥା'ନ୍ତି । ଯୌଗିକ ବାକ୍ୟ ଅନ୍ତର୍ଗତ ସମସ୍ତ ବାକ୍ୟ ସ୍ୱାଧୀନ । ଏହାର ପ୍ରଥମ ବାକ୍ୟକୁ ପ୍ରଧାନ ବାକ୍ୟ ଓ ଅନ୍ୟଗୁଡ଼ିକୁ ସମକକ୍ଷ ବାକ୍ୟ କହନ୍ତି । ଉଦାହରଣ- (କ) ବାପା ସବୁଦିନ ସକାଳୁ ଉଠନ୍ତି ଏବଂ ହରି ନାମ ନିଅନ୍ତି ।

ଏହି ବାକ୍ୟରେ କର୍ତ୍ତା 'ବାପା' ଏକ ହେଲେ ମଧ୍ୟ ସମାପିକା କ୍ରିୟା ଦୁଇଟି- 'ଉଠନ୍ତି' ଓ 'ନିଅନ୍ତି' । ଏଣୁ ଦୁଇଟି ସରଳ ବାକ୍ୟର ମିଶ୍ରଣରେ ବାକ୍ୟଟି ଗଠିତ ହୋଇଥିବାରୁ ଯୌଗିକ ବାକ୍ୟ । ଅବ୍ୟୟ ପଦ 'ଏବଂ'କୁ ଉଠାଇ ନେଲେ ବାକ୍ୟ ଦୁଇଟି ହେବ-

୧ । ବାପା ସବୁଦିନ ସକାଳୁ ଉଠନ୍ତି । (ପ୍ରଧାନ ବାକ୍ୟ)

୨ । (ବାପା) ହରିନାମ ନିଅନ୍ତି । (ସମକକ୍ଷ ବାକ୍ୟ)

ଦ୍ୱିତୀୟ ବାକ୍ୟର କର୍ତ୍ତା 'ବାପା' ଉହ୍ୟ ରହିଛି ।

(ଗ) ମୁଁ ବନ୍ଧୁଙ୍କୁ ନିମନ୍ତ୍ରଣ କଲି; ମାତ୍ର ସେ ନିମନ୍ତ୍ରଣ ଗ୍ରହଣ କଲେ ନାହିଁ ।

ଏହି ଯୌଗିକ ବାକ୍ୟରେ କର୍ତ୍ତା ଦୁଇଟି- 'ମୁଁ' ଓ 'ସେ' । ସମାପିକା କ୍ରିୟା ମଧ୍ୟ ଦୁଇଟି- 'କଲି' ଓ 'ଗ୍ରହଣ କଲେ ନାହିଁ'; 'ମାତ୍ର' ଅବ୍ୟୟ ପଦଯୋଗେ ବାକ୍ୟ ଦୁଇଟିକୁ ଯୋଡ଼ି ଦିଆଯାଇଛି । ବାକ୍ୟ ଦୁଇଟି ପ୍ରଧାନ ବା ସମକକ୍ଷ ।

କେତେକ ସ୍ଥଳରେ ଗୋଟିଏ ଯୌଗିକ ବାକ୍ୟରେ ଅନେକ ସମକକ୍ଷ ବାକ୍ୟ ଥିଲେ ମଧ୍ୟ ଗୋଟିଏ ଅବ୍ୟୟ ବ୍ୟତୀତ ଅନ୍ୟଗୁଡ଼ିକ ଉହ୍ୟ ଥାଏ । ଯଥା-

ରମେଶ ଭଲ ପଢ଼େ, ଖେଳେ, ଗାଏ, ନାଚେ, ପହଁରେ ଏବଂ ଗୁରୁଜନଙ୍କୁ ଭକ୍ତି କରେ ।

ଏହି ବାକ୍ୟରେ ଛଅଟି ସମାପିକା କ୍ରିୟାର ଗୋଟିଏ କର୍ତ୍ତା 'ରମେଶ' । ଅତଏବ ରମେଶ ଭଲ ପଢ଼େ, ରମେଶ ଭଲ ଖେଳେ, ରମେଶ ଭଲ ଗାଏ, ରମେଶ ଭଲ ନାଚେ, ରମେଶ ଭଲ ପହଁରେ ଏବଂ ରମେଶ ଗୁରୁଜନଙ୍କୁ ଭକ୍ତି କରେ ଛଅଟି ସମକକ୍ଷ ବାକ୍ୟକୁ ନେଇ ଉପର ଯୌଗିକ ବାକ୍ୟଟି ଗଠିତ । 'ଏବଂ'କୁ ବାଦ୍‌ଦେଲେ ଯୌଗିକ ବାକ୍ୟଗୁଡ଼ିକ ବିରାମଚିହ୍ନ କମା (,) ଦ୍ୱାରା ଯୁକ୍ତ ହୋଇଛନ୍ତି । ସଂକ୍ଷିପ୍ତ ତଥା ଶ୍ରୁତିମଧୁର କରିବାପାଇଁ ସରଳବାକ୍ୟଗୁଡ଼ିକୁ ଏପରି ଯୌଗିକ ବାକ୍ୟରେ ପରିଣତ କରାଯାଇଛି ।

**ଯୌଗିକ ବାକ୍ୟରେ ଆଉ କେତୋଟି ଉଦାହରଣ-**

(କ) ମୁଁ ବନ୍ଧୁଙ୍କୁ ବହୁତ ବୁଝାଇଲି; କିନ୍ତୁ ସେ ବୁଝିଲେ ନାହିଁ ।
(ଖ) ତୁମେ ରୁଟି ଖାଅ କିମ୍ବା ଭାତ ଖାଅ ।
(ଗ) ସୈନିକ ଦେଶକୁ ରକ୍ଷାକରେ; ମାତ୍ର କୃଷକ ଦେଶକୁ ଖାଦ୍ୟ ଯୋଗାଏ ।
(ଘ) ସେମାନେ ବେଶି ଗପୁଛନ୍ତି, ଅଥଚ କମ୍ କାମ କରୁଛନ୍ତି ।
(ଙ) ବର୍ଷା ଆସୁଛି, ଶୀଘ୍ରଶୀଘ୍ର ଘରକୁ ଫେରିଯାଅ ।
(ଚ) କୁମାର କାଦୁଅରେ ପଶେନି କି ଗୋଡ଼ ଧୁଏନି ।
(ଛ) ଦିନେ ଦି'ଦିନ ମଧ୍ୟରେ ବର୍ଷା ହେବା ଦରକାର, ନଚେତ୍ ମରୁଡ଼ି ପଡ଼ିବା ନିଶ୍ଚିତ ।
(ଜ) ସନ୍ନ୍ୟାସୀ ଏଠାକୁ ଆସିବେ, ପ୍ରବଚନ ଦେବେ ଏବଂ ଭକ୍ତମାନଙ୍କ ସହ ଆଳାପ କରିବେ ।

**ଜଟିଳ ବାକ୍ୟ-** ଯେଉଁ ବାକ୍ୟରେ ଗୋଟିଏ ପ୍ରଧାନ ବାକ୍ୟ ଏବଂ ଏକ ବା ଏକାଧିକ ଅପ୍ରଧାନ ବାକ୍ୟ ଥାଏ ଏବଂ ଅପ୍ରଧାନ ବାକ୍ୟ ବା ବାକ୍ୟଗୁଡ଼ିକ ପ୍ରଧାନ ବାକ୍ୟ ଉପରେ ନିର୍ଭରଶୀଳ, ତାହାକୁ ଜଟିଳବାକ୍ୟ କହନ୍ତି ।

ଅପ୍ରଧାନ ବାକ୍ୟଗୁଡ଼ିକୁ ଉପବାକ୍ୟ ବା ଆଶ୍ରିତ ବାକ୍ୟ ବା ନିର୍ଭରଶୀଳ ବାକ୍ୟ କୁହାଯାଏ । ପ୍ରଧାନବାକ୍ୟକୁ ମଧ୍ୟ ପ୍ରଧାନ ଉପବାକ୍ୟ କହନ୍ତି । ଉଦାହରଣ-

୧ । ଯେ ସତ କହେ, **ସେ ନିର୍ଭୀକ ଅଟେ** ।
୨ । ଯାହାର ଦୃଢ଼ ଇଚ୍ଛାଶକ୍ତି ଥାଏ, **ସେ ସବୁକ୍ଷେତ୍ରରେ ବିଜୟୀ ହୁଏ** ।
୩ । ତୁମେ ଯଦି କହିବ, **ତେବେ ମୁଁ ତୁମ ସହିତ ଯିବି** ।
୪ । ପିତାମାତା ସନ୍ତାନମାନଙ୍କ ପାଇଁ କେତେ କଷ୍ଟ ସହିଥା'ନ୍ତି, **ତାହା ସେମାନେ ପିତାମାତା ହେଲେ ଜାଣିବେ** ।

୫ । **ଛାତ୍ରସମାଜ ଏହିକଥା ମନେରଖନ୍ତୁ** ଯେ ଯେତେବେଳେ ସେମାନଙ୍କ ସମ୍ମୁଖରେ ସଙ୍କଟ ଆସି ପହଞ୍ଚିବ, ସେତେବେଳେ ସେମାନେ ମନ ଟାଣ କରି, ତା'ର ସମ୍ମୁଖୀନ ହେବେ ।

ଉପରେ ଦିଆଯାଇଥିବା ପାଞ୍ଚଟି ଉଦାହରଣରୁ ପ୍ରଥମ ଚାରୋଟି ଉଦାହରଣ ଦୁଇଟି ଲେଖାଏଁ ବାକ୍ୟ (ବାକ୍ୟଖଣ୍ଡ) ମିଶି ଗୋଟିଏ ଗୋଟିଏ ବାକ୍ୟ ହୋଇଛି । ପଞ୍ଚମ ଉଦାହରଣଟି ତିନୋଟି ବାକ୍ୟଖଣ୍ଡର ମିଶ୍ରଣରେ ଗୋଟିଏ ବାକ୍ୟରେ ପରିଣତ ହୋଇଛି । ପ୍ରଥମ ଚାରୋଟି ଉଦାହରଣରେ ଦୁଇଟି ଲେଖାଏଁ ଏବଂ ପଞ୍ଚମ ଉଦାହରଣରେ ତିନୋଟି ସମାପିକା କ୍ରିୟା ରହିଛି । କଳାଚିହ୍ନିତ ଅଂଶଗୁଡ଼ିକ ପ୍ରତ୍ୟେକ ଉଦାହରଣର ପ୍ରଧାନ ବାକ୍ୟ ବା ପ୍ରଧାନ ଉପବାକ୍ୟ । ପ୍ରଧାନ ଉପବାକ୍ୟଟି ସ୍ୱାଧୀନ ହେଲେ ମଧ୍ୟ ସମ୍ପୂର୍ଣ୍ଣ ଅର୍ଥ ପ୍ରକାଶପାଇଁ ଅନ୍ୟମାନଙ୍କ ଉପରେ ଅପେକ୍ଷା ରଖୁଛି । ଅନ୍ୟ ଅପ୍ରଧାନ ବା ଉପବାକ୍ୟଗୁଡ଼ିକ ପ୍ରଧାନ ବାକ୍ୟ (ଉପବାକ୍ୟ) ଉପରେ ନିର୍ଭରଶୀଳ । ଏଣୁ ଅପ୍ରଧାନ ବାକ୍ୟଗୁଡ଼ିକ ନିର୍ଭରଶୀଳ ବାକ୍ୟ ବା ଆଶ୍ରିତ ବାକ୍ୟ ଅଟେ । ପାଞ୍ଚଟିଯାକ ଉଦାହରଣ ଗୋଟିଏ ଗୋଟିଏ ଜଟିଳ ବାକ୍ୟ । ଗୋଟିଏ ଜଟିଳ ବାକ୍ୟ ଦୁଇ ବା ତହିଁରୁ ଅଧିକ ବାକ୍ୟର ମିଶ୍ରଣରେ ଗଠିତ ।

ଜଟିଳ ବାକ୍ୟରେ ଯେ, ଯଦି, ସୁତରାଂ, ଯେହେତୁ, ଯେତେବେଳେ, ସେତେବେଳେ, ଯେପରି-ସେପରି, ଯେଉଁଠାରେ-ସେଠାରେ, ଯାହାର-ତାହାର, ଯେଉଁ, ତାହାହେଲେ ପ୍ରଭୃତି ଯୋଜକ ପଦଗୁଡ଼ିକ ବ୍ୟବହୃତ ହୋଇଥାଏ । କେତେକ ସ୍ଥଳରେ ଯୋଜକ ପଦ 'ଯେ' ଉହ୍ୟ ଥାଏ ।

ଜଟିଳ ବାକ୍ୟର ଆଉ କେତୋଟି ଉଦାହରଣ-

୧ । ରେଡିଓରୁ ଶୁଣାଗଲା ଯେ ଭୂମିକମ୍ପରେ ହଜାର ହଜାର ଲୋକ ମରିଛନ୍ତି ।

୨ । ଯେଉଁ ପିଲାଟି ସେ ଦିନ ଭିକ ମାଗୁଥିଲା, ସେ ରାମଦାସର ପୁଅ ସନିଆ ।

୩ । ସମସ୍ତେ ଜାଣନ୍ତି, 'ଯୁଗେ ଯୁଗେ ସତ୍ୟର ବିଜୟ ହୁଏ ।'

୪ । ଯଦି ତୁମେ ଆସିବ, ମୁଁ ନିଶ୍ଚୟ ଯିବି ।

୫ । ଯେତିକି କମ୍ କହିବ, ସେତିକି ବିପଦମୁକ୍ତ ହେବ ।

୬ । ତୁ ଯେତେ ମାଠୁଛୁ ମାଠ, ମୁଁ ସେହି ଦରପୋଡ଼ା କାଠ ।

୭ । ଯାହାର ଲୁଣ ଖାଇବ, ତାହାର ଗୁଣ ଗାଇବ ।

୮ । ତୁମେ ଯଦି କାମଟା କରିପାରିବ ନାହିଁ, ସେକଥା ମୋତେ ସଫାସଫା କହିଦିଅ, ତାହାହେଲେ ମୁଁ ଅନ୍ୟ ବ୍ୟବସ୍ଥା କରିବି ।

୯ । ଯେଉଁମାନେ ଲୋକପ୍ରତିନିଧି ହେବେ, ସେମାନେ ସର୍ବଦା ଦୁର୍ନୀତିମୁକ୍ତ ହେବା ଉଚିତ ।

୧୦ । ଯେ ଦୁଃଖିରଙ୍କୀଙ୍କର ସେବା କରେ, ସେ ଈଶ୍ୱରଙ୍କର କୃପାପାତ୍ର ହୁଏ ।

କେତେକ ସ୍ଥଳରେ ଜଟିଳବାକ୍ୟ ସହିତ ଯୌଗିକବାକ୍ୟ ବା ସରଳବାକ୍ୟ ଅଥବା ଜଟିଳବାକ୍ୟ ମିଶିକରି ଥାଏ । ସେ ପ୍ରକାର ବାକ୍ୟକୁ କେତେକ ବ୍ୟାକରଣବିତ୍ ମିଶ୍ର ବାକ୍ୟ ବୋଲି ମତ ଦେଇଥା'ନ୍ତି । ଉଦାହରଣ-

୧ । ଯେଉଁ ଛାତ୍ରଟି ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ହେଲା, ସେ ମୋର ସହପାଠୀ ଏବଂ ତାହା ସହିତ ମୋର ଘନିଷ୍ଠ ବନ୍ଧୁତା ଅଛି ।

ପ୍ରଥମ ଦୁଇଟି ବାକ୍ୟ ଏକ ଜଟିଳ ବାକ୍ୟ ଓ ଶେଷ ବାକ୍ୟଟି ଏକ ସରଳ ବାକ୍ୟ । ଏଠାରେ ଜଟିଳ ଓ ସରଳ ବାକ୍ୟ ମିଶି ମିଶ୍ର ବାକ୍ୟ ହୋଇଛି ।

୨ । ତୁମେ ଯେଉଁ ବହିଟି ମୋତେ ଦେଇଥିଲ ତାହା ନିଅ, ପୁଣି ଯାଜ୍ଞସେନୀ ଉପନ୍ୟାସଟି ଦିଅ ଏବଂ ସପ୍ତାହକ ଭିତରେ ତାହା ମୁଁ ନିଶ୍ଚିତ ଫେରାଇ ଦେବି । ଏହି ବାକ୍ୟରେ-

(କ) ତୁମେ ଯେଉଁ...ତାହା ନିଅ- (ଜଟିଳ ବାକ୍ୟ)

(ଖ) ପୁଣି... ଫେରାଇ ଦେବି । (ଯୌଗିକ ବାକ୍ୟ)

ଏହିପରି ଜଟିଳ ବାକ୍ୟ ଓ ଯୌଗିକବାକ୍ୟ ମିଶି ମିଶ୍ରବାକ୍ୟ ହୋଇଅଛି ।

୩ । ସବୁ ପିତାମାତା ଆଶା କରନ୍ତି ଯେ ସେମାନଙ୍କ ସନ୍ତାନମାନେ ଭଲ ମଣିଷ ହୁଅନ୍ତୁ; କିନ୍ତୁ ସମସ୍ତେ ଯେ ଭଲ ମଣିଷ ହେବେ, ଏହା କିଏ କହିପାରିବ ନାହିଁ ।

ଏହି ବଡ଼ ବାକ୍ୟଟିରେ ଚାରୋଟି କର୍ତ୍ତା, ଚାରୋଟି ସମାପିକା କ୍ରିୟା ଅଛି । ଏଣୁ ଏହି ବାକ୍ୟଟି ଚାରୋଟି ବାକ୍ୟର ମିଶ୍ରଣରେ ଗଠିତ । ପ୍ରଥମ ଦୁଇଟିବାକ୍ୟ ମିଶି ଗୋଟିଏ ଜଟିଳ ବାକ୍ୟ, ତୃତୀୟ ଓ ଚତୁର୍ଥ ବାକ୍ୟ ମିଶି ଆଉ ଏକ ଜଟିଳ ବାକ୍ୟ ହୋଇଛି । 'କିନ୍ତୁ' ଅବ୍ୟୟପଦ ଜଟିଳବାକ୍ୟ ଦୁଇଟିକୁ ଯୋଗ କରୁଛି । ଏହା ମଧ୍ୟ ମିଶ୍ରବାକ୍ୟର ଅନ୍ତର୍ଗତ ।

## ଅନୁଶୀଳନୀ

### (କ)

୧ । ଭାବଦୃଷ୍ଟିରୁ ବାକ୍ୟ କେତେ ପ୍ରକାର ଓ କ'ଣ କ'ଣ ଲେଖ ।

୨ । ବିସ୍ମୟସୂଚକ ବାକ୍ୟ କାହାକୁ କହନ୍ତି, ଲେଖି ପାଞ୍ଚଟି ଉଦାହରଣ ଦିଅ ।

୩ । ପାଞ୍ଚଟି ବିବୃତିସୂଚକ ବାକ୍ୟର ଉଦାହରଣ ଦେଇ ନାସ୍ତିସୂଚକ ବାକ୍ୟରେ ପରିଣତ କର ।

୪ । ଆଦେଶସୂଚକ ବାକ୍ୟ କାହାକୁ କହନ୍ତି ? ତିନୋଟିର ଉଦାହରଣ ଦିଅ ।

୫ । ପାଞ୍ଚଟି ପ୍ରଶ୍ନସୂଚକ ବାକ୍ୟ ଲେଖ ।

୬ । କିଏ କି ପ୍ରକାର ବାକ୍ୟ କୁହ ।

(କ) ବୀର ସୁରେନ୍ଦ୍ର ସାଏ ଦେଶପ୍ରେମୀ ଥିଲେ ।

(ଖ) ମୁଁ ପୁସ୍ତକମେଳା ଦେଖିଅଛି ।

(ଗ) କ'ଣ କିଛି କହୁଛ ?

(ଘ) କ୍ଷୁଦ୍ର ସର୍ପର ବିଷ କି ଉତ୍କଟତର !

(ଙ) ଦେଶବାସୀ ନିର୍ଭୀକ ହୁଅନ୍ତୁ ।

(ଚ) ପିଲାଟି ମିଛ କହିନାହିଁ ।

(ଛ) ଏକା ମାଘକେ ଶୀତ ଯାଏନି ।

(ଜ) ମାନବସେବାଠାରୁ ବଳି ପୁଣ୍ୟକାର୍ଯ୍ୟ ଆଉ ନାହିଁ ।

(ଝ) ଶିଶୁ ହସିଲେ ଦୁନିଆ ହସେ ।

(ଞ) କର୍ମ ହିଁ ଈଶ୍ୱର ।

(ଟ) ଓଃ କି ଯନ୍ତ୍ରଣା !

(ଠ) କେଡ଼େ କଥାଟାଏ ନ ହେଲା !

୭ । ନିର୍ଦ୍ଦେଶ ଅନୁସାରେ ବାକ୍ୟଗୁଡ଼ିକ ବଦଳାଅ ।

(କ) ଈଶ୍ୱରଙ୍କ ସୃଷ୍ଟି ସୁନ୍ଦର । (ବିସ୍ମୟସୂଚକ)

(ଖ) ତୁମେ କ'ଣ କିଛି କହିବ ନାହିଁ ? (ଅସ୍ତିସୂଚକ)

(ଗ) ମର୍ତ୍ତ୍ୟରେ ସମସ୍ତେ ମରନ୍ତି । (ନିଷେଧାତ୍ମକ ପ୍ରଶ୍ନସୂଚକ)

(ଘ) ଭାରତ ଏକ ମହାନ୍ ଦେଶ । (ପ୍ରଶ୍ନସୂଚକ)

(ଙ) ମୁଁ ଚା ପିଏ ନାହିଁ । (ବିବୃତିସୂଚକ)

(ଚ) ଈଶ୍ୱର ସମସ୍ତଙ୍କର ମଙ୍ଗଳ କରନ୍ତି (ଅନୁଜ୍ଞାସୂଚକ)

(ଛ) ପରକୁ ଦୋଷ ଦିଅ ନାହିଁ । (ପ୍ରଶ୍ନସୂଚକ)

(ଜ) ଆକାଶର ତାରକାମାନଙ୍କୁ କେହି ଗଣିପାରିବେ ନାହିଁ । (ବିସ୍ମୟସୂଚକ)

## (ଖ)

୧ । ଗଠନ ଦୃଷ୍ଟିରୁ ବାକ୍ୟକୁ କେତେ ଭାଗରେ ବିଭକ୍ତ କରାଯାଏ ? ସେଗୁଡ଼ିକର ନାମ ଲେଖ ।

୨ । ଜଟିଳ ଓ ଯୌଗିକ ବାକ୍ୟ ମଧ୍ୟରେ କି ପାର୍ଥକ୍ୟ ଅଛି ଉଦାହରଣ ସହ ବୁଝାଅ ।

୩ । ଜଟିଳବାକ୍ୟ କାହାକୁ କହନ୍ତି ? ଦୁଇଟିର ଉଦାହରଣ ଦିଅ ।

୪ । ପାଞ୍ଚଟିଯୌଗିକ ବାକ୍ୟ ଲେଖ ।

୫ । ଦୁଇଟି ଯୌଗିକବାକ୍ୟ ଲେଖି ସରଳବାକ୍ୟରେ ପରିବର୍ତ୍ତନ କର ।

୬ । ନିମ୍ନଲିଖିତ ବାକ୍ୟଗୁଡ଼ିକ ମଧ୍ୟରୁ କେଉଁଗୁଡ଼ିକ ସରଳ ବାକ୍ୟ ବାଛି ଲେଖ ।

(କ) ନଅ ଶହ ପଚାଶ ଟଙ୍କା ଦେଇ ମୁଁ ଏ ଅଭିଧାନ ଖଣ୍ଡିକ କିଣିଲି ।

(ଖ) ମୁଠେ ଖାଅ, ଖଣ୍ଡେ ପିନ୍ଧ ।

(ଗ) ଆସ, ମିଳିମିଶି କାମଟା କରିଦେବା ।

(ଘ) ସନିଆ ଗୋରୁ ଜଗେ ଓ ମୂଳଲାଗେ ।

(ଙ) ଗଣେଶ ଯାଉଯାଉ ଗାଡ଼ି ଛାଡ଼ିଦେଲା ।

(ଚ) ବସି ଖାଇଲେ ନଈବାଲି ସରେ ।

(ଛ) ରୁଟି ଓ ଡାଲମା ମୋର ପ୍ରିୟ ଖାଦ୍ୟ ।

(ଜ) ଶର୍ମିଷ୍ଠା ଶ୍ରେଣୀରେ ପ୍ରଥମ ହୁଏ ।

୭ । ନିମ୍ନଲିଖିତ ସରଳବାକ୍ୟଗୁଡ଼ିକୁ ଯୌଗିକବାକ୍ୟରେ ପରିଣତ କର ।

(କ) ବିନାୟକ ଗରିବ । ସେ ହୃଦୟହୀନ ନୁହେଁ ।

(ଖ) ପ୍ରଧାନ ଶିକ୍ଷକ ଅଫିସ୍‌ରେ ବସିଥିଲେ । ସେ ଗହଳି ଶୁଣି ବାହାରକୁ ଆସିଲେ ।

(ଗ) ତୁମ ପୁଅ ଡାକ୍ତରି ପଢୁ । ତୁମ ପୁଅ ଇଞ୍ଜିନିଅରିଂ ପଢୁ ।

(ଘ) ଶଙ୍କର କଟକ ଗଲା । ଗଳିକନ୍ଦିରେ ଲୋକଙ୍କୁ ପଚାରିଲା । କେଉଁଠି ହେଲେ ଭାଇକୁ ପାଇଲା ନାହିଁ ।

(ଙ) ମୁଁ ଦିଲ୍ଲୀ ଯାଇଛି । ମୁଁ ସଂସଦ ଦେଖିନାହିଁ ।

୮ । ବନ୍ଧନୀ ମଧ୍ୟସ୍ଥ ଯୋଜକପଦଗୁଡ଼ିକୁ ବ୍ୟବହାର କରି ପ୍ରଦତ୍ତ ସରଳବାକ୍ୟଗୁଡ଼ିକୁ ଜଟିଳବାକ୍ୟରେ ପରିଣତ କର ।

(କ) କାନ୍ଦୁଥିବା ପିଲାଟି କେଉଁଆଡ଼େ ଗଲା ? (ଯେଉଁ)

(ଖ) ଭଲ ପଢ଼ିଲେ ଜ୍ୟୋତିରଞ୍ଜନ ଶ୍ରେଣୀରେ ପ୍ରଥମ ହେବ ।(ଯଦି)

(ଗ) ଆଦେଶପାଳନ ନ କରିବାରୁ ଶିକ୍ଷକ ସ୍ମିତା ଉପରେ ବିରକ୍ତ ହେଲେ ।(ଯେହେତୁ)

(ଘ) ସନ୍ଧ୍ୟା ହେବାରୁ ପକ୍ଷୀମାନେ ନିଜନିଜ ନୀଡ଼କୁ ଫେରିଲେ । (ଯେତେବେଳେ)

(ଙ) ଧନଠାରେ ଲୋଭଥାଏ । (ଯେଉଁଠି)

(ଚ) ସମସ୍ତେ ଧର୍ମର ବିଜୟ ହୁଏ ବୋଲି କହନ୍ତି । (ଯେ)

(ଛ) ଲୁଣ ଖାଇବା ଲୋକର ଗୁଣ ଗାଇବ । (ଯାହାର)

(ଜ) କାମ ଅନୁସାରେ ଫଳ ପାଇବୁ । (ଯେମିତି)

(ଝ) ଅନନ୍ତ ରଖୁଥିବା ଲୋକର ବଳବନ୍ତ କିଛି କରି ପାରିବ ନାହିଁ । (ଯାହାକୁ)



# ବାକ୍ୟର ବାଚ୍ୟ

ଗୋଟିଏ ବକ୍ତବ୍ୟକୁ ଜଣେ ଭିନ୍ନଭିନ୍ନ ଭାବରେ ପ୍ରକାଶ କରିପାରେ । ପ୍ରକାଶଭଙ୍ଗୀ ଅନୁସାରେ ଗୋଟିଏ ବାକ୍ୟଠାରୁ ଆଉ ଗୋଟିଏ ବାକ୍ୟ ଭିନ୍ନ ହୋଇଥାଏ । ଏହି ଭିନ୍ନତା ସାଧାରଣତଃ କର୍ତ୍ତା, କ୍ରିୟା ଓ କର୍ମଠାରେ ପରିଲକ୍ଷିତ ହୋଇଥାଏ । ଯଥା–

୧ । ଛାତ୍ର ବ୍ୟାକରଣ ପଢୁଛି ।

୨ । ଛାତ୍ରଦ୍ୱାରା ବ୍ୟାକରଣ ପଢ଼ାହେଉଛି ।

୩ । ଛାତ୍ରର ବ୍ୟାକରଣ ପଢ଼ା ହେଉଛି ।

ବାକ୍ୟର ଏହି ପ୍ରକାଶଭଙ୍ଗୀକୁ 'ବାଚ୍ୟ' କୁହାଯାଏ । ପ୍ରକାଶଭଙ୍ଗୀ ଅନୁଯାୟୀ କେତେବେଳେ ବାକ୍ୟରେ କର୍ତ୍ତାର ପ୍ରାଧାନ୍ୟ ରହେ ତ ଆଉ କେତେବେଳେ କର୍ମର ବା ଅନ୍ୟ କେତେବେଳେ କ୍ରିୟାର ପ୍ରାଧାନ୍ୟ ରହିଥାଏ । ଏହି ପ୍ରାଧାନ୍ୟ ଦୃଷ୍ଟିରୁ ବାଚ୍ୟ ତିନି ପ୍ରକାର । ଯଥା– କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ଭାବବାଚ୍ୟ ।

ଓଡ଼ିଆ ଭାଷାରେ କର୍ତ୍ତୃବାଚ୍ୟ ବାକ୍ୟର ବ୍ୟବହାର ଅଧିକ ।

**କର୍ତ୍ତୃବାଚ୍ୟ :**

ଯେଉଁ ବାକ୍ୟରେ କର୍ତ୍ତା ଅନୁସାରେ କ୍ରିୟାପଦ ବସିଥାଏ ବା କ୍ରିୟା କର୍ତ୍ତାର ଅନୁଗାମୀ ହୋଇଥାଏ, ତାହାକୁ କର୍ତ୍ତୃବାଚ୍ୟ କୁହାଯାଏ । ଯଥା–

ଶିଶୁ କ୍ଷୀର ପିଉଛି ।

ଏହି ବାକ୍ୟରେ 'ଶିଶୁ' କର୍ତ୍ତା, 'କ୍ଷୀର' କର୍ମ ଓ 'ପିଉଛି' କ୍ରିୟାପଦ । 'ପିଉଛି' କ୍ରିୟାପଦଟି 'ଶିଶୁ' କର୍ତ୍ତା ଅନୁସାରେ ବସିଅଛି । ପିଇବା କାର୍ଯ୍ୟ 'ଶିଶୁ' ସମ୍ପାଦନ କରୁଥିବାରୁ ସେ କର୍ତ୍ତା । କର୍ତ୍ତା 'ଶିଶୁ'ର ପ୍ରାଧାନ୍ୟ ରହିଥିବାରୁ ବାକ୍ୟଟି କର୍ତ୍ତୃବାଚ୍ୟ ଅଟେ । କର୍ତ୍ତୃବାଚ୍ୟରେ ସାଧାରଣତଃ କର୍ତ୍ତା, କର୍ମ ଓ କ୍ରିୟାପଦ ଥାଏ ।

କର୍ମହୀନ କର୍ତ୍ତୃବାଚ୍ୟ ବାକ୍ୟର ମଧ୍ୟ ବ୍ୟବହାର ହେଉଅଛି । କେତେକ କ୍ରିୟା ଅକର୍ମକ ଅଟନ୍ତି । ସେଭଳି କ୍ରିୟା ଯେଉଁ ବାକ୍ୟରେ ବ୍ୟବହୃତ ହୋଇଥାଏ, ତାହା ଅକର୍ମକ କର୍ତ୍ତୃବାଚ୍ୟର ବାକ୍ୟ ଅଟେ । ଯଥା–

ବୁଢ଼ିଆ ଭଲ ଧାଉଁଛି ।

ଲୋକଟି ପଡ଼ିଗଲା ।

ଏହି ବାକ୍ୟ ଦୁଇଟିରେ 'ଧାଉଁଛି' ଓ 'ପଡ଼ିଗଲା' ଅକର୍ମକ କ୍ରିୟା ହେତୁ ବାକ୍ୟ ଦୁଇଟି ଅକର୍ମକ କର୍ତ୍ତୃବାଚ୍ୟର ଅଟେ ।

କେତେକ ସକର୍ମକ କ୍ରିୟାଯୁକ୍ତ ବାକ୍ୟରେ କର୍ମ ଊହ୍ୟ ଥାଏ । ଯଥା-

ମୁଁ ଶୁଣୁଛି । ଗୀତିମୟ ଭଲ ଗାଏ ।

ମା ରାନ୍ଧୁଛନ୍ତି । ବିପିନ କହୁଛି ।

କେତେକ କର୍ତ୍ତୃବାଚ୍ୟ ବାକ୍ୟର ଉଦାହରଣ-

୧ । ଦୋକାନୀ ଆମକୁ ସଉଦା ଦିଏ ।

୨ । ମୀନା ମାଉସୀ ଘରକୁ ଯାଉଛି ।

୩ । ମୁଁ କଲମରେ ଲେଖେ ।

୪ । ଗଛରେ ଫୁଲ ଫୁଟିଛି ।

୫ । ସାଧୁମାନେ ସବୁବେଳେ ସତ କହନ୍ତି ।

୬ । ଜୟରାମ ଏକଲୟରେ ସୂର୍ଯ୍ୟଙ୍କୁ ଦେଖୁଛି ।

୭ । ସେ ଖାଇନାହିଁ ।

୮ । ଧର୍ମ ଧାର୍ମିକକୁ ରକ୍ଷାକରେ ।

**କର୍ମବାଚ୍ୟ :**

ଯେଉଁ ବାକ୍ୟରେ କର୍ମର ପ୍ରାଧାନ୍ୟ ଥାଏ ଓ କ୍ରିୟା କର୍ମ ଅନୁସାରିଣୀ ହୋଇଥାଏ, ତାହାକୁ କର୍ମବାଚ୍ୟ କହନ୍ତି । ଯଥା- ଶିଶୁଦ୍ୱାରା କ୍ଷୀର ପିଆ ହେଉଛି ।

ଏଠାରେ 'ଶିଶୁଦ୍ୱାରା' ପଦଟି କରଣକାରକ ଓ ତୃତୀୟା ବିଭକ୍ତି ହୋଇଛି । କର୍ମ 'କ୍ଷୀର' କର୍ତ୍ତାକାରକ ପ୍ରଥମା ବିଭକ୍ତି ହୋଇଛି । 'ପିଆହେଉଛି' କ୍ରିୟାପଦ କର୍ମ 'କ୍ଷୀର' ଅନୁସାରେ ବ୍ୟବହୃତ ହୋଇଛି । ଏଣୁ ଏହି ବାକ୍ୟଟି କର୍ମବାଚ୍ୟର ଅନ୍ତର୍ଗତ ।

କର୍ମବାଚ୍ୟରେ କର୍ତ୍ତାଠାରେ ତୃତୀୟା ବିଭକ୍ତି ସହ ଦ୍ୱିତୀୟା ବିଭକ୍ତି ମଧ୍ୟ ହୋଇଥାଏ । ଯଥା-

ଦେବାନନ୍ଦ ଭଲ ପୁରାଣ ପଢ଼େ । (କର୍ତ୍ତୃବାଚ୍ୟ)

କର୍ମବାଚ୍ୟ- **ଦେବାନନ୍ଦଦ୍ୱାରା** ଭଲ ପୁରାଣ ପଢ଼ା ହୁଏ । (ତୃତୀୟା ବିଭକ୍ତି)

**ଦେବାନନ୍ଦକୁ** ଭଲ ପୁରାଣ ପଢ଼ିଆସେ । (ଦ୍ୱିତୀୟା ବିଭକ୍ତି)

ଅନ୍ୟ ଉଦାହରଣ- ସେ ଏ କାମ କରିବେ । (କର୍ତ୍ତୃବାଚ୍ୟ)

କର୍ମବାଚ୍ୟ- **ତାଙ୍କୁ** ଏ କାମ କରିବାକୁ ହେବ ।

**ତାଙ୍କଦ୍ୱାରା** ଏ କାମ କରାଯିବ ।

କ୍ୱଚିତ୍ କ୍ଷେତ୍ରରେ କର୍ମବାଚ୍ୟରେ କର୍ମଠାରେ ପ୍ରଥମା ବିଭକ୍ତି ନ ହୋଇ, ସେହି ଦ୍ୱିତୀୟା ବିଭକ୍ତି ରହେ । ଯଥା–

କର୍ତ୍ତୃବାଚ୍ୟ – ଲୋକେ ଉପେନ୍ଦ୍ରଭଞ୍ଜଙ୍କୁ ଓଡ଼ିଶାର କାଳିଦାସ କହନ୍ତି ।

କର୍ମବାଚ୍ୟ – ଲୋକଙ୍କଦ୍ୱାରା ଉପେନ୍ଦ୍ର ଭଞ୍ଜ ଓଡ଼ିଶା କାଳିଦାସ ରୂପେ କଥିତ ।

(ଲୋକଙ୍କଦ୍ୱାରା) **ଉପେନ୍ଦ୍ର ଭଞ୍ଜଙ୍କୁ** ଓଡ଼ିଶାର କାଳିଦାସ କୁହାଯାଏ ।

କ୍ୱଚିତ୍ ସ୍ଥଳରେ କର୍ମବାଚ୍ୟରେ କର୍ତ୍ତାଠାରେ **ଷଷ୍ଠୀବିଭକ୍ତି** ହେବାର ଦେଖାଯାଏ । ଯଥା–

କର୍ତ୍ତୃବାଚ୍ୟ – ସେ ସମୁଦ୍ର ଦେଖୁଛନ୍ତି ।

କର୍ମବାଚ୍ୟ – **ତାଙ୍କର** ସମୁଦ୍ର ଦେଖାହେଉଛି । (ଷଷ୍ଠୀବିଭକ୍ତି)

## କର୍ମବାଚ୍ୟର କେତେକ ଉଦାହରଣ :

୧ । ଗୁଣୀଦ୍ୱାରା ଗୁଣ ଚିହ୍ନାଯାଏ ।

୨ । ଗୋପବନ୍ଧୁଙ୍କ ଦ୍ୱାରା ଧର୍ମପଦ ଲେଖା ହୋଇଛି ।

୩ । ବାଲ୍ମୀକିଙ୍କୁ ସୀତାଙ୍କର କ୍ରନ୍ଦନଧ୍ୱନି ଶୁଣାଗଲା ।

୪ । ତାଙ୍କଦ୍ୱାରା ମୁଁ ବହୁତ ସମ୍ମାନ ପାଇଲି ।

୫ । କାହାଦ୍ୱାରା ରଘୁବଂଶ ଲିଖିତ ହୋଇଛି ?

୬ । ଭାଇଙ୍କର ଆଜି କଟକରୁ ଘରକୁ ଆସିବା ହେବ ।

୭ । ଆପଣଙ୍କ ଦ୍ୱାରା ସତ କୁହାଯାଉ ।

୮ । କାବେରୀକୁ ଦକ୍ଷିଣଭାରତର ଗଙ୍ଗା କୁହାଯାଏ ।

୯ । ତାଙ୍କୁ ଆଜି ପୁରୀ ଯିବାକୁ ହେବ ।

୧୦। ମେଘଦ୍ୱାରା ସୂର୍ଯ୍ୟ ସବୁବେଳେ ଆଚ୍ଛନ୍ନ ନୁହନ୍ତି ।

## ଭାବବାଚ୍ୟ :

ଯେଉଁ ବାକ୍ୟରେ 'କ୍ରିୟା' କର୍ତ୍ତା ବା କର୍ମ ଅନୁସାରେ ହୋଇ ନ ଥାଏ ତଥା କ୍ରିୟା ନିଜେ କର୍ତ୍ତା ଭାବରେ ବ୍ୟବହୃତ ହୋଇଥାଏ, ତାହାକୁ ଭାବବାଚ୍ୟ କହନ୍ତି । କ୍ରିୟାର ଅର୍ଥକୁ 'ଭାବ' କୁହାଯାଏ ।

ଅକର୍ମକ କର୍ତ୍ତୃବାଚ୍ୟର ବାକ୍ୟ କେବଳ ଭାବବାଚ୍ୟରେ ପରିବର୍ତ୍ତିତ ହୋଇଥାଏ । କର୍ତ୍ତାକାରକ ପ୍ରଥମାବିଭକ୍ତି ସ୍ଥାନରେ ୩ୟା ବିଭକ୍ତି ବା ସମ୍ବନ୍ଧପଦରେ ଷଷ୍ଠୀବିଭକ୍ତି ହୋଇଥାଏ । ଯଥା–

କର୍ତ୍ତୃବାଚ୍ୟ - ଦୋଳଗୋବିନ୍ଦ ଦୋଳରେ ବସିଛନ୍ତି ।

ଭାବବାଚ୍ୟ - **ଦୋଳଗୋବିନ୍ଦଙ୍କଦ୍ୱାରା** ଦୋଳରେ ବସିବା ହୋଇଛି । (୩ୟା ବିଭକ୍ତି)

**ଦୋଳଗୋବିନ୍ଦଙ୍କର** ଦୋଳରେ ବସିବା ହୋଇଛି । (ଷଷ୍ଠୀବିଭକ୍ତି)

**ଭାବବାଚ୍ୟର କେତୋଟି ଉଦାହରଣ-**

୧ । ପିଲାମାନଙ୍କର ଧାଇଁବା ହେଉଛି ।

୨ । ଆପଣଙ୍କର ବସିବା ହେଉ ।

୩ । ସଭାରେ ମୋତେ କହିବାକୁ ହେଲା ।

୪ । ମାମୁଙ୍କର ଆଜି ଆମଘରେ ରହିବା ହେବ ।

୫ । ରୋଗୀଟିର କାଶିବା ଚାଲିଛି ।

୬ । ମୋତେ ଆଜି ଯିବାକୁ ହେବ ।

୭ । ଶିଶୁଟିର ହସିବା ଲାଗିଛି ।

ଉପର ଲିଖିତ ତିନୋଟି ବାଚ୍ୟ ବ୍ୟତୀତ ଓଡ଼ିଆ ଭାଷାରେ ବାକ୍ୟର ଆଉ ଏକ ପ୍ରକାର ପ୍ରକାଶଭଙ୍ଗୀ ଦେଖାଯାଏ ।

ଯେଉଁ ବାକ୍ୟରେ କର୍ମପଦ କର୍ତ୍ତାପରି ବ୍ୟବହୃତ ହୋଇଥାଏ ଏବଂ କ୍ରିୟା ସକର୍ମକ ହୋଇଥିଲେ ମଧ୍ୟ ଅକର୍ମକ ପରି ବ୍ୟବହୃତ ହୁଏ ଓ କର୍ମ ଆପେଆପେ ଘଟିଲା ପରି ମନେହୁଏ, ସେହି ବାକ୍ୟକୁ କର୍ମକର୍ତ୍ତୃବାଚ୍ୟର ବାକ୍ୟ କହନ୍ତି । ଯଥା-

ଗୁଡ଼ି ଉଡୁଛି । ଘଣ୍ଟା ବାଜୁଛି । ଭାତ ଫୁଟୁଛି ।

ଉପର ବାକ୍ୟ ତିନୋଟିରେ 'ଗୁଡ଼ି', 'ଘଣ୍ଟା' ଓ 'ଭାତ' କର୍ମ ପଦ ।

ଗୁଡ଼ି ଉଡ଼ାଇବା କାମ, ଘଣ୍ଟା ବାଜିବା କାମ ଓ ଭାତକୁ ଫୁଟାଇବା କାମ କେହିହେଲେ କରୁଛି; ମାତ୍ର କର୍ତ୍ତୃପଦ ବାକ୍ୟଗୁଡ଼ିକରେ ପ୍ରକାଶିତ ହୋଇନାହିଁ । କର୍ମପଦ ଏହିଭଳି ବାକ୍ୟରେ କର୍ତ୍ତୃପଦ ରୂପେ ବ୍ୟବହୃତ ହୁଏ ଏବଂ କର୍ମ ନିଜେ ସମ୍ପନ୍ନ ହେଲାପରି ଜଣାଯାଏ । ତେଣୁ ଏପ୍ରକାର ବାକ୍ୟ କର୍ମକର୍ତ୍ତୃବାଚ୍ୟରେ ଅଛି ବୋଲି କୁହାଯାଏ ।

## ବାଚ୍ୟ ପରିବର୍ତ୍ତନ :

ଓଡ଼ିଆ ଭାଷାରେ କର୍ତ୍ତୃବାଚ୍ୟ ବାକ୍ୟ ପରି କର୍ମବାଚ୍ୟ ଓ ଭାବବାଚ୍ୟ ବାକ୍ୟର ବିଶେଷ ପ୍ରଚଳନ ନାହିଁ । କର୍ତ୍ତୃବାଚ୍ୟର ବାକ୍ୟକୁ କର୍ମବାଚ୍ୟ ଓ ଭାବବାଚ୍ୟରେ ପରିବର୍ତ୍ତନ କରାଯାଇପାରେ; ମାତ୍ର ବ୍ୟବହାର କମ୍ ।

| **କର୍ତ୍ତୃବାଚ୍ୟ ବାକ୍ୟ** | **କର୍ମବାଚ୍ୟ ବାକ୍ୟ** |
|---|---|
| ଶୁଭଲକ୍ଷ୍ମୀ ଟିଭି ଦେଖୁଛି । | ଶୁଭଲକ୍ଷ୍ମୀର ଟିଭି ଦେଖାହେଉଛି । |
| ଗାୟତ୍ରୀ ଗୀତ ଗାଇଲା । | ଗାୟତ୍ରୀଦ୍ୱାରା ଗୀତ ଗାନକରାଗଲା । |
| ବର୍ଷାହେଲେ ଚାଷୀ ଧାନ ବୁଣେ । | ବର୍ଷା ହେଲା ପରେ ଚାଷୀଦ୍ୱାରା ଧାନ ବୁଣାହୁଏ । |
| ତୁମେ ସବୁକଥା ଜାଣ । | ତୁମକୁ ସବୁକଥା ଜଣା । |
| ମାଆ ପୁଅକୁ ଜଳଖିଆ ଦେଲେ । | ମାଆଙ୍କ ଦ୍ୱାରା ପୁଅକୁ ଜଳଖିଆ ଦିଆଗଲା । |
| ଏଥର କହ । | ଏଥର କୁହାହେଉ (କୁହାଯାଉ) । |
| ମୁଁ ଖାଇସାରି ସ୍କୁଲକୁ ଯିବି । | ମୋର ଖିଆ ସରିଲେ ସ୍କୁଲଯିବା ହେବ । |
| କିଏ ମୋ ବହି ନେଇଛି ? | କାହାଦ୍ୱାରା ମୋ ବହି ନିଆଯାଇଛି ? |
| ଈଶ୍ୱର ତାକୁ ବହୁତ କଷ୍ଟ ଦେଲେଣି । | ଈଶ୍ୱରଙ୍କଦ୍ୱାରା ସେ ବହୁତ କଷ୍ଟ ପାଇଲାଣି । |
| ବାପା ଜଗନ୍ନାଥଙ୍କୁ ଦର୍ଶନ କରିବେ । | ବାପାଙ୍କର ଜଗନ୍ନାଥ ଦର୍ଶନ ହେବ । |
| ସେ ପ୍ରତିଦିନ ପୁରାଣ ପାଠ କରନ୍ତି । | ତାଙ୍କଦ୍ୱାରା ପ୍ରତିଦିନ ପୁରାଣ ପଠିତ(ପୁରାଣ ପାଠ) ହୁଏ । |
| ମୁଁ ଖୋସାମତି କରିପାରିବି ନାହିଁ । | ମୋ ଦ୍ୱାରା ଖୋସାମତି କରା ଯାଇପାରିବ ନାହିଁ ।<br>ମୋତେ ଖୋସାମତି କରିଆସେ ନାହିଁ । |

| **କର୍ତ୍ତୃବାଚ୍ୟ ବାକ୍ୟ** | **ଭାବବାଚ୍ୟ ବାକ୍ୟ** |
|---|---|
| ଆପଣ କେବେ ଯାଉଛନ୍ତି ? | ଆପଣଙ୍କର କେବେ ଯିବା ହେଉଛି ? |
| ମୁଁ କେବେ ଡରେ ନାହିଁ । | ମୋର କେବେ ଡରିବାର ନାହିଁ । |
| ତୁ ଖାଇଛୁ । | ତୋର ଖିଆ ହୋଇଛି । |
| ଶୁଣ । | ଶୁଣିମା ହେଉ । |
| ପିଲାଏ ଖେଳୁଛନ୍ତି । | ପିଲାଙ୍କର ଖେଳ ଚାଲିଛି (ଲାଗିଛି) । |
| ମୁନା ଶୋଇଛି । | ମୁନାର ଶୁଆ-ହୋଇଛି । |
| ପଣ୍ଡିତେ ପିଣ୍ଡାରେ ବସିଥିଲେ । | ପଣ୍ଡିତଙ୍କର ପିଣ୍ଡାରେ ବସିବା ହୋଇଥିଲା । |
| **କର୍ମକର୍ତ୍ତୃବାଚ୍ୟ-** ଦୁଧ ଢଳିଗଲା । | କର୍ତ୍ତୃବାଚ୍ୟ- (ସେ) ଦୁଧ ଢାଳି ଦେଲା ।<br>କର୍ମବାଚ୍ୟ- (ତାହାଦ୍ୱାରା) ଦୁଧ ଢାଳି ହେଲା । |
| ଘଣ୍ଟ ବାଜୁଛି । | କର୍ତ୍ତୃବାଚ୍ୟ- (ସେ) ଘଣ୍ଟ ବଜାଉଛି ।<br>କର୍ମବାଚ୍ୟ- (ତା'ଦ୍ୱାରା) ଘଣ୍ଟ ବଜାଯାଉଛି । |

## ଅନୁଶୀଳନୀ

୧ । ନିମ୍ନଲିଖିତ ବାକ୍ୟଗୁଡ଼ିକର ବାଚ୍ୟନିର୍ଦ୍ଦେଶ କରି ବାଚ୍ୟ ପରିବର୍ତ୍ତନ କର ।

(କ) କାଠ ଚିରାହେଲା । (ଖ) ନାଟକ ଅଭିନୀତ ହେବ । (ଗ) ମୁଁ କାଲି ରାତିରେ ଶୋଇନାହିଁ । (ଘ) ବିଚାରପତିଙ୍କ ଦ୍ୱାରା ଅପରାଧୀ ଦଣ୍ଡ ପାଇଲା । (ଙ) ପତ୍ର ପଡ଼ୁ, ଭାତ ବଢ଼ାଯାଉ । (ଚ) ଅନ୍ଧକୁ କିଛି ଦିଶେ ନାହିଁ । (ଛ) ତାଙ୍କ ଘରେ ସବୁବେଳେ ଗହଳି ହୁଏ । (ଜ) ଆମେ ତୁମକୁ ଚିହ୍ନିନାହୁଁ । (ଝ) ବେଦଜ୍ଞମାନେ ଈଶ୍ୱରଙ୍କୁ ଏକ ବୋଲି କହନ୍ତି । (ଞ) ରମା ଗପ ଲେଖିପାରେ ନାହିଁ । (ଟ) ମଣିମା ଶୁଣିବା ହେଉ । (ଠ) ସୁଚିତ୍ରାକୁ ଚିତ୍ର ଆଙ୍କି ଆସେ । ସମସ୍ତଙ୍କ ଦ୍ୱାରା କ୍ରୋଧ ଦମିତ ହୁଏ ନାହିଁ । (ଡ) ବୋତଲ ଭାଙ୍ଗିଗଲା । (ଣ) ତୁମେ କି କାମ କରୁଛ ? (ତ) ମିଥ୍ୟାବାଦୀକୁ ସମସ୍ତେ ଘୃଣା କରନ୍ତି । (ଥ) ବାପା ମା' ସନ୍ତାନ ପାଇଁ ବହୁ କଷ୍ଟ ସହିଥା'ନ୍ତି ।

୨ । ବାଚ୍ୟ କେତେ ପ୍ରକାର ଓ କ'ଣ କ'ଣ ? ପ୍ରତ୍ୟେକରୁ ଦୁଇଟି ଲେଖାଏଁ ଉଦାହରଣ ଦିଅ ।

୩ । ନିମ୍ନଲିଖିତ ବାକ୍ୟମାନଙ୍କର ବାଚ୍ୟ ନିରୂପଣ କର ।

(କ) ମୁଁ ସବୁକଥା ଜାଣିଛି ।

(ଖ) ପିଲାମାନଙ୍କର ଖେଳ ହେଉଅଛି ।

(ଗ) ତୁମର ଆସିବା ମୋତେ ଜଣାନଥିଲା ।

(ଘ) ମୋ ବାପା ସଂସ୍କୃତ ଭାଗବତ ପଢ଼ନ୍ତି ।

(ଙ) କେହି ସବୁ ବିଷୟ ଜାଣେ ନାହିଁ ।

(ଚ) ମୁଁ ମୃତ୍ୟୁକୁ ସୁଦ୍ଧା ଡରେ ନାହିଁ ।

(ଛ) ଶିକ୍ଷକ ଛାତ୍ରମାନଙ୍କୁ ଉପଦେଶ ଦେଲେ ।

(ଜ) ସେ କ'ଣ ଏକାର୍ଯ୍ୟ କରିପାରିବେ ?

(ଝ) ତୁମର ଦିଲ୍ଲୀ ଯିବା ହେବ ନାହିଁ କି ?

(ଞ) କାଠୁରିଆ କାଠ କାଟୁଛି ।

(ଟ) ମାଆ ଭାତ ରାନ୍ଧୁଛନ୍ତି ।



# ପ୍ରତ୍ୟକ୍ଷୋକ୍ତି ଓ ପରୋକ୍ଷୋକ୍ତି

ନିମ୍ନଲିଖିତ ଉଦାହରଣ ଦୁଇଟିକୁ ଲକ୍ଷ୍ୟ କରାଯାଉ-

୧ – ମଧୁ କହିଲା, "ମୁଁ ଗୋଟିଏ ବହି ପଢୁଥିଲି ।"

୨ – ମଧୁ କହିଲା ଯେ ସେ ଗୋଟିଏ ବହି ପଢୁଥିଲା ।

ଉପରୋକ୍ତ ବାକ୍ୟଦ୍ୱୟର ଅର୍ଥ ସମାନ ହୋଇଥିଲେ ହେଁ, ସେମାନଙ୍କର ପ୍ରକାଶଭଙ୍ଗୀ ଭିନ୍ନ । ପ୍ରଥମ ବାକ୍ୟରେ ମଧୁର ଉକ୍ତିକୁ ଅବିକଳ ତା' ନିଜ ଭାଷାରେ ପ୍ରକାଶ କରାଯାଇଥିବା ସମୟରେ, ଦ୍ୱିତୀୟ ବାକ୍ୟରେ ମଧୁର ବାକ୍ୟକୁ ପରିବର୍ତ୍ତନ କରାଯାଇ ତୃତୀୟ ପୁରୁଷରେ ପ୍ରକାଶ କରାଯାଇଅଛି । ତେଣୁ ପ୍ରଥମ ବାକ୍ୟଟି ପ୍ରତ୍ୟକ୍ଷୋକ୍ତି ହୋଇଥିବା ସମୟରେ, ଦ୍ୱିତୀୟ ବାକ୍ୟଟି ପରୋକ୍ଷୋକ୍ତି । ଏଥିରୁ ଜଣାଗଲା, ଯେତେବେଳେ ବକ୍ତାର ବାକ୍ୟକୁ ତା'ରି ଭାଷାରେ ଅବିକଳ ପ୍ରକାଶ ବା ଉଦ୍ଧାର କରାଯାଏ, ତାହାକୁ ସେତେବେଳେ ପ୍ରତ୍ୟକ୍ଷ ଉକ୍ତି କୁହାଯାଏ; ମାତ୍ର ଯେଉଁଠାରେ ବକ୍ତାର ଉକ୍ତି ଅବିକଳ ଉଦ୍ଧୃତ ନ ହୋଇ, ଅନ୍ୟଜଣକ ଭାଷାରେ ଭିନ୍ନ ଭାବରେ ପ୍ରକାଶ କରାଯାଏ, ସେଠାରେ ପରୋକ୍ଷ ଉକ୍ତି ହୋଇଥାଏ ।

**ପ୍ରତ୍ୟକ୍ଷୋକ୍ତିକୁ ପରୋକ୍ଷୋକ୍ତିରେ ପରିଣତ କରିବାର କେତେକ ନିୟମ :**

(କ) ପ୍ରତ୍ୟକ୍ଷ ଉକ୍ତିକୁ ସାଧାରଣତଃ ଉଦ୍ଧୃତି ଚିହ୍ନ (" ") ମଧ୍ୟରେ ରଖାଯାଇଥାଏ ।

(ଖ) ଉଦ୍ଧୃତି ବାକ୍ୟ ପୂର୍ବରୁ କମା (,) ଦିଆଯାଇଥାଏ ।

(ଗ) ପରୋକ୍ଷ ଉକ୍ତିରେ 'ଯେ', 'ବୋଲି' ଆଦି ଅବ୍ୟୟ ପଦର ବ୍ୟବହାର ହୋଇଥାଏ ।

(ଘ) କେତେକ କ୍ଷେତ୍ରରେ ଉଦ୍ଧୃତି ବାକ୍ୟ ପୂର୍ବରୁ ହାଇଫେନ୍ (ସଂଯୋଜକ ଚିହ୍ନବିଶେଷ) (–) ଦିଆଯାଇଥାଏ ।

(ଙ) ପ୍ରଧାନ ବାକ୍ୟ କ୍ରିୟାର ଅତୀତ କାଳ ହୋଇଥିଲେ, ପରୋକ୍ଷୋକ୍ତି କ୍ରିୟାର ମଧ୍ୟ ଅତୀତ କାଳ ହୋଇଥାଏ । ଯଥା- ଶ୍ୟାମ କହିଲା, "ମୁଁ ସେଠାକୁ ଯାଉଅଛି ।"
ଶ୍ୟାମ କହିଲା ଯେ ସେ ସେଠାକୁ ଯାଉଥିଲା ।

ଅଥବା, ଶ୍ୟାମ ସେଠାରୁ ଯାଉଥିଲା ବୋଲି କହିଲା ।

(ଚ) ପରୋକ୍ଷ ଉକ୍ତିରେ ଉଦ୍ଧୃତି ଚିହ୍ନ କିମ୍ୱା ଉଦ୍ଧୃତାଂଶ ଉକ୍ତି ପୂର୍ବରୁ କମା ରହି ନ ଥାଏ ।

(ଛ) ପ୍ରତ୍ୟକ୍ଷଉକ୍ତିରେ ବକ୍ତାର ବକ୍ତବ୍ୟ ବା ପ୍ରତ୍ୟକ୍ଷଉକ୍ତିର କ୍ରିୟା ବର୍ତ୍ତମାନ କିମ୍ୱା ଭବିଷ୍ୟତ କାଳରେ ରହିଥିଲେ, ପରୋକ୍ଷ ଉକ୍ତିର କ୍ରିୟାର କୌଣସି ପରିବର୍ତ୍ତନ ହୋଇ ନ ଥାଏ ।

(ଜ) ପ୍ରତ୍ୟକ୍ଷଉକ୍ତି ଅର୍ଥାତ୍ ଉଦ୍ଧୃତି ଚିହ୍ନ ମଧ୍ୟରେ ରହିଥିବା ବାକ୍ୟ କୌଣସି ସାର୍ବଜନୀନ ସତ୍ୟ ଅଥବା ନିତ୍ୟନୈମିତ୍ତିକ କାର୍ଯ୍ୟସମ୍ବନ୍ଧରେ ସୂଚାଉଥିଲେ, ସେଥିରେ ଥିବା କ୍ରିୟାର କାଳରେ କୌଣସି ପରିବର୍ତ୍ତନ ହୋଇ ନ ଥାଏ । ଯଥା-

୧ । ସେ କହିଲା, "ସାଧୁତା ଗୋଟିଏ ଭଲ ଗୁଣ ଅଟେ ।" (ପ୍ରତ୍ୟକ୍ଷଉକ୍ତି)
ସେ କହିଲା ଯେ ସାଧୁତା ଗୋଟିଏ ଭଲ ଗୁଣ ଅଟେ । (ପରୋକ୍ଷଉକ୍ତି)
ଅଥବା, ସାଧୁତା ଗୋଟିଏ ଭଲ ଗୁଣ ବୋଲି ସେ କହିଲା । (ପରୋକ୍ଷଉକ୍ତି)

୨ । ମଧୁ କହିଲା, "ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଅଛି ।" (ପ୍ରତ୍ୟକ୍ଷଉକ୍ତି)
ମଧୁ କହିଲା ଯେ ପୃଥିବୀ ସୂର୍ଯ୍ୟ ଚାରିପାଖରେ ଘୂରୁଅଛି । (ପରୋକ୍ଷଉକ୍ତି)

(ଝ) ପ୍ରତ୍ୟକ୍ଷଉକ୍ତିରେ ବ୍ୟବହୃତ ବିଭିନ୍ନ ବିରାମ ଚିହ୍ନ, ବିସ୍ମୟସୂଚକ ବା ପ୍ରଶ୍ନସୂଚକ ଚିହ୍ନ ପରୋକ୍ଷଉକ୍ତିରେ ଲୋପପାଏ ।

ସାଧାରଣ ଭାବରେ କହିଲେ ପ୍ରତ୍ୟକ୍ଷୋକ୍ତି ପରୋକ୍ଷୋକ୍ତିରେ ପରିଣତ ହେବା ସମୟରେ, ସେଥିରେ କେତେଗୁଡ଼ିଏ ପରିବର୍ତ୍ତନ ସଂସାଧିତ ହୋଇଥାଏ । ଏହି ପରିବର୍ତ୍ତନ ମୁଖ୍ୟତଃ ଉଦ୍ଧୃତି ଚିହ୍ନ ମଧ୍ୟରେ ରହିଥିବା ବାକ୍ୟର ପ୍ରକାର ଉପରେ ନିର୍ଭର କରିଥାଏ । ଆମ ଦୈନନ୍ଦିନ ବ୍ୟବହାରରେ ସାଧାରଣତଃ ଚାରିପ୍ରକାର ବାକ୍ୟ ପରିଲକ୍ଷିତ ବା ବ୍ୟବହୃତ ହୋଇଥାଏ । ଯଥା-

୧ । ବିବରଣାତ୍ମକ ବା ବିବୃତିମୂଳକ - ଅସ୍ତ୍ୟର୍ଥକ/ନାସ୍ତ୍ୟର୍ଥକ
୨ । ପ୍ରଶ୍ନସୂଚକ - ହଁ/ନାହିଁ ଇତ୍ୟାଦି, କ'ଣ, କାହିଁକି, କିପରି ଇତ୍ୟାଦି ।
୩ । ଅନୁଜ୍ଞାସୂଚକ - ଆଦେଶାତ୍ମକ/ଅନୁରୋଧାତ୍ମକ
୪ । ବିସ୍ମୟାଦିସୂଚକ

**ବିବରଣାତ୍ମକ ବା ବିବୃତିସୂଚକ-** ଯେଉଁ ବାକ୍ୟ କୌଣସି ଗୋଟିଏ ବିବରଣୀ ବା ବିବୃତି ପ୍ରକାଶ କରେ, ତାହାକୁ ବିବରଣାତ୍ମକ ବାକ୍ୟ କହନ୍ତି ।

ପ୍ରତ୍ୟକ୍ଷ ଉକ୍ତି - ସ୍ୱରୂପ କହିଲା, "ଆମେ ପଡ଼ିଆରେ ବାଗୁଡ଼ି ଖେଳୁଥିଲୁ ।"
ପରୋକ୍ଷ ଉକ୍ତି - ସ୍ୱରୂପ କହିଲା ଯେ ସେମାନେ ପଡ଼ିଆରେ ବାଗୁଡ଼ି ଖେଳୁଥିଲେ ।
ପ୍ରତ୍ୟକ୍ଷ ଉକ୍ତି - ସୁଦୀପ୍ତ କହିଲା, "ସବୁ କଥାରେ ଗୋଟିଏ ସୀମା ରହିଛି ।"
ପରୋକ୍ଷ ଉକ୍ତି - ସୁଦୀପ୍ତ କହିଲା ଯେ ସବୁକଥାରେ ଗୋଟିଏ ସୀମା ରହିଛି ।

**ଅଥବା**

ସବୁକଥାରେ ଗୋଟିଏ ସୀମା ରହିଛି ବୋଲି ସୁଦୀପ୍ତ କହିଲା ।
ପ୍ରତ୍ୟକ୍ଷ ଉକ୍ତି - ଶ୍ୟାମ କହିଲା, "ଆମେମାନେ ଆଉ କଟକ ଯିବୁ ନାହିଁ ।"
ପରୋକ୍ଷ ଉକ୍ତି - ଶ୍ୟାମ କହିଲା ଯେ ସେମାନେ ଆଉ କଟକ ଯିବେ ନାହିଁ ।

**ଅଥବା**

ସେମାନେ ଆଉ କଟକ ଯିବେ ନାହିଁ ବୋଲି ଶ୍ୟାମ କହିଲା ।

**ପ୍ରଶ୍ନସୂଚକ** - ଯେତେବେଳେ ବାକ୍ୟରୁ କୌଣସି ପ୍ରଶ୍ନର ସୂଚନା ମିଳେ, ତାହାକୁ ପ୍ରଶ୍ନସୂଚକ ବାକ୍ୟ କୁହନ୍ତି ।

ପ୍ରତ୍ୟକ୍ଷ ଉକ୍ତି - ବାପା ମତେ କହିଲେ, "ତୁମ କାର୍ଯ୍ୟ ତୁମେ କରିସାରିଛ କି ?"

ପରୋକ୍ଷ ଉକ୍ତି - ମୁଁ ମୋ କାର୍ଯ୍ୟ କରିସାରିଥିଲି କି ନାହିଁ ବୋଲି ବାପା ମତେ ପ୍ରଶ୍ନ କଲେ (ପଚାରିଲେ) ।

**ଅଥବା**

ମୁଁ ମୋ କାର୍ଯ୍ୟ କରିସାରିଥିଲି କି ନାହିଁ ବୋଲି ବାପା ଜାଣିବାକୁ ଚାହିଁଲେ ।

ପ୍ରତ୍ୟକ୍ଷ ଉକ୍ତି- ଶିକ୍ଷକ ମୋତେ କହିଲେ, "କାହିଁକି ତୁମେ ପାଠ କରିନାହଁ ?"

ପରୋକ୍ଷ ଉକ୍ତି- ମୁଁ କାହିଁକି ପାଠ କରିନାହିଁ ବୋଲି ଶିକ୍ଷକ ମୋତେ ପଚାରିଲେ ।

**ଅନୁଜ୍ଞାସୂଚକ-** ଯେଉଁ ବାକ୍ୟରୁ କୌଣସି ଆଦେଶ, ଉପଦେଶ, ପରାମର୍ଶ, ଅନୁରୋଧ ବା କାମନାର ସୂଚନା ମିଳେ, ତାହାକୁ ଅନୁଜ୍ଞାସୂଚକ ବାକ୍ୟ କୁହାଯାଇଥାଏ ।

ପ୍ରତ୍ୟକ୍ଷ ଉକ୍ତି- ଜମିଦାର ବାବୁ ଚାକରକୁ କହିଲେ, "ଏହିକ୍ଷଣି ପ୍ୟାଣ୍ଟଟିକୁ ସିଲେଇ କରି ଆଣ ।"

ପରୋକ୍ଷ ଉକ୍ତି- ତତ୍‌କ୍ଷଣାତ୍ ପ୍ୟାଣ୍ଟଟିକୁ ସିଲେଇ କରି ଆଣିବା ନିମିତ୍ତ ଜମିଦାର ବାବୁ ଚାକରକୁ ଆଦେଶ ଦେଲେ ।

**ପ୍ରତ୍ୟକ୍ଷ ଉକ୍ତି-** ଭିକାରିଟି ରାମବାବୁଙ୍କୁ କହିଲା, "ଦୟାକରି ମତେ କିଛି ଖାଇବାକୁ ଦିଅନ୍ତୁ ।"

ପରୋକ୍ଷ ଉକ୍ତି- ତାକୁ କିଛି ଖାଇବାକୁ ଦେବାପାଇଁ ଭିକାରିଟି ରାମବାବୁଙ୍କୁ ଅନୁରୋଧ କଲା ।

ପ୍ରତ୍ୟକ୍ଷ ଉକ୍ତି- ଶିକ୍ଷକ ଛାତ୍ରକୁ କହିଲେ, "ଧ୍ୟାନ ଦେଇ ପାଠ ପଢ଼ ।"

ପରୋକ୍ଷ ଉକ୍ତି- ଶିକ୍ଷକ ଛାତ୍ରକୁ ଧ୍ୟାନ ଦେଇ ପାଠ ପଢ଼ିବାକୁ ଉପଦେଶ ଦେଲେ ।

ପ୍ରତ୍ୟକ୍ଷ ଉକ୍ତି- ମଧୁ କହିଲା, "ରାଧୁ, ବିନା ପ୍ରମାଣରେ କାହା କଥା ବିଶ୍ୱାସ କର ନାହିଁ ।"

ପରୋକ୍ଷ ଉକ୍ତି- ବିନା ପ୍ରମାଣରେ କାହା କଥା ବିଶ୍ୱାସ ନ କରିବାପାଇଁ ମଧୁ ରାଧୁକୁ ପରାମର୍ଶ ଦେଲା ।

ପ୍ରତ୍ୟକ୍ଷ ଉକ୍ତି- ଗୁରୁ ଛାତ୍ରକୁ କହିଲେ, "ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।"

ପରୋକ୍ଷ ଉକ୍ତି- ଈଶ୍ୱର ମଙ୍ଗଳ କରନ୍ତୁ ବୋଲି ଗୁରୁ ଛାତ୍ରକୁ ଆଶୀର୍ବାଦ ଦେଲେ ।

ପ୍ରତ୍ୟକ୍ଷ ଉକ୍ତି- ସାଧୁ କହିଲେ, "ସମସ୍ତ ଜଗତବାସୀ ସୁଖରେ ରହନ୍ତୁ ।"

ପରୋକ୍ଷ ଉକ୍ତି - ସମସ୍ତ ଜଗତବାସୀ ସୁଖରେ ରହନ୍ତୁ ବୋଲି ସାଧୁ କାମନା କଲେ ।

**ବିସ୍ମୟସୂଚକ-** କୌଣସି ବାକ୍ୟରୁ ଏକ ବିସ୍ମୟ ବା ଆଶ୍ଚର୍ଯ୍ୟଭାବର ସୂଚନା ମିଳିଲେ, ତାହାକୁ ବିସ୍ମୟସୂଚକ ବାକ୍ୟ କୁହାଯାଇଥାଏ ।

ପ୍ରତ୍ୟକ୍ଷ ଉକ୍ତି- ବାଳକଟି କହିଲା, "ଆକାଶ କେଡ଼େ ସୁନ୍ଦର !"

ପରୋକ୍ଷ ଉକ୍ତି- ଆକାଶ କେଡ଼େ (ଅତି) ସୁନ୍ଦର ବୋଲି ବାଳକଟି କହିଲା ।

ପ୍ରତ୍ୟକ୍ଷ ଉକ୍ତି - ସୁଜାତା କହିଲା, "ଓଃ ! ଗଛରେ କେଡ଼େ କେଡ଼େ ଫଳ !"

ପରୋକ୍ଷ ଉକ୍ତି- ଗଛରେ କେଡ଼େ କେଡ଼େ ଫଳ କଥା କହି ସୁଜାତା ବିସ୍ମୟ ପ୍ରକାଶ କଲା ।

ପ୍ରତ୍ୟକ୍ଷ ଉକ୍ତି- ଚନ୍ଦନ କହିଲା, "ଆରେ ବାଃ ! ପିଲାଟି କେତେ ଚତୁର !"

ପରୋକ୍ଷ ଉକ୍ତି - ପିଲାଟି କେଡ଼େ ଚତୁର ବୋଲି କହି ଚନ୍ଦନ ଆନନ୍ଦ ପ୍ରକାଶ କଲା ।

## ଅନୁଶୀଳନୀ

୧ । ପ୍ରତ୍ୟକ୍ଷଉକ୍ତିକୁ ପରୋକ୍ଷଉକ୍ତିରେ ପରିଣତ କରିବାର ନିୟମଗୁଡ଼ିକ ଉଲ୍ଲେଖ କର ।

୨ । ନିମ୍ନଲିଖିତ ବାକ୍ୟମାନଙ୍କୁ ପରୋକ୍ଷ ଉକ୍ତିରେ ପ୍ରକାଶ କର ।

(କ) ରାମ କହିଲା, "ମୁଁ ଅସୁସ୍ଥ ଅଟେ ।"
(ଖ) ରାଜୁ କହିଲା, "ମୁଁ ଗୋଟିଏ ଚିଠି ଲେଖୁଅଛି ।"
(ଗ) ସୁମତି କହିଲା, "ତୁ କେତେବେଳେ ଭୁବନେଶ୍ୱର ଯିବୁ ସବିତା ?"
(ଘ) ରାଧୁ କହିଲା, "ଆହା ! ଗରିବ ଲୋକଟି କେଡ଼େ କଷ୍ଟ ପାଉଛି !"
(ଙ) ଶିକ୍ଷକ ଛାତ୍ରକୁ କହିଲେ, "ତୁମେ ଦୁଷ୍ଟାମି କଲେ ଦଣ୍ଡ ପାଇବ ।"
(ଚ) ଗୁରୁ ଶିଷ୍ୟକୁ କହିଲେ, "ତୁମର ଇଚ୍ଛା ପୂରଣ ହେଉ ।"
(ଛ) ଯଦୁ କହିଲା, "ଆଃ ! ପକ୍ଷୀଟି କେଡ଼େ ସୁନ୍ଦର !"

୩ । ନିମ୍ନଲିଖିତ ବାକ୍ୟମାନଙ୍କୁ ପ୍ରତ୍ୟକ୍ଷ ଉକ୍ତିରେ ପ୍ରକାଶ କର ।

(କ) ରାମ କହିଲା ଯେ ସେ ଇଂରାଜୀ ଜାଣି ନ ଥିଲା ।
(ଖ) ଗୋପାଳ କହିଲା ଯେ ସେ ଗୋଟିଏ ପ୍ରଶ୍ନର ଉତ୍ତର ଦେଇପାରିଲା ।
(ଗ) ପାଠ ପଢ଼ିବା ମୋର କର୍ତ୍ତବ୍ୟ ବୋଲି ଶିକ୍ଷକ ମୋତେ ଉପଦେଶ ଦେଲେ ।
(ଘ) ଦ୍ୱାର ବନ୍ଦ କରିବାକୁ ବାପା ମତେ ଆଦେଶ ଦେଲେ ।
(ଙ) ପୁରୋହିତ ମୋର ମଙ୍ଗଳ କାମନା କଲେ ।
(ଚ) ମୁଁ କିପରି ଅଛି ବୋଲି ବନ୍ଧୁ ମୋତେ ପଚାରିଲେ ।
(ଛ) ସୂର୍ଯ୍ୟାସ୍ତ କେଡ଼େ ସୁନ୍ଦର ବୋଲି ଶ୍ୟାମ ବିସ୍ମୟ ପ୍ରକାଶ କଲା ।
(ଜ) ଏତେ ଛୋଟ ପିଲାଟି କିପରି ଏପରି କାର୍ଯ୍ୟ କରିପାରିଲା ବୋଲି ଲୋକେ ବିସ୍ମୟ ପ୍ରକାଶ କଲେ ।



# ବାକ୍ୟର ରୂପାନ୍ତର

ଅର୍ଥକୁ ସମାନ ବା ଅପରିବର୍ତ୍ତିତ ରଖି ଗୋଟିଏ ବାକ୍ୟକୁ ଅନ୍ୟ ଏକ ରୂପରେ ପ୍ରକାଶ କରିବାକୁ ବାକ୍ୟ-ରୂପାନ୍ତର କୁହାଯାଏ । ପୂର୍ବାଲୋଚିତ ଭାବସୂଚକ ଓ ଗଠନଗତ ବାକ୍ୟଗୁଡ଼ିକର ରୂପାନ୍ତର ନିମ୍ନରେ ପ୍ରଦତ୍ତ ହେଲା ।

## ଭାବସୂଚକ ବାକ୍ୟର ରୂପାନ୍ତର

୧ । ବିବୃତି – ଏ ଛବିଟି ଅତି ସୁନ୍ଦର ହୋଇଛି ।

ବିସ୍ମୟ – ଏ ଛବିଟି କି ସୁନ୍ଦର !

ପ୍ରଶ୍ନ – ଏ ଛବି ପରି ସୁନ୍ଦର ଛବି କାହିଁ ?

ନାସ୍ତି – ଏ ଛବି ପରି ସୁନ୍ଦର ଛବି ନାହିଁ ।

୨ । ବିବୃତି – ଆମେରିକା ନାମ ସମସ୍ତେ ଜାଣନ୍ତି ।

ପ୍ରଶ୍ନ – ଆମେରିକା ନାମ ନ ଜାଣି କିଏ ଅଛି ?

ବା– ଆମେରିକା ନାମ କିଏ ନ ଜାଣେ ?

ବିସ୍ମୟ – ଆମେରିକା ନାମ ନ ଜାଣି ଏମିତି ଲୋକ ଅଛି !

ନାସ୍ତି – ଆମେରିକା ନାମ କାହାକୁ ଅଜଣା ନୁହେଁ ।

ବା– ଆମେରିକା ନାମ ନଜାଣି କେହି ନାହିଁ ।

୩ । ବିବୃତି – ଏ ବର୍ଷର ଖରା ଅସହ୍ୟ ।

ପ୍ରଶ୍ନ – ଏ ବର୍ଷର ଖରା କିଏ ସହିବ ?

ବିସ୍ମୟ – ଓଃ ଏ ବର୍ଷ କି ଖରା !

ନାସ୍ତି – ଏ ବର୍ଷର ଖରା ସହି ହେଉ ନାହିଁ ।

୪ । ବିବୃତି – ମହାତ୍ମାଗାନ୍ଧିଙ୍କୁ ଦେଶବାସୀ ସର୍ବଦା ମନେରଖିବେ ।

ପ୍ରଶ୍ନ – ମହାତ୍ମାଗାନ୍ଧିଙ୍କୁ ଦେଶବାସୀ କ'ଣ ମନରୁ ଭୁଲିପାରିବେ ?

ନାସ୍ତି – ନା, ମହାତ୍ମାଗାନ୍ଧିଙ୍କୁ ଦେଶବାସୀ କେବେ ମନରୁ ଭୁଲିପାରିବେ ନାହିଁ ।

ବିସ୍ମୟ – ମହାତ୍ମାଗାନ୍ଧିଙ୍କୁ ପୁଣି ଦେଶବାସୀ ମନରୁ ଭୁଲିଯିବେ !

୫ । ବିବୃତି – ବିଦ୍ୟା ଦାନ କଲେ ଜ୍ଞାନ ବଢ଼େ ।

ପ୍ରଶ୍ନ – ବିଦ୍ୟା ଦାନ ବିନା ଜ୍ଞାନବୃଦ୍ଧି କେମିତି ହେବ ?

ନାସ୍ତି – ବିଦ୍ୟା ଦାନ ବିନା ଜ୍ଞାନବୃଦ୍ଧି ଅସମ୍ଭବ ।
ବିସ୍ମୟ – ବିଦ୍ୟା ଦାନ ବିନା ଜ୍ଞାନବୃଦ୍ଧି !

୬ । ବିବୃତି – ଭାରତକୁ ଜାଣିବାକୁ ହେଲେ ସଂସ୍କୃତ-ଅଧ୍ୟୟନ ଦରକାର ।
ପ୍ରଶ୍ନ – ସଂସ୍କୃତ-ଅଧ୍ୟୟନ ବିନା ଭାରତକୁ ଜାଣିବ କିପରି ?
ନାସ୍ତି – ସଂସ୍କୃତ-ଅଧ୍ୟୟନ ବ୍ୟତୀତ ଭାରତକୁ ଜାଣିହେବ ନାହିଁ ।

୭ । ବିବୃତି – ଭାରତର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ ।
ବିସ୍ମୟ – ଭାରତର ଭବିଷ୍ୟତ କି ଉଜ୍ଜ୍ୱଳ !
ନାସ୍ତି – ଭାରତର ଭବିଷ୍ୟତ କମ୍ ଉଜ୍ଜ୍ୱଳ ନୁହେଁ ।

୮ । ବିବୃତି – ମୁଁ ସବୁବେଳେ ତୁମର ମଙ୍ଗଳ ଚାହେଁ ।
ପ୍ରଶ୍ନ – ମୁଁ କ'ଣ ସବୁବେଳେ ତୁମର ମଙ୍ଗଳ ଚାହେଁ ନାହିଁ ?
ବା ମୋ ଛଡ଼ା ସବୁବେଳେ କିଏ ତୁମର ମଙ୍ଗଳ ଚାହେଁ ?
ନାସ୍ତି – ମୁଁ ତୁମର କଦାପି ଅମଙ୍ଗଳ ଚାହେଁ ନାହିଁ ।

୯ । ବିବୃତି – କେବଳ ବ୍ୟାସଦେବ ହିଁ ଅଷ୍ଟାଦଶ ପୁରାଣ ଲେଖିପାରନ୍ତି ।
ପ୍ରଶ୍ନ – ବ୍ୟାସଦେବଙ୍କ ଛଡ଼ା ଆଉ କିଏ ବା ଅଷ୍ଟାଦଶ ପୁରାଣ ଲେଖିପାରିବ ?
ବିସ୍ମୟ – ବ୍ୟାସଦେବଙ୍କ ବିନା କେହି ଅଷ୍ଟାଦଶ ପୁରାଣ ଲେଖିପାରିବ !
ନାସ୍ତି – ବ୍ୟାସଦେବଙ୍କ ଛଡ଼ା ଆଉ କେହି ଅଷ୍ଟାଦଶ ପୁରାଣ ଲେଖିପାରିବେ ନାହିଁ ।

୧୦ । ବିବୃତି – ଆମେରିକା ପୃଥିବୀର ସବୁଠାରୁ ବିଭବଶାଳୀ ରାଷ୍ଟ୍ର ।
ପ୍ରଶ୍ନ – ଆମେରିକା ପରି ବିଭବଶାଳୀ ରାଷ୍ଟ୍ର ପୃଥିବୀରେ କାହିଁ ?
ନାସ୍ତି – ଆମେରିକା ପରି ବିଭବଶାଳୀ ରାଷ୍ଟ୍ର ପୃଥିବୀରେ ନାହିଁ ।
ବିସ୍ମୟ – ଆମେରିକା କି ବିଭବଶାଳୀ ରାଷ୍ଟ୍ର !

୧୧ । ବିବୃତି – ଅହିଂସା ପରମ ଧର୍ମ ।
ନାସ୍ତି – ଅହିଂସା ପରି ଧର୍ମ ନାହିଁ ।
ବା ଅହିଂସାରୁ ବଳି ଧର୍ମ ନାହିଁ ।
ପ୍ରଶ୍ନ – ଅହିଂସାରୁ ବଳି ଧର୍ମ କାହିଁ ?

୧୨ । ବିବୃତି – ଅଚିହ୍ନା ଲୋକକୁ ବିଶ୍ୱାସ କରିବା ଭୁଲ ।
ପ୍ରଶ୍ନ – ଅଚିହ୍ନା ଲୋକକୁ କ'ଣ ବିଶ୍ୱାସ କରାଯାଏ ?
ନାସ୍ତି – ଅଚିହ୍ନା ଲୋକକୁ ବିଶ୍ୱାସ କରିବା ଠିକ୍ ନୁହେଁ ।
ବିସ୍ମୟ – ଅଚିହ୍ନା ଲୋକକୁ କି ବିଶ୍ୱାସ !

## ଗଠନସୂଚକ ବାକ୍ୟର ରୂପାନ୍ତର

### ସରଳବାକ୍ୟର ଯୌଗିକବାକ୍ୟରେ ରୂପାନ୍ତର-

୧ । ସରଳ – ସୁରେଶ ସତ କହିବାରୁ ପ୍ରଶଂସା ପାଇଲା ।
ଯୌଗିକ – ସୁରେଶ ସତ କହିଲା ଏବଂ ପ୍ରଶଂସା ପାଇଲା ।

୨ । ସରଳ – ସଂଧ୍ୟାହେଲେ ପଶ୍ଚିମାକାଶ ସୁନ୍ଦର ଦେଖାଯାଏ ।
ଯୌଗିକ – ସଂଧ୍ୟାହୁଏ ଏବଂ ପଶ୍ଚିମାକାଶ ସୁନ୍ଦର ଦେଖାଯାଏ ।

୩ । ସରଳ – ବାଟୋଇଟି ଚାଲିଚାଲି ହାଲିଆ ହୋଇ ରାସ୍ତାରେ ପଡ଼ିଗଲା ।
ଯୌଗିକ – ବାଟୋଇଟି ଚାଲିଚାଲି ହାଲିଆ ହୋଇଗଲା ଏବଂ ରାସ୍ତାରେ ପଡ଼ିଗଲା ।

୪ । ସରଳ – ଲୋକେଶ ପୀଡ଼ିତ ହେତୁ ସ୍କୁଲକୁ ଗଲା ନାହିଁ ।
ଯୌଗିକ – ଲୋକେଶ ପୀଡ଼ିତ; ତେଣୁ ସ୍କୁଲକୁ ଗଲା ନାହିଁ ।

୫ । ସରଳ – ମୋ ଅନୁରୋଧକୁ ଅଧ୍ୟକ୍ଷ ପ୍ରତ୍ୟାଖ୍ୟାନ କଲେ ।
ଯୌଗିକ – ମୁଁ ଅନୁରୋଧ କଲି; ମାତ୍ର ଅଧ୍ୟକ୍ଷ ପ୍ରତ୍ୟାଖ୍ୟାନ କଲେ ।

୬ । ସରଳ – ବହୁ ଲୋକ ହିନ୍ଦୀ ଜାଣି ମଧ୍ୟ କହିପାରନ୍ତି ନାହିଁ ।
ଯୌଗିକ – ବହୁ ଲୋକ ହିନ୍ଦୀ ଜାଣନ୍ତି; ମାତ୍ର କହିପାରନ୍ତି ନାହିଁ ।

୭ । ସରଳ – ବର୍ଷାଋତୁ ଆସିବାରୁ କଦମ୍ୱ ଫୁଟିଲା ।
ଯୌଗିକ – ବର୍ଷାଋତୁ ଆସିଲା ଓ କଦମ୍ୱ ଫୁଟିଲା ।

୮ । ସରଳ – ସମରେଶ ଯାଉଯାଉ ଗାଡ଼ି ଛାଡ଼ିଦେଲା ।
ଯୌଗିକ – ସମରେଶ ଯାଉଥିଲା ଏବଂ ଗାଡ଼ି ଛାଡ଼ିଦେଲା ।

୯ । ସରଳ – ନରପତି ଅତି ସାଧାରଣ ପୋଷାକ ପରିଧାନପୂର୍ବକ ଅଶ୍ୱ ଆରୋହଣ କରି ଋଷିଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କଲେ ।
ଯୌଗିକ – ନରପତି ଅତି ସାଧାରଣ ପୋଷାକ ପରିଧାନ କଲେ ଓ ଅଶ୍ୱ ଆରୋହଣ କଲେ ଏବଂ ଋଷିଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କଲେ ।

୧୦ । ସରଳ – ମା'ଙ୍କର ଡାକ ଶୁଣି ଶ୍ରାବଣୀ ଲୁଗାକାନିରେ ହାତ ପୋଛିପୋଛି ଘର ଭିତରକୁ ଆସିଲା ।
ଯୌଗିକ – ଶ୍ରାବଣୀ ମା'ଙ୍କର ଡାକ ଶୁଣିଲା ଓ ଲୁଗାକାନିରେ ହାତ ପୋଛିଲା ଏବଂ ଘର ଭିତରକୁ ଆସିଲା ।

## ସରଳବାକ୍ୟର ଜଟିଳବାକ୍ୟରେ ରୂପାନ୍ତର

୧ । ସରଳ - ଚରିତ୍ରବାନ୍ ଶିକ୍ଷକ ଛାତ୍ରମାନଙ୍କୁ ପ୍ରଭାବିତ କରିପାରନ୍ତି ।
ଜଟିଳ - ଯେ ଚରିତ୍ରବାନ୍ ଶିକ୍ଷକ ସେ ଛାତ୍ରମାନଙ୍କୁ ପ୍ରଭାବିତ କରିପାରନ୍ତି ।
ଯେଉଁ ଶିକ୍ଷକ ଚରିତ୍ରବାନ୍ ସେ ଛାତମାନଙ୍କୁ ପ୍ରଭାବିତ କରିପାରନ୍ତି ।

୨ । ସରଳ - ମଦର ଟେରେସା ଜନସେବା କରି ପୃଥିବୀରେ ସୁପରିଚିତ ହୋଇଥିଲେ ।
ଜଟିଳ - ଯେ ଜନସେବା କରି ପୃଥିବୀରେ ସୁପରିଚିତ ହୋଇଥିଲେ, ସେ ମଦର ଟେରେସା ।

୩ । ସରଳ - ସତ୍ୟପାଳକ, ମର୍ଯ୍ୟାଦାବନ୍ତ ରାମଚନ୍ଦ୍ର ଆଦର୍ଶ ପ୍ରଜାପାଳକ ଥିଲେ ।
ଜଟିଳ - ଯେଉଁ ରାମଚନ୍ଦ୍ର ସତ୍ୟପାଳକ ଓ ମର୍ଯ୍ୟାଦାବନ୍ତ ଥିଲେ, ସେ ମଧ୍ୟ ଆଦର୍ଶ ପ୍ରଜାପାଳକ ଥିଲେ ।

୪ । ସରଳ - ଈଶ୍ୱର ଦୀନଦରିଦ୍ରଙ୍କର ହୃଦୟ ମନ୍ଦିରରେ ବାସ କରନ୍ତି ।
ଜଟିଳ - ଯେଉଁମାନେ ଦୀନଦରିଦ୍ର, ସେମାନଙ୍କର ହୃଦୟ ମନ୍ଦିରରେ ଈଶ୍ୱର ବାସ କରନ୍ତି ।

୫ । ସରଳ - ଜାତି ଜାତିକୁ ଏକତାସୂତ୍ରରେ ବାନ୍ଧି ପାରୁଥିବା ଆନ୍ତର୍ଜାତିକ ଅନୁଷ୍ଠାନଟି ହେଉଛି ମିଳିତ ଜାତିସଂଘ ।
ଜଟିଳ - ଯେଉଁ ଆନ୍ତର୍ଜାତିକ ଅନୁଷ୍ଠାନଟି ଜାତିଜାତିକୁ ଏକତା ସୂତ୍ରରେ ବାନ୍ଧିପାରୁଛି, ସେହି ହେଉଛି ମିଳିତ ଜାତିସଂଘ ।

୬ । ସରଳ - ବିଦ୍ୟାମନ୍ଦିର ପରି ଦେବମନ୍ଦିରରେ ସମସ୍ତଙ୍କର ପ୍ରବେଶାଧିକାର ଅଛି ।
ଜଟିଳ - ଯେପରି ବିଦ୍ୟାମନ୍ଦିରରେ ସମସ୍ତଙ୍କର ପ୍ରବେଶାଧିକାର ଅଛି, ସେହିପରି ଶିକ୍ଷା ମନ୍ଦିରରେ ମଧ୍ୟ (ସମସ୍ତଙ୍କର ପ୍ରବେଶାଧିକାର) ଅଛି ।

୭ । ସରଳ - ଅମୂଲ୍ୟ ଧନ ସତ୍ୟ ସହିତ ମଣିକାଞ୍ଚନ ସମାନ ନୁହେଁ ।
ଜଟିଳ - ସତ୍ୟ ଏମିତି ଏକ ଅମୂଲ୍ୟ ଧନ, ଯାହା ସହିତ ମଣିକାଞ୍ଚନ ସମାନ ନୁହେଁ ।

୮ । ସରଳ - ଦିନରେ ଶୋଉଥିବା ଲୋକମାନେ ପ୍ରକୃତରେ ଅଳସୁଆ ।
ଜଟିଳ - ସେହି ଲୋକମାନେ ପ୍ରକୃତରେ ଅଳସୁଆ, ଯେଉଁମାନେ ଦିନରେ ଶୁଅନ୍ତି ।

୯ । ସରଳ - ମହାତ୍ମାଗାନ୍ଧି ଅହିଂସା ଅସ୍ତ୍ରରେ ଦେଶକୁ ସ୍ୱାଧୀନ କରିଥିଲେ ।
ଜଟିଳ - ଅହିଂସା ଏପରି ଏକ ଅସ୍ତ୍ର, ଯଦ୍ୱାରା ମହାତ୍ମାଗାନ୍ଧି ଦେଶକୁ ସ୍ୱାଧୀନ କରିଥିଲେ ।

୧୦ । ସରଳ - ସନ୍ଧ୍ୟାବେଳେ ଦେଉଳରେ ଘଣ୍ଟ ବାଜେ ।
ଜଟିଳ - ଯେତେବେଳେ ସନ୍ଧ୍ୟା ଆସେ (ହୁଏ), ସେତେବେଳେ ଦେଉଳରେ ଘଣ୍ଟ ବାଜେ ।

## ଯୌଗିକବାକ୍ୟର ସରଳବାକ୍ୟରେ ରୂପାନ୍ତର

୧ । ଯୌଗିକ – ସନ୍ଧ୍ୟା ହେଲା ଏବଂ ପକ୍ଷିମାନେ ନିଜନିଜ ବସାକୁ ଫେରିଲେ ।
ସରଳ – ସନ୍ଧ୍ୟାହେବାରୁ ପକ୍ଷିମାନେ ନିଜନିଜ ବସାକୁ ଫେରିଲେ ।

୨ । ଯୌଗିକ – ପିତା ପୁତ୍ରମାନଙ୍କର କଥା ଶୁଣିଲେ ଏବଂ ଉପଦେଶ ଦେଲେ ।
ସରଳ – ପିତା ପୁତ୍ରମାନଙ୍କର କଥା ଶୁଣି ଉପଦେଶ ଦେଲେ ।

୩ । ଯୌଗିକ – ସେ ଭୁଲ କଲା ଏବଂ ଅପମାନ ପାଇଲା ।
ସରଳ – ସେ ଭୁଲ କରିବାରୁ ଅପମାନ ପାଇଲା ।

୪ । ଯୌଗିକ – ସୌମ୍ୟେନ୍ଦ୍ର ସତ୍ୟ କହେ; ମାତ୍ର ଅପ୍ରିୟ ସତ୍ୟ କହେ ନାହିଁ ।
ସରଳ – ସୌମେନ୍ଦ୍ର ସତ୍ୟ କହିଲେ ହେଁ ଅପ୍ରିୟ ସତ୍ୟ କହେ ନାହିଁ ।

୫ । ଯୌଗିକ – ସୁଦାମା ଦରିଦ୍ର; କିନ୍ତୁ ବନ୍ଧୁବତ୍ସଳ ଥିଲେ ।
ସରଳ – ସୁଦାମା ଦରିଦ୍ର ହେଲେ ହେଁ ବନ୍ଧୁବତ୍ସଳ ଥିଲେ ।

## ଯୌଗିକବାକ୍ୟର ଜଟିଳବାକ୍ୟରେ ରୂପାନ୍ତର

୧ । ଯୌଗିକ – ମୁଁ ପୁରୀ ଗଲି; କିନ୍ତୁ ସମ୍ବିତ୍‌କୁ ପାଇଲି ନାହିଁ ।
ଜଟିଳ – ଯଦିଓ ମୁଁ ପୁରୀ ଗଲି ତଥାପି ସମ୍ବିତ୍‌କୁ ପାଇଲି ନାହିଁ ।

୨ । ଯୌଗିକ – ସେ ସୁନ୍ଦର ଭାଷଣ ଦେଲେ ଏବଂ ଲୋକେ ତାଙ୍କୁ ଧନ୍ୟଧନ୍ୟ କହିଲେ ।
ଜଟିଳ – ସେ ଏପରି ସୁନ୍ଦର ଭାଷଣ ଦେଲେ ଯେ ଲୋକେ ତାଙ୍କୁ ଧନ୍ୟଧନ୍ୟ କହିଲେ ।

୩ । ଯୌଗିକ – ପରର ଉପକାର କର ଏବଂ ତଦ୍ୱାରା ଧର୍ମାର୍ଜନ କର ।
ଜଟିଳ – ଯେବେ ପରର ଉପକାର କରିବ, ତେବେ ଧର୍ମାର୍ଜନ କରିବ ।

୪ । ଯୌଗିକ – ତୁମେ ସେ ଦାୟିତ୍ୱ ତୁଲାଇ ପାରୁନାହଁ, ଏଣୁ ଅନ୍ୟକୁ ଦେଇଦିଅ ।
ଜଟିଳ – ଯଦି ତୁମେ ସେ ଦାୟିତ୍ୱ ତୁଲାଇ ପାରୁନାହଁ, ତେବେ ଅନ୍ୟକୁ ଦେଇଦିଅ ।

୫ । ଯୌଗିକ – କୃଷ୍ଣଙ୍କ ପରି ସୁଦକ୍ଷ ସାରଥି ଥିଲେ, ସୁତରାଂ ଅର୍ଜ୍ଜୁନ ନ ଜିଣନ୍ତେ କାହିଁକି ?
ଜଟିଳ – ଯେତେବେଳେ କୃଷ୍ଣଙ୍କ ପରି ସୁଦକ୍ଷ ସାରଥି ଥିଲେ, ଅର୍ଜୁନ ନ ଜିଣନ୍ତେ କାହିଁକି ?

୬ । ଯୌଗକ – ବିଜ୍ଞାନ ମନୁଷ୍ୟକୁ ଶକ୍ତିଶାଳୀ କରିଛି, ତେଣୁ ସେ ଅଦ୍ଭୁତ କାର୍ଯ୍ୟ କରିପାରୁଛି ।
ଜଟିଳ – ଯେହେତୁ ବିଜ୍ଞାନ ମନୁଷ୍ୟକୁ ଶକ୍ତିଶାଳୀ କରିଛି, ସେହେତୁ ସେ ଅଦ୍ଭୁତ କାର୍ଯ୍ୟ କରିପାରୁଛି ।

୭ । ଯୌଗିକ - ମୋର ମୁଦିଟି ହଜିଥିଲା ଏବଂ ପରେ ତାହା ମୋତେ ମିଳିଲା ।
ଜଟିଳ - ଯେଉଁ ମୁଦିଟି ମୋର ହଜିଥିଲା, ପରେ ତାହା ମୋତେ ମିଳିଲା ।

### ଜଟିଳବାକ୍ୟର ସରଳବାକ୍ୟରେ ରୂପାନ୍ତର

୧ । ଜଟିଳ - ଯେ ସଦ୍‌ଗ୍ରନ୍ଥ ଅଧ୍ୟୟନ କରେ, ତାହାର ଜୀବନରେ ବିପୁଳ ପରିବର୍ତ୍ତନ ଆସେ ।
ସରଳ - ସଦ୍‌ଗ୍ରନ୍ଥ ଅଧ୍ୟୟନକାରୀର ଜୀବନରେ ବିପୁଳ ପରିବର୍ତ୍ତନ ଆସେ ।

୨ । ଜଟିଳ - ନଗରର କେଉଁ ରାସ୍ତାରେ ସେ ଯାଉଛନ୍ତି, ତାହାର ନାମ ନିଜର ଅଦ୍ଭୁତ ଘ୍ରାଣଶକ୍ତି ବଳରେ ସେ କହିଦେଇ ପାରୁଥିଲେ ।
ସରଳ - ନଗରରେ ଯାଉଥିବା ଯେ କୌଣସି ରାସ୍ତାର ନାମ ସେ ନିଜର ଅଦ୍ଭୁତ ଘ୍ରାଣଶକ୍ତି ବଳରେ କହିଦେଇ ପାରୁଥିଲେ ।

୩ । ଜଟିଳ - ମଣିଷ ଭିତରେ ଯେଉଁ ଲୋକ ଦେବତାଙ୍କୁ ଦର୍ଶନ କରେ, ସେ ହିଁ ପ୍ରକୃତରେ ସାଧୁ ।
ସରଳ - ମଣିଷ ଭିତରେ ଦେବତାଙ୍କୁ ଦର୍ଶନ କରୁଥିବା ଲୋକ ହିଁ ପ୍ରକୃତରେ ସାଧୁ ।

୪ । ଜଟିଳ - ଯେଉଁ ଲୋକର ମନରେ ବିବେକସୂର୍ଯ୍ୟ ଉଦୟ ହୁଏ, ତାହାର ସନ୍ଦେହ-ଅନ୍ଧକାର ଅପସାରିତ ହୁଏ ।
ସରଳ - ମନରେ ବିବେକସୂର୍ଯ୍ୟ ଉଦୟ ହେଲେ, ଲୋକର ସନ୍ଦେହ-ଅନ୍ଧକାର ଅପସାରିତ ହୁଏ ।

୫ । ଜଟିଳ - ଯେଉଁ ମାଟିରେ ଆମେ ଜନ୍ମ ନେଉ, ଯେଉଁ ମାଟି ଆମକୁ ପାଣିପବନ-ଖାଦ୍ୟ ଦେଇ ବଢ଼ାଏ, ସେ ଆମର ଜନ୍ମଭୂମି ।
ସରଳ - ପାଣିପବନ ଖାଦ୍ୟ ଦେଇ ବଢ଼ାଉଥିବା ଜନ୍ମମାଟି ଆମର ଜନ୍ମଭୂମି ।

୬ । ଜଟିଳ - ଯାହାଙ୍କୁ ଭଲ ପାଇବ, ତାହାଙ୍କ ଠାରୁ ପ୍ରତିଦାନ ନେବାକୁ ଚାହିଁବ ନାହିଁ ।
ସରଳ - ଭଲପାଉଥିବା ଲୋକଠାରୁ ପ୍ରତିଦାନ ନେବାକୁ ଚାହିଁବ ନାହିଁ ।

୭ । ଜଟିଳ - ଆମ ସମସ୍ତଙ୍କ ଭିତରେ ଯେଉଁ ଆତ୍ମଶକ୍ତି ରହିଛି, ତାହାକୁ ଜାଗ୍ରତ କରିବା ହିଁ ଯଥାର୍ଥ ତପସ୍ୟା ।
ସରଳ - ଆମ ସମସ୍ତଙ୍କ ଭିତରେ ଥିବା ଆତ୍ମଶକ୍ତିକୁ ଜାଗ୍ରତ କରିବା ହିଁ ଯଥାର୍ଥ ତପସ୍ୟା ।

୮ । ଜଟିଳ - ମୁଁ ଯେଉଁ ବହିଟି ଆଣିବାକୁ କହିଥିଲି, ତାହା ଆଣିଛ ?
ସରଳ - ମୋ କହିଥିବା ବହିଟି ଆଣିଛ ?

୯ । ଜଟିଳ - ଢୋର୍ ଯାହାର ମୁଲକ ତାହାର ।
ସରଳ - ଢୋର୍ ଥିବା ଲୋକ ମୁଲକ ପାଏ । (ମୁଲକର ଅଧିକାରୀ ହୁଏ ।)

୧୦ । ଜଟିଳ - ମୁଁ ଯେତେବେଳେ ସମ୍ବଲପୁର ଯାଇଥିଲି, ସେତେବେଳେ ବନ୍ଧୁଙ୍କୁ ଦେଖିଥିଲି ।
ସରଳ - ମୁଁ ସମ୍ବଲପୁର ଯାଇଥିଲାବେଳେ ବନ୍ଧୁଙ୍କୁ ଦେଖିଥିଲି ।

୧୧ । ଜଟିଳ - ଯଦି ଆନ୍ତରିକତାର ସହିତ ତୁମେ ଭଗବାନଙ୍କୁ ଡାକିବ, ତେବେ ସେ ନିଶ୍ଚୟ ତୁମର ଡାକ ଶୁଣିବେ ।
ସରଳ - ତୁମେ ଆନ୍ତରିକତାର ସହିତ ଭଗବାନଙ୍କୁ ଡାକିଲେ, ସେ ନିଶ୍ଚୟ ତୁମର ଡାକ ଶୁଣିବେ ।

୧୨ । ଜଟିଳ - ମୁଁ ବନ୍ଧୁଙ୍କୁ ଯେଉଁ କଥା କହିଲି, ତାହାକୁ ସେ ବିଶ୍ୱାସ କଲେ ନାହିଁ ।
ସରଳ - ବନ୍ଧୁ ମୋ କହିବା କଥାକୁ ବିଶ୍ୱାସ କଲେ ନାହିଁ ।

## ଜଟିଳବାକ୍ୟର ଯୌଗିକବାକ୍ୟରେ ରୂପାନ୍ତର

୧ । ଜଟିଳ - ଯଦି ତୁମେ ମୋ ପ୍ରଶ୍ନର ଉତ୍ତର ଦେବାକୁ ଅନିଚ୍ଛୁକ, ତେବେ ମୁଁ ଆଉ ତୁମକୁ ପଚାରିବି ନାହିଁ ।
ଯୌଗିକ - ତୁମେ ମୋ ପ୍ରଶ୍ନର ଉତ୍ତର ଦେବାକୁ ଅନିଚ୍ଛୁକ; ତେଣୁ ମୁଁ ଆଉ ତୁମକୁ ପଚାରିବି ନାହିଁ ।

୨ । ଜଟିଳ - ଯେତେବେଳେ ବସନ୍ତ ଆସେ, ବୃକ୍ଷମାନେ ନବପଲ୍ଲବରେ ମଣ୍ଡିତ ହୁଅନ୍ତି ।
ଯୌଗିକ - ବସନ୍ତ ଆସେ ଏବଂ ବୃକ୍ଷମାନେ ନବପଲ୍ଲବରେ ମଣ୍ଡିତ ହୁଅନ୍ତି ।

୩ । ଜଟିଳ - ଯେଉଁମାନେ ଜୀବନକୁ ଅନିଶ୍ଚିତ ଜାଣି ବାଲ୍ୟକାଳରୁ ଧର୍ମ, ଧନ ଓ ଜ୍ଞାନ ଅର୍ଜନରେ ମନୋନିବେଶ କରନ୍ତି, ସେମାନେ ପ୍ରକୃତରେ ଦୂରଦର୍ଶୀ ।
ଯୌଗିକ - ଜୀବନ ଅନିଶ୍ଚିତ, ଏହା ଜାଣିବା ଲୋକେ ବାଲ୍ୟକାଳରୁ ଧର୍ମ, ଧନ ଓ ଜ୍ଞାନ ଅର୍ଜନରେ ମନୋନିବେଶ କରନ୍ତି ଏବଂ ପ୍ରକୃତରେ ସେମାନେ ଦୂରଦର୍ଶୀ (ଅଟନ୍ତି) ।

୪ । ଜଟିଳ - ସମାଜରେ ଯେଉଁମାନେ ଉଦ୍‌ଯୋଗୀ ପୁରୁଷ, ସେମାନେ ହିଁ ଲକ୍ଷ୍ମୀଙ୍କର ପ୍ରିୟପାତ୍ର ଅଟନ୍ତି ।
ଯୌଗିକ - ସମାଜରେ ଉଦ୍‌ଯୋଗୀ ପୁରୁଷ ଅଛନ୍ତି ଏବଂ ସେମାନେ ହିଁ ଲକ୍ଷ୍ମୀଙ୍କର ପ୍ରିୟପାତ୍ର ଅଟନ୍ତି ।

୫ । ଜଟିଳ - ଯଦିଓ ମୁଁ ଆପଣଙ୍କୁ ବାରମ୍ୱାର ଅପମାନିତ କରିଛି, ତଥାପି ଆପଣ ମୋ ପ୍ରତି ସଦୟ ହୋଇଛନ୍ତି ।

ଯୌଗିକ - ମୁଁ ଆପଣଙ୍କୁ ବାରମ୍ୱାର ଅପମାନିତ କରିଛି; କିନ୍ତୁ ଆପଣ ମୋ ପ୍ରତି ସଦୟ ହୋଇଛନ୍ତି ।

୬ । ଜଟିଳ - ବହୁବର୍ଷ ପୂର୍ବେ ଏ ଦେଶର ମୁନିରଷିମାନେ ଜାଣିଥିଲେ ଯେ ଭାରତର ଅବସ୍ଥା ଭବିଷ୍ୟତକୁ ଏହା ହେବ ।

ଯୌଗିକ - ବହୁବର୍ଷ ପୂର୍ବେ ଏ ଦେଶରେ ମୁନିରଷିମାନେ ଥିଲେ; ସେମାନେ ଭବିଷ୍ୟତରେ ଭାରତ ଅବସ୍ଥା ଏହା ହେବ ବୋଲି ଜାଣିଥିଲେ ।

୭ । ଜଟିଳ - ଯେଉଁ ଲୋକମାନେ ଦେଶର ନେତୃତ୍ୱ ନେଉଛନ୍ତି, ସେମାନେ ସର୍ବଦା ନିରପେକ୍ଷ, ନୀତିନିଷ୍ଠ, ଚରିତ୍ରବାନ୍ ଓ ସାଧୁ ହେବା ଉଚିତ ।

ଯୌଗିକ - ନେତୃତ୍ୱ ନେଉଥିବା ଲୋକ ଦେଶରେ ଅଛନ୍ତି ଏବଂ ସେମାନେ ସର୍ବଦା ନିରପେକ୍ଷ, ନୀତିନିଷ୍ଠ, ଚରିତ୍ରବାନ୍ ଓ ସାଧୁ ହେବା ଉଚିତ ।

## ଅନୁଶୀଳନୀ

୧ । ସରଳ ବାକ୍ୟରେ ରୂପାନ୍ତର କର ।

(କ) ପିଲାଟି ଯେମିତି ପାଠ ପଢ଼ିବାକୁ ବସେ, ତାକୁ ଭୋକ ଲାଗେ ।

(ଖ) ଆଜି ଦେଶ କିପରି ଉନ୍ନତି ଆଡ଼କୁ ଗତି କରୁଛି, ଗାଁ ଗହଳକୁ ଯାଅ ଦେଖିବ ।

(ଗ) ଅତ୍ୟାଚାରୀକୁ ଦଣ୍ଡ ଦିଅ ଏବଂ ନିର୍ଦ୍ଦୋଷକୁ ପ୍ରଶଂସା କର ।

(ଘ) ଯେବେ ଲୋକଙ୍କ ମୁହଁକୁ ଦେଖିବ, ତେବେ ତାଙ୍କୁ ଚିହ୍ନିବ ।

(ଙ) ପିତାମାତା ତାଙ୍କପାଇଁ ବହୁ ଚେଷ୍ଟା କଲେ; ମାତ୍ର ତାଙ୍କ ସ୍ୱଭାବ ବଦଳିଲା ନାହିଁ ।

୨ । ଯୌଗିକ ବାକ୍ୟରେ ପଣିଣତ କର ।

(କ) ଯେଣୁ ଆଜି ଗଣତନ୍ତ୍ର ଚାଲିଛି, ସମସ୍ତଙ୍କର ସମାନ ଅଧିକାର ରହିବା ଉଚିତ ।

(ଖ) ଗରଜିଲା ମେଘ ବରଷେ ନାହିଁ ।

(ଗ) ଯେମିତି ଲୋକର ଦାରିଦ୍ର୍ୟ ଆସିଯାଏ, ବନ୍ଧୁବାନ୍ଧବ ତାଙ୍କୁ ପଚାରନ୍ତି ନାହିଁ ।

(ଘ) ଯେତେ ସଳଖିଲେ କୁକୁର ଲାଙ୍ଗୁଡ଼ ବଙ୍କା ।

(ଙ) ଗଙ୍ଗା ଯିବୁ ଯେତିକି, ଫଳ ପାଇବୁ ସେତିକି ।

୩ । ଜଟିଳ ବାକ୍ୟରେ ପରିବର୍ତ୍ତନ କର ।

(କ) ଦୂରକୁ ପର୍ବତ ସୁନ୍ଦର ଦିଶେ ।

(ଖ) ଅନନ୍ତ ରଖିବା ଲୋକର ବଳବନ୍ତମାନେ କଅଣ କରିପାରିବେ ?

(ଗ) ସାହାଯ୍ୟ କରିବାକୁ ଇଚ୍ଛା କରିବା ଲୋକର ପାଖରେ ଧନ ନ ଥାଏ ।

(ଘ) କିଛି ନ କହିବାରୁ ପିଲାର ମୁହଁ ବଢ଼ିଯାଉଛି ।

(ଙ) ଶାନ୍ତ ଗାଈର ବାଛୁରି ମରେ ।

(ଚ) କାନଥିବା ଲୋକର କୁଣ୍ଡଳ ନାହିଁ କି କୁଣ୍ଡଳ ଥିବା ଲୋକର କାନ ନାହିଁ ।

(ଛ) ଦେଇଥିଲେ ପାଇ ।

୪ । ପ୍ରଦତ୍ତ ବାକ୍ୟଗୁଡ଼ିକ ନିର୍ଦ୍ଦେଶ ଅନୁସାରେ ପରିବର୍ତ୍ତନ କର ।

(କ) ଓଡ଼ିଶାରେ ଗୋପବନ୍ଧୁଙ୍କ କଥା କିଏ ନ ଜାଣେ ? (ବିବୃତି ସୂଚକ ବାକ୍ୟ)

(ଖ) ବାଘ ବଣରେ ରହି ପଶୁମାନଙ୍କୁ ମାରି ଖାଏ । (ଯୌଗିକ ବାକ୍ୟ)

(ଗ) ତୁମେ ଭଲ ପଢ଼ ଓ ଡାକ୍ତର ହୁଅ । (ସରଳ ବାକ୍ୟ)

(ଘ) ସୂର୍ଯ୍ୟ ଉଦୟରେ ପଦ୍ମ ଫୁଟେ । (ଯୌଗିକ ବାକ୍ୟ)

(ଙ) ଆଜି ଖରା ଖୁବ୍ ଟାଣ । (ବିସ୍ମୟ ସୂଚକ ବାକ୍ୟ)

(ଚ) ଦେହ ଅସୁସ୍ଥ ଲାଗିବାରୁ ଚନ୍ଦନ ଆଜି ବିଦ୍ୟାଳୟକୁ ଗଲାନାହିଁ । (ଜଟିଳ ବାକ୍ୟ)

(ଛ) ଗାନ୍ଧୀଙ୍କ କଥା ଦେଶବାସୀ ସମସ୍ତେ ଜାଣନ୍ତି । (ନାସ୍ତିସୂଚକ ବାକ୍ୟ)

(ଜ) ତୁମେ ଘରେ ରହିଲେ ମାଆଙ୍କୁ ସାହାଯ୍ୟ କରିବ । (ଯୌଗିକ ବାକ୍ୟ)

(ଝ) ତମ ପୁଅ କେଡ଼େ ଦୁଷ୍ଟ ! (ବିବୃତି ସୂଚକ)

(ଞ) ଯେ ଚୋରି କରେ, ସେ ଦଣ୍ଡ ଭୋଗକରେ । (ସରଳ ବାକ୍ୟ)

(ଟ) ତୁମେ କଠିନ ପରିଶ୍ରମ କର ଏବଂ ତୁମେ ପରୀକ୍ଷାରେ ସଫଳ ହୁଅ । (ଜଟିଳ ବାକ୍ୟ)

(ଠ) ଯେତେବେଳେ ସୂର୍ଯ୍ୟ ଅସ୍ତଗାମୀ ହୁଅନ୍ତି, ସେତେବେଳେ ଗୋଗୋଷ୍ଠ ଗୃହକୁ ଫେରନ୍ତି । (ସରଳ ବାକ୍ୟ)

(ଡ) ରାମଚନ୍ଦ୍ର ରାଜବେଶ ପରିତ୍ୟାଗ କରି ବନକୁ ଗମନ କଲେ । (ଯୌଗିକ ବାକ୍ୟ)

(ଢ) ପିଲାଟି ଗଛରୁ ପଡ଼ି ଅଚେତ ହୋଇଗଲା । (ଯୌଗିକ ବାକ୍ୟ)

(ଣ) ତୁମେ ଔଷଧ ଖାଇଲେ ସୁସ୍ଥ ଅନୁଭବ କରିବ । (ଜଟିଳ ବାକ୍ୟ)

(ତ) ମୁଁ ଘରେ ପହଞ୍ଚିଲା ବେଳକୁ ମୋ ସାଙ୍ଗମାନେ ଆସି ଯାଇଥିଲେ । (ଜଟିଳ ବାକ୍ୟ)



# ବାକ୍ୟ ବିଶ୍ଳେଷଣ

କୌଣସି ବାକ୍ୟ ବିଶ୍ଳେଷଣ ପୂର୍ବରୁ ପ୍ରଥମେ ତାହା କେଉଁ ପ୍ରକାର ବାକ୍ୟ, ତାହା ଜାଣିବା ଉଚିତ । ପୂର୍ବରୁ କୁହାଯାଇଛି ଗଠନ ଦୃଷ୍ଟିରୁ ବାକ୍ୟ ମୁଖ୍ୟତଃ ତିନି ପ୍ରକାର । ଯଥା- ସରଳ ବାକ୍ୟ, ଯୌଗିକ ବାକ୍ୟ ଓ ଜଟିଳ ବାକ୍ୟ । ବାକ୍ୟ ନିରୂପଣ ପରେ ତା'ର ଉଦ୍ଦେଶ୍ୟ ଓ ବିଧେୟକୁ ଅଲଗା କରିବା ସଙ୍ଗେ ସଙ୍ଗେ ଉଦ୍ଦେଶ୍ୟ ଅନ୍ତର୍ଗତ କର୍ତ୍ତା ଏବଂ ତା'ର ଅନୁବନ୍ଧ ବା ବିବର୍ଦ୍ଧକ ଅଂଶ ଏବଂ ବିଧେୟ ଅନ୍ତର୍ଗତ କ୍ରିୟା ତଥା ତା'ର ବିବର୍ଦ୍ଧକ ବା ଅନୁବନ୍ଧ ଅଂଶକୁ ପୃଥକ୍ କରି ଦେଖାଇଦେବାକୁ ହୋଇଥାଏ । ବାକ୍ୟର ଏହି ପ୍ରକାର ପୃଥକୀକରଣ ପ୍ରକ୍ରିୟାକୁ ବାକ୍ୟ ବିଶ୍ଳେଷଣ କୁହାଯାଏ । ଏଠାରେ ସଂକ୍ଷେପରେ ସରଳ, ଯୌଗିକ ଓ ଜଟିଳ ବାକ୍ୟର ବିଶ୍ଳେଷଣ କୁହାଯାଏ । ଏଠାରେ ସଂକ୍ଷେପରେ ସରଳ, ଯୌଗିକ ଓ ଜଟିଳ ବାକ୍ୟର ବିଶ୍ଳେଷଣ କରି ଦେଖାଇ ଦିଆଗଲା-

**ସରଳ ବାକ୍ୟର ବିଶ୍ଳେଷଣ :**

(କ) ଗଛରେ ବସିଥିବା ପକ୍ଷୀଗୁଡ଼ିକ କାଲି ସକାଳେ ପଳାଇଯିବେ ।

(ଖ) ରାମ ସ୍କୁଲରେ ଉପସ୍ଥିତ ଥିଲେ ହେଁ ପାଠ କରି ନ ଥିଲା ।

(ଗ) ବିଶ୍ୱକବି ରବୀନ୍ଦ୍ରନାଥ ବଙ୍ଗଳାରେ ଅନେକ କାଳଜୟୀ ଲେଖା ଲେଖିଯାଇଛନ୍ତି ।

(ଘ) ଭ୍ରାତୃଭକ୍ତ ଲକ୍ଷ୍ମଣ ଜ୍ୟେଷ୍ଠଭ୍ରାତାଙ୍କ ଆଦେଶରେ କାଠ ଆଣିବାକୁ ସତ୍ୱର ଗଲେ ।

| | ଉଦ୍ଦେଶ୍ୟ | | | ବିଧେୟ |
|---|---|---|---|---|
| ବାକ୍ୟ | କର୍ତ୍ତା | କର୍ତ୍ତାର ଅନୁବନ୍ଧ | କ୍ରିୟା | କ୍ରିୟାର ଅନୁବନ୍ଧ |
| କ | ପକ୍ଷୀଗୁଡ଼ିକ | ଗଛରେ ବସିଥିବା | ପଳାଇଯିବେ | କାଲି ସକାଳେ |
| ଖ | ରାମ | — | କରି ନ ଥିଲା | ପାଠ (କର୍ମ), ସ୍କୁଲରେ ଉପସ୍ଥିତ ଥିଲେ ହେଁ (କ୍ରିୟା ବିଶେଷଣୀୟ ବାକ୍ୟାଂଶ) |
| ଗ | ରବୀନ୍ଦ୍ରନାଥ | ବିଶ୍ୱକବି | ଲେଖିଯାଇଛନ୍ତି | ବଙ୍ଗଳାରେ ଅନେକ କାଳଜୟୀ ଲେଖା |
| ଘ | ଲକ୍ଷ୍ମଣ | ଭ୍ରାତୃଭକ୍ତ | ଗଲେ | ସତ୍ୱର, କାଠ ଆଣିବାକୁ, ଜ୍ୟେଷ୍ଠଭ୍ରାତାଙ୍କ ଆଦେଶରେ |

**ଯୌଗିକବାକ୍ୟର ବିଶ୍ଳେଷଣ :**

ଯୌଗିକବାକ୍ୟର ବିଶ୍ଳେଷଣ ସମୟରେ ପ୍ରଥମେ ସ୍ୱାଧୀନ ବା ନିରପେକ୍ଷ ବାକ୍ୟମାନଙ୍କୁ (ଯଦି ଥାଏ) ଅଲଗା କରି, ଯେଉଁ ସଂଯୋଜକ ଅବ୍ୟୟଦ୍ୱାରା ସେମାନେ

ସଂଯୁକ୍ତ, ତାହା ପ୍ରଦର୍ଶନ କରିବାକୁ ହେବ । ଯଦି ସେଥିରେ ଦୁଇ ବା ତହିଁରୁ ଅଧିକ ନିରପେକ୍ଷ ଜଟିଳବାକ୍ୟ ରହିଥାଏ, ତେବେ ସେହି ଜଟିଳବାକ୍ୟକୁ ପ୍ରଧାନ ଓ ଅପ୍ରଧାନ ଖଣ୍ଡବାକ୍ୟମାନଙ୍କରେ ବିଭାଗ କରି ସେମାନଙ୍କର ପରସ୍ପର ସମ୍ପର୍କ ଦର୍ଶାଇବା ପରେ, ଖଣ୍ଡବାକ୍ୟଗୁଡ଼ିକର ବିଶ୍ଳେଷଣ ଉପରୋକ୍ତ ସରଳବାକ୍ୟ ବିଶ୍ଳେଷଣ ପଦ୍ଧତିରେ କରିବାକୁ ହେବ ।

ଯଥା– "ଯେତେବେଳେ ତୁମେ ଘରେ ନ ଥିଲ, ସେତେବେଳେ ମୁଁ ଆସିଥିଲି; କିନ୍ତୁ ଘରେ କେହି ନ ଥିଲେ ।" ଏହି ବାକ୍ୟରେ "ଯେତେବେଳେ ତୁମେ ଘରେ ନ ଥିଲ, ସେତେବେଳେ ମୁଁ ଆସିଥିଲି" ଗୋଟିଏ ଜଟିଳବାକ୍ୟ । ଏହି ଜଟିଳବାକ୍ୟରେ "ସେତେବେଳେ ମୁଁ ଆସିଥିଲି" ପ୍ରଧାନ ବାକ୍ୟ । "ଯେତେବେଳେ ତୁମେ ଘରେ ନ ଥିଲ" ଅପ୍ରଧାନ ବାକ୍ୟ । "ଘରେ କେହି ନ ଥିଲେ" ସରଳ ବାକ୍ୟ; "କିନ୍ତୁ" ଅବ୍ୟୟପଦଦ୍ୱାରା ଉଭୟ ଜଟିଳବାକ୍ୟ ଓ ସରଳବାକ୍ୟ ସଂଯୁକ୍ତ ହୋଇଛି ।

"ରାମ ପଢ଼ିଲା ଏବଂ ସୀତା ଶୁଣିଲା ।" ଏହା ଗୋଟିଏ ଯୌଗିକ ବାକ୍ୟ । ଏଥିରେ "ରାମ ପଢ଼ିଲା" ଏବଂ "ସୀତା ଶୁଣିଲା" ଦୁଇଟି ସରଳ ବାକ୍ୟ । ଏହି ସରଳ ବାକ୍ୟ ଦୁଇଟି "ଏବଂ" ଅବ୍ୟୟଦ୍ୱାରା ସଂଯୁକ୍ତ । ଏହିପରି ବିଶ୍ଳେଷଣ ପରେ ପୁନରାୟ ସରଳ ବାକ୍ୟ ଢାଞ୍ଚାରେ ବିଶ୍ଳେଷଣ କରିବାକୁ ହୋଇଥାଏ । ଏହାର ଅର୍ଥ ହେଉଛି– ପ୍ରତ୍ୟେକ ସରଳ ବାକ୍ୟର ଉଦ୍ଦେଶ୍ୟ ଓ ଅନୁବନ୍ଧ ଅଂଶ ଏବଂ ବିଧେୟ ଓ ତା'ର ଅନୁବନ୍ଧ ଅଂଶକୁ ଦର୍ଶାଯାଇଥାଏ ।

**ଜଟିଳବାକ୍ୟର ବିଶ୍ଳେଷଣ :**

ଜଟିଳବାକ୍ୟର ବିଶ୍ଳେଷଣ ସମୟରେ ପ୍ରଥମେ ତନ୍ମଧ୍ୟରେ ଥିବା ପ୍ରଧାନ ବାକ୍ୟ ଏବଂ ଅପ୍ରଧାନ ବାକ୍ୟମାନଙ୍କୁ ଚିହ୍ନାଇବା ସଙ୍ଗେସଙ୍ଗେ ପରସ୍ପର ମଧ୍ୟରେ ରହିଥିବା ସମ୍ପର୍କକୁ ସ୍ପଷ୍ଟ କରିବାକୁ ପଡ଼ିଥାଏ । ତା'ପରେ ଅପ୍ରଧାନ ବାକ୍ୟମାନଙ୍କ ମଧ୍ୟରୁ କିଏ ବିଶେଷ୍ୟାତ୍ମକ, କିଏ ନାମ ବିଶେଷଣାତ୍ମକ ବା କିଏ କ୍ରିୟାବିଶେଷଣାତ୍ମକ, ତାହା ଉଲ୍ଲେଖ କରିବାକୁ ହୋଇଥାଏ । ଶେଷରେ ସରଳବାକ୍ୟ ବିଶ୍ଳେଷଣ ବିଧିଅନୁଯାୟୀ ପ୍ରତ୍ୟେକ ବାକ୍ୟର ଉଦ୍ଦେଶ୍ୟ ଓ ତା'ର ଅନୁବନ୍ଧ ଅଂଶ ତଥା ବିଧେୟ ଓ ତା'ର ଅନୁବନ୍ଧ ଅଂଶକୁ ଦେଖାଇ ଦିଆଯାଇଥାଏ । ଯଥା–

"ସେ ଯେତେବେଳେ ଆସି ଗ୍ରାମରେ ପହଞ୍ଚିଲେ, ସେତେବେଳେ ମୁଁ ଘରେ ନ ଥିଲି ।" ଏହି ଜଟିଳ ବାକ୍ୟରେ "ସେତେବେଳେ ମୁଁ ଘରେ ନ ଥିଲି" ପ୍ରଧାନ ବାକ୍ୟ । ସେ ଯେତେବେଳେ ଆସି ଗ୍ରାମରେ ପହଞ୍ଚିଲେ" ଅପ୍ରଧାନ ବାକ୍ୟ । ଏହି ଅପ୍ରଧାନ ବାକ୍ୟ ପ୍ରଧାନ ବାକ୍ୟରେ ଥିବା "ନ ଥିଲି" କ୍ରିୟାର କ୍ରିୟାବିଶେଷଣ ରୂପେ ବ୍ୟବହୃତ ହୋଇଅଛି ।

"ଯେଉଁ ଦେଶର ଜନସାଧାରଣ ସଚ୍ଚୋଟ, ସେ ଦେଶ ନିଶ୍ଚୟ ପ୍ରଗତିଶୀଳ" ଏହି ବାକ୍ୟରେ "ସେ ଦେଶ ନିଶ୍ଚୟ ପ୍ରଗତିଶୀଳ" ପ୍ରଧାନ ବାକ୍ୟ । "ଯେଉଁ ଦେଶର ଜନସାଧାରଣ ସଚ୍ଚୋଟ" ଅପ୍ରଧାନ ବାକ୍ୟ । ଅନ୍ୟ ଭାବରେ କହିଲେ ବିଶେଷଣ ଉପବାକ୍ୟ । ଏହି ଅପ୍ରଧାନ ବାକ୍ୟଟି ପ୍ରଧାନ ବାକ୍ୟରେ ଥିବା "ଦେଶ" ପଦର ବିଶେଷଣ ରୂପେ ବ୍ୟବହୃତ ହୋଇଅଛି ।

## ଅନୁଶୀଳନୀ

ନିମ୍ନଲିଖିତ ବାକ୍ୟଗୁଡ଼ିକୁ ବିଶ୍ଳେଷଣ କରି କିଏ କେଉଁ ପ୍ରକାର ବାକ୍ୟ ଉଲ୍ଲେଖ କର ।

(କ) ଯେଉଁମାନେ କଠିନ ପରିଶ୍ରମ କରନ୍ତି, ସେମାନେ ସବୁ କ୍ଷେତ୍ରରେ ସଫଳ ହୋଇଥା'ନ୍ତି ।

(ଖ) ତୁମେ ଯେଉଁ କଥା କହୁଛ, ସେ କଥାର କୌଣସି ସତ୍ୟତା ନାହିଁ ।

(ଗ) ରାମ ଗୀତ ଗାଇଲା ଏବଂ ସୀତା ଆନନ୍ଦରେ ନାଚିଲା ।

(ଘ) ମଧୁ ସ୍କୁଲକୁ ଯାଇ ପ୍ରଧାନ ଶିକ୍ଷକଙ୍କୁ ଦେଖାକଲା ।

(ଙ) ବଣ ଭିତରେ ବାଘଟି ଦେଖାଦେଇ ଲୁଚିଗଲା ।

(ଚ) ଯାହାଙ୍କର ଭାଷଣ ଦେବାର କଳା ଅଛି, ସେ ଅନ୍ୟମାନଙ୍କୁ ପ୍ରଭାବିତ କରିପାରିବ ।

(ଛ) ଯେତେବେଳେ ନିଖୋଜ ହୋଇଥିବା ପୁଅ ମାଆଙ୍କୁ ପ୍ରଣାମ କଲା, ସେତେବେଳେ ଉପସ୍ଥିତ ଲୋକମାନଙ୍କର ଆଖିରୁ ମଧ୍ୟ ଲୁହ ଝରିଲା ।

(ଜ) ଯାହାକୁ ଈଶ୍ୱର ରକ୍ଷାକରନ୍ତି, କେହି ତା'ର ଅନିଷ୍ଟ କରିପାରିବ ନାହିଁ ।

(ଝ) ଯଦି ରାମ ନାମ ନ ଘୋଷିବ, ତେବେ ଶୁଆ ପୋଷି ଲାଭ କ'ଣ ?

(ଞ) ଏଇ ହେଉଛି ସମୟ ଯେତେବେଳେ ବହୁସଂଖ୍ୟକ ପକ୍ଷୀ ଦୂରଦୂରାନ୍ତରୁ ଚିଲିକା ହ୍ରଦକୁ ଆସନ୍ତି ।

(ଟ) ଆଜିକାଲି ପେଟ୍ରୋଲ ଏପରି ଏକ ପଦାର୍ଥ ଯାହା ନହେଲେ ଆମେ ଚଳିପାରିବା ନାହିଁ ।

(ଠ) ଯେଉଁ ଦେଶରେ ବୁଢ଼ାଲୋକ ନାହାନ୍ତି, ତୁମେ ସେପରି ଏକ ଦେଶରେ ରହିବାକୁ ଚାହୁଁଛ ?



# ବିରାମ ଚିହ୍ନ (ବାକ୍ୟବିନ୍ୟାସ ଚିହ୍ନ)

ଆମେ କାହାକୁ କିଛି କହିଲାବେଳେ ବା କାହା ସହିତ କଥାବାର୍ତ୍ତା ହେଲାବେଳେ ଆମର ବକ୍ତବ୍ୟକୁ ସ୍ପଷ୍ଟ ଓ ବୋଧଗମ୍ୟ କରିବାପାଇଁ ଯତ୍ନ କରିଥାଉ । ଖୁବ୍ ଶୀଘ୍ର ଶୀଘ୍ର କହିଲେ ବା ଅତି ଧୀରେ ଗୋଟିଏ ପରେ ଗୋଟିଏ ଶବ୍ଦ କହିଲେ ଭାବନା କ୍ଷୁଣ୍ଣ ହୁଏ ଏବଂ ବୁଝିବାକୁ ବ୍ୟାଘାତ ସୃଷ୍ଟି ହୁଏ । ଏଣୁ ସାବଧାନତା ଅବଲମ୍ବନ କରାଯାଇଥାଏ । ସେହିପରି ଆମର ରଚନା ବା ଲେଖାରେ ଥିବା ଚିନ୍ତାଧାରାକୁ ସ୍ପଷ୍ଟରୂପେ ପ୍ରକାଶ କରିବାପାଇଁ ଆମେ କେତେକ ଚିହ୍ନର ବ୍ୟବହାର କରିଥାଉ । ସେହି ଚିହ୍ନ ଦିଆଯାଉଥିବା ସ୍ଥାନରେ ବିରାମ ବା ବିଶ୍ରାମ ନେବାକୁ ହୋଇଥାଏ । ତେଣୁ ସେହି ଚିହ୍ନଗୁଡ଼ିକୁ ବିରାମ ଚିହ୍ନ କୁହାଯାଏ । ଏହାର ଅନ୍ୟ ନାମ ବାକ୍ୟବିନ୍ୟାସ ଚିହ୍ନ ।

| | |
|---|---|
| ପୂର୍ଣ୍ଣଚ୍ଛେଦ | । |
| କମା | , |
| ସେମିକୋଲନ୍ ବା ଦ୍ୱିତୀୟଚ୍ଛେଦ | ; |
| କୋଲନ୍ | |
| ପ୍ରଶ୍ନବାଚକ ଚିହ୍ନ | ? |
| ବିସ୍ମୟାଦି ସୂଚକ ଚିହ୍ନ | ! |
| ଉଦ୍ଧୃତି ଚିହ୍ନ | " " ବା ' ' |
| ଡ୍ୟାସ୍ ବା ରେଖାଚିହ୍ନ ବା ବ୍ୟବଧାନ ଚିହ୍ନ | — |
| ହାଇଫେନ୍ ବା କ୍ଷୁଦ୍ରରେଖା ବା ସଂଯୋଜକ ଚିହ୍ନ | - |
| ଉଦାହରଣ ବା ଯଥା ଚିହ୍ନ | :— |
| ବନ୍ଧନୀ | ( ) [ ] { } |

୧ । ପୂର୍ଣ୍ଣଚ୍ଛେଦ (।) – ଏହି ଚିହ୍ନ ସମ୍ପୂର୍ଣ୍ଣ ଅର୍ଥ ପ୍ରକାଶ କରୁଥିବା ବାକ୍ୟର ଶେଷରେ ଦିଆଯାଏ । ଯଥା-

(କ) ପ୍ରାତଃଭ୍ରମଣ ସ୍ୱାସ୍ଥ୍ୟପକ୍ଷେ ଉପକାରୀ ଅଟେ ।

(ଖ) ମାନବର ସେବା ହିଁ ମାଧବସେବା ।

(ଗ) ଭାରତ ଯୁଗଯୁଗ ଧରି ପୃଥିବୀବାସୀଙ୍କୁ ଜ୍ଞାନ ବିତରଣ କରିଆସିଛି ।

୨ । କମା ବା ପ୍ରଥମ ଛେଦ (,) – ସର୍ବାଧିକ ବ୍ୟବହୃତ ବିରାମ ଚିହ୍ନଟି କମା । ଏହା ସବୁଠାରୁ କ୍ଷୁଦ୍ର ବିରାମର ପ୍ରତୀକ ଅଟେ ।

(କ) ଗୋଟିଏ ବାକ୍ୟରେ ବ୍ୟବହୃତ ଏକାଧିକ ବିଶେଷ୍ୟ, ଏକାଧିକ ବିଶେଷଣ, ଏକାଧିକ କ୍ରିୟା (ସମାପିକା, ଅସମାପିକା) ପଦକୁ ପୃଥକ୍ କରିବାପାଇଁ ପ୍ରଥମଚ୍ଛେଦ ବ୍ୟବହୃତ ହୁଏ; ମାତ୍ର ସଂଯୋଜକ ଅବ୍ୟୟ ପୂର୍ବରୁ ବ୍ୟବହୃତ ହୁଏ ନାହିଁ ।

(କ) (୧) ଗାନ୍ଧି, ଜବାହରଲାଲ, ଲାଲବାହାଦୁର, ଗୋପବନ୍ଧୁ ଓ ଆମ୍ବେଦକର ପ୍ରଭୃତି ମନୀଷୀମାନେ ଜୀବନରେ ବହୁ କଷ୍ଟ ସ୍ୱୀକାର କରିଛନ୍ତି ।

(୨) ଗୀତା, ସ୍ମିତା, ଶୁଚିସ୍ମିତା ଏକା ଶ୍ରେଣୀରେ ପଢ଼ନ୍ତି ।

(୩) ଅଧ୍ୟବସାୟୀ, ଚରିତ୍ରବାନ୍, ସତ୍ୟବାଦୀ ଓ ସ୍ନେହୀ ମନୁଷ୍ୟକୁ ସମସ୍ତେ ଆଦର କରନ୍ତି ।

(୪) ରାବଣ ଅହଙ୍କାରୀ, ଅପହରଣକାରୀ, ଅନ୍ୟାୟ ଓ ଅନୀତିପରାୟଣ ଥିଲା ।

(୫) ତୁମେ ଆସ, ବସ, ଶୁଣ ଓ ବିଚାର କର ।

(୬) ଦେବ ସ୍କୁଲରୁ ଆସି, ଗୋଡ଼ହାତ ଧୋଇ, ଭାତ ଖାଇ, ମା'ଙ୍କୁ କହି, ଖେଳିବାକୁ ଗଲା ।

(ଖ) ସମ୍ବୋଧନ ପଦ ପରେ କମା (,) ବ୍ୟବହୃତ ହୁଏ । ଯଥା-

(୧) ପ୍ରିୟ ରମେଶ, ମୋର ଶୁଭେଚ୍ଛା ଗ୍ରହଣ କରିବ ।

(୨) ହେ ଈଶ୍ୱର, ମୋର ଦୁଃଖ ହରଣ କର ।

(୩) ହେ ଭାରତ, ଉଠ, ଜାଗ୍ରତ ହୁଅ ।

(ଗ) ଯୌଗିକ ବାକ୍ୟ ଅନ୍ତର୍ଗତ ବାକ୍ୟଗୁଡ଼ିକୁ ପୃଥକ୍ କରିବାପାଇଁ କମା (,) ଲାଗେ । ଯଥା-

(୧) ସେ ସୁନ୍ଦର ଉପଦେଶ ଦିଅନ୍ତି, ମାତ୍ର ନିଜେ ଆଚରଣ କରନ୍ତି ନାହିଁ ।

(୨) ରାମଚନ୍ଦ୍ର ରାଜବେଶ ତ୍ୟାଗ କଲେ, ସନ୍ନ୍ୟାସୀବେଶ ଧାରଣ କଲେ, ବନରେ ବାସ କଲେ ।

(ଘ) ଜଟିଳ ବାକ୍ୟରେ ପ୍ରଧାନ ବାକ୍ୟଠାରୁ ଅପ୍ରଧାନ ବାକ୍ୟଗୁଡ଼ିକୁ ପୃଥକ୍ କରିବା ପାଇଁ କମା ବା ପ୍ରଥମଚ୍ଛେଦ (,) ବ୍ୟବହୃତ ହୁଏ ।

(୧) ତୁ ଯେତେ ମାଠିବୁ ମାଠ, ମୁଁ ସେହି ଦରପୋଡ଼ା କାଠ ।

(୨) ଯେ ପୃଥିବୀକୁ ପରିବାର ମନେକରେ, ପରୋପକାର ଯାହାର ଜୀବନର ବ୍ରତ, ନର ଭିତରେ ଯେ ନାରାୟଣଙ୍କୁ ଦର୍ଶନ କରେ, ତାକୁ ମହାତ୍ମା କୁହାଯାଏ ।

(୩) ଯାହା ପୁଅକୁ ସାପ କାମୁଡ଼େ, ତା' ମାଆ ପାଳଦଉଡ଼ି ଦେଖିଲେ ଡରେ ।

(ଙ) ଉଦ୍ଧୃତ ବାକ୍ୟର ପୂର୍ବରେ ପ୍ରଥମଚ୍ଛେଦ (,) ବ୍ୟବହାର କରାଯାଏ । ଯଥା-

(୧) ଜଗନ୍ନାଥ ଦାସ ଲେଖିଛନ୍ତି,

"ଅମୃତ ବିନୟ ବଚନ
କହି ତୋଷିବ ପ୍ରାଣୀମନ ।"

(୨) ପଲ୍ଲିକବି ନନ୍ଦକିଶୋରଙ୍କ ଭାଷାରେ,

"କହିବା ଲୋକତ ମହତ ନୁହଁଇ
ମହତ ସହିବାଜନ
ସହିଷ୍ଣୁତାହୀନ ବାଳକବାଳିକା
ହୁଅନ୍ତି କ୍ରୋଧେ ଅଜ୍ଞାନ ।"

(ଚ) ଦରଖାସ୍ତ ଓ ଶିରୋଲେଖାରେ ପ୍ରଥମଚ୍ଛେଦ ବ୍ୟବହୃତ ହୁଏ । ଯଥା- ସଭାପତି, ଉତ୍କଳ-ସାହିତ୍ୟ ସମାଜ, କଟକ ।

(ଛ) ନାମ ପରେ ଉପାଧି ଯୋଗ କଲେ, ପ୍ରଥମ ଛେଦର ବ୍ୟବହାର କରାଯାଏ । ଯଥା- ଡଃ କୃଷ୍ଣଚନ୍ଦ୍ର ପ୍ରଧାନ, ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡ଼ି., ଡି.ଲିଟ୍. ମହାମହୋପାଧ୍ୟାୟ ପଣ୍ଡିତ ଶ୍ରୀ କମଳାକାନ୍ତ କବିରାଜ, ସାଂଖ୍ୟ ଯୋଗାଚାର୍ଯ୍ୟ, ତର୍କଚୂଡ଼ାମଣି, ଧର୍ମଶାସ୍ତ୍ରାଚାର୍ଯ୍ୟ, ବେଦାନ୍ତବାଗୀଶ, ସାହିତ୍ୟରତ୍ନ, ଏମ୍.ଏ.

୩ । **ସେମିକୋଲନ୍ ବା ଦ୍ୱିତୀୟ ଛେଦ (;)** - କମାଠାରୁ ଅଧିକ ବିରାମ ଆବଶ୍ୟକ ହେଉଥିବା ସ୍ଥଳରେ ସେମିକୋଲନ୍ ବା ଦ୍ୱିତୀୟଛେଦ ଦିଆଯାଏ ।

(କ) ସଂଯୋଜକ ବିହୀନ ଯୌଗିକ ବାକ୍ୟର ସମକକ୍ଷ ବାକ୍ୟଗୁଡ଼ିକୁ ପୃଥକ୍ କରିବା ଲାଗି ସେମିକୋଲନ୍ ବ୍ୟବହୃତ ହୁଏ । ଯଥା-

୧ । ଶିକ୍ଷକ ମୋତେ କ୍ଷମା କଲେ; ଏପରି ବ୍ୟବହାର ନ କରିବାପାଇଁ ଉପଦେଶ ଦେଲେ ।

୨ । ବିପଦ କେବେହେଲେ ଏକାକୀ ଆସେନାହିଁ; ସାଙ୍ଗସାଥୀ ଧରି ଆସେ ।

(ଖ) କୌଣସି ଗୋଟିଏ ଭାବର ଗତି ଅବିଚ୍ଛିନ୍ନ ଥିଲେ, ପ୍ରତ୍ୟେକ ପୂର୍ଣ୍ଣବାକ୍ୟର ଶେଷରେ ଦ୍ୱିତୀୟଛେଦ ବ୍ୟବହୃତ ହୁଏ । ଯଥା-

୧ । ମହାତ୍ମାଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଭାରତକୁ ଫେରିଆସିଲେ; ଇଂରେଜମାନଙ୍କ ବିରୋଧରେ ଭାରତୀୟମାନଙ୍କୁ ସଙ୍ଗଠିତ କଲେ; ଅହିଂସାକୁ ନିଜର ପ୍ରଧାନ ଆୟୁଧ କଲେ; ଶେଷରେ ଚିରଈପ୍ସିତ ସ୍ୱାଧୀନତାକୁ ଭାରତୀୟମାନଙ୍କ ହାତରେ ଦେଲେ ।

୨ । ମନୁଷ୍ୟ ନିଜର ସ୍ୱାର୍ଥପାଇଁ ଅନ୍ୟକୁ ହତ୍ୟା କରୁଛି; ସୁଖଶାନ୍ତି ପାଉନାହିଁ; ଯେତେବେଳେ ନିଜର ଦୁଷ୍ପ୍ରବୃତ୍ତିକୁ ହତ୍ୟା କରିବ; ପ୍ରକୃତ ସୁଖଶାନ୍ତି ପାଇବ ।

(ଗ) ନ ହେଲେ, ନଚେତ୍, ତଥାପି, ପୁଣି ପ୍ରଭୃତି ସଂଯୋଜକ ଯୁକ୍ତ ଯୌଗିକବାକ୍ୟର ସହ-ବାକ୍ୟଗୁଡ଼ିକୁ ପୃଥକ୍ କରିବା ନିମିତ୍ତ ସେମିକୋଲନ ଲାଗେ ।

୧ । ଭଲଭାବରେ ପଢ଼ାପଢ଼ି କର; ନ ହେଲେ ଆଶାନୁରୂପ ଫଳ ପାଇବ ନାହିଁ ।

୨ । ଆଦେଶ ପାଳନ କର; ନଚେତ୍ ଦଣ୍ଡିତ ହେବ ।

୩ । ମୁଁ ବାରମ୍ବାର ଅନୁରୋଧ କରୁଛି; ତଥାପି ତୁମେ ମୋ କଥା ଶୁଣୁ ନାହଁ ।

୪ । ଏତେବାର କହିଲି; ପୁଣି ସେହି ଭୁଲ କରୁଛ ।

**୪ । କୋଲନ୍ (:)**

ସେମିକୋଲନ୍ ଠାରୁ ଅଧିକ ବିରାମ ଆବଶ୍ୟକ ହେଉଥିଲେ, ସେଠାରେ କୋଲନ୍‌ର ବ୍ୟବହାର କରାଯାଏ । ବିରାମର ଦୀର୍ଘତା ଦୃଷ୍ଟିରୁ ଏହାର ସ୍ଥାନ ପୂର୍ଣ୍ଣଚ୍ଛେଦ ପରେ ।

ଉଦାହରଣର ଠିକ୍ ପୂର୍ବରୁ ବା ନାଟକର ସଂଳାପ ବର୍ଣ୍ଣନା କ୍ଷେତ୍ରରେ କୋଲନ୍ ବ୍ୟବହୃତ ହୁଏ । କୌଣସି ବିଷୟକୁ ସୂତ୍ରାକାରରେ ବା ସଂକ୍ଷିପ୍ତ ବର୍ଣ୍ଣନା କରିବାକୁ ମଧ୍ୟ ଏହା ଲାଗେ ।

(କ) ୧। ସମସ୍ତେ କହନ୍ତି : "ଶ୍ରୀକ୍ଷେତ୍ରରେ ବାରମାସ ତେରଯାତ୍ରା ।"

୨ । ପଣ୍ଡିତ ଗୋଦାବରୀଶ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ : କବିତା, ଗଳ୍ପ, ଉପନ୍ୟାସ, ନାଟକ ଓ ଆତ୍ମଜୀବନୀ ।

(ଖ) ୧ । ସନକ : ତମେ କ'ଣ ସତ କହୁଛ ସନନ୍ଦ ?

ସନନ୍ଦ : ଏଥିରେ ଆଉ ପଚାରିବାର ଅଛି, ତେବେ ଏ ପ୍ରଶ୍ନ...

ସନକ : ନାହିଁ, କିଛି ନାହିଁ, ଏମିତି...

ସନନ୍ଦ : ଓଃ ଏମିତି ପଚାରୁଥିଲ ? ବେଶ୍...

(ଗ) ୧ । ସତ୍ୟ-ଅହିଂସାର ପୂଜାରି : ମହାତ୍ମାଗାନ୍ଧି

୨ । ପୃଥିବୀର ପ୍ରାଚୀନତମ ଗ୍ରନ୍ଥ : ବେଦ

**୫ । ଉଦାହରଣ ବା ଯଥା (ଚିହ୍ନ) (:–)**

ଉଦାହରଣ ଦେବାପାଇଁ ଉଦାହରଣ ଚିହ୍ନର ବ୍ୟବହାର ହୁଏ । ବ୍ୟବହାର କ୍ଷେତ୍ରରେ ଏହା କୋଲନ୍‌ର ସମପର୍ଯ୍ୟାୟବାଚୀ ।

(କ) ପାଣ୍ଡବମାନେ ପାଞ୍ଚଭାଇ; ଯଥା :– ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ।

(ଖ) ଆଜିର ସମାଜରେ କ୍ଷମତାଶାଳୀ ଦୁଷ୍ଟମାନେ ଅଛନ୍ତି; ଯଥା– ଖଟୁଆ, ମିଛୁଆ, ପେଞ୍ଚୁଆ, ଲାଞ୍ଚୁଆ ଓ ଟାଉଟରିଆ ।

(ଗ) ବର୍ଷକ ଛଅ ଋତୁ; ଯଥା:– ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶୀତ ଓ ବସନ୍ତ ।

୬ । **ପ୍ରଶ୍ନବାଚକ ଚିହ୍ନ( ? )**

ପ୍ରଶ୍ନାର୍ଥକବାକ୍ୟ ପରେ ଏହି ଚିହ୍ନର ବ୍ୟବହାର ହୋଇଥାଏ ।

(କ) ତୁମେ କିଏ ଚିହ୍ନିଛ କି ଆପଣାକୁ ଆପେ ?

(ଖ) ସବୁଠାରୁ କାହାର ଗତି ଅଧିକ ?

(ଗ) ସେମାନେ କେଉଁଠାରୁ ଆସିଛନ୍ତି ?

(ଘ) ଜଳ କିପରି ଦୂଷିତ ହୁଏ ?

୭ । **ବିସ୍ମୟାଦିସୂଚକ ଚିହ୍ନ( ! )**

ମନର ଆନନ୍ଦ, ବିଷାଦ, ଘୃଣା, ବିସ୍ମୟ ବା ଆଶ୍ଚର୍ଯ୍ୟ ପ୍ରଭୃତି ଭାବପ୍ରକାଶକ ବାକ୍ୟର ଶେଷରେ ଏହି ଚିହ୍ନ ଲାଗେ । ସମ୍ବୋଧନରେ ମଧ୍ୟ ଏଇ ଚିହ୍ନ ଦିଆଯାଏ । ଯଥା:-

(କ) ମଲ୍ଲିର କି ମନଛୁଆଁ ମହକ !

(ଖ) ଆହା ! ବିଧାତା ମୋ କପାଳରେ ଏଇଆ ଲେଖିଥିଲା !

(ଗ) ବାପରେ ବାପ ! କେଡ଼େବଡ଼ ସାପ !

(ଘ) ଛି, ଲୋକପ୍ରତିନିଧି ହୋଇ ଲାଞ୍ଚ ନେଲ !

(ଙ) ଧେତ୍, ଉଚ୍ଚଶିକ୍ଷିତ ହୋଇ ଏଇ କୁକର୍ମ କଲ !

(ଚ) ଈଶ୍ୱରଙ୍କର ଦାନ କେଡ଼େ ମହାନ୍ !

(ଛ) ସୁନାମିର ପ୍ରକୋପ କି ଭୟଙ୍କର !

(ଜ) ହେ ପରମେଶ୍ୱର ! ଜଗତର ମଙ୍ଗଳ କର ।

୮ । **ଉଦ୍ଧୃତି ଚିହ୍ନ (" " ବା ' ')**

କବି, ଲେଖକ, ବକ୍ତା ବା ଅନ୍ୟ କାହାରି ଉକ୍ତିକୁ ଅବିକଳ ଲେଖାରେ ପ୍ରକାଶ କରିବାକୁ ଉଦ୍ଧୃତି ଚିହ୍ନ ଦିଆଯାଏ ।

(କ) ୧। କବି ରାମକୃଷ୍ଣ ନନ୍ଦ ଲେଖିଛନ୍ତି,

"ସତ କହିବାକୁ କିଆଁ ଡରିବି
ସତ କହି ପଛେ ମଲେ ମରିବି ।"

୨ । ଶିକ୍ଷକ ଛାତ୍ରଛାତ୍ରୀଙ୍କୁ କହିଲେ, "ମୁଁ ତୁମ୍ଭମାନଙ୍କୁ ଆଜି ବିରାମଚିହ୍ନ ବିଷୟରେ ପଢ଼ାଇବି ।"

(ଖ) ୧। ଗୋଟିଏ ଉଦ୍ଧୃତି ମଧ୍ୟରେ ଆଉ ଗୋଟିଏ ଉଦ୍ଧୃତିର ଅବତାରଣା ହେଲେ ଏହି ' ' ଚିହ୍ନ ଦିଆଯାଏ । ଯଥା- ସନ୍ନ୍ୟାସୀ କହିଲେ, "ପିଲାମାନେ, ଶୁଣ; ମୋର ଗୁରୁ କହୁଥିଲେ, 'କାହାର ଉପକାର ଯଦି କରି ନ ପାରୁଛ, ଅପକାର କରନାହିଁ'- ଏହିକଥା ମୁଁ ତୁମ୍ଭମାନଙ୍କୁ ବାରମ୍ବାର କହୁଛି । ମନେରଖିବ, କାର୍ଯ୍ୟରେ ଲଗାଇବ ।"

୨ । ଗୋଟିଏ ଶବ୍ଦ ବା ଶୀର୍ଷକ ଲାଗି ମଧ୍ୟ ଏହି ଚିହ୍ନ (‘’) ବ୍ୟବହୃତ ହୁଏ । ଯଥା-

ଉକ୍ତ ପଦ୍ୟାଂଶଟି ‘ଧଉଳିପାହାଡ଼’ ଶୀର୍ଷକ କବିତାରୁ ଆନୀତ ।

ପରସ୍ପର ସନ୍ନିହିତ ବର୍ଣ୍ଣଦ୍ୱୟର ମିଳନକୁ ‘ସନ୍ଧି’ କହନ୍ତି ।

**୯ । ଡ୍ୟାସ୍ ବା ରେଖାଚିହ୍ନ ବା ବ୍ୟବଧାନ ଚିହ୍ନ (–) :**

✡ କହିଲାବେଳେ ବାକ୍ୟଟି ସରିବା ପୂର୍ବରୁ ମଝିରେ ବନ୍ଦ କରି, ଅନ୍ୟ ବାକ୍ୟ ଆରମ୍ଭ କଲେ, ଡ୍ୟାସ୍ ଚିହ୍ନ ବ୍ୟବହୃତ ହୁଏ । ଯଥା-

(କ) ତୁମେ ମୋ କଥା — ଆଜି ତୁମର ଏ ଅବସ୍ଥା ହୋଇ ନ ଥା’ନ୍ତା ।

(ଖ) ଯାହା ହେବାର ଥିଲା — ଛାଡ଼, ସେ କଥା କହି ଆଉ କଷ୍ଟ ଦେବି କାହିଁକି ?

✡ କୋଲନ୍ ପରି ଉଦାହରଣ ଓ ଉଦ୍ଧୃତି କ୍ଷେତ୍ରରେ ମଧ୍ୟ ଡ୍ୟାସ୍‌ର ବ୍ୟବହାର ହୋଇଥାଏ । ଯଥା-

୧ । ଭୂମିକମ୍ପରେ ସବୁ ଗଲା– ଧନଜୀବନ, ଘରଦ୍ୱାର ଓ ଗୋରୁଗାଈ ।

୨ । କଟକରୁ ମୋପାଇଁ କେତୋଟି ଜିନିଷ ଆଣିବ– ଶାଲ, ସ୍ୱେଟର, ପେନ୍ ଓ ଏକ ଓଡ଼ିଆ ଅଭିଧାନ ।

✡ ପ୍ରତ୍ୟକ୍ଷ ଉକ୍ତିରେ ବକ୍ତାର ନାମ ପରେ ଏହି ଚିହ୍ନ ଦିଆଯାଇ ବକ୍ତାର ଉକ୍ତିକୁ ଉଦ୍ଧାର କରାଯାଏ । ଯଥା :-

ହରେଶ–ମହେଶ, ତୁ ଆଜି ଖେଳିବାକୁ ଯିବୁ ତ ?

✡ ନାଟକର ସଂଳାପରେ ମଧ୍ୟ ଏହି ଡ୍ୟାସ୍ ଚିହ୍ନର ବ୍ୟବହାର ହୁଏ ।

ଯୁଧିଷ୍ଠିର–ଅର୍ଜୁନ, ତୁମେ ବର୍ତ୍ତମାନ ଶାନ୍ତି ଓ ମୈତ୍ରୀର ବାର୍ତ୍ତା ନେଇ ମଣିପୁର ଯାତ୍ରାକର ।

ଅର୍ଜୁନ–ଶିରୋଧାର୍ଯ୍ୟ ଜ୍ୟେଷ୍ଠଭ୍ରାତ !

**୧୦ । ହାଇଫେନ୍ ବା କ୍ଷୁଦ୍ର ରେଖା ବା ଯୋଜକ ଚିହ୍ନ (-)**

✡ ହାଇଫେନ୍ ଡ୍ୟାସ୍‌ଠାରୁ ଛୋଟ ।

✡ ଗୋଟିଏ ଶବ୍ଦ ଦୁଇଟି ଧାଡ଼ିରେ ରହୁଥିଲେ ପ୍ରଥମ ଧାଡ଼ିର ଶବ୍ଦାଂଶ ପରେ ‘ହାଇଫେନ୍’ ଚିହ୍ନ ଦିଆଯାଏ । ଯଥା–

ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିରର ରତ୍ନସିଂହା-

ସନରେ ମହାପ୍ରଭୁ ଜଗନ୍ନାଥ, ଜ୍ୟେଷ୍ଠଭ୍ରାତା ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କ ସହ ବିରାଜମାନ କରିଛନ୍ତି ।

✡ ସମାସନିଷ୍ପନ୍ନ ପଦମାନଙ୍କ ମଧ୍ୟରେ ହାଇଫେନ୍ ଦିଆଯାଏ । ଯଥା–

୧ । ଧର୍ମ-ଅର୍ଥ-କାମ-ମୋକ୍ଷ ଜୀବନର ପରମ ଲକ୍ଷ୍ୟ ।

୨ । ଭାରତ ବହୁକାଳରୁ ବିଶ୍ୱରେ ସତ୍ୟ-ଶାନ୍ତି-ମୈତ୍ରୀ ଓ ସଂହତିର ବାର୍ତ୍ତା ପ୍ରଚାର କରି ଆସିଛି ।

୩ । ଉତ୍କଳ-କମଳା-ବିଳାସ-ଦୀର୍ଘିକା
ମରାଳ-ମାଳିନୀ-ନୀଳାମ୍ବୁ-ଚିଲିକା ।

**୧୧ । ବନ୍ଧନୀ ( ) [ ] { }**

ବନ୍ଧନୀକୁ ଚନ୍ଦ୍ରବନ୍ଧନୀ ( ), ବର୍ଗବନ୍ଧନୀ [ ] ଓ କୁଟିଳବନ୍ଧନୀ { } ଭାବରେ ତିନିଭାଗରେ ବିଭକ୍ତ କରାଯାଇଛି ।

✡ ବାକ୍ୟସ୍ଥ ଅର୍ଥ ବା ପଦପୁଞ୍ଜ ବା ପଦକୁ ସୁସ୍ପଷ୍ଟ କରିବାପାଇଁ ତତ୍‌ସମ୍ବନ୍ଧୀୟ ଅଧିକ କଥାକୁ ବନ୍ଧନୀବଦ୍ଧ କରିବାକୁ ପଡ଼େ । ଯଥା–

୧ । ଗାଙ୍ଗେୟ (ଗଙ୍ଗାନନ୍ଦନ ଭୀଷ୍ମ) ଥିଲେ ମହାଭାରତର ଅନ୍ୟତମ ମହନୀୟ ଚରିତ୍ର ।

୨ । ଘରପୋଡ଼ିରେ ମୋର ସର୍ବସ୍ୱ (ଧାନଚାଉଳ, ଟଙ୍କାପଇସା, ଘରଦ୍ୱାର) ଗଲା ।

୩ । ସମାଜ (ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସମ୍ବାଦପତ୍ର) ଓଡ଼ିଶାର ଦୈନିକ ସମ୍ବାଦପତ୍ରମାନଙ୍କ ମଧ୍ୟରେ ଅଗ୍ରଣୀ ।

୪ । ସଚ୍ଚିଦାନନ୍ଦ ରାଉତରାୟ (ଓଡ଼ିଆ କବିତାରେ ଆଧୁନିକତାର ପ୍ରାଣପତିଷ୍ଠାତା) ଥିଲେ ଜଣେ ପ୍ରଥିତଯଶା ଓଡ଼ିଆ କବି ।

## ଅନୁଶୀଳନୀ

୧ । ତିନୋଟି କ୍ଷେତ୍ରରେ ପ୍ରଥମଚ୍ଛେଦର ସଦୃଷ୍ଟାନ୍ତ ବ୍ୟବହାର ଉଲ୍ଲେଖ କର ।

୨ । ଉଦ୍ଧୃତି ଚିହ୍ନର ବ୍ୟବହାର ଉଦାହରଣ ଦେଇ ଲେଖ ।

୩ । ଡ୍ୟାସ୍ ଓ ହାଇଫେନ୍‌ର ବ୍ୟବହାର ଉଦାହରଣ ସହ ଲେଖ ।

୪ । ଯଥାର୍ଥ ବାକ୍ୟବିନ୍ୟାସ ଚିହ୍ନ ଲଗାଇ ବାକ୍ୟଗୁଡ଼ିକ ଲେଖ ।

(କ) ଜନକ ମିଥିଳାର ନରପତି ଜାନକୀଙ୍କର ପିତା ଥିଲେ

(ଖ) ଭାରତ ହକିରେ କ'ଣ ପୂର୍ବଗୌରବ ଫେରିପାଇବ

(ଗ) ତପସ୍ୱିନୀ ପାଠୋଇସୁନ୍ଦରୀ ଗୃହକାର୍ଯ୍ୟନିପୁଣା

(ଘ) କବି କହିଛନ୍ତି -

ମାତୃଭୂମି ମାତୃଭାଷାରେ ମମତା
ଯାହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ।

(ଙ) ମୋର ଅନେକ ବହି ଅଛି ମହାଯାତ୍ରା, ଶର୍ମିଷ୍ଠା, ଆଲେଖିକା ଓ କୋଣାର୍କ

(ଚ) ଶିକ୍ଷକ ସଦାନନ୍ଦକୁ ବହୁତ ବୁଝାଇଲେ ମାତ୍ର ସେ ବୁଝିଲା ନାହିଁ

(ଛ) ଦୀନଜନ ଶରଣ ରକ୍ଷଣ ମହାବାହୁ

(ଜ) ଯେତେବେଳେ ବିପତ୍ତି ଆସେ ସାଙ୍ଗସାଥୀ ନେଇ ଆସେ

(ଝ) ବର୍ଷାର ରିମ୍‌ଝିମ୍ ତାନ କି ମନଲୋଭା

(ଞ) ଏ ଘରେ ବିଭିନ୍ନ ପ୍ରକାର ଲୋକ ସାଧୁ ଅସାଧୁ ଦୟାଳୁ ନିର୍ଦ୍ଦୟ ଅଛନ୍ତି

(ଟ) ରାମ ରମେଶ ତୁମେ ପରୀକ୍ଷାରେ କେଉଁ ଶ୍ରେଣୀ ପାଇଲ ?
ରମେଶ ପ୍ରଥମ ଶ୍ରେଣୀ

(ଠ) ଦାସେ ରାମରାମ ମୁଁ ଏକଥା କାନରେ ଶୁଣିପାରିବି ନାହିଁ କହି ସେଠାରୁ ଚାଲିଗଲେ ।

(ଡ) ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି

(ଢ) ସଂଶିତ ଜାତୀୟ ଜୀବନ ଉତ୍କଳ ସମ୍ମିଳନୀର ଏକ ବିଶେଷ ଅଧିବେଶନରେ ପ୍ରଦତ୍ତ ଅଭିଭାଷଣର ସଂକ୍ଷିପ୍ତ ରୂପ

(ଣ) ଉତ୍କଳ ଗୌରବ ମଧୁସୂଦନ ଦାସ ୧୯୪୮-୧୯୩୪ ଥିଲେ ଓଡ଼ିଆ ଜାତୀୟତାର ମୂର୍ତ୍ତିମନ୍ତ ପ୍ରତୀକ

(ତ) ଚନ୍ଦ୍ର ଆଖିକି ଦାଉ ଦାଉ ଦିଶୁଥିଲା କିନ୍ତୁ ତାହା ଯେ କେତେ ଦୂରରେ ଥିଲା ମୁଁ ବୁଝିବି କିପରି



# ସଂକ୍ଷେପଣ (ଏକପଦୀକରଣ)

ଭାବ ବା ଅର୍ଥର ପରିବର୍ତ୍ତନ ନ କରି ବିଭିନ୍ନ ଉପାୟରେ ବାକ୍ୟକୁ ସଂକ୍ଷିପ୍ତ କରାଯାଇଥାଏ । ସଂକ୍ଷିପ୍ତ କରିବାପାଇଁ ସନ୍ଧି, ସମାସ, ଉପସର୍ଗ, କୃଦନ୍ତ, ସନନ୍ତ, ଯଙନ୍ତ, ସମାର୍ଥବୋଧକଶବ୍ଦ, ନାମଧାତୁ ଓ ତଦ୍ଧିତ ବିଧିର ଉପଯୋଗ କରିବାକୁ ପଡ଼ିଥାଏ । ଏଭଳି ସଂକ୍ଷିପ୍ତ କରିବାର ନାମ ସଂକ୍ଷେପଣ ବା ଏକପଦୀକରଣ ।

ତଳେ ପ୍ରତ୍ୟେକର ଉଦାହରଣ ଦିଆଗଲା ।

୧ । ସନ୍ଧିଦ୍ୱାରା ସଂକ୍ଷେପଣ-

ମୋର ଆଦେଶ ଅନୁସାର ତୁମେ କାର୍ଯ୍ୟ କର ।

ମୋର ଆଦେଶାନୁସାରେ (ଆଦେଶ+ଅନୁସାରେ) ତୁମେ କାର୍ଯ୍ୟ କର ।

ଧନୀଲୋକେ ବହୁ ଆଡ଼ମ୍ବରରେ ଚଳନ୍ତି ।

ଧନୀଲୋକେ ବହ୍ୱାଡ଼ମ୍ବରରେ (ବହୁ+ଆଡ଼ମ୍ବରରେ) ଚଳନ୍ତି ।

ମୁଁ କର୍ତ୍ତବ୍ୟର ଅନୁରୋଧରେ ଏ କାର୍ଯ୍ୟ କରୁଛି ।

ମୁଁ କର୍ତ୍ତବ୍ୟାନୁରୋଧରେ (କର୍ତ୍ତବ୍ୟ + ଅନୁରୋଧରେ) ଏ କାର୍ଯ୍ୟ କରୁଛି

ସେହିପରି-

| | |
|---|---|
| ଇତି + ଆଦି = ଇତ୍ୟାଦି | ସଦା + ଆନନ୍ଦ = ସଦାନନ୍ଦ |
| ଅଦ୍ୟ + ଅବଧି = ଅଦ୍ୟାବଧି | ସତ୍ + ଇଚ୍ଛା = ସଦିଚ୍ଛା |
| ବିଦ୍ୟା + ଆରମ୍ଭ = ବିଦ୍ୟାରମ୍ଭ | ବଧୂ + ଆଗମନ = ବଧ୍ୱାଗମନ |
| ନଦୀ + ଅମ୍ବୁ = ନଦ୍ୟମ୍ବୁ | ମନଃ + ଅଭୀଷ୍ଟ = ମନୋଭୀଷ୍ଟ |

**୨ । ସମାସଦ୍ୱାରା ସଂକ୍ଷେପଣ-**

ଭିକ୍ଷାର ଅଭାବ ସମୟରେ ସାଧାରଣ ଲୋକେ ବହୁ କଷ୍ଟ ପାଆନ୍ତି ।

ଦୁର୍ଭିକ୍ଷରେ ସାଧାରଣ ଲୋକେ ବହୁ କଷ୍ଟ ପାଆନ୍ତି ।

ସ୍ତ୍ରୀ ସହିତ ଧର୍ମକାର୍ଯ୍ୟ କରିବା ଉଚିତ ।

ସସ୍ତ୍ରୀକ ଧର୍ମକାର୍ଯ୍ୟ କରିବା ଉଚିତ ।

କାନରେ କହୁଥିବା ଲୋକକୁ ବିଶ୍ୱାସ କରନାହିଁ ।

କାନକୁହା ଲୋକକୁ ବିଶ୍ୱାସ କରନାହିଁ ।

ଏଠାରେ ସଂକ୍ଷିପ୍ତ ପଦଗୁଡ଼ିକ ହେଉଛି-

ଭିକ୍ଷାର ଅଭାବ = ଦୁର୍ଭିକ୍ଷ

ସ୍ତ୍ରୀ ସହିତ = ସସ୍ତ୍ରୀକ

କାନରେ କହେ ଯେ = କାନକୁହା

ସେହିପରି-

ମରଣ ପର୍ଯ୍ୟନ୍ତ = ଆମରଣ
କୂଳର ସମୀପ = ଉପକୂଳ
ନାହିଁ ଧନ ଯାହାର = ନିର୍ଦ୍ଧନ
ଯେଉଁ ନାରୀ ସୂର୍ଯ୍ୟଙ୍କୁ ଦେଖିନାହିଁ = ଅସୂର୍ଯ୍ୟମ୍ପଶ୍ୟା
ଚିତ୍ର ଉତ୍ପଳ ଅଛି ଯହିଁରେ = ଚିତ୍ରୋତ୍ପଳା
ପ୍ରତିଷ୍ଠା ଲାଭ କରିଅଛନ୍ତି ଯେ = ଲବ୍ଧପ୍ରତିଷ୍ଠ
ତ୍ରିଲୋକର ସମାହାର = ତ୍ରିଲୋକୀ
ବିଧିକୁ ଅତିକ୍ରମ ନ କରି = ଯଥାବିଧି
ଶୋଭନ ହୃଦୟ ଯାହାର = ସୁହୃଦ୍
ଯହିଁରେ କର ଦେବାକୁ ହୁଏ ନାହିଁ = ନିଷ୍କର
ଜାତ ହୋଇନାହିଁ ଶତ୍ରୁ ଯାହାର = ଅଜାତଶତ୍ରୁ
ଜାତ ହୋଇନାହିଁ ଶ୍ମଶ୍ରୁ ଯାହାର = ଅଜାତଶ୍ମଶ୍ରୁ
ଦୀର୍ଘ ସୂତ୍ର ଯାହାର = ଦୀର୍ଘସୂତ୍ରୀ/ଦୀର୍ଘସୂତ୍ର (ଯେ କାର୍ଯ୍ୟରେ ହେଳା କରେ)
ଆପଣା ଉପରେ ନିର୍ଭର କରିବା ଶୀଳ ଯାହାର = ଆତ୍ମନିର୍ଭରଶୀଳ
ପାଦଠାରୁ ମସ୍ତକ ପର୍ଯ୍ୟନ୍ତ = ଆପାଦମସ୍ତକ
କର୍ତ୍ତବ୍ୟ ସ୍ଥିର କରିବାରେ ଯେ ବିମୂଢ଼ = କିଂକର୍ତ୍ତବ୍ୟବିମୂଢ଼
ନାହିଁ ଜନ୍ମ ଯାହାର = ଅଜନ୍ମା, ଯେ ଯୋନିରୁ ଉତ୍ପନ୍ନ ହୋଇନାହିଁ = ଅଯୋନି
ଯହିଁରେ କର ଦେବାକ ହୁଏ ନାହିଁ = ନିଷ୍କର
ଯେଉଁ ସ୍ତ୍ରୀର ପ୍ରସବକାଳ ଆସନ୍ନ = ଆସନ୍ନପ୍ରସବା
ନାହିଁ ଅନ୍ୟ ଉପାୟ ଯାହାର = ଅନନ୍ୟୋପାୟ
ମୃତ ହୋଇଅଛି ଦାରା ଯାହାର = ମୃତଦାର
ଯେ ରାଜା ସେ ଋଷି = ରାଜର୍ଷି
ଗଦାକୁ ଧାରଣ କରିଅଛନ୍ତି ଯେ = ଗଦାଧର
ଯୁବତୀ ଜାୟା ଯାହାର = ଯୁବଜାନି
ସହସ୍ର ଅକ୍ଷି ଯାହାର = ସହସ୍ରାକ୍ଷ
କୁତ୍ସିତ ଆଚାର = କଦାଚାର
ସରସି ଜନ୍ମେ ଯେ = ସରସିଜ
ଶ୍ରୀଦ୍ୱାରା ସମ୍ପନ୍ନ = ଶ୍ରୀସମ୍ପନ୍ନ
ଯେଉଁ ଦେଶରେ ରାଜା ନାହିଁ = ଅରାଜକ

ଗଧୀର ଦୁଧ = ଗଧଦୁଧ, ହଂସୀର ଡିମ୍ବ = ହଂସଡିମ୍ବ
ଯୋଗରେ ଆସୀନ = ଯୋଗାସୀନ, ନଦୀମାତା ଯାହାର = ନଦୀମାତୃକ
ପାପକୁ ଆଚରଣ କରେ ଯେ = ପାପାଚାରୀ, ମିଥ୍ୟା କହେ ଯେ = ମିଥ୍ୟାବାଦୀ
ଅଜ୍ଞାନ ରୂପକ ଅନ୍ଧକାର = ଅଜ୍ଞାନାନ୍ଧକାର, କନ୍ୟା ରୂପକ ରତ୍ନ = କନ୍ୟାରତ୍ନ
ବିଗତ ପତ୍ନୀ ଯାହାର = ବିପତ୍ନୀକ, ବିରୂପ ଅକ୍ଷି ଯାହାଙ୍କର = ବିରୂପାକ୍ଷ
ଶତ ଅବ୍ଦର ସମାହାର = ଶତାବ୍ଦୀ, ଚଉପଦର ସମାହାର = ଚଉପଦୀ
ମୂର୍ତ୍ତିର ସଦୃଶ = ପ୍ରତିମୂର୍ତ୍ତି, ରୂପର ଯୋଗ୍ୟ = ଅନୁରୂପ
ବନ୍ଦୋବସ୍ତର ଅଭାବ = ବେବନ୍ଦୋବସ୍ତ, କୂଳର ବିପରୀତ = ପ୍ରତିକୂଳ
ବିଗତ ନିଦ୍ରା ଯାହାର = ବିନିଦ୍ର, ପୁଣ୍ଡରୀକ ପରି ଅକ୍ଷି ଯାହାର = ପୁଣ୍ଡରୀକାକ୍ଷ

୩। **ଉପସର୍ଗଦ୍ୱାରା ସଂକ୍ଷେପଣ :**

ପଛେ ପଛେ ଗମନ କରିବା = ଅନୁଗମନ
ଊର୍ଦ୍ଧ୍ୱକୁ ଶ୍ୱାସ = ଉଚ୍ଛ୍ୱାସ ଈଷତ୍ ସିଝା = ଦରସିଝା
ସମ୍ୟକ୍ ଭାଷଣ = ସମ୍ଭାଷଣ ପକ୍ଷର ବିପରୀତ = ବିପକ୍ଷ
ଊର୍ଦ୍ଧ୍ୱକୁ କ୍ଷିପ୍ତ = ଉତ୍କ୍ଷିପ୍ତ ଈଷତ୍ ରକ୍ତ = ଆରକ୍ତ

୪। **କୃଦନ୍ତଦ୍ୱାରା ସଂକ୍ଷେପଣ :**

ଉପକାର କରେ ଯେ = ଉପକାରୀ (ଉପ- କୃ+ଇନ୍)
ଧର୍ମ ଜାଣନ୍ତି ଯେ = ଧର୍ମବିତ୍ (ଧର୍ମ- ବିଦ୍+କ୍ୱିପ୍)
ଯାହା ଶୁଣାଯାଇଛି = ଶ୍ରୁତ (ଶ୍ରୁ + ତ)
ଯାହା ଛାଦନ କରେ = ଛତ୍ର (ଛଦ୍ + ତ୍ର)
ଯାହାର ନଷ୍ଟ ହୋଇଯିବାର ସ୍ୱଭାବ ଅଛି = ନଶ୍ୱର (ନଶ୍ + ୱର)
ଦାନ କରେ ଯେ = ଦାତା (ଦା + ତୃ)
ଜଳରେ ଜାତ ହୁଏ ଯାହା = ଜଳଜ (ଜଳ- ଜନ୍ + ଅ)
ଯେ ଜଳୁଅଛି = ଜଳନ୍ତା (ଜଳ୍ + ଅନ୍ତା)

ସେହିପରି-

ପଢ଼ିବା ସ୍ୱଭାବ ଯାହାର = ପଢୁଆ ଯେ ପାଠକରେ = ପାଠକ
ଶତ୍ରୁକୁ ବଧ କରିଅଛି ଯେ = ଶତ୍ରୁଘ୍ନ ଯେ ନୃତ୍ୟକରେ = ନର୍ତ୍ତକ
ଆଗରେ ଜନ୍ମିଅଛି ଯେ = ଅଗ୍ରଜ ଯେ ଭିକ୍ଷାକରେ = ଭିକ୍ଷୁକ
ଯେ ପୂଜାର ଯୋଗ୍ୟ = ପୂଜ୍ୟ; ପୂଜନୀୟ ଦାନର ଯୋଗ୍ୟ = ଦେୟ
ପରକୁ ତାପ ଦିଏ ଯେ = ପରନ୍ତପ ଯାହା କରିବା ଉଚିତ = କର୍ତ୍ତବ୍ୟ
ବିହାୟସ୍‌ରେ ଗମନ କରେ ଯେ = ବିହଗ/ବିହଙ୍ଗ/ବିହଙ୍ଗମ

ହୃଦୟକୁ ହରଣ କରେ ଯେ = ହୃଦୟହାରୀ
ଯାହାକୁ ଶାସନ କରାଯାଏ ସେ = ଶିଷ୍ୟ
ଶିକ୍ଷା ପାଇଛି ଯେ = ଶିକ୍ଷିତ
ଯାହାକୁ ଭୋଜନ କରାଯାଏ = ଭୋଜ୍ୟ
ଯହିଁରେ ଶୟନ କରାଯାଏ = ଶଯ୍ୟା
ଯାହାଦ୍ୱାରା ଖେଳାଯାଏ = ଖେଳଣା

୫ । **ସନନ୍ତଦ୍ୱାରା ସଂକ୍ଷେପଣ-**

ଭୋଜନ କରିବାର ଇଚ୍ଛା = ବୁଭୁକ୍ଷା
ପାନ କରିବାକୁ ଇଚ୍ଛୁକ = ପିପାସୁ
ବିଚାର କରିବାର ଇଚ୍ଛା = ମୀମାଂସା (ମାନ୍-ବିଚାର/ନିଷ୍ପତ୍ତି କରିବା)
ଜୟ କରିବାକୁ ଇଚ୍ଛା କରୁଥିବା ଲୋକ = ଜିଗୀଷୁ
କରିବାର ଇଚ୍ଛା = ଚିକୀର୍ଷା     ହତ୍ୟା କରିବାର ଇଚ୍ଛା = ଜିଘାଂସା
ଦେଖିବାକୁ ଇଚ୍ଛୁକ = ଦିଦୃକ୍ଷୁ     ଲାଭ କରିବାର ଇଚ୍ଛା = ଲିପ୍ସା
ଜାଣିବାର ଇଚ୍ଛା = ଜିଜ୍ଞାସା     କହିବାର ଇଚ୍ଛା = ବିବକ୍ଷା

୬ । **ଯଙନ୍ତଦ୍ୱାରା ସଂକ୍ଷେପଣ-**

ପୁନଃପୁନଃ ଜଳୁଥିବା = ଜାଜ୍ୱଲ୍ୟମାନ
ବାରମ୍ବାର ଦୀପ୍ତ ହେଉଥିବା = ଦେଦୀପ୍ୟମାନ
ପୁନଃପୁନଃ ରୋଦନ କରୁଥିବା (ସ୍ତ୍ରୀ) = ରୋରୁଦ୍ୟମାନା

୭ । **ନାମଧାତୁଦ୍ୱାରା ସଂକ୍ଷେପଣ-**

ଦଣ୍ଡପରି ଠିଆ ହୋଇଥିବା = ଦଣ୍ଡାୟମାନ
କରତରେ କାମ କରିବା = କରତିବା
ବାଟକୁ ପଠେଇବା = ବାଟେଇବା
ଠକ ପରି ଆଚରଣ କରିବା = ଠକିବା
ଫେଣ ପରି କରିବା = ଫେଣେଇବା
ବଉଳ ଧରିବା = ବଉଳିବା
କାନଡେରି ଶୁଣିବା = କାନେଇବା
ବାଡ଼ିରେ ଆଘାତ କରିବା = ବାଡ଼େଇବା
ଛୋଟା ଭଳି ଆଚରଣ କରିବା = ଛୋଟେଇବା
ଖୁଣ ବାଛିବା = ଖୁଣିବା
ତଳେ ପେଟଲଗାଇ ଗତି କରିବା = ପେଟେଇବା

୮ । **ତଦ୍ଧିତଦ୍ୱାରା ସଂକ୍ଷେପଣ :**

ଯଶ ଅଛି ଯାହାର = ଯଶୋବନ୍ତ, ଯଶସ୍ୱୀ

ଡରିବା ସ୍ୱଭାବ ଯାହାର = ଡରକୁଳା, ଡରୁଆ

ପାନ ବ୍ୟବସାୟ ଯାହାର = ପାନରା

ଧୂଆଁ ଯୁକ୍ତ ହୋଇଛି ଯହିଁରେ = ଧୂଆଁଳିଆ

ଭାଇ ସମ୍ବନ୍ଧୀୟ = ଭାଇଆଳି

ପୁଅଠାରୁ ଟିକିଏ ଊଣା =ପୁତୁରା

ସାଧୁର ଭାବ = ସାଧୁତା

ଭସ୍ମରେ ପରିଣତ ହୋଇଛି ଯେ = ଭସ୍ମସାତ୍

ଆଷାଢ଼ ମାସରେ ଜାତ = ଆଷାଢୁଆ

ଜନକଙ୍କର କନ୍ୟା = ଜାନକୀ

## ଅନୁଶୀଳନୀ

୧ । ଏକ ପଦରେ ପ୍ରକାଶ କର –

ମଧୁର ଭାବ, ନାହିଁ ମମତା ଯାହାର, ପୂର୍ବେ ଶୀତଳ ହୋଇ ନ ଥିଲା ଏବେ କରାଯାଉଛି, ଯାହା ଦାନର ଯୋଗ୍ୟ, ନିଦେଇବା ସ୍ୱଭାବ ଯାହାର, ଚିତ୍ରା ନକ୍ଷତ୍ରରେ ଯୁକ୍ତ, କୁଳାଠାରୁ ଛୋଟ, ଶାଗ ପରି ଦେଖିବାକୁ ଯାହା, ମହାଜନର କର୍ମ, ଯଶ ଅଛି ଯାହାର, ଦନ୍ତ ସମ୍ବନ୍ଧୀୟ, ସ୍ଥିରର ଭାବ, ଧୂମରେ ବ୍ୟାପ୍ତ, ଅନ୍ୟପ୍ରକାର, ଜନସମୂହ, ଚୋରର ସ୍ୱାର୍ଥ, ଭଗିନୀର ଅପତ୍ୟ, ଜଳରେ ବ୍ୟାପ୍ତ, ମାଟିରେ ତିଆରି ।

୨ । ତଳଲିଖିତ ବାକ୍ୟଗୁଡ଼ିକୁ ସଂକ୍ଷିପ୍ତ କର–

ପର୍ବତଙ୍କର କନ୍ୟାଙ୍କୁ ପାଣିରେ ପିନାକ ଧରିଥିବା ପ୍ରଭୁ ବିବାହ କରିଥିଲେ । ପଶୁପରି ଆଚରଣ ମନୁଙ୍କ ସନ୍ତାନ ପାଖରେ ସୁନ୍ଦର ନୁହେଁ । ଯାହା ପୂର୍ବରୁ କେବେ ଦେଖାଯାଇ ନ ଥିଲା, ସେପରି ଦୃଶ୍ୟ ଦେଖି ମୁଁ ପୂର୍ବରୁ ସ୍ତମ୍ଭପରି ହୋଇ ନ ଥିଲେ ମଧ୍ୟ ପରେ ହୋଇଗଲି । ନଦୀ ମାଆ ପରି ଆଚରଣ କରୁଥିବା ଭାରତବର୍ଷରେ ଆମ୍ଭମାନଙ୍କର ଜନ୍ମ । ପଶୁମାନଙ୍କର ରାଜା ସିଂହ ନଗମାନଙ୍କରେ ଇନ୍ଦ୍ର ହିମ ଆଳୟଙ୍କର ନନ୍ଦିନୀ ପାର୍ବତୀଙ୍କର ବାହନ ଅଟେ । ମୋର ପିତୃସମ୍ବନ୍ଧୀୟ ସମ୍ପତ୍ତିରୁ କାହାକୁ କିଛି ଦେଇପାରିବି ନାହିଁ । ପରିବେଶ ବଷୟରେ ଯେଉଁମାନଙ୍କର ବିଶେଷ ଜ୍ଞାନ ଅଛି ସେମାନେ ପୃଥିବୀର ସୁରକ୍ଷାପାଇଁ କାର୍ଯ୍ୟ କରିବା ଉଚିତ । ମୁକ୍ତି ଇଚ୍ଛା କରୁଥିବା ଲୋକ ସର୍ବଜନର ହିତ ହେବାଭଳି କାର୍ଯ୍ୟରେ ଲିପ୍ତ ହୁଏ । ମନସମ୍ବନ୍ଧୀୟ ବିକାଶ ଶରୀର ସମ୍ବନ୍ଧୀୟ ସୁସ୍ଥର ଭାବ ଉପରେ ନିର୍ଭର କରେ । ମିଥିଳାର ଅଧିପତି ଜନକ ତତ୍ତ୍ୱକୁ ଦର୍ଶନ କରିଥିବା ରାଜର୍ଷି ଥିଲେ ।



# ଶବ୍ଦବୈଶିଷ୍ଟ୍ୟ

## (କ) ଶବ୍ଦଶକ୍ତି

ମନର ଏକ ଭାବକୁ ପୂର୍ଣ୍ଣରୂପେ ପ୍ରକାଶ କରୁଥିବା ସାର୍ଥକ ପଦସମଷ୍ଟିକୁ ବାକ୍ୟ କହନ୍ତି । ବାକ୍ୟାନ୍ତର୍ଗତ ପ୍ରତ୍ୟେକ ପଦର କିଛି ନା କିଛି ଅର୍ଥ ଅଛି; ମାତ୍ର ବେଳେବେଳେ ବିଭିନ୍ନ କ୍ଷେତ୍ରରେ ବା ପ୍ରସଙ୍ଗ ଅନୁସାରେ ପଦ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରିଥା'ନ୍ତି । ଯେଉଁ ଅର୍ଥରେ ଯେଉଁ ପଦ ବ୍ୟବହୃତ ହୁଏ, ତାହାକୁ ଶବ୍ଦର 'ଶକ୍ତି' କହନ୍ତି । ଶବ୍ଦଶକ୍ତି ତିନିଭାଗରେ ବିଭକ୍ତ । ଯଥା- (୧) ଅଭିଧା ଶକ୍ତି, (୨) ଲକ୍ଷଣା ଶକ୍ତି ଓ (୩) ବ୍ୟଞ୍ଜନା ଶକ୍ତି ।

**୧ । ଅଭିଧା ଶକ୍ତି :**

ଯେତେବେଳେ ବାକ୍ୟର ପ୍ରତ୍ୟେକ ପଦ ନିଜର ସ୍ୱାଭାବିକ ବା ମୌଳିକ ଅର୍ଥକୁ ପ୍ରକାଶ କରନ୍ତି, ସେତେବେଳେ ସେହି ଅର୍ଥକୁ ଶବ୍ଦର ଅଭିଧା ଶକ୍ତି ବୋଲି କୁହାଯାଏ । ଯଥା-

- ପ୍ରାଣୀ ମରଣଶୀଳ ଅଟେ ।
- ଛାତ୍ରଛାତ୍ରୀ ଖେଳପଡ଼ିଆରେ ଖେଳୁଛନ୍ତି ।
- ଆକାଶରେ ଚନ୍ଦ୍ର ଉଦୟ ହେଲେ ।

ଉଦାହରଣ ତିନୋଟିରେ ପ୍ରଦତ୍ତ ପ୍ରତ୍ୟେକ ପଦ (ବ୍ୟବହୃତ ଶବ୍ଦ) ନିଜ ସ୍ୱାଭାବିକ ଅର୍ଥ ପ୍ରକାଶ କରୁଛନ୍ତି । ଅର୍ଥାତ୍ ପ୍ରତ୍ୟେକ ଶବ୍ଦ ଅଭିଧେୟ ଅର୍ଥରେ ବ୍ୟବହୃତ । ଏଣୁ ଏହି ଅର୍ଥକୁ ଅଭିଧେୟାର୍ଥ କହନ୍ତି । ଏହାକୁ ମଧ୍ୟ ବାଚ୍ୟାର୍ଥ କୁହାଯାଏ ।

**୨ । ଲକ୍ଷଣା ଶକ୍ତି :**

ଶବ୍ଦର ଯେଉଁ ଶକ୍ତି ଆକ୍ଷରିକ ଅର୍ଥକୁ ବାଧାଦେଇ ଆକ୍ଷରିକ ଅର୍ଥ ସହିତ ସମ୍ପୃକ୍ତ ଅନ୍ୟ ଅର୍ଥକୁ ବୁଝାଏ, ସେହି ଶକ୍ତିକୁ ଲକ୍ଷଣାଶକ୍ତି କୁହାଯାଏ । ଯଥା-

- ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶା ଦରିଦ୍ର ।

ଦରିଦ୍ର ଅର୍ଥ ଅଭାବଗ୍ରସ୍ତ । ତାହା ମନୁଷ୍ୟଠାରେ କେବଳ ସମ୍ଭବ । ଓଡ଼ିଶା ପ୍ରଦେଶ ଭାରତର ଅଂଶବିଶେଷର ନାମ । ତାହାଠାରେ ଦାରିଦ୍ର୍ୟ ଗୁଣ ସମ୍ଭବପର ନୁହେଁ । ଏଣୁ 'ଓଡ଼ିଶା' ଓ 'ଦରିଦ୍ର' ଶବ୍ଦଦ୍ୱୟ ଅଭିଧେୟାର୍ଥ ସମ୍ପର୍କିତ ନୁହେଁ । ଏଣୁ 'ଓଡ଼ିଶା' ଅର୍ଥ ଏଠାରେ ଓଡ଼ିଶାବାସୀ ଏବଂ ଓଡ଼ିଶାବାସୀ ଦରିଦ୍ର- ଏହି ଅର୍ଥ ବୁଝିବାକୁ ହେବ । ଏହା ଶବ୍ଦର ଲକ୍ଷଣା ଶକ୍ତିଦ୍ୱାରା ବୁଝାଗଲା । ଅତଏବ ଏହି ଅର୍ଥକୁ ଲକ୍ଷ୍ୟାର୍ଥ କୁହାଯାଏ । ସେହିପରି-

- ମଧୁଆର ମେଣ୍ଢାମୁଣ୍ଡ, ସେ କ'ଣ ହାରିଯିବ ?
- ଗଙ୍ଗାଧର ଜଣେ ଗୋରୁ ପରି ମଣିଷ ।
- ମାଡ଼ ଖାଇଖାଇ ପିଲାଟିର ପିଠି ପଥର ହୋଇଗଲାଣି ।
- ପ୍ରାଚୀନ ଉତ୍କଳ ନୌବାଣିଜ୍ୟରେ ଧୁରୀଣ ଥିଲା ।
- ଅତୀତକାଳର ଭାରତ ଜ୍ଞାନର ଗନ୍ତାଘର ଥିଲା ।
- ମଦରଟେରେସା ଥିଲେ ମମତାର ପ୍ରତିମୂର୍ତ୍ତି ।
- ଆସିଲାବେଳେ ବିପଦ ସାଙ୍ଗସାଥୀ ନେଇ ଆସେ ।

୩ । **ବ୍ୟଞ୍ଜନା ଶକ୍ତି :**

ଯେଉଁ ଶକ୍ତିଦ୍ୱାରା ଶବ୍ଦ ବା ବାକ୍ୟ ନିଜର ଆକ୍ଷରିକ ଅର୍ଥ ତ୍ୟାଗ କରି ନୂତନ ଅର୍ଥ ପ୍ରକାଶ କରେ, ତାହାକୁ ବ୍ୟଞ୍ଜନା ଶକ୍ତି କହନ୍ତି । ଏ ପ୍ରକାର ଅର୍ଥକୁ ବ୍ୟଙ୍ଗ୍ୟାର୍ଥ କୁହାଯାଏ । ଯଥା–

- କାହାପାଇଁ ମୁଣ୍ଡ ବଥାଇବ ।

ଏଠାରେ ମୁଣ୍ଡ ବଥାଇବା ଅର୍ଥ କାହା କଥା କିଏ ବା ଭାବିବ ।

- ବାବୁଙ୍କ କଲମ ତାଜା ରହୁ ।

ଏଠାରେ ବାବୁ କର୍ମକ୍ଷେତ୍ରରେ ସୁନାମ ଅର୍ଜନ କରନ୍ତୁ ।

ଏଠାରେ ଦୁଇଟିଯାକ ଉଦାହରଣର ଆକ୍ଷରିକ ଅର୍ଥ ପରିବର୍ତ୍ତେ ନୂତନ ଅର୍ଥ ପ୍ରକାଶିତ ହେଉଛି । ଏହାକୁ ବ୍ୟଙ୍ଗ୍ୟାର୍ଥ କହନ୍ତି ।

- ନମସ୍କାର, ମୁଁ ଆସୁଛି ।

ଏଠାରେ 'ମୁଁ ଆସୁଛି' ବାକ୍ୟ ବିପରୀତ ଭାବରେ 'ମୁଁ ଯାଉଛି' ଅର୍ଥ ପ୍ରକାଶ କରୁଛି । ଏହା ବ୍ୟଞ୍ଜନାଶକ୍ତି ତଥା ବ୍ୟଙ୍ଗ୍ୟାର୍ଥର ଉଦାହରଣ ।

- ଝିଅଲୋ, ତୋର ହାତକାଚ ବଜ୍ର ହେଉ ।

ଏଠାରେ ବାକ୍ୟଟିର ବ୍ୟଙ୍ଗ୍ୟାର୍ଥ ହେଉଛି 'ତୋ ସ୍ୱାମୀ ଦୀର୍ଘଜୀବୀ' ହୁଅନ୍ତୁ ।

- ସେ ଜଣେ ଦାତାକ୍ଷଣ୍ଡ । ବାକ୍ୟଟିର ବ୍ୟଙ୍ଗ୍ୟାର୍ଥ– ସେ ଜଣେ କୃପଣ ।
- ସେ ମଲାମାଛିକି ମ କହେ ନାହିଁ ।

ବାକ୍ୟଟିର ବ୍ୟଙ୍ଗ୍ୟାର୍ଥ ହେଉଛି 'ସେ ନିରୀହ ଲୋକ' ।

ସେହିପରି– ମୁଖ୍ୟବକ୍ତା ତାଙ୍କ ଭାଷଣବନ୍ୟାରେ ଲୋକଙ୍କୁ ଉବୁଟୁବୁ କରିଦେଲେ ।

- ନେତାମାନେ ନିର୍ବାଚନରେ ଜିତିଲେ ଦେଶବାସୀଙ୍କୁ ଘିଅମହୁରେ ଭସାଇଦେବାର ପ୍ରତିଶ୍ରୁତି ଦିଅନ୍ତି ।
- ମାଲୋ, ବୁଢ଼ୀଟିଏ ହୋଇଥା ।

ବହୁକାଳରୁ ଓଡ଼ିଆ ଭାଷାରେ ଲକ୍ଷ୍ୟାର୍ଥ ଓ ବ୍ୟଙ୍ଗ୍ୟାର୍ଥ ସମ୍ବଳିତ ଶବ୍ଦ, ବାକ୍ୟ, ବାକ୍ୟାଂଶ ବ୍ୟବହୃତ ହୋଇ ଭାଷାସୌଷ୍ଠବ ପ୍ରକାଶ କରୁଛନ୍ତି । ଆମର ଅନେକ ଲୋକୋକ୍ତି ଓ ରୂଢ଼ି ଏହି ଲକ୍ଷ୍ୟାର୍ଥ ଓ ବ୍ୟଙ୍ଗାର୍ଥ ଉପରେ ପର୍ଯ୍ୟବସିତ । ଲକ୍ଷଣାଶକ୍ତି ଓ ବ୍ୟଞ୍ଜନାଶକ୍ତି ସାରସ୍ୱତ ସୃଷ୍ଟିକୁ ମଧୁର ଓ ରସାଳ କରିଥାଏ ।

## ଶବ୍ଦାର୍ଥ

ରୂପିମ ବା ରୂପିମସମୂହ ପଦ୍ଧତିବଦ୍ଧ ହେଲେ ଶବ୍ଦ ହୁଏ । (ଅଥବା ସାର୍ଥକ ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟିକୁ ଶବ୍ଦ କୁହାଯାଏ ।) ଗୋଟିଏ ଭାଷାରେ ନିର୍ଦ୍ଦିଷ୍ଟ ଧ୍ୱନି ସଙ୍କେତ ପଦ୍ଧତିବଦ୍ଧ ବା ଶ୍ରେଣୀବଦ୍ଧ ହୋଇ ରୂପିମ ଗଠନ କରିଥା'ନ୍ତି; ସେହିପରି ଏକ ବା ଏକାଧିକ ରୂପିମ ପଦ୍ଧତିବଦ୍ଧ ହୋଇ ଶବ୍ଦ ଗଠନ କରୁଥିବା କଥା ଆଲୋଚିତ ହୋଇଛି । ଗୋଟିଏ ଭାଷାର ଏକ ଶବ୍ଦର ଅର୍ଥ ସେହି ଭାଷାଭାଷୀଙ୍କ ମଧ୍ୟରେ ଆବଦ୍ଧ; ମାତ୍ର ଅନ୍ୟ ଭାଷାରେ ଅନୁରୂପ ଅର୍ଥ ପାଇଁ ଭିନ୍ନ ପଦ୍ଧତିବଦ୍ଧ ଧ୍ୱନି ସଙ୍କେତ ସାହାଯ୍ୟରେ ଭିନ୍ନ ରୂପିମବିଶିଷ୍ଟ ଶବ୍ଦ ଗଠିତ ହୋଇଥାଏ । ଉଦାହରଣ ସ୍ୱରୂପ ଓଡ଼ିଆ ଭାଷାରେ ବିରାଡ଼ି (ବ୍+ଇ+ର୍+ଆ+ଡ୍+ଇ) ଶବ୍ଦ ବନ୍ଧନୀ ମଧ୍ୟସ୍ଥ ପଦ୍ଧତିବଦ୍ଧ ଧ୍ୱନି ସଙ୍କେତ ମାଧ୍ୟମରେ ଯେଉଁ ଅର୍ଥ ପ୍ରକାଶ କରୁଛି ଇଂରାଜୀ Cat (Keet) ଶବ୍ଦ ବନ୍ଧନୀ ମଧ୍ୟସ୍ଥ ଭିନ୍ନ ପଦ୍ଧତି ବଦ୍ଧ ଧ୍ୱନି ସଙ୍କେତ ମାଧ୍ୟମରେ ଠିକ୍ ସେହି ଅର୍ଥ ପ୍ରକାଶ କରିପାରୁଛି । ଏଥିରୁ ଅନୁମିତ ହେଉଛି ଯେ ବିଭିନ୍ନ ଧ୍ୱନିସଂକେତ ପଦ୍ଧତିବଦ୍ଧ ହୋଇ ବିଭିନ୍ନ ରୂପିମ ବା ଶବ୍ଦ ଭାବରେ ଯେଉଁ ଅର୍ଥ ପ୍ରକାଶ କରିଥା'ନ୍ତି, ସେହି ଅର୍ଥ ସହ ପଦ୍ଧତିବଦ୍ଧ ଧ୍ୱନିସଙ୍କେତର ସମ୍ପର୍କ ପ୍ରାକୃତିକ ହୋଇ ନ ଥାଏ । ଏହାର ଯଥାର୍ଥତା ତଳ ଉଦାହରଣରୁ ଅନୁମେୟ ।

ଉଦାହରଣ ସ୍ୱରୂପ ଓଡ଼ିଆ ଭାଷାରେ 'ରେଜା' ଶବ୍ଦଟି କେଉଁ ଅଞ୍ଚଳରେ 'ଖୁଚୁରା ପଇସା'କୁ ବୁଝାଏ ତ ଅନ୍ୟ କେଉଁଠି 'ମୂଲିଆଣୀକୁ' ବୁଝାଇଥାଏ । ସେହିପରି 'ଛେନା' ଶବ୍ଦଟି ଉପକୂଳ ଅଞ୍ଚଳରେ ଦୁଗ୍ଧଜାତ ଖାଦ୍ୟ ପଦାର୍ଥ ବୁଝାଏ ତ ସମ୍ବଲପୁର ଅଞ୍ଚଳରେ ଘଷି (ଶୁଖିଲା ଗୋବର) ଅର୍ଥ ପ୍ରକାଶ କରିଥାଏ । 'ମାଖନ' ଶବ୍ଦଟି ସେହିପରି ଅଞ୍ଚଳ ଭେଦରେ ଲହୁଣି ଓ କଖାରୁ ଅର୍ଥ ପ୍ରକାଶକ । ଏହିପରି ବ୍ୟବହାର, ସ୍ଥାନ, ପ୍ରସଙ୍ଗ ବା ପରିସ୍ଥିତି ଓ ସମୟ ଭେଦରେ ଶବ୍ଦର ଅର୍ଥରେ ଭିନ୍ନତା ବା ପରିବର୍ତ୍ତନ ପରିଲକ୍ଷିତ ହୋଇଥାଏ । ଶବ୍ଦାର୍ଥର ଏହି ପରିବର୍ତ୍ତନ ପାଞ୍ଚ ପ୍ରକାର ।

**୧ । ଅର୍ଥ ସଙ୍କୋଚନ :**

ପ୍ରଥମେ ବ୍ୟାପକ ଅର୍ଥ ପ୍ରକାଶ କରୁଥିବା ଏକ ଶବ୍ଦ ସମୟକ୍ରମେ ସୀମିତ ଅର୍ଥ ପ୍ରକାଶ କଲେ, ସେହି ଶବ୍ଦର ଅର୍ଥ ସଙ୍କୋଚନ ପରିବର୍ତ୍ତନ ହୋଇଛି ବୋଲି କୁହାଯାଏ ।

ପୂର୍ବେ ସୁଗନ୍ଧ ଓ ଦୁର୍ଗନ୍ଧ ଉଭୟ ଅର୍ଥକୁ ବୁଝାଉଥିବା 'ଗନ୍ଧ' ଶବ୍ଦଟି ଆଜି ଦୁର୍ଗନ୍ଧଦ୍ୟୋତକ । ସେହିପରି ଅନ୍ନ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ଯେ କୌଣସି ଖାଦ୍ୟ ପଦାର୍ଥ (ଅଦ୍+ତ); ମାତ୍ର ଆଜି ଏହା କେବଳ 'ଭାତ' ଅର୍ଥ ବୁଝାଉଛି । ସାଧାରଣ ପଶୁ ଅର୍ଥ ପ୍ରକାଶ କରୁଥିବା 'ମୃଗ' ଶବ୍ଦର ଅର୍ଥ ସଙ୍କୁଚିତ ହୋଇ ନିର୍ଦ୍ଦିଷ୍ଟ ପଶୁ 'ହରିଣ' ଅର୍ଥରେ ବ୍ୟବହୃତ । ଅତୀତରେ ଶ୍ରଦ୍ଧାଯୁକ୍ତ ଯେ କୌଣସି କାର୍ଯ୍ୟକୁ 'ଶ୍ରାଦ୍ଧ' କୁହାଯାଉଥିଲା ବେଳେ, ଏବେ ମୃତବ୍ୟକ୍ତି ଉଦ୍ଦେଶ୍ୟରେ ପିଣ୍ଡଦାନାଦି କାର୍ଯ୍ୟକୁ ଶ୍ରାଦ୍ଧ କୁହାଯାଉଛି ।

**୨ । ଅର୍ଥ ସଂପ୍ରସାରଣ :**

ପୁର୍ବେ ସୀମିତ ଅର୍ଥରେ ବ୍ୟବହୃତ ହେଉଥିବା ଶବ୍ଦ ପରେ ବ୍ୟାପକ ଅର୍ଥରେ ବ୍ୟବହୃତ ହେଲେ ଅର୍ଥାତ୍ ଶବ୍ଦର ଅର୍ଥ ଯେତିକି ପଦାର୍ଥକୁ ବୁଝାଉଥିଲା ତଦପେକ୍ଷା ଅଧିକ ପଦାର୍ଥକୁ ବୁଝାଇଲେ ଶବ୍ଦଟିର ଅର୍ଥ ସମ୍ପ୍ରସାରଣ ହୋଇଛି ବୋଲି ଜଣାଯାଏ । ଏହାକୁ ମଧ୍ୟ ଅର୍ଥବିସ୍ତାର୍ କୁହାଯାଏ । ନିମ୍ନ ଉଦାହରଣଗୁଡ଼ିକ ଦ୍ରଷ୍ଟବ୍ୟ-

**ତେଲ** - ପୂର୍ବେ ତିଳ ବା ରାଶିରୁ ଉତ୍ପନ୍ନ ରସକୁ ତେଲ କୁହାଯାଉଥିଲା । ପରେ ନଡ଼ିଆ, ସୋରିଷ, ସୂର୍ଯ୍ୟମୁଖୀ, ସୋୟାବିନ୍ ଓ ଜଡ଼ାର ନିର୍ଯାସକୁ ତେଲ କୁହାଯାଉଛି । ଏପରିକି ପେଟ୍ରୋଲ, ଡିଜେଲ ଓ କିରୋସିନି ପରି ଖଣିଜ ତରଳ ଦ୍ରବ୍ୟ ତେଲ ଭାବରେ ପରିଗଣିତ ।

**ଚାଷ** - ପ୍ରଥମେ 'ଚାଷ' ଶବ୍ଦ ଲଙ୍ଗଳଦ୍ୱାରା ଭୂମିକର୍ଷଣ ଅର୍ଥ ପ୍ରକାଶ କରୁଥିଲା । ସମ୍ପ୍ରତି ମାଛଚାଷ, କୁକୁଡ଼ା ଚାଷ, ମହୁ ଚାଷ, ନଡ଼ିଆ ଚାଷ, ଘାସ ଚାଷ, ଫଳ ଚାଷ ଓ ଫୁଲ ଚାଷ ଆଦି ବିଭିନ୍ନ ଉତ୍ପାଦନ ସମ୍ବନ୍ଧୀୟ ଅର୍ଥ ପ୍ରକାଶ କରୁଛି ।

**କୁଶଳ** - ଏହାର ପ୍ରାଚୀନ ତଥା ମୌଳିକ ଅର୍ଥ ହେଲା 'କୁଶ' ଉତ୍ପାଟନକାରୀ ବ୍ୟକ୍ତି । କୁଶ ଉତ୍ପାଟନ ଥିଲା ଏକ ଆୟାସ ସାଧ୍ୟ ବ୍ୟାପାର; ମାତ୍ର ପରବର୍ତ୍ତୀ କାଳରେ କୌଣସି କାର୍ଯ୍ୟରେ ସଫଳତା ହାସଲ କରିଥିବା ଲୋକପାଇଁ 'କୁଶଳ' ଶବ୍ଦ ବ୍ୟବହୃତ ।

**ମାରିବା** - ଏହି ଶବ୍ଦର ମୂଳ ଅର୍ଥ ଥିଲା ଜୀବନରେ ମାରିଦେବା । ସମୟ କ୍ରମେ ମାରିବା ଶବ୍ଦଟି ବିଭିନ୍ନ ବିଶେଷ୍ୟ ପଦ ସହ ଯୁକ୍ତ ହୋଇ ରୂଢ଼ି ଅର୍ଥ ଗ୍ରହଣ କରି ସମ୍ପ୍ରସାରିତ ହୋଇଛି । ଯଥା- ଘିଅ ମାରିବା, ଜୀବିକା ମାରିବା, ପେଟ ମାରିବା, ଦାନା ମାରିବା ଓ ମନ ମାରିବା ପ୍ରଭୃତି ।

ପ୍ରଦତ୍ତ ଉଦାହରଣଚୟ 'ମାରିବା' ଶବ୍ଦର ଅର୍ଥ ସମ୍ପ୍ରସାରଣର ଏକ ଏକ ଉଦାହରଣ ।

**୩ । ଅର୍ଥାଦେଶ :**

ଏକ ଶବ୍ଦ ପୂର୍ବର ମୌଳିକ ଅର୍ଥକୁ ପରିତ୍ୟାଗ କରି ପରେ ଭିନ୍ନ ଏକ ଅର୍ଥ ପ୍ରକାଶ କଲେ, ସେହି ପରିବର୍ତ୍ତନକୁ ଅର୍ଥାଦେଶ କୁହାଯାଏ । ଯଥା-

**ମୌନ** – ପ୍ରଥମେ ଶବ୍ଦଟି ମୁନିଙ୍କର କର୍ମ (ମୁନି + ଅ) ତପସ୍ୟାକୁ ବୁଝାଉଥିଲା; ମାତ୍ର ମୌନ ଶବ୍ଦ ଏବେ 'ନୀରବତା' ଅର୍ଥ ପ୍ରକାଶ କରୁଛି ।

**ରାଗ** – ପୂର୍ବେ ଏହି ଶବ୍ଦଟିର ବ୍ୟାବହାରିକ ଅର୍ଥ ଥିଲା 'ଆସକ୍ତି' । ବର୍ତ୍ତମାନ ଏହା 'କ୍ରୋଧ' ଅର୍ଥରେ ବ୍ୟବହୃତ ।

**ଉଧାର** – ଏହା ସଂସ୍କୃତ 'ଉଦ୍ଧାର' ଶବ୍ଦ ସମ୍ବନ୍ଧୀୟ; ଯାହାର ଅର୍ଥ ଯୁକ୍ତ ହେବା । ଅଧୁନା ଓଡ଼ିଆ ଭାଷାରେ ଏହା ଧାର ବା ଋଣ କରିବା ଅର୍ଥରେ ବ୍ୟବହୃତ ।

**ମହୁର** – ମିଷ୍ଟ (ମିଠା) ଅର୍ଥକ ସଂସ୍କୃତ 'ମଧୁର' ଶବ୍ଦରୁ ଏହି ଶବ୍ଦ ଆଗତ । ସଂପ୍ରତି ଏହା ବିଶେଷ ତରକାରି ଅର୍ଥ ପ୍ରକାଶ କରୁଛି ।

**ମାଈ** – ଏହି ଶବ୍ଦଟି ତତ୍ସମ 'ମାତୃ' ଶବ୍ଦର ଅପଭ୍ରଷ୍ଟ, ମୂଳ ଅର୍ଥ 'ମାଆ', ବର୍ତ୍ତମାନ ଏହା ମୂଳ ଛାଡ଼ି ସାଧାରଣ ସ୍ତ୍ରୀଲିଙ୍ଗ ବାଚକ ଅର୍ଥରେ ବ୍ୟବହୃତ ହେଉଛି । ଯଥା– ମାଈଫୁଲ, ମାଈ ବାଛୁରୀ ।

**୪ । ଅର୍ଥ ଉନ୍ନୟନ ବା ଅର୍ଥୋତ୍କର୍ଷ :**

ପୂର୍ବେ ମନ୍ଦ ଅର୍ଥରେ ବ୍ୟବହୃତ ହେଉଥିବା ଶବ୍ଦ ପରେ ଭଲ ଅର୍ଥରେ ବ୍ୟବହୃତ ହେଲା, ଶବ୍ଦଟିର ଅର୍ଥ ପରିବର୍ତ୍ତନକୁ ଅର୍ଥ ଉନ୍ନୟନ ବା ଅର୍ଥୋତ୍କର୍ଷ କୁହାଯାଏ । ଯଥା–

**ଅପରୂପ** – ଏହି ସଂସ୍କୃତ ଶବ୍ଦଟିର ମୌଳିକ ଅର୍ଥ ହେଲା– ଅପଗତ ରୂପ ଯାହାର ଅର୍ଥାତ୍ କୁତ୍ସିତ ବା ଅସୁନ୍ଦର; ଏବେ କିନ୍ତୁ 'ଅତି ସୁନ୍ଦର' ଅର୍ଥ ପ୍ରକାଶ କରୁଛି ।

**ମନ୍ଦିର** – ଆଗେ ଏକା 'ଗୃହ' ଅର୍ଥରେ ବ୍ୟବହାର ଥିଲା । ବର୍ତ୍ତମାନ ଏହାର ଅର୍ଥ ଦେବାଳୟ ବା ଦେଉଳ ।

**ବିଦଗ୍ଧ** – ବିଦଗ୍ଧ ଶବ୍ଦଟି ପୂର୍ବେ ବିଶେଷଭାବରେ ଦଗ୍ଧ ବା ଜଳିଯାଇଥିବା ଅର୍ଥକୁ ଛାଡ଼ି ବର୍ତ୍ତମାନ ପଣ୍ଡିତ, ରସିକ ଓ ବିଦ୍ୱାନ ଅର୍ଥ ପ୍ରକାଶକ ।

**ମୁଗ୍ଧ** – ଏହି ଶବ୍ଦଟି ପ୍ରଥମେ ମୋହଗ୍ରସ୍ତ ବା ମୂଢ଼ ଅର୍ଥଦ୍ୟୋତକ ଥିଲା ।

ପରେ ଏହା 'ବିମୋହିତ' ବା 'ବିଶେଷ ଅଭିଭୂତ' ଅର୍ଥରେ ବ୍ୟବହୃତ । ପ୍ରଦତ୍ତ ଉଦାହରଣଗୁଡ଼ିକର ଅର୍ଥରେ ଉନ୍ନତି ଘଟିଥିବାରୁ ସେଗୁଡ଼ିକ ଅର୍ଥ ଉନ୍ନୟନର ଉଦାହରଣ ।

**୫ । ଅର୍ଥ ଅବନମନ ବା ଅର୍ଥାପକର୍ଷ :**

ପୂର୍ବେ ଯେଉଁ ଶବ୍ଦ ଉତ୍କୃଷ୍ଟ ବା ଭଲ ଅର୍ଥରେ ବ୍ୟବହୃତ ହେଉଥିଲା ଏବଂ ପରେ ନିକୃଷ୍ଟ ବା ମନ୍ଦ ଅର୍ଥରେ ବ୍ୟବହୃତ ହେଉଥିଲେ, ଶବ୍ଦର ସେହି ଅର୍ଥ ପରିବର୍ତ୍ତନକୁ ଅର୍ଥ ଅବନମନ ବା ଅର୍ଥାପକର୍ଷ କୁହାଯାଏ । ଯଥା–

**ମହାଜନ** – ଏହି ଶବ୍ଦଟିର ପ୍ରାଥମିକ ଅର୍ଥ ଥିଲା ମହତ୍‌ଜନ ବା ଶ୍ରେଷ୍ଠ ବ୍ୟକ୍ତି; ମାତ୍ର ପରବର୍ତ୍ତୀ କାଳରେ ଏହା ବିଶେଷଭାବରେ ବିଭିନ୍ନ ବ୍ୟବସାୟୀ, ଋଣଦାତା ଓ ବୈଦିକ ବ୍ରାହ୍ମଣମାନଙ୍କ ଅର୍ଥରେ ବ୍ୟବହୃତ । ଫଳରେ ଶବ୍ଦଟିର ଅର୍ଥାପକର୍ଷ ଘଟିଛି ।

**ନଗ୍ନ** – ପ୍ରଥମେ ଏହା ମୁକ୍ତ ବା ପ୍ରକାଶ୍ୟ ଅର୍ଥରେ ବ୍ୟବହୃତ ହେଉଥିଲା, ଏବେ ଏହାର ଅର୍ଥ ଲଙ୍ଗଳା ।

**ଶୋଧିବା** – ଶୋଧନ ଶବ୍ଦରୁ ଆଗତ ଏହି ଶବ୍ଦଟିର ମୌଳିକ ଅର୍ଥ ଥିଲା ସଂଶୋଧନ; ମାତ୍ର ଏବେ ଶବ୍ଦଟିକୁ 'ଗାଳି' ଅର୍ଥରେ ବ୍ୟବହାର କରାଯାଉଛି ।

**ମହାପାତ୍ର** – ଏହାର ପ୍ରଥମ ଅର୍ଥ ଥିଲା 'ଶ୍ରେଷ୍ଠ ପାରିଷଦ' । ପରବର୍ତ୍ତୀ କାଳରେ ଏହା ବ୍ୟକ୍ତିବିଶେଷର ସଂଜ୍ଞା ରୂପେ ବ୍ୟବହୃତ ହେଉଛି ।

## (ଗ) ଶବ୍ଦର ବ୍ୟୁତ୍ପତ୍ତିଗତ ବିଭାଗୀକରଣ

ଶବ୍ଦର ପ୍ରକୃତି- ପ୍ରତ୍ୟୟାଦି ବିଶ୍ଳେଷଣକୁ ବ୍ୟୁତ୍ପତ୍ତି କହନ୍ତି । ଏହାଦ୍ୱାରା ଶବ୍ଦର ଗଠନପ୍ରଣାଳୀ ଓ ତତ୍‌ସମ୍ବନ୍ଧୀୟ ଜ୍ଞାନଲାଭ ହୁଏ । ଶବ୍ଦଟି କେଉଁ ଧାତୁରୁ କେଉଁ ପ୍ରତ୍ୟୟ ଯୋଗେ ବା କେଉଁ ଶବ୍ଦରୁ କେଉଁ ପ୍ରତ୍ୟୟ ସଂଯୋଗରେ ନିଷ୍ପନ୍ନ ହୋଇଛି, ତାହା ଜଣାଇବାକୁ ଶବ୍ଦ-ବିଶ୍ଳେଷଣ କହନ୍ତି । ପୁନଶ୍ଚ ଶବ୍ଦର ଅର୍ଥକୁ ସ୍ପଷ୍ଟ ବା ପ୍ରାଞ୍ଜଳ ଭାବରେ ବୁଝାଇବା ବ୍ୟୁତ୍ପତ୍ତିର ଉଦ୍ଦେଶ୍ୟ । ଉଦାହରଣ ସ୍ୱରୂପ-

ଦାତା – ଦା+ତୃ । ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା ଯେ ଦାନ କରେ ।

ଭାବଗ୍ରାହୀ – ଭାବ-ଗ୍ରହ୍+ଇନ୍ । ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା, ଯେ ଭାବକୁ ଗ୍ରହଣ କରନ୍ତି ।

ଗାଙ୍ଗେୟ – ଗଙ୍ଗା+ଏୟ । ଏହାର ପ୍ରକୃତି-ପ୍ରତ୍ୟୟ ସମ୍ବନ୍ଧୀୟ ଅର୍ଥ ହେଲା, ଗଙ୍ଗାଙ୍କର ଅପତ୍ୟ ବା ସନ୍ତାନ ।

ମୌଳିକ – ମୂଳ + ଇକ । ଏହାର ପ୍ରକୃତିପ୍ରତ୍ୟୟ ବା ବ୍ୟୁତ୍ପତ୍ତିଗତ ଅର୍ଥ ହେଲା, ମୂଳସମ୍ବନ୍ଧୀୟ ।

ଏହିଭଳି ଶବ୍ଦର ବ୍ୟୁତ୍ପତ୍ତିଗତ ବିଶ୍ଳେଷଣ ବା ପ୍ରକୃତି-ପ୍ରତ୍ୟୟ ନିର୍ଦ୍ଧାରଣଦ୍ୱାରା ଶବ୍ଦାର୍ଥ ସମ୍ୟକ୍‌ରୂପେ ଉପଲବ୍ଧ ହୁଏ । ବ୍ୟୁତ୍ପତ୍ତିର ବିଚାରକୁ ନେଇ ବା ଅର୍ଥବୋଧ ଦୃଷ୍ଟିରୁ ସାର୍ଥକ ଓଡ଼ିଆ ଶବ୍ଦଗୁଡ଼ିକୁ ତିନିଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- (କ) ରୂଢ଼ ଶବ୍ଦ, (ଖ) ଯୌଗିକ ଶବ୍ଦ, (ଗ) ଯୋଗରୂଢ଼ ଶବ୍ଦ ।

(କ) ରୂଢ଼ ଶବ୍ଦ :

ଯେଉଁ ଶବ୍ଦ ବ୍ୟୁତ୍ପତ୍ତି ବା ପ୍ରକୃତି-ପ୍ରତ୍ୟୟ ସମ୍ବନ୍ଧୀୟ ଅର୍ଥକୁ ପ୍ରକାଶ ନ କରି ଅନ୍ୟ ଏକ ଅର୍ଥ ପ୍ରକାଶ କରେ, ତାହାକୁ ରୂଢ଼ ଶବ୍ଦ କହନ୍ତି । ଯଥା-

**ବ୍ୟାଘ୍ର** - ବି (ଉପସର୍ଗ) + ଆ (ଉପସର୍ଗ) + ଘ୍ରା (ଧାତୁ) + ଅ (ପ୍ରତ୍ୟୟ) । ଏଠାରେ 'ବି' ଓ 'ଆ' ଉପସର୍ଗ ବିଶେଷ ଭାବରେ, 'ଘ୍ରା' ଧାତୁର ଅର୍ଥ ଆଘ୍ରାଣ ବା ଶୁଙ୍ଘିବା ଓ 'ଅ' ପ୍ରତ୍ୟୟର ଅର୍ଥ ଯେ କରେ ବା କର୍ତ୍ତା । ଏଣୁ ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ଯେ ବିଶେଷ ଭାବରେ ଆଘ୍ରାଣ କରେ ବା ଶୁଙ୍ଘେ; କିନ୍ତୁ ବ୍ୟାଘ୍ର କାହାରିକୁ ଶୁଙ୍ଘେ ନାହିଁ । ବ୍ୟାଘ୍ର ହେଉଛି ଏକ ମାରାତ୍ମକ ହିଂସ୍ରଜନ୍ତୁ । ଫଳରେ ବ୍ୟାଘ୍ରର ବ୍ୟୁତ୍ପତ୍ତିଗତ ଅର୍ଥ ପ୍ରକାଶିତ ନ ହୋଇ ଅନ୍ୟ ଅର୍ଥ ପ୍ରକାଶିତ ହେଉଥିବାରୁ 'ବ୍ୟାଘ୍ର' ଏକ ରୂଢ଼ ଶବ୍ଦ ।

**ଲାବଣ୍ୟ** - ଲବଣ (ଶବ୍ଦ) + ୟ (ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ଲବଣର ଭାବ ବା ଲବଣତ୍ୱ; କିନ୍ତୁ ବ୍ୟାବହାରିକ ଅର୍ଥ ହେଉଛି କାନ୍ତି ବା ସୌନ୍ଦର୍ଯ୍ୟ । ଏଣୁ 'ଲାବଣ୍ୟ' ଏକ ରୂଢ଼ ଶବ୍ଦ ।

**ବଳଦ** - ବଳ (ଉପପଦ) + ଦା (ଧାତୁ) + ଅ (ପ୍ରତ୍ୟୟ) । ଏହାର ପ୍ରକୃତିପ୍ରତ୍ୟୟଗତ ଅର୍ଥ ହେଉଛି ଶକ୍ତିଦାୟକ (ବସ୍ତୁ) ବା ବଳଦାତା; ମାତ୍ର ସାଧାରଣ ଅର୍ଥ ହେଉଛି ଅଣ୍ଡିରା ଗୋରୁ । ଅତଏବ ବଳଦ ଏକ ରୂଢ଼ ଶବ୍ଦ ।

**ଘଟ** - ଘଟ୍ + ଅ । 'ଘଟ୍' ଧାତୁର ଅର୍ଥ ଚେଷ୍ଟା କରିବା ବା ଘଟିବା; ମାତ୍ର ବ୍ୟାବହାରିକ ଅର୍ଥ ହେଉଛି କଳସ ବା ମାଠିଆ । ଆଉ ଏକ ବ୍ୟାବହାରିକ ଅର୍ଥ ଦେହ । ଏଣୁ ଘଟର ଧାତ୍ୱର୍ଥ ପ୍ରକାଶିତ ନ ହୋଇ ଭିନ୍ନ ଅର୍ଥ ପ୍ରକାଶିତ ହେଉଥିବାରୁ, ଏହା ଏକ ରୂଢ଼ ଶବ୍ଦ ।

**ସଂଧ୍ୟା/ସନ୍ଧ୍ୟା** - ସନ୍ଧି (ଉପପଦ) + ୟ (ପ୍ରତ୍ୟୟ) + ସ୍ତ୍ରୀ.ଆ (ପ୍ରତ୍ୟୟ) ବା ସମ୍ (ଉପସର୍ଗ) + ଧ୍ୟୈ (ଧାତୁ) + ୟ (ପ୍ରତ୍ୟୟ) + ଆ (ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ମିଳନଯୋଗ୍ୟା; ମାତ୍ର ଶବ୍ଦଟିର ବ୍ୟାବହାରିକ ଅର୍ଥ ହେଲା ଦିନ ଓ ରାତ୍ରିର ମିଳନ ସମୟ । ସୁତରାଂ ସନ୍ଧ୍ୟା ଏକ ରୂଢ଼ ଶବ୍ଦ ।

**ନବନୀତ** - ନବ (ଶବ୍ଦ) + ନୀ (ଧାତୁ) + ତ (ପ୍ରତ୍ୟୟ) । ଏହାର ପ୍ରକୃତି-ପ୍ରତ୍ୟୟ ସମ୍ବନ୍ଧୀୟ ଅର୍ଥ ହେଲା 'ନୂଆ କରି ନିଆ ହୋଇଥିବା'; କିନ୍ତୁ ଶବ୍ଦଟିର ବ୍ୟାବହାରିକ ଅର୍ଥ ହେଉଛି 'ଲହୁଣି' । ଏଣୁ ନବନୀତ ଶବ୍ଦ ବ୍ୟୁତ୍ପତ୍ତିଗତ ଅର୍ଥ ଛାଡ଼ି ନୂତନ ଶବ୍ଦ ପ୍ରକାଶ କରୁଥିବାରୁ ରୂଢ଼ ଶବ୍ଦ ।

**(ଖ) ଯୌଗିକ ଶବ୍ଦ :**

ଯେଉଁ ଶବ୍ଦ ବ୍ୟୁତ୍ପତ୍ତି ବା ପ୍ରକୃତିପ୍ରତ୍ୟୟଗତ ଅର୍ଥକୁ ପ୍ରକାଶ କରେ, ତାହାକୁ ଯୌଗିକ ଶବ୍ଦ କହନ୍ତି । ଯଥା–

**ରକ୍ଷକ** – ରକ୍ଷ୍ (ଧାତୁ) + ଅକ (ପ୍ରତ୍ୟୟ) । 'ରକ୍ଷ୍'ର ଅର୍ଥ ରକ୍ଷା କରିବା, 'ଅ' ପ୍ରତ୍ୟୟର ଅର୍ଥ, ଯେ କରେ । 'ରକ୍ଷକ' ଶବ୍ଦର ବ୍ୟୁତ୍ପତ୍ତି ସମ୍ବନ୍ଧୀୟ ଅର୍ଥ ହେଲା, ଯେ ରକ୍ଷାକରେ ବା ରକ୍ଷାକର୍ତ୍ତା । ଏଠାରେ 'ରକ୍ଷକ' ଶବ୍ଦ ପ୍ରକୃତି ଓ ପ୍ରତ୍ୟୟର ଅର୍ଥକୁ ବୁଝାଉଥିବାରୁ ଯୌଗିକ ଶବ୍ଦ ଅଟେ ।

ପାଠ୍ୟ– ପଠ୍ (ଧାତୁ) + ଯ(ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା, ଯାହା ପଢ଼ିବା ଯୋଗ୍ୟ । ବ୍ୟାବହାରିକ ଅର୍ଥ ମଧ୍ୟ ଏହା । ଏଣୁ ଏହା ଏକ ଯୌଗିକ ଶବ୍ଦ ।

**ହଳିଆ** – ହଳ (ଶବ୍ଦ) + ଇଆ (ପ୍ରତ୍ୟୟ) । ଏହାର ପ୍ରକୃତି– ପ୍ରତ୍ୟୟ ସମ୍ବନ୍ଧୀୟ ଅର୍ଥ ହେଲା, ଯେ ହଳ କରେ । ବ୍ୟାବହାରିକ ଅର୍ଥ ମଧ୍ୟ ବ୍ୟୁତ୍ପତ୍ତିଗତ ଅର୍ଥ ସହିତ ସମାନ, ଏଣୁ 'ହଳିଆ' ଏକ ଯୌଗିକ ଶବ୍ଦ ।

**ସୌଜନ୍ୟ** – ସୁଜନ (ଶବ୍ଦ) + ଯ (ପ୍ରତ୍ୟୟ) । ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି, ସୁଜନର ଭାବ ବା କର୍ମ । ଏହାର ବ୍ୟାବହାରିକ ବା ସାଧାରଣ ଅର୍ଥ ମଧ୍ୟ ଏଇଆ । ଏଣୁ ସୌଜନ୍ୟ ଏକ ଯୌଗିକ ଶବ୍ଦ ।

ସେହିପରି– ପାଦପ, ନୃପତି, ଖାଦ୍ୟ, ଗାୟକ, ପାଠକ, ଦାତା, କଳିଆ ପ୍ରଭୃତି ।

**(ଗ) ଯୋଗରୂଢ଼ ଶବ୍ଦ :**

ବ୍ୟୁତ୍ପତ୍ତି ଅନୁସାରେ ଯେଉଁ ଶବ୍ଦର ଅର୍ଥ ଅନେକଙ୍କୁ ବୁଝାଇବାର ସମ୍ଭାବନା ଥିଲେ ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ ଜଣକୁ ବା ଗୋଟିଏ ବସ୍ତୁକୁ ବୁଝାଏ, ତାହାକୁ ଯୋଗରୂଢ଼ ଶବ୍ଦ କହନ୍ତି । ଯଥା–

**ପଙ୍କଜ**– ପଙ୍କ (ଉପପଦ) + ଜନ୍ (ଧାତୁ) + ଅ (ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ଯେ ପଙ୍କରୁ ଜାତ । ଅର୍ଥାତ୍ ପଙ୍କରୁ ଗେଣ୍ଡା, ଶାମୁକା, କୋଚିଆ ପ୍ରଭୃତି ସ୍ୱାଭାବିକ ଭାବରେ ଜନ୍ମୁଥିଲେ ମଧ୍ୟ ପଙ୍କଜ ଶବ୍ଦ ନିର୍ଦ୍ଦିଷ୍ଟ ଭାବରେ 'ପଦ୍ମ'କୁ ବୁଝାଇଥାଏ । ଏଣୁ 'ପଙ୍କଜ' ଏକ ଯୋଗରୁ ଶବ୍ଦ ।

**ଜଳଦ** – ଜଳ (ଉପପଦ) + ଦା (ଧାତୁ) + ଅ (ପ୍ରତ୍ୟୟ) । ଏଠାରେ ପ୍ରକୃତି ଓ ପ୍ରତ୍ୟୟର ଅର୍ଥ, ଯେ ଜଳଦାନ କରେ; ମାତ୍ର 'ଜଳଦ' ଶବ୍ଦ ସମସ୍ତ ଜଳଦାନକର୍ତ୍ତାଙ୍କୁ ନ ବୁଝାଇ କେବଳ 'ମେଘ'କୁ ବୁଝାଉଅଛି । ଏଣୁ 'ଜଳଦ' ଏକ ଯୋଗରୂଢ଼ ଶବ୍ଦ ।

**କ୍ଷତ୍ରିୟ** – କ୍ଷତ (ଉପପଦ) + ତ୍ରୈ (ଧାତୁ) + ଅ (ପ୍ରତ୍ୟୟ) । ଏହାର ପ୍ରକୃତି–ପ୍ରତ୍ୟୟଗତ ଅର୍ଥ ହେଲା ଯେ କ୍ଷତ (ଆଘାତ)ରୁ ତ୍ରାଣ କରେ ବା ଆକ୍ରମଣରୁ ରକ୍ଷାକରେ;

ମାତ୍ର କ୍ଷତ୍ରିୟ ଶବ୍ଦ କ୍ଷତରୁ ଉଦ୍ଧାର କରୁଥିବା ସବୁଲୋକଙ୍କୁ ନ ବୁଝାଇ, ନିର୍ଦ୍ଦିଷ୍ଟ ଭାବରେ କ୍ଷତ୍ରିୟ ଜାତିକୁ ବୁଝାଉଅଛି । ସୁତରାଂ 'କ୍ଷତ୍ରିୟ' ଏକ ଯୋଗରୂଢ଼ ଶବ୍ଦ ।

**ଲେଖନୀ** – ଲିଖ୍(ଧାତୁ) + ଅନ(ପ୍ରତ୍ୟୟ) + ଈ (ସ୍ତ୍ରୀଲିଙ୍ଗ ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା କଲମ, ପେନ୍‌ସିଲ୍, ଚକ୍ ପ୍ରଭୃତି ଯେ କୌଣସି ଲେଖିବା ଉପକରଣ; କିନ୍ତୁ ଲେଖନୀ ଶବ୍ଦ ସାଧାରଣ ଲିଖନ ଉପକରଣକୁ ନ ବୁଝାଇ ମୁଖ୍ୟତଃ ତାଳପତ୍ର ଉପରେ ଲେଖିବାପାଇଁ ବ୍ୟବହୃତ ଲୌହକଲମକୁ ବୁଝାଇଥାଏ ।

**ଶିଷ୍ୟ** – ଶାସ୍ (ଧାତୁ) + ୟ (ପ୍ରତ୍ୟୟ) । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା ଯେ ଶାସନର ଯୋଗ୍ୟ; ଅର୍ଥାତ୍ ବିଭିନ୍ନ ଶ୍ରେଣୀର କର୍ମଚାରୀ, ଛାତ୍ରସମାଜ ଓ ସାଧାରଣଜନତା; କିନ୍ତୁ 'ଶିଷ୍ୟ' ଶବ୍ଦ କେବଳ ବ୍ୟାବହାରିକ ଅର୍ଥରେ ଛାତ୍ରକୁ ବୁଝାଉଥିବାରୁ ଯୋଗରୂଢ଼ ଶବ୍ଦ ।

**ଦନ୍ତୀ** – ଦନ୍ତ (ଶବ୍ଦ) + ଇନ୍ (ପ୍ରତ୍ୟୟ) । ଏହି ଶବ୍ଦର ପ୍ରକୃତିପ୍ରତ୍ୟୟ ସମ୍ବନ୍ଧୀୟ ଅର୍ଥ ହେଉଛି ଯାହାର ଦନ୍ତ ଅଛି ବା ଦନ୍ତ ଥିବା ପ୍ରାଣୀ । ମନୁଷ୍ୟ, ଗାଇଗୋରୁ, ମଇଁଷି, ଛେଳି, ଘୋଡ଼ା ପ୍ରଭୃତି ଏହି ଶ୍ରେଣୀର ଅନ୍ତର୍ଗତ; ମାତ୍ର 'ଦନ୍ତୀ' ଶବ୍ଦ ଦନ୍ତ ଥିବା ଯେ କୌଣସି ପ୍ରାଣୀକୁ ନ ବୁଝାଇ, କେବଳ ଦନ୍ତ ଥିବା ହାତୀକୁ ବୁଝାଉଅଛି । ତେଣୁ 'ଦନ୍ତୀ' ଏକ ଯୋଗରୂଢ଼ ଶବ୍ଦ ।

## (ଘ) ସମୋଚ୍ଚାରିତ ଓ ପ୍ରାୟ ସମୋଚ୍ଚାରିତ ଶବ୍ଦ

ଆମ ଭାଷାରେ ଏପରି କେତେକ ଶବ୍ଦ ପରିଦୃଷ୍ଟ ହୁଏ, ଯାହାକୁ ଉଚ୍ଚାରଣ କରିବା ବେଳେ ପ୍ରାୟ ସମାନ ଧ୍ୱନି ଉଚ୍ଚାରିତ ହୁଏ । ଏହିସବୁ ଶବ୍ଦଗୁଡ଼ିକର ଉଚ୍ଚାରଣ ଓ ଧ୍ୱନିରେ ସାମ୍ୟ ପରିଲକ୍ଷିତ ହେଉଥିଲେ ମଧ୍ୟ ଅର୍ଥଗତ ବିଶେଷ ପାର୍ଥକ୍ୟ ସେଗୁଡ଼ିକର ଭିନ୍ନତାକୁ ସ୍ପଷ୍ଟ କରିଦିଏ । ଉକ୍ତ ସମୋଚ୍ଚାରିତ ଶବ୍ଦଗୁଡ଼ିକର ଅର୍ଥ ଓ ଯଥାର୍ଥ ପ୍ରୟୋଗ ସମ୍ପର୍କରେ ନିମ୍ନରେ କେତେକ ଦୃଷ୍ଟାନ୍ତ ଦିଆଯାଇଛି ।

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ଅର୍ଘ | ମୂଲ୍ୟ | – ଦିନକୁ ଦିନ ସବୁ ପଦାର୍ଥ ମହାର୍ଘ ହେଉଛି । |
| ଅର୍ଘ୍ୟ | ପୂଜାଉପକରଣ | – ଭକ୍ତି-ଅର୍ଘ୍ୟ ପ୍ରଦାନ କଲେ ଦେବତା ପ୍ରସନ୍ନ ହୁଅନ୍ତି । |
| ଅବହିତ | ମନୋଯୋଗୀ | – ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ବନ୍ଧରେ ଅବହିତ ହୁଅ । |
| ଅବିହିତ | ଅନୁଚିତ | – ଅବିହିତ କାର୍ଯ୍ୟ ପ୍ରତି ଆକୃଷ୍ଟ ହୁଅ ନାହିଁ । |
| ଅଭିହିତ | କଥିତ | – ମୋହନ ଦାସ କରମଚାନ୍ଦ ଗାନ୍ଧି ମହାତ୍ମା ଗାନ୍ଧି ନାମରେ ଅଭିହିତ । |

| ଶବ୍ଦ | ଅର୍ଥ | | ବାକ୍ୟରେ ପ୍ରୟୋଗ |
|---|---|---|---|
| ଅଂଶ | ଭାଗ | – | ପିତାଙ୍କ ସମ୍ପତ୍ତିକୁ ପୁତ୍ରମାନେ ନିଜ ନିଜର ଅଂଶ ପାଇଲେ । |
| ଅଂସ | ସ୍କନ୍ଧ | – | ଶ୍ରୀକୃଷ୍ଣଙ୍କ ହସ୍ତରେ ଚକ୍ର; ମାତ୍ର ବଳରାମଙ୍କ ଅଂସରେ ହଳଶୋଭିତ । |
| ଅନିଳ | ପବନ | – | ବସନ୍ତକାଳୀନ ମୃଦୁ ଅନିଳ ଶରୀରକୁ ଆରାମ ଦିଏ । |
| ଅନୀଳ | ଯାହା ନୀଳବର୍ଣ୍ଣ ନୁହେଁ | – | ଜଳର ରଙ୍ଗ ନୀଳ; କିନ୍ତୁ ମୃତ୍ତିକା ଅନୀଳ । |
| ଅସି | ଖଣ୍ଡା | – | ଖୋରଧା ପାଇକମାନେ ଶାଣିତ ଅସିଦ୍ୱାରା ଯୁଦ୍ଧ କରୁଥିଲେ । |
| ଅଶୀ | ସଂଖ୍ୟାବିଶେଷ | – | ଅଶୀ ବର୍ଷ ବୟସରେ ବୁଦ୍ଧଦେବଙ୍କର ମୃତ୍ୟୁ ହୋଇଥିଲା । |
| ଅସନ | କ୍ଷେପଣ | – | ଅଶନି ଅସନଦ୍ୱାରା ବୃତ୍ରାସୁରର ପ୍ରାଣଗଲା । |
| ଅଶନ | ଭୋଜନ | – | ଅଶନ-ବ୍ୟସନ ତ୍ୟାଗ ନ କଲେ ସାଧନାରେ ସିଦ୍ଧିଲାଭ ହୁଏ ନାହିଁ । |
| ଅଳିକ | ଲଲାଟ | – | ଅଳିକ ଲିଖନ ଅଲଙ୍ଘନୀୟ । |
| ଅଳୀକ | ମିଥ୍ୟା | – | ଈଶ୍ୱର ସତ୍ୟ; ମାତ୍ର ଜୀବନ ଅଳୀକ । |
| ଆଭାଷ | ଭାଷଣ | – | ସ୍ୱାମୀଜୀଙ୍କର ଓଜସ୍ୱିନୀ ଆଭାଷ ଶୁଣି ଶ୍ରୋତୃମଣ୍ଡଳୀ ମୁଗ୍ଧ ହେଲେ । |
| ଆଭାସ | ଇଙ୍ଗିତ | – | ସୁନାମିପ୍ରପୀଡ଼ିତ ଲୋକମାନେ କିଞ୍ଚିତ୍ ପୂର୍ବ ଆଭାସ ପାଇପାରି ନ ଥିଲେ । |
| ଆବୃତ | ଆଚ୍ଛାଦିତ | – | ଏସ୍କିମୋମାନେ ସେମାନଙ୍କର ଶରୀରକୁ ସର୍ବଦା ବସ୍ତ୍ରଦ୍ୱାରା ଆବୃତ କରି ରଖନ୍ତି । |
| ଆବୃତ୍ତ | ଅଭ୍ୟସ୍ତ | – | କବିତାଟି ବାରମ୍ବାର ଆବୃତ ହେଲେ, ଅର୍ଥ ପ୍ରାଞ୍ଜଳ ଭାବରେ ବୁଝି ହୁଏ । |
| ଆୟତ | | – | ଆୟତାକାର କ୍ଷେତ୍ରଟିଏ ଅଙ୍କନ କର । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ଆୟତ୍ତ | ଅଧୀନ | – ଢେଲା ହାତରୁ ଖସିଲେ ଆଉ ନିଜର ଆୟତ୍ତରେ ନ ଥାଏ । |
| | | – ପାଠକୁ ଆୟତ୍ତ କରିବାପାଇଁ ଅଧ୍ୟବସାୟ ଲୋଡ଼ା । |
| ଇତି | ଶେଷ | – ଅତିରୁ ଇତି ହୁଏ । |
| ଈତି | ଅନାବୃଷ୍ଟି ଆଦି ପ୍ରାକୃତିକ ବିପର୍ଯ୍ୟୟ | – ଈତି ଆଶଙ୍କାରେ ଓଡ଼ିଶାବାସୀ ସବୁବେଳେ ଆତଙ୍କିତ । |
| ଈଶ | ଈଶ୍ୱର | – ଅନ୍ତରେ ଅନ୍ତରେ ଈଶ୍ୱରଙ୍କର ସତ୍ତା ବିଦ୍ୟମାନ । |
| ଈଷ | ଲଙ୍ଗଳଦଣ୍ଡ | – କାଠର ଏପରି ଅଭାବ ଯେ କୃଷକ ତା'ର ଲଙ୍ଗଳ ପାଇଁ ଈଷଟିଏ ଯୋଗାଡ଼ କରିପାରୁ ନାହିଁ । |
| ଉପାଦାନ | ଉପକରଣ | – ପ୍ରତ୍ୟେକ ମଣିଷର ଶରୀର ସମାନ ଉପାଦାନରେ ଗଠିତ । |
| ଉପାଧାନ | ତକିଆ | – ସୁକୋମଳ ଉପାଧାନ ଶରୀରପାଇଁ ହିତକର ନୁହେଁ । |
| କାଳୀ | ଆଦ୍ୟାଶକ୍ତି | – କଟକର କାଳୀପୂଜା ଓଡ଼ିଶା ବିଖ୍ୟାତ । |
| କାଳି | କାଳିମା/ବାକି/କଳଙ୍କ | – ଚରିତ୍ରରେ ଥରେ କାଳି ପ୍ରଲେପିତ ହେଲେ, ଆଉ ନିର୍ମଳ ହୁଏ ନାହିଁ । |
| କୁଳ | ବଂଶ | – ପ୍ରଭୁ ଶ୍ରୀରାମ ରଘୁକୁଳର ତିଳକ ଥିଲେ । |
| କୂଳ | ତଟ | – ଶ୍ରୀକୃଷ୍ଣ ଯମୁନା କୂଳରେ ବଂଶୀ ବାଦନ କରୁଥିଲେ । |
| କୁଜନ | ଖରାପଲୋକ | – କୁଜନ ସଙ୍ଗ ପରିତ୍ୟାଗ କର । |
| କୂଜନ | ପକ୍ଷୀର ଧ୍ୱନି | – ବସନ୍ତ କାଳରେ କୋକିଳର ମଧୁର କୂଜନ ମନୋମୁଗ୍‌ଧକର । |
| କୃତି | କାର୍ଯ୍ୟ | – କୃତି ଅନୁରୂପ ଫଳ ନିଶ୍ଚୟ ଭୋଗିବାକୁ ପଡ଼େ । |
| କୃତୀ | ଦକ୍ଷ | – କୃତୀ ଶିକ୍ଷକମାନଙ୍କୁ ପୁରସ୍କୃତ କରାଯାଏ । |
| କୃତ୍ତି | ବ୍ୟାଘ୍ରଚର୍ମ | – ଶିବଙ୍କୁ କୃତ୍ତିବାସ କୁହାଯାଏ । |
| ଗିରିଶ | ମହାଦେବ | – ଗିରିଶ ବୃଷଭ ଆରୋହଣ କରନ୍ତି । |
| ଗିରୀଶ | ଗିରିଶ୍ରେଷ୍ଠ(ହିମାଳୟ) | – ଗିରୀଶ ସର୍ବଦା ବରଫାବୃତ । |
| ଗୁଣି | ତନ୍ତ୍ରବିଦ୍ୟା | – ସାମ୍ପ୍ରତିକ ସମାଜରେ ଗୁଣିର ପ୍ରଭାବ ଅନୁଭୂତ ହେଉଛି । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ଗୁଣୀ | ଗୁଣବାନ୍ | – ଏକମାତ୍ର ଗୁଣୀପୁତ୍ର କାମ୍ୟ । |
| ଘଟଣ | ସୁନ୍ଦର, ଗଢ଼ଣ | – ଘରଣୀବିହୀନ ଘର ଘଟଣ ନୁହେଁ । |
| ଘଟନ | ଘଟିବା, ଯୋଜନା | – ବିଧାତାର ଘଟନ ଫଳବତୀ ହୁଏ । |
| ଚରିତ | କଥା, ବିଷୟ | – କୃଷ୍ଣଚରିତ ଭାଗବତ, କହଇ ଦାସ ଜଗନ୍ନାଥ । |
| ଚରିତ୍ର | ନୈତିକ ସ୍ୱଭାବ | – ଥିଲେ ଥାଉ ପଛେ ଗୁଣ ହଜାର, ଚରିତ୍ର ନ ଥିଲେ ସବୁ ଅସାର । |
| ଚିର | ଦୀର୍ଘକାଳ | – ଆମ ଦେଶର ଶହୀଦମାନେ ଚିରସ୍ମରଣୀୟ । |
| ଚୀର | ଚିରା/ଜୀର୍ଣ୍ଣବସ୍ତ୍ର | – ଚୀର ବସ୍ତ୍ର ପରିଧାନ କର ନାହିଁ । |
| ଚୁଡ଼ା | ଖାଦ୍ୟବିଶେଷ | – ଉତ୍କଳମଣି ଗୋପବନ୍ଧୁ ବନ୍ୟାଦୁର୍ଗତଙ୍କୁ ଚୁଡ଼ାଚାଉଳ ବଣ୍ଟନ କରୁଥିଲେ । |
| ଚୂଡ଼ା | ଅଗ୍ରଭାଗ | – ଶ୍ରୀମନ୍ଦିର ଚୂଡ଼ାରେ ନୀଳଚକ୍ର ସୁଶୋଭିତ । |
| ଚୂତ | ଆମ୍ବ | – ଚୂତ ତରୁ ଡାଳରେ କୋକିଳ ମଧୁର ଗାନ କରେ । |
| ଚ୍ୟୁତ | ସ୍ଖଳିତ | – ଲକ୍ଷ୍ୟ ପଥରୁ କଦାପି ଚ୍ୟୁତ ହୁଅ ନାହିଁ । |
| ଜମକ | ଆଡ଼ମ୍ବର | – ଚଳିତବର୍ଷ ଆମ ବିଦ୍ୟାଳୟରେ ସରସ୍ୱତୀ ପୂଜା ଜାକଜମକରେ ପାଳିତ ହେଲା । |
| ଯମକ | ଅଳଙ୍କାରବିଶେଷ | – ରଚନାରେ ବ୍ୟଞ୍ଜନବର୍ଣ୍ଣର ବାରମ୍ବାର ପ୍ରୟୋଗ ହେଲେ ଯମକ ଅଳଙ୍କାର ହୁଏ । |
| ଜାତ | ଉତ୍ପନ୍ନ / ଜନ୍ମ | – ରାମଚନ୍ଦ୍ର ରଘୁବଂଶରେ ଜାତ ହୋଇଥିଲେ । |
| ଯାତ | ଯାତ୍ରା | – ଆମ ସଂସ୍କୃତିରେ ବାରମାସରେ ତେରଯାତ ପାଳନ କରାଯାଏ । |
| ଝୁଲା | ମୁଣା | – ବାବା ଓ ତାଙ୍କର ଚେଲା ଝୁଲା ପକାଇ ଯାଉଛନ୍ତି । |
| ଝୋଲା | ଦୁର୍ବଳତା ବା ଭୋକହେତୁ ମୂର୍ଚ୍ଛା | – ରୌଦ୍ରତାପ ଯୋଗୁଁ ଶ୍ରମିକଟିକୁ ଝୋଲା ମାରିଲା । |
| ଟକର | ଲାଳସା | – ପିଲାମାନେ ସୁସ୍ୱାଦୁ ଖାଦ୍ୟର ଟକର ତ୍ୟାଗ କରିପାରନ୍ତି ନାହିଁ । |
| ଟକ୍କର | ଜିଦାଜିଦି, ପ୍ରତିଯୋଗିତା ବା ପ୍ରତିଦ୍ୱନ୍ଦ୍ୱିତା | – କାହାରି ସହିତ ଟକ୍କର ଦେଇ ଗାଡ଼ି ଚଳାନ୍ତୁ ନାହିଁ । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ଠକ୍ | କଠିନ ଦ୍ରବ୍ୟକୁ ଠୁକିବାର ଶବ୍ଦ | – ଦୁଆରେ କିଏ ଠକ୍ ଠକ୍ ଶବ୍ଦ କରୁଛି ? |
| ଠକ | ପ୍ରତାରଣାକାରୀ/ଦସ୍ୟୁ | – ଠକ ପ୍ରତି ସତର୍କତା ଅବଲମ୍ବନ କର । |
| ଢୋଳ | ଘୁମ, ନିଦ୍ରାର ଆବେଶ | – ଢୋଳ ଲାଗିଲେ ପାଠପଢ଼ା ବନ୍ଦ କରି ବିଶ୍ରାମ ନିଅ । |
| ଢୋଲ | ବାଦ୍ୟଯନ୍ତ୍ର | – ବିବାହ ଉତ୍ସବରେ ଢୋଲ ବାଜେ । |
| ତରଣି | ସୂର୍ଯ୍ୟ | – ଆକାଶରେ ତରଣି ଗତାଗତ ହୁଅନ୍ତି । |
| ତରଣୀ | ନୌକା | – ଜଳରେ ତରଣୀ ଯାତାୟାତ କରେ । |
| ତଟକା | ସଜ | – ତଟକା ପନିପରିବା ସ୍ୱାସ୍ଥ୍ୟପାଇଁ ଭଲ । |
| ତାଟକା | ଛାନିଆଁ/ବିସ୍ମିତ | – ସୁନାମିର ଭୟାବହତା ସମସ୍ତଙ୍କୁ ତାଟକା କରିଦେଇଛି । |
| ଦିନ | ଦିବସ | – ସାତ ଦିନରେ ଏକ ସପ୍ତାହ ହୁଏ । |
| ଦୀନ | ଦରିଦ୍ର/ଗରିବ | – ଦୀନ ପ୍ରତି ଦୟାକର । |
| ଦ୍ୱୀପ | ଜଳବେଷ୍ଟିତ ସ୍ଥଳଭାଗ/ଟାପୁ | – ଆଣ୍ଡାମାନ୍ ଓ ନିକୋବର ଦ୍ୱୀପପୁଞ୍ଜ ବଙ୍ଗୋପସାଗର ମଧ୍ୟରେ ଅବସ୍ଥିତ । |
| ଦୀପ | ପ୍ରଦୀପ | – ଠାକୁରଙ୍କୁ ଧୂପ, ଦୀପ ଓ ଅର୍ଘ୍ୟ ପ୍ରଦାନ କରାଯାଏ । |
| ଦ୍ୱିପ | ହସ୍ତୀ | – ମତ୍ତଦ୍ୱିପକୁ ସହଜରେ ଆୟତ୍ତ କରିହୁଏ ନାହିଁ । |
| ଦୂତ | ଚର | – ପୂର୍ବେ ରାଜାମାନେ ଦୂତଦ୍ୱାରା ରାଜ୍ୟର ସମ୍ବାଦ ଜାଣିପାରୁଥିଲେ । |
| ଦ୍ୟୂତ | ପଶାଖେଳ | – ଯୁଧିଷ୍ଠିର ଦ୍ୟୂତକ୍ରୀଡ଼ାରେ ହାରିଯାଇଥିଲେ । |
| ନିବାର | ବାରଣ | – ଅସତ୍ ପଥରୁ ପିଲାମାନଙ୍କୁ ନିବାର ନ କଲେ ସେମାନେ ସୁନାଗରିକ ହୋଇପାରିବେ ନାହିଁ । |
| ନୀବାର | ବନ୍ୟଧାନ୍ୟବିଶେଷ/ ବାଲୁଙ୍ଗା | – କୃଷକମାନେ କ୍ଷେତରୁ ନୀବାର ଉତ୍ପାଟନ କରିଥାଆନ୍ତି । |
| ନିତି | ପ୍ରତିଦିନ/ପ୍ରତ୍ୟହ | – ନିତି ଶ୍ରୀମନ୍ଦିରରେ ଛପନ ପଉଟି ଭୋଗ ହୁଏ । |
| ନୀତି | ନିୟମ | – ନୀତିହୀନ ରାଜନୀତି ଦେଶପାଇଁ ଶୁଭଙ୍କର ନୁହେଁ । |
| ନିର୍ଦ୍ଧନ | ଧନହୀନ | – ଭାରତରେ ନିର୍ଦ୍ଧନଙ୍କ ସଂଖ୍ୟା କମ୍ ନୁହେଁ । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ନିଧନ | ବିନାଶ | – ରାମ ରାବଣକୁ ନିଧନ କଲେ । |
| ନିଧାନ | ଆଧାର/ଭଣ୍ଡାର | – ଈଶ୍ୱର କରୁଣାର ନିଧାନ । |
| ନିଦାନ | ମୂଳକାରଣ | – ସୁଯୋଗ୍ୟ ଚିକିତ୍ସକ ଦୁରାରୋଗ୍ୟ ବ୍ୟାଧିର ନିଦାନ ନିରୂପଣ କରିପାରନ୍ତି । |
| ପଟ | ପଟୁକା, ଦଳ | – ରାଜନୀତିରେ ପଟ ପରିବର୍ତ୍ତନ ସାଧାରଣ କଥା । କୁସୁମ ପରଶେ ପଟ ନିସ୍ତରେ । |
| ପଟ୍ଟ | ଶ୍ରେଷ୍ଠ | – କୌଶଲ୍ୟା ଦଶରଥଙ୍କର ପଟ୍ଟମହିଷୀ ଥିଲେ । |
| ପରୀକ୍ଷା | ଉତ୍ତମରୂପେ ଦେଖିବା | – ପୂର୍ଣ୍ଣେନ୍ଦୁ ପରୀକ୍ଷାରେ ପ୍ରଥମ ହୋଇଛି । |
| ପରିଖା | ଗଡ଼ଖାଇ | – ବାରବାଟୀ ଦୁର୍ଗର ଚତୁଃପାର୍ଶ୍ୱରେ ଏକ ପରିଖା ଅଛି । |
| ପକ୍ଷ | ପନ୍ଦରଦିନ | – ଦୁଇ ପକ୍ଷରେ ଏକମାସ ହୁଏ । |
| ପକ୍ଷ୍ମ | ଆଖିପତାର ଲୋମ | – ପକ୍ଷ୍ମ ଆଖିକୁ ବାହାର ଧୂଳିମଳିରୁ ରକ୍ଷା କରେ । |
| ପରିଚ୍ଛଦ | ପୋଷାକ | – ସୁରୁଚିସମ୍ପନ୍ନ ପରିଚ୍ଛଦ ପରିଧାନ କରିବା ବିଧେୟ । |
| ପରିଚ୍ଛେଦ | ଅଧ୍ୟାୟ/ବିଭାଗ | – ଶ୍ରୀମଦ୍ ଭଗବଦ୍ ଗୀତାର ପ୍ରତ୍ୟେକ ପରିଚ୍ଛେଦ ରସାଳ । |
| ପାବନି | ହନୁମାନ୍ | – ପାବନି ସମୁଦ୍ର ଲଙ୍ଘନ କରି ଲଙ୍କାପୁରକୁ ଯାଇଥିଲେ । |
| ପାବନୀ | ପବିତ୍ରକାରିଣୀ | – ପାବନୀ ଗଙ୍ଗା ଜଳରେ ସ୍ନାନ କଲେ, ପାପୀ ପାପ ମୁକ୍ତ ହୁଏ । |
| ପୁତ | ପୁଅ | – ଗାନ୍ଧାରୀ ଶତପୁତର ଜନନୀ ଥିଲେ । |
| ପୂତ | ପବିତ୍ର | – ମନ୍ଦାକିନୀର ପୂତ ନୀରରେ ସ୍ନାନ କଲେ, କଳୁଷ ନାଶଯାଏ । |
| ପୁର | ନଗର | – ଶ୍ରୀକୃଷ୍ଣ ଗୋପପୁରରେ ଜନ୍ମିଥିଲେ । |
| ପୂର | ପ୍ରବାହ/ପିଠାରପୂର ଜଳରାଶି | – ମହାନଦୀ ପୂରରେ ନୌବିହାର ଆମୋଦଦାୟକ । ମଣ୍ଡା ଭିତରେ ପୂରଥାଏ । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ପ୍ରସାଦ | ଭୋଗ/କୃପା | – ଜଗନ୍ନାଥଙ୍କର ମହାପ୍ରସାଦ ଆଚଣ୍ଡାଳ ବ୍ରାହ୍ମଣ ଏକତ୍ର ଭୋଜନ କରନ୍ତି । ମୁଁ ପ୍ରଭୁଙ୍କର ପ୍ରସାଦରୁ ପ୍ରସନ୍ନରେ ଅଛି । |
| ପ୍ରାସାଦ | କୋଠା/ଅଟ୍ଟାଳିକା | – ଆମେରିକାରେ ଅନେକ ବହୁତଳ ପ୍ରାସାଦ ଦେଖାଯାଏ । |
| ପୁଷ୍ଟ | ମୋଟା/ପାଳିତ | – ଷଣ୍ଢଟି ଖୁବ୍ ହୃଷ୍ଟପୁଷ୍ଟ ହୋଇଛି । |
| ପୃଷ୍ଟ | ପଚରା ଯାଇଥିବା | – ପୃଷ୍ଟ ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରଦାନ କର । |
| ପୃଷ୍ଠ | ପିଠି/ପଛ | – ଓଟର ପୃଷ୍ଠଭାଗରେ ଏକ ବୃହତ୍ କୁଜ ଥାଏ । |
| ପ୍ରକାର | ରକମ | – ଭାରତର ଅଧିବାସୀମାନେ ବିବିଧ ପ୍ରକାର ପୋଷାକ ପରିଧାନ କରନ୍ତି । |
| ପ୍ରାକାର | ପାଚେରି | – ଜଗନ୍ନାଥ ମନ୍ଦିରର ଚତୁଃପାର୍ଶ୍ୱରେ ଏକ ସୁଉଚ୍ଚ ପ୍ରାକାର ରହିଛି । |
| ପ୍ରସ୍ତ | ସ୍ତର | – ପିଆଜକୁ ଛଡ଼ାଇଲେ ପ୍ରସ୍ତ ପ୍ରସ୍ତ ହୋଇ ଛାଡ଼ିଯାଏ । |
| ପ୍ରସ୍ଥ | ଓସାର | – ଚିଲିକାର ଦୈର୍ଘ୍ୟ ତୁଳନାରେ ପ୍ରସ୍ଥ ଖୁବ୍ କମ୍ । |
| ପୀତ | ହଳଦିଆ | – ନବରଙ୍ଗପୁର ଅଞ୍ଚଳରେ ପୀତମୃତ୍ତିକା ଦେଖାଯାଏ । |
| ପିତ୍ତ | ଶରୀରସ୍ଥ ଧାତୁ | – ଜ୍ୱର ହେଲେ ବେଳେବେଳେ ପିତ୍ତବାନ୍ତି ହୁଏ । |
| ପରସ୍ୱ | ପରଧନ | – ପରସ୍ୱ ଅପହରଣ କରିବା ମହାପାପ । |
| ପରଶ୍ୱ | ପଅରଦିନ | – ମାମୁ ପରଶ୍ୱ ଆସିବାପାଇଁ ଚିଠି ଲେଖିଛନ୍ତି । |
| ଫନ୍ଦ | ଧାର | – ଡେକଚିଟିର ଫନ୍ଦ ଭାଙ୍ଗିଯାଇଛି । |
| ଫାନ୍ଦ | ଫାଶ | – ମୃଗ ମାରିବାପାଇଁ ଶିକାରୀ ଫାନ୍ଦ ବସାଇଛି । |
| ବନ୍ଦନ | ପ୍ରଶଂସାଗାନ | – ଭାଟମାନେ ରାଜାଙ୍କର ଯଶ ବନ୍ଦନ କରନ୍ତି । |
| ବନ୍ଧନ | ବାନ୍ଧିବା | – ଦୁଃଶାସନ ରକ୍ତରେ ପାଞ୍ଚାଳୀ ବେଣୀବନ୍ଧନ କରିଥିଲେ । |
| ବେଳା | ସମୁଦ୍ରକୂଳ | – ପୁରୀରେ ସୁଦୀର୍ଘ ବେଳାଭୂମି ଅଛି । |
| ବେଳା | ସମୟ | – ବେଳା ଭଲ ନ ଥିଲେ ସବୁ ଅନିଷ୍ଟ ଘଟେ । |
| ବେଲା | ପାତ୍ରବିଶେଷ | – କୃଷକ ସକାଳୁ ବେଲାଏ ପଖାଳ ଓ ମେଞ୍ଚାଏ ଶାଗଭଜା ଖାଇ ବିଲକୁ ଯାଏ । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ବଧ | ହତ୍ୟା | – ରାମ ରାବଣକୁ ବଧ କଲେ । |
| ବଦ୍ଧ | ବନ୍ଧନ/ବନ୍ଧାହୋଇଥିବା | – ବଦ୍ଧ ପଶୁକୁ ଦେବୀଙ୍କ ସମୀପରେ ବଳି ଦିଆଯାଏ । ମନୁଷ୍ୟ ଏକ ମାୟାବଦ୍ଧ ଜୀବ । |
| ବିସ | ପଦ୍ମନାଡ଼ | – ହଂସଟି ଚଞ୍ଚୁରେ ବିସଖଣ୍ଡ ଧାରଣ କରିଛି । |
| ବିଷ | ଗରଳ | – ମହାନ୍ ଦାର୍ଶନିକ ସକ୍ରେଟିସ୍ ବିଷପାନ କରି ମୃତ୍ୟୁବରଣ କରିଥିଲେ । |
| ବଳି | ତ୍ୟାଗ/ହତ୍ୟା | – ଦେବୀଙ୍କ ନିକଟରେ ବଳିଦେବା ପ୍ରଥା ବନ୍ଦ ହେବା ଉଚିତ । |
| ବଳୀ | ବଳବାନ | – ଭୀମ ମହାବଳୀ ଥିଲେ । |
| ବାଳିଶ | ମୂର୍ଖ, ନିର୍ବୋଧ, ଶିଶୁ | – ବାଳିଶମାନଙ୍କୁ ଯେତେ ବୁଝାଇଲେ ମଧ୍ୟ ସେମାନେ ଅବୁଝା ରହନ୍ତି । |
| ବାଳୀଶ | ନାରୀରତ୍ନ | – ପୁରାକାଳରେ ବାଳୀଶମାନେ ପିତାମାତାଙ୍କ ଜ୍ଞାତସାରରେ ସ୍ୱାମୀ ବରଣ କରୁଥିଲେ । |
| ବିଶଦ | ସ୍ପଷ୍ଟ/ବିସ୍ତୃତ | – ଚିଲିକା କାବ୍ୟରେ ଚିଲିକାର ସୌନ୍ଦର୍ଯ୍ୟ ବିଶଦ ଭାବରେ ବର୍ଣ୍ଣିତ । |
| ବିଷଦ | ଯେ ବିଷ ଦିଏ | – ଆତତାୟୀମାନଙ୍କ ମଧ୍ୟରେ ବିଷଦ ଅନ୍ୟତମ । |
| ବିଦୁର | ମହାଭାରତର ଚରିତ୍ରବିଶେଷ | – ମହାଭାରତରେ ବିଦୁର ଏକ ଉଲ୍ଲେଖନୀୟ ଚରିତ୍ର । |
| ବିଦୂର | ଅତିଦୂର | – ଯୋଗାଯୋଗ ଓ ପରିବହନ କ୍ଷେତ୍ରରେ ଉନ୍ନତି ହେତୁ ଆଜି କୌଣସି ସ୍ଥାନ ବିଦୂର ନୁହେଁ । |
| ବିଶ୍ରୁତ | ବିଖ୍ୟାତ/ଜ୍ଞାତ | – ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡରଙ୍କ ନାମ ବିଶ୍ୱବିଶ୍ରୁତ । |
| ବିସ୍ରୁତ | ନିଃସୃତ/ସ୍ଖଳିତ | – ହିମାଳୟର ଗଙ୍ଗୋତ୍ରୀତୁଷାରସ୍ରୋତରୁ ଗଙ୍ଗାନଦୀ ବିସ୍ରୁତ । |
| ବିସ୍ମୃତ | ଭୁଲିଯାଇଥିବା | – ଜାତିର ଐତିହ୍ୟ ଓ ସଂସ୍କୃତି ବିସ୍ମୃତ ହେବା ଏକ ବିଡ଼ମ୍ବନା । |
| ବିଧୁର | କାତର, ବିଚ୍ଛେଦ ପୀଡ଼ିତ | – ପୁତ୍ର ବିରହ ବିଧୁର ପିତାମାତା ରାଜା ଦଶରଥଙ୍କୁ ଅଭିଶାପ ଦେଲେ । |
| ଭିଦୁର | ବଜ୍ର | – ଇନ୍ଦ୍ରଙ୍କ ଭିଦୁର କ୍ଷେପଣରେ ବୃତ୍ରାସୁର ନିହତ ହେଲା । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ଭାଗୀରଥି | ଭଗୀରଥଙ୍କ ପୁତ୍ର | – ଭାଗୀରଥି ଜଣେ ବିଖ୍ୟାତ ନରପତି ଥିଲେ । |
| ଭାଗୀରଥୀ | ଗଙ୍ଗାନଦୀର ନାମ | – ସୌମିତ୍ରି ଭାଗୀରଥୀ ତୀରସ୍ଥ କାନନରେ ସୀତାଙ୍କୁ ବିସର୍ଜନ କରିଥିଲେ । |
| ଭିତ୍ତି | ମୂଳଦୁଆ | – ଭିତ୍ତି ସୁଦୃଢ଼ ନ ଥିଲେ ଘର ଭୁଶୁଡ଼ି ପଡ଼ିବ । |
| ଭୀତି | ଭୟ | – ବିସ୍ତୀର୍ଣ୍ଣ ସମୁଦ୍ରକୁ ଦେଖିଲେ ମନରେ ଭୀତି ସଞ୍ଚାର ହୁଏ । |
| ମତ | ଇଚ୍ଛା | – ବିବାହ ସମ୍ବନ୍ଧରେ ପିତାମାତା ପୁତ୍ରକନ୍ୟାଙ୍କର ମତ ନେବା ବିଧେୟ । |
| ମତ୍ତ | ମତୁଆଲା/ଉନ୍ମତ୍ତ | – ମତ୍ତହସ୍ତୀକୁ ଆୟତ୍ତ କରିବା ସହଜ ନୁହେଁ । |
| ମାଗଣା | ବିନାମୂଲ୍ୟ | – କୌଣସି ପଦାର୍ଥ ମାଗଣାରେ ମିଳେ ନାହିଁ । |
| ମାଗଣ | ଚାନ୍ଦା/ମାଗିବା | – ଦେବୀ ପୂଜାପାଇଁ ମାଗଣ ସଂଗ୍ରହ ହେଉଛି । |
| ରତି | କନ୍ଦର୍ପପତ୍ନୀ | – ରତି ଅତି ସୁନ୍ଦରୀ ଥିଲେ । |
| ରତ୍ତି | ଅଳ୍ପ ପରିମାଣ | – ରତ୍ତିଏ ସୁନାର ମୂଲ୍ୟ କମ୍ ନୁହେଁ । |
| ରଦ | ଦାନ୍ତ | – ରଦଗଳିତ ମୁଖମଣ୍ଡଳ ସୁନ୍ଦର ନୁହେଁ । |
| ରଦ୍ଦ | ଅକାମୀ | – ସରକାର ସ୍ୱାୟତ୍ତଶାସନ ସଂସ୍ଥାକୁ ରଦ୍ଦ କରିପାରିବେ ନାହିଁ । |
| ଲକ୍ଷ | ସଂଖ୍ୟାବିଶେଷ | – ସୁନାମିଦ୍ୱାରା ଲକ୍ଷଲକ୍ଷ ଲୋକ ଅକାଳରେ ମୃତ୍ୟୁମୁଖରେ ପଡ଼ିଲେ । |
| ଲକ୍ଷ୍ୟ | ଉଦ୍ଦେଶ୍ୟ | – ଜୀବନରେ ଲକ୍ଷ୍ୟ ପୂରଣ ହେଲେ ଶାନ୍ତି ମିଳେ । |
| ଲିଖନ | ଲେଖିବା | – କପାଳ ଲିଖନ ଅନ୍ୟଥା ହୁଏ ନାହିଁ । |
| ଲେଖନ | ଲୁହା କଲମ | – ତାଳପତ୍ର ଉପରେ ଲେଖନଦ୍ୱାରା ଲେଖାଯାଏ । |
| ସମ | ସମାନ | – କ୍ରୋଧ ସମ ରିପୁ ନାହିଁ । |
| ଶମ | ଶାନ୍ତି | – କେବଳ ଧନଦ୍ୱାରା ଜୀବନରେ ଶମ ମିଳେ ନାହିଁ । |
| ଶଙ୍କର | ଶିବ | – ଭଗବାନ ଶଙ୍କରଙ୍କର ବାହନ ବୃଷଭ । |
| ସଙ୍କର | ମିଶ୍ରିତ | – ସଙ୍କର ଜାତୀୟ ଗାଈଗୁଡ଼ିକ ଅଧିକ କ୍ଷୀର ଦିଅନ୍ତି । |
| ଶ୍ରବଣ | ଶୁଣିବା | – କୃଷ୍ଣ ନାମ ଶ୍ରବଣରେ ପାପ ନାଶ ହୁଏ । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ସ୍ରବଣ | କ୍ଷରିବା | – ନିର୍ଝରରୁ ସତତ ଜଳର ସ୍ରବଣ ହୁଏ । |
| ଶର | ତୀର/ବାଣ | – ଅର୍ଜୁନ ଶରରେ ଶଯ୍ୟା ପ୍ରସ୍ତୁତ କରିଥିଲେ । |
| ସର | ପୋଖରୀ/ଦୁଧସର | – କୃଷ୍ଣ ସର ଖାଇବାକୁ ଭଲ ପାଉଥିଲେ ।<br>– ବର୍ଷାକାଳରେ ସର ଜଳପୂର୍ଣ୍ଣ ରହେ । |
| ସୁର | ଦେବତା, ସୂର୍ଯ୍ୟ | – ମନୁଷ୍ୟ ଦିବ୍ୟଜ୍ଞାନର ଅଧିକାରୀ ହେଲେ ସୁରଗଣ ସନ୍ତୁଷ୍ଟ ହୁଅନ୍ତି । ସୁର ସକଳଶକ୍ତିର ଆଧାର । |
| ଶୂର | ବୀର | – ହନୁମାନ ଜଣେ ମହାନ୍ ଶୂର ଥିଲେ । |
| ସୁତ | ପୁଅ | – ଲବକୁଶ ରାମଚନ୍ଦ୍ରଙ୍କର ସୁତ ଥିଲେ । |
| ସୂତ | ସାରଥି | – କର୍ଣ୍ଣ ସୂତପୁତ୍ର ଥିଲେ । |
| ଶପ୍ତ | ଶାପଗ୍ରସ୍ତ | – ଶପ୍ତ ଜୀବନ ଯନ୍ତ୍ରଣା ପୀଡ଼ିତ ହୁଏ । |
| ସପ୍ତ | ସାତ | – ସପ୍ତଦିନରେ ଏକ ସପ୍ତାହ ହୁଏ । |
| ସମନ | ଆଦେଶ | – ଅଦାଲତରୁ ସମନ ଆସେ । |
| ଶମନ | ଯମ | – ନଚିକେତା ଶମନପୁରକୁ ଯାତ୍ରା କରିଥିଲେ । |
| ସାପ | ସର୍ପ | – ସାପ ଏକ ସରୀସୃପ । |
| ଶାପ | ଅଭିଶାପ | – ପ୍ରଭୁ ଶ୍ରୀରାମ ପାଷାଣୀ ଅହଲ୍ୟାଙ୍କୁ ଶାପମୁକ୍ତ କଲେ । |
| ଶୁଦ୍ଧା | ପବିତ୍ରା | – ଶୁଦ୍ଧାଭକ୍ତିର ବିକଳ୍ପ ନାହିଁ । ଶୁଦ୍ଧା ନୀତି ସର୍ବଦା ଅନୁସରଣୀୟ । |
| ସୁଦ୍ଧା | ମଧ୍ୟ | – ଆଜିସୁଦ୍ଧା ସମାଜରୁ କୁସଂସ୍କାର ଲୋପ ପାଇନାହିଁ । |
| ସୁଧା | ଅମୃତ | – ସୁଧାପାନ କଲେ ମୃତ୍ୟୁ ହୁଏ ନାହିଁ । |
| ଶୂକର | ଘୁଷୁରି/ବରାହ | – ବନ୍ୟ ଶୂକରଗୁଡ଼ିକ ଫସଲ ନଷ୍ଟ କରିଦିଅନ୍ତି । |
| ସୁକର | ସହଜ | – ପ୍ରତ୍ୟେକ କାର୍ଯ୍ୟକୁ ବିଜ୍ଞାନ ସୁକର କରିପାରିଛି । |
| ସୂଚୀ | ସୂଚୀପତ୍ର | – ପ୍ରତ୍ୟେକ ପୁସ୍ତକରେ ସୂଚୀ ରହେ । |
| ସୂଚି | ଛୁଞ୍ଚ | – ଲୁଗାପଟା ସୂଚିରେ ସିଲାଇ ହୁଏ । |
| ଶୁଚି | ପବିତ୍ର | – ଶୁଚି ମନରେ ଦେବତା ଆରାଧନା କରାଯାଏ । |
| ସର୍ଗ | ଅଧ୍ୟାୟ | – ରଘୁବଂଶ କାବ୍ୟର ପଞ୍ଚମ ସର୍ଗ ଖୁବ୍ ରସାଳ । |
| ସ୍ୱର୍ଗ | ଦେବଲୋକ | – ସ୍ୱର୍ଗପୁରରେ ଦେବତା ଥାଆନ୍ତି । |

| ଶବ୍ଦ | ଅର୍ଥ | ବାକ୍ୟରେ ପ୍ରୟୋଗ |
|---|---|---|
| ସୂକ୍ତି | ନୀତିବାକ୍ୟ | – ବାସ୍ତବ ଜୀବନରେ ସୂକ୍ତିର ପ୍ରଭାବ ଅଛି । |
| ଶୁକ୍ତି | ଶାମୁକା | – ଶୁକ୍ତିରୁ ମୁକ୍ତା ମିଳେ । |
| ସ୍ୱାକ୍ଷର | ଦସ୍ତଖତ | – ସ୍ୱାକ୍ଷର ନ ଥିଲେ ଦରଖାସ୍ତ ଗ୍ରହଣୀୟ ନୁହେଁ । |
| ସାକ୍ଷର | ଯେ ଲେଖିପଢ଼ି ଜାଣନ୍ତି | – ଏବେ ମଧ୍ୟ ଆମ ଦେଶରେ ସାକ୍ଷର ସଂଖ୍ୟା ଉଲ୍ଲେଖଯୋଗ୍ୟ ନୁହେଁ । |
| ସ୍କନ୍ଦ | କାର୍ତ୍ତିକେୟ | – ସ୍କନ୍ଦ ଦେବତାଙ୍କର ବାହନ ମୟୂର । |
| ସ୍କନ୍ଧ | କାନ୍ଧ | – ବ୍ରାହ୍ମଣମାନେ ସ୍କନ୍ଧରେ ଉପବୀତ ଧାରଣ କରନ୍ତି । |
| ସିତ | ଧଳା | – ବାଗ୍‌ଦେବୀ ସରସ୍ୱତୀ ସିତବସ୍ତ୍ର ପରିହିତା ଅଟନ୍ତି । |
| ଶିତ | ଦାଢୁଆ, ଶାଣିତ | – ସୈନିକ ଶିତ ଖଡ୍‌ଗରେ ଅପରାଧୀର ଶିରଚ୍ଛେଦନ କଲା । |
| ଶୀତ | ଥଣ୍ଡା | – ମାଘମାସର ବାଘପରି ଶୀତ ଆଉ ଅନୁଭୂତ ହେଉନାହିଁ । |
| ଶିଳ | ବଟାପଥର | – ଶିଳରେ ମା' ବେସର ବାଟନ୍ତି । |
| ଶୀଳ | ସ୍ୱଭାବ | – ଅଜ୍ଞାତ କୁଳଶୀଳ ବ୍ୟକ୍ତିକୁ ଆଶ୍ରୟ ଦିଅନାହିଁ । |
| ସୀମାନ୍ତ | ସୀମାରେଖା/ସୀମାଶେଷ | – ସୈନିକମାନେ ସୀମାନ୍ତକୁ ଜଗି ରହିଛନ୍ତି । |
| ସୀମନ୍ତ | ସୁନ୍ଥା | – ସଧବାମାନେ ସୀମନ୍ତରେ ସିନ୍ଦୂର ନାଇଥା'ନ୍ତି । |
| ଶିର | ମୁଣ୍ଡ | – ଯୁଦ୍ଧବେଳେ ଯୋଦ୍ଧାମାନେ ଶିରରେ ଶିରସ୍ତ୍ରାଣ ପରିଧାନ କରନ୍ତି । |
| ସୀର | ଲଙ୍ଗଳ | – କୃଷକ ସୀରରେ ଜମି କର୍ଷଣ କରେ । |
| ସବଳ | ବଳବାନ୍ | – ସୁସ୍ଥ ସବଳ ଶରୀର ସମସ୍ତଙ୍କ କାମ୍ୟ । |
| ଶବଳ | ଚିତ୍ରିତ, ନାନା ବର୍ଣ୍ଣବିଶିଷ୍ଟ | – ବଗିଚାଟି ପୁଷ୍ପ ଶବଳ ହୋଇଛି । ଶବଳ ଶାଢ଼ିଟି ଅତି ସୁନ୍ଦର । |
| ସୁତା | କନ୍ୟା | – ମୁଁ ଶୈଳସୁତାସୁତ ଗଣନାଥଙ୍କୁ ବନ୍ଦନା କରୁଛି । |
| ସୂତା | ସୂତ୍ର | – ଛୁଞ୍ଚିରେ ସୂତା ପୂରାଇଦିଅ । |
| ସୁଧ | କଳନ୍ତର | – ଗାଁ ମହାଜନମାନେ ଉଚ୍ଚ ହାରରେ ସୁଧ ସଂଗ୍ରହ କରନ୍ତି । |
| ଶୁଦ୍ଧ | ପବିତ୍ର | – ଶୁଦ୍ଧ ମନରେ ଦେବ ଆରାଧନା କରଣୀୟ । |

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥଗତ ପାର୍ଥକ୍ୟ ଦର୍ଶାଅ ।
(କ) ଶଙ୍କର, ସଙ୍କର, (ଖ) ସମ, ଶମ, (ଗ) ଲକ୍ଷ, ଲକ୍ଷ୍ୟ, (ଘ) ବିନ୍ଦୁର, ବିଦ୍ଦୂର, (ଙ) ଭିତ୍ତି, ଭୀତି, (ଚ) ପରସ୍ୱ, ପରଶ୍ୱ, (ଛ) ଦୂତ, ଦ୍ୟୂତ, (ଜ) ନିଧାନ, ନିଦାନ, (ଝ) କୁଜନ, କୂଜନ, (ଞ) ଈଶ, ଈଷ, (ଟ) ଗିରିଶ, ଗିରୀଶ, (ଠ) ଶପ୍ତ, ସପ୍ତ, (ଡ) ମତ, ମତ୍ତ, (ଢ) ଚୁଡ଼ା, ଚୂଡ଼ା, (ଣ) ବଳି, ବଳୀ ।

୨ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର ।
ପାବନି, ପାବନୀ; ଅର୍ଘ, ଅର୍ଘ୍ୟ; ଅନିଳ, ଅନୀଳ; ଅସନ, ଅଶନ; ଚିର, ଚୀର; ଇତି, ଈତି; କାଳୀ, କାଳି; ଯାତ, ଯାତ; ତରଣି, ତରଣୀ; ନିବାର, ନୀବାର; ପୁର, ପୂର; ବଧ, ବନ୍ଧ; ବିଶଦ, ବିଷଦ; ସୁର, ଶୂର; ସର୍ଗ, ସ୍ୱର୍ଗ ।

୩ । 'କ' ସ୍ତମ୍ଭରେ ଥିବା ଶବ୍ଦ ସହିତ 'ଖ' ସ୍ତମ୍ଭରେ ପ୍ରଦତ୍ତ ଅର୍ଥ ସହିତ ସମ୍ପର୍କ ଚିହ୍ନାଅ ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଶୀଳ | ପବିତ୍ର |
| ଦାର | ବିଷ୍ଣୁଙ୍କ ବାସସ୍ଥାନ |
| ପରିଖା | ଅଧୀନ |
| ସ୍ରବଣ | ଚିତ୍ରିତ |
| ବୃତ୍ତି | କୃଷ୍ଣ |
| ଅସିତ | ଜୀବିକା |
| ଶବଳ | କ୍ଷରିବା |
| ଆୟତ୍ତ | ଗଡ଼ଖାଇ |
| ଗୋଲୋକ | ସ୍ତ୍ରୀ |
| ଶୁଚି | ସ୍ୱଭାବ |
| | ଧବଳ |

## (ଙ) ବିପରୀତାର୍ଥବୋଧକ ଶବ୍ଦ

ଅନ୍ୟାନ୍ୟ ଭାଷାପରି ଆମ ଓଡ଼ିଆ ଭାଷାରେ ଅନେକ ବିପରୀତାର୍ଥବୋଧକ ଶବ୍ଦ ରହିଛି । କେତେଗୁଡ଼ିଏ ଶବ୍ଦର ଆପେକ୍ଷିକ ଶବ୍ଦକୁ ବିପରୀତାର୍ଥବୋଧକ ଶବ୍ଦ ରୂପେ ଗ୍ରହଣ କରାଯାଏ । ଦୃଷ୍ଟାନ୍ତ ସ୍ୱରୂପ 'ଆବିର୍ଭାବ'ର ବିପରୀତଅର୍ଥବୋଧକ ଶବ୍ଦ 'ତିରୋଭାବ' ସହିତ 'ତିରୋଧାନ' ଗ୍ରହଣୀୟ । ସେହିପରି ଅନ୍ୟ ଏକ ଦୃଷ୍ଟାନ୍ତ 'ପ୍ରସନ୍ନ'ର ବିପରୀତାର୍ଥବୋଧକ ଶବ୍ଦ 'ବିଷଣ୍ଣ' ସହିତ 'ଅପ୍ରସନ୍ନ' ଗ୍ରହଣଯୋଗ୍ୟ ।

କେତେକ ସୁପ୍ରଚଳିତ ଓଡ଼ିଆ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦାବଳୀ ନିମ୍ନରେ ପ୍ରଦତ୍ତ ହେଲା–

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ଅଋଣୀ | - | ଋଣୀ | ଅପରାଜିତ | - | ପରାଜିତ |
| ଅକଣ୍ଟକ | - | କଣ୍ଟକ | ଅପରାଧୀ | - | ନିରପରାଧ |
| ଅକପଟ | - | କପଟ | ଅପାୟ | - | ଉପାୟ |
| ଅକର୍ମ | - | କର୍ମ | ଅପେକ୍ଷା | - | ଉପେକ୍ଷା |
| ଅକାତର | - | କାତର | ଅପ୍ରତୁଳ | - | ପ୍ରତୁଳ |
| ଅକ୍ଲାନ୍ତ | - | କ୍ଲାନ୍ତ | ଅବସନ୍ନ | - | ପ୍ରସନ୍ନ |
| ଅଗ | - | ମୂଳ | ଅବାଧ | - | ବାଧ |
| ଅଗ୍ର | - | ପଶ୍ଚାତ, ମୂଳ | ଅବିଚାର | - | ବିଚାର |
| ଅଚିନ୍ତନୀୟ | - | ଚିନ୍ତନୀୟ | ଅବିରୋଧୀ | - | ବିରୋଧୀ |
| ଅଣୁ | - | ବୃହତ୍ | ଅଭାଗା | - | ଭାଗ୍ୟବାନ୍ |
| ଅତ୍ୟାହାରୀ | - | ଅଳ୍ପାହାରୀ | ଅଭିଜ୍ଞ | - | ଅନଭିଜ୍ଞ |
| ଅତ୍ୟୁଚ୍ଚ | - | ଅନୁଚ୍ଚ | ଅଭ୍ୟସ୍ତ | - | ଅନଭ୍ୟସ୍ତ |
| ଅଧଃ | - | ଊର୍ଦ୍ଧ୍ୱ | ଅମଙ୍ଗଳ | - | ମଙ୍ଗଳ |
| ଅଧମ | - | ଉତ୍ତମ | ଅମର୍ତ୍ତ୍ୟ | - | ମର୍ତ୍ତ୍ୟ |
| ଅଧମର୍ଣ୍ଣ | - | ଉତ୍ତମର୍ଣ୍ଣ | ଅମନୋଯୋଗୀ | - | ମନୋଯୋଗୀ |
| ଅଧମାଙ୍ଗ | - | ଉତ୍ତମାଙ୍ଗ | ଅମୃତ | - | ବିଷ |
| ଅଧା | - | ପୂରା | ଅଳ୍ପ | - | ବହୁତ |
| ଅଧିକ | - | ଅନଧିକ, ଊଣା | ଅଳ୍ପହାରୀ | - | ବହ୍ୱାହାରୀ |
| ଅନାବୃଷ୍ଟି | - | ଅତିବୃଷ୍ଟି | ଅରୁଆ | - | ଉଷୁନା |
| ଅନୁକୂଳ | - | ପ୍ରତିକୂଳ | ଅରୁଚି | - | ରୁଚି |
| ଅନୁଗ୍ରହ | - | ନିଗ୍ରହ | ଅର୍ଥ | - | ଅନର୍ଥ |
| ଅନୁରକ୍ତ | - | ବିରକ୍ତ | ଅର୍ଥୀ | - | ପ୍ରତ୍ୟର୍ଥୀ |
| ଅନୁରାଗ | - | ବିରାଗ | ଅର୍ପଣ | - | ପ୍ରତ୍ୟର୍ପଣ |
| ଅନୁଲୋମ | - | ବିଲୋମ, ପ୍ରତିଲୋମ | ଅଳ୍ପଜୀବୀ | - | ଦୀର୍ଘଜୀବୀ |
| ଅନ୍ତରଙ୍ଗ | - | ବହିରଙ୍ଗ | ଅଳୀକ | - | ସତ୍ୟ |
| ଅନ୍ଧକାର | - | ଆଲୋକ | ଅଲଣା | - | ଲୁଣିଆ |
| ଅନ୍ଧାର | - | ଆଲୁଅ | ଅଲୋଡ଼ା | - | ଲୋଡ଼ା |
| ଅପଚୟ | - | ଉପଚୟ | ଅଶନ | - | ଅନଶନ |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ଅଗ୍ରସର | - | ଅନଗ୍ରସର | ଆସ୍ତିକ | - | ନାସ୍ତିକ |
| ଅଶରୀରୀ | - | ଶରୀରୀ | ଆମିଷ | - | ନିରାମିଷ |
| ଅସବର୍ଣ୍ଣ | - | ସବର୍ଣ୍ଣ | ଆୟ | - | ବ୍ୟୟ |
| ଅସତୀ | - | ସତୀ | ଆୟତ୍ତ | - | ଅଣାୟତ୍ତ |
| ଅସଲ | - | ନକଲି | ଆରମ୍ଭ | - | ଶେଷ |
| ଅସହିଷ୍ଣୁ | - | ସହିଷ୍ଣୁ | ଆରୋହଣ | - | ଅବରୋହଣ |
| ଅସୀମ | - | ସସୀମ | ଆଶା | - | ନିରାଶା, ନୈରାଶ୍ୟ |
| ଅସ୍ତି(ଅଛି) | - | ନାସ୍ତି | ଆସ୍ଥା | - | ଅନାସ୍ଥା |
| ଅସ୍ତ୍ର | - | ଶସ୍ତ୍ର | ଆଶୀର୍ବାଦ | - | ଅଭିଶାପ |
| ଅସ୍ୱୀକାର | - | ସ୍ୱୀକାର | ଆଶ୍ରୟ | - | ନିରାଶ୍ରୟ |
| ଅହଂକାରୀ | - | ନିରହଂକାର | ଆସ୍ତିକ | - | ନାସ୍ତିକ |
| ଅହିଂସ୍ର | - | ହିଂସ୍ର | ଇଚ୍ଛା | - | ଅନିଚ୍ଛା |
| ଆଇନ | - | ବେଆଇନ | ଈଷତ୍ | - | ପ୍ରଭୂତ |
| ଆକାଶ | - | ପାତାଳ | ଇଷ୍ଟ | - | ଅନିଷ୍ଟ |
| ଆଗତ | - | ଅନାଗତ | ଈହା | - | ଅନୀହା |
| ଆଗମନ | - | ପ୍ରତ୍ୟାଗମନ | ଉପତ୍ୟକା | - | ଅଧିତ୍ୟକା |
| ଆକୁଞ୍ଚନ | - | ପ୍ରସାରଣ | ଇହ | - | ପର |
| ଆଗ | - | ପଛ | ଉଚ୍ଚ | - | ନୀଚ |
| ଆଚାର | - | ଅନାଚାର | ଉଠାଣି | - | ଗଡ଼ାଣି |
| ଆଦାନ | - | ପ୍ରଦାନ | ଉତ୍କର୍ଷ | - | ଅପକର୍ଷ |
| ଆଦି | - | ଅନାଦି, ଅନ୍ତ | ଉତ୍ଥାନ | - | ପତନ |
| ଆଦ୍ୟ | - | ପ୍ରାନ୍ତ | ଉଦୟ | - | ଅସ୍ତ |
| ଆହୂତ | - | ଅନାହୂତ | ଉଦୟମାନ | - | ଅସ୍ତମନ(ଅସ୍ତାଚଳଗମନ) |
| ଆର୍ଦ୍ର | - | ଶୁଷ୍କ | ଉଦ୍‌ବେଗ | - | ନିରୁଦ୍‌ବେଗ |
| ଆନନ୍ଦ | - | ନିରାନନ୍ଦ | ଉଦାର | - | ଅନୁଦାର |
| ଆପଣା | - | ପର | ଉଦୀଚୀ | - | ଅବାଚୀ |
| ଆବରଣ | - | ଅନାବରଣ | ଉନ୍ନତ | - | ଅନୁନ୍ନତ |
| ଆବାଦୀ | - | ଅନାବାଦୀ | ଉନ୍ନତି | - | ଅବନତି |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ଆବାହନ | - | ବିସର୍ଜନ | ଉନ୍ମୀଳିତ | - | ମୁଦ୍ରିତ |
| ଆବିର୍ଭାବ | - | ତିରୋଭାବ | ଉପର | - | ତଳ |
| ଆବିଳ | - | ଅନାବିଳ | ଉର୍ବର | - | ଅନୁର୍ବର |
| ଆବୃତ | - | ଅନାବୃତ | ଉଭା | - | ପୋତା |
| ଆମଦାନି(ନୀ) | - | ରପ୍ତାନି(ନୀ) | ଉତ୍ସାହ | - | ନିରୁତ୍ସାହ |
| ଋଣୀ | - | ଅନୃଣ, ଅନୃଣୀ | ଖରାପ | - | ଭଲ |
| ଋତ | - | ଅନୃତ | ଖଳ | - | ସାଧୁ |
| ଋଦ୍ଧ | - | ମୁକ୍ତ | ଖଣ୍ଡ | - | ଅଖଣ୍ଡ |
| ଋଜୁ | - | କୁଟିଳ, ବକ୍ର | ଖର୍ବକାୟ | - | ଦୀର୍ଘକାୟ |
| ଏକ | - | ଅନେକ | ଖାଣ୍ଟି | - | ଭେଜାଲ |
| ଐକ୍ୟ | - | ଅନୈକ୍ୟ | ଖାତକ | - | ମହାଜନ |
| ଐହିକ | - | ପାରତ୍ରିକ, ପାରତ୍ର | ଖାଲ | - | ଢିପ |
| ଓଡ଼ିଆ | - | ଅଣଓଡ଼ିଆ | ଖିଆ | - | ଅଖିଆ |
| ଓଦା | - | ଶୁଖିଲା | ଖୋଲା | - | ମୁଦା |
| ଔଚିତ୍ୟ | - | ଅନୌଚିତ୍ୟ | ଗତ | - | ଆଗତ |
| କଠିନ | - | କୋମଳ | ଗଭୀର | - | ଅଗଭୀର |
| କର୍ମଠ | - | କର୍ମକୁଣ୍ଠ | ଗାଧ | - | ଅଗାଧ |
| କଠୋର, କର୍କଶ | - | କୋମଳ | ଗମନ | - | ଆଗମନ |
| କଞ୍ଚା | - | ପାଚିଲା | ଗରିବ | - | ଧନୀ |
| କନିଷ୍ଠ | - | ଜ୍ୟେଷ୍ଠ | ଗରିମା | - | ଲଘିମା |
| କପଟୀ | - | ନିଷ୍କପଟ, ସରଳ | ଗାଧୁଆ | - | ଅଗାଧୁଆ |
| କମ୍ | - | ବେଶି | ଗୁଣ | - | ଦୋଷ |
| କଳା | - | ଗୋରା, ଧଳା | ଗୁଣୀ | - | ନିର୍ଗୁଣ |
| କସୁର | - | ବେକସୁର | ଗୁରୁ | - | ଲଘୁ, ଶିଷ୍ୟ |
| କାରଣ | - | ଅକାରଣ | ଗୃହୀ | - | ସନ୍ନ୍ୟାସୀ |
| କାରା | - | ନାକରା | ଗୁରୁପାକ | - | ଲଘୁପାକ |
| କାଳୀ | - | ଗୋରୀ | ଗୋପନୀୟ | - | ପ୍ରକାଶ୍ୟ |
| କିଣା | - | ବିକା | ଗୋଳିଆ | - | ସଫା, ପରିଷ୍କାର |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| କୀର୍ତ୍ତି | - | ଅକୀର୍ତ୍ତି, ଅପକୀର୍ତ୍ତି | ଗ୍ରାମ୍ୟ | - | ବନ୍ୟ |
| କୁକର୍ମ | - | ସୁକର୍ମ | ଘନ | - | ତରଳ |
| କୁଟିଳ | - | ସରଳ | ଘର | - | ବାହାର |
| କୃତକାର୍ଯ୍ୟ | - | ଅକୃତକାର୍ଯ୍ୟ | ଚଞ୍ଚଳ | - | ମଠ, ଧୀର |
| କୃତଜ୍ଞ | - | ଅକୃତଜ୍ଞ, କୃତଘ୍ନ | ଚତୁର | - | ଅଚତୁର, ବୋକା |
| କୃତଦାର | - | ଅକୃତଦାର | ଚେମଡ଼ା | - | ମସକା, ମଟକା |
| କୃପଣ | - | ବଦାନ୍ୟ, ଦାନୀ | ଚିକ୍କଣ | - | ଅଚିକ୍କଣ |
| କ୍ରିୟା | - | ପ୍ରତିକ୍ରିୟା | ଚିନ୍ତା | - | ଅଚିନ୍ତା |
| ଖଟା | - | ମିଠା | ଚିହ୍ନା | - | ଅଚିହ୍ନା |
| ଖରା | - | ବର୍ଷା | ଚେତନ | - | ଅଚେତନ |
| ଚେମଡ଼ା | - | ମସକା | ତିରସ୍କାର | - | ପୁରସ୍କାର |
| ଚୋର | - | ସାଧୁ | ତିରୋଧାନ | - | ଆବିର୍ଭାବ |
| ଛୁଆଁ | - | ଅଛୁଆଁ | ତୁଳସୀ | - | ବିଛୁଆତି |
| ଛୋଟ | - | ବଡ଼ | ତୁଷ୍ଟ | - | ରୁଷ୍ଟ |
| ଜଡ଼ | - | ଚେତନ | ତେଲିଆ | - | ନୁଖୁରା |
| ଜଣା | - | ଅଜଣା | ତୋଷ | - | ରୋଷ |
| ଜନଗହଳି | - | ଜନବିରଳ | ଥଣ୍ଡା | - | ଗରମ |
| ଜନ୍ମ | - | ମୃତ୍ୟୁ, ମରଣ | ଥୟ | - | ଅଥୟ |
| ଜବାବ | - | ବେଜବାବ | ଦଢ଼ | - | ଫଟା, ଭଙ୍ଗା |
| ଜମା | - | ଖର୍ଚ୍ଚ | ଦୟାଳୁ | - | ନିର୍ଦ୍ଦୟ |
| ଜୟ | - | ପରାଜୟ | ଦରକାରୀ | - | ଅଦରକାରୀ |
| ଜଳ | - | ସ୍ଥଳ | ଦାତା | - | ଗ୍ରହୀତା |
| ଜାତ | - | ମୃତ | ଦୀର୍ଘ | - | ହ୍ରସ୍ୱ |
| ଜାଗ୍ରତ | - | ସୁପ୍ତ | ଦୁଃଖ | - | ସୁଖ |
| ଜୀବନ୍ତ | - | ମୃତ | ଦୁର୍ଦ୍ଦାନ୍ତ | - | ନିରୀହ |
| ଜୀବିତ | - | ମୃତ | ଦୁର୍ବଳ | - | ସବଳ |
| ଜୀର୍ଣ୍ଣ | - | ଅଜୀର୍ଣ୍ଣ | ଦୁର୍ଭିକ୍ଷ | - | ସୁଭିକ୍ଷ |
| ଜୁଆର | - | ଭଟ୍ଟା | ଦୁର୍ଲଭ | - | ସୁଲଭ |

| ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|
| ଜ୍ୱଳନ୍ତ | - ନିର୍ବାପିତ | ଦୁଷ୍କୃତି | - ସୁକୃତି |
| ଝଙ୍କାଳିଆ | - ଥୁଣ୍ଟା | ଦୁଷ୍ଟ | - ଶିଷ୍ଟ |
| ଜ୍ଞାତ | - ଅଜ୍ଞାତ | ଦୂର | - ନିକଟ |
| ଜ୍ଞାନୀ | - ଅଜ୍ଞାନ | ଦେଣା | - ପାଉଣା |
| ଟାଣ | - ନରମ | ଦୈର୍ଘ୍ୟ | - ପ୍ରସ୍ଥ |
| ଠିକ୍ | - ଭୁଲ୍ | ଦୋଷୀ | - ନିର୍ଦ୍ଦୋଷ |
| ଡର | - ସାହସ | ଧନୀ | - ନିର୍ଧନ, ଦରିଦ୍ର |
| ଡେଙ୍ଗା | - ଗେଡ଼ା, ବାଙ୍ଗରା | ଧର୍ମ | - ଅଧର୍ମ |
| ଢଙ୍କା | - ଅଢଙ୍କା | ଧାନ | - ବାଲୁଙ୍ଗା |
| ତବତ | - ପଖାଳ | ଧାରୁଆ | - ଦକ୍ଟୁଡ଼ା |
| ଧାର୍ମିକ | - ପାପିଷ୍ଠ | ପରୋକ୍ଷ | - ପ୍ରତ୍ୟକ୍ଷ |
| ଧୀର | - ଅଧୀର, ଚଞ୍ଚଳ | ପସନ୍ଦ | - ନାପସନ୍ଦ, ଅପସନ୍ଦ, ବେପସନ୍ଦ |
| ଧୁଆ | - ଅଧୁଆ | ପକ୍ଷପାତୀ | - ନିରପେକ୍ଷ, ନିଷ୍ପକ୍ଷପାତ |
| ଧୈର୍ଯ୍ୟ | - ଅଧୈର୍ଯ୍ୟ | ପାଠୁଆ | - ଅପାଠୁଆ |
| ଧୋଇ | - ମଗୁଡ଼ି | ପାଣିଆ | - କାଠୁଆ, ବହଳିଆ |
| ନବୀନ | - ପ୍ରାଚୀନ | ପାପ | - ପୁଣ୍ୟ |
| ନରକ | - ସ୍ୱର୍ଗ | ପାପୀ | - ନିଷ୍ପାପ |
| ନଶ୍ୱର | - ଅନଶ୍ୱର, ଅବିନଶ୍ୱର | ପାର୍ଥିବ | - ଅପାର୍ଥିବ, ସ୍ୱର୍ଗୀୟ |
| ନାକରା | - ଉତ୍ତମ | ପୁରବଧୂ(କୁଳବଧୂ) | -ବାରବଧୂ |
| ନିତ୍ୟ | - ଅନିତ୍ୟ | ପାସ୍ | - ଫେଲ୍ |
| ନିଦା | - ପୋଲା | ପିଲା | - ବଡ଼, ବୁଢ଼ା |
| ନିନ୍ଦା | - ପ୍ରଶଂସା, ସ୍ତୁତି | ପୀଡ଼ିତ | - ସୁସ୍ଥ |
| ନିରପେକ୍ଷ | - ସାପେକ୍ଷ, ପକ୍ଷପାତ | ପୁନିଅଁ | - ଉଆଁସ |
| ନିର୍ଦ୍ଦୟ | - ସଦୟ | ପୁରାଙ୍ଗନା | - ବାରାଙ୍ଗନା |
| ନିର୍ମଳ | - ମଳିନ, ଅନିର୍ମଳ | ପୁରୋହିତ | - ଯଜମାନ |
| ନୀତି | - ଅନୀତି | ପୂର୍ବାହ୍ନ | - ଅପରାହ୍ନ |
| ନୀରସ | - ସରସ | ପ୍ରକୃତି | - ବିକୃତି |
| ନୂତନ | - ପୁରାତନ | ପ୍ରତି | - ଦୀର୍ଘ |

| ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|
| ନୈସର୍ଗିକ | - କୃତ୍ରିମ | ପ୍ରତ୍ୟକ୍ଷ | - ପରୋକ୍ଷ |
| ନ୍ୟାୟ | - ଅନ୍ୟାୟ | ପ୍ରତ୍ୟୁଷ | - ପ୍ରଦୋଷ |
| ପକ୍କା | - କଞ୍ଚା | ପ୍ରବେଶ | - ପ୍ରସ୍ଥାନ |
| ପଚରା | - ଅପଚରା | ପ୍ରବୃତ୍ତି | - ନିବୃତ୍ତି |
| ପଣ୍ଡିତ | - ମୂର୍ଖ, ଅପଣ୍ଡିତ | ପ୍ରଭୁ | - ଭୃତ୍ୟ |
| ପତଳା | - ବହଳା, ମୋଟା | ପ୍ରଶ୍ନ | - ଉତ୍ତର |
| ପରବାୟ | - ବେପରବାୟ | ପ୍ରସନ୍ନ | - ଅପ୍ରସନ୍ନ, ବିଷଣ୍ଣ |
| ପରା | - ଅପରା | ପ୍ରସାରଣ | - ସଙ୍କୋଚନ |
| ପରାଧୀନ | - ସ୍ୱାଧୀନ | ପ୍ରାକୃତିକ | - ଅପ୍ରାକୃତିକ, କୃତ୍ରିମ |
| ପରିଣାମ | - ଅପରିଣାମ | ପ୍ରାଚୀ | - ପ୍ରତୀଚୀ |
| ପରିଣାମଦର୍ଶୀ | - ଅପରିଣାମଦର୍ଶୀ | ପ୍ରାଚୀନ | - ଅର୍ବାଚୀନ |
| ପୋଲା | - ନିଦା | ବିରାଗ | - ଅନୁରାଗ |
| ଫକିର | - ଅମିର | ବିଧି | - ଅବିଧି, ନିଷେଧ |
| ଫଟା | - ଅଫଟା, ଗୋଟା | ବିନୀତ | - ଅବିନୀତ, ଉଦ୍ଧତ, ଦୁର୍ବିନୀତ |
| ବଦ୍ଧ | - ମୁକ୍ତ | ବହିଃସ୍ଥ | - ଅନ୍ତଃସ୍ଥ |
| ବକ୍ତା | - ଶ୍ରୋତା | ବିପଦ | - ସମ୍ପଦ |
| ବର୍ଣ୍ଣାଶୁଦ୍ଧି | - ବର୍ଣ୍ଣଶୁଦ୍ଧି | ବିପ୍ରକର୍ଷ | - ସନ୍ନିକର୍ଷ |
| ବନ୍ଦନ | - ନିନ୍ଦନ | ବିଫଳ | - ସଫଳ |
| ବନ୍ଧନ | - ମୁକ୍ତି | ବିବେକୀ | - ଅବିବେକୀ, ଅବିବେକ |
| ବଦ୍ଧ | - ମୁକ୍ତ | ବନ୍ଦୋବସ୍ତ | - ବେବନ୍ଦୋବସ୍ତ |
| ବନ୍ଧୁର | - ମସୃଣ | ବିଯୋଗ | - ସଂଯୋଗ |
| ବଳକା | - ନିଅଣ୍ଟ | ବିରକ୍ତି | - ଅନୁରକ୍ତି |
| ବହିଃ | - ଅନ୍ତଃ | ବିହିତ | - ଅବିହିତ |
| ବହିର୍ବାଣିଜ୍ୟ | - ଅନ୍ତର୍ବାଣିଜ୍ୟ | ବେରାମ | - ଆରାମ |
| ବହିର୍ବାସ | - ଅନ୍ତର୍ବାସ | ବେଳ | - ଅବେଳ |
| ବହୁତ | - ଅଳ୍ପ | ବେସାମରିକ | - ସାମରିକ |
| ବାଟ | - ଅବାଟ | ବ୍ୟର୍ଥ | - ସାର୍ଥ |
| ବାଦୀ | - ବିବାଦୀ, ପ୍ରତିବାଦୀ | ବ୍ୟବହିତ | - ଅବ୍ୟବହିତ |

| ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|
| ବାଧ | - ଅବାଧ | ବ୍ୟଷ୍ଟି | - ସମଷ୍ଟି |
| ବାମ | - ଦକ୍ଷିଣ | ଭଙ୍ଗା | - ଗଢ଼ା |
| ବାଳୁତ | - ବୃଦ୍ଧ | ଭୁଲ | - ନିର୍ଭୁଲ, ଠିକ୍ |
| ବାହ୍ୟ | - ଆଭ୍ୟନ୍ତର, ଆଭ୍ୟନ୍ତରୀଣ | ଭଦ୍ର | - ଅଭଦ୍ର |
| ବାସ୍ତବ | - ଅବାସ୍ତବ | ଭୟ | - ନିର୍ଭୟ, ନିର୍ଭୟତା, ଅଭୟ |
| ବନ୍ଧୁର | - ମସୃଣ | ଭିନ୍ନ | - ଅଭିନ୍ନ |
| ବ୍ରାହ୍ମଣ | - ଅବ୍ରାହ୍ମଣ, ଚଣ୍ଡାଳ | ଭଲ | - ମନ୍ଦ |
| ବିକର୍ଷଣ | - ଆକର୍ଷଣ | ଭକ୍ଷକ | - ଭକ୍ଷ୍ୟ, ରକ୍ଷକ |
| ବିକାର | - ଅବିକାର | ଭାଙ୍ଗିବା | - ଗଢ଼ିବା |
| ବିକ୍ରୀତ | - କ୍ରୀତ, ଅବିକ୍ରୀତ | ଭାରୀ | - ଉଶ୍ୱାସ |
| ବିକ୍ରେତା | - କ୍ରେତା | ଭୀମ | - କାନ୍ତ |
| ବିଜୟ | - ପରାଜୟ | ଭୀରୁ | - ସାହସୀ, ନିର୍ଭୀକ |
| ବିଜ୍ଞ | - ଅଜ୍ଞ | ଭେଦ | - ଅଭେଦ |
| ବିଦିତ | - ଅବିଦିତ | ଭୋଗ | - ତ୍ୟାଗ |
| ବିଧବା | - ସଧବା | ମଇଳା | - ସଫା |
| ମଞ୍ଜୁର | - ନାମଞ୍ଜୁର | ରସିକ | - ଅରସିକ, ବେରସିକ |
| ମଠୁଆ | - ଚଞ୍ଚଳିଆ | ରାଜା | - ପ୍ରଜା |
| ମଧୁର | - ତିକ୍ତ, କଟୁ | ରୁଗ୍ଣ | - ସୁସ୍ଥ |
| ମଫସଲିଆ | - ସହରିଆ | ରୋଗୀ | - ନୀରୋଗ |
| ମରାମତି | - ବେମରାମତି | ରୋଜଗାର | - ବେରୋଜଗାର |
| ମଲା | - ଜୀଅନ୍ତା | ଲବ | - ହର |
| ମଳିମୁଣ୍ଡିଆ | - ଧୋବଧାଉଳିଆ | ଲମ୍ବ | - ଓସାର |
| ମହଙ୍ଗା, ମହରଗ | - ଶସ୍ତା | ଲମ୍ବା | - ଚଉଡ଼ା |
| ମାନ | - ଅପମାନ | ଲୟ | - ବିଳୟ |
| ମାନୀ | - ଅମାନୀ | ଲାଇନ୍ | - ବେଲାଇନ୍ |
| ମାପ | - ଅମାପ | ଲାଭ | - କ୍ଷତି, ହାନି |
| ମାୟିକ | - ଅମାୟିକ | ଲିଖିତ | - ଅଲିଖିତ, ମୌଖିକ |
| ମାରଣ | - ତାରଣ | ଲେଖା | - ଅଲେଖା |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ମିତବ୍ୟୟୀ | - | ଅମିତବୟୀ, ଅପବ୍ୟୟୀ | ଲୋକସାନି | - | ଲାଭ |
| ମିତ୍ର | - | ଶତ୍ରୁ | ଲୋଭୀ | - | ନିର୍ଲୋଭ |
| ମିତ୍ରାକ୍ଷର | - | ଅମିତ୍ରାକ୍ଷର | ଶକ୍ତ | - | ଅଶକ୍ତ |
| ମିଳନ | - | ବିଛେଦ | ଶାକାହାରୀ | - | ମାଂସାହାରୀ |
| ମିଶ୍ରିତ | - | ଅମିଶ୍ରିତ | ଶାନ୍ତ | - | ଅଶାନ୍ତ |
| ମୁକୁଳା | - | ବନ୍ଧା | ଶାନ୍ତି | - | ଅଶାନ୍ତି |
| ମୁଖ୍ୟ | - | ଗୌଣ | ଶାରୀରିକ | - | ମାନସିକ |
| ମୁନାଫା | - | ଲୋକସାନ | ଶାଶ୍ୱତ | - | ନଶ୍ୱର |
| ମୂକ | - | ବାଚାଳ | ଶାସକ | - | ଶାସିତ |
| ଯଥା | - | ଅଯଥା | ଶାସ୍ତ୍ରୀୟ | - | ଅଶାସ୍ତ୍ରୀୟ |
| ଯଥାର୍ଥ | - | ଅଯଥାର୍ଥ | ଶିବ | - | ଅଶିବ |
| ଯତ୍ନ | - | ଅଯତ୍ନ | ଶିକ୍ଷକ | - | ଛାତ୍ର |
| ଯାଜକ(ପୁରୋହିତ) | - | ଯଜମାନ | ଶିକ୍ଷା | - | ଅଶିକ୍ଷା |
| ଯୋଗ | - | ବିୟୋଗ | ଶିକ୍ଷିତ | - | ଅଶିକ୍ଷିତ |
| ଯୋଡ଼ | - | ବିଯୋଡ଼ | ଶୀତ | - | ଉଷ୍ଣ |
| ଯଜମାନ | - | ପୁରୋହିତ | ସପତ୍ନୀକ | - | ବିପତ୍ନୀକ |
| ଯୌକ୍ତିକ | - | ଅଯୌକ୍ତିକ | ସମଷ୍ଟି | - | ବ୍ୟଷ୍ଟି |
| ଶୀତଳ | - | ଉଷ୍ଣ | ସନ୍ଦେହୀ | - | ନିଃସନ୍ଦେହ |
| ଶ୍ଳୀଳ | - | ଅଶ୍ଳୀଳ | ସଂକୋଚନ | - | ପ୍ରସାରଣ |
| ଶୀଳ | - | ଅଶୀଳ | ସନ୍ଧି | - | ବିଗ୍ରହ |
| ଶୁକ୍ଳ | - | କୃଷ୍ଣ | ସପକ୍ଷ | - | ବିପକ୍ଷ |
| ଶୁଖିଲା | - | ଓଦା | ସଫଳ | - | ଅସଫଳ |
| ଶୁଣା | - | ଅଶୁଣା | ସବ୍ୟ | - | ଅପସବ୍ୟ |
| ଶୁଦ୍ଧ | - | ଅଶୁଦ୍ଧ | ସମ | - | ବିଷମ |
| ଶୁଭ | - | ଅଶୁଭ | ସମୟ | - | ଅସମୟ |
| ଶୁଷ୍କ | - | ଆର୍ଦ୍ର | ସମ୍ଭବ | - | ଅସମ୍ଭବ |
| ଶୂନ୍ୟ | - | ପୂର୍ଣ୍ଣ | ସଶଙ୍କ | - | ନିଃଶଙ୍କ |
| ଶୋକ | - | ହର୍ଷ | ସମ୍ପତ୍ତି | - | ବିପତ୍ତି |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ଶୋଭନୀୟ | - | ଅଶୋଭନୀୟ | ସରବ | - | ନୀରବ |
| ଶ୍ରଦ୍ଧା | - | ଘୃଣା, ଅଶ୍ରଦ୍ଧା | ସରଳ | - | ବକ୍ର, କୁଟିଳ, ଜଟିଳ |
| ଶ୍ରୀଯୁକ୍ତ | - | ଶ୍ରୀହୀନ | ସରସ | - | ନୀରସ |
| ଶ୍ରୁତିକଟୁ | - | ଶ୍ରୁତିମଧୁର | ସଲଜ୍ଜ | - | ନିର୍ଲଜ୍ଜ |
| ଶ୍ଳୀଳ | - | ଅଶ୍ଳୀଳ | ସଶ୍ରମ | - | ଅଶ୍ରମ |
| ସଂକୀର୍ଣ୍ଣ | - | ପ୍ରଶସ୍ତ | ସାକାର | - | ନିରାକାର |
| ସଂଖୁଡ଼ି | - | ନିଃସଂଖୁଡ଼ି | ସାଧାରଣ | - | ଅସାଧାରଣ |
| ସଂଜ | - | ସକାଳ | ସାଧୁ | - | ଅସାଧୁ, ତସ୍କର |
| ସମ୍ପୂର୍ଣ୍ଣ | - | ଅସମ୍ପୂର୍ଣ୍ଣ | ସାନ | - | ବଡ଼ |
| ସଂକ୍ଷେପ | - | ବିସ୍ତାର | ସାନ୍ତ | - | ଅନନ୍ତ |
| ସଂକ୍ଷିପ୍ତ | - | ବିସ୍ତୃତ, ବିଶଦ | ସାମାନ୍ୟ | - | ଅସାମାନ୍ୟ |
| ସକାମ | - | ନିଷ୍କାମ | ସାମ୍ୟ | - | ବୈଷମ୍ୟ |
| ସଜ | - | ବାସି | ସାର | - | ଅସାର |
| ସଜ୍ଜନ | - | ଦୁର୍ଜ୍ଜନ | ସାର୍ଥକ | - | ନିରର୍ଥକ |
| ସତ୍ | - | ଅସତ୍ | ସାକ୍ଷର | - | ନିରକ୍ଷର |
| ସତୃଷ୍ଣ | - | ବିତୃଷ୍ଣ | ସିଦ୍ଧ | - | ଅସିଦ୍ଧ |
| ସତ୍ୟ | - | ମିଥ୍ୟା, ଅସତ୍ୟ | ସୁକୃତ | - | ଦୁଷ୍କୃତ |
| ସନାଥା | - | ଅନାଥା | ସୁଗମ | - | ଦୁର୍ଗମ |
| ସାତ୍ତ୍ୱିକ | - | ତାମସିକ | ସସ୍ତ୍ରୀକ | - | ଅସ୍ତ୍ରୀକ, ବିପତ୍ନୀକ |
| ସାର୍ବଜନୀନ | - | ବ୍ୟକ୍ତିଗତ | ସ୍ୱକୀୟା | - | ପରକୀୟା |
| ସୁନାମ | - | ଦୁର୍ନାମ | ସ୍ମୃତି | - | ବିସ୍ମୃତି |
| ସୁନ୍ଦର | - | ଅସୁନ୍ଦର, କୁତ୍ସିତ | ସଂଲଗ୍ନ | - | ଅସଂଲଗ୍ନ |
| ସୁପ୍ତ | - | ଜାଗ୍ରତ | ହର୍ଷ | - | ବିଷାଦ |
| ସୁପ୍ତି | - | ଜାଗୃତି | ହସ | - | କାନ୍ଦ |
| ସୁବୋଧ | - | ଦୁର୍ବୋଧ୍ୟ | ହାନି | - | ଲାଭ |
| ସୁଶିକ୍ଷା | - | କୁଶିକ୍ଷା | ହକ୍ | - | ନାହକ୍, ବେହକ୍ |
| ସୁଶ୍ରୀ | - | ବିଶ୍ରୀ | ହଜମ | - | ବଦହଜମ |
| ସୂକ୍ଷ୍ମ | - | ସ୍ଥୂଳ | ହ୍ରାସ | - | ବୃଦ୍ଧି |

| ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ | ଶବ୍ଦ | | ବିପରୀତାର୍ଥବୋଧକ ଶବ୍ଦ |
|---|---|---|---|---|---|
| ସୃଷ୍ଟି | - | ପ୍ରଳୟ | ହିତ | - | ଅହିତ |
| ପ୍ରଭବ(ଉତ୍ପତ୍ତି) | - | ପ୍ରଳୟ | ହତଭାଗା, ହତଭାଗ୍ୟ | - | ଭାଗ୍ୟବାନ୍ |
| ସ୍ଥାପିତ | - | ବିସ୍ଥାପିତ | ହିସାବୀ | - | ବେହିସାବ |
| ସ୍ଥାବର | - | ଅସ୍ଥାବର, ଜଙ୍ଗମ | ହୀନ | - | ମହାନ୍ |
| ସ୍ଥିର | - | ଅସ୍ଥିର | ହୋସ୍ | - | ବେହୋସ୍ |
| ସ୍ନିଗ୍ଧ | - | ରୁକ୍ଷ | ହିଂସା | - | ଅହିଂସା |
| ସ୍ପଷ୍ଟ | - | ଅସ୍ପଷ୍ଟ | ହାସ୍ୟ | - | କ୍ରନ୍ଦନ |
| ସ୍ୱକୀୟ | - | ପରକୀୟ | କ୍ଷଣିକ | - | ଚିରନ୍ତନ |
| ସ୍ୱର୍ଗ | - | ମର୍ତ୍ତ୍ୟ, ନରକ | କ୍ଷତ | - | ଅକ୍ଷତ |
| ସ୍ୱଜାତୀୟ | - | ବିଜାତୀୟ | କ୍ଷମ | - | ଅକ୍ଷମ |
| ସ୍ୱତନ୍ତ୍ର | - | ପରତନ୍ତ୍ର | କ୍ଷୟ | - | ବୃଦ୍ଧି, ଅକ୍ଷୟ |
| ସ୍ୱଦେଶ | - | ବିଦେଶ | କ୍ଷୀଣ | - | ପୃଥୁଳ |
| ସ୍ୱସ୍ତି | - | ଅସ୍ୱସ୍ତି | କ୍ଷୁଦ୍ର | - | ବୃହତ୍ |
| ସ୍ମରଣ | - | ବିସ୍ମରଣ | କ୍ଷୁଣ୍ଣ | - | ଅକ୍ଷୁଣ୍ଣ |

ମନେରଖ - ବିପରୀତାର୍ଥବୋଧକ ଶବ୍ଦଗୁଡ଼ିକର ବ୍ୟବହାର କଲାବେଳେ ବିଶେଷ୍ୟ ପଦର ବିଶେଷ୍ୟ ଓ ବିଶେଷଣ ପଦର ବିଶେଷଣ ପଦ ବ୍ୟବହାର କରିବା ବିଧେୟ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକର ବିପରୀତାର୍ଥବୋଧକ ଶବ୍ଦ ଲେଖି, ସେଗୁଡ଼ିକୁ ସାର୍ଥକ ବାକ୍ୟରେ ବ୍ୟବହାର କର ।

ହାସ୍ୟ, କ୍ଷମ, ସାନ୍ତ, ଶାନ୍ତ, ଶୁକ୍ଳ, ପଢ଼ିଆ, ବନ୍ଧନ, ବଦାନ୍ୟ, ମୁଦେଇ, ଯଜମାନ, ପକ୍ଷପାତ, ଆବାହନ, ଋଣୀ, ସମଷ୍ଟି, ଉପତ୍ୟକା, ଅଗ୍ରସର

୨ । ନିମ୍ନଲିଖିତ ଶବ୍ଦଗୁଡ଼ିକର ବିପରୀତାର୍ଥବୋଧକ ଶବ୍ଦ ଲେଖ ।

ବାଲୁତ, କାୟା, ପ୍ରାଚୀନ, ଅଭିଜ୍ଞ, ମସୃଣ, ମୀମାଂସା, ପାର୍ଥିବ, କନିଷ୍ଠ, କଠିନ, ଗୋପନୀୟ, ଊର୍ଦ୍ଧ୍ୱ, ଐକ୍ୟ, ଚେମଡ଼ା, ଅଶନ, ଅଗ୍ରଜ, ହାସ୍ୟ, ଯୌକ୍ତିକ

## (ଚ) ପ୍ରତିଶବ୍ଦ (ପର୍ଯ୍ୟାୟବାଚକ ଶବ୍ଦ)

ବେଳେବେଳେ ଏକାଧିକ ଶବ୍ଦ ଏକ ଅର୍ଥରେ ବ୍ୟବହୃତ ହୁଏ । ଏହି ପ୍ରକାର ଶବ୍ଦଗୁଡ଼ିକୁ ପ୍ରତିଶବ୍ଦ ବା ପର୍ଯ୍ୟାୟବାଚକ ଶବ୍ଦ କୁହାଯାଏ । ନିମ୍ନରେ ସେହିପ୍ରକାର କେତେଗୁଡ଼ିଏ ଶବ୍ଦ ପ୍ରଦତ୍ତ ହେଲା ।

ଅଗ୍ନି - ଅନଳ, ବହ୍ନି, ପାବକ, ହୁତାଶନ, ବୈଶ୍ୱାନର, ଚିତ୍ରଭାନୁ, ସର୍ବଭକ୍ଷ, ବୃହଦ୍ଭାନୁ

ଅମୃତ - ପୀୟୂଷ, ଅମିୟ, ସୁଧା

ଅରଣ୍ୟ - ବିପିନ, କାନନ, ଅଟବୀ, ଗହନ, ବନ

ଅସୁର - ଦୈତ୍ୟ, ଦାନବ, ଦନୁଜ, ରାକ୍ଷସ, ନିଶାଚର, ଦୈତେ୍ୟୟ, ଦିତିସୁତ

ଆକାଶ - ଅମ୍ବର, ଅନ୍ତରୀକ୍ଷ, ଗଗନ, ନଭ, ବିହାୟସ, ଶୂନ୍ୟ, ବିୟତ୍, ବିଷ୍ଣୁପଦ, ନାକ

ଆଖି - ନେତ୍ର, ନୟନ, ଲୋଚନ, ଚକ୍ଷୁ, ଅକ୍ଷି, ଈକ୍ଷଣ, ଦୃକ୍, ଦୃଶ୍ ।

ଇନ୍ଦ୍ର - ସୁରପତି, ଶଚୀପତି, ମଘବା, ବାସବ, ଦେବରାଜ, ପୁରନ୍ଦର, ସୁନାସୀର, ସହସ୍ରାକ୍ଷ

ଇଚ୍ଛା - ଅଭିଳାଷ, ଆକାଙ୍‌କ୍ଷା, ବାଞ୍ଛା, ସ୍ପୃହା, ବାସନା, ମନୋରଥ, ଲାଳସା, ଅଭୀପ୍‌ସା, ଏଷଣା

ଈଶ୍ୱର - ପରମାତ୍ମା, ପ୍ରଭୁ, ଈଶ, ପରମେଶ୍ୱର

କଢ଼ - କଳି, କଳିକା, କୋରକ, ମୁକୁଳ

କନ୍ଦର୍ପ - ମଦନ, ମନ୍ମଥ, ମାର, ମନସିଜ, କାମ, ଅନଙ୍ଗ, ସ୍ମର, କନ୍ଦର୍ପ

କନ୍ୟା - ଆତ୍ମଜା, ତନୟା, ସୁତା, ଦୁହିତା

କାକ - ବାୟସ, ଏକାକ୍ଷ, ବଳିଭୁକ୍, ପରଭୃତ୍, ବଳିପୁଷ୍ଟ

କାନ - କର୍ଣ୍ଣ, ଶ୍ରବଣ, ଶ୍ରୁତି, ଶ୍ରୋତ୍ର

କିରଣ - କର, ଅଂଶୁ, ମୟୂଖ, ରଶ୍ମି, ପ୍ରଭା

କୋଇଲି - କୋକିଳ, ପରଭୃତ, ପିକ, ବନପ୍ରିୟ, କଳକଣ୍ଠ, ବସନ୍ତଦୂତ, ପରପୁଷ୍ଟ, ତାମ୍ରାକ୍ଷ

ଖଳ - କୁଟିଳ, ଦୁଷ୍ଟ, ଦୁର୍ଜନ, କୁଜନ

ଗଙ୍ଗା - ଜାହ୍ନବୀ, ଭାଗୀରଥୀ, ସୁରଧୁନୀ, ବିଷ୍ଣୁପଦୀ, ତ୍ରିପଥଗା, ସୁରନଦୀ, ଦେବନଦୀ

ଗଣେଶ - ଗଣପତି, ଗଜାନନ, ବିନାୟକ, ବିଘ୍ନେଶ୍ୱର, ଏକଦନ୍ତ, ଦ୍ୱୈମାତୁର, ଲମ୍ବୋଦର, ବିଘ୍ନେଶ, ଗଣାଧିପ, ହେରମ୍ବ, ଏକଦନ୍ତ, ପର୍ଶୁପାଣି

ଗାଈ - ଧେନୁ, ଗାଭୀ, ଗୋମାତା, ଗୌ, ଦୋଗ୍‌ଧୀ

ଗୃହ - ଘର, ସଦନ, ଭବନ, ନିକେତନ, ଆଗାର, ଆଳୟ, ସଦ୍ମ, ନିଳୟ, ବେଶ୍ମ

ଘୋଡ଼ା - ଅଶ୍ୱ, ବାଜି, ଘୋଟକ, ତୁରଗ, ତୁରଙ୍ଗ, ତୁରଙ୍ଗମ, ହୟ

ଚନ୍ଦ୍ର - ଇନ୍ଦୁ, ସୁଧାଂଶୁ, ଚନ୍ଦ୍ରମା, ଶଶଧର, ସୁଧାକର, ନିଶାକର, ମୃଗାଙ୍ଗ, ଶଶାଙ୍କ, କଳାକର, ଶୀତାଂଶୁ, ହିମାଂଶୁ, ସିତାଂଶୁ, ବିଧୁ, ଚାନ୍ଦ, କଳାନିଧି, ଓଷଧୀଶ, ଜହ୍ନ

ଚାକର - ଭୃତ୍ୟ, ଅନୁଚର, କିଙ୍କର, ସେବକ, ଦାସ, ଆଜ୍ଞାବହ

ଜଳ - ସଲିଳ, ଜୀବନ, ତୋୟ, ଉଦକ, ନୀର, ବାରି, ଅମ୍ବୁ, ପୟଃ

ଝରଣା - ଝର, ନିର୍ଝର, ନିର୍ଝରିଣୀ, ପ୍ରସ୍ରବଣ, ସ୍ରବ, ଉତ୍ସ

ତରଙ୍ଗ - ଊର୍ମି, କଲ୍ଲୋଳ, ଲହରୀ, ଢେଉ, ବୀଚି

ଦିଗ - କକୁଭ, ଆଶା, ଦିକ୍ (ଦିଶ), କାଷ୍ଠା, ହରିତ୍

ଦିଗ୍‌ବଳୟ - ଦିଗନ୍ତ, ଦିଗଚକ୍ର, ଚକ୍ରବାଳ, ମଣ୍ଡଳ

ଦିନ - ଦିବା, ଦିବସ, ବାସର, ଘସ୍ର, ଅହ (ଅହନ୍)

ଦେବତା - ଦେବ, ଅମର, ତ୍ରିଦଶ, ସୁର, ବିବୁଧ, ଆଦିତେୟ, ଦିବିଷଦ୍

ଦୁର୍ଗା - ଉମା, ଗୌରୀ, ଶିବା, ଭବାନୀ, କାତ୍ୟାୟନୀ, ଅମ୍ବିକା, ଅପର୍ଣ୍ଣା, କାଳୀ ଶର୍ବାଣୀ, ରୁଦ୍ରାଣୀ, ସର୍ବମଙ୍ଗଳା, ହୈମବତୀ, ଈଶ୍ୱରୀ

ଧନ - ସମ୍ପଦ, ବିଭବ, ବିତ୍ତ, ଶ୍ରୀ, ବସୁ

ଧନୁ - ଚାପ, କାର୍ମୁକ, କୋଦଣ୍ଡ, ଶରାସନ, ଇଷ୍ୱାସ, ଧନ୍ୱ

ନଦୀ - ସ୍ରୋତସ୍ୱିନୀ, ତଟିନୀ, ନିମ୍ନଗା, ସରିତ୍, ସ୍ରୋତସ୍ୱତୀ, ତରଙ୍ଗିଣୀ, କଲ୍ଲୋଳିନୀ, ପୟସ୍ୱିନୀ, ଆପଗା

ପର୍ବତ - ଗିରି, ଅଦ୍ରି, ଅଚଳ, ଶୈଳ, ଶିଖରୀ, ଭୂଧର, ପାହାଡ଼, ନଗ, ମହୀଧର, କୁଧର, ଅହୀଧ୍ର, ଅହାର୍ଯ୍ୟ, ଗ୍ରାବ, ଭୂଭୃତ୍ ।

ପକ୍ଷୀ - ଖଗ, ଖେଚର, ବିହଗ, ବିହଙ୍ଗ, ବିହଙ୍ଗମ, ଦ୍ୱିଜ, ପତତ୍ରୀ, ଅଣ୍ଡଜ, ପତ୍ରୀ

ପଣ୍ଡିତ - ବୁଧ, ମନୀଷୀ, ବିଦ୍ୱାନ୍, ବିଶାରଦ, ସୁଧୀ

ପଥ - ପନ୍ଥା, ମାର୍ଗ, ସରଣୀ, ଅୟନ, ବର୍ତ୍ମ

ପବନ - ସମୀର, ସମୀରଣ, ଅନିଳ, ମରୁତ, ବାତ, ପ୍ରଭଞ୍ଜନ, ବାୟୁ, ମରୁତ, ପବମାନ, ଗନ୍ଧବହ

ପଦ୍ମ - କମଳ, ପଙ୍କଜ, ଅମ୍ବୁଜ, ଉତ୍ପଳ, ତାମରସ, ନଳିନ, ନଳିନୀ, ସରୋଜ, ସରସିଜ, ବାରିଜ, ରାଜୀବ, ଅରବିନ୍ଦ, ପୁଣ୍ଡରୀକ, ପଙ୍କେରୁହ, ଅବ୍ଜ, ସାରସ, ବନଜ

ପିତା - ପିଅର, ଜନକ, ତାତ

ପୁତ୍ର - ସୁତ, କୁମର, ତନୟ, ଆତ୍ମଜ, ନନ୍ଦନ

ପୋଖରୀ - ପୁଷ୍କରିଣୀ, କାସାର, ସର, ସରସୀ, ସରୋବର, ତଡ଼ାଗ

ପୃଥିବୀ - ଧରା, ଧରିତ୍ରୀ, ଧରଣୀ, ବସୁମତୀ, ବସୁନ୍ଧରା, ବିଶ୍ୱମ୍ଭରା, ରସା, ମହୀ, ଅବନୀ, ମେଦିନୀ, ବସୁଧା

ଫୁଲ - ପୁଷ୍ପ, କୁସୁମ, ସୁମନ, ପ୍ରସୂନ

ବଜ୍ର - ଅଶନି, ଦମ୍ଭୋଳି, ପବି, କୁଳିଶ

ବିଜୁଳି - ବିଦ୍ୟୁତ୍, ଶମ୍ପା, ସୌଦାମିନୀ, ଚପଳା, ଚଞ୍ଚଳା, କ୍ଷଣପ୍ରଭା, ତଡ଼ିତ୍

ବୃକ୍ଷ - ତରୁ, ଦ୍ରୁମ, ପାଦପ, ବିଟପୀ

ଭ୍ରମର - ଅଳି, ଭୃଙ୍ଗ, ମଧୁପ, ଷଟ୍‌ପଦ, ମିଳିନ୍ଦ, ମଧୁବ୍ରତ, ମଧୁକର, ମଧୁଲିଟ୍, ଦ୍ୱିରେଫ୍

ମୟୂର - କେକୀ, ଶିଖୀ, କଳାପୀ, ବର୍ହୀ, ନୀଳକଣ୍ଠ, ଶିଖଣ୍ଡୀ

ମେଘ - ବାରିଦ, ଅଭ୍ର, ଘନ, ବଳାହକ, ବାରିବାହ, ନୀରଦ, ଜଳଧର, ପୟୋଦ, ଜୀମୂତ, ଅମ୍ବୁଦ, ବାରିଧର, ମୁଦିର

ମନୁଷ୍ୟ - ନର, ମାନବ, ମନୁଜ, ମଣିଷ

ରାଜା - ନୃପତି, ନରପତି, ଭୂପ, ନରେନ୍ଦ୍ର, ଭୂପାଳ, ମହୀପତି, ମହୀପାଳ, କ୍ଷିତୀଶ

ରାତ୍ରି - ନିଶା, ନିଶି, ନିଶିଥିନୀ, ରଜନୀ, ଯାମିନୀ, ଶର୍ବରୀ, ବିଭାବରୀ, ନକ୍ତ, କ୍ଷଣଦା, ତ୍ରିଯାମା

ଲତା - ବ୍ରତତୀ, ଲତିକା, ବଲ୍ଲୀ, ବଲ୍ଲରୀ

ଲକ୍ଷ୍ମୀ - ପଦ୍ମା, କମଳା, ପଦ୍ମାଳୟା, ଇନ୍ଦିରା, ଲୋକମାତା, ମା, ରମା, ଚଞ୍ଚଳା, କ୍ଷୀରବ୍ଧିତନୟା

ଶିବ - ଶମ୍ଭୁ, ଈଶ, ଶୂଳୀ, ବାମଦେବ, ପଶୁପତି, ମହେଶ୍ୱର, ଈଶ୍ୱର, ଶଙ୍କର, ଧୂର୍ଜଟି, ମହାଦେବ, ଶ୍ରୀକଣ୍ଠ, ଶିତିକଣ୍ଠ, ବିରୂପାକ୍ଷ, ତ୍ରିଲୋଚନ, କୃତ୍ତିବାସ, ପିନାକୀ, ଗିରିଶ, ଚନ୍ଦ୍ରଶେଖର, ମୃତ୍ୟୁଞ୍ଜୟ

ଶତ୍ରୁ - ଅରି, ଅରାତି, ରିପୁ, ବୈରୀ
ଶରୀର - ଦେହ, ଗାତ୍ର, ବପୁ, କଳେବର, କାୟ
ସାପ - ସର୍ପ, ଅହି, ଫଣୀ, ଭୋଗୀ, ଉରଗ, ଭୁଜଗ, ବିଷଧର, ଭୁଜଙ୍ଗ, ଭୁଜଙ୍ଗମ, ଚକ୍ଷୁଃଶ୍ରବା, କୁଣ୍ଡଳୀ
ସୂର୍ଯ୍ୟ - ରବି, ଦିବାକର, ଦିନକର, ଦିନମଣି, ଦିନପତି, ଦ୍ୟୁମଣି, ଆଦିତ୍ୟ, ଭାସ୍କର, ତପନ, ମିହିର, ଦିନବନ୍ଧୁ, ସବିତା, ସହସ୍ରାଂଶୁ, ଅଂଶୁମାଳୀ, ମାର୍ତ୍ତଣ୍ଡ, ଭାନୁ, ବିବସ୍ୱାନ୍, ବିକର୍ତ୍ତନ ।
ସ୍ୱର୍ଗ - ଦ୍ୟୁଲୋକ, ତ୍ରିଦିବ, ତ୍ରିଦଶାଳୟ, ସୁରଲୋକ
ସ୍ୱର୍ଣ୍ଣ - ସୁବର୍ଣ୍ଣ, କନକ, କାଞ୍ଚନ, ହେମ, ହାଟକ
ସିଂହ - କେଶରୀ, ପଶୁପତି, ପଶୁରାଜ, ହରି, ହର୍ଯ୍ୟକ୍ଷ, ପଞ୍ଚାସ୍ୟ, ମୃଗରାଜ
ସମୁଦ୍ର - ଦରିଆ, ସିନ୍ଧୁ, ସାଗର, ପାରାବାର, ରତ୍ନାକର, ଅମ୍ବୁଧି, ବାରିଧି, ଜଳଧି, ଜଳନିଧି, ଉଦଧି, ବାରାନିଧି, ପୟୋଧି, ପୟୋନିଧି, ଅର୍ଣ୍ଣବ, ଅବ୍ଧି, ଅକୂପାର
ସ୍ୱର୍ଗ - ସ୍ୱଃ (ସ୍ୱର୍), ଜିଦିବ, ତ୍ରିଦଶାଳୟ, ତ୍ରିବିଷ୍ଟପ, ଦେବଲୋକ, ନାକ, ଦ୍ୟୋ, ଦ୍ୟୌ, ଦିବ (ଦିବ୍), ସୁରଲୋକ
ସନ୍ଧ୍ୟା - ସାୟ, ସାୟଂକାଳ, ନିଶାମୁଖ, ପ୍ରଦୋଷ, ସାୟନ୍ତନ, ଦିନାନ୍ତ, ସାୟାହ୍ନ
ସଂସାର - ଜଗତ୍, ବ୍ରହ୍ମାଣ୍ଡ, ବିଶ୍ୱ, ଭୁବନ
ସକାଳ - ପ୍ରଭାତ, ଉଷା, ପ୍ରତ୍ୟୁଷ, ପ୍ରାତଃ
ହାତୀ - ହସ୍ତୀ, ଗଜ, କୁଞ୍ଜର, ନାଗ, କରୀ, ଦ୍ୱିରଦ, ଦ୍ୱିପ, ମାତଙ୍ଗ, ବାରଣ, ଦନ୍ତୀ, ମାତଗ, ମାତଙ୍ଗମ, ସାରଙ୍ଗ, ଅନେକପ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକର ତିନୋଟି ଲେଖାଏଁ ପ୍ରତିଶବ୍ଦ ଲେଖ ।
ଗାଈ, ପୁତ୍ର, ମାତା, ନଦୀ, ଗଛ, ଆଖି, ଫୁଲ, ସୂର୍ଯ୍ୟ, ପୃଥିବୀ, ସମୁଦ୍ର, ପଦ୍ମ ।

୨ । ନିମ୍ନଲିଖିତ ଶବ୍ଦ ପୁଞ୍ଜ ମଧ୍ୟରେ ଯେଉଁ ଶବ୍ଦଟି ସମପର୍ଯ୍ୟାୟବାଚକ ଶବ୍ଦ ନୁହେଁ, ତାହାକୁ ଚିହ୍ନାଇ ଦିଅ ।

(କ) ଭୁଜଗ, ଭୁଜଙ୍ଗ, ମାତଙ୍ଗ, ଭୁଜଙ୍ଗମ ।

(ଖ) ନିଶାକର, ସୁଧାକର, ଶ୍ରୀକର, କଳାକର ।

(ଗ) ଜଳଧି, ବାରିଧି, ବାଙ୍କନିଧି, ବାରାନିଧି ।

(ଘ) ଭୂଧର, କୁଧର, ଶ୍ରୀଧର, ମହୀଧର ।

(ଙ) କେକୀ, ଶିଖୀ, କରୀ, କଳାପୀ ।

(ଚ) କମଳ, ପଙ୍କଜ, ଗନ୍ଧବହ, ତାମରସ ।

(ଛ) ଅପର୍ଣ୍ଣା, ଗୌରୀ, ସୁନୀଳା, କାଳୀ ।

(ଜ) ତପନ, ମିହିର, ସୁଧୀର, ଦିବାକର ।

## (ଛ) ଭିନ୍ନାର୍ଥବୋଧକ ବା ଅନେକାର୍ଥବୋଧକ ଶବ୍ଦ

ଆମ ଭାଷାରେ ଗୋଟିଏ ଗୋଟିଏ ଶବ୍ଦ ଅଛି, ସେଗୁଡ଼ିକର ଅନେକ ଅର୍ଥ ଅଛି । ଏଗୁଡ଼ିକୁ ଅନେକାର୍ଥବୋଧକ ବା ଭିନ୍ନାର୍ଥବୋଧକ ଶବ୍ଦ କୁହାଯାଏ । ନିମ୍ନରେ କେତୋଟି ଅନେକାର୍ଥକ ଶବ୍ଦର ଦୃଷ୍ଟାନ୍ତ ପ୍ରଦତ୍ତ ହୋଇଛି ।

ଅଙ୍କ - ସଂଖ୍ୟା, ଚିହ୍ନ, କ୍ରୋଡ଼, କଳଙ୍କ, ଗଣିତ, ନାଟକର ବିଭାଗ, ପୁରୀ ଗଜପତି ମହାରାଜାଙ୍କ ନାମରେ ବର୍ଷଗଣନା ।

ଅଜା - ମାଈଛେଳି, ମା'ଙ୍କର ବାପା ।

ଅନନ୍ତ - ଈଶ୍ୱର, ବାସୁକି, ଆକାଶ, ବାସୁଦେବ ।

ଅମ୍ବର - ଆକାଶ, ବସ୍ତ୍ର ।

ଅର୍ଥ - ଧନ, ତାତ୍ପର୍ଯ୍ୟ, ଉଦ୍ଦେଶ୍ୟ, ପ୍ରୟୋଜନ, ମୁଦ୍ରା ।

ଆଳୀ - ସମୂହ, ସଖୀ, ଭ୍ରମର ।

ଈଶ - ଈଶ୍ୱର, ପ୍ରଭୁ, ସ୍ୱାମୀ, ରାଜା, ଶିବ ।

ଉତ୍ତର - ପ୍ରଶ୍ନର ଜବାବ, ଦିଗବିଶେଷ, ପରବର୍ତ୍ତୀ, ଭବିଷ୍ୟତ ।

କଟକ - ନଗର, ଶିବିର, ରାଜଧାନୀ, ବଳୟ, ଦୁର୍ଗ ।

କର - ହାତ, ହସ୍ତୀର ଶୁଣ୍ଢ, ଖଜଣା, କିରଣ ।

କଳ - ଯନ୍ତ୍ର, ଚାତୁରୀ, ଅସ୍ପଷ୍ଟ, ଶ୍ରୁତିପ୍ରିୟ, ଅସ୍ଫୁଟ ଶବ୍ଦ ।

କଳା - ରଙ୍ଗବିଶେଷ, କଜ୍ଜଳ, ଅଳନ୍ଧୁ, ଲକ୍ଷଣ ।

କାଳ - ସମୟ, ମୃତ୍ୟୁ, ଯମ, କ୍ରିୟାର ସମୟଜ୍ଞାପକ ବିଭାଗ ।

କାଳି - ସ୍ୟାହି, ଉଧାର ବା ବାକି, କଳଙ୍କ, କଳାରଙ୍ଗ ।

ଗୁଣ - ଗୁଣନ, ରଜ୍ଜୁ, ଧର୍ମ, ଧନୁର ଗୁଣ ।

ଗଣ୍ଡ - ନଦୀ ବା ହ୍ରଦର ଗଭୀର ଜଳଭାଗ, ନିର୍ବୋଧ, ଜନଜାତିବିଶେଷ, ଗାଲ ।

ଗୁଣ୍ଡା - ଚୂନା, ବଦମାସ, ଦୁର୍ବୃତ୍ତ, ଅନ୍ନପିଣ୍ଡୁଳା ।
ଗୁରୁ - ଶିକ୍ଷକ, ପିତା, ବୃହସ୍ପତି, ଶ୍ରେଷ୍ଠ, ଓଜନିଆ ।
ଘନ - ମେଘ, ବହଳ, ନିବିଡ଼, ଜମାଟ ।
ଚକ୍ରୀ - ସର୍ପ, ବିଷ୍ଣୁ, କୁମ୍ଭକାର, କୂଟକୌଶଳୀ, ଚକ୍ରବାକ ।
ଚନ୍ଦ୍ର - ଜହ୍ନ, ଜଳ, କର୍ପୂର, ସ୍ୱର୍ଣ୍ଣ ।
ଛନ୍ଦ - ଛଳନା, ପଦ୍ୟର ରାଗ, ଗାଈ ଗୋଡ଼ରେ ବନ୍ଧା ଦଉଡ଼ି ।
ଜୀବନ - ପ୍ରାଣ, ଜଳ, ପବନ ।
ତୀର - ଶର, କୂଳ ।
ଦଳ - ଜଳଜ ତୃଣ, ପତ୍ର, ପାଖୁଡ଼ା, ସମୂହ, ପଲ, ପକ୍ଷ ।
ଦଣ୍ଡ - ବ୍ୟାୟାମବିଶେଷ, ମୁହୂର୍ତ୍ତ, ଯଷ୍ଟି, ଜୋରିମାନା, ଶାସ୍ତି ।
ଦ୍ୱିଜ - ବ୍ରାହ୍ମଣ, ଦନ୍ତ, ପକ୍ଷୀ, କ୍ଷତ୍ରିୟ, ବୈଶ୍ୟ ।
ନାଳ - ଲାଳ, କେନାଲ, ମୃଣାଳ ।
ପକ୍ଷ - ମାସାର୍ଦ୍ଧ, ପର, ଡେଣା, ଦଳ, ସହାୟ ।
ପଟ - ପାର୍ଶ୍ୱ, କଦଳୀପଟୁଆ, ପରଦା, ଚିତ୍ର ଫଳକ, ପାର୍ଶ୍ୱ ।
ପଟ୍ଟ - ଫଳକ, ରାଜକୀୟ ସନନ୍ଦ, ବସ୍ତ୍ର, ପାଟ ।
ପଟୁ - ଧୁରନ୍ଧର, କର୍ମଠ, ଉର୍ବର ମୃତ୍ତିକା ।
ପତ୍ର - ପୃଷ୍ଠା, ଚିଠି, ଗଛର ପତ୍ର, ଆଖିର ପତା ।
ପର - ଡେଣାରେ ଥିବା କ୍ଷୁଦ୍ରକ୍ଷୁଦ୍ର ପକ୍ଷ, ଶତ୍ରୁ, ପରେ, ଅନ୍ୟ ବା ଇତର, ପରମାତ୍ମା ।
ପାଗ - ପଗଡ଼ି, ରନ୍ଧନ, ଜଳବାୟୁର ପ୍ରାକୃତିକ ଅବସ୍ଥା ।
ପୁର - ଗୃହ, ନଗର, ଦେହ, ଗ୍ରାମ ।
ପୂର - ପୂରଣ, ପ୍ରବାହ, ସମୂହ, ଜଳରାଶି ।
ବନ - ବଣ, ଜଳ, କୁଞ୍ଜ ।
ବର - ବୃକ୍ଷବିଶେଷ, ଆଶୀର୍ବାଦ, ଶ୍ରେଷ୍ଠ, ଉତ୍କୃଷ୍ଟ, ସ୍ୱାମୀ ।
ବର୍ଣ୍ଣ - ଜାତି, ରଙ୍ଗ, ଅକ୍ଷର, ସୌନ୍ଦର୍ଯ୍ୟ ।
ବାର - ଥର, ଦ୍ୱାଦଶ ସଂଖ୍ୟକ, ପାଳି, ସପ୍ତାହର ବିଭିନ୍ନ ଦିବସ ।
ବାସ - ଅବସ୍ଥାନ, ଗୃହ, ବସ୍ତ୍ର, ସୁଗନ୍ଧ ।
ଭୂତ - ଅତୀତ, ପରିଣତ, ଶିବାନୁଚର, ପ୍ରାଣୀ, ପ୍ରେତ, ସାହାଡ଼ା ଗଛ, ପଞ୍ଚମହାଭୂତ ।
ମଧୁ - ମହୁ, ପୁଷ୍ପରସ, ମଦ୍ୟ, ଚୈତ୍ର, ବସନ୍ତ, ଦୈତ୍ୟବିଶେଷ, ମଧୁର ।

ମଧୁପ - ଭ୍ରମର, ମହୁମାଛି, ମଦ୍ୟପ ।
ଯୋଗ - ମିଳନ, ସମ୍ପର୍କ, ଧ୍ୟାନ, ତପସ୍ୟା, ଶୁଭକାଳ, ସୁବିଧା, ମିଶାଣ, ପତଞ୍ଜଳିକୃତ ଦର୍ଶନଶାସ୍ତ୍ର ।
ରଙ୍ଗ - ନାଲିଆ, ଦେହର ରଙ୍ଗ, ପରିହାସ, ଆମୋଦ, ଭଙ୍ଗୀ ।
ରାଗ - କଟୁସ୍ୱାଦାଦିରସ, କ୍ରୋଧ, ଅନୁରାଗ, ସ୍ୱର ।
ଶ୍ରୀ - ଲକ୍ଷ୍ମୀ, ସରସ୍ୱତୀ, ଐଶ୍ୱର୍ଯ୍ୟ, ସୌଭାଗ୍ୟ, ସୌନ୍ଦର୍ଯ୍ୟ ।
ଶ୍ରୁତି - କାନ, ଶ୍ରବଣ, ବେଦ, କିମ୍ବଦନ୍ତୀ, ପ୍ରବାଦ ।
ସର - ପୋଖରୀ, ହ୍ରଦ, ଜଳ, ଗତି, ବାଣ ।
ସାରଙ୍ଗ - ମୃଗ, କୋକିଳ, ମୟୂର, ଭ୍ରମର, ଚାତକ, ମୁନି, ସିଂହ, ହସ୍ତୀ, କନ୍ଦର୍ପ ।
ସୁର - ସ୍ୱର, ରାଗିଣୀ, ଦେବତା, ସୂର୍ଯ୍ୟ, ପଣ୍ଡିତ ।
ହରି - ବିଷ୍ଣୁ, ଇନ୍ଦ୍ର, ଅଶ୍ୱ, ଯମ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ସିଂହ, ପଶୁ, ସର୍ପ, ଭେକ, ହଂସ, ବାନର, ମୟୂର, ଶୁକ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ପ୍ରତ୍ୟେକ ଶବ୍ଦକୁ ଭିନ୍ନଭିନ୍ନ ଅର୍ଥରେ ବାକ୍ୟରେ ବ୍ୟବହାର କରି ପାର୍ଥକ୍ୟ ଦର୍ଶାଅ–

ଶ୍ରୁତି, କର, ଭୂତ, ବର, ପାଗ, ରାଗ, ଅଙ୍କ, ଅଜା, ଉତ୍ତର, ଜୀବନ, ଗୁଣ୍ଡା, ଅର୍ଥ, କଟକ, ଦଳ, ପଟ୍ଟ, ସୁର ।

## (ଜ) ଯୁଗ୍ମଶବ୍ଦ

ଓଡ଼ିଆ ଭାଷାରେ ଅନେକ ଶବ୍ଦ ଦୁଇଟି ଶବ୍ଦର ମିଳନରେ ଗଠିତ ହୋଇ ସାର୍ଥକ ଭାବ ପ୍ରକାଶ କରନ୍ତି; କିନ୍ତୁ ସେଗୁଡ଼ିକ କ୍ରମବିହୀନ ଭାବରେ ଓଲଟାଇ ଲେଖିଲେ ସଠିକ୍ ଅର୍ଥ ପ୍ରକାଶ ପାଏ ନାହିଁ । ଦୁଇଟି ଶବ୍ଦ ବା ଶବ୍ଦଯୁଗ୍ମର ଏପରି ସାର୍ଥକ ପରିପ୍ରକାଶକୁ ଯୁଗ୍ମଶବ୍ଦ କୁହାଯାଏ ।

ବ୍ୟବହୃତ ହେଉଥିବା କେତେଗୁଡ଼ିଏ ଯୁଗ୍ମଶବ୍ଦ ନିମ୍ନରେ ପ୍ରଦତ୍ତ ହେଲା–

୧ । ପ୍ରାୟ ସମାନାର୍ଥକ ଦୁଇପଦର ସଂଯୋଗରେ ଗଠିତ ଯୁଗ୍ମଶବ୍ଦ–

| | | |
|---|---|---|
| ଧାନଚାଉଳ | ନଈନାଳ | କଥାବାର୍ତ୍ତା |
| ସୁନାରୁପା | କୂଅପୋଖରୀ | ଦିଅଁଦେବତା |
| ଟଙ୍କାପଇସା | ଥଟ୍ଟାତାମସା | ତାଳପତ୍ର |

| | | |
|---|---|---|
| ଧନରତ୍ନ | ପାଟିତୁଣ୍ଡ | ହୃଷ୍ଟପୁଷ୍ଟ |
| ଜୀବଜନ୍ତୁ | ଲେଖାପଢ଼ା | ଟଣାଓଟରା |
| ଗୋରୁଗାଈ | ପିଠାପଣା | ଆଖପାଖ |
| ମଉଜମଜଲିସ୍ | ହାଟବାଟ | ଦାନଧର୍ମ |
| ରୀତିନୀତି | ପାଠଶାଠ | ଦୟାମାୟା |
| ଯାନବାହନ | ଶିକ୍ଷାଦୀକ୍ଷା | ବନ୍ଧୁବାନ୍ଧବ |
| ଯାନିଯୌତୁକ | ଧନଦୌଲତ୍ | ଫଳମୂଳ |
| ବେପାରବଣିଜ | ଶାଗମୁଗ | ଡାଲିଚାଉଳ |
| ତର୍କବିତର୍କ | ମତିଗତି | ନିଆଁଧୂଆଁ |
| ଅସ୍ତ୍ରଶସ୍ତ୍ର | ବୁଦ୍ଧିଶୁଦ୍ଧି | ବାଧାବିଘ୍ନ |
| ଝଡ଼ାଫୁଙ୍କା | ଝାଡ଼ାବାନ୍ତି | କନ୍ଦାକଟା |

୨ । ବିପରୀତାର୍ଥକ ଦୁଇଶବ୍ଦର ସଂଯୋଗରେ ଗଠିତ୍ ଯୁଗ୍ମଶବ୍ଦ-

| | | |
|---|---|---|
| ଆକାଶପାତାଳ | ଲାଭକ୍ଷତି | ବାଟଅବାଟ |
| ମାନଅପମାନ | ଦୁଃଖସୁଖ | ନ୍ୟାୟଅନ୍ୟାୟ |
| ଭଲମନ୍ଦ | ପାପପୁଣ୍ୟ | ଧର୍ମଅଧର୍ମ |
| ହାନିଲାଭ | ଆଦାନପ୍ରଦାନ | ଆୟବ୍ୟୟ |
| ଇହପର | ଉଭାପୋତା | ଖଟାମିଠା |
| କିଣାବିକା | ଖାଲଢ଼ିପ | ଊଣାଅଧିକ |
| ସୁଖଦୁଃଖ | ସତମିଛ | ଦିନରାତି |
| ପଡ଼ିଆଉଠିଆ | ଖରାବର୍ଷା | ହସକାନ୍ଦ |
| ଦେଣନେଣ | ବସାଉଠା | ଜୀବନମରଣ |
| ଆଲୁଅଅନ୍ଧାର | କଞ୍ଚାପାଚିଲା | ମାରଣତାରଣ |

୩ । ସାର୍ଥକ ଓ ନିରର୍ଥକ ଦୁଇଶବ୍ଦ ସଂଯୋଗରେ ଗଠିତ ହେଉଥିବା ଯୁଗ୍ମଶବ୍ଦ-

| | | |
|---|---|---|
| କନ୍ଦାକଟା | ମାପଚୁପ | କାମଦାମ |
| ବିକ୍ରିବଟା | ସଜବାଜ | କରଜବାରଜ |
| ଟଙ୍କାଟୋକର | ପେଟପାଟଣା | ବଣ୍ଟାକୁଣ୍ଟା |
| ଖର୍ଚ୍ଚବାର୍ଚ୍ଚ | ଗାଁଗଣ୍ଡା | ଡକାହକା |
| ଗପସପ | ହିସାବକିତାବ | ଛୁଆଁଛୁତି |
| ଗାଳିଗୁଲଜ | ମୂଲଚାଲ | ମୂଲପାତି |

| | | |
|---|---|---|
| ଢଙ୍ଗଢ଼ାଙ୍ଗ | ମସଲାମସଲି | ଲଣ୍ଡଭଣ୍ଡ |
| ପିଲାପିଚିକା | ଅନ୍ଧିସନ୍ଧି | ପେଞ୍ଚପାଞ୍ଚ |
| ଗପସପ | ପିଲାପିଲି | ପାଠଶାଠ |

୪ । ଏକଜାତୀୟ କ୍ରିୟାର ବ୍ୟବହାରରେ ଗଠିତ ଯୁଗ୍ମଶବ୍ଦ–

| | | |
|---|---|---|
| ପିଟାପିଟି | ପୋଛାପୋଛି | ଗୋଡ଼ାଗୋଡ଼ି |
| ଧରାଧରି | ମରାମରି | କଷାକଷି |
| ଦେଖାଦେଖି | ଲେଖାଲେଖି | ଛଣାଛଣି |
| ଥୁଆଥୋଇ | ଠେଲାଠେଲି | ଲଗାଲଗି |
| ଠେଙ୍ଗାଠେଙ୍ଗି | ପେଲାପେଲି | ଭଙ୍ଗାଭଙ୍ଗି |
| କୁହାକୁହି | ହସାହସି | ଡିଆଁଡେ଼ଇଁ |
| ଦିଆଦେଇ | ବଣ୍ଟାବଣ୍ଟି | ଖେଳାଖେଳି |
| ବକାବକି | ଖେଞ୍ଚାଖେଞ୍ଚି | ଖୋଳାଖୋଳି |
| ବଟାବଟି | ଫଟାଫଟି | ହଣାହଣି |
| ପରଷାପରଷି | ବକାବକି | ବିକାବିକି |
| ବରଷାବରଷି | କିଣାକିଣି | ଜଗାଜଗି |
| ଟଣାଟଣି | ଲଢ଼ାଲଢ଼ି | ଭିଡ଼ାଭିଡ଼ି |

୫ । ସମାନ ଶବ୍ଦ ବା କ୍ରିୟାର ଦ୍ୱିରୁକ୍ତିଦ୍ୱାରା ଗଠିତ ଯୁଗ୍ମ ଶବ୍ଦ–

| | | |
|---|---|---|
| ହସିହସି | ଛନଛନ | ଖାଇଖାଇ |
| କାନ୍ଦିକାନ୍ଦି | କନକନ | ଯାଇଯାଇ |
| ହସହସ | ତରତର | କିଟିକିଟି |
| କାନ୍ଦକାନ୍ଦ | ଥରଥର | ହଳହଳ |
| ଢଳଢଳ | ଜରଜର | ଘରଘର |
| ଜଳଜଳ | ଥାଇଥାଇ | ଦ୍ୱାରଦ୍ୱାର |
| ଛଳଛଳ | ରହିରହି | ଦେଇଦେଇ |
| ବଳବଳ | ନାଚିନାଚି | ନେଇନେଇ |

୬ । କେତେକ ଧ୍ୱନ୍ୟାତ୍ମକ ଯୁଗ୍ମଶବ୍ଦ–

| | | | |
|---|---|---|---|
| ମଡ଼୍‌ମଡ଼୍ | ଠଣ୍‌ଠଣ୍ | କଇଁକଇଁ | ସୁସୁ |
| ଭଡ଼୍‌ଭଡ଼୍ | ଝଣ୍‌ଝଣ୍ | ସାଇଁସାଇଁ | ପେଁପେଁ |
| କଟ୍‌କଟ୍ | ଭଣ୍‌ଭଣ୍ | ଝାଇଁଝାଇଁ | ଫେଁଫେଁ |

| | | | |
|---|---|---|---|
| ଫଟ୍‌ଫଟ୍ | ଦୁମ୍‌ଦୁମ୍ | ଝିମିଝିମି | କେଁକେଁ |
| ଧଡ଼୍‌ଧଡ଼୍ | ଧୁମ୍‌ଧାମ୍ | ଟିକ୍‌ଟିକ୍ | ଚେଁଚେଁ |
| ଫଡ଼୍‌ଫଡ଼୍ | ଝିମ୍‌ଝିମ୍ | ସିରିସିରି | କ୍ରିଂକ୍ରିଂ |
| ଠକ୍‌ଠକ୍ | ଟମ୍‌ଟମ୍ | ଚାଇଁଚାଇଁ | ସେଁସେଁ |
| ଠନ୍‌ଠନ୍ | ଖସ୍‌ଖସ୍ | ଫୁସ୍‌ଫାସ୍ | ଛୁକ୍‌ଛୁକ୍ |
| ଟପ୍‌ଟପ୍ | ଗମ୍‌ଗମ୍ | ଖଡ଼୍‌ଖାଡ଼୍ | ଘୋଘୋ |
| ଝମଝମ | ଠୁକୁଠୁକୁ | ଢାଉଁଢାଉଁ | ଚଡ଼୍‌ଚଡ଼୍ |
| ଝିପିଝିପି | ଠୋଠୋ | ଢୋଢୋ | ଡମ୍‌ଡମ୍ |
| ଝରଝର | ଠଁ ଠଁ | ଗଁ ଗଁ | ଡିବିଡିବି |

## ଅନୁଶୀଳନୀ

୧ । ନିମ୍ନଲିଖିତ ଯୁଗ୍ମଶବ୍ଦଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।

ଟଙ୍କାପଇସା, ଦେଣନେଣ, କଳିକଜିଆ, ପିଲାପିଲି, ବାଟଘାଟ, ଚାଲିଚାଲି, ଖାଇଖାଇ, ସାଇଁସାଇଁ, ଫଁଫଁ, ସୁନାରୁପା, ଭୋକଶୋଷ, ବିକାବିକି, କିଣାକିଣି, ଗୋରୁଗାଈ, ଲଣ୍ଡଭଣ୍ଡ, ବହିପତ୍ର, କୁତୁକୁତୁ, ଆଖପାଖ, ଚୁପ୍‌ଚାପ୍, କିଟିକିଟି

୨ । 'କ' ସ୍ତମ୍ଭରେ ପ୍ରଦତ୍ତ ଶବ୍ଦ ସହିତ 'ଖ' ସ୍ତମ୍ଭର ସମ୍ପୃକ୍ତ ଶବ୍ଦକୁ ବ୍ୟବହାର କରି ଉପଯୁକ୍ତ ଯୁଗ୍ମଶବ୍ଦ ଗଠନ କର ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ଦୟା | ଖୋଳି |
| କଥା | ଠନ୍ |
| ଡାଲି | ଥଣ୍ଡା |
| ଖରା | ମସଲି |
| ପେଟ | ମାୟା |
| ହିସାବ | ଚାଉଳ |
| ମସଲା | ପାଟଣା |
| ଖୋଳା | କିତାବ |
| ଥଣ୍ଡା | ବାର୍ତ୍ତା |
| ଠନ୍ | ବର୍ଷା |

୩। ଉପଯୁକ୍ତ ଯୁଗ୍ମଶବ୍ଦ ଗଠନ କରି ବାକ୍ୟଗୁଡ଼ିକ ପୂରଣ କର।

(କ) ବର୍ତ୍ତମାନ ଲୋକମାନଙ୍କର — ପୁଣ୍ୟକୁ ଡର ନାହିଁ।

(ଖ) ଆଇମା'ଙ୍କ କାହାଣୀ ଶୁଣୁ — ନାତି ଟୋକା ଶୋଇପଡ଼ିଲା।

(ଗ) ସମସ୍ତଙ୍କର ପେଟ — କଥା ଅଛି।

(ଘ) ପ୍ରଳୟଙ୍କରୀ ବନ୍ୟାରେ ଲୋକମାନଙ୍କର — ଦ୍ୱାର ଭାସିଗଲା।

(ଙ) ଶୀତଦିନେ ଖାଦ୍ୟ — ଗରମ ଖାଇବାକୁ ଭଲ ଲାଗେ।

(ଚ) ତୁମର ଟିକିଏ ହେଲେ — ହିତଜ୍ଞାନ ରହିଲା ନାହିଁ।

(ଛ) କେବେ ଆଉ ତୁମ — ଶୁଦ୍ଧି ହେବ ?

## (୯) ଧ୍ୱନ୍ୟାତ୍ମକ ଶବ୍ଦ

ଭାଷା-ସୃଷ୍ଟି କ୍ଷେତ୍ରରେ ଧ୍ୱନିର ଅବଦାନ ଉଲ୍ଲେଖନୀୟ। ପ୍ରକୃତି ରାଜ୍ୟରେ ଅହରହ ନାନା ଧ୍ୱନି ସୃଷ୍ଟି ହେଉଛି। ପ୍ରାକୃତିକ ଧ୍ୱନିର ଅନୁକରଣରେ ପ୍ରତ୍ୟେକ ଭାଷାରେ ଅନେକ ଶବ୍ଦ ପ୍ରଚଳିତ। ଏତଦ୍‌ବ୍ୟତୀତ ଅନ୍ୟାନ୍ୟ କ୍ଷେତ୍ରରୁ ବହୁ ଧ୍ୱନ୍ୟାତ୍ମକ ଶବ୍ଦ ଭାଷାକ୍ଷେତ୍ରକୁ ପ୍ରବେଶ କରୁଛି। ଆମ ଓଡ଼ିଆ ଭାଷାରେ ମଧ୍ୟ ବହୁ ଧ୍ୱନ୍ୟାତ୍ମକ ଶବ୍ଦର ବ୍ୟବହାର କରାଯାଉଛି। ବାକ୍ୟର ଅର୍ଥକୁ ସ୍ପଷ୍ଟ ଓ ପ୍ରଭାବଶାଳୀ କରିବାପାଇଁ ଧ୍ୱନିମୂଳକ ଶବ୍ଦର ଭୂମିକା ଉଲ୍ଲେଖନୀୟ। ନିମ୍ନରେ କେତେକ ଧ୍ୱନ୍ୟାତ୍ମକ ଶବ୍ଦର ବ୍ୟବହାର ଦିଆଗଲା।

କଳକଳ - ନଦୀର କଳକଳ ନାଦ ପ୍ରାଣକୁ ପୁଲକିତ କରେ।

କୁଳୁକୁଳୁ - ପାହାଡ଼ୀ ଝରଣାଟି କୁଳୁକୁଳୁ ନାଦକରି ବହିଯାଉଛି।

କଟକଟ - ସିନ୍ଦୁକ ଭିତରୁ ମୂଷାର କଟକଟ ଶବ୍ଦ ଶୁଭୁଛି।

କଡ଼ମଡ଼ - କେତେକ ଲୋକ କ୍ରୋଧରେ ଦାନ୍ତ କଡ଼ମଡ଼ କରନ୍ତି।

କା କା - ସକାଳେ କୁଆର କା କା ରାବ ଶୁଣାଯାଏ।

କିରିକିରି - ଦେଖ, ଝିଅଟା କେମିତି କିରିକିରି ହୋଇ ହସୁଛି।

କଇଁକଇଁ - ବାୟାଣୀଟି କଇଁକଇଁ ହୋଇ କାନ୍ଦୁଛି।

କିଚିରିମିଚିରି - ପକ୍ଷୀମାନଙ୍କର କିଚିରିମିଚିରି ଶବ୍ଦ ମୋତେ ଭଲ ଲାଗେ।

କୁହୁ(କୁହୁକୁହୁ)- ବସନ୍ତ ଋତୁରେ କୋଇଲିର କୁହୁତାନ ଶ୍ରୁତିମଧୁର।

କେଁକେଁ - ଟେକାମାଡ଼ରେ କୁକୁର ଛୁଆଟା କେଁ କେଁ କରି ପଳାଇଲା।

କେଁକଟର - ବର୍ଷା ହେଲେ ବେଙ୍ଗମାନେ କେଁକଟର ରଡ଼ି ଛାଡ଼ନ୍ତି।

ଖଟ୍‌ଖଟ୍ - ଏତେ ଜୋର୍‌ରେ କବାଟ ଖଟ୍‌ଖଟ୍ କରନାହିଁ।

ଖଡ଼୍‌ଖଡ଼୍ - ବାରମ୍ବାର ଝରକାର ଖଡ଼୍‌ଖଡ଼୍ ଶବ୍ଦରେ ମୋର ନିଦ ଭାଙ୍ଗିଗଲା।

ଖସ୍‌ଖସ୍ – ଶୁଖିଲା ପତ୍ର ଉପରେ ଚାଲିଲେ ଖସ୍‌ଖସ୍ ଶବ୍ଦ ହୁଏ ।

ଖର୍‌ଖର୍ – ବିଶ୍ୱଜିତା ଖର୍‌ଖର୍ କରି ଘର ଓଳାଉଛି ।

ଖିଲିଖିଲି – ଅର୍ପିତାର ଖିଲିଖିଲି ହସ ବେଶ୍ ମନଛୁଆଁ ।

ଖୁସୁରଖୁସୁର – ସେଠାରେ ଖୁସୁର୍‌ଖୁସୁର୍ କରି କ'ଣ କରୁଛ ?

ଖୁଁ ଖୁଁ – ଥଣ୍ଡା ବଳିପଡ଼ିବାରୁ ବୁଢ଼ା ଖୁଁ ଖୁଁ କରି କାଶୁଛି ।

ଖେଁ ଖେଁ – ଗଛ ଡାଳରେ ଗେଧ ମାଙ୍କଡ଼ଟା ଖେଁ ଖେଁ କରି ଖତେଇ ହେଉଛି ।

ଗଁ ଗଁ – ନଈର ଆରପଟରୁ କାହାର ଗଁ ଗଁ ଶବ୍ଦ ଶୁଣାଯାଉଛି ।

ଗାରୁଗାରୁ – ପ୍ରତି କଥାରେ ଗୀତାର ଶାଶୁ ଗାରୁଗାରୁ ହେବା ଏକ ନିତିଦିନିଆ କଥା ।

ଗୁରୁଗୁରୁ – ମହିଷଟିପାର ଗୁରୁଗୁରୁ ଧ୍ୱନି ଶୁଣିବାକୁ ଭଲଲାଗେ ।

ଗୁଣୁଗୁଣୁ – ମହୁମାଛିମାନେ ଫୁଲ ଚାରିପାଖରେ ଗୁଣୁଗୁଣୁ ହେଉଛନ୍ତି ।

ଗଣଗଣ – ମାଛିଗୁଡ଼ାକ ପଚା ଜିନିଷରେ ବସି ଗଣଗଣ ହେଉଛନ୍ତି ।

ଗୁଡୁଗୁଡୁ/ଗୁଡୁରୁଗୁଡୁରୁ – ଆମର ଶଂଖି ବିଲେଇଟା ସବୁବେଳେ ଗୁଡୁରୁଗୁଡୁରୁ ହୋଇ ମୋ ଗୋଡ଼ରେ ଘଷି ହେଉଥାଏ ।

ଘଡ଼ଘଡ଼ – ଶିଶୁଟିର କଫରେ ତଣ୍ଟି ଘଡ଼ଘଡ଼ ହେଉଛି ।

ଘୁଘୁ – ସମୁଦ୍ରର ଘୁଘୁ ଶବ୍ଦ କାନରେ ଅତଡ଼ା ପକାଏ ।

ଘୋଘୋ – ଯାତ୍ରା ପଡ଼ିଆର ଘୋଘୋ ଶବ୍ଦ ବହୁ ଦୂରକୁ ଶୁଣାଯାଏ ।

ଚିଁ ଚିଁ – ରାତିରେ ମୂଷାମାନଙ୍କର ଚିଁ ଚିଁ ଶବ୍ଦରେ ମୋତେ ନିଦ ନାହିଁ ।

ଚର୍‌ଚର୍ – ପିଲାଟା ମାଡ଼ ଭୟରେ ଚର୍‌ଚର୍ କରି ମୂତି ପକାଇଲା ।

ଚାଉଁଚାଉଁ – ଚାମେଲୀର ପେଟ ଚାଉଁଚାଉଁ ମାରୁଛି ।

ଚଡ଼୍‌ଚଡ଼୍ – ଚଡ଼ଚଡ଼ିର ଚଡ଼୍‌ଚଡ଼୍ ଶବ୍ଦ ମନରେ ଭୟ ସୃଷ୍ଟି କରେ ।

ଛୁକ୍‌ଛୁକ୍ – ରେଳଗାଡ଼ି ଛୁକ୍‌ଛୁକ୍ ଶବ୍ଦ କରି ଧାଇଁଛି ।

ଝମ୍‌ଝମ୍ – ଘୁଙ୍ଗୁରର ଝମ୍‌ଝମ୍ ଶବ୍ଦ ନୃତ୍ୟସ୍ଥଳକୁ ଆମୋଦିତ କଲା ।

ଝର୍‌ଝର୍ – ଝରଣା ଝର୍‌ଝର୍ ତାନରେ ବହି ଚାଲିଛି ।

ଟିକ୍‌ଟିକ୍ – ଘଣ୍ଟା ଟିକ୍‌ଟିକ୍ ହୋଇ ଚାଲିଥାଏ ।

ଟପରଟପର – ମେଘ ଟପରଟପର ବରଷିଲା ।

ଟପ୍‌ଟପ୍ – ଚାଳରୁ ଟପ୍‌ଟପ୍ ପାଣି ପଡୁଛି ।

ଠୋଠୋ – ମାନସିଂହର ଠୋଠୋ ହସରେ ଚାରିଆଡ଼େ ନୀରବତା ଛାଇଗଲା ।

ଠକ୍‌ଠକ୍ – କାହାର ଠକ୍‌ଠକ୍ ଶବ୍ଦ ଶୁଣି ମୁଁ କବାଟ ଖୋଲିଲି ।

ଡିବିଡିବି – ଡମରୁ ଡିବିଡିବି ବାଜେ ।

ଢୋଢା – ଦୀପାବଳୀରେ ଢୋଢା ହୋଇ ବାଣ ଫୁଟେ ।

ଢକଢକ – ଶଙ୍କାରି ବୁଢ଼ାଟି ଢକଢକ କରି ଢାଳଟାଯାକ ପାଣି ପିଇଦେଲା ।
ଥପ୍‌ଥପ୍ – ବନ୍ଧୁଙ୍କର ବିୟୋଗ ସମ୍ବାଦ ଶୁଣିବା କ୍ଷଣି ମୋ ଆଖିରୁ ଥପ୍‌ଥପ୍ ଲୁହ ଝରିପଡ଼ିଲା ।
ଦମ୍‌ଦମ୍ – ସାଧାରଣତଃ ଡରରେ ଛାତି ଦମ୍‌ଦମ୍ ହୁଏ ।
ଦୁମ୍‌ଦୁମ୍ – ଦୁଷ୍ଟାମି କରିବାରୁ ପିଲାଟିର ବାପା ଦୁମ୍‌ଦୁମ୍ କରି ତା ପିଠିରେ ଦୁଇବିଧା ଲଦିଦେଲେ ।
ଧଡ଼ଧଡ଼ – ସାମାନ୍ୟ ଭୟରେ କେତେକଙ୍କର ଛାତି ଧଡ଼ଧଡ଼ ହୁଏ ।
ଧଡ଼ରଧଡ଼ର – ଶଗଡ଼ ଗାଡ଼ିଟା କଚା ରାସ୍ତାରେ ଧଡ଼ରଧଡ଼ର ହୋଇ ଚାଲିଛି ।
ପିଚ୍‌ପିଚ୍ – ଆଙ୍ଗୁଠି କଟିଯିବାରୁ ରକ୍ତ ପିଚ୍‌ପିଚ୍ ହୋଇ ବାହାରୁଛି ।
ପେଁ ପେଁ – ପେଁକାଳି ପେଁପେଁ ହୋଇ ବାଜେ ।
ପଚ୍‌ପଚ୍ – ବର୍ଷାରେ ରାସ୍ତାଟା କାଦୁଅ ପଚ୍‌ପଚ୍ ହୋଇଛି ।
ଫକ୍‌ଫକ୍ – ବେଙ୍ଗଗୁଡ଼ାକ ଫକ୍‌ଫକ୍ ଡେଉଁଛନ୍ତି ।
ଫଡ଼୍‌ଫଡ଼୍ – ପକ୍ଷୀମାନେ ଡେଣା ଫଡ଼୍‌ଫଡ଼୍ କରି ଉଡ଼ିଯାଆନ୍ତି ।
ଫର୍‌ଫର୍ – ବଡ଼ ଦେଉଳ ଉପରେ ଫର୍‌ଫର୍ ହୋଇ ନେତ ଉଡୁଛି ।
– ସେ ଧୋବ ଫର୍‌ଫର୍ ଲୁଗା ପିନ୍ଧି, ବଜାର ବୁଲି ବାହାରିଲେ ।
ଫଁ ଫଁ – ରଘୁ ରାଗରେ ଖାଲି ଫଁ ଫଁ ହେଉଛି ।
ଫେଁ ଫେଁ – ସୁରେଶର କଥା ଶୁଣି ସମସ୍ତେ ଫେଁ ଫେଁ ହୋଇ ହସି ଉଠିଲେ ।
ଫଟ୍‌ଫଟ୍ – ମଟର ସାଇକେଲ ଫଟ୍‌ଫଟ୍ ଶବ୍ଦ କରି ଚାଲିଗଲା ।
ବଂ ବଂ – ଶିବ ମନ୍ଦିରରୁ ଭକ୍ତମାନଙ୍କର ବଂବଂ ଧ୍ୱନି ଶୁଣାଯାଉଛି ।
ଭକ୍‌ଭକ୍ – ଛୁଆଟା ଭକ୍‌ଭକ୍ କରି ବାନ୍ତି କରିଦେଲା ।
ଭଡ଼ଭଡ଼୍ – ଚୁପ୍ ହୋଇ ନ ବସି ଏତେ ଭଡ଼ଭଡ଼ ହେଉଛୁ କାହିଁକି ?
ଭକରଭକର – ସବୁବେଳେ ଭକରଭକର ହେବା ବିମଳର ଗୋଟେ ଅଭ୍ୟାସ ହୋଇଗଲାଣି ।
ଭୁଁ ଭୁଁ – ମଟର ଗାଡ଼ି ଭୁଁ ଭୁଁ କରି ଚାଲେ ।
ଭେଁ ଭେଁ – ମା'କୁ ନ ଦେଖି ପିଲାଟା ଭେଁ ଭେଁ ହୋଇ କାନ୍ଦୁଛି ।
ଭୁସ୍‌ଭୁସ୍ – ଭ୍ରମର ଘର ଭିତରକୁ ଭୁସ୍‌ଭୁସ୍ ପଶି ଆସିଲା ।
ଭୋଭୋ – କୁକୁରଟା ବିଲୁଆଟାଏ ଦେଖି ଭୋଭୋ କରି ଭୁକିଲା ।
ମଡ଼୍‌ମଡ଼୍ – ଗଛଟା ମଡ଼୍‌ମଡ଼୍ କରି ଭାଙ୍ଗିଗଲା ।
ମଚ୍‌ମଚ୍ – ଜୋତା ମଚ୍‌ମଚ୍ କରି ଶିକ୍ଷକ ଶ୍ରେଣୀରେ ପହଞ୍ଚିଲେ ।
ମେଁ ମେଁ – ଛେଳି ମେଁ ମେଁ କରି ବୋବାଏ ।

ମର୍‌ମର୍ - ପତ୍ରର ମର୍‌ମର୍ ଧ୍ୱନି ଆନନ୍ଦଦାୟକ ।
ମୁଡ୍ରୁମୁଡ୍ରୁ - ପିଲାଟି ମୁଡ୍ରୁମୁଡ୍ରୁ କରି ମୁଡ୍ରୁକି ଖାଉଛି ।
ସଡ଼ସଡ଼ - ପିଲାଟାର ନାକ ସିଂଘାଣିରେ ସଡ଼ସଡ଼ ହେଉଛି ।
ସୁ ସୁ - ପବନ ସୁ ସୁ ବହୁଛି ।
ସେଁ ସେଁ - ତେଲ କରେଇରେ ପାଣି ପଡ଼ିଲେ ସେଁ ସେଁ ଶୁଭେ ।
ହାଉଁହାଉଁ - ବାଘଟା ହାଉଁହାଉଁ କରି ଶିକାରୀ ଆଡ଼କୁ ମାଡ଼ି ଆସିଲା ।

ଆଉ କେତେକ ଉଦାହରଣ- ଅଅ, ଉହୁଉହୁ, ଏଁଏଁ, କ୍ରିଂକ୍ରିଂ, ଖଳଖଳ, ଗହଗହ, ଘିଡ଼ିଘିଡ଼ି, ଘିଁଘିଁ, ଘାଇଁଘାଇଁ, ଘର୍‌ଘର୍, ଟିନ୍‌ଟିନ୍, ଟିଣିଟିଣି, ଢଂଢଂ, ଥୁଥୁ, ଦାଉଁଦାଉଁ, ଧୋଧୋ, ହୋହୋ, ଠନ୍‌ଠନ୍, ଧଡ଼୍‌ଧାଡ଼୍, ଭୁସ୍‌ଭାସ୍, ଭଡ଼୍‌ଭାଡ଼୍, ସର୍‌ସର୍, ଚବଚବ, ଚୁଚୁ, ଡବଡବ, କୁଡ୍ରୁକୁଡ୍ରୁ, ଖସ୍‌ଖସ୍, ଝମ୍‌ଝମ୍, ଫଡ଼୍‌ଫଡ଼୍ ।

## (ଞ) ଦ୍ୱିରୁକ୍ତ ଶବ୍ଦ

ଓଡ଼ିଆ ଭାଷାରେ ଦ୍ୱିରୁକ୍ତ ଶବ୍ଦର ପ୍ରଚଳନ ଅଛି । ବିଶେଷ୍ୟ, ବିଶେଷଣ, ସର୍ବନାମ ଓ କ୍ରିୟାପଦଗୁଡ଼ିକ ଦ୍ୱିତ୍ୱ ହୋଇ ବ୍ୟବହୃତ ହୋଇଥା'ନ୍ତି । ଦ୍ୱିତ୍ୱ ଶବ୍ଦର ବ୍ୟବହାରଦ୍ୱାରା ରଚନା ସରସ ଓ ସୁନ୍ଦର ହୁଏ । ବିଭିନ୍ନ ଅର୍ଥରେ ଶବ୍ଦର ଦ୍ୱିରୁକ୍ତି ହୋଇଥାଏ ।

ଦ୍ୱିରୁକ୍ତ ଶବ୍ଦର ଉଦାହରଣ :

| | | | | |
|---|---|---|---|---|
| ହସହସ | ଠିକ୍‌ଠିକ୍ | ମୁହେଁମୁହେଁ | ଆସୁଆସୁ | ଝାଇଁଝାଇଁ |
| ମାସମାସ | ଦଳଦଳ | ହାତେହାତେ | ଯାଉଯାଉ | ହାଇଁପାଇଁ |
| ବର୍ଷବର୍ଷ | ପଲପଲ | କାନେକାନେ | ଚାଲୁଚାଲୁ | ଫିରିଫିରି |
| ଶୀତଶୀତ | ମେଞ୍ଚାମେଞ୍ଚା | ବାଟେବାଟେ | କହୁକହୁ | କୁଢ଼କୁଢ଼ |
| ଜରଜର | ଚିହ୍ନାଚିହ୍ନା | ଦେଶେଦେଶେ | ଧାଉଁଧାଉଁ | ଥାକଥାକ |
| ରାତିରାତି | ନୂଆନୂଆ | ଗାଏଁଗାଏଁ | ଚାଲିଚାଲି | ଧରଧର |
| ମୁଠାମୁଠା | ଭୂରିଭୂରି | ଘରେଘରେ | ଲେଖିଲେଖି | ମାରମାର |
| ବଡ଼ବଡ଼ | ଗଦାଗଦା | ପେଟେପେଟେ | ଦେଖିଦେଖି | ତୁହାକୁତୁହା |
| ଜଳଜଳ | ସିଧାସିଧା | ବାହାରେବାହାରେ | ଚାହିଁଚାହିଁ | ଗଣ୍ଠିଳିଗଣ୍ଠିଳି |
| ଛଳଛଳ | ବାଟିବାଟି | ଟିକିଏଟିକିଏ | ଖାଇଖାଇ | ଭରଣଭରଣ |
| ଟୁକୁଟୁକୁ | ଗାଡ଼ିଗାଡ଼ି | ଛାଏଁଛାଏଁ | ଭାବିଭାବି | ତହତହ |
| ଥରଥର | ବୋଝବୋଝ | ବାଏଁବାଏଁ | ବସିବସି | ଜକଜକ |
| ପାଟୁପାଟୁ | ଟହଟହ | ମୁଠେମୁଠେ | ଧରୁଧରୁ | ବସ୍ତାବସ୍ତା |

| | | | | |
|---|---|---|---|---|
| ଟକଟକ | ତରତର | ଗୋଡ଼େଗୋଡ଼େ | ମରୁମରୁ | ଘରଘର |
| ଡବଡବ | ତମତମ | ହାଡ଼େହାଡ଼େ | କରୁକରୁ | ପରସ୍ତପରସ୍ତ |
| ତନ୍ନତନ୍ନ | ଦିକିଦିକି | କଥାରେକଥାରେ | ନାଚିନାଚି | ଚଳଚଳ |
| କନକନ | ନକନକ | ଖେଳରେଖେଳରେ | କାଶିକାଶି | ମିଠାମିଠା |
| ଲହଲହ | ବାଟିବାଟି | ଧୀରେଧୀରେ | ହସିହସି | ମନ୍ଦମନ୍ଦ |

**ବାକ୍ୟରେ ବ୍ୟବହାର :**

୧ । ଆପେଆପେ – ଗୋବିନ୍ଦ ଆପେଆପେ ବିପଦକୁ ବରଣ କରୁଛି ।

୨ । ମୁହେଁମୁହେଁ – ମୁଁ ତାକୁ ମୁହେଁମୁହେଁ ଅପମାନ ଦେଲି ।

୩ । କଥାରେକଥାରେ – କଥାରେକଥାରେ ଏତେ କାଣ୍ଡ ଘଟିଗଲା ।

୪ । ଘରଘର – ଗଣନାକର୍ମୀମାନେ ଘରଘର ବୁଲି ଜନଗଣନା କାର୍ଯ୍ୟ କରୁଛନ୍ତି ।

୫ । ମୁଠାମୁଠା – ମୁଁ ମୁଠାମୁଠା ଟଙ୍କା ଖର୍ଚ୍ଚ କଲି, ତଥାପି ପୁଅଟା ପରୀକ୍ଷାରେ ଫେଲ୍ ହେଲା ।

୬ । କନକନ – ଆରେ ଟିକିଏ ଶୁଣ, ଏମିତି ଯିବାପାଇଁ ଖାଲି କନକନ ହେଉଛୁ କାହିଁକି ?

୭ । ଚଳଚଳ – ସେ ଚଳଚଳ କରି ପାଣି ପିଉଛି ।

୮ । କାନେକାନେ – ବହିଟି ଆଣିବାପାଇଁ ମୁଁ ତାଙ୍କୁ କାନେକାନେ କହିଛି ।

୯ । ଝାଇଁଝାଇଁ – ଖରାରେ ଚାଲିଚାଲି ମୁଣ୍ଡଟା ଝାଇଁଝାଇଁ ହେଲା ।

୧୦ । ଦିକିଦିକି – ଦୀପ ଦିକିଦିକି ଜଳୁଛି ।

୧୧ । ସିଧାସିଧା – ମୋ କଥା ମାନି ସିଧାସିଧା ଘରକୁ ଆସିବୁ ।

୧୨ । ବଡ଼ବଡ଼ – ଆଉଗୁଡ଼ାଏ ବଡ଼ବଡ଼ କଥା ମୋ ଆଗରେ କହନାହିଁ ।

୧୩ । ଗଦାଗଦା – ବିଭୂତିବାବୁ ସବୁବେଳେ ଗଦାଗଦା ବହି ଭିତରେ ବୁଡ଼ି ରହିଥା'ନ୍ତି ।

୧୪ । ଭୂରିଭୂରି – ତୁମ ଦୁର୍ନୀତିର ଭୂରିଭୂରି ପ୍ରମାଣ ରହିଛି ।

୧୫ । ତୁଣ୍ଡରେତୁଣ୍ଡରେ – ତୁଣ୍ଡରେତୁଣ୍ଡରେ ଏମିତି କହିଦେଲେ ହେବନି, କାର୍ଯ୍ୟରେ କରି ଦେଖାଅ ।

## (ଟ) ଗୋଟିଏ ଶବ୍ଦର ବିଭିନ୍ନ ପଦରୂପେ ବ୍ୟବହାର

### ଅତି

ବିଶେଷଣ – ଅତିଲୋଭ ବିପଦର କାରଣ ।

ବିଶେଷଣର ବିଶେଷଣ – ଭୋଜିପାଇଁ ଅତି ସରୁ ଚାଉଳ ଆଣିବ ।

କ୍ରିୟା ବିଶେଷଣ - ଅତି ଚିପୁଡ଼ିଲେ ଲେମ୍ବୁ ପିତା ଲାଗେ ।

ବିଶେଷ୍ୟ - ଅତିଟା କାହାର ବେଶିଦିନ ରହିନାହିଁ ।

ଅତିରୁ ଇତି - ଏକଥା ସମସ୍ତେ ଜାଣନ୍ତି ।

**ଆଗ**

ବିଶେଷ୍ୟ - ବାପାଙ୍କ **ଆଗରେ** କହିବାକୁ ମୋର ସାହସ ନାହିଁ ।

**ଆଗ** ସୁନାପାଗ ।

ବିଶେଷଣ - **ଆଗ** ଲୋକେ ଆଗେ ଯାଆନ୍ତୁ ।

କ୍ରିୟାବିଶେଷଣ - ତୁମେ **ଆଗ** କହ ।

ଅବ୍ୟୟ - **ଆଗ** ମନ ଦେଇ ଶୁଣ; ପରେ ଉତ୍ତର ଦେବ ।

**ଆଗ** ପଇସା ଥୁଅ ।

**ଆଛା**

ବିଶେଷଣ - ଯାହାହେଉ **ଆଛା** କାମଟାଏ କଲା ।

କ୍ରିୟାବିଶେଷଣ - ମୁଁ **ଆଛା** କଲି, ତୁମର ଯାଏଆସେ କ'ଣ ?

ଅବ୍ୟୟ - **ଆଛା**, ଆପଣ ରଘୁନାଥ ବାବୁଙ୍କ ପୁଅ ରମେଶ ତ ?

**ଆଡ଼**

ବିଶେଷ୍ୟ - ଏ ବଖରାଟି **ଆଡ଼**ଦୀର୍ଘରେ ବିଶେଷ ବଡ଼ ନୁହେଁ ।

ବିଶେଷଣ - ସାବତ ମା' ହୋଇଥିବାରୁ ପିଲାଗୁଡ଼ାଙ୍କୁ **ଆଡ଼** ଆଖିରେ ଚାହୁଁ ନାହିଁ ।

କ୍ରିୟାବିଶେଷଣ - ତୁମେ ମୋ ରାସ୍ତାରୁ **ଆଡ଼** ହୁଅ ।

**ଏକା**

ବିଶେଷଣ - **ଏକା** ମାଘରେ ଶୀତ ଯାଏ ନାହିଁ ।

କ୍ରିୟାବିଶେଷଣ - ସେ **ଏକା** ଗଲା ।

ଅବ୍ୟୟ - ଆଛା ପାନେ ଦେଲା **ଏକା** ।

ସର୍ବନାମର ବିଶେଷଣ - ଆଗକୁ ପଛକୁ କେହି ନାହିଁ, ଆଜି ସେ **ଏକା** ।

**କିଛି**

ସର୍ବନାମ - ସମସ୍ତେ ଆସି ନ ଥିଲେ, **କିଛି** ଆସିଥିଲେ ।

ବିଶେଷ୍ୟ - ମୋଠାରେ **କିଛି** ନାହିଁ । **କିଛି**କୁ ଅତିରଂଜିତ କରିବା ଠିକ୍ ନୁହେଁ ।

ବିଶେଷଣ - ତୁମ କଥାର **କିଛି** ମାନେ ନାହିଁ । **କିଛି** ଜଳଖିଆ ଖାଅ ।

କ୍ରିୟାବିଶେଷଣ - ବନ୍ଧୁ **କିଛି** କହିଲେ, **କିଛି** ଲୁଚାଇଲେ ।

## କିନ୍ତୁ

ଅବ୍ୟୟ – ମୁଁ ପ୍ରଭୁଙ୍କୁ କେତେ ଡାକିଲି; **କିନ୍ତୁ** ସେ ମୋ ଗୁହାରି ଶୁଣିଲେ ନାହିଁ ।

ବିଶେଷ୍ୟ – ତୁମେ ମୋତେ ଆଉ ଏତେ **କିନ୍ତୁ** ଶୁଣାଅନା ।

ଯାହା କହିବ ସିଧାସିଧା କହ, **କିନ୍ତୁ**ଫିନ୍ତୁ ଆଉ କହ ନାହିଁ ।

## କେତେ

ସର୍ବନାମ – ଏ ସଂସାରକୁ କେତେ ଆସିବେ, ସଂସାରରୁ କେତେ ଯିବେ ।

ବିଶେଷ୍ୟ – ତୁମେ **କେତେର** ପ୍ରଶ୍ନ ଆଉ କର ନାହିଁ ।

ବିଶେଷଣ – ଏ ଗଛରେ **କେତେ** ଫଳ ଫଳିଛି ।

କ୍ରିୟାବିଶେଷଣ – ତମେ **କେତେ** କହୁଛ ମ !

## ଖାଇ

ବିଶେଷ୍ୟ – ଶୀତ ଋତୁ ଆସିଲେ **ଖାଇରେ** ଆଖୁ ପେଡ଼ା ହୁଏ ।

ବସ୍‌ଟା **ଖାଇରେ** ଓଲଟିଗଲା ।

କ୍ରିୟାବାଚକ ବିଶେଷ୍ୟ – ନରିବାବୁଙ୍କୁ ଭଲ **ଖାଇ** ଆସେ ।

ଅସମାପିକା କ୍ରିୟା – ମଧୁ ଦାସ **ଖାଇଖାଇ** ସମ୍ପତ୍ତି ସାରିଦେଲା ।

## ଖାଲି

ବିଶେଷ୍ୟର ବିଶେଷଣ – **ଖାଲି** ହାତରେ ଦେବଦର୍ଶନ କର ନାହିଁ ।

ବିଶେଷଣର ବିଶେଷଣ – ଯେତେ ବାଇଗଣ ଦେଖିଲି ସବୁ **ଖାଲି** ପୋକରା ।

କ୍ରିୟା ବିଶେଷଣ – ତୁ **ଖାଲି** ଖେଳୁଥା ଆଉ ପାଠ ପଢ଼େନା ।

## ଗୁଣ

ବିଶେଷ୍ୟ – **ଗୁଣ** ଥିଲେ ଲୋକ ସବୁଠି ଆଦର ପାଏ ।

ବିଶେଷଣ – **ଗୁଣର** ପିଲାକୁ ସମସ୍ତେ ପ୍ରଶଂସା କରନ୍ତି ।

କ୍ରିୟା – ଦଶକୁ ଦଶରେ **ଗୁଣ** ।

## ଗୋଟାଏ

କ୍ରିୟାବିଶେଷଣ – ବର୍ତ୍ତମାନ ମୋ ଘଣ୍ଟାରେ **ଗୋଟାଏ** ବାଜିଛି ।

ବିଶେଷଣ – ଏ ପର୍ଯ୍ୟନ୍ତ **ଗୋଟାଏ** ଲୋକ ଆସିନାହିଁ ।

କ୍ରିୟା – ପିଲାଟି ପ୍ରତିଦିନ ମଇଳା ପଲିଥିନ୍ **ଗୋଟାଏ** ।

## ଛାଡ଼

ବିଶେଷ୍ୟ - ଧାର୍ମିକ ଲୋକେ କାର୍ତ୍ତିକରେ **ଛାଡ଼** କରନ୍ତି ।

ବିଶେଷଣ - **ଛାଡ଼** ଦ୍ରବ୍ୟ ଛାଡ଼ଖାଇରେ ଖିଆଯାଏ ।

କ୍ରିୟା - ତୁମେ ଦୁଇଦିନ ଭିତରେ ଏ ଘର **ଛାଡ଼** ।

## ଜମା

ବିଶେଷ୍ୟ - ଲୋକଟିର **ଜମା**କୁ ଖର୍ଚ୍ଚ ବଳିପଡୁଛି ।

ବିଶେଷଣ - **ଜମା** ଧନକୁ ମନଇଚ୍ଛା ଖର୍ଚ୍ଚ କରନାହିଁ ।

କ୍ରିୟା - ତୁମେ ଡାକଘରେ ଟଙ୍କା **ଜମା**; ଭବିଷ୍ୟତକୁ କାମରେ ଲାଗିବ ।

କ୍ରିୟାବିଶେଷଣ - ପିଲାଟା ମୋ କଥା **ଜମା** ଶୁଣୁନାହିଁ ।

ଅବ୍ୟୟ - ତୁମେ **ଜମା** ଭଲଲୋକ ନୁହଁ ।

## ଟାଣ

ବିଶେଷ୍ୟ - ତା'ର ଏ **ଟାଣ** ବେଶିଦିନ ରହିବ ନାହିଁ ।

ବିଶେଷଣ - **ଟାଣ** ଖରାରେ ବୁଲ ନାହିଁ ।

କ୍ରିୟା - ରଥ ଦଉଡ଼ି **ଟାଣ** ।

କ୍ରିୟାବିଶେଷଣ - କଥାଗୁଡ଼ାକ **ଟାଣ**ରେ କହନାହିଁ ।

## ଟିକିଏ

ବିଶେଷ୍ୟର ବିଶେଷଣ - **ଟିକିଏ** ବିଷ ମୃତ୍ୟୁପାଇଁ ଯଥେଷ୍ଟ ।

ବିଶେଷଣର ବିଶେଷଣ - **ଟିକିଏ** ମଧୁର କଥା ବି ରୋଗୀକୁ ସାନ୍ତ୍ୱନା ଦେଇପାରେ ।

କ୍ରିୟା ବିଶେଷଣ - ଟିକିଏ ଶୁଣ ।

## ଠିକ୍

ବିଶେଷ୍ୟ - **ଠିକ୍** ଭୁଲ୍‌ର ବିଚାର ସମସ୍ତେ କରିପାରନ୍ତି ନାହିଁ ।
ମନେରଖ, **ଠିକ୍‌**କୁ ବେଠିକ୍ କହିବା ଅନ୍ୟାୟ ।

ବିଶେଷ୍ୟର ବିଶେଷଣ - ଆଜିର ସମାଜରେ **ଠିକ୍** କଥା କେତେଜଣ କହନ୍ତି ?

କ୍ରିୟାବିଶେଷଣ - ଠିକ୍ ଲେଖ, **ଠିକ୍** ପଢ଼ ।

ବିଶେଷଣର ବିଶେଷଣ - ମୁଁ **ଠିକ୍** ଦଶଟାରେ ପହଞ୍ଚିବି ।

ଅବ୍ୟୟ - **ଠିକ୍**, ତୁମେ ଯାହା କହୁଛ, ସତ ।

## ତୁଚ୍ଛା

ବିଶେଷ୍ୟ - **ତୁଚ୍ଛା**କୁ ଏତେ କଥା କାହିଁକି ?

ବିଶେଷଣ - **ତୁଚ୍ଛା** କଥାରେ କଳି ଲାଗ ନାହିଁ ।

କ୍ରିୟା - ଲକ୍ଷ୍ମୀ, ତୁ ମଇଳା ପାଣିତକ ତୁଣ୍ଡରୁ **ତୁଛା** ।
କ୍ରିୟାବିଶେଷଣ - ରମେଶ ସବୁବେଳେ **ତୁଛା**ରେ ରାଗୁଛି ।

**ଧନୀ**

ବିଶେଷ୍ୟ - **ଧନୀ**ର ଧନ ହେଉଛି ଅସଲ ଶକ୍ତି ।
ବିଶେଷଣ - **ଧନୀ** ଲୋକର ସବୁଠାରେ ସମ୍ମାନ ଥାଏ ।

**ନାହିଁ**

ଅବ୍ୟୟ - **ନାହିଁ**, ମୁଁ ଏ କାମ କରିପାରିବି ନାହିଁ ।
କ୍ରିୟା - ସୁଖର ଦିନ କାହାର ସବୁବେଳେ ରହେ**ନାହିଁ** ।
ବିଶେଷ୍ୟ - 'ହଁ' କି '**ନାହିଁ**' ଗୋଟିଏ କଥା କହନ୍ତୁ ।
ବିଶେଷଣ - **ନାହିଁ** ମାମୁଠାରୁ କଣାମାମୁ ଭଲ ।

**ନିତାନ୍ତ**

ବିଶେଷଣର ବିଶେଷଣ- **ନିତାନ୍ତ** ବୋକା ପିଲାକୁ ପଢ଼ାଇବା କଷ୍ଟ ।
କ୍ରିୟାବିଶେଷଣ - ତୁମେ **ନିତାନ୍ତ** ଆସିଲେ ମୋତେ ସାହାଯ୍ୟ କରିବ ।
ଅବ୍ୟୟ - **ନିତାନ୍ତ** ଯଦି ଜିଦ୍ ଧରିବ, ଦେବି ।

**ନିହାତି**

ବିଶେଷଣର ବିଶେଷଣ - ନବୀନ ଏକ **ନିହାତି** ଅଳସୁଆ ପିଲା ।
**ନିହାତି** ନିର୍ବୋଧକୁ ସହଜରେ ବୁଝାଇ ହୁଏ ନାହିଁ ।
କ୍ରିୟାବିଶେଷଣ - ତୁମେ **ନିହାତି** ଆସିବ, ନଚେତ୍ ମୁଁ ଅସୁବିଧାରେ ପଡ଼ିବି ।
**ନିହାତି** କହୁଛ ଯଦି ମୁଁ ଯିବି ।

**ନିଶ୍ଚୟ**

ବିଶେଷ୍ୟ - ଦୃଢ଼ମନା ଲୋକମାନେ କେବେହେଲେ **ନିଶ୍ଚୟ**ରୁ ଦୂରେଇ ଯାଆନ୍ତି ନାହିଁ ।
ବିଶେଷଣ - **ନିଶ୍ଚୟ** କଥାକୁ ଛାଡ଼ି ଅନିଶ୍ଚୟରେ ମନ ଦିଅ ନାହିଁ ।
କ୍ରିୟାବିଶେଷଣ - ଆଜିର ମ୍ୟାଚ୍‌ରେ ଭାରତ **ନିଶ୍ଚୟ** ଜିତିବ ।

**ପଛ**

ବିଶେଷ୍ୟ - ସବୁବେଳେ ଆଗ **ପଛ**କୁ ଚାହିଁ କାମ କରିବା ଉଚିତ ।
ବିଶେଷଣ - **ପଛ** କଥାକୁ ମନରୁ ପୋଛିଦିଅ ।
କ୍ରିୟାବିଶେଷଣ - ଅନ୍ୟମାନେ ଆଗେ ଖାଆନ୍ତୁ, ମୁଁ **ପଛେ** ଖାଇବି ।
ଭଲ ନ ପଢ଼ିବାରୁ ପଲ୍ଲବୀ **ପଛ**ରେ ରହିଲା ।

## ପାଗ

ବିଶେଷ୍ୟ – ଆଜିଠାରୁ **ପାଗ** ଅନୁକୂଳ ହେବାର ସୂଚନା ମିଳୁଛି ।
**ପାଗ** ଭିଡୁଭିଡୁ କଚେରି ବରଖାସ୍ତ ।
ବିଶେଷଣ – ଭୋଗପାଇଁ ଏ **ପାଗ** ଉଖୁଡ଼ା ନିଅ ।
କ୍ରିୟାବିଶେଷଣ – ଏ ପିଠା **ପାଗ**ରେ ହୋଇନାହିଁ ।

## ପ୍ରତି

ବିଶେଷ୍ୟ – ଏ କିଆରିର ଦୀର୍ଘ **ପ୍ରତି** ସେତେ ବଡ଼ ନୁହେଁ ।
ବିଶେଷଣ – **ପ୍ରତି** କାର୍ଯ୍ୟରେ ପରମୁଖାପେକ୍ଷୀ ହୁଅନାହିଁ ।
ବିଭକ୍ତିସୂଚକ ଅବ୍ୟୟ – ଦୀନ **ପ୍ରତି** ଦୟା କର ।
ଅବ୍ୟୟ – ଜଣ **ପ୍ରତି** ଦଶଟଙ୍କା ଚାନ୍ଦା ପଡ଼ିଛି ।

## ପ୍ରତ୍ୟକ୍ଷ

ବିଶେଷ୍ୟ – ପିତାମାତା **ପ୍ରତ୍ୟକ୍ଷ**ରେ ପ୍ରତ୍ୟେକ ସନ୍ତାନର ଦେବତା ଅଟନ୍ତି ।
**ପ୍ରତ୍ୟକ୍ଷ**ରେ ଓ ପରୋକ୍ଷରେ ହିତ କରୁଥିବା ଲୋକ ବନ୍ଧୁ ଅଟେ ।
ବିଶେଷଣ – ସନ୍ତାନମାନଙ୍କ ପାଇଁ ପିତାମାତା **ପ୍ରତ୍ୟକ୍ଷ** ଦେବତା ।
କ୍ରିୟାବିଶେଷଣ – ଗଲାକାଲିର ରାସ୍ତା ଦୁର୍ଘଟଣାକୁ ମୁଁ **ପ୍ରତ୍ୟକ୍ଷରେ** ଦେଖିଛି ।

## ବଡ଼

ବିଶେଷ୍ୟ – **ବଡ଼**ଙ୍କର ବଡ଼ କଥା । **ବଡ଼**ଙ୍କୁ ଭକ୍ତି କର ।
**ବଡ଼ବଡ଼**ମାନେ ବେଳେବେଳେ ନିୟମଭଙ୍ଗ କରିଥା'ନ୍ତି ।
ବିଶେଷଣ – ଛୋଟ ମୁହଁରେ **ବଡ଼** କଥା କହନାହିଁ । ମୋ ଉପରେ **ବଡ଼** ଦାୟିତ୍ୱ ଅଛି । ବଡ଼ ଲୋକଙ୍କୁ ଉତ୍ତର ନାହିଁ ।
ବିଶେଷଣର ବିଶେଷଣ – ତୁମେ **ବଡ଼** ଭଲ ଲୋକ ବୋଲି ସମସ୍ତେ ଜାଣନ୍ତି ।
କ୍ରିୟାବିଶେଷଣର ବିଶେଷଣ – ଦୀନବନ୍ଧୁ ବୁଢ଼ା ହେଲେ ବି **ବଡ଼** ବେଗରେ ଚାଲନ୍ତି ।
କ୍ରିୟାବିଶେଷଣ – ତୁମକୁ ଧୋତିପଞ୍ଜାବୀ **ବଡ଼** ମାନେ ।

## ବସ

ବିଶେଷ୍ୟ – ଅଧିକ ସ୍ନେହସାର ଖାଦ୍ୟ ଖାଇଲେ ଦେହରେ **ବସ** ବୃଦ୍ଧିପାଏ ।
ପିଲାଙ୍କୁ **ବସ**-ଉଠ କରନାହିଁ ।
ବିଶେଷଣ – **ବସ** ମାଛ ସ୍ୱାଦିଷ୍ଟ ।
କ୍ରିୟା – ତୁମେ ଏଠାରେ **ବସ** ।
କ୍ରିୟାବିଶେଷଣ – ତୁମକୁ ବସ କହିଲେ, ଉଠୁଛ କାହିଁକି ?

## ବାଳ

ବିଶେଷ୍ୟ – ଶାଗ କାଟି **ବାଳ** ବାଛ ନାହିଁ ।

ଧଳା **ବାଳ** ବି କାହାରି କାହାରି ମୁଣ୍ଡକୁ ସୁନ୍ଦର ଦିଶେ ।

ବିଶେଷଣ – **ବାଳ** ସୂର୍ଯ୍ୟଙ୍କର କିରଣ ସ୍ୱାସ୍ଥ୍ୟପ୍ରଦ ।

**ବାଳ** ଅବସ୍ଥାରେ ଶିଶୁର ଅପରାଧ କ୍ଷମଣୀୟ ।

## ବିଶେଷ

ବିଶେଷ୍ୟ – ମୁଁ ଖାଦ୍ୟରେ **ବିଶେଷ**-ମାମୁଲି ଖୋଜେ ନାହିଁ ।

ବିଶେଷଣ – ଭୂମିକମ୍ପ, ସୁନାମି ଓ ମହାବାତ୍ୟା ଏକଏକ **ବିଶେଷ** ବିପତ୍ତି ।

କ୍ରିୟାବିଶେଷଣ – ଭାଗୀରଥି ବାବୁ ଭାଷଣ ଦେଲେ **ବିଶେଷ** କହନ୍ତି ।

## ମନ୍ଦ

ବିଶେଷ୍ୟ – ଭଲ ଓ **ମନ୍ଦର** ବିଚାରକୁ ନେଇ ଲୋକଙ୍କୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଏ ।

ବିଶେଷଣ – **ମନ୍ଦ** କାର୍ଯ୍ୟ ନିନ୍ଦନୀୟ । **ମନ୍ଦ** ଲୋକର ପାଖକୁ ଯାଅ ନାହିଁ ।

କ୍ରିୟାବିଶେଷଣ – ଦକ୍ଷିଣା ପବନ **ମନ୍ଦମନ୍ଦ** ବହୁଛି ।

ଅନ୍ୟର **ମନ୍ଦ** କରନାହିଁ, ଭଲ କର ।

## ମଲା

ବିଶେଷ୍ୟ – **ମଲା**ମାନେ କି କାମ କରିବେ ?

ବିଶେଷଣ – **ମଲା**ଘୋଡ଼ାର ଟାଙ୍ଗ ମାପି ଲାଭ ନାହିଁ ।

ସେ ଜଣେ **ମଲା** ଗାଈର ଦାନ୍ତ ଗଣିବା ଲୋକ ।

ମଦନ **ମଲା** ମାଛିକୁ 'ମର' କହେ ନାହିଁ ।

**ମଲା** ଲୋକ ବଞ୍ଚେ ନାହିଁ ।

କ୍ରିୟା – ପୁଣ୍ୟବଳରୁ ବୁଢ଼ାଟି କାର୍ତ୍ତିକ ପୂର୍ଣ୍ଣମୀରେ **ମଲା** ।

ଯେ **ମଲା**, ସେ ତରିଗଲା ।

ଅବ୍ୟୟ – **ମଲା**, ଓଧ ସାଙ୍ଗରେ ବଣଭୁଆ ବାଇ ହୋଇଛି ।

**ମଲା**, ବୁଢ଼ା କାଳକୁ ତୋର ଏମିତି କାମ କରିବାକୁ ଥିଲା ?

## ମାପ

ବିଶେଷ୍ୟ – ମୋତେ ଜମି**ମାପ** ଆସେ । ଦରଜୀ ପୋଷାକପାଇଁ **ମାପ** ନେଲା ।

ବିଶେଷଣ – **ମାପ** କାମ ଶୀଘ୍ର ସାର ।

ସତ୍‌କର୍ମ ଜୀବନର **ମାପ**-ଦଣ୍ଡ ଅଟେ ।

କ୍ରିୟା - ସତ୍‌କର୍ମରେ ହିଁ ଜୀବନକୁ **ମପାଯାଏ** । ଏ କନାଟିକୁ **ମାପ** ।

## ଯେ

ସର୍ବନାମ - **ଯେ** ଥାଏ ପର ନଟକୂଟେ । ତାକୁ ଗୋବିନ୍ଦ ମାରନ୍ତି କପଟେ ।

**ଯେ** ଯେପରି କର୍ମ କରିବ, ସେ ସେପରି ଫଳ ପାଇବ ।

ବିଶେଷଣ - **ଯେ** ଦେଶ ଯାଇ, ସେ ଫଳ ଖାଇ ।

**ଯେ** ପର ହୋଇ ଉପକାର କରେ, ତାକୁ ନିଜର ବୋଲି ଜାଣିବ ।

**ଯେ** ଜନ ନିତ୍ୟ ସତ୍ୟ କହେ, ମୁହିଁ ବସଇ ତା'ର ଦେହେ ।

ସମୁଚ୍ଚୟୀ ଅବ୍ୟୟ - ଶିକ୍ଷକ କହୁଥିଲେ **ଯେ** ମୋତେ ପାଠପଢ଼ାରେ ସାହାଯ୍ୟ କରିବେ ।

ଆଳଙ୍କାରିକ ଅବ୍ୟୟ - ସେ **ଯେ** କେଡ଼େ କଥା କଲା !

## ଯେଡ଼େ

ବିଶେଷ୍ୟର ବିଶେଷଣ - **ଯେଡ଼େ** ଭୋଜି, ସେଡ଼େ ଖର୍ଚ୍ଚ ।

**ଯେଡ଼େ** ବାଉଁଶକୁ ସେଡ଼େ ପୋଲ ।

କ୍ରିୟାବିଶେଷଣ - କହନ୍ତି **ଯେଡ଼େ**, ନୁହନ୍ତି ତେଡ଼େ ।

ବିଶେଷଣର ବିଶେଷଣ - **ଯେଡ଼େ** ଅସୁନ୍ଦର, ସେଡ଼େ ଗୁଣର ।

**ଯେଡ଼େ** ଲମ୍ବା, ସେତେ ପତଳା ।

ବିଧେୟ ବିଶେଷଣ - ଯାହାର ମନ **ଯେଡ଼େ**, ତାହାର ପ୍ରଭୁ ତେଡ଼େ ।

## ଯେପରି

ବିଶେଷ୍ୟର ବିଶେଷଣ - **ଯେପରି** ଦୋଷକୁ ସେପରି ଦଣ୍ଡ ।

**ଯେପରି** ଲୋକକୁ ସେପରି ବ୍ୟବହାର ଦରକାର ।

କ୍ରିୟା ବିଶେଷଣ - **ଯେପରି** କହୁଛ, ସେପରି ଶୁଣୁଛ ।

**ଯେପରି** ଆସିଥିଲ, ସେପରି ଚାଲିଯାଅ ।

ଅବ୍ୟୟ - ମନେହେଲା, **ଯେପରି** ସେ ଭିନ୍ନେ ମଣିଷ ହୋଇଯାଇଛି ।

ସ୍ୱପ୍ନ ଦେଖୁଥାଏ, **ଯେପରି** ବାଘଟାଏ ମୋ ଆଗରେ ଆଁ କରି ଠିଆ ହୋଇଛି ।

**ରଙ୍ଗ**

ବିଶେଷ୍ୟ – ଇନ୍ଦ୍ରଧନୁରେ ସାତରଙ୍ଗ ଅଛି ।

ପିଲାଟିର ଦେହର **ରଙ୍ଗ** ଗୋରା ।

ବିଶେଷଣ – ରଞ୍ଜିତ **ରଙ୍ଗ** ପୋଷାକ ପିନ୍ଧିବାକୁ ଭଲ ପାଏ ।

କ୍ରିୟାବିଶେଷଣ – ଦୁଆରୀ କେତେ **ରଙ୍ଗ**ରେ କହିପାରେ ଓ ନାଚିପାରେ ।

**ସୁନ୍ଦର**

ବିଧେୟ ବିଶେଷଣ – ପିଲାଟି **ସୁନ୍ଦର** ।

ବିଶେଷ୍ୟର ବିଶେଷଣ – **ସୁନ୍ଦର** ଆକାଶ ।

କ୍ରିୟାବିଶେଷଣ – ସୌମ୍ୟା **ସୁନ୍ଦର** ନାଚିପାରେ ।

ବିଶେଷ୍ୟ – **ସୁନ୍ଦର** ହିଁ ସବୁବେଳେ ସୁନ୍ଦର ଦିଶେ ।

**ସୁନ୍ଦର**ରେ ତୃପ୍ତିର ଅବସାଦ ନାହିଁ ।

**ହସ**

ବିଶେଷ୍ୟ – ଶିଶୁର **ହସ**ରେ ମଧୁରତା ଥାଏ । **ହସ** ଦୀର୍ଘଜୀବନର ମହୋଷଧି ।

ତା' **ହସ** ପରି କେହି ହସିପାରିବେ ନାହିଁ ।

ହସି ଜାଣିଲେ **ହସ** ସୁନ୍ଦର ।

ବିଶେଷଣ – ହରି **ହସ** କଥା କହିବାରେ ଓସ୍ତାଦ ।

**ହସହସ** ମୁହଁ ଅତି ସୁନ୍ଦର ।

କ୍ରିୟାବିଶେଷଣ – ସେ କଥାଟାକୁ **ହସ**ରେ କହିଲେ ।

ପିଣ୍ଟୁ ମୋ କଥାକୁ **ହସ**ରେ ଉଡ଼ାଇଦେଲା ।

କ୍ରିୟା – ତୁମେ ଟିକିଏ **ହସ** ।

**ହାତ**

ବିଶେଷ୍ୟ – **ହାତ** ଓ ଗୋଡ଼ ଈଶ୍ୱରଙ୍କର ମନୁଷ୍ୟକୁ ଶ୍ରେଷ୍ଠ ଦାନ ।

କ୍ରିୟାବିଶେଷଣ – **ହାତେ** ମାପି ଚାଖଣ୍ଡେ ଚାଲ ।

ବିଶେଷ୍ୟର ବିଶେଷଣ – ହିମାନୀର **ହାତ** କାମ ଅତି ମନଛୁଆଁ ।

କ୍ରିୟା – ବନ୍ଦନା ବୀଣାକୁ ବହିଟି **ହାତେଇଲା** ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଶବ୍ଦଗୁଡ଼ିକ ବାକ୍ୟରେ ବ୍ୟବହାର କର ।
କଟ୍‌କଚ୍, ପିଁପାଁ, ଘଡ଼ଘଡ଼, କୁଲୁକୁଲୁ, ଥପଥପ, ମଟମଟ, କୁଡୁକୁଡୁ, ଭଁଭଁ, କିରିକିରି, ଧଡ଼ଧାଡ଼, ଘୋଘୋ, କିଟିକିଟି, ଦୁମ୍‌ଦୁମ୍, ଛୁକ୍‌ଛୁକ୍

୨ । ଦଶଟି ଦ୍ୱିରୁକ୍ତ ଶବ୍ଦକୁ ବାକ୍ୟରେ ବ୍ୟବହାର କର ।

୩ । 'କ' ଓ 'ଖ' ତାଲିକାରେ ଥିବା ସମ୍ପୃକ୍ତ ଶବ୍ଦଗୁଡ଼ିକୁ ଯୋଡ଼ି ବାକ୍ୟ ଗଠନ କର ।
'କ' ତାଲିକା – କଇଁକଇଁ, ଗୁଣୁଗୁଣୁ, ବାଟିବାଟି, ଦଳଦଳ, ଭୂରିଭୂରି, ଚିହ୍ନାଚିହ୍ନା, ଖିଲିଖିଲି, ପିଚ୍‌ପିଚ୍, ମଚ୍‌ମଚ୍, ମିଠାମିଠା, ଠିକ୍‌ଠିକ୍, ଚିଁଚିଁ, ଝମ୍‌ଝମ୍ ।
'ଖ' ତାଲିକା – ଘୁଙ୍ଗୁର, ଚଢ଼େଇ, ଖେଳାଳି, ମୁହଁ, କଥା, ଜୋତା, ହସ, ପ୍ରମାଣ, ଜମି, ମହୁମାଛି, ରକ୍ତ, ଉତ୍ତର, କାନ୍ଦ

୪ । ନିମ୍ନଲିଖିତ ରେଖାଙ୍କିତ ଶବ୍ଦଗୁଡ଼ିକ କି ପଦ ରୂପେ ବାକ୍ୟରେ ବାକ୍ୟରେ ବ୍ୟବହାର କରାଯାଇଛି ନିରୂପଣ କର ।
ଧର କଥାଟା ମୁଁ କହିଛି । ବାଳ ପୋଡ଼ିଗଲେ ପାଉଁଶ ନୁହଁ କି ଅଙ୍ଗାର ନୁହଁ । ତୁମେ ଆଚ୍ଛା ପାଲା ଲଗେଇଛ ! ସେ କହିଲା ଯେ ତା' ବାପା କାଲି କଲିକତା ଯିବେ । ମତେ ଯେତେ ମାଠୁଛୁ ମାଠ, ମୁଁ ସେଇ ଦରପୋଡ଼ କାଠ । ମଲା, ମୁଁ କ'ଣ ତୋ ପଇସା ଖାଇଦେଇ କୁଆଡ଼େ ପଳାଇ ଯାଉଛି । ମୋର ଆଉ ବିଶେଷ କିଛି କହିବାର ନାହିଁ । ତୁ ଖାଲି ଚାଲ, ଯାହା କହିବା କଥା ମୁଁ କହିବି । ଦଉଡ଼ିଟିକୁ ଏତେ ଜୋରରେ ଟାଣ ନାହିଁ, ଛିଡ଼ିଯିବ ।

୫ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଶୂନ୍ୟସ୍ଥାନରେ ବନ୍ଧନୀ ମଧ୍ୟରେ ପ୍ରଦତ୍ତ ଉତ୍ତର ମଧ୍ୟରୁ ଗୋଟିଏ ବାଛି ପୂରଣ କର !
(ଖରଖର, ଗଣଗଣ, ଗୁରୁଗୁରୁ, ଟପ୍‌ଟପ୍, ଚାଉଁଚାଉଁ)
(କ) ମହିଷ ଚିପାର — ଧ୍ୱନି, ଘୋଷେ ମୁଖରିତ ଅରଣ୍ୟ ସରଣୀ ।
(ଖ) ଚାଳରୁ ପାଣି — ପଡୁଛି ।
(ଗ) ଚମ୍ପା ନାନୀ ଘର — କରି ଓଳାଉଛି ।
(ଘ) ମୋ ପେଟଟା କାହିଁକି — ମାରୁଛି ।
(ଙ) ପଚା ମାଛ ଉପରେ ମାଛି ଗୁଡ଼ାକ ବସି — ହେଉଛନ୍ତି ।



# ଅଶୁଦ୍ଧି-ସଂଶୋଧନ

ଶୁଦ୍ଧ କଥନ, ଲିଖନ ଓ ପଠନ ଏକ ଏକ କଳା । ଏହା ସଂସ୍କୃତିସମ୍ପନ୍ନ ବ୍ୟକ୍ତିତ୍ୱର ପରିଚାୟକ । ଏ କ୍ଷେତ୍ରରେ ଯେଉଁମାନେ ପାରଦର୍ଶିତା ଲାଭ କରିଥା'ନ୍ତି, ସେମାନେ ଭାଷା ସାହିତ୍ୟରେ ଯଶସ୍ୱୀ ହୋଇଥା'ନ୍ତି; ମାତ୍ର ବ୍ୟାକରଣଜ୍ଞାନର ଅଭାବ, ଅଶୁଦ୍ଧ ଉଚ୍ଚାରଣ ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାରଣରୁ ବ୍ୟକ୍ତି ଅଶୁଦ୍ଧ ଶବ୍ଦର ପ୍ରୟୋଗ କରିଥାଏ । ବ୍ୟାକରଣ ଦୃଷ୍ଟିରୁ ଅଶୁଦ୍ଧ ଶବ୍ଦର ବ୍ୟବହାର ତ୍ରୁଟିଯୁକ୍ତ । ତେଣୁ ଶୁଦ୍ଧ ଶବ୍ଦର ବ୍ୟବହାର ସମସ୍ତଙ୍କର କରଣୀୟ । ଆମ ଲିଖିତ ଭାଷାରେ ବ୍ୟବହୃତ କେତେକ ନିର୍ବାଚିତ ଅଶୁଦ୍ଧ ଓ ସେଗୁଡ଼ିକର ଶୁଦ୍ଧ ରୂପ ପ୍ରଦତ୍ତ ହେଲା ।

| ଅଶୁଦ୍ଧ | ଶୁଦ୍ଧ |
|---|---|
| **ସନ୍ଧି ସମ୍ବନ୍ଧୀୟ ଅଶୁଦ୍ଧି :** | |
| **ଅଶୁଦ୍ଧ** | **ଶୁଦ୍ଧ** |
| ଅନ୍ତସ୍କରଣ | ଅନ୍ତଃକରଣ |
| ଆବିସ୍କାର | ଆବିଷ୍କାର |
| ଉଜ୍ୱଳ | ଉଜ୍ଜ୍ୱଳ |
| ଉତପ୍ତ | ଉତ୍ତପ୍ତ |
| ଉପରୋକ୍ତ | ଉପର୍ଯ୍ୟୁକ୍ତ |
| କବିନ୍ଦ୍ର | କବୀନ୍ଦ୍ର |
| ଗଣେଷ | ଗଣେଶ |
| ଚଳଚିତ୍ର | ଚଳଚ୍ଚିତ୍ର |
| ଚଳଚିତ୍ର | ଚଳଚ୍ଚିତ୍ର |
| ଚକ୍ଷୁଦ୍ୱୟ | ଚକ୍ଷୁର୍ଦ୍ୱୟ |
| ଚକ୍ଷୁରୋଗ | ଚକ୍ଷୂରୋଗ |
| ଜଗର୍ନ୍ନାଥ | ଜଗନ୍ନାଥ |
| ଜଗବନ୍ଧୁ | ଜଗଦ୍‌ବନ୍ଧୁ |
| ଜାଗ୍ରତାବସ୍ଥା | ଜାଗ୍ରଦବସ୍ଥା |
| ଦିଗାମ୍ବର | ଦିଗମ୍ବର |
| ଦୁରାଦୃଷ୍ଟ | ଦୁରଦୃଷ୍ଟ(ମନ୍ଦଭାଗ୍ୟ,ପାପ) |
| ଦୂରାବସ୍ଥା | ଦୁରବସ୍ଥା |
| ଦୂରାଶା | ଦୁରାଶା |

| ଅଶୁଦ୍ଧ | ଶୁଦ୍ଧ |
|---|---|
| ଦୁରୁହ | ଦୁରୂହ |
| ଦୁର୍ଦ୍ଧର୍ଷ | ଦୁର୍ଦ୍ଧର୍ଷ |
| ନୀର୍ଜନ | ନିର୍ଜନ |
| ନିରସ୍ତିକରଣ | ନିରସ୍ତ୍ରୀକରଣ |
| ନିରାପେକ୍ଷ | ନିରପେକ୍ଷ |
| ନିରିକ୍ଷା | ନିରୀକ୍ଷା |
| ନିରୂଦ୍ୟମ | ନିରୁଦ୍ୟମ |
| ପରିଛଦ | ପରିଚ୍ଛଦ |
| ପରିଛେଦ | ପରିଚ୍ଛେଦ |
| ପରିସ୍କାର | ପରିଷ୍କାର |
| ପଶ୍ୱାଧମ | ପଶ୍ୱଧମ |
| ପୃଥକାନ୍ନ | ପୃଥଗନ୍ନ |
| ପ୍ରତ୍ୟକ | ପ୍ରତ୍ୟେକ |
| ପ୍ରତ୍ୟେହ | ପ୍ରତ୍ୟହ |
| ବଶମ୍ବଦ | ବଶଂବଦ |
| ବାକ୍‌ଦେବୀ | ବାଗ୍‌ଦେବୀ |
| ବାରମ୍ବାର | ବାରଂବାର, ବାରବାର |
| ବିଛେଦ | ବିଚ୍ଛେଦ |
| ବିଦ୍ୟୁତାଲୋକ | ବିଦ୍ୟୁଦାଲୋକ |
| ବିପଦ୍‌ପାତ | ବିପତ୍‌ପାତ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ବୃକ୍ଷଛାୟା | ବୃକ୍ଷଚ୍ଛାୟା | ଅର୍ଦ୍ଧରାତ୍ରି | ଅର୍ଦ୍ଧରାତ୍ର |
| ଭୂମ୍ୟାଧିକାରୀ | ଭୂମ୍ୟଧିକାରୀ | ଅହର୍ନିଶି | ଅହର୍ନିଶ |
| ମନସ୍କାମନା | ମନଃକାମନା | ଅହୋରାତ୍ରି | ଅହୋରାତ୍ର |
| ମନୋକଷ୍ଟ | ମନଃକଷ୍ଟ(ବେଦନା) | କାଳିଚରଣ | କାଳୀଚରଣ |
| ମନଭାବ | ମନୋଭାବ | କାଳୀଦାସ | କାଳିଦାସ |
| ଯଶଲାଭ | ଯଶୋଲାଭ | ଦିବାନିଶି | ଦିବାନିଶ |
| ରଜଗୁଣ | ରଜୋଗୁଣ | ଦିବାରାତ୍ରି | ଦିବାରାତ୍ର |
| ରବିନ୍ଦ୍ର | ରବୀନ୍ଦ୍ର | ଧନୀପୁତ୍ର | ଧନିପୁତ୍ର |
| ଶିରଛେଦ | ଶିରଚ୍ଛେଦ | ନିକଳଙ୍କ | ନିଷ୍କଳଙ୍କ |
| ଶିରବ୍ୟଥା | ଶିରୋବ୍ୟଥା | ନିର୍ଦ୍ଦୟା | ନିର୍ଦ୍ଦୟ |
| ଶିରମଣି | ଶିରୋମଣି | ନିର୍ଦ୍ଦୋଷୀ | ନିର୍ଦ୍ଦୋଷ |
| ଶୁଦ୍ଧ୍ୟାଶୁଦ୍ଧି | ଶୁଦ୍ଧ୍ୟଶୁଦ୍ଧି | ନିରହଂକାରୀ | ନିରହଂକାର |
| ସଦ୍ୟଜାତ | ସଦ୍ୟୋଜାତ(ନବପ୍ରସୂତ) | ନିରୋଗୀ | ନୀରୋଗ |
| ସଦ୍ୟସ୍ନାତ | ସଦ୍ୟଃସ୍ନାତ | ପଦ୍ମନାଭି | ପଦ୍ମନାଭ |
| ସନ୍‌ମତି | ସମ୍ମତି | ପକ୍ଷୀରାଜ | ପକ୍ଷିରାଜ |
| ସନ୍‌ମୁଖ | ସମ୍ମୁଖ | ପକ୍ଷୀଶାବକ | ପକ୍ଷିଶାବକ |
| ସନ୍ୟାସ | ସନ୍ନ୍ୟାସ | ପିତାଧନ | ପିତୃଧନ |
| ସମ୍ବାଦ | ସଂବାଦ | ପୁରୁଷୋତ୍ତମ | ପୁରୁଷୋତ୍ତମ |
| ସାଣ୍ମାସିକ | ଷାଣ୍ମାସିକ | ପ୍ରାଣୀବର୍ଗ | ପ୍ରାଣିବର୍ଗ |
| ସ୍ୱଛ | ସ୍ୱଚ୍ଛ | ଭ୍ରାତାଗଣ | ଭ୍ରାତୃଗଣ |
| ହୃଦ୍‌କମ୍ପ | ହୃତ୍‌କମ୍ପ | ମଧ୍ୟରାତ୍ରି | ମଧ୍ୟରାତ୍ର |
| ହୃଦ୍‌ପିଣ୍ଡ | ହୃତ୍‌ପିଣ୍ଡ | ମହାରାତ୍ର | ମହାରାତ୍ରି |
| ହୃର୍ଦ୍ଦୋଗ | ହୃଦ୍ରୋଗ | ମନୀଷୀଗଣ | ମନୀଷିଗଣ |
| କ୍ଷୀତୀଶ | କ୍ଷିତୀଶ | ମନ୍ତ୍ରୀମଣ୍ଡଳ | ମନ୍ତ୍ରିମଣ୍ଡଳ |
| କ୍ଷୁଦ୍‌ପିପାସା | କ୍ଷୁତ୍‌ପିପାସା | ମହଦୋୟ | ମହୋଦୟ |
| **ସମାସ ସମ୍ବନ୍ଧୀୟ :** | | ଯଶଧନ | ଯଶୋଧନ |
| ଅନାଟନ | ଅନଟନ | ଯୁବାଦଳ | ଯୁବଦଳ |
| ଅନୀଷ୍ଟ | ଅନିଷ୍ଟ | ରାଜାଗଣ | ରାଜଗଣ |
| ଅନୁସୂୟା | ଅନସୂୟା | ଶଶୀଭୂଷଣ | ଶଶିଭୂଷଣ |
| ଅନ୍ୟୁନ | ଅନ୍ୟୂନ | ସବିନୟପୂର୍ବକ | ସବିନୟ, ବିନୟପୂର୍ବକ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ସଶଙ୍କିତ | ସଶଙ୍କ | ମହାନ୍ତୀଆଣି | ମହାନ୍ତିଆଣୀ |
| ସାବଧାନପୂର୍ବକ | ସାବଧାନ, ଅବଧାନପୂର୍ବକ | ମହିୟସି | ମହୀୟସୀ |
| | | ମାଉଷୀ | ମାଉସୀ |
| ସୁଚରିତ୍ରବାନ୍ | ସୁଚରିତ୍ର | ମାତୁଳି | ମାତୁଳୀ |
| ସୁନାଶିର | ସୁନାଶୀର | ମିଛୋଇ | ମିଛୋଈ |
| | (ଶୁନାଶୀର,ଶୁନାସୀର,ସୁନାଶୀର, ସୁନାସୀର) (ଇନ୍ଦ୍ର,ପେଚକ) | ମାଇଁ | ମାଈଁ |
| ସ୍ଥାୟୀଭାବ | ସ୍ଥାୟିଭାବ | ମିତଣି | ମିତଣୀ |
| ସ୍ୱାମୀସେବା | ସ୍ୱାମିସେବା | ଯୂବତି | ଯୁବତୀ |
| ହଂସୀଡିମ୍ବ | ହଂସଡିମ୍ବ | ଶିକ୍ଷୟତ୍ରୀ | ଶିକ୍ଷୟିତ୍ରୀ |
| **ଲିଙ୍ଗସମ୍ବନ୍ଧୀୟ :** | | ଶୁଦ୍ରି | ଶୂଦ୍ରୀ |
| ଅଧିକାରୀଣୀ | ଅଧିକାରିଣୀ | ଶୂନି | ଶୁନୀ(ମାଈକୁକୁର, କୁତୀ) |
| | | ଶୂନୀ | ଶୁନି (କୁତା) |
| ଅନ୍ଧୁଣି | ଅନ୍ଧୁଣୀ | **ବଚନସମ୍ବନ୍ଧୀୟ :** | |
| ଅଭିମାନୀନୀ | ଅଭିମାନିନୀ | ଅଧିକାଂଶ ଲୋକମାନେ | ଅଧିକାଂଶ ଲୋକ |
| ଓଜସ୍ୱୀନୀ | ଓଜସ୍ୱିନୀ | ଅନେକ ଲୋକମାନେ | ଅନେକ ଲୋକ |
| କତ୍ରୀ | କର୍ତ୍ତ୍ରୀ | ଗୋଟିଏ ବିରାଡ଼ିଟିଏ | ବିରାଡ଼ିଟିଏ, ଗୋଟିଏ ବିରାଡ଼ି |
| କାଙ୍ଗାଳୀ | କାଙ୍ଗାଳୁଣୀ | | |
| କାଳୀକା | କାଳିକା | ଜନତାମାନଙ୍କର | ଜନତାର |
| କୁମାରୀକା | କୁମାରିକା | ପ୍ରତ୍ୟେକ ଶ୍ରମିକମାନେ | ପ୍ରତ୍ୟେକ ଶ୍ରମିକ |
| କୃପଣୀ | କୃପଣା | ସବୁପିଲାମାନେ | ସବୁପିଲା, ପିଲାଯାକ |
| ଗରିୟସି | ଗରୀୟସୀ | ସମସ୍ତ ଭାରତୀୟମାନେ | ସମସ୍ତ ଭାରତୀୟ |
| ଗୁଣବତି | ଗୁଣବତୀ | **ବିଶେଷ୍ୟ-ବିଶେଷଣ ସମ୍ବନ୍ଧୀୟ :** | |
| ଚଣ୍ଡାଳି | ଚଣ୍ଡାଳୀ | ଅଧିତ | ଅଧୀତ |
| ଢାଡ଼ି | ଢାଡ଼ୀ | ଆଧିକ୍ୟତା | ଅଧିକତା, ଆଧିକ୍ୟ |
| ତନ୍ତୀଆଣୀ | ତନ୍ତିଆଣୀ | ଉତ୍କର୍ଷତା | ଉତ୍କର୍ଷ, ଉତ୍କୃଷ୍ଟତା(ଶ୍ରେଷ୍ଠତା) |
| ଦୁଃଖୀନୀ | ଦୁଃଖିନୀ | ଐକ୍ୟତା | ଐକ୍ୟ, ଏକତା |
| ଧନଶାଳୀନୀ | ଧନଶାଳିନୀ | କାର୍ପଣ୍ୟତା | କାର୍ପଣ୍ୟ, କୃପଣତା |
| ବାଗ୍ମୀନୀ | ବାଗ୍ମିନୀ | ଚାପଲ୍ୟତା | ଚାପଲ୍ୟ, ଚପଳତା |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ବୋହୂ | ବୋହୂ | ଦାର୍ଢ୍ୟତା | ଦାର୍ଢ୍ୟ, ଦୃଢ଼ତା |
| ଭାଣୀଜୀ | ଭାଣିଜୀ | ଦାରିଦ୍ରତା | ଦାରିଦ୍ର, ଦରିଦ୍ରତା |
| ମନସ୍ୱୀନୀ | ମନସ୍ୱିନୀ | ଦାରିଦ୍ର୍ୟତା | ଦରିଦ୍ରତା, ଦାରିଦ୍ର୍ୟ |
| ପାଟବତା | ପଟୁତା, ପାଟବ | ସୁସମା | ସୁଷମା |
| ପୂଜ୍ୟାସ୍ପଦ | ପୂଜାସ୍ପଦ, ପୂଜ୍ୟ | ସର୍ବାଙ୍ଗୀନ | ସର୍ବାଙ୍ଗୀଣ(ସକଳବିଷୟକ) |
| ପୌରୁଷତା | ପୌରୁଷ | **ବିଭିନ୍ନ ପ୍ରତ୍ୟୟସମ୍ବନ୍ଧୀୟ :** | |
| ବୈରତା | ବୈରିତା, ବୈର(ଶତ୍ରୁତା) | **ଅଶୁଦ୍ଧ** | **ଶୁଦ୍ଧ** |
| ବୈଶିଷ୍ଟ୍ୟତା | ବିଶିଷ୍ଟତା, ବୈଶିଷ୍ଟ୍ୟ | ଅନ୍ତର୍ଜାତିୟ | ଅନ୍ତର୍ଜାତୀୟ |
| ସୌନ୍ଦର୍ଯ୍ୟତା | ସୌନ୍ଦର୍ଯ୍ୟ, ସୁନ୍ଦରତା | ଅନ୍ଧିଭୂତ | ଅନ୍ଧୀଭୂତ |
| ସଂକ୍ଷିପ୍ତରେ | ସଂକ୍ଷେପରେ | ଅନୁଗୃହିତ | ଅନୁଗୃହୀତ |
| **ଣତ୍ୱବିଧି-ଷତ୍ୱବିଧି ସମ୍ବନ୍ଧୀୟ :** | | ଆନିତ | ଆନୀତ |
| ଅପରାହ୍ନ | ଅପରାହ୍ଣ | ଆବଶ୍ୟକୀୟ | ଆବଶ୍ୟକ |
| ପୂର୍ବାହ୍ନ | ପୂର୍ବାହ୍ଣ | ଆଭ୍ୟନ୍ତରିଣ | ଆଭ୍ୟନ୍ତରୀଣ |
| ମଧ୍ୟାହ୍ଣ | ମଧ୍ୟାହ୍ନ | ଆୟୁଷ୍ୱାନ୍ | ଆୟୁଷ୍ମାନ୍ |
| କୃର୍ଷ୍ଣ | କୃଷ୍ଣ | ଆହ୍ନୀକ | ଆହ୍ନିକ |
| ବିଷ୍ଣୁ | ବିଷ୍ଣୁ | ଆତ୍ମିୟ | ଆତ୍ମୀୟ |
| ପୂର୍ନ୍ନ | ପୂର୍ଣ୍ଣ | ଏକତ୍ରିତ | ଏକତ୍ର |
| ସ୍ୱର୍ନ୍ନ | ସ୍ୱର୍ଣ୍ଣ | ଉଜ୍ଜ୍ୱଳମୟ | ଔଜ୍ଜ୍ୱଲ୍ୟମୟ/ଉଜ୍ଜ୍ୱଳ |
| ଗନ୍ୟ | ଗଣ୍ୟ | କାୟୀକ | କାୟିକ |
| ଲାବନ୍ୟ | ଲାବଣ୍ୟ | କୁଳିନ | କୁଳୀନ |
| ଅଭିଳାସ | ଅଭିଳାଷ | ଜାତିୟ | ଜାତୀୟ |
| ଅଭିସେକ | ଅଭିଷେକ | ଜ୍ଞାନି | ଜ୍ଞାନୀ |
| ଆନୁସଙ୍ଗିକ | ଆନୁଷଙ୍ଗିକ | ତତ୍କାଳୀକ | ତତ୍କାଳିକ, ତାତ୍କାଳିକ |
| ଧୂଳିଷାତ୍ | ଧୂଳିସାତ୍ | ତତ୍କାଳିନ | ତତ୍କାଳୀନ |
| ନମଷ୍କାର | ନମସ୍କାର | ଦାଶରଥୀ | ଦାଶରଥି |
| ନିସେବନ | ନିଷେବଣ(ପରିଚର୍ଯ୍ୟା) | ଦୁଃଖି | ଦୁଃଖୀ |
| ପରଷ୍ପର | ପରସ୍ପର | ଦ୍ରୋଣି | ଦ୍ରୌଣି (ଦ୍ରୋଣପୁତ୍ର) |
| ପରିଷ୍କାର | ପରିଷ୍କାର | ନବିନ | ନବୀନ |
| ପୁରଷ୍କାର | ପୁରସ୍କାର | ପକ୍ଷି | ପକ୍ଷୀ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ବିଷର୍ଜନ | ବିସର୍ଜନ | ପାବିନୀ | ପାବନୀ |
| ଭୂମିଷ୍ଟ | ଭୂମିଷ୍ଠ | ବ୍ୟବହାରିକ | ବ୍ୟାବହାରିକ |
| ଭାଷ୍କର | ଭାସ୍କର | ଭୌଗଳିକ | ଭୌଗୋଳିକ |
| ଭ୍ରାତ୍ରୁବିବାଦ | ଭ୍ରାତୃବିବାଦ | ପତିତପାବିନୀ | ପତିତପାବନୀ |
| ଯାବତିୟ | ଯାବତୀୟ | ଅନ୍ତେଷ୍ଟି | ଅନ୍ତ୍ୟେଷ୍ଟି |
| ସର୍ବଜନିନ | ସର୍ବଜନୀନ | ଅନ୍ୱେସଣ | ଅନ୍ୱେଷଣ |
| ସାର୍ବଜନିନ | ସାର୍ବଜନୀନ | ଅନୈକ | ଅନୈକ୍ୟ |
| ସାର୍ବକାଳୀକ | ସାର୍ବକାଳିକ | ଅପଦସ୍ତ | ଅପଦସ୍ଥ |
| ସାତ୍ୱୀକ | ସାତ୍ୱିକ, ସାତ୍ତ୍ୱିକ | ଅପରାଜୀତା | ଅପରାଜିତା |
| **ବିବିଧ :** | | ଅପୁତ୍ରିକ | ଅପୁତ୍ରକ |
| ଅକର୍ମନ୍ୟ | ଅକର୍ମଣ୍ୟ | ଅପ୍‌ସରୀ | ଅପ୍‌ସରା |
| ଅକାଳକୁଶ୍ମାଣ୍ଡ | ଅକାଳକୁଷ୍ମାଣ୍ଡ | ଅବସ୍ତା | ଅବସ୍ଥା |
| ଅକୃର | ଅକ୍ରୂର | ଅବିନେଶ୍ୱର | ଅବିନଶ୍ୱର |
| ଅଙ୍ଗିକାର | ଅଙ୍ଗୀକାର | ଅବିଭାବକ | ଅଭିଭାବକ |
| ଅଗେଁୟ | ଅଜ୍ଞେୟ | ଅଭଡ଼ା | ଅବଢ଼ା |
| ଅଜାଣିତ | ଅଜାଣତ | ଅଭିଆଡ଼ି | ଅଭିଆଡ଼ୀ |
| ଅଜୀର୍ନ୍ନ | ଅଜୀର୍ଣ୍ଣ | ଅଭିନେତାଗଣ | ଅଭିନେତୃଗଣ |
| ଅଞ୍ଜଳୀ | ଅଞ୍ଜଳି | ଅଭିସାପ | ଅଭିଶାପ |
| ଅଧର୍ଯ୍ୟ | ଅଧୈର୍ଯ୍ୟ | ଅଭିସିକ୍ତ | ଅଭିଷିକ୍ତ |
| ଅଧକ୍ଷ | ଅଧ୍ୟକ୍ଷ | ଅଭୁଦୟ | ଅଭ୍ୟୁଦୟ |
| ଅଧିନ | ଅଧୀନ | ଅଭୂତ | ଅଦ୍ଭୁତ |
| ଅଧିନୀ | ଅଧୀନା | ଅଭ୍ୟସ୍ଥ | ଅଭ୍ୟସ୍ତ |
| ଅଧୋପତନ | ଅଧଃପତନ | ଅମୀୟ | ଅମିୟ |
| ଅନାଥିନୀ | ଅନାଥା | ଅମ୍ରୁତ, ଅମୃତ | ଅମୃତ |
| ଅନାସ୍ତାପ୍ରସ୍ଥାବ | ଅନାସ୍ଥାପ୍ରସ୍ତାବ | ଅରଖିତ | ଅରକ୍ଷିତ |
| ଅନାବଶ୍ୟକୀୟ | ଅନାବଶ୍ୟକ | ଅଣ୍ଣ | ଅର୍ଣ୍ଣ |
| ଅନାୟସ | ଅନାୟାସ | ଅନ୍ନବ | ଅର୍ଣ୍ଣବ |
| ଅନ୍ୟାନ୍ୟମାନେ | ଅନ୍ୟମାନେ | ଅର୍ନ୍ନ | ଅନ୍ନ |
| ଅନିର୍ବାର୍ଯ୍ୟ | ଅନିବାର୍ଯ୍ୟ | ଅର୍ଣ୍ଣପୂର୍ଣ୍ଣା | ଅନ୍ନପୂର୍ଣ୍ଣା |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଅନୁଚିତ୍ | ଅନୁଚିତ | ଅର୍ଦ୍ଧାଙ୍ଗିନୀ | ଅର୍ଦ୍ଧାଙ୍ଗୀ |
| ଅନୁଦିତ | ଅନୂଦିତ | ଅଶିଳ | ଅଶୀଳ |
| ଅନୁଶରଣ | ଅନୁସରଣ | ଅଶ୍ଲିଳ | ଅଶ୍ଲୀଳ |
| ଅନ୍ତସତ୍ୱା | ଅନ୍ତଃସତ୍ତ୍ୱା | ଅଷ୍ଟବକ୍ର | ଅଷ୍ଟାବକ୍ର |
| ଅସ୍ତମାନ | ଅସ୍ତମନ(ଅସ୍ତାଚଳ ଗମନ) | ଉଜଳ | ଉଜ୍ଜଳ(ଉତ୍+ଜଳ) |
| ଆକଣ୍ଠପର୍ଯ୍ୟନ୍ତ | ଆକଣ୍ଠ, କଣ୍ଠପର୍ଯ୍ୟନ୍ତ | ଉଛବ | ଉତ୍ସବ |
| ଆକାଂକ୍ଷା | ଆକାଙ୍‌କ୍ଷା, ଆକାଂକ୍ଷା | ଉଣା | ଊଣା |
| ଆଜନ୍ମରୁ | ଆଜନ୍ମ, ଜନ୍ମରୁ | ଉତ୍ୟକ୍ତ | ଉତ୍ତ୍ୟକ୍ତ |
| ଆତିଶଯ୍ୟତା | ଆତିଶଯ୍ୟ | ଉତୀର୍ଣ୍ଣ | ଉତ୍ତୀର୍ଣ୍ଣ |
| ଆନୁକୁଲ୍ୟ | ଆନୁକୂଲ୍ୟ | ଉତୁଙ୍ଗ | ଉତ୍ତୁଙ୍ଗ |
| ଆବଶ୍ୟକୀୟତା | ଆବଶ୍ୟକତା | ଉତାପ | ଉତ୍ତାପ |
| ଆବାଳବୃଦ୍ଧବନିତାଗଣ | ଆବାଳବୃଦ୍ଧବନିତା | ଉତେଜିତ | ଉତ୍ତେଜିତ |
| ଆବାହମାନ | ଆବହମାନ | ଉତୋଳନ | ଉତ୍ତୋଳନ |
| ଆବିସ୍କାର | ଆବିଷ୍କାର | ଉତ୍ପାତ୍ | ଉତ୍ପାତ |
| ଆବୃତୀ | ଆବୃତି | ଉତ୍ସର୍ଗିତ | ଉତ୍ସୃଷ୍ଟ, ଉତ୍ସର୍ଗୀକୃତ |
| ଆବୃତ୍ତୀ | ଆବୃତ୍ତି | ଉଦ୍‌ଗୀରଣ | ଉଦ୍‌ଗିରଣ |
| ଆୟତ୍ତ କ୍ଷେତ୍ର | ଆୟତ କ୍ଷେତ୍ର | ଉଦ୍‌ବୃଦ୍ଧ | ଉଦ୍‌ବୁଦ୍ଧ |
| ଆରତୀ | ଆରତି | ଉଦେଶ୍ୟ | ଉଦ୍ଦେଶ୍ୟ |
| ଆରକ୍ତିମ | ଆରକ୍ତ, ରକ୍ତିମ | ଉର୍ନ୍ନୟନ | ଉନ୍ନୟନ |
| ଆଦ୍ରତା | ଆର୍ଦ୍ରତା | ଉନ୍ନିତ | ଉନ୍ନୀତ |
| ଆଶାଢ଼ | ଆଷାଢ଼ | ଉନ୍ମିଳନ | ଉନ୍ମୀଳନ |
| ଆଶୀଷ | ଆଶିଷ | ଉଦ୍ଧୃତ | ଉଦ୍ଧୃତ |
| ଆଶ୍ରୀବାଦ | ଆଶୀର୍ବାଦ | ଉପକାରୀତା | ଉପକାରିତା |
| ଆସ୍ତାନ | ଆସ୍ଥାନ | ଉପକୁଳ | ଉପକୂଳ |
| ଇତିବୃତ୍ତି | ଇତିବୃତ୍ତ | ଉପନିବେଶିକ | ଔପନିବେଶିକ |
| ଇତଃସ୍ତତ | ଇତସ୍ତତଃ | ଉପବିତ | ଉପବୀତ |
| ଇନ୍ଦ୍ରୀୟ | ଇନ୍ଦ୍ରିୟ | ଉପରିସ୍ତ | ଉପରିସ୍ଥ |
| ଇପ୍‌ସିତ | ଈପ୍‌ସିତ | ଉପଯୋଗୀତା | ଉପଯୋଗିତା |
| ଇୟତା | ଈୟତ୍ତା | ଉର୍ଦ୍ଧ୍ୱ | ଊର୍ଦ୍ଧ୍ୱ (ର୍ଦ୍ଧ୍ୱ) |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଇର୍ଷା | ଈର୍ଷା, ଈର୍ଷ୍ୟା | ଉର୍ମୀ | ଊର୍ମି |
| ଇଷତ୍ | ଈଷତ୍ | ଉର୍ମିଳା | ଊର୍ମିଳା |
| ଉକୁଣୀ | ଉକୁଣି | ଉଲ୍ଲଙ୍ଗ | ଉଲଙ୍ଗ |
| ଉଚିତ୍ | ଉଚିତ | ଉଲିଖିତ | ଉଲ୍ଲିଖିତ |
| ଉଶ୍ଚୃଙ୍ଖଳ | ଉଚ୍ଛୃଙ୍ଖଳ | କିମ୍ଭୁତକିମ୍ଭାକାର | କିମ୍ଭୂତକିମାକାର |
| ଉସୁନା | ଉଷୁନା | କିର୍ତ୍ତି | କୀର୍ତ୍ତି |
| ଉହ୍ୟ | ଊହ୍ୟ | କିଶୋରଚନ୍ଦ୍ରନନ | କିଶୋରଚନ୍ଦ୍ରାନନ୍ଦ |
| ଊରୁ | ଊରୁ | ଚମ୍ପୁ | ଚମ୍ପୂ |
| ଉସର | ଊଷର | କୀଟଦଂଷ୍ଟ | କୀଟଦଷ୍ଟ |
| ଋଣଗ୍ରସ୍ଥ | ଋଣଗ୍ରସ୍ତ | କୁଛିତ | କୁତ୍ସିତ |
| ଏକାକାଳିନତା | ଏକକାଳୀନତା | କୁରଙ୍ଗିନୀ | କୁରଙ୍ଗୀ |
| ଏକଛତ୍ର | ଏକଛତ୍ର | କୁଶଲବ | କୁଶୀଲବ |
| ଏକାକି | ଏକାକୀ | କୃତିଛାତ୍ର | କୃତୀଛାତ୍ର |
| ଏକତାତ୍ୱ | ଏକତା, ଏକତ୍ୱ | କୃତୀତ୍ୱ | କୃତିତ୍ୱ |
| ଏକିକରଣ | ଏକୀକରଣ | କୃତିବାସ | କୃତ୍ତିବାସ |
| ଏତଦ୍ୱାରା | ଏତଦ୍ଦ୍ୱାରା | କୃଷିବଳ | କୃଷୀବଳ |
| ଏବେବି ମଧ୍ୟ | ଏବେ ବି, ଏବେ ମଧ୍ୟ | କେତେଗୁଡ଼ାଏ | କେତେ, ଗୁଡ଼ାଏ |
| ଏମ୍ଭବିଧ | ଏବଂବିଧ | କେନ୍ଦ୍ରିକ | କୈନ୍ଦ୍ରିକ |
| ଐକ୍ୟତା | ଏକତା, ଐକ୍ୟ | କେବଳମାତ୍ର | କେବଳ, ମାତ୍ର |
| ଐକ୍ୟତାନ | ଐକତାନ | କୌତୂକ | କୌତୁକ |
| ଐକ୍ୟମତ୍ୟ | ଐକମତ୍ୟ | କୌତୁହଳ | କୌତୂହଳ |
| ଐତିହ | ଐତିହ୍ୟ | ଖଣିଜ | ଖନିଜ |
| ଐହ୍ୟିକ | ଐହିକ | ଖେଳାଳୀ | ଖେଳାଳି |
| ଐଶୋରିକ | ଐଶ୍ୱରିକ | ଗଣ୍ଡୁଷ | ଗଣ୍ଡୂଷ |
| ଓଜସ୍ୱି | ଓଜସ୍ୱୀ | ଗଡ଼ଡ଼ାଳିକା | ଗଡ୍ଡ଼ଳିକା |
| ଔଚିତ୍ୟତା | ଉଚିତତା, ଔଚିତ୍ୟ | ଗଣେଷ | ଗଣେଶ |
| କବିନୀ | କବୀ, ନାରୀକବି | ଗତ୍ୟାନ୍ତର | ଗତ୍ୟନ୍ତର |
| କଷ୍ଟପ୍ରଶ୍ନ | କଷ୍ଟକର ପ୍ରଶ୍ନ, କଠିନ ପ୍ରଶ୍ନ | ଗଦ୍‌ଗଦ୍ | ଗଦ୍‌ଗଦ |
| କାତ୍ୟାୟନୀ | କାତ୍ୟାୟିନୀ | ଗଦ୍ୟାଶଂ | ଗଦ୍ୟାଂଶ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| କାଳନ୍ଦୀ | କାଳିନ୍ଦୀ | ଗର୍ଧଭ | ଗର୍ଦ୍ଦଭ |
| କିଏ କହିପାରିବ ନାହିଁ | କେହି କହିପାରିବେ ନାହିଁ | ଗାମ୍ଭୀର୍ଯ୍ୟତା | ଗମ୍ଭୀରତା, ଗାମ୍ଭୀର୍ଯ୍ୟ |
| | | ଗାରିମା | ଗରିମା |
| କିମ୍ପା | କିପାଁ | ଗୁଣୀବୃନ୍ଦ | ଗୁଣିବୃନ୍ଦ |
| ଗୃହିତ | ଗୃହୀତ | ଜ୍ୟୋଛନା | ଜ୍ୟୋତ୍ସ୍ନା |
| ଗୋପିନୀ | ଗୋପୀ | ଜ୍ୟୋତୀରିନ୍ଦ୍ର | ଜ୍ୟୋତିରିନ୍ଦ୍ର |
| | | ଜ୍ୟୋତିରାଜି | ଜ୍ୟୋତୀରାଜି |
| ଗୋମେଷାଦି-ପଶୁସକଳ | ଗୋମେଷାଦିପଶୁ | ଜୌତୁକ | ଯୌତୁକ |
| | | ଟିପଣି | ଟିପ୍ପଣୀ, ଟିପ୍ପନୀ |
| ଗୋଲକବିହାରୀ | ଗୋଲୋକବିହାରୀ | ତଥାପି ସୁଦ୍ଧା | ତେବେସୁଦ୍ଧା |
| ଗୌରବଜ୍ଜ୍ୱଳ | ଗୌରବୋଜ୍ଜ୍ୱଳ | ତଦାନିନ୍ତନ | ତଦାନୀନ୍ତନ |
| ଘଟଣା | ଘଟନା | ତଦ୍ରୃପ | ତଦ୍ରୂପ |
| ଘନିଷ୍ଟ | ଘନିଷ୍ଠ | ତଦ୍ୱାରା | ତଦ୍ଦ୍ୱାରା |
| ଘୁର୍ଣ୍ଣନ | ଘୂର୍ଣ୍ଣନ | ତୀର୍ଯ୍ୟକ୍ | ତିର୍ଯ୍ୟକ |
| ଚତୁରତାପଣ | ଚତୁରପଣ, | ତୁଳି, ତୁଳୀ | ତୂଳି, ତୂଳୀ |
| | ଚତୁରତା | ତୃଟି | ତ୍ରୁଟି |
| ଚତୁର୍ପାଶ୍ୱ | ଚତୁଃପାର୍ଶ୍ୱ, ଚତୁଷ୍ପାର୍ଶ୍ୱ | ତୃପ୍ତୀ | ତୃପ୍ତି |
| ଚନ୍ଦ୍ରବଦନୀ | ଚନ୍ଦ୍ରବଦନା | ତେଜ୍ୟ, ତ୍ୟଜ୍ୟ | ତ୍ୟାଜ୍ୟ |
| ଚକ୍ଷୁଲଜ୍ଜା | ଚକ୍ଷୁର୍ଲଜ୍ଜା | ତ୍ରିଭୂଜ | ତ୍ରିଭୁଜ |
| ଚକ୍ଷୁଶ୍ରବା | ଚକ୍ଷୁଃଶ୍ରବା | ତ୍ରେତୟା | ତ୍ରେତା |
| ଚାକଚିକ୍ୟ | ଚାକଚକ୍ୟ | ତ୍ରୈବାର୍ଷିକ | ତ୍ରିବାର୍ଷିକ |
| ଚାକିରୀ | ଚାକିରି | ଦାନଶିଳ | ଦାନଶୀଳ |
| ଚାପଲ୍ୟତା | ଚପଳତା, ଚାପଲ୍ୟ | ଦିଗାଙ୍ଗନା | ଦିଗଙ୍ଗନା |
| ଛନ୍ଦବଦ୍ଧ | ଛନ୍ଦୋବଦ୍ଧ | ଦିପ୍ତୀ | ଦୀପ୍ତି |
| ଛିନ୍ନ | ଛିନ୍ନ | ଦିଲ୍ଲୀପ | ଦିଲୀପ |
| ଜଗତାନନ୍ଦ | ଜଗଦାନନ୍ଦ | ଦୁକୂଳ | ଦୁକୂଳ |
| ଜଗତ୍ର | ଜଗତ୍ | ଦୁଖି | ଦୁଃଖୀ |
| ଜଳାନ୍ତକ | ଜଳାତଙ୍କ | ଦୁନିଆଁ | ଦୁନିଆ |
| ଜରୁରୀକାଳୀନ | ଜରୁରିକାଳୀନ | ଦୁଶାସନ | ଦୁଃଶାସନ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଜାକଯମକ | ଜାକଜମକ | ଦୂରନ୍ତ | ଦୁରନ୍ତ |
| ଜାତ୍ୟାଭିମାନୀ | ଜାତ୍ୟଭିମାନୀ | ଦୂରାଭିଳାଷ | ଦୂରଭିଳାଷ |
| ଜାଜ୍ୱଲ୍ୟମାନ | ଜାଜ୍ଜ୍ୱଲ୍ୟମାନ | ଦୂରାଭ୍ୟାସ | ଦୂରଭ୍ୟାସ |
| ଜୀମୁତ | ଜୀମୂତ | ଦୂର୍ଗ | ଦୁର୍ଗ |
| ଜେଷ୍ଠ | ଜ୍ୟେଷ୍ଠ | ଦୂର୍ଗା | ଦୁର୍ଗା |
| ଦୁର୍ଘଟଣା | ଦୁର୍ଘଟନା | ନିର୍ଭିକ | ନିର୍ଭୀକ |
| ଦୁର୍ବା | ଦୂର୍ବା | ନିର୍ଲଜ | ନିର୍ଲଜ୍ଜ |
| ଦ୍ୱନ୍ଦ | ଦ୍ୱନ୍ଦ୍ୱ | ନିର୍ଲୋଭୀ | ନିର୍ଲୋଭ |
| ଦଂଷ୍ଟ | ଦଷ୍ଟ | ନୀଚ୍ଛ | ନୀଚ |
| ଧନୀକ | ଧନିକ | ନୀଳାଞ୍ଚଳ | ନୀଳାଚଳ |
| ଧର୍ମାତ୍ମାଗଣ | ଧର୍ମାତ୍ମଗଣ | ନୈରାଶ୍ୟତା | ନୈରାଶ୍ୟ, ନିରାଶତା |
| ଧର୍ଯ୍ୟ | ଧୈର୍ଯ୍ୟ | ନିଷ୍ପତି | ନିଷ୍ପତ୍ତି |
| ଧ୍ୱବର | ଧୀବର | ନିଷ୍ପ୍ରୟୋଜନୀୟ | ନିଷ୍ପ୍ରୟୋଜନ |
| ଧୂମ୍ରପାନ | ଧୂମପାନ | ନିଃସଙ୍ଗୀ | ନିଃସଙ୍ଗ |
| ଧୂଳିଷାତ୍ | ଧୂଳିସାତ୍ | ନିଃସ୍ୱାର୍ଥପର | ନିଃସ୍ୱାର୍ଥ |
| ଧ୍ରୁବ | ଧ୍ରୁବ | ପଣ୍ଡୁ | ପାଣ୍ଡୁ |
| ଧୃତରାଷ୍ଟ୍ରି | ଧାର୍ତ୍ତରାଷ୍ଟ୍ରି | ପତିତପାବିନୀ | ପତିତପାବନୀ |
| ଧ୍ୱନୀ | ଧ୍ୱନି | ପଦ୍ୟାଶଂ | ପଦ୍ୟାଂଶ |
| ନଅଣ୍ଡିଆ | ନିଅଣ୍ଡିଆ | ପରମେଷ୍ଠି | ପରମେଷ୍ଠୀ |
| ନର୍କ | ନରକ | ପରିତ୍ୟକ୍ୟ | ପରିତ୍ୟାଜ୍ୟ |
| ନାନାଦି | ନାନା | ପର୍ବାଣୀ | ପର୍ବାଣି |
| ନିମିଳନ | ନିମୀଳନ | ପର୍ଯ୍ୟବେସିତ | ପର୍ଯ୍ୟବସିତ |
| ନିରାପକ୍ଷ | ନିରପେକ୍ଷ | ପାଟବତା | ପଟୁତା, ପାଟବ |
| ନିରାପତା | ନିରାପତ୍ତା | ପାରଦର୍ଶୀତା | ପାରଦର୍ଶିତା |
| ନିରପରାଧୀ | ନିରପରାଧ | ପାରଂପାରିକ | ପାରଂପରିକ |
| ନିରହଙ୍କାରୀ | ନିରହଙ୍କାର | ପାରିଷଦ୍ | ପାରିଷଦ |
| ନିରିହ | ନିରୀହ | ପାଶୋରିବା | ପାସୋରିବା |
| ନିରିକ୍ଷା | ନିରୀକ୍ଷା | ପାଷାଣ୍ଡ | ପାଷଣ୍ଡ |
| ନିର୍ଦ୍ଦିଷ୍ଟ | ନିର୍ଦ୍ଦେଶ | ପିଡ଼ିତ | ପୀଡ଼ିତ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ନିରୂପମା | ନିରୁପମା | ପିତାପିତାମହ | ପିତୃପିତାମହ |
| ନିରୁତ୍ସାହିତ | ନିରୁତ୍ସାହ | ପୀତାମ୍ବରୀ | ପୀତାମ୍ବରା |
| ନିରୋଗୀ | ନୀରୋଗ | ପୁନ୍ୟ | ପୁଣ୍ୟ |
| ନିର୍ଦ୍ଦୋଷୀ | ନିର୍ଦ୍ଦୋଷ | ପୁଷ୍କରଣୀ | ପୁଷ୍କରିଣୀ |
| ନିର୍ଧନୀ | ନିର୍ଧନ | ପୌରହିତ୍ୟ | ପୌରୋହିତ୍ୟ |
| ପୂଜ୍ୟାସ୍ପଦ | ପୂଜାସ୍ପଦ, ପୂଜ୍ୟପାଦ | ବାହ୍ୟିକ | ବାହ୍ୟ |
| ପୂର୍ଣ୍ଣଛେଦ | ପୂର୍ଣ୍ଣଚ୍ଛେଦ | ବାହୁଲ୍ୟତା | ବାହୁଲ୍ୟ, ବହୁଳତା |
| ପୂର୍ତି | ପୂର୍ତ୍ତି | ବିକୀରଣ | ବିକିରଣ |
| ପୃଥକତ୍ୱ | ପୃଥକ୍‌ତ୍ୱ | ବିଥୀକା | ବୀଥିକା |
| ପୃଷ୍ଟିହୀନ | ପୁଷ୍ଟିହୀନ | ବିଧର୍ମି | ବିଧର୍ମା, ବିଧର୍ମୀ |
| ପ୍ରଚୂର | ପ୍ରଚୁର | ବିଧୁନ୍ତୁଦ | ବିଧୁନ୍ତୁଦ |
| ପ୍ରଜ୍ୱଳ | ପ୍ରଜ୍ୱଳ | ବିପଦଜନକ | ବିପଜ୍ଜନକ |
| ପ୍ରତିଚି | ପ୍ରତୀଚୀ | ବିପ୍‌ସା | ବୀପ୍‌ସା |
| ପ୍ରତିଦ୍ୱନ୍ଦୀ | ପ୍ରତିଦ୍ୱନ୍ଦ୍ୱୀ | ବିବିଧପ୍ରକାର | ବିବିଧ, ବିଭିନ୍ନପ୍ରକାର |
| ପ୍ରତିଯୋଗୀତା | ପ୍ରତିଯୋଗିତା | ବିବୃତ୍ତି | ବିବୃତି |
| ପ୍ରତିଶେଧକ | ପ୍ରତିଷେଧକ | ବିଭତ୍ସ | ବୀଭତ୍ସ |
| ପ୍ରତ୍ୟେହ | ପ୍ରତ୍ୟହ | ବିମ୍ବାଧରୀ | ବିମ୍ବାଧରା |
| ପ୍ରଫୁଲ୍ଲିତ | ପ୍ରଫୁଲ୍ଲ | ବିରୁଦ୍ଧରେ | ବିରୋଧରେ |
| ପ୍ରବଳପ୍ରତାପୀ | ପ୍ରବଳପ୍ରତାପ | ବିଶଦ୍ | ବିଶଦ |
| ପ୍ରମାଣ୍ୟ | ପ୍ରାମାଣ୍ୟ | ବିଶ୍ୱସ୍ୟ | ବିଶ୍ୱାସ୍ୟ |
| ପ୍ରାଣୀଗଣ | ପ୍ରାଣିଗଣ | ବିଶ୍ୱାସନୀୟ | ବିଶ୍ୱସନୀୟ |
| ପ୍ରାୟଶ୍ଚିତ | ପ୍ରାୟଶ୍ଚିତ୍ତ | ବିଷର୍ଣ୍ଣ | ବିଷଣ୍ଣ |
| ବଡ଼ିମାପଣ | ବଡ଼ପଣ, ବଡ଼ିମା | ବୁଦ୍ଧିମତା | ବୁଦ୍ଧିମତ୍ତା |
| ବୟଃଜ୍ୟେଷ୍ଠ | ବୟୋଜ୍ୟେଷ୍ଠ | ବୃଥାରେ | ବୃଥା |
| ବୟାକରଣିକ | ବୈୟାକରଣିକ | ବେବସାୟ | ବ୍ୟବସାୟ |
| ବର୍ଣ୍ଣିତବ୍ୟ | ବର୍ଣ୍ଣୟିତବ୍ୟ | ବେଷ୍ଟନୀ | ବେଷ୍ଟନୀ |
| ବଳତ୍କାର | ବଳାତ୍କାର | ବୈରତା | ବୈର, ବୈରିତା |
| ବଳିଷ୍ଟ | ବଳିଷ୍ଠ | ବୈଷମ୍ୟତା | ବୈଷମ୍ୟ, ବିଷମତା |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ବହୁତଗୁଡ଼ିଏ | ବହୁତ, ଗୁଡ଼ିଏ | ବ୍ୟାକରଣିକ | ବୈୟାକରଣିକ, |
| ବାଲୁଙ୍କେଶ୍ୱର | ବାଲୁକେଶ୍ୱର | | ବୈୟାକରଣ |
| ବଣିଜିକ/ବାଣିଜିକ | ବାଣିଜ୍ୟିକ | ବ୍ୟବସାୟିକ | ବ୍ୟାବସାୟିକ |
| ବାସ୍ତବିକ୍ | ବାସ୍ତବିକ | ବ୍ୟବହାରିକ | ବ୍ୟାବହାରିକ |
| ବାହାନ | ବାହନ | ବ୍ୟାପୀବା | ବ୍ୟାପିବା |
| ବଶମ୍ୱଦ | ବଶଂବଦ | | |
| ଭଗ୍ନୀ | ଭଗିନୀ | ମୟୁର | ମୟୂର |
| ଭଙ୍ଗୀମା | ଭଙ୍ଗିମା | ମଶାରୀ | ମଶାରି |
| ଭଙ୍ଗୀଳ | ଭଙ୍ଗିଳ | ମହତ୍ୱ | ମହତ୍ତ୍ୱ |
| ଭାଗିରଥି | ଭାଗୀରଥି | ମହାବଳୀ | ମହାବଳ |
| | (ଭଗୀରଥପୁତ୍ର) | ମହିମାମୟ | ମହିମମୟ(ମହିମାରେ ପୂର୍ଣ୍ଣ) |
| | ଭାଗୀରଥୀ(ଗଙ୍ଗା) | ମାର୍ଗଶୀର | ମାର୍ଗଶିର, ମାର୍ଗଶୀର୍ଷ |
| ଭାରତ୍ତୋଳନ | ଭାରୋତ୍ତୋଳନ | ମାତଙ୍ଗିନୀ | ମାତଙ୍ଗୀ |
| ଭିକାରୀ | ଭିକାରି, ଭିଖାରି | ମାନ୍ୟାସ୍ପଦ | ମାନାସ୍ପଦ |
| ଭୁସୁଡ଼ିବା | ଭୁଶୁଡ଼ିବା | ମାନ୍ୟାର୍ହ | ମାନାର୍ହ |
| ଭୂବନେଶ୍ୱର | ଭୁବନେଶ୍ୱର | ମାମୁଁ | ମାମୁ |
| ଭୂଲ୍ | ଭୁଲ୍, ଭୁଲ | ମାସନ୍ତ | ମାସାନ୍ତ |
| ଭୂଜ | ଭୁଜ | ମୁଖସ୍ତ | ମୁଖସ୍ଥ |
| ଭ୍ରାତାଗଣ | ଭ୍ରାତୃଗଣ | ମୁନିଆଁ | ମୁନିଆ |
| ମର୍କତ | ମରକତ | ମୁହୁର୍ମୁହୁ | ମୁହୁର୍ମୁହୁଃ |
| ମିଛେଇ | ମିଛେଇ | ମୃତ୍ୟୁଞ୍ଜୟୀ | ମୃତ୍ୟୁଞ୍ଜୟ |
| ମଦ୍ୟପୀ | ମଦ୍ୟପ | ମୃଗୁଣୀ | ମୃଗୀ |
| ମଧୁସୁଦନ | ମଧୁସୂଦନ | ଯଦିଓ | ଯଦ୍ୟପି |
| ମଧ୍ୟରାତ୍ରି | ମଧ୍ୟରାତ୍ର | ଯଦ୍ୱାରା | ଯଦ୍ଦ୍ୱାରା |
| ମନକାମନା | ମନସ୍କାମନା | ଯମ୍ନେଶ୍ୱର | ଯମେଶ୍ୱର |
| ମନଦୁଃଖ | ମନୋଦୁଃଖ | ଯାତାୟତ | ଯାତାୟାତ |
| ମନୋପୀଡ଼ା | ମନଃପୀଡ଼ା | ଯାନବାହାନ | ଯାନବାହନ |
| ମନବାଞ୍ଛା | ମନୋବାଞ୍ଛା | ଯୁଧ | ଯୁଦ୍ଧ |
| ମନମାଳିନ୍ୟ | ମନୋମାଳିନ୍ୟ | ଯୋଗୀଶ୍ରେଷ୍ଠ | ଯୋଗିଶ୍ରେଷ୍ଠ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ମନମୁଗ୍‌ଧକର | ମନୋମୋହକର, ମନୋମୁଗ୍‌ଧକର | ଯୋଗ୍ନୀ | ଯୋଗିନୀ |
| | | ଯୋଧା | ଯୋଦ୍ଧା |
| ମନ୍ତ୍ରୀମଣ୍ଡଳ | ମନ୍ତ୍ରିମଣ୍ଡଳ | ଯୋସା | ଯୋଷା |
| ମନରଞ୍ଜନ | ମନୋରଞ୍ଜନ | ରକ୍ଷ୍ୟ | ରକ୍ଷ |
| ମନୀଷୀଗଣ | ମନୀଷିଗଣ | ରଙ୍ଗୀନ | ରଙ୍ଗିନ |
| ମର୍ମନ୍ତୁତ | ମର୍ମନ୍ତୁଦ, ମର୍ମନ୍ତୁଦ | ରଥି | ରଥୀ |
| ମିନତୀ | ମିନତି | ଶ୍ୱଶ୍ରୁ | ଶ୍ୱଶ୍ରୂ (ଶାଶୂ) |
| ରମଣିରତ୍ନ | ରମଣୀରତ୍ନ | ଶଶ | ଶସ |
| ରାକ୍ଷାସ | ରାକ୍ଷସ | ଶସକ | ଶଶକ |
| ରାଗୀଣୀ | ରାଗିଣୀ | ଶାତବାର୍ଷିକୀ | ଶାତବର୍ଷିକୀ |
| ରାଜଛତ୍ର | ରାଜଛତ୍ର | ଶୀକାର | ଶିକାର |
| ରାଜସୁୟ | ରାଜସୂୟ | ସିକାରି | ଶିକାରୀ |
| ରାଶିକୃତ | ରାଶୀକୃତ | ଶିକ୍ଷୟତ୍ରୀ | ଶିକ୍ଷୟିତ୍ରୀ |
| ରିତିନିତି | ରୀତିନୀତି | ଶିରଛେଦ | ଶିରଶ୍ଛେଦ |
| ରୁଢ଼ି | ରୂଢ଼ି | ଶିଳ୍ପଜିବୀ | ଶିଳ୍ପଜୀବୀ |
| ରୂପାୟନ | ରୂପାୟଣ | ଶୁଶ୍ରୁସା | ଶୁଶ୍ରୂଷା |
| ରେଫ୍ | ରେଫ | ଶୃତଲିଖନ | ଶ୍ରୁତଲିଖନ |
| ରୋଗଗ୍ରସ୍ଥ | ରୋଗଗ୍ରସ୍ତ | ଶୋରିଷ | ସୋରିଷ |
| ଲଜ୍ଝ୍ୟା | ଲଜ୍ଜା, ଲଜ୍ୟା | ଶ୍ରଦ୍ଧାଞ୍ଜଳୀ | ଶ୍ରଦ୍ଧାଞ୍ଜଳି |
| ଲତୀକା | ଲତା, ଲତିକା | ଶ୍ରୀକୃର୍ଷ | ଶ୍ରୀକୃଷ୍ଣ |
| ଲବ୍‌ଧପ୍ରତିଷ୍ଠିତ | ଲବ୍‌ଧପ୍ରତିଷ୍ଠ | ଶ୍ରୋତାମଣ୍ଡଳୀ | ଶ୍ରୋତୃମଣ୍ଡଳୀ |
| ଲକ୍ଷ୍ମୀମନ୍ତ | ଲକ୍ଷ୍ମୀବନ୍ତ | ଶ୍ୱସ୍ତି | ସ୍ୱସ୍ତି |
| ଲାଘବତା | ଲଘୁତା, ଲାଘବ | ଷଠିଓସା | ଷଠୀଓଷା |
| ଲାବନ୍ୟ | ଲାବଣ୍ୟ | ଷଡ଼ରତୁ | ଷଡ୍‌ଋତୁ |
| ଲାଭଲେସ | ଲାଭଲେଶ | ଷଡ଼ଯନ୍ତ୍ର | ଷଡ୍‌ଯନ୍ତ୍ର |
| ଲୀପ୍‌ସା | ଲିପ୍‌ସା | ଷଡ଼ାଂଶ | ଷଡ୍‌ଂଶ |
| ଲୁଣି | ଲୁଣୀ | ଷଡ୍‌ାନନ | ଷଡ଼ାନନ |
| ସଂକଟାପର୍ଣ୍ଣ | ସଂକଟାପନ୍ନ | ଷଣ୍ମାତୁର | ଷାଣ୍ମାତୁର |
| ଶଙ୍ଖାରୀ | ଶଂଖାରି | ଷଷ୍ଠି | ଷଷ୍ଠୀ |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଶଂସୟ | ସଂଶୟ | ଷଷ୍ଠିପୂଜା | ଷଷ୍ଠୀପୂଜା |
| ଶତପଥି, ସତପଥି | ଶତପଥୀ | ସଂଜମ | ସଂଯମ |
| ଶତାବ୍ଦି | ଶତାବ୍ଦୀ | ସଂନ୍ଧ୍ୟା | ସଂଧ୍ୟା, ସନ୍ଧ୍ୟା |
| ଶତୃଘ୍ନ | ଶତ୍ରୁଘ୍ନ | ସଂସାରିକ | ସାଂସାରିକ |
| ଶଶୀକାନ୍ତ | ଶଶିକାନ୍ତ | ସିଂଘ | ସିଂହ |
| ଶଶୀଭୂଷଣ | ଶଶିଭୂଷଣ | ସିଂଚନ | ସେଚନ |
| ଶଶି | ଶଶୀ | ସକରୁଣ | କରୁଣ |
| ସତ୍ୱାଧିକାର | ସ୍ୱତ୍ୱାଧିକାର | ସାହାର୍ଯ୍ୟ | ସାହାଯ୍ୟ |
| ସତ୍ୱେ | ସତ୍ତ୍ୱେ | ସାହାସ | ସାହସ |
| ସଦାବେଳେ | ସଦା, ସବୁବେଳେ | ସାକ୍ଷୀଗୋପାଳ | ସାକ୍ଷିଗୋପାଳ |
| ସଧୀରେ | ଧୀରେ | ସିନ୍ଦୁର | ସିନ୍ଦୂର |
| ସନ୍ୟାସୀ | ସନ୍ନ୍ୟାସୀ | ସୀମାଞ୍ଚଳ | ସୀମାଚଳ |
| ସପରିବାରେ | ସପରିବାର | ସୁନାମଧନ୍ୟ | ସ୍ୱନାମଧନ୍ୟ |
| ସପ୍ତାହିକ | ସାପ୍ତାହିକ | ସୁଲକ୍ଷଣୀ | ସୁଲକ୍ଷଣା |
| ସବାନ୍ଧବେ | ସବାନ୍ଧବ | ସୁସୁପ୍ତି | ସୁଷୁପ୍ତି |
| ସବିନୟପୂର୍ବ | ସବିନୟ, ବିନୟପୂର୍ବକ | ସୃଜନ | ସର୍ଜନ |
| ସମତୁଲ୍ୟ | ସମତୁଲ, ସମ, ତୁଲ୍ୟ | ସେବକୀ | ସେବିକା |
| ସମରାଙ୍ଗନ | ସମରାଙ୍ଗଣ | ସୌଜନ୍ୟତା | ସୌଜନ୍ୟ, ସୁଜନତା |
| ସମାସ୍ୟା | ସମସ୍ୟା | ସୌମେନ୍ଦ୍ର | ସୌମ୍ୟେନ୍ଦ୍ର |
| ସମ୍ମାନୀୟ | ସମ୍ମାନନୀୟ | ସୌଷ୍ଠବତା | ସୁଷ୍ଠୁତା, ସୌଷ୍ଠବ |
| ସଂମ୍ଭ୍ରାନ୍ତଶାଳୀ | ସମ୍ଭ୍ରାନ୍ତ, ସମ୍ଭ୍ରମଶାଳୀ | ସ୍ଥାୟୀତ୍ୱ | ସ୍ଥାୟିତ୍ୱ |
| ସରିସୃପ | ସରୀସୃପ | ସ୍ୱର୍ଗତଃ | ସ୍ୱର୍ଗତ |
| ସସନ୍ୟ | ସସୈନ୍ୟ | ସ୍ୱଛ | ସ୍ୱଚ୍ଛ |
| ସକ୍ଷମ | କ୍ଷମ | ସତ୍ୱ | ସ୍ୱତ୍ୱ |
| ସାଙ୍ଗପାଙ୍ଗ | ସାଙ୍ଗୋପାଙ୍ଗ | ସ୍ୱଭାବିକ | ସ୍ୱାଭାବିକ |
| ସାଧାତୀତ | ସାଧନାତୀତ | ସ୍ୱାଚ୍ଛନ୍ଦ୍ୟତା | ସ୍ୱଚ୍ଛନ୍ଦତା, ସ୍ୱାଚ୍ଛନ୍ଦ୍ୟ |
| ସାବଧାନ ସହିତ | ସାବଧାନତାର ସହିତ, | ସ୍ୱାଦିଷ୍ଠ | ସ୍ୱାଦିଷ୍ଟ |
| | ସାବଧାନ, | ସ୍ୱାଧିନ | ସ୍ୱାଧୀନ |
| | ଅବଧାନର ସହିତ | ସ୍ୱାଧୀନୋତ୍ତର | ସ୍ୱାଧୀନତୋତ୍ତର |

| ଅଶୁଦ୍ଧ | ଶୁଦ୍ଧ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ସାମଗ୍ରିକ | ସମଗ୍ର | ହଂସଗମନୀ | ହଂସଗମନା |
| ସାମନ୍ତରିକ | ସାମାନ୍ତରିକ | ହସ୍ତୀଯୂଥ | ହସ୍ତିଯୂଥ |
| ସାରଥୀ | ସାରଥି | ହାର୍ଦ୍ଧିକ | ହାର୍ଦ୍ଦିକ |
| ସାରାଜୀବନଯାକ | ସାରାଜୀବନ, ଜୀବନଯାକ | ହାନୀ | ହାନି |
| | | ହାଲ୍‌କା | ହାଲୁକା |
| ସାମ୍ରାଜ୍ଞୀ | ସମ୍ରାଜୀ, ସଂରାଜ୍ଞୀ, ସମ୍ରାଜ୍ଞୀ | ହାହତାଶ | ହାହୁତାଶ |
| ସାଶ୍ରୁଳ | ସାଶ୍ରୁ, ଅଶ୍ରୁଳ | ହିତକାଂକ୍ଷୀ | ହିତାକାଂକ୍ଷୀ |
| ହିନ୍ଦୁସ୍ତାନ | ହିନ୍ଦୁସ୍ଥାନ | କ୍ଷଣିକପାଇଁ | କ୍ଷଣକପାଇଁ |
| ହିନ | ହୀନ | କ୍ଷ୍ୟାତି | ଖ୍ୟାତି |
| ହୁଏତ | ଯଦିହୁଏ, ବୋଧହୁଏ, ସମ୍ଭବତଃ | କ୍ଷିଣ | କ୍ଷୀଣ |
| | | କ୍ଷିତୀ | କ୍ଷିତି |
| ହୃଷ୍ଟପୃଷ୍ଟ | ହୃଷ୍ଟପୁଷ୍ଟ | କ୍ଷିର | କ୍ଷୀର |
| ହୃଷିକେଶ | ହୃଷୀକେଶ | ଖ୍ରୀଷ୍ଟିୟ | ଖ୍ରୀଷ୍ଟୀୟ |
| ହ୍ରସତ୍ୱ | ହ୍ରସ୍ୱତ୍ୱ, ହ୍ରସ୍ୱତା | କ୍ଷୁର୍ଣ୍ଣ | କ୍ଷୁଣ୍ଣ |

## ଏକଶବ୍ଦର ବିଭିନ୍ନ ବର୍ଣ୍ଣବିନ୍ୟାସ

ଏହିପରି କେତେକ ଶବ୍ଦ ଅଛି, ସେଗୁଡ଼ିକର ଅର୍ଥ ଏକ; କିନ୍ତୁ ରୂପ ବା ବର୍ଣ୍ଣବିନ୍ୟାସ ଭିନ୍ନ ପ୍ରକାରର । ବର୍ଣ୍ଣ-ଶୁଦ୍ଧି-ଅଶୁଦ୍ଧିଜ୍ଞାନ ଓ ବନାନ-ବିଚାରପାଇଁ ସେଗୁଡ଼ିକର ଆବଶ୍ୟକତା ଅଛି । ନିର୍ବାଚିତ କେତେକ ଶବ୍ଦର ସଂଗ୍ରହ ନିମ୍ନରେ ପ୍ରଦତ୍ତ ହେଲା–

| ଶବ୍ଦ | ଅର୍ଥ |
|---|---|
| ଅଟବି, ଅଟବୀ | ବନ |
| ଅନ୍ତରିକ୍ଷ, ଅନ୍ତରୀକ୍ଷ | ଆକାଶ |
| ଅବନି, ଅବନୀ | ପୃଥିବୀ |
| ଅବନ୍ତି, ଅବନ୍ତୀ | ପ୍ରାଚୀନ ମାଳବ |
| ଅବିମୃଶ୍ୟକାରୀ, ଅବିମୃଷ୍ୟକାରୀ | ଅଦୂରଦର୍ଶୀ |
| ଅମାବସ୍ୟା, ଅମାବାସ୍ୟା | ଉଆଁସ |
| ଅୟସ୍, ଅୟଃ | ଲୁହା |
| ଅରଣି, ଅରଣୀ | ଅଗ୍ନିମନ୍ଥନ କାଷ୍ଠ, ଝକମକି ପଥର |
| ଅରିଂଦମ, ଅରିନ୍ଦମ | ଶତ୍ରୁଦମନକାରୀ |

| ଶବ୍ଦ | ଅର୍ଥ |
|---|---|
| ଅର୍ଣ୍ଣ, ଅର୍ଣ୍ଣଃ | ଜଳ |
| ଅଳାଇଚ, ଅଳେଇଚ | ଏଳା, ସୁଗନ୍ଧ ମସଲାବିଶେଷ |
| ଆବଳି, ଆବଳୀ | ସମୂହ, ଶ୍ରେଣୀ |
| ଆୟୁ, ଆୟୁଃ | ଜୀବନକାଳ |
| ଆଳି, ଆଳୀ | ସଖୀ, ଧାଡ଼ି |
| ଇନ୍ଦି, ଇନ୍ଦୀ | ଲକ୍ଷ୍ମୀ |
| ଇନ୍ଦିବର, ଇନ୍ଦୀବର | ନୀଳପଦ୍ମ |
| ଇନ୍ଦୁର, ଇନ୍ଦୂର | ମୂଷା |
| ଈର୍ଷା, ଈର୍ଷ୍ୟା | ଅସହିଷ୍ଣୁତା |
| ଈର୍ଷା, ଈର୍ଷ୍ୟା | ଈର୍ଷାକାରୀ |
| ଉଡୁପ, ଉଡୂପ | ଚନ୍ଦ୍ର, ଭେଳା |
| ଉଦ୍ଭିଦ, ଉଦ୍ଭିଦ୍ | ମାଟି ଭେଦ କରି ଉଠୁଥିବା ବୃକ୍ଷ, ଲତା, ଗୁଳ୍ମ ପ୍ରଭୃତି |
| ଉଦ୍‌ଯାପନ, ଉଦ୍ୟାପନ | ସମାପନ |
| ଉଦ୍‌ଯୋଗ, ଉଦ୍ୟୋଗ | ଉଦ୍ୟମ |
| ଉଧଃ, ଉଧଃ | ପହ୍ନା |
| ଉଭଚର, ଉଭୟଚର | ଜଳସ୍ଥଳରେ ବିଚରଣକାରୀ |
| ଉରଗ, ଉରଙ୍ଗ, ଉରଙ୍ଗମ | ସାପ |
| ଉର୍ଣ୍ଣନାଭ, ଊର୍ଣ୍ଣନାଭ | ବୁଢ଼ିଆଣୀ |
| ଉର୍ବର, ଊର୍ବର | ଶସ୍ୟାଦି ବୃଦ୍ଧିରେ ଶକ୍ତିଯୁକ୍ତ (ମାଟି) |
| | ଯଥେଷ୍ଟ ବୁଦ୍ଧିସମ୍ପନ୍ନ (ମସ୍ତିଷ୍କ) |
| ଉର୍ବଶୀ, ଊର୍ବଶୀ | ଇନ୍ଦ୍ରସଭାର ପ୍ରସିଦ୍ଧ ଅପ୍‌ସରା |
| ଉଲୁକ, ଉଲୂକ | ପେଚା |
| ଉଶୀର, ଉଷୀର | ବେଣାମୂଳ |
| ଉଷ୍ଣିଶ, ଉଷ୍ଣୀଶ | ପଗଡ଼ି |
| କଟି, କଟୀ | ଅଣ୍ଟା |
| କଣ୍ଡୁ, କଣ୍ଡୂ | କୁଣ୍ଡିଆ, ଗଲୁ |
| କନ୍ଦୁକ, କନ୍ଦୂକ | ପେଣ୍ଡୁ |
| କପାଟ, କବାଟ | ଦରଜାର ଆବରଣ ପଟା |
| କରୋଟି, କରୋଟୀ | ମୁଣ୍ଡର ଖପୁରି |
| କଲ୍‌କି, କଲ୍‌କୀ | ବିଷ୍ଣୁଙ୍କ ଦଶମ ଅବତାର |

| ଶବ୍ଦ | ଅର୍ଥ |
|---|---|
| କଳଶ, କଳସ | ଘଟ |
| କଳଶୀ, କଳସୀ | କ୍ଷୁଦ୍ର ଘଟ |
| କାଳିୟ, କାଳୀୟ | ନାଗବିଶେଷ |
| କାଶି, କାଶୀ | ବନାରସ |
| କିଶଳୟ, କିସଳୟ | ନବପଲ୍ଲବ |
| କୁଟିର, କୁଟୀର | କୁଡ଼ିଆ |
| କୁତା, କୁତ୍ତା | ଅଣ୍ଡିରା କୁକୁର |
| କୁଳିର, କୁଳୀର | କଙ୍କଡ଼ା |
| କୁତୁ, କୁତୂ | କୌତୁକ |
| କୁନ୍ତି, କୁନ୍ତୀ | ପାଣ୍ଡୁଙ୍କ ପତ୍ନୀ, ପାଣ୍ଡବମାନଙ୍କ ଜନନୀ |
| କୁଳିଶ, କୁଳୀଶ | ବଜ୍ର |
| କୁଶୀଦ, କୁଷୀଦ, କୁସୀଦ | ସୁଧ |
| କୁଟିର, କୁଟୀର | କୁଡ଼ିଆ |
| କେଶରୀ, କେସରୀ | ସିଂହ |
| କୋଟି, କୋଟୀ | ସଂଖ୍ୟାବିଶେଷ, ଖଡ୍‌ଗର ଅଗ୍ରଭାଗ |
| କୋଶ, କୋଷ | ଭଣ୍ଡାର |
| କୌଶେୟ, କୌଷେୟ | ରେଶମୀ ବସ୍ତ୍ର |
| ଖାତର, ଖାତିର, ଖାତିରି | ମର୍ଯ୍ୟାଦା |
| କ୍ଷୁର, ଖୁର | କ୍ଷୌରକାର୍ଯ୍ୟର ଛୁରିକା |
| କ୍ଷୌଣି, କ୍ଷୌଣୀ | ପୃଥିବୀ |
| ଗାଣ୍ଡିବ, ଗାଣ୍ଡୀବ | ଅର୍ଜୁନଙ୍କ ଧନୁ |
| ଗାୟତ୍ରୀ, ଗାୟତ୍ତ୍ରୀ | ବେଦମାତା |
| ଗିରିଶ, ଗିରୀଶ | ଶିବ |
| ଘୁଟି, ଘୁଟୀ | ଗୁଲ୍‌ଫ |
| ଘେରଉ, ଘେରାଉ | ଅବରୋଧ |
| ଚଞ୍ଚୁ, ଚଞ୍ଚୂ | ପକ୍ଷୀର ଥଣ୍ଟ |
| ଚଣ୍ଡାଳ, ଚାଣ୍ଡାଳ | ନିର୍ଦ୍ଦୟଲୋକ, ଜାତିବିଶେଷ |
| ଚୁଚୁକ, ଚୂଚୁକ | ସ୍ତନାଗ୍ର, ଭୁଣ୍ଡି |
| ଚିଲ୍ଲି, ଚିଲ୍ଲୀ | ଭ୍ରୂଲତା |
| ଚୁଲ୍ଲା, ଚୁଲ୍ଲି, ଚୁଲ୍ଲୀ | ଚୁଲି |

| ଶବ୍ଦ | ଅର୍ଥ |
|---|---|
| ଛୁରି, ଛୁରୀ | ଛୁରିକା |
| ଜମ୍ବୁକ, ଜମ୍ବୂକ | ଶୃଗାଳ |
| ଜକ୍ଷ୍ମା, ଯକ୍ଷ୍ମା | କ୍ଷୟକାଶ ରୋଗ |
| ଜରୁରି, ଜରୋରୀ | ଆଶୁକରଣୀୟ |
| ତରି, ତରୀ | ନୌକା |
| ଝିଲ୍ଲି, ଝିଲ୍ଲୀ | ଝିଙ୍କାରି ପୋକ |
| ତରଣି, ତରଣୀ | ନୌକା |
| ତାମ୍ବୁଲୀ, ତାମ୍ବୂଲୀ | ପାନରା |
| ତୁଳି, ତୂଳୀ, ତଳିକା | ବର୍ତ୍ତିକା, ବଳିତା |
| ତ୍ରୁଟି, ତ୍ରୁଟୀ | ଦୋଷ |
| ଥାପଡ଼, ଥାପଡ଼ା | ଚାପଡ଼ |
| ଦଦ୍ରୁ, ଦଦ୍ରୂ | ଯାଦୁରୋଗ |
| ଦମ୍ପତି, ଦମ୍ପତୀ | ସ୍ୱାମୀ ଓ ସ୍ତ୍ରୀ |
| ଦର୍ବି, ଦର୍ବୀ | ଚାମଚ, ଚଟୁ |
| ଦୁଃସ୍ଥ, ଦୁସ୍ଥ | ଦୁରବସ୍ଥାପନ୍ନ |
| ଦୂତି, ଦୂତୀ | ସଂବାଦବାହିକା ନାରୀ |
| ଦ୍ରୋଣି, ଦ୍ରୋଣୀ | ନୌକା |
| ଧଟି, ଧଟୀ | ଲୁଗାଧଡ଼ି |
| ଧନୁ, ଧନୁଃ | କାର୍ମୁକ |
| ଧରଣି, ଧରଣୀ | ପୃଥିବୀ |
| ଧୂଳି, ଧୂଳୀ | ରେଣୁ, ରଜଃ |
| ନିରବ, ନୀରବ | ନିଃଶବ୍ଦ |
| ନିମିଷ, ନିମେଷ | ପଲକ |
| ନିଃଶ୍ରେଣି, ନିଃଶ୍ରେଣୀ | ନିଶୁଣି |
| ପଞ୍ଜି, ପଞ୍ଜୀ | ପାଞ୍ଜି |
| ପଦବି, ପଦବୀ | ଉପାଧି, ପଥ |
| ପରିବାଦ, ପରୀବାଦ | ଅପବାଦ |
| ପରିବେଶ, ପରିବେଷ | ଆଖପାଖ ଚତୁର୍ଦ୍ଦିଗର ଅବସ୍ଥା |
| ପରିଭବ, ପରୀଭବ | ପରାଜୟ |
| ପରିହାର, ପରୀହାର | ପରିତ୍ୟାଗ |

| ଶବ୍ଦ | ଅର୍ଥ |
|---|---|
| ପଲ୍ଲି, ପଲ୍ଲୀ | କ୍ଷୁଦ୍ରଗ୍ରାମ |
| ପାଟି, ପାଟୀ | ପଙ୍‌କ୍ତି, ଧାରା |
| ପାରସିକ, ପାରସୀକ | ପାରସ୍ୟଦେଶୀୟ |
| ପିପ୍‌ପଳି, ପିପ୍‌ପଳୀ | ଏକ ଔଷଧୀୟ ଲତା ଓ ତା'ର ଫଳ |
| ପୁତ୍ର, ପୁତ୍ତ୍ର | ପୁଅ |
| ପୃଥିବୀ, ପୃଥ୍ୱୀ | ଧରା |
| ପେଷଣି, ପେଷଣୀ | ଶିଳ |
| ପ୍ରତିକାର, ପ୍ରତୀକାର | ପ୍ରତିବିଧାନ |
| ବନଚର, ବନେଚର | ବନ୍ୟପଶୁ, ବ୍ୟାଧ |
| ବନ୍ଧୁର, ବନ୍ଧୂର | ଅସମତଳ |
| ବର୍ତ୍ତି, ବର୍ତ୍ତୀ | ବତି, ବଳିତା |
| ବର୍ଦ୍ଧକି, ବର୍ଦ୍ଧକୀ | ବଢ଼େଇ |
| ବଲ୍ଲରି, ବଲ୍ଲରୀ | ଲତା |
| ବଲ୍ଲି, ବଲ୍ଲୀ | ଲତା |
| ବଲ୍ମିକ, ବଲ୍ମୀକ | ଉଇହୁଙ୍କା |
| ବଶିଷ୍ଠ, ବସିଷ୍ଠ | ସୂର୍ଯ୍ୟବଂଶୀୟ କୁଳଗୁରୁ |
| ବସ୍ତି, ବସ୍ତୀ | ବାସସ୍ଥାନ |
| ବାଲ୍ମିକି, ବାଲ୍ମୀକି | ଆଦିକାବ୍ୟ ରାମାୟଣ-ପ୍ରଣେତା ଋଷି |
| ବିକାଶ, ବିକାସ | ପ୍ରସ୍ଫୁଟନ, ପ୍ରକାଶ |
| ବିସୂଚିକା, ବିସୂଚୀକା | ରୋଗବିଶେଷ |
| ବିଷ୍ଫୋରଣ, ବିସ୍ଫୋରଣ | କମ୍ପନ |
| ବେଖାତର, ବେଖାତିର | ଅସମ୍ମାନ |
| ବ୍ୟତିହାର, ବ୍ୟତୀହାର | ବିନିମୟ |
| ଭଙ୍ଗିମାନ୍, ଭଙ୍ଗୀମାନ୍ | ଛଇଳ, ରସିକ |
| ଭୁଜଗ, ଭୁଜଙ୍ଗ, ଭୁଜଙ୍ଗମ | ସାପ |
| ଭୁଶଣ୍ଡ, ଭୁଷଣ୍ଡ | ପୁରାଣବର୍ଣ୍ଣିତ କାକ |
| ଭୁଷି, ଭୁସି | ଚୋକଡ଼ |
| ଭୂମି, ଭୂମୀ | ପୃଥିବୀ, ମାଟି |
| ଭ୍ରୁ, ଭ୍ରୂ | ଭୂରୁ |

| ଶବ୍ଦ | ଅର୍ଥ |
|---|---|
| ଭ୍ରୂକୁଟି(ଟୀ), ଭୃକୁଟି (ଟୀ) | ଭ୍ରୂଭଙ୍ଗୀ |
| ମରକତ, ମରକ୍ତ | ପାନ୍ନା |
| ମଲ୍ଲି, ମଲ୍ଲୀ | ସୁଗନ୍ଧ ଫୁଲବିଶେଷ |
| ମଶି(ଶୀ), ମସି (ସୀ) | ଲେଖିବା କାଳି |
| ମହିଧର, ମହୀଧର | ପର୍ବତ |
| ମାତୃଷ୍ୱସା, ମାତୃସ୍ୱସା | ମାଉସୀ |
| ମୂଷିକ, ମୂଷୀକ | ମୂଷା |
| ମୌଳି, ମୌଳୀ | ମସ୍ତକ |
| ଯୂଥି, ଯୂଥୀ | ଯୂଇଫୁଲ |
| ରାଜି, ରାଜୀ | ଶ୍ରେଣୀ, ଧାଡ଼ି |
| ରାତ୍ରି, ରାତ୍ରୀ | ରାତି |
| ଲଜ୍ଜା, ଲଜ୍ୟା | ସରମ, ଲାଜ |
| ଲୋଷ୍ଟ, ଲୋଷ୍ଟ୍ର, ଲୋଷ୍ଟ | ଟେକା |
| ଶମ୍ବୁ, ଶମ୍ବୂ | ଶାମୁକା |
| ଶର, ସର | ସରୋବର, ତୃଣବିଶେଷ |
| ଶରଣି(ଣୀ), ସରଣି(ଣୀ) | ପଥ |
| ଶରଳ, ସରଳ | ଶାଳଗଛ, ସାଦାସିଧା |
| ଶସ୍ୟ, ସସ୍ୟ | କୃଷିଜାତ ଫଳ ବା ବୀଜ |
| ଶୂପ, ସୂପ | ଡାଲି |
| ଶ୍ରୁବ, ସ୍ରୁବ | ଘୃତକ୍ଷେପଣର କାଷ୍ଠପାତ୍ର |
| ଶ୍ରେଣି, ଶ୍ରେଣୀ | ଧାଡ଼ି, ସ୍କୁଲ କ୍ଲାସ |
| ସତ୍ର, ସତ୍ତ୍ର | ଯଜ୍ଞ |
| ସାରଣି, ସାରଣୀ | ତାଲିକା, ଖେଳଣାବିଶେଷ |
| ସାଥି, ସାଥୀ | ସଙ୍ଗୀ, ସହଚର |
| ସୂଚି, ସୂଚୀ | ଛୁଞ୍ଚି |
| ହକ୍, ହକ | ଯଥାର୍ଥ |
| ହନୁ(ନୂ) ମାନ୍ | ରାମାୟଣୋକ୍ତ ରାମଭକ୍ତ କପି |
| ହଲ୍ଲୀଷ, ହଲ୍ଲୀସ | ରାସକ୍ରୀଡ଼ା |
| ହିଜଡ଼ା, ହିଞ୍ଜଡ଼ା | ନପୁଂସକ ବା କ୍ଲୀବପୁରୁଷ |
| ହ୍ରେଷା, ହ୍ଲେଷା | ଅଶ୍ୱଧ୍ୱନି |

# ଅନୁଶୀଳନୀ

୧ । ନିମ୍ନୋକ୍ତ ବନାନଗତ ଅଶୁଦ୍ଧ ଶବ୍ଦମାନଙ୍କ ଶୁଦ୍ଧରୂପକୁ ଉଲ୍ଲେଖ କର ।
ଉପଯୋଗୀତା, ଏତଦ୍ୱାରା, ଉର୍ଦ୍ଧ, ଅପରାହ୍ନ, ଅନୁସୂୟା, ଅଞ୍ଜଳୀ, ଉପକାରୀତା, ଶିକ୍ଷୟତ୍ରୀ, ଆରତୀ, ଷଣ୍ମାସିକ, ଯାତାୟତ, ଗଣେଷ, ଅସ୍ତମାନ, କ୍ଷୁନ୍ନ, ପୁରଷ୍କାର, ସମ୍ମାନୀୟ, ନୀଜ, ଅହୋରାତ୍ରି, ଶଶୀଭୂଷଣ, ଅଭ୍ୟସ୍ଥ, ମିନତୀ, ଦୂରାବସ୍ଥା

୨ । ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଭୁଲ ଥିଲେ, ଦର୍ଶାଅ ଓ ସେଗୁଡ଼ିକୁ ସଂଶୋଧନ କରି ଲେଖ ।

(କ) ଶିକ୍ଷୟତ୍ରୀ ମହାଶୟା ତ୍ରିଭୂଜଟିଏ ଅଙ୍କନ କରିବା ପାଇଁ ଛାତ୍ରୀଟିକୁ କହିଲେ ।

(ଖ) ଆଜିକାଲି ଯାନବାହାନ ଭିଡ଼ ଯୋଗୁଁ ରାସ୍ତାରେ ଯାତାୟତ କରିବା ନିରାପଦ ନୁହେଁ ।

(ଗ) ଆରତୀ ଓ ମିନତୀ ଦୁହେଁ ଯାଆଁଳା ଭଉଣୀ ।

(ଘ) ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଗୋଲକ ବିହାରୀ ଧଳ ଆଉ ଇହଜଗତରେ ନାହାନ୍ତି ।

(ଙ) ମୋର ସମସ୍ତ ଆଶା ଧୂଳିସାତ୍ ହୋଇଗଲା ।

(ଚ) ଦୋଷୀକୁ କ୍ଷମା ଦିଆଯାଉ; କିନ୍ତୁ ନିର୍ଦ୍ଦୋଷୀ ଦଣ୍ଡ ପାଇବା ଉଚିତ ନୁହେଁ ।

(ଛ) ପ୍ରଭୁ ବାଲୁଙ୍କେଶ୍ୱରଙ୍କୁ ଆରାଧନା କର ।

୩ । ନିମ୍ନ ବର୍ଣ୍ଣବିନ୍ୟାସ ଭିନ୍ନଥିବା ଦୁଇଟି ଲେଖାଏଁ ଶବ୍ଦ ଅଛି; କିନ୍ତୁ ସେଗୁଡ଼ିକ ଅର୍ଥ ଏକ । ପ୍ରଦତ୍ତ ଶବ୍ଦଗୁଡ଼ିକ ପାଖରେ ଉପଯୁକ୍ତ ଅର୍ଥ ଲେଖ ।

(କ) ଉଲୁକ, ଉଲୂକ ———————— ।

(ଖ) କନ୍ଦୁକ, କନ୍ଦୂକ ———————— ।

(ଗ) କିଶଳୟ, କିସଳୟ ———————— ।

(ଘ) ଇନ୍ଦିବର, ଇନ୍ଦୀବର ———————— ।

(ଙ) ବର୍ତ୍ତି, ବର୍ତ୍ତୀ ———————— ।

(ଚ) ବଲ୍ଲରି, ବଲ୍ଲରୀ ———————— ।

(ଛ) ପଞ୍ଜି, ପଞ୍ଜୀ ———————— ।

(ଜ) ଅବନି, ଅବନୀ ———————— ।

(ଝ) ଅନ୍ତରିକ୍ଷ, ଅନ୍ତରୀକ୍ଷ ———————— ।



# ରୂଢ଼ି ପ୍ରୟୋଗ

ପ୍ରତ୍ୟେକ ମଣିଷ ପରି ପ୍ରତ୍ୟେକ ଭାଷାର ଏକ ନିଜସ୍ୱ ପ୍ରକାଶଭଙ୍ଗୀ ରହିଛି । ଏହି ପ୍ରକାଶଭଙ୍ଗୀ ଭିନ୍ନଭିନ୍ନ ପରିବେଶରେ ଭିନ୍ନ ବାକ୍-ଭଙ୍ଗୀରେ ପ୍ରକାଶ ପାଇଥାଏ । ଏହି ବିଶେଷ ବାକ୍-ଭଙ୍ଗୀକୁ ଆମେ ରୂଢ଼ି ଅଭିଧାରେ ଚିହ୍ନିତ କରିଥାଉ । କୌଣସି କଥାକୁ ସିଧାସଳଖ ନ କହି ବୁଲେଇ ବଙ୍କେଇ କହିବା ଏକ ସ୍ୱତନ୍ତ୍ର ଶୈଳୀକୁ ଅପେକ୍ଷା ରଖେ । ତେଣୁ ରୂଢ଼ି ଏକପ୍ରକାର ପରୋକ୍ଷ ଶୈଳୀ । ବାକ୍ୟାଂଶଦ୍ୱାରା ପ୍ରତ୍ୟକ୍ଷ ଅର୍ଥ ବୁଝାପଡୁଥିବା ସମୟରେ ରୂଢ଼ିଦ୍ୱାରା ସୂଚନାତ୍ମକ ଅର୍ଥ ପ୍ରକାଶ ପାଇଥାଏ । ଏହି ରୂଢ଼ିରେ ବାକ୍ୟ ବା ବାକ୍ୟାଂଶର ମୌଳିକ ଅର୍ଥ ବା ଅଭିଧାର୍ଥ ପ୍ରକାଶ ନ ପାଇ, ଏଥିରେ ଗୁମ୍ଫିତ ପ୍ରତୀୟମାନ ଅର୍ଥ ପ୍ରକାଶ ପାଇଥାଏ । ଉଦାହରଣ ନିମିତ୍ତ ଏଠାରେ ତିନୋଟି ବାକ୍ୟ ଉଦ୍ଧାର କରାଗଲା–

୧ – ରାମ ଶ୍ୟାମକୁ ବାଡ଼ିରେ ମାରିଲା ।

୨ – ମାଲିକ ଚାକରଟିର ଦାନା ମାରିଲା ।

୩ – ସେ ମୋର ସାଙ୍ଗ ହୋଇ ବି ମତେ ପଟି ମାରିଲା ।

ଉପରୋକ୍ତ ତିନୋଟି ବାକ୍ୟରେ ଗୋଟିଏ କ୍ରିୟାପଦ 'ମାରିଲା' ବ୍ୟବହୃତ ହୋଇଛି । ପ୍ରଥମ ବାକ୍ୟରେ 'ମାରିଲା' କ୍ରିୟାଟି ପ୍ରକୃତ ଅର୍ଥ ଅର୍ଥାତ୍ ମୌଳିକ ଅର୍ଥରେ ବ୍ୟବହୃତ ହୋଇଥିବା ସମୟରେ ଦ୍ୱିତୀୟ ଓ ତୃତୀୟ ବାକ୍ୟରେ 'ମାରିଲା' କ୍ରିୟାଟି ଏକ ବିଶେଷ ଇଙ୍ଗିତାର୍ଥରେ ବ୍ୟବହୃତ । ଦ୍ୱିତୀୟ ବାକ୍ୟରେ 'ଦାନା ମାରିଲା' ଅର୍ଥ ଜୀବିକାରେ କ୍ଷତି କରିଲା ଓ ତୃତୀୟ ବାକ୍ୟରେ 'ପଟି ମାରିଲା'ର ଅର୍ଥ ଠକାଇଲା । ତେଣୁ ତଳ ଦୁଇଟି ବାକ୍ୟରେ କ୍ରିୟାର ରୂଢ଼ି ପ୍ରୟୋଗ ହୋଇଛି । ଅର୍ଥାତ୍ 'ମାରିଲା' ଶବ୍ଦଟି ତା'ର ପ୍ରକୃତ ବା ଅଭିଧାର୍ଥକୁ ତ୍ୟାଗ କରି ଅନ୍ୟ ଅର୍ଥରେ ବ୍ୟବହୃତ ହୋଇଛି । ତେଣୁ ପଦ ବା ପଦ ସମଷ୍ଟିର ମୌଳିକ ଅର୍ଥ ବ୍ୟତିରେକେ ଅନ୍ୟ ଅର୍ଥରେ ବ୍ୟବହାରକୁ ରୂଢ଼ି ପ୍ରୟୋଗ କୁହାଯାଏ । ଅର୍ଥ ଓ ରୂପ ଦୃଷ୍ଟିରୁ ରୂଢ଼ି ଏକ ବାକ୍ୟାଂଶ ହେଲେ ହେଁ, ଏହା ମଧ୍ୟରେ ଗୋଟିଏ ପ୍ରଚ୍ଛନ୍ନ ଭାବର ପରିପୂର୍ଣ୍ଣ ପ୍ରକାଶ ସମ୍ଭବ ହୋଇଥାଏ ।

ରୂଢ଼ିର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି 'ପ୍ରସିଦ୍ଧି ସମ୍ପନ୍ନ' । ତେଣୁ ଲୋକଭଙ୍ଗୀର ଏକ ବିଶିଷ୍ଟ ରୀତିସିଦ୍ଧ ଶବ୍ଦଚାତୁରୀକୁ ମଧ୍ୟ ରୂଢ଼ି କୁହାଯାଇପାରେ । ଯୁକ୍ତିସିଦ୍ଧ ବା ବୈୟାକରଣିକ ଗଠନରୀତି ଅପେକ୍ଷା ଲୌକିକ ବ୍ୟବହାର ଉପରେ ଏହାର ସାର୍ଥକତା ମୁଖ୍ୟତଃ ନିର୍ଭର କରିଥାଏ । ତେଣୁ Encylopaedia American ରେ ରୂଢ଼ି ସମ୍ପର୍କରେ କୁହାଯାଇଛି– "a form of expression peculiar to a language and based on

popular usage rather than on normal grammatical or logical construction idioms cannot be translated literally into other languages." ଗଠନରୀତି ଦୃଷ୍ଟିରୁ ରୂଢ଼ି ସଂକ୍ଷିପ୍ତ ଓ ସୂତ୍ରଧର୍ମୀ ହୋଇଥିଲେ ହେଁ ଏହାର ପ୍ରକାଶ ଲକ୍ଷଣା ଓ ବ୍ୟଞ୍ଜନାଦ୍ୱାରା ସଂଘଟିତ ହୋଇଥାଏ । ମାନବର ବ୍ୟାବହାରିକ ଜୀନର ବିଭିନ୍ନ କ୍ଷେତ୍ରରୁ ଜ୍ଞାନ ଆହରଣ କରି ଏହା ପରିପୁଷ୍ଟ ହୋଇଥିବାରୁ କେତେକାଂଶରେ ଏଥିରେ ବୌଦ୍ଧିକତାର ଛାପ ରହିଯାଇଥାଏ । ସଂକ୍ଷେପରେ କହିଲେ ରୂଢ଼ି ଅନୁଭୂତିଲବ୍ଧ ଏକ ପ୍ରତ୍ୟକ୍ଷ ଜ୍ଞାନ, ଯଦିଓ ଏହାର ପ୍ରକାଶଭଙ୍ଗୀ ପରୋକ୍ଷ ରୀତିକୁ ଅବଲମ୍ବନ କରିଥାଏ ।

ବିଶେଷ୍ୟ, ବିଶେଷଣ ଓ କ୍ରିୟାପଦର ଗୁରୁତ୍ୱ ଅନୁଯାୟୀ ଓଡ଼ିଆ ଭାଷାରେ ପ୍ରଚଳିତ ରୂଢ଼ିକୁ ତିନି ଭାଗରେ ବିଭକ୍ତ କରାଯାଇଥାଏ । ଯଥା- ୧ - କ୍ରିୟାଯୁକ୍ତ ରୂଢ଼ି, (୨) କ୍ରିୟାହୀନ ରୂଢ଼ି, ୩- ତୁଳନାତ୍ମକ ରୂଢ଼ି ।

**(କ) କ୍ରିୟାଯୁକ୍ତ ରୂଢ଼ି** - ଯେଉଁ ବାକ୍ୟାଂଶରେ କ୍ରିୟାପଦ ଥାଏ, ତାହା କ୍ରିୟାଯୁକ୍ତ ରୂଢ଼ି । ଯଥା- ଅକସ ରଖିବା, ଅନ୍ଧାର ଘରେ ବାଡ଼ି ବୁଲାଇବା, କୁହୁଡ଼ି ପହଁରିବା, ଚିତା କାଟିବା, ମଥା ଖେଳାଇବା, ନାଁ କରିବା, ହାତ ଧରିବା ଇତ୍ୟାଦି ।

**(ଖ) କ୍ରିୟାହୀନ ରୂଢ଼ି** - ଯେଉଁ ବାକ୍ୟାଂଶରେ କ୍ରିୟାପଦ ନ ଥାଏ, ତାହା କ୍ରିୟାହୀନ ରୂଢ଼ି, ଯଥା- ଅକଲ ସଲାମି, ଅନ୍ଧର ଲଉଡ଼ି, ଓଳିଆରୁ ଗଜା, ଅରଣ୍ୟରୋଦନ, ଅତିଭକ୍ତି ଚୋରର ଲକ୍ଷଣ, ଅଲଣା କଥା, କାଠିକର ପାଠ ଇତ୍ୟାଦି ।

**(ଗ) ତୁଳନାତ୍ମକ ରୂଢ଼ି** - ଯେଉଁ ବିଶିଷ୍ଟ ବାକ୍ୟାଂଶକୁ ଅନ୍ୟ ବାକ୍ୟାଂଶ ସହିତ ତୁଳନା କରାଯାଇ ବିଶେଷ ଅର୍ଥ ପ୍ରକାଶ କରାଯାଏ କିମ୍ବା ପଦ ସଂହତିରେ ଉପମାବାଚକ ଶବ୍ଦ ପ୍ରୟୋଗ ହୋଇଥାଏ, ତାହାକୁ ତୁଳନାତ୍ମକ ରୂଢ଼ି କୁହାଯାଏ । ଯଥା- ଜୋକ ପରି ଲାଗିବା, ଛୁଞ୍ଚିମୁହାଁ, ଗଧ ପରି ଖଟଣି, ତୁଳାମୁହାଁ କାଙ୍କ, ଘୋଡ଼ାମୁହାଁ, ଢିଙ୍କିପରି ପଡ଼ିବା, ଶୁଣ୍ଢି ସାକ୍ଷୀ ମାତାଲ, ଖୁଣ୍ଟ ପରି ଠିଆ ହେବା ଇତ୍ୟାଦି । ନିମ୍ନରେ ଅକ୍ଷରକ୍ରମରେ କେତେକ ରୂଢ଼ି ଓ ତା'ର ବ୍ୟବହାର ପ୍ରଦତ୍ତ ହେଲା ।

## କ୍ରିୟାଯୁକ୍ତ ରୂଢ଼ି

### [ ଅ ]

ଅକସ ରଖିବା/ଅହନ୍ତା ରଖିବା (ରାଗ ରଖିବା) - ମୁଁ ଗ୍ରାମସଭାରେ ସଭାପତି ନରହରି ବାବୁଙ୍କର ଅନ୍ୟାୟର ପ୍ରତିବାଦ କରିବାରୁ ସେ ମୋ ଉପରେ ଅକସ ରଖିଛନ୍ତି ।

ଅକଲ୍ ଶିଖେଇବା (ଉଚିତ୍ ଶିକ୍ଷାଦେବା) - ବନ୍ଧୁ, ଅପେକ୍ଷାକର । ତୁମକୁ ମୁଁ ଠିକ୍ ସମୟରେ ଅକଲ ଶିଖାଉଛି ।

ଅଗ୍ନିଶର୍ମା ହେବା (ଖୁବ ରାଗିବା) – ପୁତ୍ରର ମନ୍ଦ ବ୍ୟବହାରରେ ପିତା ଅଗ୍ନିଶର୍ମା ହୋଇଗଲେ ।

ଅଠାକାଠିରେ ପଡ଼ିବା (ଅସୁବିଧାରେ ପଡ଼ିବା) – ଜମିଦାରଙ୍କ ବିରୋଧରେ ସାକ୍ଷ୍ୟ ଦେବାରୁ ରଘୁଦାସେ ଆଜି ଅଠାକାଠିରେ ପଡ଼ିଛନ୍ତି ।

ଅଠାକାଠିରେ ପକାଇବା (ବିପଦରେ ପକାଇବା) – ନିଜର ସ୍ୱାର୍ଥହାସଲ ଲାଗି ନିର୍ଦ୍ଦୋଷ ଲୋକକୁ ଅଠାକାଠିରେ ପକାଇବା ଅନ୍ୟାୟ ।

ଅଠା ବୋଳିବା (ଦୋଷ ଦେବା) – ଚୋରି କଲା କିଏ ? ପାଖ ପଡ଼ୋଶୀ ବୋଲି ଭିକାରିବାବୁ ମୋ ମୁଣ୍ଡରେ ଅଠା ବୋଳୁଛନ୍ତି ।

ଅର୍ଦ୍ଧଚନ୍ଦ୍ର ଦେବା (ତଣ୍ଟିଆ ଦେବା) – ଅଫିସର ହୋଇଛ ବୋଲି ଅର୍ଦ୍ଧଚନ୍ଦ୍ର ଦେଇ ଚାକରକୁ ଘରୁ ବାହାର କରିଦେବା ଠିକ୍ ହେଲାନି ।

ଅନ୍ଧଦେଶରେ ଦର୍ପଣ ବିକିବା (ମୂର୍ଖ ନିକଟରେ ଜ୍ଞାନଚର୍ଚ୍ଚା କରିବା)– ଶିବ ପ୍ରଧାନ ତ ମୂଲ ଲାଗିଲେ ପେଟ ପୋଷୁଛି । ତା' ଆଗରେ ଷଡ଼ଦର୍ଶନ ବ୍ୟାଖ୍ୟା କଲେ, କିଛି ଲାଭ ନାହିଁ । କେବଳ ଅନ୍ଧଦେଶରେ ଦର୍ପଣ ବିକିବା ସାର ହେବ ।

ଅନ୍ଧାରକୁ ଟେକାପକାଇବା (ଅନୁମାନ କରି କହିବା) – ଭଲଭାବରେ ବୁଝି ବିଚାରି କଥା କୁହ, ନଚେତ୍ ଅନ୍ଧାରକୁ ଟେକା ପକାଇଲେ ସମସ୍ୟା ସୃଷ୍ଟି ହୋଇପାରେ ।

ଅନ୍ଧାରରେ ବାଡ଼ି ବୁଲେଇବା (ଅନିଶ୍ଚିତ ଭାବରେ କାର୍ଯ୍ୟ କରିବା) – ଯେଉଁ ବ୍ୟବସାୟ କରିବାକୁ ଭାବିଛ, ସେ ସମ୍ବନ୍ଧରେ ଟିକିନିଖି ବୁଝ । ନୋହିଲେ ଅନ୍ଧାରରେ ବାଡ଼ି ବୁଲାଇଲେ କ୍ଷତି ସହିବାକୁ ହେବ ।

ଅଣ୍ଟା ଭିଡ଼ିବା (କୌଣସି କାର୍ଯ୍ୟପାଇଁ ସାହସ ବାନ୍ଧିବା) – ବୁଢ଼ା ହୋଇ ଯଦୁ ବାବୁ ରାସ୍ତା ସଫେଇ ପାଇଁ ଅଣ୍ଟା ଭିଡ଼ିଲେଣି; ଅଥଚ ଯୁବକ ହୋଇ ତୁମେ ପଛଘୁଞ୍ଚା ଦେଉଛ ।

ଅଣ୍ଟା ଭାଙ୍ଗିବା (ଦୁର୍ବଳ ବା ଅସହାୟ ହେବା) – ବଡ଼ ପୁଅର ମୃତ୍ୟୁ ସନା ମାଝିର ଅଣ୍ଟା ଭାଙ୍ଗିଦେଲା ।

ଅର୍ଥଶ୍ରାଦ୍ଧ କରିବା (ଅର୍ଥ ଅପବ୍ୟୟ କରିବା) – ବାପା ରୋଜଗାର କରି ଥୋଇଥିଲା, ପୁଅ ଏବେ ଅର୍ଥଶ୍ରାଦ୍ଧ କରିବାରେ ଲାଗିଛି ।

ଅବସ୍ଥା ବାର ବାଜିବା (ଶୋଚନୀୟ ଅବସ୍ଥା) – ଝିଅ ବାହାକରି ମୋର ଅବସ୍ଥା ବାର ବାଜିଛି । ଆଉ ଭୋଜିଭାତ, ମଉଜମଜଲିସ୍ କରିବା କଥା କହନା ।

[ ଆ ]

ଆଖି ଛୁଇଁବା (ନିୟମ କରିବା/ରାଣ ପକାଇବା) – ମୁଁ ଆଖିଛୁଇଁ କହୁଛି, ତୁମ ବିରୋଧରେ ପଦେ କହିନି ।

ଆଖିଦେବା(ଈର୍ଷା କରିବା) - ଅନ୍ୟର ଧନ ଓ ସୁଖ ସମୃଦ୍ଧି ପ୍ରତି ଆଖିଦେବା ଠିକ୍ ନୁହେଁ ।

ଆଖି ଖୋଲିଦେବା (ଜାଗ୍ରତ କରାଇଦେବା) - ଦୀପକ ଦୀର୍ଘ ଦିନ ଧରି ବାପା ମା'ଙ୍କୁ ପଚାରୁ ନ ଥିଲା । ତା'ର ଗାଡ଼ି ଦୁର୍ଘଟଣା ପରେ ବାପା ମା'ଙ୍କର ଅଯାଚିତ ସେବା ତା'ର ଆଖି ଖୋଲିଦେଲା ।

ଆଖି ଦେଖାଇବା (ଡରେଇବା) - ପିଲାମାନଙ୍କୁ ସବୁବେଳେ ଆଖି ଦେଖାଇଲେ, ଭବିଷ୍ୟତକୁ ସେମାନେ ଅବାଧ ହୋଇଯାଆନ୍ତି ।

ଆଖି ପକାଇବା (ଲୋଭକରିବା) - ମଦନ ମହାନ୍ତିଙ୍କ ମାଛଚାଷ ହୋଇଥିବା ପୋଖରୀ ଉପରେ କିଛି ଦୁର୍ବୃତ୍ତ ଆଖି ପକାଇଲେଣି ।

ଆଖି ପାଣି ଆଖିରେ ମରିବା (ଅପେକ୍ଷା କରି ନିରାଶ ହେବା) - ପୁଅର ଫେରନ୍ତାବାଟକୁ ଚାହିଁ ଚାହିଁ ମାଆର ଆଖି ପାଣି ଆଖିରେ ମଲାଣି ।

ଆଖିକି ପାଇବା (ପସନ୍ଦ କରିବା, ଅଟକଳ କରିବା)- ଏ ଶାଢ଼ିଟି ଝିଅର ଆଖିକି ପାଇଲା । ଦୁଇ ଲକ୍ଷ ଟଙ୍କାରେ ଘର ତିଆରି ସରିଯିବା ଆଖିକି ପାଉଛି ।

ଆଖିକି ନ ପାଇବା (କଳନା କରି ନ ପାରିବା) - ଲକ୍ଷେ ଟଙ୍କାରେ ଏତେବଡ଼ ପୋଖରୀର ପଙ୍କୋଦ୍ଧାର ହେବା କଥାଟା କାହା ଆଖିକି ପାଉନି ।

ଆଖି ବୁଜିବା (ମରିବା) - କାର୍ତ୍ତିକ ପୂର୍ଣ୍ଣିମା ଭଳି ପବିତ୍ର ଦିନରେ ମୋ ମା' ଆଖି ବୁଜିଲେ ।

ଆଖି ବୁଲାଇବା (ମୋଟାମୋଟି ଦେଖିବା) - ମୁଁ ଅଳ୍ପ ସମୟପାଇଁ ପୁସ୍ତକ ମେଳାକୁ ଯାଇଥିଲି, ତଥାପି ଆଖିବୁଲାଇ ଆସିଛି । ପରୀକ୍ଷା ପୂର୍ବରୁ ବହି ଉପରେ ଟିକିଏ ଆଖି ବୁଲାଇବା ଉଚିତ ।

ଆଖି ମାରିବା (ଇସାରାଦେବା) - ଖେଳିବାକୁ ଯିବା ପାଇଁ ମିଟୁ ଲିଟୁକୁ ଆଖି ମାରିଲା ।

ଆଖି ରଖିବା (ଲକ୍ଷ୍ୟ ରଖିବା) - ପିଲାଙ୍କ ଉପରେ ଆଖି ନ ରଖିଲେ ସେମାନେ ଭଲ ମଣିଷ ହୋଇପାରିବେ ନାହିଁ ।

ଆଖିରୁ ଜୁଳୁଜୁଳିଆ ପୋକ ବାହାରିଯିବା (ହତଜ୍ଞାନ ହେବା) - ନ ଖାଇ ନ ପିଇ, ଖରାରେ ଚାଲି ଚାଲି ବୁଢ଼ାର ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲାଣି ।

ଆଖି ଖୋସି ହୋଇଯିବା (ବିସ୍ମିତ ହେବା) - କୋଣାର୍କର କାରୁକାର୍ଯ୍ୟ ଦେଖି ବିଦେଶୀମାନଙ୍କର ମଧ୍ୟ ଆଖି ଖୋସି ହୋଇଯାଉଛି ।

ଆଖିରେ ଧୂଳିଦେବା (କୌଶଳରେ ଠକିବା) - ଘରେ ଏତେ ଲୋକ ଥାଇ ବି କେହିଜଣେ ସମସ୍ତଙ୍କ ଆଖିରେ ଧୂଳି ଦେଇ ମୋ ଓଡ଼ିଆ ଅଭିଧାନଟି ନେଇଗଲା ।

ଆଖିବୁଜି ଦୁଧପିଇବା (ଛଳନା କରିବା) - ଟିମା ଠାକୁରଙ୍କ ବଗିଚାରୁ ପ୍ରତି ରାତିରେ ଫୁଲ ତୋଳି ନେଉଛି । ବିରାଡ଼ି ଆଖିବୁଜି ଦୁଧ ପିଉଛି ବୋଲି ସେ ଭାବୁଛି; ମାତ୍ର ଏକଥା ଅନେକ ଜାଣିଗଲେଣି ।

ଆଖିରେ ନାଚିବା (ମନେପଡ଼ିବା) - ପୁଅ ଚାକିରିକୁ ଗଲାଦିନରୁ ତା'ର ମୁହଁ ସବୁଦିନ ମୋ ଆଖିରେ ନାଚୁଛି ।

ଆଡ଼ ଆଖିରେ ନ ଚାହିଁବା (ସାମାନ୍ୟ ଦୃଷ୍ଟି ନ ଦେବା, ସ୍ନେହ ଆଦର ନ କରିବା)- କାଖେଇ କୋଳେଇ ମଣିଷ କଲି । ଏବେ ବୁଢ଼ା ବୟସରେ ମୋ ଭାଇ ମୋତେ ଟିକେ ଆଡ଼ ଆଖିରେ ଚାହୁଁ ନାହିଁ ।

ଆପଣା ଶିଙ୍ଗରେ ମାଟି ତାଡ଼ିବା (ଆତ୍ମନିର୍ଭରଶୀଳ ହେବା)- ଆଜିର ଯୁଗରେ ଚାକିରି ନାହିଁ । ଲୋକ ଆପଣା ଶିଙ୍ଗରେ ମାଟି ନ ତାଡ଼ିଲେ ଚଳିପାରିବେ ନାହିଁ ।

ଆହା କରିବା (ସମବେଦନା ଜଣାଇବା) - ଆମ ଗାଁ'ର ରମାନାନୀ ଆଜି ଆରପୁରକୁ ଚାଲିଗଲା । ତା'ର କେହି ନ ଥିଲେ ବି ଆଜି ଗାଁ'ସାରା ଆହା କରୁଛନ୍ତି ।

ଆଖୁ କିଆରିରେ ପଶିବା (ଲକ୍ଷ୍ୟ ସ୍ଥିର କରି ନ ପାରିବା, ବାଟବଣା ହେବା) - ରୂପେଶ ଉଭୟ ଆଇ.ଏ.ଏସ୍. ଓ ଆଇ.ପି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନିଯୁକ୍ତିପତ୍ର ପାଇଛି । କେଉଁଟିକୁ ରଖି କେଉଁଟିକୁ ଛାଡ଼ିବ ସ୍ଥିର କରିପାରୁନି । ତାକୁ ଯେମିତି ଆଖୁ କିଆରିରେ ପଶିଲା ଭଳି ଲାଗୁଛି ।

ଆଳୁ ଖୋଳୁଖୋଳୁ ମହାଦେବ ବାହାରିବା (ସାଧାରଣ କଥାରୁ ବିରାଟ କାଣ୍ଡ ଘଟିବା)- ଆଲୋଚନା ଯେତିକି ହେଲା ଯଥେଷ୍ଟ । ଆଉ ଅଗ୍ରସର ହୁଅ ନାହିଁ । ଜାଣିଛ ନା ଆଳୁ ଖୋଳୁଖୋଳୁ ମହାଦେବ ବାହାରିବେ ।

ଆଉଟୁପାଉଟୁ ହେବା (ବିକଳହେବା) - ଦିନ ଗୋଟାଏ ହେଲାଣି ଏ ଯାଏଁ ରୋଷେଇ ସରିଲାନି । ଭୋକରେ ସମସ୍ତେ ଆଉଟୁପାଉଟୁ ହେଲେଣି ।

[ ଇ ]

ଇହଲୀଳା ସମ୍ବରଣ କରିବା (ମୃତ୍ୟୁବରଣ କରିବା) - ପଣ୍ଡିତ ଜବାହରଲାଲ ନେହେରୁ ୧୯୬୪ ମସିହା ମେ ମାସ ୨୭ ତାରିଖରେ ଇହଲୀଳା-ସମ୍ବରଣ କରିଥିଲେ ।

[ ଉ ]

ଉଠେଇବସେଇ ନ ଦେବା (ବ୍ୟତିବ୍ୟସ୍ତ କରିବା) - ଈଶାନୀ ପୁସ୍ତକ ମେଳା ଦେଖିଯିବା ପାଇଁ ମୋତେ ଉଠେଇବସେଇ ଦେଉନାହିଁ ।

ଉପରେ ପଡ଼ି କହିବା (ନ ପଚାରୁଣୁ କହିବା) - ବିଭୂତିର ଉପରେ ପଡ଼ି କହିବା ଏକ ଅଭ୍ୟାସ ହୋଇଗଲାଣି ।

ଉପରେ ଉପରେ ଭାସିବା (ପ୍ରକୃତ କଥା ନ ଜାଣିବା) - ଅନେକ ଲୋକ ଅଛନ୍ତି ଯେଉଁମାନେ ଠିକ୍ କଥା ନ ବୁଝି, କେବଳ ଉପରେ ଉପରେ ଭାସୁଥା'ନ୍ତି ।

ଉଠିଆ ଖାଇବା (ମାଗଣାରେ ଖାଇବା) - ପ୍ରଦୀପ ବାହାରେ ବାହାରେ ବୁଲି ଉଠିଆ ଖାଉଛି । ଘରକୁ କାହିଁକି ଆସିବ ?

ଉଡ଼ନ୍ତା ଚଢ଼େଇର ପର ଗଣିବା (ଅତି ଚତୁର) - ଅମର ଉଡ଼ନ୍ତା ଚଢ଼େଇର ପରଗଣିବା ପିଲା । ତାକୁ ଠକିବା ସହଜ ନୁହେଁ ।

ଉତ୍ତମମଧ୍ୟମ ଦେବା (ମାଡ଼ମାରିବା) - ପୋଲିସ ଚୋରକୁ ଉତ୍ତମମଧ୍ୟମ ଦେବାରୁ ସେ ସବୁକଥା ଠିକ୍ ଠିକ୍ କହିଦେଲା ।

ଉତ୍ତମମଧ୍ୟମ ବସିବା (ମାଡ଼ ବସିବା) - ଉପେନ୍ଦ୍ର ପିଠିରେ ଦିଇଟା ଉତ୍ତମ ମଧ୍ୟମ ବସିବାରୁ ସେ ଦୋଷ ମାନିଗଲା ।

ଉଷୁନାଧାନ ଗଜା ହେବା (ଅସମ୍ଭବ ସମ୍ଭବ ହେବା) - ନରସିଂହ ମହାନ୍ତି ବର୍ଷେ ହେଲା ବାତରୋଗରେ ପୀଡ଼ିତ । ଔଷଧ ଧରୁନି । ଯେ ଦେଖୁଛି କହୁଛି- ଏଥିରୁ ଭଲ ହେବ ନା ଉଷୁନାଧାନ ଗଜା ହେବ ।

## [ ଋ ]

ଋଣକରି ଘିଅ ଖାଇବା (ଶକ୍ତି ବହିର୍ଭୂତ ଖର୍ଚ୍ଚ କରିବା)- ଆଜିର ଦରବୃଦ୍ଧି ସମୟରେ କେହି ଋଣ କରି ଘିଅ ଖାଇବେ ନାହିଁ ।

ଋଷି ଜଟା ଛିଣ୍ଡାଇ ମରିବା (ଅତି ସହିଷ୍ଣୁଲୋକ ଅସହିଷ୍ଣୁ ହେବା)- ତୋଫାନ ତରୁଣକୁ ଏମିତି କଥା କହିଲା ଯେ ଋଷି ହେଲେ ମଧ୍ୟ ଜଟା ଛିଣ୍ଡାଇ ମରିବ ।

ଋଷିଙ୍କୁ ଭାର ବୁହାଇବା (ଗୁରୁଜନଙ୍କୁ ଅପମାନିତ କରିବା) - ତୁମେ ରାକେଶକୁ କାମଟା କରିବାକୁ କହ ନାହିଁ । କହିଲେ ସେ ତୁମକୁ କରିବାକୁ କହିଦେବ । ତୁମେ ଜାଣିନ, ସେ ପରା ଋଷିଙ୍କୁ ଭାର ବୁହାଇବା ପିଲା ।

## [ ଏ ]

ଏ କାନରେ ପୂରାଇ ସେ କାନରେ ବାହାର କରିବା (କଥା ନ ଶୁଣିବା) - ତୁମ୍ଭେ ମୋତେ ଯେତେ ଗାଳି ଦେଉଛ ଦିଅ । ମୋର ଖାତିର ନାହିଁ । ମୁଁ ଏ କାନରେ ପୂରାଇ, ସେ କାନରେ ବାହାର କରିଦେବା ଲୋକ ।

ଏପଟ ସେପଟ ହେବା (ସ୍ଥିର ନ ରହିବା) – ଯେଉଁ ଦଳରେ ରହିବ ରହ । ଏପଟ ସେପଟ ହେଲେ କିଛି ଲାଭ ନାହିଁ ।

[ ଓ ]

ଓର ଉଣ୍ଡିବା (ସୁଯୋଗକୁ ଅପେକ୍ଷା କରିବା) – ବୃନ୍ଦାବନ ବାମନକୁ ଖାଲରେ ପକାଇବା ପାଇଁ ସବୁବେଳେ ଓର ଉଣ୍ଡୁଛି ।

[ ଔ ]

ଔଷଧ ଧରିବା (ସଫଳ ହେବା, କାର୍ଯ୍ୟକାରୀ ହେବା) – ବାପାଙ୍କଠାରେ ସବୁ ଡାକ୍ତରଙ୍କ ଔଷଧ ଫେଲ ମାରିଲା । ଶେଷକୁ ରଘୁ କବିରାଜଙ୍କ ଔଷଧ ଧରିଛି ।

ଔଷଧ କାଟୁ କରିବା (ଉଦ୍ୟମ ଫଳପ୍ରଦ ହେବା) – ହାଡ଼ିଆ ମଦ ପିଇବା ଛାଡୁ ନ ଥିଲା । ପରିବାରର ସମସ୍ତେ ତାକୁ ଘରୁ ତଡ଼ିଦେବାର ଘୋଷଣା କଲେ । ସେ ବିଚଳିତ ହୋଇପଡ଼ିଛି । ମନେହେଉଛି, ଏଥର ହାଡ଼ିଆକୁ ଔଷଧ କାଟୁ କରିବ ।

[ କ ]

କଟାଘା'ରେ ଚୂନ ଦେବା (ଦୁଃଖ ଉପରେ ଦୁଃଖ ଦେବା, ଯନ୍ତ୍ରଣା ଉପରେ ଯନ୍ତ୍ରଣା)- ଗଛରୁ ପଡ଼ି ଶିଲୁର ହାତ ଭାଙ୍ଗିଯାଇଛି । ପୁଣି ତାକୁ ମାଡ଼ ଦେବାଟା କଟା ଘା'ରେ ଚୂନ ଦେବା ଭଳି ହେବ ।

କଣ୍ଟାବାଡ଼ରେ ଲୁଗା ପକାଇ(ଛାଟି) କଳି କରିବା (ବିନା କାରଣରେ ଅନ୍ୟ ସହ ଝଗଡ଼ା ସୃଷ୍ଟି କରିବା)- ହଇରେ ପଦିଆ, ଲୋକଟା ତା' ରାସ୍ତାରେ ଯାଉଥିଲା, ତାକୁ ଡାକି ଥଟ୍ଟା ପରିହାସ କରିବାଟା ଠିକ୍ ହେଲାନି । ଏଭଳି କଣ୍ଟାବାଡ଼ରେ ଲୁଗାପକାଇ କଳି କରିବା ଅଭ୍ୟାସ ଛାଡ଼ ।

କଣ୍ଟାକୁ କଣ୍ଟାରେ କାଢ଼ିବା (ଶତ୍ରୁକୁ ଶତ୍ରୁ ସାହାଯ୍ୟରେ ଆୟତ୍ତ କରିବା) ଭୀମପୁରର ରାମ ଶାସମଲ୍ଲଙ୍କୁ କଣ୍ଟାକୁ କଣ୍ଟାରେ କାଢ଼ିବା ନୀତିଟା ବେଶ୍ ଜଣା ।

କଥା କାଟିବା (ଯୁକ୍ତିଦ୍ୱାରା ଖଣ୍ଡନ କରିବା) – ଆମ ଜେଜେବାପାଙ୍କର ନିଷ୍ପତ୍ତିକୁ ସମସ୍ତେ ମାନନ୍ତି । ତାଙ୍କର କଥାକୁ କାଟିବା ଲୋକ କ୍ୱଚିତ୍ ଥିବେ ।

କଥା ତଳେ ନ ପକାଇବା (ପ୍ରତିଶ୍ରୁତି ପାଳନ କରିବା/କଥା ରଖିବା) – ସତ୍ୟବାବୁ ଏମିତି ଜଣେ ଭଦ୍ରଲୋକ ସେ ଯାହାକୁ କଥା ଦେଇଥା'ନ୍ତି, ତା'କଥାକୁ ତଳେ ପକାନ୍ତି ନାହିଁ ।

କଥା ଦେବା (ଜବାବ ଦେବା) – ତୁମର ଝିଅ ବାହାଘରେ ଯୋଗଦେବା ପାଇଁ ମୁଁ ତୁମକୁ କଥା ଦେଉଛି ।

କପାଳରେ କର ମାରିବା (ତାଡ଼ିବା) (ହତାଶ ହେବା) – ଦେଶରେ ଅନ୍ୟାୟ, ଅନୀତି, ଦୁର୍ନୀତି ଓ ବିଶୃଙ୍ଖଳା ଯେପରି ବଢ଼ିଚାଲିଛି, ତାହା ଆଉ ଦୂର ହେବାର ନୁହେଁ । କେବଳ କପାଳରେ କର ମାରିବା ଛଡ଼ା ବାଟ ନାହିଁ ।

କପାଳ ଫାଟିବା (ସର୍ବନାଶ ହେବା/ଦୁର୍ଦ୍ଦଶାଗ୍ରସ୍ତ ହେବା)- ଏକମାତ୍ର ପୁଅର ମୃତ୍ୟୁରେ ବୁଢ଼ାବାପାର କପାଳ ଫାଟିଲା । ସାହା ହେବାକୁ ଆଉ କେହି ନାହିଁ ।

କପାଳ ଫିଟିବା (ସୁଦିନ ଆସିବା)- କେତେ କଷ୍ଟରେ ଗେଲିନାନୀ ଚଳୁଥିଲା । ହଠାତ୍ ଦିନେ ଲଟେରୀରୁ ଦୁଇଲକ୍ଷ ଟଙ୍କା ପାଇବା ଖବର ପାଇଲା, ସମସ୍ତେ କହିଲେ- ଗେଲିନାନୀର କପାଳ ଫିଟିଲା ।

କଳାକନା ବୁଲାଇବା (ସର୍ବସ୍ୱ ଲୁଟିନେବା/ସର୍ବନାଶ କରିବା)- ମାଓବାଦୀମାନେ ଗତରାତିରେ ଜମିଦାର ଘରେ କଳାକନା ବୁଲାଇ ଦେଇଛନ୍ତି ।

କଳାକାଠ ପଡ଼ିଯିବା (ମଳିନ ଦିଶିବା)- ବିଲବାଡ଼ିରେ ଖଟିଖଟି ବିଚରା ବିଭୁବା କଳାକାଠ ପଡ଼ିଗଲାଣି ।

କଳାକୁ ଧଳା କରିବା (ଭୁଲକୁ ଠିକ୍ ଭାବେ ପ୍ରମାଣିତ କରିବା) - କମଳାକାନ୍ତ ବାବୁ କଳାକୁ ଧଳା କରିବାରେ ଭାରି ଓସ୍ତାଦ୍ ।

କାଠ ହୋଇଯିବା/ଜଡ଼ ପାଲଟିଯିବା (କାତର ହେବା)- କରୋନା ମହାମାରୀରେ ଲକ୍ଷଲକ୍ଷ ଲୋକଙ୍କର ମୃତ୍ୟୁ ଖବର ଶୁଣି ପୃଥିବୀବାସୀ କାଠ ହୋଇଗଲେ ।

କାନ ଡେରିବା (ଅନ୍ୟର କଥାବାର୍ତ୍ତା ଲୁଚି ଶୁଣିବା)- ଅନ୍ୟମାନଙ୍କର କଥାବାର୍ତ୍ତାକୁ କାନ ଡେ଼ରି ଶୁଣିବା ଅମଣିଷପଣିଆ ।

କାନରେ ହାତଦେବା (ବିସ୍ମୟ ପ୍ରକାଶ କରିବା, ନ ଶୁଣିବା)- ତାସ୍‌କେଣ୍ଟଠାରେ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କର ମୃତ୍ୟୁ ଖବର ଶୁଣି ଦେଶବାସୀ କାନରେ ହାତ ଦେଲେ । ଅନ୍ୟର ନିନ୍ଦା ଶୁଣିଲେ ମହତ୍ ଲୋକ କାନରେ ହାତ ଦିଏ ।

କାମରେ ହାତ ଦେବା (କାର୍ଯ୍ୟାରମ୍ଭ କରିବା)- ନୂଆ ତହସିଲଦାର ଯୋଗ ଦେଉଦେଉ କାମରେ ହାତ ଦେଲେ ।

କୁଟା କଣ୍ଡକ ଦି'ଖଣ୍ଡକ ନ କରିବା (ପରିଶ୍ରମ କାତରତା, ଅଳସୁଆମି)- ବୁଟୁ ଭଳି କୁଟା ଖଣ୍ଡକ ଦି'ଖଣ୍ଡ ନ କରିବା ପିଲା ମୁଁ କେଉଁଠି ଦେଖୁନି ।

କୁହୁଡ଼ି ପହଁରିବା (ବୃଥା ପରିଶ୍ରମ କରିବା)- କେଦାର ଚାକିରି କରିବା ଆଶାରେ ମନ୍ତ୍ରୀଙ୍କ ପଛରେ ଅନବରତ ଗୋଡ଼ାଇଛି; କିନ୍ତୁ ମନ୍ତ୍ରୀ ଯେମିତିକା ଲୋକ, ତା'ର କୁହୁଡ଼ି ପହଁରିବା ସାର ହେବ ।

କୂଳରେ ଲାଗିବା (ଆଶ୍ରା ପାଇବା)- ପିଲାଟା ଦୀର୍ଘଦିନ ଧରି ବୁଲୁଥିଲା । ଚାକିରିଟିଏ ପାଇବାରୁ କୌଣସି ପ୍ରକାରରେ କୂଳରେ ଲାଗିଗଲା ।

କେରାଣ୍ଡି ଗୁଣ୍ଡି ଶେଉଳ (ବାଳିଆ) ଧରିବା (ସାମାନ୍ୟ ବ୍ୟୟରେ ବହୁତ ଲାଭ କରିବା)- ନାରଣ ବାବୁଙ୍କ ଭଳି କୃପଣ ଲୋକ, ପୁଅ ଏକୋଇଶିଆପାଇଁ ଅନେକ

ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରିଛନ୍ତି । ତେବେ ଏହା ପଛରେ କେରାଣ୍ଡି ଗୁଣ୍ଡି ଶେଉଳ ଧରିବା ମତଲବ ନିଶ୍ଚୟ ଅଛି ।

କମ୍ୱଳରୁ ବାଳ ବାଛିବା (ବୃଥା ପରିଶ୍ରମ କରିବା)- ପ୍ରାୟ ସବୁନେତା ଏବେ ଦୁର୍ନୀତିଗ୍ରସ୍ତ । ସେମାନଙ୍କ ମଧ୍ୟରୁ ଦୁର୍ନୀତିମୁକ୍ତ ଲୋକଟିଏ ଖୋଜିବା ଯାହା, କମ୍ୱଳରୁ ବାଳ ବାଛିବା ତାହା ।

[ ଖ ]

ଖଡ଼ି ଛୁଇଁବା (ବିଦ୍ୟାରମ୍ଭ କରିବା) - ଶ୍ରୀପଞ୍ଚମୀରେ ଅଥବା ଗଣେଶପୂଜାରେ ପିଲାମାନେ ଖଡ଼ି ଛୁଅନ୍ତି ।

ଖଣ୍ଡା ଧାରରେ ଚାଲିବା (ଅତି ସାବଧାନରେ ଚଳିବା, ଠିକ୍ ବାଟରେ ଯିବା)- ଖଣ୍ଡାଧାରରେ ଚାଲିବା ଲୋକକୁ ସମସ୍ତେ ଡରନ୍ତି ।

ଖାଇବା ପତରରେ ଧୂଳି ଦେବା (ଜୀବିକାରେ ବାଧା ଦେବା)- କେହି ଭୁଲ କଲେ ତାକୁ ଅନ୍ୟ ଦଣ୍ଡ ଦେଇପାର; ମାତ୍ର ଖାଇବା ପତରରେ ଧୂଳିଦେବା ଅନ୍ୟାୟ ।

ଖାଲ ଖୋଳିବା (ଷଡ଼ଯନ୍ତ୍ର କରିବା/ବିପଦ ସୃଷ୍ଟି କରିବା)- ପରପାଇଁ ଯେ ଖାଲ ଖୋଳେ, ଦିନେ ନା ଦିନେ ସେ ସେହି ଖାଲରେ ପଡ଼େ ।

ଖାଲରେ ପକାଇବା (ବିପଦରେ ପକାଇବା)- ମୋତେ ଖାଲରେ ପକାଇବାପାଇଁ ଚରଣ ମହାନ୍ତି କେତେ ଚେଷ୍ଟା କରି ନ ଥିଲା; ମାତ୍ର ମୋର ସତ୍‌କର୍ମ ଓ ଭାଗ୍ୟବଳରୁ ମୁଁ ରକ୍ଷା ପାଇଲି ।

ଖିଅ କାଢ଼ିବା (ଦୋଷ ବାଛିବା/କଥାକୁ ଘାଣ୍ଟି ଦୋଷ ଖୋଜିବା) - ଗୋଟିଏ ନିଷ୍ପତ୍ତିରେ ପହଞ୍ଚିଲା ବେଳକୁ ଆଉ ଖିଅ କାଢ଼ିବା ଠିକ୍ ନୁହେଁ ।

ଖୁଣ୍ଟା ଦେବା (ନିନ୍ଦା ଦେବା)- ଶାଶୂମାନେ ବୋହୂକୁ ପ୍ରତିକଥାରେ ଖୁଣ୍ଟାଦେବା ଅଭ୍ୟାସ ଛାଡ଼ିବା ଉଚିତ ।

[ ଗ ]

ଗାଉଁ ଗାଉଁ ହେବା (ବିରକ୍ତ ହେବା)- ଗୌରାଙ୍ଗ ବାବୁଙ୍କର ସବୁବେଳେ ତଳିଆ କର୍ମଚାରୀଙ୍କ ଉପରେ ଗାଉଁ ଗାଉଁ ହେବା ସ୍ୱଭାବ ।

ଗାଲରେ ହାତ ଦେବା (ଚିନ୍ତା କରିବା)- ବନ୍ୟାରେ ଫସଲ ଗଲା, ଗଗନ ପରିବାର କେମିତି ଚଳାଇବ ବୋଲି ଗାଲରେ ହାତ ଦେଇ ବସିଛି ।

ଗୁଳୁରାଣ ମେଣ୍ଟାଇବା (କଷ୍ଟେମଷ୍ଟେ ଚଳିବା)- ଚାକିରି ଗଲା । ବିନାୟକ ବାବୁ କେବଳ ପେନ୍‌ସନ୍ ଅର୍ଥରେ ଗୁଜୁରାଣ ମେଣ୍ଟାଉଛନ୍ତି ।

ଗୁମ୍‌ମାରି ବସିବା (ଚୁପ୍ ହୋଇ ବା ମନମାରି ବସିବା)- ପୁଅ ପରୀକ୍ଷାରେ ଫେଲ୍ ହୋଇଗଲା ବୋଲି ଗୋପବାବୁ ଗୁମ୍‌ମାରି ବସିଛନ୍ତି ।

ଗୁମର ଫିଟିବା (ରହସ୍ୟ ଖୋଲିଯିବା)- ଅଳ୍ପଦିନ ଭିତରେ ବନାଦାସ ହତ୍ୟାକାଣ୍ଡର ଗୁମର ଫିଟିଗଲା ।

ଗୋଡ଼ଟାଣିବା (ଈର୍ଷାରେ କ୍ଷତି କରିବା)- ଗୋଡ଼ଟଣା ପ୍ରବୃତ୍ତି ଛାଡ଼ିଲେ ଯେ କୌଣସି ଜାତି ଉନ୍ନତି କରିପାରିବ ।

ଗୋଡ଼ ଟେକି ବସିବା (ପ୍ରସ୍ତୁତ ହୋଇ ରହିବା)- ଛାତ୍ରଛାତ୍ରୀମାନେ ଭ୍ରମଣରେ ଯିବାପାଇଁ ଗୋଡ଼ଟେକି ବସିଛନ୍ତି/ରଙ୍ଗଲତା ରୁଷିଛି, ବାପଘର ଯିବ ବୋଲି ଗୋଡ଼ ଟେକି ବସିଛି ।

ଗୋଡ଼ରୁ ପାଣି ମରିବା (ଥକିଯିବା/କ୍ଲାନ୍ତ ହେବା)- ଜାତିଗତ ପ୍ରମାଣପତ୍ର ପାଇବାପାଇଁ ତହସିଲଦାରଙ୍କ କାର୍ଯ୍ୟାଳୟକୁ ଦୌଡ଼ିଦୌଡ଼ି ତାରାକାନ୍ତର ଗୋଡ଼ରୁ ପାଣି ମରିଗଲାଣି ।

ଗୋଡ଼ ତଳେ ନ ପଡ଼ିବା(ଖୁସିରେ ଅଧୀର ହେବା)- ଓଡ଼ିଆ ସ୍ନାତକୋତ୍ତର ପରୀକ୍ଷାରେ ପ୍ରଥମସ୍ଥାନ ଅଧିକାର କରିଥିବାରୁ ବିଶ୍ୱପ୍ରକାଶର ଗୋଡ଼ ତଳେ ପଡୁନାହିଁ ।

ଗୋଡ଼ ଧରିବା (ଭୁଲ ସ୍ୱୀକାର କରିବା)- "ଗୁରୁଦେବ ! ମୁଁ ମୋର ଅପରାଧପାଇଁ ଆପଣଙ୍କର ଗୋଡ଼ ଧରୁଛି । କ୍ଷମା କରନ୍ତୁ ।"

ଗୋଡ଼ହାତ ଧରିବା (ନେହୁରାହେବା/ଦୋଷସ୍ୱୀକାର କରିବା)- ଏ ଯୁଗରେ କାହାର ଗୋଡ଼ହାତ ଧରିଲେ ବି ଚାକିରି ଖଣ୍ଡିଏ ମିଳିବ ନାହିଁ ।

ଗୋଡ଼ ବୋଇଲେ ହାତ ବୋଲ କରିବା (ଅତିଦୁଷ୍ଟ) – ଗୋବର୍ଦ୍ଧନ ସହିତ ଖେଳିବାକୁ ପିଲାମାନେ ଭୟ କରନ୍ତି । କାରଣ ତା'ର ସବୁବେଳେ ଗୋଡ଼ ବୋଇଲେ ହାତ ବୋଲ କରୁଥାଏ ।

## [ ଘ ]

ଘଣ୍ଟ ଘୋଡ଼ାଇବା (ଲୁଚାଇବା/ରକ୍ଷାକରିବା) – ମନ୍ତ୍ରୀ ମହାଶୟ ନିଜର କୁକର୍ମକୁ ଘଣ୍ଟ ଘୋଡ଼ାଇବାପାଇଁ ଯଥାସାଧ ଚେଷ୍ଟା କରୁଛନ୍ତି । ଈଶ୍ୱର ହିଁ ଲୋକକୁ ବିପଦରୁ ଘଣ୍ଟଘୋଡ଼ାଇଥା'ନ୍ତି ।

ଘଣ୍ଟପିଟିବା (ପ୍ରଚାର କରିବା)- ଘନ ଆଗରେ କିଛି କଥାବାର୍ତ୍ତା ହୁଅ ନାହିଁ, କାରଣ ସେ ସେହିକ୍ଷଣି ଘଣ୍ଟ ପିଟି ଦେବ ।

ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିବା (କାର୍ଯ୍ୟ ଆରମ୍ଭ ପୂର୍ବରୁ ବାଧାବିଘ୍ନ)- ଅର୍ଥମନ୍ତ୍ରୀ ମଞ୍ଚ ଉପରକୁ ଉଠୁଉଠୁ ଉପସ୍ଥିତ ଜନତା ହୋହଲ୍ଲା କଲେ । ଆଉ କି ସଭା ! ଘରେ ନ ପଶୁଣୁ ତ ମୁଣ୍ଡରେ ଚାଳ ବାଜିଲା ।

[ ଚ ]

ଚମ୍ପଟ ମାରିବା (ଠକି ଦେଇ ଚାଲିଯିବା)- ଚନ୍ଦ୍ରଶେଖର ଆମ ଘରକୁ ଆସିଲା; କିନ୍ତୁ ଭୋଜି ଖାଇଲା ବେଳକୁ ଚମ୍ପଟ ମାରିଲା ।

ଚଲୁ କରିଦେବା (ସବୁ ଶେଷ କରିଦେବା)- ପିତାଙ୍କ ମୃତ୍ୟୁ ପରେ ପୁଅ ସମସ୍ତ ସଂପତ୍ତିକୁ ଅଳ୍ପଦିନରେ ଚଲୁ କରିଦେଲା ।

ଚଷୁ କୁଟିବା (ବୃଥା ପରିଶ୍ରମ କରିବା/ଅସାର କଥାରେ ମନଦେବା)- ଚାନ୍ଦା ଦେବା ଲୋକ ତ ଘରେ ନାହାନ୍ତି । ଏଠି ବସି ବୃଥା ଚଷୁ କୁଟୁଛ କାହିଁକି ?

ଚକ୍ଷୁଶୂଳ ହେବା (ଈର୍ଷାର ପାତ୍ର ହେବା)- ସତ କହିବାରୁ ମୁଁ ଆଜି ସମସ୍ତଙ୍କର ଚକ୍ଷୁଶୂଳ ହୋଇଛି ।

ଚାଲିଲା ଶଗଡ଼ରେ ହାତଦେବା (ଅତି ଦୁଷ୍ଟ) - ରାଜୀକୁ ସାଙ୍ଗରେ ନେଇ ଭ୍ରମଣରେ ଯାଅ ନାହିଁ । ସେଇଟା ଚାଲିଲା ଶଗଡ଼ରେ ହାତ ଦେବା ପିଲା । କେତେବେଳେ କ'ଣ କରିବସିବ ।

ଚିତାକାଟିବା (ଠକିବା) - ଚୈତନ୍ୟ ଚାକିରି କରାଇଦେବାପାଇଁ ବହୁ ଲୋକଙ୍କଠାରୁ ଟଙ୍କା ନେଇ ଚିତା କାଟିଛି ।

[ ଛ ]

ଛତୁ ଉଡ଼ାଇ ଦେବା (ସତ୍ତା ଲୋପ କରିଦେବା)- ମୋ ସାଙ୍ଗେ ଟକ୍କର ଦେଉଛୁ । ଅପେକ୍ଷା କର । ଏଥର ମୁଁ ତୋ ଛତୁ ଉଡ଼ାଇ ଦେଉଛି ।

ଛାଇ ନ ମାଡ଼ିବା (ପାଖକୁ ନ ଯିବା, ଆଦୌ ସଂପର୍କ ନ ରଖିବା)- ସାଧାରଣ ପଦେ କଥାରେ ଶୈଳେଶ ମୋର ଛାଇ ମାଡୁ ନାହିଁ ।

ଛାଇ ପଡ଼ିଲେ ନାହି ଡେଇଁବା (ଅସହିଷ୍ଣୁ ହେବା)- ପାଖ ପଡ଼ୋଶୀ ହୋଇ ବି ନରିର ଛାଇ ପଡ଼ିଲେ, ହରିର ନାହି ଡେଉଁଛି । ଉଭୟଙ୍କର ଭିତରେ ସଂପର୍କ ଆସିବା ସମ୍ଭବ ନୁହେଁ ।

ଛାତି ପତେଇବା (ସାହସ ବାନ୍ଧିବା/ସମ୍ମୁଖୀନ ହେବା)- ବିପଦବେଳେ ସମସ୍ତେ ଛାତି ପତେଇ କାମ କରିବା ଉଚିତ ।

ଛାତିକି ପଥର କରିବା (ଧୈର୍ଯ୍ୟ ଧରିବା/ସହ୍ୟ କରିବା)- ମହାବାତ୍ୟାରେ ପୁଅଝିଅ ଓ ସ୍ତ୍ରୀକୁ ହରାଇ ଗୁଣନିଧି ଛାତିକି ପଥର କରି ବଞ୍ଚି ରହିଛି ।

ଛାତି ଫୁଲାଇ ଚାଲିବା (ଗର୍ବ ପ୍ରକାଶ କରିବା)- ମୋକଦ୍ଦମାରେ ଜିଣିଥିବାରୁ ମଧୁ ମିଶ୍ର ଛାତି ଫୁଲାଇ ଚାଲୁଛି ।

ଛେନାରୁ ଚୋପା ଛଡ଼ାଇବା (ଖୋଜି ଖୋଜି ଦୋଷ ବାହାର କରିବା)- ରବିର ସବୁକଥାରେ ଛେନାରୁ ଚୋପା ଛଡ଼ାଇବା ଅଭ୍ୟାସ ଗଲାନି ।

[ ଜ ]

ଜଳନ୍ତା ନିଆଁରେ କୁଟା ପକାଇବା (ରାଗ ବଢ଼ାଇବା/କଥା ବଢ଼ାଇବା)- ଦୁଇ ଭାଇଙ୍କ ଭିତରେ କଳି ଲାଗିଛି । ଜଣକୁ ସମର୍ଥନ କରି ଅନ୍ୟର ଜଳନ୍ତା ନିଆଁରେ କୁଟାପକାଉଛ କାହିଁକି ?

ଜିଦି ଧରିବା (ଗୋଟିଏ କଥାରେ ଜୋର୍ ଦେବା)- ସବୁକଥାରେ ଜିଦି ଧରିଲେ ସମସ୍ୟା ସୃଷ୍ଟି ହୁଏ ।

ଜୀବନ ମୂର୍ଚ୍ଛିବା (ପ୍ରାଣବଳି ଦେବା/ମୃତ୍ୟୁକୁ ନ ଡରିବା)- ଅଗଣିତ ଭାରତୀୟ ଦେଶର ସ୍ୱାଧୀନତା ସଂଗ୍ରାମରେ ଜୀବନ ମୂର୍ଚ୍ଛି ଲଢ଼େଇ କରିଥିଲେ ।

ଜୀରାରୁ ଶିରା କାଢ଼ିବା (ବୃଥା ଦୋଷ ବାଛିବା)- ଜଗନ୍ନାଥ ଜୀବନରେ କିଛି ଲେଖାଲେଖି କରି ନାହିଁ; କିନ୍ତୁ ପ୍ରତିଷ୍ଠିତ ଲେଖକଙ୍କର ଲେଖାରୁ ଜୀରାରୁ ଶିରା କାଢ଼ିବା, ତା'ର ଏକ ଅଭ୍ୟାସ ।

[ ଝ ]

ଝାଙ୍କ ଛଡ଼ାଇ ଦେବା (ବ୍ୟତିବ୍ୟସ୍ତ କରିବା)- ମାମୁନି ପୁରୀ ଯିବ ବୋଲି ବାପାଙ୍କ ସାଙ୍ଗରେ ଝାଙ୍କ ଛଡ଼ାଇ ଦେଲାଣି ।

ଝିଣ୍ଟିକା ମାରି ବଣି ପୋଷିବା (ଗରିବଙ୍କୁ ମାରି ଧନୀକୁ ସାହାଯ୍ୟ କରିବା)- ଇଂରେଜ ଶାସନରେ ଝିଣ୍ଟିକା ମାରି ବଣି ପୋଷିବା ନୀତି ବେଶ୍ ଚାଲିଥିଲା ।

ଝାଡ଼ିଝୁଡ଼ି ହୋଇ ବସିବା (ଦାୟିତ୍ୱ ତୁଲାଇ ନିଶ୍ଚିତ ହେବା) ଝାଡ଼େଶ୍ୱର ବାବୁ ଚାକିରିରୁ ଅବସର ନେବା ପୂର୍ବରୁ ଝାଡ଼ିଝୁଡ଼ି ହୋଇ ବସିଛନ୍ତି ।

[ ଟ ]

ଟହଲ ମାରିବା (ଅଯଥାରେ ସମୟ ନଷ୍ଟ କରିବା)- ପଚିଶ ବର୍ଷର ଭେଣ୍ଡାଟାଏ ହେଲୁଣି । କିଛି କାମ ନ କରି ଏଣେତେଣେ ଟହଲମାରୁଛୁ କାହିଁକି ?

ଟାଣ ଭାଙ୍ଗିବା (ଗର୍ବ ଭାଙ୍ଗିବା)- ଜେଲ୍ ଯିବା ପରେ ଜୟନ୍ତର ଟାଣ ଭାଙ୍ଗି ଯାଇଛି ।

ଟେକ ରଖିବା(ସମ୍ମାନ ରକ୍ଷା କରିବା)- ଜନ୍ମଭୂମିର ଟେକ ରଖିବା ଆମ ସମସ୍ତଙ୍କର କର୍ତ୍ତବ୍ୟ ।

[ ଠ ]

ଠାକୁର ଖାଇ ଖଟୁଲି ଖାଇବା (ସବୁ ଆତ୍ମସାତ୍ କରିବା)- କୁଳମଣିକୁ ପୂଜା କମିଟିର ସମ୍ପାଦକ କର ନାହିଁ । କାରଣ, ସେ ଠାକୁର ଖାଇ ଖଟୁଲି ଖାଇଦେବ ।

ଠାସକୁ ମାରିବା (ଅନୁମାନ କରି କହିବା)- ବଳରାମର ପୁରାଣ ବିଷୟରେ କିଛି ଜ୍ଞାନ ନାହିଁ । ପଚାରିଲେ ଠାସକୁ ମାରି କହେ ।

ଠେକିଏ ପାଣି ପିଆଇବା (ଅସ୍ତବ୍ୟସ୍ତ କରିବା)- ଘଣ୍ଟାଏକାଳ ବୁଝାଇଲି । ତଥାପି ପିଲାଟା ବୁଝୁନି । ମୋତେ ଠେକିଏ ପାଣି ପିଆଇଲାଣି ।

[ ଡ ]

ଡହଳବିକଳ ହେବା (ଅତି ଆତୁରହେବା) - ପୁଅ ରୋଗରେ ପଡ଼ିଛି । ଚିକିତ୍ସାପାଇଁ ଖରାରେ ଧାଇଁଧାଇଁ ଦାମ ଡହଳବିକଳ ହେଲାଣି ।

ଡିହରେ ବିଲୁଆ ଡେଇଁବା (ଘର ଭାଙ୍ଗିଯିବା/ବଂଶବୁଡ଼ିଯିବା)- ଅତ୍ୟାଚାରୀ ବୈରୀଗଞ୍ଜନ ଆଜି ନାହାନ୍ତି । ଏବେ ତାଙ୍କ ଡିହରେ ବିଲୁଆ ଡେଉଁଛି ।

ଡେଙ୍ଗୁରା ଦେବା (ପ୍ରଚାର କରିବା)- ବକେୟା ବିଦ୍ୟୁତ୍ ଦେୟ ପୈଠ କରିବାପାଇଁ ବିଦ୍ୟୁତ୍ ବିଭାଗ ପକ୍ଷରୁ ଡେଙ୍ଗୁରା ଦିଆଗଲା ।

[ ଢ ]

ଢୋଲ ପିଟିବା (ପ୍ରଚାର କରିବା)- ଅନ୍ୟର ସୁଗୁଣକୁ ବାହାରେ ଢୋଲ ପିଟିବା ଉଚିତ । ତୁମେ ଯେତେ ଢୋଲ ପିଟିଲେ ମଧ୍ୟ କେହି ତୁମକୁ ବିଶ୍ୱାସ କରିବେ ନାହିଁ । ତୁମ କଥା କାହାକୁ ଅଜଣା ନାହିଁ ।

[ ତ ]

ତଣ୍ଟି କାଟିବା (ଅନିଷ୍ଟ କରିବା)- ଯଦି ପାରୁଛ ଅନ୍ୟର କିଛି ଭଲକାମ କରିବାକୁ ଚେଷ୍ଟାକର; ମାତ୍ର ତଣ୍ଟି କାଟ ନାହିଁ ।

ତଳିତଳାନ୍ତ କରିବା (ସର୍ବନାଶ କରିବା)- ସେ ଦିନ ତୋର ଥିଲା । ଆଜି ମୋର ଆସିଛି । ମୁଁ ତୋତେ କେମିତି ତଳିତଳାନ୍ତ କରୁଛି ଦେଖ ।

ତିନି ପାଞ୍ଚିରୁ ଯିବା (ଯଶ ହରାଇବା)- ଆଇ.ଏ.ଏସ୍. ଅଫିସର ବିଶ୍ୱାଳବାବୁ ଅର୍ଥ ତୋଷରପାତ କରି ତିନିପାଞ୍ଚିରୁ ଗଲେ ।

ତିଳକୁ ତାଳ କରିବା (ଛୋଟ କଥାକୁ ବଡ଼ କରି କହିବା)- ସୁକାନ୍ତ ତିଳକୁ ତାଳ କରି କହିବାରେ ବଡ଼ ଧୁରନ୍ଧର ।

ତେଲ ମାରିବା (ଖୋସାମତ କରିବା)- ସ୍ୱାର୍ଥସାଧନପାଇଁ ଶ୍ୟାମବାବୁଙ୍କୁ ଭଲ ତେଲମାରି ଆସେ ।

[ ଥ ]

ଥଇଥାନ କରିବା (ରହିବା-ଖାଇବାର ବ୍ୟବସ୍ଥା କରିବା)- ବିସ୍ଥାପିତ ଲୋକଙ୍କୁ ଥଇଥାନ କରିବାରେ ପ୍ରଶାସନ ପ୍ରାଥମିକତା ଦେବା ଉଚିତ ।

ଥଳକୂଳ ନ ପାଇବା (କର୍ତ୍ତବ୍ୟ ସ୍ଥିର କରି ନ ପାରିବା)- ମୋ ଉପରେ ଗୋଟାକ ପରେ ଗୋଟାଏ ବିପଦ ଆସି ପଡୁଛି । ଏହା ଭିତରେ ମୁଁ ଥଳକୂଳ ପାଉନାହିଁ ।

[ ଦ ]

ଦଉଡ଼ିଦେବା (ଆତ୍ମହତ୍ୟା କରିବା)- ଯୌତୁକ ନିର୍ଯାତନା ସହି ନ ପାରି ନୂଆବୋହୂଟି ଘରେ ଦଉଡ଼ି ଦେଇଛି ।

ଦଗାଦେବା (ଠିକିବା/ବିଶ୍ୱାସଘାତକତା କରିବା)- ଦୀନବନ୍ଧୁ ମୋର ବିଶ୍ୱସ୍ତ ବନ୍ଧୁ ହୋଇ ଏତେ ଦିନ ପରେ ଆଜି ମୋତେ ଦଗାଦେଲେ ।

ଦଫା ରଫା କରିବା (ସର୍ବସ୍ୱାନ୍ତ କରିବା)- ଏତେଦିନକେ ମୋ ହାବୁଡ଼େ ପଡ଼ିଛୁ । ରହ, ତୋର ଦଫାରଫା କରିଦେଉଛି ।

ଦାଉସାଧିବା (ପ୍ରତିଶୋଧ ନେବା)- ଭାଇ ତ ଭଗାରି । ସେ ଦାଉସାଧିବନି ତ ଆଉ କିଏ ?

ଦାନାରେ ଧୂଳିଦେବା (ଜୀବିକା ମାରିବା)- ଅନ୍ୟର ଦାନାରେ ଧୂଳି ଦିଅ ନାହିଁ । ମନେରଖ ଭଗବାନ ସହିବେ ନାହିଁ ।

ଦାନ୍ତ ଦେଖେଇବା (ପରିହାସ କରିବା)- କାହାର ଦୁର୍ଦ୍ଦଶା ଦେଖି ଦାନ୍ତ ଦେଖେଇବା ଭଲ ଗୁଣ ନୁହେଁ ।

ଦାନ୍ତରେ କୁଟା ଦେବା (ଦୋଷ ସ୍ୱୀକାର କରିବା)- ରାଧୁଆ ଦାନ୍ତରେ କୁଟା ଦେଇ ଗୁହାରି କଲାଣି । ଏହିଥର ତାକୁ କ୍ଷମା ଦିଅ ।

ଦୁଇ ନାଆରେ ଗୋଡ଼ ଦେବା (ଏକ ସମୟରେ ଦୁଇଟି କାମ ଆରମ୍ଭ କରି ଅସୁବିଧାରେ ପଡ଼ିବା)- ରଙ୍କନାଥ ଚାଷ ସହିତ ବଣିଜବେପାରରେ ଲାଗିଛି । ଦୁଇଆଡୁ ସିନା କ୍ଷତି ହେଉଛି, ଲାଭ ନାହିଁ । ଏହା ତା'ର ଦୁଇ ନାଆରେ ଗୋଡ଼ ଦେବାର ଫଳ ।

ଦେଉଳକୁ ମୁଖଶିଆଳି ବଳିବା (ମୂଳ ଖର୍ଚ୍ଚଠାରୁ ଆନୁଷଙ୍ଗିକ ଖର୍ଚ୍ଚ ବଳିଯିବା)- ଯଦି ପାରୁଛ ପିଲାପାଇଁ ଏକୋଇଶିଆରେ ଅଳ୍ପକେ ପୂଜାପୂଜି ସାରିଦିଅ । ଭୋଜିଭାତରେ ମନଦେଲେ ଦେଉଳକୁ ମୁଖଶିଆଳି ବଳିଯିବ ଯେ ।

ଦେଖିପାରିବା(ଭଲପାଇବା/ସୁଖପାଇବା)-ମୋ ନାତିନାତୁଣୀମାନେ ମୋତେ ଖୁବ୍ ଦେଖିପାରନ୍ତି ।

ଦେଖି ନ ପାରିବା-(ଭଲ ନ ପାଇବା)ଗୀତାର ଶାଶୁ ତାକୁ ଦେଖି ନ ପାରି ସବୁକଥାକୁ ଖୁଣୁଛି ।

ଦେହ କଣ୍ଟା ହୋଇଯିବା (ଶରୀର ଦୁର୍ବଳ ହେବା)- ପୁଅ ଚିନ୍ତାରେ ପାଣ୍ଡୁ ସାର୍‌ଙ୍କର ଦେହ କଣ୍ଟା ହୋଇଗଲାଣି ।

ଦେହରୁ କଣ୍ଟାଯିବା (ଶତ୍ରୁନାଶ ହେବା)- ସାବତ ମା' ଶଉରୀକୁ ବଡ଼ ଦହଗଞ୍ଜ କରୁଥିଲା । ମାତ୍ର ସେ ପୋଖରୀରେ ବୁଡ଼ି ମରିଯିବାରୁ ଏବେ ଶଉରୀର ଦେହରୁ କଣ୍ଟାଗଲା ।

ଦେହସୁହା ହେବା (ଅଭ୍ୟସ୍ତ ହେବା)- ଧୋବେଇଟା ଅତି ଦୁଷ୍ଟ, ସମସ୍ତଙ୍କ ଠାରୁ ଗାଳି ମାଡ଼ ଖାଇଖାଇ ତା'ର ଦେହସୁହା ହୋଇଗଲାଣି ।

ଦୋ' ଘାଇରେ ପଡ଼ିବା (ବିଷମ ସମସ୍ୟାରେ ପଡ଼ିବା)- ତେଣେ ବାପାଙ୍କୁ ନେଇ କଟକ ମେଡ଼ିକାଲରେ ଚିକିତ୍ସା କରିବା, ଏଣେ ଝିଅବାହାଘର ଯୋଗାଡ଼; ଭାଗୀରଥିବାବୁ କେଉଁ କଥାଟାକୁ ଛାଡ଼ି କେଉଁଟା କରିବେ ଭାବି ଦୋ'ଘାଇରେ ପଡ଼ିଛନ୍ତି ।

[ ଧ ]

ଧରାକୁ ସରା ମଣିବା (କାହାକୁ ଖାତିର ନ କରିବା)- ଶକ୍ତିସାମର୍ଥ୍ୟ ଓ ଧନ ବଳରେ ଧରାକୁ ସରା ମଣିବା ଜ୍ଞାନୀ ଲୋକର କର୍ତ୍ତବ୍ୟ ନୁହେଁ ।

ଧୂଆଁବାଣ ମାରିବା (ଫାଙ୍କିବା/ବାହାପିଆ କଥା କହିବା)- ଯାହା କହୁଛ ଠିକ୍ ଠିକ୍ କହ । ଏମିତି ଧୂଆଁବାଣ ମାରିବା ଛାଡ଼ ।

ଧୋକା ଦେବା (ବିଶ୍ୱାସ ଘାତକତା କରିବା)- ଲୋକ ଅନ୍ୟକୁ ଧୋକା ଦେଲେ ଈଶ୍ୱରଙ୍କ ଦ୍ୱାରା ଦଣ୍ଡିତ ହୁଏ ।

[ ନ ]

ନ' ଛ' କରି କହିବା (ମିଛସତ ଫାନ୍ଦି କହିବା)- ତୋର ସିନା ନ'ଛ' କରି କହିବା ଅଭ୍ୟାସ ଅଛି; ମାତ୍ର ମୋର ତାହା ନାହିଁ ।

ନଖରେ ଛିଡ଼ିବା (ସହଜରେ ସମାଧାନ ହେବା)- ଗୋପାଳ ଗୋବିନ୍ଦର କଳି ନଖରେ ଛିଡ଼ିଗଲା ।

ନଜର ରଖିବା (ଦୃଷ୍ଟିରେ ରଖିବା)- ଦୁଷ୍ଟ ପିଲାଟିକୁ ଟିକେ ନଜରରେ ରଖିଥିବ ।

ନାକ ଛିଞ୍ଚାଡ଼ିବା (ବିରକ୍ତ ହେବା)- ତୁମ ପାଖରେ ମୋର କାମ ଅଛି । ବାରମ୍ବାର ଆସୁଛି ବୋଲି ନାକଛିଞ୍ଚାଡୁଛ କାହିଁକି, ବରଂ ମନା କରିଦିଅ ।

ନାକ ଟେକିବା (ଘୃଣା କରିବା)- କୁତ୍ସିତ ପୋଷାକ ପରିଧାନ କଲେ ଯେ କେହି ନାକ ଟେକିବ ।

ନାକବାଳ ଧରି ବସଉଠ ହେବା (ଅପମାନିତ ହେବା)- ନାରାୟଣ ନିଜର ଭୁଲପାଇଁ ସବୁ ସାଙ୍ଗଙ୍କ ଆଗରେ ନାକବାଳ ଧରି ବସଉଠ ହେଲା ।

ନାକେଦମ୍ କରିବା (ଅଥୟ କରିବା)- ଜ୍ୱର ହୋଇଛି । ଭାତ ଖାଇବ ବୋଲି ଛୁଆଟା ସମସ୍ତଙ୍କୁ ନାକେଦମ୍ କଲାଣି ।

ନାଁ କରିବା (ସୁନାମ ଅର୍ଜିବା)- ଉତ୍କଳମଣି ଗୋପବନ୍ଧୁ ବନ୍ୟାପୀଡ଼ିତଙ୍କ ସେବାକରି ସାରା ଓଡ଼ିଶାରେ ନାଁ କରିଥିଲେ ।

ନାଁ ପକାଇବା (ନିନ୍ଦିତ ହେବା)- ଦେବସ୍ୱ ଅପହରଣ କରି ଦେବାନନ୍ଦ ନାଁ ପକେଇଲା ।

ନାଟ ଲଗେଇବା (ବିଭେଦ ସୃଷ୍ଟି କରିବା)- ନିରଞ୍ଜନ ସାହିରେ ସାହିରେ ଭଲ ନାଟ ଲଗେଇଥାଏ ।

ନାହିରେ ତେଲପକାଇ ଶୋଇବା (ଚିନ୍ତାଶୂନ୍ୟ ହେବା)- ଝିଅ ବାହାଘର ସାରି ଚିନ୍ତା ପ୍ରଧାନ ଏବେ ନାହିରେ ତେଲପକାଇ ଶୋଇଛି ।

ନେଇ ଆଣି ଥୋଇବା (ସମ୍ଭାଳିବା, କୌଶଳରେ କାର୍ଯ୍ୟ କରିବା)- ଯେତେ ଗୁରୁତ୍ୱପୂର୍ଣ୍ଣ କାମ ହେଲେ ମଧ୍ୟ ଲକ୍ଷ୍ମୀଧର ନେଇଆଣି ଥୋଇପାରେ ।

ନେହୁରା ହେବା (ଅନୁରୋଧ କରିବା)- ବୁଢ଼ା କେତେ ନେହୁରା ହେଲା, ତଥାପି ହାକିମ ଶୁଣିଲେ ନାହିଁ ।

## [ ପ ]

ପଇସା ପାଣିରେ ପଡ଼ିବା (ଅଯଥା ବ୍ୟୟ) ପୁଅପାଇଁ ଶହଶହ ଟଙ୍କା ଖର୍ଚ୍ଚ କରି ବି ପରୀକ୍ଷାରେ ଫେଲ୍ ହେଲା । ମୋ ପଇସା ପାଣିରେ ପଡ଼ିଲା ।

ପଛରୁ ଛୁରିମାରିବା (ବିଶ୍ୱାସଘାତକତା କରିବା)- ଏତେ ବିଶ୍ୱାସ ଜନ୍ମାଇ ସେ ମୋତେ ପଛରୁ ଏମିତି ଛୁରିମାରିବେ ବୋଲି ମୁଁ ଆଦୌ କଳ୍ପନା କରି ନ ଥିଲି ।

ପରକଥାରେ ମୁଣ୍ଡ ପୂରେଇବା (ଅନ୍ୟ ବିଷୟରେ ଚିନ୍ତା କରିବା)- ମୋ କଥା ତ ମୋତେ ବୁଝିବାକୁ ବେଳ ନାହିଁ । ପରକଥାରେ ମୁଣ୍ଡ ପୂରାଇବାକୁ ସମୟ ନାହିଁ ।

ପାଟିରେ ବାଟୁଳି ନ ବାଜିବା (ଅନର୍ଗଳ କହିବା)- ପିଲାଟାଏ ହେଲେ କ'ଣ ହେଲା, ସେ ଏପରି ଭାଷଣ ଦେଲା ଯେ ପାଟିରେ ବାଟୁଳି ବାଜିଲା ନାହିଁ ।

ପରଲାଗି ପୁଅ ମୁଣ୍ଡ ଛୁଇଁବା (ଅନ୍ୟପାଇଁ ଜୀବନ ବିପନ୍ନ କରିବା ବା ମୂର୍ଚ୍ଛିବା)- ଦୁଇ ଶକ୍ତିଶାଳୀ ଲୋକଙ୍କ ଭିତରେ ଝଗଡ଼ା ଲାଗିଛି । ସେଥିରେ ପଶି ପରଲାଗି ମୁଣ୍ଡ ଛୁଇଁବା ଠିକ୍ ନୁହେଁ ।

ପାଣି ଛଡ଼ାଇବା (ଆଶା ନ ରଖିବା)- ସୈନିକମାନେ ଲଢ଼େଇକୁ ଯିବା ପୂର୍ବରୁ ଜୀବନକୁ ପାଣିଛଡ଼ାଇଥା'ନ୍ତି ।

(ପୂଜା କରିବା) - ଏ ଭୋଗତକ ଠାକୁରଙ୍କ ପାଖରେ ପାଣି ଛଡ଼ାଇ ଦିଅ ।

ପରମୁଣ୍ଡରେ ନଡ଼ିଆ ବାଡ଼େଇବା (ଅନ୍ୟ ଉପରେ ଦାୟିତ୍ୱ ଲଦିଦେଇ ଖସିଯିବା)- ପରମୁଣ୍ଡରେ ନଡ଼ିଆ ବାଡ଼େଇବାକୁ ଚେଷ୍ଟା କରନାହିଁ ।

ପାଣି ନ ଗଳିବା (ନିବିଡ଼ ବନ୍ଧୁତା)- ସୁମନ୍ତ ଓ ସୁଶାନ୍ତ ବନ୍ଧୁ ପରି ବନ୍ଧୁ । ସେମାନଙ୍କ ଭିତରେ ପାଣି ଗଳେ ନାହିଁ ।

ପାଣି ପିଆଇବା (ଖୁବ୍ ହଇରାଣ କରିବା)- ପ୍ରଧାନ ବାବୁଙ୍କୁ ଚିହ୍ନି ରଖ । ସେ ଯେକୌଣସି ଲୋକକୁ ପାଣି ପିଆଇପାରନ୍ତି ।

ପାଣିରେ ସର ପକାଇବା (ଚିକ୍‌କଣ କଥା କହି ମନ ଭୁଲେଇବା)- ପ୍ରେମାନନ୍ଦ ପାଣିରେ ସରପକାଇ କାର୍ଯ୍ୟ ହାସଲ କରିପାରନ୍ତି ।

ପାଲରେ ପକାଇବା (କୌଶଳରେ ଆୟତ୍ତକୁ ଆଣିବା)- ପଟ୍ଟନାୟକେ ଯାହାକୁ ପାଲରେ ପକାନ୍ତି, ତା'ର ଘର ଉଜାଡ଼ି ଦିଅନ୍ତି ।

ପାସଙ୍ଗରେ ନ ପଡ଼ିବା (ସମକକ୍ଷ ନ ହେବା) ଚୁଗୁଲି କରିବାରେ କେହି ବଂଶୀଧରର ପାସଙ୍ଗରେ ପଡ଼ିବେ ନାହିଁ ।

ପିଳେହି ପାଣି ହେବା (ଭୟରେ ଛାନିଆ ହେବା)- ବଣଭୋଜିପାଇଁ ଜଙ୍ଗଲରେ ଯାଉଥିଲା ବେଳେ ବାଘଗର୍ଜନ ଶୁଣି ଆମ ସମସ୍ତଙ୍କର ପିଳେହି ପାଣି ହୋଇଗଲା ।

ପିଠିରେ ପଡ଼ିବା (ସାହାଯ୍ୟ କରିବା)- ଘୋର ଦୁର୍ଦ୍ଦିନରେ ମୋ ଭାଇ କେବଳ ମୋ ପିଠିରେ ପଡ଼ିଥିଲା, ଆଉ କେହି ନୁହେଁ ।

ପୋଥିରେ ଡୋର ବାନ୍ଧିବା (ପଢ଼ା ବନ୍ଦ କରିବା)- ପରୀକ୍ଷାରେ ଫେଲ୍ ହେବାରୁ ପବିତ୍ରର ପୋଥିରେ ଡୋର ବନ୍ଧା ହେଲା ।

ପେଟରୁ କାଟିବା (ଅନ୍ୟ ସୁଖପାଇଁ ନିଜ ସୁଖକୁ କମାଇବା)- ସଂସାରରେ ପ୍ରତ୍ୟେକ ବାପା ମା' ନିଜେ ପେଟରୁ କାଟି ନିଜ ଛୁଆଙ୍କୁ ମଣିଷ କରନ୍ତି ।

[ ଫ ]

ଫଟେଇ ହେବା (ବାରମ୍ବାର ପଚାରିବା ବା କହିବା)- ଥରେ ତ କହିଲି, ଶୁଣିଲୁ, ଏତେ ଫଟେଇ ହେଉଛୁ କାହିଁକି ?

ଫସରଫାଟିବା (ବ୍ୟର୍ଥହେବା)- ଚୋରମାନେ ଚୋରିପାଇଁ ପ୍ରସ୍ତୁତ ହେଉଥିଲେ; ମାତ୍ର ଠିକ୍ ସମୟରେ ପୋଲିସ ପହଞ୍ଚିଯିବାରୁ ସେମାନଙ୍କର ଯୋଜନା ଫସର ଫାଟିଗଲା ।

ଫାଙ୍କିଦେବା (ଅସ୍ୱୀକାର କରିବା/ଠକିବା)- ଗଣେଶ ମୋ'ଠାରୁ ଗପ ବହିଟି ପଢ଼ିବାକୁ ନେଇ ଶେଷରେ ଫାଙ୍କିଦେଲା ।

ଫୁଟୁକି ମାରିବା (ଆହ୍ୱାନ କରିବା)- ତୁମେ ମୋତେ ଦୁର୍ବଳ ମନେକରି ଫୁଟୁକି ମାରୁଛ; ମାତ୍ର ମୁଁ ଗଲେ ମୋର ପରାକ୍ରମ ବୁଝିପାରିବ ।

[ ବ ]

ବସେଇଉଠେଇ ନ ଦେବା (ଅଥୟ କରିବା) - ଗପଟିଏ ଶୁଣିବାପାଇଁ ପିଲାମାନେ ମୋତେ ଆଉ ବସେଇଉଠେଇ ଦେଉନାହାନ୍ତି ।

ବାଟକାଟିବା (ନିଜ ରାସ୍ତା ଧରିବା ବା ସୁବିଧା ଦେଖିବା)- ଭଦ୍ରବ୍ୟକ୍ତିମାନେ ଗାଁ' ଲୋକଙ୍କ ଭିତରେ ଗଣ୍ଡଗୋଳ ଆରମ୍ଭ ହେବାର ଦେଖି ବାଟ କାଟିଲେ ।

ବାଟମାରଣା ହେବା (ଧନର ଉପଯୁକ୍ତ ବିନିଯୋଗ ପୂର୍ବରୁ ଲୁଟି ହେବା)- ସରକାରୀ କର୍ମଚାରୀଙ୍କଦ୍ୱାରା ସରକାରୀ ଅର୍ଥ ବାଟମାରଣା ହେଉଥିବାର ଅଭିଯୋଗ ହେଉଛି ।

ବାଡ଼ ଫସଲ ଖାଇବା (ରକ୍ଷକ ଭକ୍ଷକ ହେବା)- ପ୍ରତିରକ୍ଷା କର୍ମଚାରୀମାନେ ଅର୍ଥଲୋଭରେ ଦେଶର ଗୋପନୀୟତା ବିଦେଶୀ ରାଷ୍ଟ୍ରକୁ ଦେବା ଯାହା, ବାଡ଼ ଫସଲ ଖାଇବା ତାହା ।

ବିଛାମନ୍ତ୍ର ନ ଜାଣି ସାପଗାତରେ ହାତମାରିବା (ସାଧାରଣ ଜ୍ଞାନ ନ ଥାଇ ଏକ ବିପଦପୂର୍ଣ୍ଣ କାର୍ଯ୍ୟ କରିବା)- ସଦେଇ ସାହୁ ପୋଖରୀରେ ଭଲଭାବରେ ପହଁରି ଶିଖିନି । ସମୁଦ୍ରରେ ଯାଇ ପହଁରିବା ତା' ପାଇଁ ବିଛାମନ୍ତ୍ର ନ ଜାଣି ସାପଗାତରେ ହାତମାରିବା ସହିତ ସମାନ ।

ବିରାଡ଼ି କପାଳକୁ ଶିକା ଛାଡ଼ିବା (ଇଚ୍ଛାମତେ ସୁଯୋଗ ମିଳିବା)- ରୋଗାକ୍ରାନ୍ତ ରାଜୀବ ଭାତଖାଇବାକୁ କହୁଥିଲା । ଡାକ୍ତର ବାବୁ କହିଲେ ଖାଉ । ଏହାତ ବିରାଡ଼ି କପାଳକୁ ଶିକା ଛିଣ୍ଡିବା ଭଳି ହେଲା ।

ବିରାଡ଼ି ଛିଙ୍କିବା (ଅନୁକୂଳ ବିଗିଡ଼ିବା)- କିହୋ କମଳାକାନ୍ତବାବୁ, ଜଗନ୍ନାଥ ଦର୍ଶନକୁ ପୁରୀ ଯାଉଥିଲ ପରା । ଫେରି ଆସିଲ କାହିଁକି ? କ'ଣ ବିରାଡ଼ି ଛିଙ୍କିଦେଲା କି ?

ବିରାଡ଼ି ବେକରେ ଘଣ୍ଟିବାନ୍ଧିବା (ଶକ୍ତିଶାଳୀ ଲୋକ ବିରୋଧରେ ପ୍ରଥମେ ବାହାରିବା)- ଦୁର୍ଜୟ ଦକ୍ଷିଣକବାଟର ଦୌରାତ୍ମ୍ୟ ଗାଁ'ରେ ଦିନକୁ ଦିନ ବଢ଼ିଚାଲିଛି । ତାକୁ ବିରୋଧ କରିବା କଥା ସମସ୍ତେ କହୁଥିଲେ ମଧ ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ କିଏ ?

ବିରୁଡ଼ି ବସାରେ ହାତ ମାରିବା (ଆପେ ବିପଦକୁ ବରଣ କରିବା)- ମାନଗୋବିନ୍ଦ ପଟ୍ଟନାୟକ କେମିତିକା ଲୋକ ତୁମେ ଠିକ୍ ଜାଣିଛ । ତା' ବିରୋଧରେ ଯିବା ବିରୁଡ଼ି ବସାରେ ହାତମାରିବା ଭଳି ହେବ ।

ବିଶ୍ୱାସରେ ବିଷଦେବା (ବିଶ୍ୱାସଘାତକତା କରିବା)- ଅନ୍ୟ କାହାକୁ କହିବା ? ନିଜର ଭାଇ ହୋଇ ତ ବିଶ୍ୱାସରେ ବିଷ ଦେଲା ।

[ ଭ ]

ଭାଲୁ ଧରାଇବା (ଦାୟିତ୍ୱ ଦେଇ ଖସିଯିବା/କୌଶଳରେ ଜଞ୍ଜାଳଗ୍ରସ୍ତ କରାଇବା)- ସବୀର ଓ କବୀର ହୋଟେଲରେ ଖାଇଲେ । ପଇସା ଦେଲାବେଳକୁ ସବୀର କବୀରକୁ ଭାଲୁଧରାଇ ଚାଲିଗଲାଣି ।

ଭୁଆଁ ବୁଲାଇବା (ଭଣ୍ଡେଇବା/ବିଭିନ୍ନ ବାହାନା ଦେଖାଇ ଠକିବା)- ବିଜନ ବୈଦେହୀଶ ବିଳାସ ବହିଟି ମାଗି ନେଇଥିଲା । ପ୍ରାୟ ବର୍ଷେ ବିତିଗଲାଣି । ମାଗିଲେ ଖାଲି ଭୁଆଁ ବୁଲାଉଛି ।

ଭୂତ ଖାଇବା (ଧନର ପରଦ୍ୱାରା ଉପଭୋଗ ହେବା)- ଭୀମ ଭାଇନାର ଅଚଳାଚଳ ସଂପତ୍ତି । ପିଲାଛୁଆ କେହି ନାହାନ୍ତି । ଖାଉନି କି ଖୁଆଉନି । ସମୟ ଆସିବ, ତା'ର ସବୁ ସଂପତ୍ତି ଭୂତ ଖାଇବେ ।

ଭେଳା ବୁଡ଼ିବା (ସର୍ବନାଶ ହେବା)- ଅନେକ ଦିନ ହେଲା ରୋଗ ହେଲାଣି, ଚିକିତ୍ସା କରୁନାହଁ । ମନେରଖ, ଦିନେ ନା ଦିନେ ତୁମର ଭେଳା ବୁଡ଼ିବ ।

ଭେଳିକି ଦେଖାଇବା (ଭୁଲେଇବା)- ସ୍ଥାନୀୟ ବିଧାୟକ ଗାଁ' ମନ୍ଦିରର ମରାମତିପାଇଁ ଅର୍ଥ ବରାଦର ଅନେକଥର ପ୍ରତିଶ୍ରୁତି ଦେଇଛନ୍ତି । ପୁଣି ଆସିଲେ ଆଉ ଭେଳିକି ଦେଖାଇ ପାରିବେ ନାହିଁ । ଗ୍ରାମବାସୀ ଠିକ୍ ଜବାବ୍ ଦେବେ ।

ଭୋକରେ କରଡ଼ି ଜଳିବା/ଆଉଟୁପାଉଟୁ ହେବା (ଭୋକସମ୍ଭାଳି ନ ପାରିବା)- ସକାଳ ନ'ଟାରେ ଗଣ୍ଡେ ଖାଇଥିଲି ଯେ ଏବେ ରାତି ଦଶଟା ହେଲାଣି । ଭୋକରେ କରଡ଼ି ଜଳୁଛି ।

## [ ମ ]

ମନ କୁଣ୍ଢେ ମୋଟ ହେବା (କୌଣସି ସଫଳତାରେ ଉତ୍‌ଫୁଲ୍ଲ ହେବା)- ପୁଅ ପରୀକ୍ଷାରେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବାରୁ ପିତାମାତାଙ୍କର ମନ କୁଣ୍ଢେମୋଟ ହେଲା ।

ମନ ଘରଧରିବା (ଅସୁବିଧାରେ ପଡ଼ି ସତର୍କ ହେବା)- ବାପା ଚାଲିଗଲେ । ଅରବିନ୍ଦର ମଉଜମଜଲିସ୍‌ରେ ସମୟ କଟାଇବା ସରିଗଲା । ଏଣିକି ତା' ମନ ଘର ଧରିଲାଣି ।

ମନଛୁଇଁବା (ପସନ୍ଦ ହେବା)- ଶିବ ପାଣିଗ୍ରାହୀଙ୍କର ଅଙ୍କିତ ଛବିଗୁଡ଼ିକ ସମସ୍ତଙ୍କ ମନକୁ ଛୁଏଁ ।

ମନମାନିବା(ପସନ୍ଦ ହେବା)- ସାବିତ୍ରୀକୁ ବୋହୂ କରିବାପାଇଁ ଆମ ସମସ୍ତଙ୍କର ମନମାନିଛି ।

ମନ ମାରିବସିବା (ଦୁଃଖ ଓ ଚିନ୍ତାରେ ଚୁପ୍ ରହିବା)- ପରୀକ୍ଷାରେ ତ ଫେଲ୍ ହେଲୁ, ଆଉଥରେ ଦେବୁ । ସବୁବେଳେ ଏମିତି ମନମାରି ବସିଛୁ କାହିଁକି ?

ମହରଗରୁ ଯାଇ କାନ୍ତାରରେ ପଡ଼ିବା (ଏକ ସାଧାରଣ ବିପଦରୁ ଯାଇ ବଡ଼ ବିପଦରେ ପଡ଼ିବା)- ମରୁଡ଼ି ଯୋଗୁ ମାୟାଧର କାମ ଆଶାରେ ବାଲେଶ୍ୱର ଗଲା; ମାତ୍ର ସେଠାରେ ଲୋକେ ବନ୍ୟା ହେତୁ ଗାଁ' ଛାଡୁଥିଲେ । ଫଳରେ ମହରଗରୁ ଯାଇ କାନ୍ତାରରେ ପଡ଼ିବା ହେଲା ।

ମାଛ ତେଲରେ ମାଛ ଭାଜିବା (ବିନା ବ୍ୟୟରେ ଲାଭ ପାଇବା/ଉପରେ ଉପରେ ସୁବିଧା ପାଇବା)- ବନ୍ଧବାନ୍ଧି, ପାଣି ବୋହି ଆମେ ସମସ୍ତେ ଯେତିକି ମାଛ ଭାଗ ପାଇଲୁ, ପାଣୁ ପ୍ରଧାନ ପାଖରେ ଠିଆ ହୋଇ ସେତିକି ପାଇଲା । ମାଛ ତେଲରେ ମାଛ ଭାଜିବା ତାକୁ ବେଶ୍ ଜଣା ।

ମାଛିକୁ ମ' ନ କହିବା (ଅତି ଶାନ୍ତଶିଷ୍ଟ)- ମାଗୁଣି ସାର୍ ମାଛିକୁ ମ' ନ କହିବା ଲୋକ । ତାଙ୍କ ବିରୋଧରେ ଅଭିଯୋଗ ଭିତ୍ତିହୀନ ।

ମାଟିରେ ମିଶିବା (ମୃତ୍ୟୁବରଣ କରିବା)- ମାଟିରେ ମିଶିବା ପର୍ଯ୍ୟନ୍ତ ମନୁଷ୍ୟ କର୍ମଲିପ୍ତ ଥାଏ । ତୁ କାନ୍ଦି କାନ୍ଦି ମାଟିରେ ମିଶିଗଲେ ମଧ୍ୟ ମୃତ ପୁତ୍ରର ଜୀବନ କ'ଣ ଆଉ ଫେରି ଆସିବ ?

ମୁଣ୍ଡ ଗୁଞ୍ଜିବା (ଆଶ୍ରୟ ନେବା)- ଘରପୋଡ଼ିରେ ଘନ ସାହୁର ଘର ଖଣ୍ଡିକ ଗଲା । ଏବେ ମୁଣ୍ଡ ଗୁଞ୍ଜିବାକୁ ତା' ପାଇଁ ବାସ ନାହିଁ ।

ମୁଣ୍ଡଝାଳ ତୁଣ୍ଡରେ ମାରିବା (କଠିନ ପରିଶ୍ରମ କରି ପେଟ ପୋଷିବା)- ଗରିବ ଲୋକ ମୁଣ୍ଡଝାଳ ତୁଣ୍ଡରେ ମାରି ପରିବାର ଚଳାଏ ।

ମୁଣ୍ଡକୁ ତେନ୍ତୁଳିଆବିଛା କାମୁଡ଼ିବା (ଭୀଷଣ ଚିନ୍ତାଗ୍ରସ୍ତ ହେବା)- ସନ୍ତ୍ରାସବାଦୀ ତଥା ମାଓବାଦୀଙ୍କ ପାଇଁ ବର୍ତ୍ତମାନ କେନ୍ଦ୍ରସରକାର ଓ ରାଜ୍ୟସରକାରଙ୍କର ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲାଣି ।

ମୁଣ୍ଡରେ ବଜ୍ରପଡ଼ିବା (ବଡ଼ ବିପଦରେ ପଡ଼ିବା)- ପୁଅ ମଲାନି ଯେ ଅର୍ଜୁନ ସୁବୁଦ୍ଧିର ମୁଣ୍ଡରେ ବଜ୍ରପଡ଼ିଲା ।

ମୁଣ୍ଡକୁ ହାତ ପାଇବା (ଉପାର୍ଜନକ୍ଷମ ହେବା, ଦାୟିତ୍ୱ ତୁଲାଇବା ପାଇଁ ସମର୍ଥ ହେବା)- ଗୋପାଳ ଚାକିରି କରୁକରୁ ବାପକୁ ଘରୁ ବାହାର କରିଦେଲା । ସମସ୍ତେ କୁହାକୁହି ହେଲେ, ଯାହାହେଉ ପୁଅର ମୁଣ୍ଡକୁ ହାତ ପାଇଗଲା ।

ମୁହଁ ଉପରକୁ ହେବା/କରିବା (ଗର୍ବ କରିବା)- ପୁଅ ଦୁଇଟା ଚାକିରି କରିବାରୁ ବାପା ରଙ୍ଗନାଥର ମୁହଁ ଉପରକୁ ହେଲାଣି ।

ମୁହଁ ତଳକୁ ହେବା (ଅପମାନିତ ହେବା)- କୁକର୍ମ କଲେ ଲୋକର ମୁହଁ ତଳକୁ ହୁଏ ।

ମୁହଁରେ କଳା ଲାଗିବା (ଅପମାନ ପାଇବା)- ଚୋରି କରି ଜେଲ୍‌ଯିବାରୁ ଜୟନ୍ତର ମୁହଁରେ କଳା ଲାଗିଲା ।

ମୁହଁ କଳାପଡ଼ିଯିବା (ଦୁଃଖରେ ମଳିନ ଦିଶିବା/ଅପମାନିତ ହେବା)- ଦୋଷୀ ସାବ୍ୟସ୍ତ ହେବାରୁ ଦୟାନିଧିର ମୁହଁ କଳାପଡ଼ିଗଲା ।

ମୁହଁ ଦେବା (ପ୍ରଶ୍ରୟ ଦେବା/ତାଗିଦ୍ ନ କରିବା)- ପିଲାମାନଙ୍କୁ ମୁହଁ ଦେଲେ, ସେମାନେ ଭବିଷ୍ୟତରେ ଅବାଧ୍ୟ ହୁଅନ୍ତି ।

ମୁହଁ ବଢ଼ାଇବା (ନିୟନ୍ତ୍ରଣ ନ କରିବା/ପ୍ରଶ୍ରୟ ଦେବା)- ପିଲା ଯେତେବେଳେ ଯାହା ମାଗିଲା ତାହା ଦେଇଦେଲେ, ତା'ର ମୁହଁ ବଢ଼ିଯାଏ ।

ମୁହଁ ବନ୍ଦ କରିବା (ଚୁପ୍ କରାଇବା)- କେହି କେହି କ୍ଷମତା ବଳରେ ଅଥବା ଧନବଳରେ ଅନ୍ୟର ମୁହଁ ବନ୍ଦ କରୁଛନ୍ତି ।

ମୁହଁ ବାନ୍ଧିଦେବା (ଖାଇବାକୁ ଇଚ୍ଛା ନ ହେବା)- ଚୁଡ଼ାଘଷା ଏତେ ମିଠା ହୋଇଛି ଯେ ମୁଠେ ଖାଇଲେ ମୁହଁ ବାନ୍ଧି ଦେଉଛି ।

ମୁହଁ ଭାଙ୍ଗିଦେବା (ଗର୍ବଭାଙ୍ଗିବା/ଟାଣପଣ ଭାଙ୍ଗିବା)- ଭଗବାନ ହିଁ ଅହଂକାରୀ ଓ ଅତ୍ୟାଚାରୀର ମୁହଁ ଭାଙ୍ଗି ଦିଅନ୍ତି ।

ମୁହଁ ମାରିବା (ଭେଟିବା/ସଂପର୍କ ରଖିବା)- ଯଦି ବେଳ ନାହିଁ, ଫେରିଲା ବେଳକୁ ଆମଘରେ ଟିକେ ମୁହଁମାରି ଯିବ ।

[ ଯ ]

ଯତି ପଡ଼ିବା (ମେଳଖାଇବା) ନଟିଆ ଓ ବଟିଆ ଦୁଇ ସାଙ୍ଗ । ଉଭୟଙ୍କ ଭିତରେ ଭଲ ଯତି ପଡୁଛି ।

ଯନ୍ତାରେ ପଡ଼ିବା (ଅସୁବିଧାରେ ପଡ଼ିବା)- ଜୟରାମ ଅନ୍ୟମାନଙ୍କୁ ଅସୁବିଧାରେ ପକାଉଥିଲେ । ଚୋରାକାଠ ବେପାର କରି, ଧରାହୋଇ ନିଜେ ଯନ୍ତାରେ ପଡ଼ିଛି ।

[ ର ]

ରକ୍ତଚାଉଳ ଚୋବାଇବା (ରାଗରେ ଜଳିଯିବା)- ରହମନ୍ ଘରକଳିକୁ ନେଇ ଅହମ୍ମଦ ଉପରେ ରକ୍ତଚାଉଳ ଚୋବାଉଛି ।

ରକ୍ତରେ ବାଡ଼ଦେବା (ଜ୍ଞାତି ବା କୁଟୁମ୍ବ କାଟିଦେବା)- ସ୍ତ୍ରୀବୋଲରେ ପଡ଼ି ସଦାଶିବ ନିଜ ଭାଇର ରକତରେ ବାଡ଼ ଦେଲା; ମାତ୍ର ଏକଥାକୁ ସମସ୍ତେ ଛି ଛି କଲେ ।

ରବେଇଖବେଇ ହେବା (ଈର୍ଷାକରିବା)- ଅନ୍ୟର ଉନ୍ନତିରେ ରବେଇଖବେଇ ହେବା ବୋକାମି । କାରଣ ଏହାଦ୍ୱାରା ନିଜର ଦୁଶ୍ଚିନ୍ତା ବଢ଼ିଯାଏ ।

ରାଗରେ ଅନ୍ଧହେବା (କ୍ରୋଧରେ ହିତାହିତ ଜ୍ଞାନ ଲୋପହେବା)- ଯେଉଁମାନେ ରାଗରେ ଅନ୍ଧ ହୁଅନ୍ତି, ସେମାନେ ଅଚିନ୍ତନୀୟ ପରିସ୍ଥିତି ସୃଷ୍ଟି କରିଥା'ନ୍ତି ।

ରାହାଧରିବା (ଏକ ନିଶ୍ୱାସରେ କାନ୍ଦିବା/କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବା) (୧) ପିମ୍ପୁଡ଼ି କାମୁଡ଼ି ଦେବାରୁ ପିଲାଟି ରାହାଧରି କାନ୍ଦୁଛି । (୨) ଆଉ ବିଳମ୍ବକଲେ ପରିବାର ଚଳିବନି । ଗୋଟେ କିଛି ରାହା ଧରିବାକୁ ହେବ ।

[ ଲ ]

ଲାଗି ଖାଇବା (ପରିଶ୍ରମ କରି ବଞ୍ଚିବା)- ମାଗିଖାଇବା ଲୋକ, ଲାଗି ଖାଇବାକୁ ଭଲ ପାଏନା ।

ଲୁହାଙ୍କାଣି ପାଣି ଦେବା (ଲୋକ ଦେଖି ବ୍ୟବହାର କରିବା)- ଯେଉଁ ଲୋକ ଲୁହାଦେଖି ପାଣିଦିଏ, ସେ ଅସୁବିଧାରେ ପଡ଼େ ନାହିଁ ।

ଲୋକହସା ହେବା (ଅପମାନିତ ହେବା)- ମାତୃଭାଷାରେ ଦୁର୍ବଳ ଲୋକ ଭାଷଣ ଦେଲେ ଲୋକହସା ହୁଏ ।

[ ଶ ]

ଶତମୁଖ ହେବା (ଅଧିକ କରି କହିବା)- ଶତମୁଖ ହୋଇ ଈଶ୍ୱରଙ୍କର ଗୁଣକୀର୍ତ୍ତନ କରିବା ଉଚିତ ।

ଶରଣ ପଶିବା (ଅନୁଗତ ହେବା)- ଇନ୍ଦ୍ର ବିବାଦରେ ହାରି ଶ୍ରୀକୃଷ୍ଣଙ୍କ ଶରଣ ପଶିଥିଲେ ।

[ ଷ ]

ଷଣ୍ଢକୁ ଭାଗବତ ପଢ଼ାଇବା (ଅଯୋଗ୍ୟ ଲୋକକୁ ଉପଦେଶ ଦେବା)- ଗୋପାଳ ଭଳି ମୂର୍ଖକୁ ତତ୍ତ୍ୱଜ୍ଞାନ ଦେବା ଯାହା, ଷଣ୍ଢକୁ ଭାଗବତ ପଢ଼ାଇବା ସେଇଆ ।

ଷୋଳଶିରା ଦୁହିଁ ହୋଇଯିବା (କଠୋର ପରିଶ୍ରମ କରି କ୍ଲାନ୍ତ ହୋଇପଡ଼ିବା)- ଦିନରାତି କାମ କରିକରି ବାପର ଏଣେ ଷୋଳଶିରା ଦୁହିଁ ହୋଇଯାଉଛି; ତେଣେ ପୁଅ ଖାଇପିଇ ମଉଜମଜଲିସ୍‌ରେ ସମୟ ବିତାଉଛି ।

[ ସ ]

ସଜ ମାଂସ (ମାଛ)ରେ ପୋକ ପକାଇବା (ମିଥ୍ୟାରେ ବଦନାମ କରିବା/ଦୋଷଶୂନ୍ୟ କାର୍ଯ୍ୟରେ ଦୋଷ ଦେଖାଇବା)- ଆଜିର ଯୁଗରେ ସଜମାଂସରେ ପୋକ ପକାଇବା ଲୋକ କମ୍ ନାହାନ୍ତି; ମାତ୍ର ସେମାନଙ୍କ କଥା ସମୟକ୍ରମେ ମିଥ୍ୟା ପ୍ରମାଣିତ ହୋଇଥାଏ ।

ସୁଅମୁହଁରେ ଯିବା (ଧନର ଅଯଥାର୍ଥ ବିନିଯୋଗ) - ତିନିଦିନ ତଳେ ଉଦ୍‌ଘାଟିତ ହୋଇଥିବା ପୋଲଟି ଭୁଶୁଡ଼ି ପଡ଼ିଲା । ସବୁ ଅର୍ଥ ସୁଅ ମୁହଁରେ ଗଲା ।

ସ୍ୱର୍ଗରୁ ତୋଳି ଆଣିବା (ମନରୁ ଫାଙ୍କି କହିବା) - ସନାତନ ସ୍ୱର୍ଗରୁ ତୋଳି ଆଣିଲା ପରି କଥା କହେ; ମାତ୍ର ତା’ କଥାକୁ କେହି ବିଶ୍ୱାସ କରନ୍ତି ନାହିଁ ।

[ ହ ]

ହରଡ଼ଘଣାରେ ପଡ଼ିବା (ବିପଦରେ ପଡ଼ିବା)- ଏ ମାସ ଶେଷସୁଦ୍ଧା ବ୍ୟାଙ୍କରଣ ପରିଶୋଧ ନ କଲେ, ଜମିତକ ନିଲାମ ହୋଇଯିବ । କ’ଣ କରିବି, ବଡ଼ ହରଡ଼ଘଣାରେ ପଡ଼ିଛି ।

ହଳିଲା ପାଣିରେ ଗୋଡ଼ ନ ଦେବା (ସାମାନ୍ୟ ବିପଦ ବା ଜଞ୍ଜାଳରେ ଲିପ୍ତ ନ ହେବା)- ହରି ସାହୁ ବଡ଼ ଡରକାଲୋକ । ସେ ହଳିଲା ପାଣିରେ ଗୋଡ଼ ଦିଏ ନାହିଁ ।

ହାଉଜାଉ ହେବା (ବହୁପରିମାଣରେ ମିଳିବା)- ଶୀତଋତୁରେ କୋବି, ମୂଳା ଆଦି ପନିପରିବା ବଜାରରେ ହାଉଜାଉ ହୁଏ ।

ହାଟ କରିବା (ପ୍ରଚାର କରିବା)- ମୋରି ଖାଇ ପୁଣି ମୋ’ ବିରୋଧରେ ହାଟ କରୁଛ ?

ହାଟହେବା (ପ୍ରଚାରିତ ହେବା)- ମଧୁ ମିଶ୍ରର ମୃତ୍ୟୁସମ୍ବାଦ ମୁହୂର୍ତ୍ତକରେ ହାଟ ହୋଇଗଲା ।

ହାଡ଼ ଗଣିହେବା (ଦୁର୍ବଳ ହେବା)- ରୋଗରେ ପଡ଼ି ପଡ଼ି ପିଲାଟାର ହାଡ଼ ଗଣିହେଲାଣି ।

ହାଡ଼ ଜଳିବା (ଅତିଶୟ କ୍ରୋଧାନ୍ୱିତ ହେବା)- ସୁରେଶର ନାଁ ପଡ଼ିଲେ ମହେଶର ହାଡ଼ ଜଳେ । ଉଭୟଙ୍କ ଭିତରେ ଆଉ ସମ୍ବନ୍ଧ ସ୍ଥାପନ ସମ୍ଭବ ନୁହେଁ ।

ହାତ ଉଠେଇବା (ମାରିବାକୁ ଉଦ୍ୟତ ହେବା)- କଥାକଥାକେ ଅନ୍ୟ ପ୍ରତି ହାତ ଉଠେଇବା ଲୋକ ହାରିଯାଏ ।

ହାତ କରିବା (ନିଜପକ୍ଷକୁ ନେବା)- ଅଗାଧୁ ମିଶ୍ରେ ଅର୍ଥବଳରେ ଅନାଦିକୁ ହାତ କରିନେଲେ ।

ହାତକାଚ ବଜ୍ର ହେବା (ସ୍ୱାମୀର ଦୀର୍ଘଜୀବନ କାମନା କରିବା)- ଗୁରୁଜନମାନେ ଝିଅକୁ ତା'ର ହାତକାଚ ବଜ୍ର ହେବାପାଇଁ ଆଶୀର୍ବାଦ ଦିଅନ୍ତି ।

ହାତ ଟେକିବା (ନମସ୍କାର କରିବା/ଆତ୍ମସମର୍ପଣ କରିବା)- (୧) ସାନମାନେ ଗୁରୁଜନମାନଙ୍କୁ ହାତ ଟେକିବା ଉଚିତ । (୨) ପାକିସ୍ତାନୀ ସେନା କାର୍‌ଗିଲ୍ ଯୁଦ୍ଧରେ ହାରି ଭାରତୀୟ ସେନା ନିକଟରେ ହାତ ଟେକିଲେ ।

ହାତଛଡ଼ା କରିବା (ଛାଡ଼ିଦେବା)- ଝିଅପାଇଁ ଭଲ ପ୍ରସ୍ତାବଟିଏ ଆସିଛି । ଭାବୁଛି, ହାତଛଡ଼ା କରିବି ନାହିଁ । ସୁଯୋଗ ଆସିଲା ବେଳେ ହାତଛଡ଼ା କରିବା ଉଚିତ ନୁହେଁ ।

ହାତ ଛିଞ୍ଚାଡ଼ିବା (ହେୟଜ୍ଞାନ କରିବା, ବେଖାତିର କରିବା)- କାହା ଆଗରେ ହାତଛିଞ୍ଚାଡ଼ି କଥା କହିବା ଠିକ୍ ନୁହେଁ । ସବୁକଥାରେ ତୁମେ ଏମିତି ହାତ ଛିଞ୍ଚାଡ଼ି କଥା କହିଲେ କିଏ ତୁମକୁ ଭଲ ପାଇବ ।

ହାତକୁ ଦି'ହାତ କରିବା (ବାହା କରିବା)- ଏ ବର୍ଷ ତ ଗଲା । ଆର ବର୍ଷକୁ ନିଶ୍ଚିତ ଭାବରେ ପୁଅକୁ ହାତକୁ ଦି'ହାତ କରାଇବି ।

ହାତ ଧରିବା (ବିବାହ କରିବା)- ସବୁଝିଅ ଗୁଣବାନ୍ ପୁରୁଷର ହାତଧରିବାକୁ ଇଚ୍ଛାକରନ୍ତି ।

ହାତାହାତି ହେବା (ମାରପିଟ୍ ହେବା)- ସାମାନ୍ୟ କଥାରୁ ଦୁଇସାଙ୍ଗ ହାତାହାତି ହୋଇଗଲେ ।

ହାତପାତିବା (ମାଗିବା)- ପ୍ରକୃତ ଭକ୍ତ ଶ୍ରଦ୍ଧା, ଭକ୍ତି, ଜ୍ଞାନ ଓ ମାତୃଭୂମିର ସେବାପାଇଁ ଭଗବାନଙ୍କ ଠାରେ ହାତ ପାତିଥାଏ ।

ହାତବାନ୍ଧି ବସିବା (ନିରୁପାୟ ହେବା)- ଚାକିରି ଯିବା ପରେ ନରୋତ୍ତମ ହାତବାନ୍ଧି ବସିଛି ।

ହାତକୁ ହାତ ମିଶାଇବା (ମିଳିତ ହୋଇ କାର୍ଯ୍ୟ କରିବା)- ହାତକୁ ହାତ ମିଶାଇଲେ କାର୍ଯ୍ୟ ସହଜରେ ହୋଇଯାଏ ।

ହାତରୁ ଖାଇ ଘୋଡ଼ା ଆଗରେ ଡେଇଁବା (ଅଯଥା କଷ୍ଟ ସ୍ୱୀକାର କରିବା)- ମନ୍ତ୍ରୀ, ଏମ୍.ଏଲ୍.ଏ. ଙ୍କ ପାଖକୁ ଦୌଡ଼ି ଦୌଡ଼ି ସ୍କୁଲପାଇଁ ଟଙ୍କାଟିଏ ମିଳିଲାନି । ହାତରୁ ଖାଇ ଘୋଡ଼ା ଆଗରେ ଡେଇଁବା କେବଳ ସାର ହେଲା ।

ହାତେ ମାପି ଚାଖଣ୍ଡେ ଚାଲିବା (ସାବଧାନରେ କାମ କରିବା)- ବର୍ତ୍ତମାନ ସାମାଜିକ ବ୍ୟବସ୍ଥା ଯାହା, ହାତେ ମାପି ଚାଖଣ୍ଡେ ଚାଲିବା ଉଚିତ ।

ହାତରେ ନ ମାରି ଭାତରେ ମାରିବା (କୌଶଳରେ ଜୀବିକାରୁ ଉଚ୍ଛେଦ କରିବା)- ଅଫିସର ହୋଇଛ ବୋଲି ପିଅନଟାକୁ ହାତରେ ନ ମାରି ଭାତରେ ମାରିଦେଲେ ! ଧର୍ମ ସହିବ ନାହିଁ ।

ହାତକୁ ନେବା (ଦାୟିତ୍ୱ ବହନ କରିବା)- ରାଜୁବାବୁ ଯେତେବେଳେ କାମଟାକୁ ହାତକୁ ନେଲେଣି, ଆଉ ଚିନ୍ତା କରିବାର ନାହିଁ । ନିଶ୍ଚିତ ଶୀଘ୍ର ଶେଷ ହେବ ।

## କ୍ରିୟାହୀନ ରୂଢ଼ି

ଅକଲ ଗୁଡ୍ଡୁମ (ବୁଦ୍ଧିବଣା ହେବା)- ଯଦୁ ସାହୁ ରାଧୁ ସାହୁକୁ ପୋଲିସଦ୍ୱାରା ବନ୍ଧେଇବ ବୋଲି ଚେଷ୍ଟା କରୁଥିଲା; ମାତ୍ର ରାଧୁ ତା' ନାଁରେ ଆଗରୁ ଅଦାଲତରେ ମୋକଦ୍ଦମା ଆରମ୍ଭ କରିଦେଲା । ଫଳରେ ଯଦୁର ସବୁ ଅକଲ ଗୁଡ୍ଡୁମ ହେଲା ।

ଅକଲସଲାମି (ଉଚିତ ଶାସ୍ତି, ଉଚିତ୍ ଶିକ୍ଷା)- ରାମ ଶ୍ୟାମଠାରୁ ସାହିତ୍ୟ ବହିଟି ମାଗି ନେଇ ଫେରାଇଲା ନାହିଁ । କିଛି ଦିନ ପରେ ଶ୍ୟାମ ରାମଠାରୁ ଗଣିତ ବହିଟି ମାଗି ନେଇ ଅକଲସଲାମି ଦେଲା ।

ଅକାଳ କୁଷ୍ମାଣ୍ଡ (ଅଯୋଗ୍ୟ)- ଧୃତରାଷ୍ଟ୍ରଙ୍କର ସମସ୍ତ ପୁତ୍ର ଅକାଳକୁଷ୍ମାଣ୍ଡ ଥିଲେ ।

ଅକାଳଚଢ଼କ (ଆକସ୍ମିକ ବିପଦ)- ମୂଲିଆ ରଘୁଆର ଘର ଖଣ୍ଡିକ ଝଡ଼ି ବର୍ଷାରେ ଭାଙ୍ଗିଗଲା । ଏହା ତା' ପାଇଁ ଅକାଳଚଢ଼କ ଥିଲା ।

ଅଖଢ଼ିଲାକୁ ଚକଢ଼ିଲା (ସଂପୂର୍ଣ୍ଣ ବିଶୃଙ୍ଖଳା) - ବାପା ମଲା ପରେ ପୁଅମାନେ କେହି କାହାକୁ ମାନୁନାହାନ୍ତି । ଯେ ଯା' ଚାହିଁଲା କଲା । ଏହାକୁ କହନ୍ତି ଅଖଢ଼ିଲାକୁ ଚକଢିଲା ।

ଅଗମୂଳ (କ୍ରମିକତା ବା ସାରବତ୍ତାର ଅଭାବ)- ତୁମେ ଇଆଡୁ ସିଆଡୁ ଏମିତି କ'ଣ କହୁଛ । ମୁଁ ତ ତୁମ କଥାର କିଛି ଅଗମୂଳ ପାଉନାହିଁ ।

ଅନ୍ଧ ବୁଝାମଣା (ଅନ୍ୟାୟ ବିଚାର)- ଦୋଷୀକୁ ଛାଡ଼ି କରି ନିର୍ଦ୍ଦୋଷକୁ ଦଣ୍ଡ ଦେବା ତ ଅନ୍ଧ ବୁଝାମଣା ଅଟେ ।

ଅନ୍ଧର ଲଉଡ଼ି (ଅସହାୟର ସହାୟ, ଏକମାତ୍ର ସହାୟ)- ନବୀନ ତା' ବାପା ମା'ଙ୍କର ଅନ୍ଧର ଲଉଡ଼ି ଅଟେ ।

ଅରଣ୍ୟରୋଦନ (ବୃଥା ପ୍ରାର୍ଥନା/ବୃଥା ପରିଶ୍ରମ)- ଡାକ୍ତର ବାବୁ ନିତାନ୍ତ କୃପଣଲୋକ । ସେ ପୂଜାଚାନ୍ଦା ଆଦୌ ଦେବେ ନାହିଁ । କେବଳ ତାଙ୍କ ପାଖକୁ ବାରମ୍ବାର ଧାଇଁବାଟା ଅରଣ୍ୟରୋଦନରେ ପରିଣତ ହେବ ସିନା ।

ଅଲଣା କଥା (ମୂଲ୍ୟହୀନ କଥା)- ଭାଷଣରେ ଅଲଣା କଥା କହିଲେ, କେହି ଶୁଣିବେନି ।

ଅସିଆକାଳର ମସିଆ (ଅତିପୁରୁଣା)- ଆମ ଘରେ ଅସିଆକାଳର ମସିହା ତାଳପତ୍ର ପୋଥି ଅଛି ।

ଅହିନକୁଳ ସଂପର୍କ (ଘୋର ଶତ୍ରୁତା)- ଜେନା ଓ ପ୍ରଧାନ ପରିବାର ମଧ୍ୟରେ ବହୁଦିନରୁ ଅହିନକୁଳ ସଂପର୍କ ରହିଛି । ସେମାନଙ୍କ ଭିତରେ ବିବାହ କଥା ଉଠୁଛି କାହିଁକି ?

ଅର୍ଦ୍ଧଚନ୍ଦ୍ର (ଗଳାଧକ୍କା) - ମାଲିକ ସାମାନ୍ୟ ଭୁଲପାଇଁ ଚାକରକୁ ଅର୍ଦ୍ଧଚନ୍ଦ୍ର ଦେଇ ବିଦା କରିଦେଲେ ।

ଆକାଶକୁସୁମ (ଅସମ୍ଭବ କଥା)- ଦେଶରୁ ସଂପୂର୍ଣ୍ଣରୂପେ ଦୁର୍ନୀତି ଲୋପ କରିବା ଆକାଶକୁସୁମ ମାତ୍ର ।

ଆକାଶ ପାତାଳ ପ୍ରଭେଦ (ବହୁ ତଫାତ୍)- ବର୍ତ୍ତମାନର ନେତାମାନଙ୍କର କଥା ଓ କାମରେ ଆକାଶପାତାଳ ପ୍ରଭେଦ ରହିଛି ।

ଆରପାରିର ଡାକ (ମୃତ୍ୟୁସନ୍ନିକଟ) - ଆଉ ଲୋକସେବା କରିବାପାଇଁ ମୋର ବଳବୟସ ନାହିଁ । ଏବେ ତ ମୋତେ ଆରପାରିର ଡାକ ଶୁଭିଲାଣି ।

ଆଶାଭରସା (ଏକମାତ୍ର ସହାୟ)- ବିପଦରେ ଈଶ୍ୱର ହିଁ ସମସ୍ତଙ୍କର ଆଶାଭରସା ଅଟନ୍ତି ।

ଉଡ଼ା ଚଢ଼େଇ (ସ୍ଥାୟୀ ଭାବରେ ନ ରହିବା ଲୋକ)- ରାମ ରଥ କୁଆଡୁ ଆସି ଏଠି ରହୁଛି । ଦେଉଳର ପରିଚାଳନା ତାକୁ କାହିଁକି ଦେଉଛ ? ସେ ପରା ଉଡ଼ା ଚଢ଼େଇ, ଉଡ଼ିଯିବ ।

ଉତ୍ତମ ମଧ୍ୟମ (ନିସ୍ତୁକମାଡ଼) - ପିଲାଚୋରକୁ ଲୋକମାନେ ଉତ୍ତମ ମଧ୍ୟମ କରି ଦେଲେ ।

ଉପୁରିମାଲ (ନିର୍ଦ୍ଦିଷ୍ଟ ଆୟରୁ ଅଧିକ, ମାଗଣା ମିଳିବା, କଳାଧନ)- ଯାହା ଘରକୁ ପ୍ରତିଦିନ ଉପୁରିମାଲ ଆସୁଛି, ସେ ତ ପ୍ରତିଦିନ ବିଳାସବ୍ୟସନରେ ଚଳିପାରିବ ।

ଉପରଠାଉରିଆ (ଗଭୀରତାର ଅଭାବ, ସାରବତ୍ତାର ଅଭାବ)- ସବୁବେଳେ ଏମିତି ଉପରଠାଉରିଆ କଥା କହନାହିଁ, କିଛି ଥିଲା ଭଳି କହ ।

ଏକଘରକିଆ (ସାମାଜିକ ବାସନ୍ଦ)- ଜଣକୁ ଏକଘରକିଆ କରି ରଖିବା ମାନସିକ ଅଧିକାରର ସମ୍ପୂର୍ଣ୍ଣ ଉଲ୍ଲଙ୍ଘନ ।

ଏକାଟିଆ ବାର୍‌ହା (ସ୍ୱାର୍ଥପର) - ଅନ୍ୟମାନଙ୍କ ସହ ସଂପର୍କ ନ ରଖି ଏକାଟିଆ ବାର୍‌ହା ହୋଇ ଚଳିଲେ, ସମୟ ଆସିଲେ ଲୋକ ଅସୁବିଧାରେ ପଡ଼ିବ ।

ଏ ଘର ମାଉସୀ ସେ ଘର ପିଉସୀ (ନିଜର ସ୍ୱାର୍ଥ ପାଇଁ ସବୁଠି ଭଲେଇ ହେବା/ଯେ ଉଭୟତ୍ର ଛିଦ୍ର କହି କଳି ଲଗାଏ)- ଚମ୍ପାନାନୀକୁ ସାଧାରଣ ନାରୀଟିଏ ବୋଲି ଭାବିବନି ସେ ପରା ଏ ଘର ମାଉସୀ ସେ ଘର ପିଉସୀ ।

ଓଳିଆରୁ ଗଜା (ଜନ୍ମରୁ ଚତୁର)- ନରିଆର ପୁଅ ହରିଆ କଥା କହୁଛ, ତାକୁ କିଛି ଅଜଣା ନାହିଁ, ସେ ପରା ଓଳିଆରୁ ଗଜା ।

ଓଲୁଙ୍କ ବୋକଚାବୁହା (ଅତି ବୋକା)- ବଜାରରୁ ପାଞ୍ଚଟି ଜିନିଷରୁ ତିନିଟା କିଣିପାରୁ ନ ଥିବା କପିଳ କକେଇ ଗୋଟିଏ ଓଲୁଙ୍କ ବୋକଚା ବୁହା ।

କପାଳ ଲିଖନ (ଭାଗ୍ୟଫଳ) – ମନୁଷ୍ୟ ତା'ର କପାଳ ଲିଖନକୁ ପରିବର୍ତ୍ତନ କରିପାରିବ ନାହିଁ ।

କରଛଡ଼ା (ଦାୟିତ୍ୱରୁ ଦୂରେଇବା) – ସମୂହକାର୍ଯ୍ୟରେ କରଛଡ଼ା ଦେବା ଠିକ୍ ନୁହେଁ ।

କଞ୍ଚାହାତ (ଅପରିପକ୍ୱ) – ପ୍ରାୟ ପ୍ରତ୍ୟେକ କବି ଲେଖକଙ୍କର ପ୍ରଥମ ରଚନା କଞ୍ଚା ହାତର ହୋଇଥିବାରୁ ତ୍ରୁଟିଶୂନ୍ୟ ନୁହେଁ ।

କାଠିକର ପାଠ (କଷ୍ଟସାଧ)- ବଜାର ଦର ଯେମିତି ହେଲାଣି, ଅଳ୍ପ ରୋଜଗାରରେ ଚଳିବା କାଠିକର ପାଠ ।

କୁମ୍ଭୀରକାନ୍ଦଣା (ଛଳନା/ଉପରଠାଉରିଆ ସହାନୁଭୂତି)- ତୁମର କୁମ୍ଭୀରକାନ୍ଦଣା ମୋ ଉପରେ କୌଣସି ପ୍ରଭାବ ପକାଇବ ନାହିଁ ।

କୁହାମୁଣ୍ଡାକପିଳା (ବେଶି କଥା କହି କାମ କରୁ ନ ଥିବା ଲୋକ)- ରାଜନୀତି କ୍ଷେତ୍ରରେ ଏବେ ବହୁ କୁହାମୁଣ୍ଡା କପିଳାଙ୍କର ସଂଖ୍ୟା ଢେର ଅଧିକ ।

କୂପମଣ୍ଡୁକ (ସଂକୁଚିତ ପରିବେଶରେ ବଢ଼ିଥିବା)- ବିଜୟ ତ ଗୋଟେ କୂପମଣ୍ଡୁକ । ତାକୁ ଦେଶ ବିଦେଶ ଖବର ପଚାରନ୍ତୁ ନାହିଁ ।

ଖତ ଗଦାରେ ପଦ୍ମ (ପ୍ରତିକୂଳ ପରିବେଶରେ ପ୍ରତିଭାଶାଳୀର ଜନ୍ମ)- ଓଡ଼ିଶାର ପ୍ରଥିତଯଶା କବି ଡକ୍ଟର ମାୟାଧର ମାନସିଂହ ପାରିକୁଦର ନିପଟ ମଫସଲ ନନ୍ଦଳା ଗ୍ରାମରେ ଜନ୍ମ ହୋଇଥିଲେ । ଯଥାର୍ଥରେ ସେ ଥିଲେ ଖତଗଦାରେ ପଦ୍ମ ।

ଗଜମୂର୍ଖ (ମହାମୂର୍ଖ, ଅତ୍ୟନ୍ତ ମୂର୍ଖ)- ସାଧାରଣ ଶିକ୍ଷାଗତ ଯୋଗ୍ୟତା ନ ଥିବା ଗଜମୂର୍ଖମାନେ ବେଦବେଦାନ୍ତ ଆଲୋଚନା କରିବା ହାସ୍ୟାସ୍ପଦ ଘଟଣା ।

ଗହମନିଦ (ଗାଢ଼ନିଦ୍ରା) – କଠିନ ପରିଶ୍ରମ ପରେ ଲୋକଟି ଗହମ ନିଦରେ ଶୋଇଛି ।

ଗୃହଶତ୍ରୁ ବିଭୀଷଣ (ଆତ୍ମୀୟ ଲୋକ ଶତ୍ରୁ) – ଅର୍ଥ ଲୋଭରେ କେହି କେହି ପ୍ରତିରକ୍ଷା କର୍ମଚାରୀ ଦେଶର ଗୋପନୀୟତା ଶତ୍ରୁ ହାତରେ ଟେକି ଦେଉଛନ୍ତି । ଏମାନଙ୍କୁ ଗୃହଶତ୍ରୁ ବିଭୀଷଣ ଛଡ଼ା ଆଉ କିଛି କୁହାଯାଇପାରିବ ନାହିଁ ।

ଗୋଟିଏ ଚାଉଳରେ ଗଢ଼ା(ଅତି ସୁନ୍ଦର)- ଐଶ୍ୱର୍ଯ୍ୟା ଗୋଟିଏ ଚାଉଳରେ ଗଢ଼ା ଝିଅଟିଏ ।

ଗୋଠ ଖଣ୍ଡିଆ (ଅସାମାଜିକ/ଗୋଷ୍ଠୀରୁ ଅଲଗା)- ଗୋଠ ଖଣ୍ଡିଆ ଲୋକ ଅନେକ ସମୟରେ ଅସୁବିଧାରେ ପଡ଼େ ।

ଗୋବରଗଣେଶ (ନିର୍ବୋଧ, ମୂର୍ଖ)- ଏବେ ବି ସମାଜରେ ସାଧାରଣ ହିସାବକିତାବ ଜାଣି ନ ଥିବା ଅନେକ ଗୋବରଗଣେଶ ଅଛନ୍ତି ।

ଗଙ୍ଗାଜଳରେ ଗଙ୍ଗାପୂଜା (ଦାତାର ଧନରେ ଦାତାକୁ ସମ୍ମାନ)- ଗ୍ରାମବାସୀ ଏମ୍.ଏଲ୍.ଏ.ଙ୍କ ଠାରୁ ଚାନ୍ଦା ନେଇ ତାଙ୍କୁ ସଭାରେ ସମ୍ବର୍ଦ୍ଧନା କଲେ । ଏହା ତ ଗଙ୍ଗା ଜଳରେ ଗଙ୍ଗାପୂଜା ଭଳି ହେଲା ।

ଘରଢିଙ୍କି କୁମ୍ଭୀର (ନିଜଲୋକ ଶତ୍ରୁ)- ସଦାନନ୍ଦର ଭାଇ ନିତ୍ୟାନନ୍ଦ ତ ଘରଢିଙ୍କି କୁମ୍ଭୀର । ଅନ୍ୟକୁ ଦୋଷ ଦେବାରେ ଲାଭ ନାହିଁ ।

ଘରବୁଡ଼ା (ଅନ୍ୟର କ୍ଷତିକାରକ)- ଆଜିର ସମାଜରେ ଘରବୁଡ଼ାଙ୍କ ସଂଖ୍ୟା ବଢ଼ିବଢ଼ି ଚାଲିଛି ।

ଘୋଷାବଳଦ (କିଛି ନ ବୁଝି ମୁଖସ୍ଥ କରିବା)- ଘୋଷାବଳଦ ହୋଇ ଲାଭ କ'ଣ ? ପାଠ ଟିକେ ବୁଝିବାକୁ ଚେଷ୍ଟା କର ।

ଘରବୁଡ଼ି ପାଣି ଆଣ୍ଠୁଏ (ଅବସ୍ଥା ଅସମ୍ଭାଳ)- ବାପାମା'ଙ୍କ ମୃତ୍ୟୁ ପରେ ଛୁଆ ଦି'ଟାଙ୍କ ପାଇଁ କିଛି ବ୍ୟବସ୍ଥା ନ କଲେ, ଘରବୁଡ଼ି ପାଣି ଆଣ୍ଠୁଏ ହେବ ।

ଚାରିଦଉଡ଼ି କଟା (ସମ୍ପୂର୍ଣ୍ଣ ବିଶୃଙ୍ଖଳ/ବେପରୁଆ)- ପରୀକ୍ଷାରେ ଫେଲ ହୋଇ ଚନ୍ଦନ କିଛି କାମଧନ୍ଦା କଲାନି । ବର୍ତ୍ତମାନ ଖାଲି ଚାରିଦଉଡ଼ି କଟା ହୋଇ ବୁଲୁଛି ।

ଛକାପଞ୍ଝା (ସତର୍କତା ଅବଲମ୍ବନ)- ପାଖ ପଡ଼ୋଶୀ ହୋଇ ମଧ୍ୟ ଦୁଇ ପରିବାର ଭିତରେ ପଡୁନାହିଁ । ସେମାନେ ପରସ୍ପର ଛକାପଞ୍ଝା ହୋଇ ଚାଲୁଛନ୍ତି ।

ଛୁଞ୍ଚିମାଛି ପରୀକ୍ଷା (ତନ୍ନତନ୍ନ ଅନୁସନ୍ଧାନ/ଟିକିନିଖି ପରୀକ୍ଷା)- ଶିକ୍ଷକମାନେ ପରୀକ୍ଷାର୍ଥୀମାନଙ୍କୁ ଟିକିନିଖି ପରୀକ୍ଷା କରି ପରୀକ୍ଷାକୋଠରିକୁ ଛାଡ଼ିଲେ ।

ଛୋଟ ମୁହଁରେ ବଡ଼ କଥା (ଅଯୋଗ୍ୟବ୍ୟକ୍ତିର ବାକ୍‌ଚାତୁରୀ ବା ବାହାଦୁରି) ସମ୍ବିତ୍‌କୁ ନିଜ ଅଞ୍ଚଳର ଲୋକେ ଜାଣନ୍ତି ନାହିଁ । ସେ ପୁଣି ଲୋକସଭାପାଇଁ ପ୍ରତିଯୋଗିତା କରିବ ବୋଲି କହୁଛି । ଏହା ତା'ର ଛୋଟ ମୁହଁରେ ବଡ଼କଥା ।

ଜଡ଼ାତେଲ ମେଣ୍ଢାବାଳ (ଘନିଷ୍ଠସମ୍ବନ୍ଧ)- ଯେଉଁଠି ଚୋର ଓ ପୋଲିସ୍ ଜଡ଼ାତେଲ ମେଣ୍ଢାବାଳ, ସେଠାରେ ସାଧାରଣ ଲୋକଙ୍କ ଅବସ୍ଥା କ'ଣ ହେବ ?

ଜପାମାଳି(ଅତିପ୍ରିୟ/ଘାରିହେବା)- (୧) ନାତିଟି ଏବେ ବୁଢ଼ା ବାପାଙ୍କ ଜପାମାଳି ହୋଇଛି । (୨) ପିତାଙ୍କର ମୃତ୍ୟୁବେଳର କେତୋଟି ଉପଦେଶକୁ ପୁଅ ଜପାମାଳି କରିଛି ।

ଜହ୍ନିମଞ୍ଜିପରି ଗୋରା (ଅତିକଳା)- ଜୟଶ୍ରୀକୁକୁ ମୁଁ କ'ଣ ଦେଖିନି, ସେ ପରା ଜହ୍ନିମଞ୍ଜି ପରି ଗୋରା ।

ଜୀବନ ମୂର୍ଚ୍ଛା (ଆପ୍ରାଣ ଉଦ୍ୟମ)- ଭାରତୀୟ ହକିଦଳ ଅନ୍ତର୍ଜାତୀୟସ୍ତରରେ ଗୌରବ ଅର୍ଜନପାଇଁ ଜୀବନମୂର୍ଚ୍ଛା କରି ଖେଳୁଛନ୍ତି ।

ଜୋକ ମୁହଁରେ ଲୁଣ (ଗର୍ବ ଭାଙ୍ଗିବା)- ଜଗା ପାଟିତୁଣ୍ଡ କରି ଗାଁ'ଲୋକଙ୍କୁ ଡକାଉ ଥିଲା । ପୋଲିସ ଆସିଯିବାରୁ ଜୋକ ମୁହଁରେ ଲୁଣ ପରି ରହିଲା ।

ଝାଳବୁହା ଧନ (କଷ୍ଟାର୍ଜିତ ସଂପତ୍ତି)- କେହି ଝାଳବୁହା ଧନକୁ ପାଣି ପରି ଖର୍ଚ୍ଚ କରିବାକୁ ପସନ୍ଦ କରିବେ ନାହିଁ ।

ଠଠାଠି(ଦାରିଦ୍ର୍ୟ)- ତାଙ୍କ ଘରେ ଏବେ ଠଠାଠି; ସେ ଅନ୍ୟକୁ ସାହାଯ୍ୟ କରିବେ ବୋଲି ଆଶା କରୁଛ କିପରି ?

ଢୋଲ ଭିତରେ ମୂଷା (ଗୁପ୍ତରେ ଅନିଷ୍ଟକାରୀ)- ସୁଦର୍ଶନ ବାବୁଙ୍କ ଘରକଥା, ତାଙ୍କ ଭାଇ ବାହାରେ ପ୍ରକାଶ କରିଦେଲେ । ସେ ତ ଢୋଲ୍ ଭିତରେ ମୂଷା, କହିବେ କାହାକୁ ।

ତେରଦିନିଆ ଯମ (ସ୍ୱଳ୍ପକାଳ କ୍ଷମତା ଲାଭ)- ଦେବେଶ ଫୁଟ୍‌ବଲ୍ ଦଳର କ୍ୟାପଟେନ୍ ନିର୍ବାଚିତ ହେବା ପରେ କାହାକୁ ଖାତିର କରୁନାହିଁ । ଏହା ଦେଖି ସମସ୍ତେ କୁହାକୁହି ହେଲେ, ଭଲ ତେର ଦିନିଆ ଯମ ହୋଇଛି ।

ଦାନ ଉପରେ ଦକ୍ଷିଣା (ଲଗାତର କ୍ଷତି ବା ଅପବ୍ୟୟ)- ବାପା ପୁଅକୁ କହିଲେ, 'ଲକ୍ଷେ ଟଙ୍କା ତ ନେଲୁ, ସେତକ ଉଡ଼ାଇ ଦେଲୁ । ଆଉ ପୁଣି ଲକ୍ଷେ ମାଗୁଛୁ, କେଉଁ ମୁହଁରେ । କ'ଣ ଦାନ ଉପରେ ଦକ୍ଷିଣା ଦେବି ?

ଦିଅଁ ଦେଖା କଦଳୀ ବିକା (ଏକ ସମୟରେ ଦୁଇକାର୍ଯ୍ୟ ସାଧନ)- ନରେଶ କାଶ୍ମୀର ଭ୍ରମଣରେ ଯାଇଥିଲା । ସେଠାରୁ କିଛି ଗରମ ପୋଷାକ ଆଣିଥିଲା । ଗାଁ'ରେ ବିକି ଭଲ ଦି' ପଇସା ପାଇଲା । ଏହାକୁ କହନ୍ତି, ଦିଅଁ ଦେଖା କଦଳୀ ବିକା ।

ଦେହଛଡ଼ା (ଦାୟିତ୍ୱହୀନ)- ଦେହଛଡ଼ା ହୋଇ କେହି କାର୍ଯ୍ୟ କରିବା ଉଚିତ ନୁହେଁ ।

ଦେହଲଗା (ଅତି ବିଶ୍ୱାସୀ)- ଦୟାନିଧି ଦୀନବନ୍ଧୁ ବାବୁଙ୍କର ଦେହଲଗା ବନ୍ଧୁ ।

ଦୀପତଳ ଅନ୍ଧାର (ନିଜ ଅଞ୍ଚଳ ପ୍ରତି ବା ଲୋକ ପ୍ରତି ଦୃଷ୍ଟି ନ ଦେବା)- ରାମପୁର ଗାଁ'ରେ ଅଧ୍ୟାପକ, ଡାକ୍ତର, ଇଞ୍ଜିନିୟର ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ ଅଧିକାରୀଙ୍କ ଅଭାବ ନାହିଁ; ମାତ୍ର ଗାଁ'କୁ ଭଲ ରାସ୍ତାଟିଏ ନାହିଁ । କଥାରେ କହନ୍ତି ପରା ଦୀପତଳ ଅନ୍ଧାର ।

ଦରିଦ୍ର ପଞ୍ଚାକ୍ଷର (ଦରିଦ୍ରର ଚିନ୍ତା)- (କ'ଣ କରିବା-ଏହି ପାଞ୍ଚ ଅକ୍ଷର)- ଅଳସୁଆ ଲୋକ ହିଁ ସବୁବେଳେ ଦରିଦ୍ର ପଞ୍ଚାକ୍ଷର ଜପୁଥାଏ ।

ଦିଅଁ ଗଢୁଗଢୁ ମାଙ୍କଡ଼- (ଭଲ କରିବାକୁ ଯାଇ ମନ୍ଦ କରି ବସିବା)- ସୁରେଶ ସାର୍ଟ ସିଲାଇପାଇଁ ଥରକୁ ଥର କନା କାଟିବାରେ ବ୍ୟସ୍ତ, ଏଣେ ଦେଖିଲା ବେଳକୁ ଦିଅଁ ଗଢୁ ଗଢୁ ମାଙ୍କଡ଼ ହୋଇଗଲାଣି ।

ଦେଖା ସୁନ୍ଦର କଖାରୁ ବଡ଼ି (ବାହାର ଚହଟଚିକ୍କଣ ଭିତର ଫମ୍ପା)- ତୁମ୍ଭେମାନେ ନରସିଂହ ବାବୁଙ୍କ ପାଖକୁ ଦେଉଳ ତିଆରି କାମରେ ଯିବାପାଇଁ କହୁଛ । ତାଙ୍କଦ୍ୱାରା କିଛି ହେବ ନାହିଁ । ସେ ପରା ଜଣେ ଦେଖାସୁନ୍ଦର କଖାରୁ ବଡ଼ି ।

ନ ଛୋଡ଼ବନ୍ଧା (ଏକଜିଦିଆ)- ଧାନକଟା ସମୟ । ପଇସାର ଘୋର ଅଭାବ । ପୁଅ କିନ୍ତୁ ଏଣେ ମୋବାଇଲ ଫୋନ୍‌ଟାଏ କିଣିବାପାଇଁ ନ ଛୋଡ଼ବନ୍ଧା ହେଉଛି । କରିବି କ'ଣ ?

ନାଟର ଗୋବର୍ଦ୍ଧନ (ଅନର୍ଥର ମୂଳ)- ଆମ ଗାଁ'ରେ ଯେତେ କଳିତକରାଳ ଲାଗିଛି, ସେ ସବୁର ନାଟର ଗୋବର୍ଦ୍ଧନ ମଦନ ଦାଶ ।

ପାପଧନ (ଅସତ୍ ଉପାୟରେ ଅର୍ଜିତ ଧନ)- ପାପଧନ ଲୋକକୁ ଶାନ୍ତି ଦେଇପାରେ ନାହିଁ ।

ପାଲିଙ୍କି ଉପରେ ପାଟଛତା (ଉନ୍ନତି ଉପରେ ଉନ୍ନତି)- ରବିବାବୁଙ୍କର ଦୁଇଟା ସ୍ପଞ୍ଜ ଆଇରନ୍ କାରଖାନା ଥିଲା । ଏବେ ଆଉ ଏକ ପ୍ଲାଷ୍ଟିକ୍ ପାଇପ୍ କାରଖାନା ବସାଇଲେ । ଯାହା କହନ୍ତି, ତାଙ୍କର ଏବେ ପାଲିଙ୍କି ଉପରେ ପାଟଛତା ।

ପୋଥି ବାଇଗଣ (ପୁସ୍ତକଗତ ବିଦ୍ୟା/ଅଭିଜ୍ଞତାଶୂନ୍ୟ ଶିକ୍ଷା ବାସ୍ତବ କାର୍ଯ୍ୟରେ ଲାଗେ ନାହିଁ)- କୃଷି ମହାବିଦ୍ୟାଳୟରୁ ଉପାଧିଲାଭ କରୁଥିବା କୃଷିବିଶାରଦମାନେ କେବଳ ପୋଥିବାଇଗଣ । ସେମାନଙ୍କର କୃଷକ ଓ କୃଷିକ୍ଷେତ୍ର ସହିତ ପ୍ରତ୍ୟକ୍ଷ ସମ୍ପର୍କ ନ ଥାଏ ।

ଫଟାକପାଳ(ମନ୍ଦଭାଗ୍ୟ)- ମୋର ତ ଫଟାକପାଳ । ଗୋଟିଏ ହେଲେ ପିଲା ଯୋଗ୍ୟ ହେଲେନି ।

ଫାଙ୍କା ଆଓ୍ୱାଜ (ବୃଥା ଧମକ)- ମୁଁ ତୁମର ଫାଙ୍କା ଆଓ୍ୱାଜରେ ଡରିଯିବା ଲୋକ ନୁହେଁ ।

ବକଧାର୍ମିକ/ବିରାଡ଼ି ବୈଷ୍ଣବ (ଠକ)- ବେକରେ ତୁଳସୀମାଳ ପକାଇ ମାଛମାଂସ ଖାଉଥିବା ଚିନ୍ତା ସ୍ୱାଇଁ ଗୋଟିଏ ବକ ଧାର୍ମିକ । ଆମ ଗାଁ'ର ସାଧୁ ମହାନ୍ତି ଏକ ବିରାଡ଼ି ବୈଷ୍ଣବ । ତା' କଥାକୁ କେହି ବିଶ୍ୱାସ କରନ୍ତି ନାହିଁ ।

ବଣ ବିଛୁଆତି (ଅତି ଦୁଷ୍ଟ)- ବନା ଭାଇନାର ପୁଅ ମନୁଆ ଗୋଟେ ବଣ ବିଛୁଆତି । ତା' ସାଙ୍ଗରେ କେହି ପିଲା ମିଶନ୍ତି ନାହିଁ ।

ବାଆକୁ ବତା (କ୍ଷୀଣ ଆଶ୍ରୟ, ସାମାନ୍ୟ ପ୍ରତିରୋଧ)- ରୋଗରେ ଶଡ଼ିଶଡ଼ି ବାଇଧର ତ ଶେଷ ଅବସ୍ଥାରେ ଆସି ପହଞ୍ଚିଲାଣି । ଏବେ ଔଷଧପତ୍ର ଦେଲେ ବାଆକୁ ବତା ସିନା ହେବ ।

ବାପରାଣ ଢିଙ୍କି-ଗିଳ୍ (ବାଧ କରିବା)- ମୁଁ ତ ଏ କାମ କରିପାରିବିନି ବୋଲି ବାରମ୍ବାର କହିଲି । ମୋତେ ବାପରାଣ ଢିଙ୍କି-ଗିଳ୍ କଥା କହୁଛ କାହିଁକି ?

ବାରଦ୍ୱାର ଶୁଣ୍ଠିପିଣ୍ଡା (ଅସହାୟ ଅବସ୍ଥାରେ ଏଣେତେଣେ ବୁଲିବା)- ସରକାରଙ୍କର ଅନେକ ଯୋଜନା ଚାଲୁଥିଲେ ମଧ୍ୟ ବର୍ତ୍ତମାନ ଅନେକ ଲୋକ ରହିବା, ଖାଇବାର ଅଭାବରେ ବାରଦ୍ୱାର ଶୁଣ୍ଠିପିଣ୍ଡା ହେଉଛନ୍ତି ।

ବାହାବେଳେ ବାଇଗଣ ରୁଆ (ଆଗରୁ ପ୍ରସ୍ତୁତ ନ ହୋଇ ଶେଷ ମୁହୂର୍ତ୍ତରେ କାମ ଆରମ୍ଭ କରିବା)- ରାଜା ବର୍ଷସାରା ସ୍କୁଲକୁ ଗଲାନି । ପରୀକ୍ଷା ଆସି ମୁଣ୍ଡ ଉପରେ । ଏବେ ପାଞ୍ଚଦିନ ହେଲା ସ୍କୁଲକୁ ଯାଉଛି । ବାହାବେଳେ ବାଇଗଣ ରୁଆ କଲେ କ'ଣ ହେବ ?

ବେଡ଼ି ଉପରେ କୋରଡ଼ା (ଦୁଃଖ ଉପରେ ଦୁଃଖ)- ବନ୍ୟାରେ ଜମିତକ ବାଲିଚର ହୋଇଥିଲା । ଏବେ ଝଡ଼ରେ ଘରଖଣ୍ଡିକ ଭାଙ୍ଗିଗଲା । ଏସବୁ ଗୌରାଙ୍ଗପାଇଁ ବେଡ଼ି ଉପରେ କୋରଡ଼ା ଭଳି ।

ବୋଝ ଉପରେ ନଳିତାବିଡ଼ା (କଷ୍ଟ ଉପରେ କଷ୍ଟ)- ଶ୍ୟାମର ସ୍ତ୍ରୀ ଦୀର୍ଘଦିନରୁ ଅସୁସ୍ଥ । ଏବେ ପୁଣି ତା' ମା' ମ୍ୟାଲେରିଆରେ ଆକ୍ରାନ୍ତ । ଏହା ତା'ପାଇଁ ବୋଝ ଉପରେ ନଳିତାବିଡ଼ା ପରି ହେଲା ।

ଯଥାତଥା କରି (କୌଣସି ପ୍ରକାରରେ)- ନବଘନ ଅସୁବିଧାରେ ଥାଇ ମଧ୍ୟ ଯଥାତଥା କରି ଝିଅ ବାହାଘରଟା ସାରିଦେଲା ।

ରାଣ୍ଡୀପୁଅ ଅନନ୍ତା/ଲଙ୍ଗଳାକଟୁରୀ (ଦାୟିତ୍ୱହୀନ, ଶାସନର ବାହାରେ)- ବାପା ମଲା ପରେ ପିଣ୍ଟୁ କାହାକଥା ଶୁଣୁଛି ନା କାହାକୁ ମାନୁଛି । କେବଳ ରାଣ୍ଡିପୁଅ ଅନନ୍ତା ହୋଇ ବୁଲୁଛି ।

କାଳିଆକୁ କିଛି କାମ ଦିଅନି । ସେ କିଛି କରିବନି । କାରଣ, ସେଇଟା ପରା ଗୋଟେ ଲଙ୍ଗଳା କଟୁରୀ ।

ଲଗା ନା ପଘା (ନୀତିନିୟମ ନ ମାନିବା, ଦାୟିତ୍ୱହୀନ)- ଗୋବିନ୍ଦ ଏତେବଡ଼ ପିଲାଟେ ହେଲାଣି । ତଥାପି ତା'ର କେଉଁ କଥାରେ ଲଗା ନା ପଘା ନାହିଁ ।

ଲଙ୍କାକାଣ୍ଡ (ତୁମୁଳକାଣ୍ଡ)- ଛାତ୍ରଛାତ୍ରୀମାନେ ର୍ୟାଗିଂକୁ ନେଇ କାଲି କଲେଜରେ ତୁମୁଳକାଣ୍ଡ ଘଟାଇଛନ୍ତି ।

ଲଙ୍କାରେ ହରିଶବ୍ଦ (ଅସମ୍ଭବ ବିଷୟ)- ଗଙ୍ଗାରାମ ତ ପିଲାଦିନରୁ କୃପଣ । ଚାନ୍ଦା ମାଗିଲେ ଲୁଚେ । କଲ୍ୟାଣମଣ୍ଡପ ନିର୍ମାଣପାଇଁ ସମସ୍ତ ଅର୍ଥ ବହନ କରିବ ବୋଲି ଗ୍ରାମ ସଭାରେ ଘୋଷଣା କଲା, ଏହା ତ ଲଙ୍କାରେ ହରିଶବ୍ଦ ପରି ।

ଲଲାଟ ଲେଖନ (ଭାଗ୍ୟଲେଖା)- ବିବାହର ପାଞ୍ଚ ବର୍ଷ ପରେ ବି ମାଳତୀର କୋଳକୁ ପିଲାଟିଏ ଆସିଲାନି । ଏହା ତା'ର କପାଳଲେଖନ ।

ଶନିଦଶା (ଖରାପ ସମୟ)-ମୋର ବର୍ତ୍ତମାନ ଶନିଦଶା ପଡ଼ିଛି । ଯେଉଁ ଡାଳ ଧରିଲେ ସେ ଡାଳ ଭାଙ୍ଗି ଯାଉଛି ।

ଶ୍ରୀ(ଶି) ଅକ୍ଷର ବିବର୍ଜିତ (ମୂର୍ଖ)- ହଇହେ ଆନନ୍ଦବାବୁ, ତୁମେ ଜଣେ ଶିକ୍ଷକ ହୋଇ ଘରକୁ ଶ୍ରୀଅକ୍ଷର ବିବର୍ଜିତ ବୋହୂଟିଏ ଆଣିଲ ।

ଶ୍ରୀଅକ୍ଷର ବରୁଣେଇ ପାହାଡ଼ (ଅତିମୂର୍ଖ)- ସାହୁ ବୁଢ଼ାଟା ଗୋଟେ ଶ୍ରୀଅକ୍ଷର ବରୁଣେଇ ପାହାଡ଼ । ତା' ସହିତ ପୁରାଣଶାସ୍ତ୍ର ଆଲୋଚନା ନିରର୍ଥକ ।

ସଟାବଟା କରି (କୌଣସି ପ୍ରକାରେ)- ସୁନନ୍ଦବାବୁ ସଟାବଟା କରି ତାଙ୍କ ପରିବାରକୁ ଚଳାଉଛନ୍ତି ।

ସାତକାଣ୍ଡ ରାମାୟଣ (ବିରାଟ ବ୍ୟାପାର)- ସାମାନ୍ୟ ପିଲାକଳିକୁ ନେଇ ଦୁଇ ପରିବାର ଭିତରେ ସାତକାଣ୍ଡ ରାମାୟଣ କରିବାଟା ସୁନ୍ଦର ହେଲାନି ।

ସାତଖୁଣ ମାଫ୍ (ସମସ୍ତ ଦୋଷ କ୍ଷମା)- ତୁମେ ମଣିଷ ମାର କି ଚୋରି କର, ଯଦି ବଡ଼ଲୋକଙ୍କ ପାଖଲୋକ ହୋଇଛ, ତେବେ ତୁମକୁ ସାତଖୁଣ ମାଫ ।

ସାରୁ ଭିତରେ ମାରୁ (ଭଲ ଭିତରେ ମନ୍ଦ)- ପ୍ରଥମରୁ ମୁଁ ଭାବୁଥିଲି ଘଟଣାଟା ମିଛ; କିନ୍ତୁ ପରେ ସବୁ ଜଣା ପଡ଼ିଲା । ସାରୁ ଭିତରେ ମାରୁ ଅଛି ବୋଲି କିଏ ଜାଣିଥିଲା ?

ସୁଅ ମୁହଁର ପତର (ଅସହାୟ)- ମଣିଷର ବଡ଼େଇ, ରାଗ-ଅହଂକାର ବେଶି ଦିନର ନୁହେଁ । ସେ ମନେ ରଖିବା ଉଚିତ ଯେ ସେ ହେଉଛି ସୁଅ ମୁହଁର ପତର ।

ହାଟ ମଧ୍ୟରେ ବ୍ରହ୍ମଜ୍ଞାନ (ଅନୁପଯୁକ୍ତ ପରିବେଶରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା, ପ୍ରକାଶ୍ୟରେ ଗୋପନତଥ୍ୟ ପ୍ରକାଶ)- ବୁଝିଲ ମିଶ୍ରେ, ତୁମେ ଜଣେ ପଣ୍ଡିତ ହୋଇ ପୋଖରୀ ତୁଠରେ ପୁରାଣଶାସ୍ତ୍ର ଆଲୋଚନା କରୁଛ । ଯାହା କହନ୍ତି ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ।

ହାଡ଼େହାଡ଼େ ବଦମାସ (ଅତି ଦୁଷ୍ଟ)- ହରିଆ କଥା କହୁଛ ? ତୁମେ ତାକୁ ଚିହ୍ନି ନାହଁ । ସେଇଟା ପରା ହାଡ଼େହାଡ଼େ ବଦମାସ ।

ହାତବାରିସି (ବୋଲକରା/ଯାହାଦ୍ୱାରା କାର୍ଯ୍ୟ ହାସଲ ହୁଏ)- ନାତିଟି ଏବେ ବୁଢ଼ା ଦୀନା ଦାସର ହାତବାରିସି ହୋଇଛି । ନୋହିଲେ ବୁଢ଼ା ତା' ବିନା ଦଣ୍ଡେ ଚଳିପାରନ୍ତା ନାହିଁ ।

ହାତଶଙ୍ଖା ଦର୍ପଣ (ସୁଖମୟ ଦାମ୍ପତ୍ୟ ଜୀବନ)- ତୁଳସୀକୁ ତା' କଥା ପଚାରୁଛ କାହିଁକି ? ତାକୁ ଦେଖୁ ଦେଖୁ ତ ତା'ର ଭଲମନ୍ଦ ଜାଣି ହେଉଛି । କଥାରେ କହନ୍ତି ହାତଶଙ୍ଖା ଦର୍ପଣ ।

ହୁଙ୍କାପିଟା (ନ ବୁଝି ନ ସୁଝି କାମରେ ଲାଗିବା)- ହଇରେ ଜଗୁ ! ଜମିକୁ ପାଣି ନେବୁ ବୋଲି ସର୍ବସାଧାରଣ ରାସ୍ତାକୁ ହାଣୁଛୁ । ମନେରଖ, ଏ ହୁଙ୍କାପିଟା କାମରେ ବିପଦ ଅଛି ।

କ୍ଷୀରନୀର ସଂପର୍କ (ନିବିଡ଼ ସଂପର୍କ)- ସୁନିର୍ମଳ ଓ ସୁପ୍ରିୟ ମଧ୍ୟରେ କ୍ଷୀରନୀର ସମ୍ପର୍କ ରହିଛି । ତାକୁ ଭାଙ୍ଗିବ କିଏ ?

# ତୁଳନାତ୍ମକ ରୂଢ଼ି ବା ଉପମାଯୁକ୍ତ ରୂଢ଼ି

ଏଣ୍ଡୁଅ ପରି ମୁଣ୍ଡ ଟୁଙ୍ଗାରିବା (କିଛି ନ ବୁଝି ପ୍ରତି କଥାରେ ସମ୍ମତି ଜଣାଇବା)- ଆମ ଜେଜେବାପା ଏମିତି ଜଣେ ଲୋକ, ଯେ ଯାହା କହିଲେ ସେଥିରେ ମୁଣ୍ଡ ଟୁଙ୍ଗାରୁଥା'ନ୍ତି ।

କାଠଗଡ଼ ପରି ପଡ଼ି ରହିବା (ନିଶ୍ଚଳ ଭାବରେ ଶୋଇ ରହିବା)- ସକାଳ ଆଠଟା ହେଲାଣି, ତଥାପି ତୁ ଶେଯଟାରେ କାଠଗଡ଼ଟା ପରି ପଡ଼ି ରହିଛୁ ।

କୁଆପରି ରାଉରାଉ ହେବା (ସବୁବେଳେ ଗପିବା)- କଲ୍ୟାଣୀ ଘରେ ବାହାରେ ସବୁଠି କୁଆ ପରି ରାଉରାଉ ହେଉଥାଏ ।

କୁକୁର ପରି ଧାଇଁବା (କିଛି ପାଇବା ଆଶାରେ ପଛରେ ଗୋଡ଼ାଇବା) କେତେକ ଲୋକ ସ୍ୱାର୍ଥ ହାସଲପାଇଁ ନେତାମାନଙ୍କ ପଛରେ କୁକୁର ପରି ଧାଇଁଥା'ନ୍ତି ।

ଖୁଣ୍ଟଟାପରି ଠିଆ ହେବା (କିଛି ନ କରି କେବଳ ଠିଆ ହୋଇ ରହିବା)- କିରେ ଅମର, କେତେବେଳୁ ତ ଆସିଲୁଣି । କିଛି ନ କହି ଖୁଣ୍ଟଟା ପରି ଠିଆ ହୋଇ ରହିଛୁ କାହିଁକି ?

ଘୋଡ଼ାପରି ହସିବା (ଶାଳୀନତା ନ ରଖିବା)-ସନାତନର ଦେଶ କାଳ ଜ୍ଞାନ ନାହିଁ । ସବୁଠି ହେଁ ହେଁ ହୋଇ ଘୋଡ଼ା ପରି ହସୁଥିବ ।

ଛୁଞ୍ଚିପରି ମୁହଁ କରିବା (ରାଗରେ ମୁହଁ ଶୁଖାଇ ବସିବା)- କିଛି ନ କହି ସବୁବେଳେ ଛୁଞ୍ଚିଟା ପରି ମୁହଁ କରି ବସିରହିବା ଆଦୌ ଭଲ ନୁହେଁ ।

ଜୋକ ପରି ଲାଗିବା (କାର୍ଯ୍ୟବ୍ୟସ୍ତ)- ଆମ ଗାଁ'ର ମଧୁଦାସ ସବୁବେଳେ ଚାଷରେ ଜୋକ ପରି ଲାଗିଥାଏ ।

ଡିଙ୍କି ପରି ପଡ଼ି ରହିବା (ଶୋଇ ରହିବା)- ମହେଶ କାମଦାମ ତ କିଛି କରୁନି । କେବଳ ଶେଯରେ ଡିଙ୍କିଟା ପରି ପଡ଼ି ରହିବା ଜାଣିଛି ।

ପବନ ପରି ଧାଇଁବା (ଫୁର୍ତ୍ତିରେ କାର୍ଯ୍ୟବ୍ୟସ୍ତ ରହିବା)- ଦୀନାଦାସକୁ ଦିନରାତି ଅଣ୍ଟୁନି । ଯେତେବେଳେ ଦେଖିବ, ସେ ତା' କାମରେ ପବନ ପରି ଧାଇଁଛି ।

ପେଡ଼ି ପରି ମୁହଁ କରିବା (ମୁହଁ ଫୁଲେଇ ବସିବା/ରୁଷିବା)- ଭ୍ରମଣରେ ଯିବାପାଇଁ ବାପା ଟଙ୍କା ନ ଦେବାରୁ ମାନସୀ ପେଡ଼ି ପରି ମୁହଁ କରି ବସିଛି ।

ପ୍ରସାଦ ପରି ପାଇବା (ଆନନ୍ଦରେ ଖାଇବା)- ବୁଢ଼ାଟି ଦୁଇଦିନ ହେଲା ଖାଇ ନ ଥିଲା । ଭାତ ତରକାରି ପରଷୁ ପରଷୁ ସେ ତାକୁ ପ୍ରସାଦ ପରି ପାଇଗଲା ।

ବରଡ଼ା (କଦଳୀ) ପତ୍ର ପରି ଥରିବା- (ଭୟରେ କମ୍ପିବା)- ମୀନା ବାପାଙ୍କ ମୋବାଇଲ୍‌ଟି ଭାଙ୍ଗି ଦେଇଥିବାରୁ ଘର କୋଣରେ ଠିଆହୋଇ ବରଡ଼ାପତ୍ର ପରି ଥରୁଛି ।

ବଗ ପରି ବସିବା (ଏକାଗ୍ରତା)- ଯେତେବେଳେ ଦେଖିବ ଅବିନାଶ ବହିଟାଏ ଧରି ବଗପରି ବସିଛି ।

ଶୁଆ ପରି ଘୋଷିବା (ପାଠକୁ ବାରମ୍ବାର ଅଭ୍ୟାସ କରିବା, ମନେରଖିବା)- କେତେକ ପିଲା ବୁଝନ୍ତୁ ବା ନ ବୁଝନ୍ତୁ; ମାତ୍ର ପାଠକୁ ଶୁଆ ପରି ଘୋଷୁଥା'ନ୍ତି ।

ସାପ ପରି ଫଁ ଫଁ ହେବା (ରାଗରେ ଗରଗର ହେବା)- ପୁଅ କଥା ନ ମାନିବାରୁ ବାପା ତା' ଉପରେ ସାପପରି ଫଁ ଫଁ ହେଉଛନ୍ତି ।

ସିଂହପରି ଯୁଝିବା (ବୀରତ୍ୱର ସହିତ ଲଢ଼ିବା)- ଭାରତର ସ୍ୱାଧୀନତା ସଂଗ୍ରାମରେ ବହୁଲୋକ ଇଂରେଜ ସରକାର ବିରୋଧରେ ସିଂହ ପରି ଯୁଝିଥିଲେ ।

ହରିଣ ପରି ଚଙ୍ଗଚଙ୍ଗ ହେବା (ଚଞ୍ଚଳତା ପ୍ରକାଶ କରିବା)- ସୁବୋଧ ସ୍ଥିର ହୋଇ ବସି ରହିବା ପିଲା ନୁହେଁ । ସବୁବେଳେ ହରିଣପରି ଚଙ୍ଗଚଙ୍ଗ ହେଉଥାଏ ।

ହାତୀ ପରି ଝୁଲିବା (ଆରାମରେ ସମୟ କଟାଇବା)- ମଧୁ ମହାନ୍ତିକୁ ଲଗା ଅଛି ନା ପଘା ଅଛି, ପୁଅଝିଅଙ୍କ କାମ ତ ସବୁ ସରିଗଲା । ଏବେ ଖାଲି ଖାଇପିଇ ହାତୀ ପରି ଝୁଲୁଛି ।

ହାଣ୍ଡିପରି ମୁହଁ କରିବା (ଅଭିମାନ କରିବା)- ବାପା ଶାଢ଼ିଟିଏ ନ ଆଣିବାରୁ ସୀମା ହାଣ୍ଡିପରି ମୁହଁ କରିଛି ।

## ଆଉ କେତେକ ରୂଢ଼ି

ଅଗମୂଳ ନ ଥିବା – ଶୃଙ୍ଖଳା ନ ଥିବା ।

ଅଙ୍ଗେ ନିଭାଇବା – ନିଜେ ଅନୁଭୂତିରେ ଆଣିବା ।

ଅଣ୍ଟାପାଣି କରିବା – ଅଣ୍ଟା ପର୍ଯ୍ୟନ୍ତ ଗାଧୋଇବା ।

ଅନ୍ଧ ଦେଶରେ ଦର୍ପଣ ବିକିବା – ଅଜ୍ଞ ନିକଟରେ ଶାସ୍ତ୍ରାଲୋଚନା କରିବା ।

ଅଜାଗା ଘାଆ ଦେଖି ହୁଏ ନାହିଁ କି ଦେଖାଇ ହୁଏ ନାହିଁ – ନିଜର ବୋକାମି ବା ଭୁଲ କାହାକୁ କହି ହୁଏ ନାହିଁ କି ସହି ହୁଏ ନାହିଁ ।

ଅତି ଗଣ୍ଠିଆ – ଅତିକୃପଣ ।

ଉପରେ ପଡ଼ି କହିବା – କେହି ନ ପଚାରୁଣୁ ଆପଣା ଛାଏଁ କହିବା ।

ଏକା ଢେଲାରେ ଦୁଇଟି ଶିକାର – ଗୋଟିଏ ଉପାୟରେ ଦୁଇଟି ଲାଭ ।

ଏ ମୁହଁରେ ଆସି ସେ ମୁହଁରେ ଯିବା – ଗୋଟିଏ ଦିଗରୁ ଲାଭ ତ ଅନ୍ୟ ଦିଗରୁ କ୍ଷତି ।

କଣ୍ଟାଗଲା – ଶତ୍ରୁ ଶେଷ ହେଲା ବା ମନୋଦୁଃଖ ଦୂର ହେଲା ।

କଥାରେ ଗଣ୍ଠି ଦେବା – କୌଣସି ଗୋଟିଏ କଥାକୁ ଦୃଢ଼ କରି ଧରିବା ।

କଲିଜାଫଟା – ମର୍ମନ୍ତୁଦ ବା ମର୍ମବିଦାରକ ।

କଞ୍ଚାମିଛ – ଡାହାମିଛ ।

କଥା ତଳେ ନ ପକାଇବା – ଆଦେଶ ପାଳନ କରିବା ।

କାଚକେନ୍ଦୁ ପରି ପାଣି – ଅତି ସ୍ୱଚ୍ଛ ଜଳ ।

କପାଳ ଆଦରିବା – ଭାଗ୍ୟଫଳକୁ ଗ୍ରହଣ କରିବା ।
କୁସୁମ ଗଣ୍ଠି – ଅତିକୃପଣ ।
ଖୋଜ ଉଣ୍ଡିବା – ପଦେପଦେ ଜଗି ରହିବା, ଅନ୍ୟକାର୍ଯ୍ୟରେ ଛିଦ୍ର ଅନ୍ୱେଷଣ ।
ଗଳଗ୍ରହ – ଅବାଞ୍ଛିତ ବ୍ୟକ୍ତି, ଯାହାର ଦାୟିତ୍ୱ ବାଧ ହୋଇ ନେବାକୁ ହୁଏ ।
ଗୁଣ୍ଡାମାରିବା – କିଛି ନ କରି କେବଳ ଖାଇବା ।
ଗୋଡ଼ ଟାଣିବା – ଅନ୍ୟକୁ ଆଗେଇବାକୁ ନ ଦେବା ।
ଗାଳେଇଦେବା – ଶୁଣି ତଦନୁରୂପ କାର୍ଯ୍ୟ ନ କରିବା ।
ଗୁପ୍ତମାରୁ – ବିଶ୍ୱାସଘାତକ ।
ଗୋଇ ଖୋଳିବା – ଛିଦ୍ର ଖୋଳିବା ।
ଚଉଦ ପୁରୁଷ ଉଦ୍ଧାରିବା – ଗାଳି କରିବା ।
ଚୁଟି ହାତରେ ପଡ଼ିବା – ଅଧୀନକୁ ଆଣିବା ।
ଜଳାଞ୍ଜଳି ଦେବା – ତ୍ୟାଗ କରିବା ।
ଦଗା ଦେବା – ଆକସ୍ମିକ କ୍ଷତିକରିବା, ଠକିବା ।
ଦାଉ ସମ୍ଭାଳିବା – ବିପଦ ସହ୍ୟ କରିବା ।
ଦିନ ବଞ୍ଚିବା – କାଳ କାଟିବା ।
ଧାଡ଼ି ଦେବା – ସସୈନ୍ୟ ଆକ୍ରମଣ କରିବା ।
ନାକ ଘୋଷାରିବା – ଅତି ହୀନ ଅବସ୍ଥା କରାଇବା ।
ନାକବାଳ ଧରାଇବା – ନାନା ଭାବରେ ବ୍ୟସ୍ତ ବା ବିରକ୍ତ କରାଇବା ।
ପାଣିରେ ପଡ଼ିବା – ଅକାରଣରେ ନଷ୍ଟ ହେବା ।
ବାଟକରିବା – ଉପାୟ ନିର୍ଦ୍ଧାରଣ କରିବା ।
ଦାନାବାନ୍ଧିବା – ସୁଖ୍ୟାତିଲାଭ କରିବା ।
ମନବଳିବା – ଆଗ୍ରହ ଜନ୍ମିବା ।
ମୁଣ୍ଡଉପରେ – ଅଳ୍ପଦିନ ପରେ, ଅତି ନିକଟରେ ।
ମୁଣ୍ଡଖାଇବା – ସର୍ବନାଶ କରିବା, ଋଣ ପକାଇବା ।
ମୁଣ୍ଡଟେକିବା – ଉନ୍ନତି କରିବା, କାର୍ଯ୍ୟରେ ଅଗ୍ରସର ହେବା ।
ମୁଣ୍ଡରେ ପଶିବା – ବୁଝିପାରିବା ।
ମୁହେଁମୁହେଁ କହିବା – ସମ୍ମୁଖରେ ସ୍ପଷ୍ଟ କଥା କହିବା ।
ମୁଣ୍ଡ ଉପରେ ଶାଗୁଣା ଉଡ଼ିବା – ବିପଦ ପଡ଼ିବା ।
ଲଣ୍ଡଭଣ୍ଡ କରିବା – ହଇରାଣ କରିବା ।
ଶାଢ଼ି ବନ୍ଧାଇବା – ନାମ ଖ୍ୟାତ କରାଇବା ।

ଷୋଳପଣ ଇଚ୍ଛା – ସଂପୂର୍ଣ୍ଣ ଆଗ୍ରହ ।
ସୁନାଫଳିବା – ଭଲ ଫସଲ ହେବା ।
ସୂତ୍ରପାତ ହେବା – ଆରମ୍ଭ ହେବା ।
ହେଣ୍ଡି ମାରିବା – ଆନନ୍ଦରେ ନୃତ୍ୟ କରିବା ।
କ୍ଷୀରଦେଇ ନାଗସାପ ପୋଷିବା – ଦୁଷ୍ଟକୁ ଆପଣେଇବା ।

## କେତେକ କ୍ରିୟାର ରୂଢ଼ି

**ଉଠିବା :**

ଆଇନ ଉଠିବା (କାର୍ଯ୍ୟକାରୀ ନ ହେବା)
ଦାନା ଉଠିବା (ଖାଦ୍ୟଶେଷ ବା ଦାନାଶେଷ)
ହାତ ଉଠିବା (ମାଡ଼ଦେବା)
ତମ ଉଠିବା (ପିଟିବା)
ରଙ୍ଗ ଉଠିବା (ରଙ୍ଗ ଛାଡ଼ିଯିବା)
ଚାନ୍ଦା ଉଠିବା (ଚାନ୍ଦାରୁ ସଂଗ୍ରହ କରିବା)
ନିଲାମ ଉଠିବା (ନିଲାମରୁ ପାଇବା)
ଚପଲ ଉଠିବା (ମାଡ଼ଦେବା)

**ଉଡ଼ିବା :**

ମନ ଉଡ଼ିବା (ଆନନ୍ଦ ହେବା)
ସ୍ୱପ୍ନ ଉଡ଼ିବା (କଳ୍ପନା କରିବା)
ଟଙ୍କା ଉଡ଼ିବା (ଅପବ୍ୟୟ ହେବା)
ଧାନ ଉଡ଼ିବା (ଧାନରୁ ଅଗାଡ଼ି ବାହାରିବା)

**କରିବା :**

ମନ କରିବା (ଇଚ୍ଛା କରିବା)
ଚୁପ୍ କରିବା (ପାଟି ବନ୍ଦ କରିବା)
ଘର କରିବା (ବିବାହ ହେବା)
ସଂସାର କରିବା (ବିବାହ ହେବା)
ତିଳକୁ ତାଳ କରିବା (ଛୋଟ କଥାକୁ ବଡ଼ କଥା କରିବା)
ନାଆଁ କରିବା (ଯଶ ପାଇବା)
ହାତ କରିବା (ନିଜ ପକ୍ଷକୁ ଆଣିବା)
ଚଳୁ କରିବା (ସବୁକିଛି ଆତ୍ମସାତ୍ କରିବା)

ହାଟ କରିବା (ପ୍ରଚାର କରିବା)
ବାଦ କରିବା (ପ୍ରତିବାଦ କରିବା)
ପୁଅ କରିବା (ପୁତ୍ରରୂପେ ଗ୍ରହଣ କରିବା)

**କାଟିବା :**

ମନକୁ କାଟିବା (ମନୋଦୁଃଖ ହେବା)
ଗାରକାଟିବା (ଗାର ପକାଇବା)
ପେଟକାଟିବା (ପେଟ କଷ୍ଟ)
ଚିତାକାଟିବା (ଠକାଇବା)
ଚେରକାଟିବା (କ୍ଷତି କରିବା)
ସମୟକାଟିବା (ସମୟ ଅତିବାହିତ କରିବା)
କଥାକାଟିବା (କାହାର କଥା ମନକୁ କଷ୍ଟ ଦେବା, କଥାକୁ ଅମାନ୍ୟ କରିବା)
ଟିକେଟ କାଟିବା (ଟିକେଟ କିଣିବା)
ବାଟ କାଟିବା (ଚାଲିଯିବା)

**ଖାଇବା :**

ଚିନ୍ତା ଖାଇବା (ଚିନ୍ତାଗ୍ରସ୍ତ ହେବା)
ଲାଞ୍ଚ ଖାଇବା (ଉତ୍କୋଚ ନେବା)
ପିଟା ଖାଇବା (ମାଡ଼ ଖାଇବା)
ଲାଗି ଖାଇବା (ପରିଶ୍ରମ କରି ଗୁଜୁରାଣ ମେଣ୍ଟେଇବା)
କୂଳ ଖାଇବା (ନଦୀ ଅତଡ଼ା ଖାଇବା)
ଖପରାରେ ଖାଇବା (ଶୋଚନୀୟ ଅବସ୍ଥା)
ଖାପ ଖାଇବା (ଉପଯୁକ୍ତ ହେବା)
ଉଇ ଖାଇବା (ଉଇଦ୍ୱାରା ନଷ୍ଟ ହେବା)
ମୁଣ୍ଡ ଖାଇବା (ରାଣ ପକାଇବା)
ଗାଳି ଖାଇବା (ନିନ୍ଦିତ ହେବା)
କାକର ଖାଇବା (କାକରରେ ଭିଜିବା)

**ଚଳିବା :**

ଗୁଆ ଚଳିବା (ସମ୍ପର୍କ ରହିବା)
କଥା ଚଳିବା (କଥାବାର୍ତ୍ତା ଆଗେଇବା)
ସଂସାର ଚଳିବା (ସଂସାର ଠିକ୍ ଭାବେ ଗତି କରିବା)

କଳ ଚଳିବା (କାରଖାନା କାର୍ଯ୍ୟ କରିବା)
ସ୍ୱର ଚଳିବା (ଗୀତ ଗାନ ହେବା)

**ଦେଖିବା :**

ସୁଖ ନ ଦେଖିବା (ଈର୍ଷା କରିବା)
ସ୍ୱପ୍ନ ଦେଖିବା (କଳ୍ପନାରେ ଭାସିବା)
ରୋଗୀ ଦେଖିବା (ଚିକିତ୍ସା କରିବା)
ଚାକିରି ଦେଖିବା (ଚାକିରି ଖୋଜିବା)
ନିଜ କଥା ନିଜେ ଦେଖିବା (ନିଜ ବ୍ୟବସ୍ଥା କରିବା)
ବିଷୟ ବାଡ଼ି ଦେଖିବା (ଜମିବାଡ଼ିର ତତ୍ତ୍ୱନେବା)
ନାଟ ଦେଖିବା (ନାଟ ଉପଭୋଗ କରିବା)
ଖାତା ଦେଖିବା (ପରୀକ୍ଷା ପୁସ୍ତିକା ମୂଲ୍ୟାୟନ କରିବା)
ହାତ ଦେଖିବା (ହାତରୁ ଭଲ ମନ୍ଦ କହିବା)
ଦର ଦେଖିବା(ଦର ଅନୁସନ୍ଧାନ କରିବା)

**ଧରିବା :**

ପେଟ ଧରିବା (କଷ୍ଟ ହେବା)
ହାତ ଧରିବା (ବିବାହ କରିବା, ଅନୁରୋଧ କରିବା)
ଆଖି ଧରିବା (ଆଖିରେ ଏକପ୍ରକାର ରୋଗ ହେବା)
ମନ ଘର ଧରିବା (ଚିନ୍ତାଗ୍ରସ୍ତ ହେବା)
ନିଶା ଧରିବା (ନିଶାଗ୍ରସ୍ତ ହେବା)
ଗାଡ଼ି ଧରିବା (ଗାଡ଼ିରେ ଯିବା)
ବିଛଣା ଧରିବା (ଶୋଇବା)
ରଙ୍ଗ ଧରିବା (ଠିକ୍‌ରୂପେ ରଙ୍ଗ ଲାଗିବା)
ଫଳ ଧରିବା (ଗଛରେ ଫଳ ଫଳିବା)
ଦୋଷ ଧରିବା (ଭୁଲ୍ ବାଛିବା)
ଫୁଲ ଧରିବା (ଫୁଲ ଫୁଟିବା)
ଥୟ ଧରିବା (ସ୍ଥିର ହେବା)

**ପାଇବା :**

ମନକୁ ପାଇବା (ପସନ୍ଦ ହେବା)
ଟଙ୍କା ପାଇବା (ଅର୍ଥ ମିଳିବା)

ମୁଣ୍ଡକୁ ହାତ ପାଇବା (ରୋଜଗାରକ୍ଷମ ହେବା, ସମର୍ଥ ହେବା)
ଆଖି ପାଇବା (କଳନା କରିବା)
ଥଳକୂଳ ପାଇବା (କର୍ତ୍ତବ୍ୟ ସ୍ଥିର କରିବା)
ସୁଖ ପାଇବା (ସ୍ନେହ ଆଦର କରିବା)
ହାତରେ ସ୍ୱର୍ଗ ପାଇବା (ସମସ୍ତ ସୁଖ ବା ଈପ୍‌ସିତ ଇଚ୍ଛା ପୂର୍ଣ୍ଣ ହେବା)

**ଫଳିବା :**

ଅଭିଶାପ ଫଳିବା (ଅଭିଶାପ କାର୍ଯ୍ୟକାରୀ ହେବା)
ଫଳ ଫଳିବା (ଫଳ ହେବା)
ପେଟ ଫଳିବା (ଗର୍ଭବତୀ ହେବା)
ସ୍ୱପ୍ନ ଫଳିବା (ସ୍ୱପ୍ନ ସାକାର ହେବା)
ଧାନ ଫଳିବା (ଶସ୍ୟ ଧରିବା)

**ବାନ୍ଧିବା :**

ଘରବାନ୍ଧିବା (ଘର କରିବା)
ଗାଈବାନ୍ଧିବା (ଗାଈକୁ ଖୁଣ୍ଟରେ ଦଉଡ଼ି ଦେଇ ରଖିବା)
ମୁଣ୍ଡବାନ୍ଧିବା (କେଶବିନ୍ୟାସ କରିବା)
ଦାନାବାନ୍ଧିବା (ଦାନାଯୁକ୍ତ ହେବା)
ବନ୍ଧୁବାନ୍ଧିବା (ବିବାହଦ୍ୱାରା ବନ୍ଧୁତା କରିବା)
ଦଳବାନ୍ଧିବା (ଦଳ ଗଠନ କରିବା)
ଆଣ୍ଠୁ ବାନ୍ଧିବା (ଦୃଢ଼ତା ପ୍ରକାଶ କରିବା)
ଗୀତ ବାନ୍ଧିବା (ଗୀତ ରଚନା କରିବା)
ପୋଥିରେ ଡୋରି ବାନ୍ଧିବା (ପାଠପଢ଼ା ବନ୍ଦ ହେବା)

**ବସିବା :**

ସ୍ୱର ବସିବା (ସ୍ୱର ଭଙ୍ଗ ହେବା)
ସଙ୍ଗାତ ବସିବା (ବନ୍ଧୁତ୍ୱ ସ୍ଥାପନ କରିବା)
ଘରେ ବସିବା (ବେକାର ରହିବା)
ଉତ୍ତମ ମଧ୍ୟମ ବସିବା (ମାଡ଼ ହେବା)
ମୁଣ୍ଡରେ ହାତ ଦେଇ ବସିବା (ଚିନ୍ତା କରିବା)
ଡାଲି ବସିବା (ଡାଲି ରନ୍ଧା ହେବା)

ବିଦ୍ୟାଳୟ ବସିବା (ବିଦ୍ୟାଳୟ ସ୍ଥାପନ ହେବା)
ପୋଥି ବସିବା (ପୋଥି ପୂଜା କରିବା)
ଘିଅ ବସିବା (ଘିଅ କଠିନ ହେବା)
ସଭା ବସିବା (ସଭା ଅନୁଷ୍ଠିତ ହେବା)

**ଭାଙ୍ଗିବା :**

ମନଭାଙ୍ଗିବା (ମନ ମରିଯିବା, ହତାଶ ହେବା, ମନାନ୍ତର ହେବା)
ଘର ଭାଙ୍ଗିବା (ପୃଥକ୍ ହେବା)
ବାଟ ଭାଙ୍ଗିବା (ଅନ୍ୟ ବାଟରେ ଯିବା)
ଅଣ୍ଟାଭାଙ୍ଗିବା (ଦୁର୍ବଳ ହେବା)
ମୁହଁ ଭାଙ୍ଗିବା (ଗର୍ବ ଖର୍ବ ହେବା)
କାଗଜ ଭାଙ୍ଗିବା (କାଗଜକୁ ଠିକ୍ କରି ରଖିବା)
ଚେରି ଭାଙ୍ଗିବା (ବାଳ ସଜାଇବା)
ସଭା ଭାଙ୍ଗିବା (ସଭା ଶେଷ ହେବା)
କଥା ଭାଙ୍ଗିବା (କଥା ଅମାନ୍ୟ କରିବା)
ଦାନ୍ତ ଭାଙ୍ଗିବା (ଗର୍ବ ଖର୍ବ କରିବା)

**ମାରିବା :**

ମାଛ ମାରିବା (ମାଛ ଧରିବା)
ବାଣ ମାରିବା (ବାଣ ଫୁଟାଇବା)
ଲୁଣ ମାରିବା (ସମୁଦ୍ର ଜଳରୁ ଲୁଣ ପ୍ରସ୍ତୁତ କରିବା)
ତେଲ ମାରିବା (ଖୋସାମଦ କରିବା)
ମନ ମାରିବା (ଅଭିମାନ କରିବା)
ଥକ୍କାମାରିବା (ବିଶ୍ରାମ ଗ୍ରହଣ କରିବା)
ପଟିମାରିବା (ଠକି ଦେବା)
ଆଖିମାରିବା (ଇସାରା ଦେବା)
ହୁଁ ମାରିବା (ସମର୍ଥନ କରିବା)
ପେଟମାରିବା (ପେଟରେ ଯନ୍ତ୍ରଣା ହେବା)
ରଙ୍ଗମାରିବା (ରଙ୍ଗ ଲଗାଇବା)
ବିଜୁଳି ମାରିବା (ବିଦ୍ୟୁତ୍‌ର ସ୍ଫୁରଣ ହେବା)
ବାଜି ମାରିବା (ଜିଦି ପକାଇବା)

**ରଖିବା :**

କଥା ରଖିବା (ନିର୍ଦ୍ଦେଶାନୁଯାୟୀ କାର୍ଯ୍ୟ କରିବା, ସହମତି ହେବା)
ମନ ରଖିବା (ଇଚ୍ଛାନୁଯାୟୀ କାର୍ଯ୍ୟ କରିବା)
ମନେ ରଖିବା (ସ୍ମରଣ କରିବା)
ପାଦ ରଖିବା (ଉପସ୍ଥିତ ହେବା)
ଉପରୋଧ ରଖିବା (ଅନୁଗ୍ରହ କରିବା, ସୁପାରିସ କରିବା, ଅନ୍ୟର ସୁବିଧାପାଇଁ ଅନୁରୋଧ କରିବା)
ମାନ ରଖିବା (ସମ୍ମାନ ହାନି ନ କରିବା)
ନଜର ରଖିବା (ଦୃଷ୍ଟି ଆଗରେ ରହିବା)
ନାଆଁ ରଖିବା (କୃତିତ୍ୱ ଅର୍ଜନ କରିବା)
ବନ୍ଧା ରଖିବା (କୌଣସି ଜିନିଷ ରଖି ଅର୍ଥ ଦେବା)
ଭାବ ରଖିବା (ସଂପର୍କ ରଖିବା)

**ଲାଗିବା :**

ଯୁଦ୍ଧ ଲାଗିବା (ଦୁଇପକ୍ଷଙ୍କ ମଧ୍ୟରେ ସମର ହେବା ବା ଗଣ୍ଡଗୋଳ ଆରମ୍ଭ ହେବା)
ମନ ଲାଗିବା (ଆଗ୍ରହୀ ହେବା)
ତରକାରି ଲାଗିବା (ତରକାରି ପୋଡ଼ିଯିବା)
ନାଟ ଲାଗିବା (କଳି ସୃଷ୍ଟି ହେବା)
ଭୂତ ଲାଗିବା (କୌଣସି ଅଦୃଶ୍ୟ ଶକ୍ତିଦ୍ୱାରା ପ୍ରଭାବିତ ହେବା)
ଟଙ୍କା ଲାଗିବା (ଋଣ ଦିଆଯିବା)
ଶୂନ୍ୟ ଲାଗିବା (ହତାଶ ହେବା)
ପାଟି ଲାଗିବା (ଠିକ୍ ଭାବରେ କଥା କହି ନ ପାରିବା)
ପିଛା ଲାଗିବା (ଅନିଷ୍ଟପାଇଁ ଚିନ୍ତା କରିବା)
ମନ ଲାଗିବା (ଉତ୍ସାହିତ ହେବା)
ଡୋରି ଲାଗିବା (ଡାକରା ଆସିବା)

**ପଡ଼ିବା :**

ପାଟି ପଡ଼ିବା (ମୁହଁ ବନ୍ଦ ହେବା)
ପିଠିରେ ପଡ଼ିବା (ସହାୟ ହେବା)
ଗୋଡ଼ ତଳେ ପଡ଼ିବା (ଅଧୀନତା ସ୍ୱୀକାର କରିବା)
ଗୋଡ଼ ତଳେ ନ ପଡ଼ିବା (ଅତିଶୟ ଖୁସି ହୋଇଯିବା)
ବଜାରରେ ଆମ୍ବ ପଡ଼ିବା (ବିକ୍ରି ହେଲାଣି)
ଦୁର୍ଭିକ୍ଷ ପଡ଼ିବା (ଦୁର୍ଭିକ୍ଷ ବ୍ୟାପିବା)

ବାହାଘର ପଡ଼ିବା (ପ୍ରସ୍ତାବ ଉଠିବା)
ଦାନ୍ତପାଟି ପଡ଼ିବା (ବେହୋସ ହୋଇଯିବା)
ଭଲ ପଡ଼ିବା (ସୁସଂପର୍କ ରହିବା)
ବଜାର ପଡ଼ିବା (ବଜାର ବନ୍ଦ ହୋଇଯିବା)
ପାଣିରେ ପଡ଼ିବା (କ୍ଷତି ହୋଇଯିବା, ବୃଥା ହୋଇଯିବା)
ନଈରେ ପାଣି ପଡ଼ିବା (ଜଳସ୍ତର ବୃଦ୍ଧି ଘଟିବା)
ଅନ୍ୟ ଜଣକ ସହିତ ନ ପଡ଼ିବା (ମନୋମାଳିନ୍ୟ ଦେଖାଦେବା)
ବାଟ ପଡ଼ିବା (ସଂପର୍କ ନଷ୍ଟ ହେବା)

## ଅନୁଶୀଳନୀ

୧ । ରୂଢ଼ି ପ୍ରୟୋଗ କହିଲେ କଅଣ ବୁଝ ?

୨ । ଓଡ଼ିଆ ଭାଷାରେ ପ୍ରଚଳିତ ରୂଢ଼ି ପ୍ରୟୋଗର ବିଭାଗୀକରଣ କରି ପ୍ରତ୍ୟେକରୁ ଦୁଇ ଦୁଇଟି ଉଦାହରଣ ଦିଅ ।

୩ । କ୍ରିୟାହୀନ ରୂଢ଼ି ଓ କ୍ରିୟାଯୁକ୍ତ ରୂଢ଼ିର ପାଞ୍ଚୋଟି ଲେଖାଏ ଉଦାହରଣ ଦିଅ ।

୪ । ନିମ୍ନଲିଖିତ ରୂଢ଼ି ପ୍ରୟୋଗ ଗୁଡ଼ିକର ଅର୍ଥ ପ୍ରକାଶ କରି ତାକୁ ବାକ୍ୟରେ ବ୍ୟବହାର କର ।
ବିରାଡ଼ି ଛିଙ୍କିବା, ବାଟବଣା ହେବା, କୁହୁଡ଼ି ପହଁରିବା, ମୁଣ୍ଡ ଧରେଇବା, କପାଳ ଫାଟିବା, ଭାଲୁ ଧରେଇବା, ନାକେଦମ୍ କରିବା, ସ୍ୱର୍ଗକୁ ହାତ ବଢ଼େଇବା, ଡୋରି ଲାଗିବା, ଅନ୍ଧ ବୁଝାମଣା, ତିଳକୁ ତାଳ କରିବା, ସରିହେବା, ସୁନା ଫଳିବା, ହାତ ବାନ୍ଧି ବସିବା, ଶରଣ ପଶିବା, ରାହା ଧରିବା, ହାଡ଼ ଜଳିବା, କୂଳ ଖାଇବା ।

୫ । ନିମ୍ନଲିଖିତ କ୍ରିୟାମାନଙ୍କୁ ଭିନ୍ନାର୍ଥରେ ପ୍ରୟୋଗ କରି ବାକ୍ୟରେ ବ୍ୟବହାର କର ।
କରିବା, ମାରିବା, ପାଇବା, କାଟିବା, ଟେକିବା, ବୁଡ଼ିବା, ଲାଗିବା, ବସିବା ।

୬ । ନିମ୍ନଲିଖିତ ଅର୍ଥ ପ୍ରକାଶ କରୁଥିବା ରୂଢ଼ି ପ୍ରୟୋଗମାନ ଉଲ୍ଲେଖ କରି ତାହାକୁ ବାକ୍ୟରେ ବ୍ୟବହାର କର ।
ବୃଥା ପରିଶ୍ରମ କରିବା, ସାହା ଦେବା, ଏକଜିଦିଆ, ଶତ୍ରୁନାଶ ହେବା, ତ୍ୟାଗ କରିବା, ନିରୁପାୟ ହେବା, ପ୍ରଶ୍ରୟ ଦେବା, କ୍ରୋଧାନ୍ୱିତ ହେବା, ଠକାଇବା, ନିବିଡ଼ ସମ୍ପର୍କ, ନିଶ୍ଚିତ ହେବା, ଶରଣ ପଶିବା, ଅନୁକୂଳ ବିଗିଡ଼ିଯିବା, ମନେ ନ ପକାଇବା, ପଢ଼ା ବନ୍ଦ କରିବା, ସବୁକିଛି ସହିଯିବା, ସତର୍କ ହେବା, ଅପାତ୍ରରେ ଦାନ ଦେବା, ପରିଶ୍ରମ କରି ବଞ୍ଚିବା, କାହାକୁ ଖାତିର ନ କରିବା ।



# ଓଡ଼ିଆ ଲୋକବାଣୀ

ସାଧାରଣତଃ ଦେଶରେ ପ୍ରଚଳିତ ଅଭିଜ୍ଞତାପୂର୍ଣ୍ଣ ଆପ୍ତବଚନ ଲୋକବାଣୀରୂପେ ପରିଚିତ । ଏହାକୁ ଲୋକୋକ୍ତି ମଧ୍ୟ କୁହାଯାଏ । ଲୋକବାଣୀ, ପ୍ରବାଦପ୍ରବଚନର ସମପର୍ଯ୍ୟାୟଭୁକ୍ତ । ଏହା ମଧ୍ୟରେ ଗୋଟିଏ ଜାତିର ମାନସିକତା, ସଂସ୍କୃତି ଆଦି ଉତ୍କୀର୍ଣ୍ଣ ହୋଇଥାଏ । ସଂକ୍ଷେପରେ କହିଲେ, ଏହା ହେଉଛି ଜଣାଶୁଣା ଅନୁଭୂତିଦ୍ୱାରା ନିରୂପିତ ସତ୍ୟ, ସଂକ୍ଷିପ୍ତ ଅଥଚ ସାରଗର୍ଭକ ବାକ୍ୟ ବା ଖଣ୍ଡବାକ୍ୟ ବିଶେଷ ଓ କଥିତ ଭାଷାରେ ବିଶେଷରୂପେ ପ୍ରଚଳିତ ଜନପ୍ରିୟ ଉକ୍ତିବିଶେଷ । କେତେକ କ୍ଷେତ୍ରରେ ଲୋକବାଣୀ ମଧ୍ୟରେ ରୂଢ଼ି ମଧ୍ୟ ସ୍ଥାନ ଲାଭ କରିଥାଏ; ମାତ୍ର ରୂଢ଼ି ମଧ୍ୟରେ ପ୍ରବଚନର ସ୍ଥାନ ନ ଥାଏ । ଏହା ପ୍ରତ୍ୟକ୍ଷ ଭାବରେ ଏକ ସାର୍ବଜନୀନ ସତ୍ୟ ବା ଅନୁଭୂତିସିଦ୍ଧ ଜ୍ଞାନକୁ ପ୍ରକାଶ କରିବା ସଙ୍ଗେସଙ୍ଗେ ମୁଖ୍ୟତଃ ସାମାଜିକ ଶିକ୍ଷାଦାନ ଉଦ୍ଦେଶ୍ୟରେ, ଏହାର ବହୁଳ ପ୍ରୟୋଗ ହୋଇଥାଏ । ଉଦାହରଣ ସ୍ୱରୂପ- 'ଅଳପ ଲୋକର ବିସ୍ତର ବୋଝ ତାକୁ ଜାଣିବ କପା, ମହର୍ଗ କାଳରେ ଯାଚି ପରଷେ ତାକୁ ଜାଣିବ ଅପା' । ଏହି ଲୋକବାକ୍ୟଟି ଯଥାକ୍ରମେ 'କପା' ଓ 'ଅପା' ସଂପର୍କରେ ଏକ ସାଧାରଣଜ୍ଞାନ ପ୍ରଦାନ କରୁଛି । ଲୋକବାଣୀରେ ଅଭିଧା ଅର୍ଥ ଗୁରୁତ୍ୱ ପାଇଥାଏ । ଲୋକୋକ୍ତିରେ ଉଦ୍ଦେଶ୍ୟ ଓ ବିଧେୟ ସ୍ପଷ୍ଟ ତଥା କାଳ, ପୁରୁଷ ଓ ବଚନ ପ୍ରସଙ୍ଗ ତଥା ବାକ୍ୟାନୁସାରେ ପରିବର୍ତ୍ତିତ ହୋଇଥାଏ ।

ରୂଢ଼ି ପ୍ରୟୋଗରେ ପ୍ରାୟତଃ ପଦ କିମ୍ବା ପଦକ୍ରମରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହୋଇ ନ ଥାଏ । ବ୍ୟାବହାରିକ ଓ ନୈତିକ ଅନୁଭୂତିଜନିତ ଏକ ବିଶେଷ ଧରଣର ଉକ୍ତି ହେଉଛି ପ୍ରବଚନ; କିନ୍ତୁ ରୂଢ଼ିପ୍ରୟୋଗ ପ୍ରାୟତଃ କାର୍ଯ୍ୟ ସଂପର୍କିତ ଉକ୍ତି ବା ବିଷୟରୂପେ ଗୃହୀତ ହୋଇଥାଏ । ନିମ୍ନରେ କେତେକ ସୁପ୍ରଚଳିତ ଲୋକବାଣୀ ଓ ତା'ର ଅର୍ଥ ପ୍ରଦତ୍ତ ହେଲା ।

ପ୍ରତ୍ୟେକ ଭାଷାରେ ଲୋକବାଣୀ ଲୋକମୁଖରେ ବଞ୍ଚି ରହିଛି । ଏହା ଭାଷାସାହିତ୍ୟର ଏକ ମହାର୍ଘ ସଂପଦ । ବିଭିନ୍ନ ଭାଷାରେ ଏହାର ବିଭିନ୍ନ ନାମ ରହିଛି । ଆମ ଓଡ଼ିଆ ଭାଷାରେ ଏହାକୁ ପ୍ରବାଦ, ପ୍ରବଚନ କୁହାଯାଉଥିଲା ବେଳେ ହିନ୍ଦୀରେ କହାୱତ କୁହାଯାଏ । ଇଂରାଜୀରେ ଏହାର ନାମ ପ୍ରୋଭର୍ବ(Proverb) । ଭାଷାର ଭିନ୍ନତା ସତ୍ତ୍ୱେ ଲୋକବାଣୀମାନଙ୍କ ମଧ୍ୟରେ ଭାବଗତ ସାମ୍ୟ ପରିଲକ୍ଷିତ ହୋଇଥାଏ । ନିମ୍ନପ୍ରଦତ୍ତ ଉଦାହରଣଗୁଡ଼ିକ ଦ୍ରଷ୍ଟବ୍ୟ ।

୧. ଓଡ଼ିଆ – ଖଣ୍ଡରେ ଧୋଇଲେ କ୍ଷୀରରେ ମୋହିଲେ ନିମ୍ବକି ମଧୁର ହୋଇବ ?
   ହିନ୍ଦୀ – धोये सौ वार के काजर होय न सेत ।
   ସଂସ୍କୃତ – ଅଙ୍ଗାର ଶତଧୌତେନ ମଳିନତ୍ୱଂ ନ ମୁଞ୍ଚତ ।

୨. ଓଡ଼ିଆ – ଜୋର୍ ଯା'ର ମୁଲକ ତା'ର ।
English - Might is right.
ସଂସ୍କୃତ – ବୀରଭୋଗ୍ୟା ବସୁନ୍ଧରା
ହିନ୍ଦୀ – जिसकी लाठी उसकी भैस ।

୩. ଓଡ଼ିଆ – ତୁଳସୀ ଦୁଇ ପତ୍ରରୁ ବାସେ ।
ହିନ୍ଦୀ – पूत के पावँ पालन में पहनाने जाते है ।
English - Morning shows the day.

୪. ଓଡ଼ିଆ – ଅତି ଲେମ୍ବୁ ଚିପୁଡ଼ିଲେ ପିତା ।
ସଂସ୍କୃତ – ଅତି ସର୍ବତ୍ର ଗର୍ହିତମ୍ ।
ଇଂରାଜୀ – Too much of everything is good for nothing.

୫. ଓଡ଼ିଆ – ଖୋଳ ପର୍ବତ ମାର ମୂଷା ।
ହିନ୍ଦୀ – खोदा पहाड, निकली चुहिया ।

୬. ଓଡ଼ିଆ – ଆ ବଳଦ ମୋତେ ବିନ୍ଧ୍ ।
ହିନ୍ଦୀ – आ बैल मुझे मार ।

୭. ଓଡ଼ିଆ – ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ।
ହିନ୍ଦୀ – जाके राखे साइयां, मार सके न कोय ।

## ନିର୍ବାଚିତ ଲୋକବାଣୀ–

ଅଇରି ଖପରା ବଇରି ବାଆ – ଦାରିଦ୍ର୍ୟ, ଅଭାବରେ ପଡ଼ି ଶଢ଼ିବା ।
ଅକାଳକାଣ୍ଡ କପାଳେ ବାଜେ – ଦୈବୀ ବିପଦ ପଡ଼ିବା, ଆକସ୍ମିକ ବିପଦ ଭୋଗ ।
ଅକାଳେ ନିୟମ ନାସ୍ତି – ଅସୁବିଧା ସମୟରେ ନିୟମର ଉଲ୍ଲଙ୍ଘନ ।
ଅଗ୍ନିକି ପବନ ସାହା – କୌଣସି କାର୍ଯ୍ୟ ଆରମ୍ଭ ହୋଇଗଲେ ସହାୟତା ସ୍ୱତଃ ମିଳେ ।
ଅଜାଗା ଘା' ଦେଖି ହୁଏ ନାହିଁ କି ଦେଖାଇ ହୁଏ ନାହିଁ – ଅତି ଲଜ୍ଜାଜନକ କଥା ପ୍ରକାଶ କରି ହୁଏ ନାହିଁ ।
ଅଜଣା ଚାଉଳରେ ଭାତ ରାନ୍ଧିବା – ଅତି ସାଧାରଣ ବିଷୟରେ ଅଜ୍ଞତା ପ୍ରକାଶ ।
ଅଜାତିକି ବଣିଜ ଅଡୁଆ – ଅଜଣା କାମ କରି ନ ପାରିବା ।
ଅଣ୍ଟାରେ ନ ଥାଇ ଧନ, ପୁଅ ବାହା କରି ମନ – ଧନହୀନ ଲୋକର ଅଧିକ ଖର୍ଚ୍ଚ କରିବାର ଯୋଜନା ହାସ୍ୟାସ୍ପଦ ।
ଅଣ୍ଡିଛୁରୀ ତଣ୍ଟି କାଟେ – ନିଜ ଲୋକର ଶତ୍ରୁତା ଆଚରଣ ।
ଅତିଦର୍ପେ ହତଲଙ୍କା – ଅତି ଗର୍ବରୁ ବିନାଶ ବା ପତନ ।
ଅତି ପରିଚୟେ ଗୌରବ ନଷ୍ଟ – ଅତ୍ୟଧିକ ମିଳାମିଶା ସମ୍ମାନହାନିକାରକ ।

ଅତିଭକ୍ତି ଚୋରର ଲକ୍ଷଣ – ଅତ୍ୟଧିକ ଭକ୍ତି ପ୍ରଦର୍ଶନ ମୂଳରେ ସ୍ୱାର୍ଥ ନିହିତ ଥାଏ ।

ଅତିଲେମ୍ବୁ ଚିପୁଡ଼ିଲେ ପିତା – ମାତ୍ରାଧିକ କାର୍ଯ୍ୟ ସବୁବେଳେ ଖରାପ ।

ଅତି ଲୋଭରୁ ତନ୍ତୀ ମରେ – ଅତିଶୟ ଲୋଭ ମୃତ୍ୟୁର କାରଣ ।

ଅଦା ବେପାରୀର ଜାହାଜ ମୂଲ – ଅନଧିକାର ଚର୍ଚ୍ଚା, ଛୋଟ ମୁହଁରେ ବଡ଼ କଥା ।

ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ- ଅସତ୍ ମାର୍ଗରେ ଅର୍ଜିତ ଧନ ସମୂଳ ନଷ୍ଟ ହୁଏ ।

ଅଧୁଆମୂଳା ଧୁଆମୂଳା ସମାନ- ବିଚାରରେ ଠିକ୍ ଭୁଲ୍‌ର ପାର୍ଥକ୍ୟ ନ ରଖିବା ।

ଅନ୍ଧ ଥରେ ବାଡ଼ି ହଜାଏ – ଅଭିଜ୍ଞତାରୁ ମଣିଷ ଶିକ୍ଷାକରେ ବା ସତର୍କ ହୁଏ ।

ଅନ୍ଧ ପାଣି ବୋହିଲେ ତିନିଜଣ କମେଇ – ଅଯୋଗ୍ୟଲୋକଦ୍ୱାରା କାମ କଲେ ଜଣକ ଜାଗାରେ ତିନିଜଣ ଲୋଡ଼ା ହୁଅନ୍ତି ।

ଅପାଳକ ରାଇଜକୁ ବିଜୁଳି ଲକ୍ଷେ ଟଙ୍କା – ସମ୍ପୂର୍ଣ୍ଣ ଅଭାବରେ ସାମାନ୍ୟର ସୂଚନା ଅତି ମୂଲ୍ୟବାନ୍ ।

ଅରକ୍ଷିତକୁ ଦଇବ ସାହା – ଅସହାୟକୁ ଈଶ୍ୱର ସହାୟ ।

ଅର୍ଥ ଅନର୍ଥର ମୂଳ – ଟଙ୍କା ପଇସା ବା ଧନସଂପତ୍ତି  ବିପଦର କାରଣ ।

ଅଳପ ଧନ ବିକଳ ମନ – ଦାରିଦ୍ର୍ୟର ବିକଳତା ।

ଅଳ୍ପବିଦ୍ୟା ଭୟଙ୍କରୀ – ସୀମିତଜ୍ଞାନ ବିଷମ ପରିସ୍ଥିତି ସୃଷ୍ଟି କରେ ।

ଅଳସୁଆର ବାରବାଟୀ ଚାଷ – ଅଳସୁଆର ବଡ଼ଯୋଜନା, ଅଳସୁଆ ଲୋକ ବଡ଼ବଡ଼ କଥା  କୁହେ ।

ଅମୃତ ହାଣ୍ଡିରେ ବିଷ କଣିକା- ସାମାନ୍ୟ ଖରାପ କାମ ଅତି ମହତ କାମକୁ ନଷ୍ଟ କରିଦିଏ ।

ଆଉଁସିଲା କୁକୁର ମୁହଁରେ ମୂତେ – ଅତି ଗେହ୍ଲାରୁ ସମ୍ମାନ ହାନି ।

ଆକାଶ କଇଁଆ ଚିଲିକା ମାଛ – ଅସମ୍ଭବ ଯୋଜନା ।

ଆଖି ଥାଉଥାଉ ଅନ୍ଧ – ଦେଖି ନ ଦେଖିଲା ଭଳିଆ ଆଚରଣ ।

ଆଗତ ଚଢ଼େଇକି ବେସରବଟା- ହାତକୁ ଆସିବା ପୂର୍ବରୁ ପ୍ରସ୍ତୁତ ହେବା ।

ଆଗ ସୁନା ପାଗ – ପ୍ରତିଯୋଗିତାରେ ପ୍ରଥମ ବ୍ୟକ୍ତିର ଆଦର ବେଶି, ପ୍ରଥମ କାର୍ଯ୍ୟର ଆଦର ।

ଆଚାରେ ଲକ୍ଷ୍ମୀ ବିଚାରେ ପଣ୍ଡିତ – ଉତ୍ତମ ଆଚରଣରୁ ଧନାଗମ ହୁଏ ଏବଂ ଉତ୍ତମ ବିଚାର ବୁଦ୍ଧିରୁ ପାଣ୍ଡିତ୍ୟର ପରିଚୟ ମିଳେ ।

ଆତୁରେ ନିୟମ ନାସ୍ତି – ବିପଦରେ ବା ଅସୁବିଧା ସମୟରେ ନୀତିନିୟମ ଖୋଜାଯାଏ ନାହିଁ ।

ଆପଣା ବୁଦ୍ଧିରେ ଠାକୁର, ପର ବୁଦ୍ଧିରେ କୁକୁର – ନିଜ ବୁଦ୍ଧି ଶୁଭଙ୍କରୀ, ପରବୁଦ୍ଧି ପ୍ରଳୟଙ୍କରୀ ବା ଅହିତକାରିଣୀ ।

ଆପଣା ଶିଙ୍ଗରେ ମାଟି ତାଡ଼ିବା- ସ୍ୱାବଲମ୍ବୀ ହେବା, ନିଜ ଗୋଡ଼ରେ ନିଜେ ଠିଆ ହେବା ।
ଆପଣା ସୁନା ଭେଣ୍ଡି - ନିଜ ଲୋକ ଭଲ ନ ହେବା, ନିଜ ଲୋକ ଭୁଲ କାମ କରିବା ।
ଆପଣା ହସ୍ତେ ଜିହ୍ୱା ଛେଦି - ନିଜ କାର୍ଯ୍ୟଦ୍ୱାରା ନିଜର ଶତ୍ରୁତା ଆଚରଣ ।
ଆପଣା ହାତ ଜଗନ୍ନାଥ- ନିଜ ଉପରେ ଭରସା କରି କାମ କରିବା ।
ଆପେ ବଞ୍ଚିଲେ ବାପର ନାଁ - ନିଜ କଥା ନିଜେ ବୁଝିବା, ନିଜକୁ ନିରାପଦରେ ରଖିବା ।
ଆପେ ମଲେ ସ୍ୱର୍ଗ ଦେଖିବ ବା ଯମ ଦର୍ଶନ-ପ୍ରତ୍ୟକ୍ଷ ଅନୁଭୂତିରୁ ଲାଭ ।
ଆ ବଳଦ ମୋତେ ବିନ୍ଧ୍ - ଜାଣିଶୁଣି ବିପଦବରଣ କରିବା ।
ଆବଶ୍ୟକତା ହିଁ ଉଦ୍ଭାବନର ଜନନୀ-ଆବଶ୍ୟକତାର ପୂରଣପାଇଁ ନୂତନବସ୍ତୁର ସୃଷ୍ଟି ହୁଏ ।
ଆୟ ଦେଖି ବ୍ୟୟ କର, ଶରୀର ଦେଖି ଧର୍ମ କର - ରୋଜଗାରକୁ ଚାହିଁ ଖର୍ଚ୍ଚ କରଣୀୟ, ନୀରୋଗ ଶରୀର ଧର୍ମାର୍ଜନପାଇଁ ଆବଶ୍ୟକ ।
ଆଳିଆ ଲେଖାରେ ବାଳିଆ ବନ୍ଧୁ - ଲେଖାଯୋଖା ବନ୍ଧୁ ।
ଆଲ୍ଲା ଦିଅନ୍ତି ତ ଛପର ଫାଡ଼ି ଦିଅନ୍ତି- ଈଶ୍ୱରଙ୍କ ଦୟାରୁ ସମସ୍ତ ଦୁଃଖ ଦୂର ହୁଏ ।
ଆଲୋ ମଉସା ଜଡ଼ ପଇସା - ସବୁ କାମକୁ ଅର୍ଥ ଦରକାର ।
ଆଲୋ ସଖି, ଆପଣା ମହତ ଆପେ ରଖି-ଆତ୍ମସମ୍ମାନ ରକ୍ଷା ନିଜର ଦାୟିତ୍ୱ ।
ଆହାରେ ଭଲମନ୍ଦ ନାହିଁ - ବାଛବିଚାର ନ କରି ଖାଦ୍ୟଖାଇବା ଉଚିତ ।
ଇନ୍ଦ୍ରଚନ୍ଦ୍ର ନ ମାନିବା - ସମସ୍ତଙ୍କୁ ଅବଜ୍ଞା କରିବା ।
ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳପାଇଁ-ପରମେଶ୍ୱରଙ୍କର ପ୍ରତ୍ୟେକ କାର୍ଯ୍ୟରେ ପ୍ରାଣୀହିତ ନିହିତ ।
ଉଡ଼ି ନ ଜାଣି ପୋଷା ମାନିବା - ହାରିବା ଲୋକ ଶରଣ ପଶେ ।
ଉପର ବଡ଼ ସୁନ୍ଦର, ଭିତର ପୋଡ଼ା ଅଙ୍ଗାର - ମୁଖରେ ମଧୁର କଥା କହି କପଟ ଆଚରଣ କରିବା ।
ଉଭା ଯେତିକି ପୋତା ସେତିକି - ଧନଧାନ୍ୟରେ ପରିପୂର୍ଣ୍ଣ ।
ଊଣା ହିଡ଼ ଯେଉଁଠି, ପାଣି ଗଡ଼େ ସେଇଠି - ଦୁର୍ବଳତା ପରାଜୟର କାରଣ ।
ଏକ ମନ ହେଲେ ସମୁଦ୍ର ଶୁଖେ - ଏକତା ବଳରେ ଅସାଧ୍ୟ ସାଧନ କରିହୁଏ ।
ଏକା ହାତରେ ତାଳି ବାଜେ ନାହିଁ - ଜଣକଦ୍ୱାରା କଳି ସମ୍ଭବ ନୁହେଁ ।
ଏକା ତୁଣ୍ଡରେ ଉଆ ଉଷୁନା - ଜଣେ ଲୋକର ମୁହଁରେ ଦୁଇଟି ବିପରୀତ କଥା ।
ଏକା ବିଦ୍ୟା ସୁରକ୍ଷିତା - ଗୋଟିଏ ବିଷୟକୁ ଭଲଭାବରେ ଆୟତ୍ତ କରିବା ।
ଏକା ଭାଡ଼ିର ପାରା - ଗୋଟିଏ ସ୍ୱଭାବର ବ୍ୟକ୍ତିବୃନ୍ଦ ।
ଏକାମାଘରେ ଶୀତ ଯାଏନି - ସୁଯୋଗ ବା ଦୁର୍ଯୋଗର ପୁନରାବୃତ୍ତି ଘଟେ, ଏକାଥରକେ ସବୁ ସମସ୍ୟା ମେଣ୍ଟିଯାଏ ନାହିଁ ।

ଏକା ମାଧିଆ ବାଇଶି ପଳ - ଖୁବ୍‌ଦକ୍ଷ, ଜଣେ ଲୋକର ଦକ୍ଷତା ପ୍ରତି ଗୁରୁତ୍ୱ ପ୍ରଦାନ ।

ଏଣେ ମାଇଲେ ଗୋହତ୍ୟା, ତେଣେ ମାଇଲେ ବ୍ରହ୍ମହତ୍ୟା - ଉଭୟ ଦିଗରୁ ବିପଦ ବା ଧର୍ମସଂକଟ, କିଂକର୍ତ୍ତବ୍ୟବିମୂଢ଼ତା ।

ଏଣ୍ଡୁଅ ଧାଉଡ଼ି କିଆ ବୁଦାକୁ - ସୀମିତ ଜ୍ଞାନ ବା ଶକ୍ତିର ଅଧିକାରୀ ।

ଏ ବର୍ଷର ମଲୁ ଆରବର୍ଷକୁ ବଇଦ - ଅଭିଜ୍ଞତା ହିଁ ପ୍ରକୃତ ଶିକ୍ଷକ ।

ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା-ମନ ଅନୁସାରେ ଫଳ ମିଳେ ।

ଏ ହାତ ପାପ ସେ ହାତ ନିଏନା - ବ୍ୟକ୍ତି ତା' କୃତକର୍ମର ଫଳ ନିଜେ ଭୋଗକରେ ।

ଓଟ ମୁହଁରେ ଜୀରା - ବେଶି ଚାହୁଁଥିବା ଲୋକକୁ କମ୍ ଦେବା ।

ଓଧ ସଙ୍ଗେ ବଣଭୁଆ ବାଇ - ଚତୁର ଲୋକକୁ ବୋକା ଅନୁସରଣ କରିବା ।

ଓଲୁଅ ସାକ୍ଷୀ ବଣସାରୁ - ମନ୍ଦ ଲୋକ ହିଁ ମନ୍ଦଲୋକକୁ ସମର୍ଥନ କରେ ।

ଓହ୍ଲାଇଲା ହାଣ୍ଡି ଶୀତଳ - କାର୍ଯ୍ୟ ସରିଗଲେ, ତା'ର ଗୁରୁତ୍ୱ କମିଯାଏ ।

ଔଷଧ ରାଗରେ ତାଟିଆ କାମୁଡ଼ିବା - ଦୋଷୀର ବିରୋଧରେ କିଛି କରି ପାରି ନିର୍ଦ୍ଦୋଷ ଉପରେ ରାଗିବା ।

କଅଁଳ ଲୁହାକୁ ବିରାଡ଼ି କାମୁଡ଼ି ଗୋଡ଼ାଏ- ସରଳ ଓ ନିରୀହ ଲୋକକୁ ସମସ୍ତେ ହଇରାଣ କରନ୍ତି ।

କଙ୍କଡ଼ାକୁ ଗୋଳିପାଣି ସୁହାଏ - ଅସାଧୁ ଲୋକ ଗୋଳମାଳିଆ ପରିସ୍ଥିତିରୁ ଫାଇଦା ଉଠାଏ ।

କଟକ ଚିନ୍ତା ବାଇମୁଣ୍ଡିକୁ - ଜଣେ ସାଧାରଣ ଲୋକର ସମସ୍ତଙ୍କ ପାଇଁ ହିତଚିନ୍ତା ।

କଥା ମାଜିଲେ ଗରୁ(ମୋଟ) - ଗୋଟିଏ କଥାକୁ ଧରି ବସିଲେ, ତାହା ବଡ଼ ସମସ୍ୟା ସୃଷ୍ଟି କରେ ।

କପାଳ ଲିଖନ କେ କରିବ ଆନ - ଭାଗ୍ୟଫଳ ଅପରିବର୍ତ୍ତନୀୟ ।

କଳି ଯଦି କରି ବସିବ ସଙ୍ଗେ ଥିବ ଭାଇ - ବିପଦ ଆପଦରେ ଭାଇ କେବଳ ସାହାଯ୍ୟକାରୀ ।

କହି ଜାଣିଲେ କଥା ସୁନ୍ଦର - କୌଶଳରେ କାର୍ଯ୍ୟ ହାସଲ କରିହୁଏ ।

କଷ୍ଟକଲେ କୃଷ୍ଣ ମିଳେ - କଠିନ ପରିଶ୍ରମ ହିଁ ସିଦ୍ଧି ଆଣିଦିଏ ।

କଂସାରି ଘରର ପାରା, କୁଲା ଢାଉଁଢାଉଁ ଡରା- ବହୁ ଭୟର ଅଭ୍ୟସ୍ତ ବ୍ୟକ୍ତି ସାମାନ୍ୟ ଭୟକୁ ଡରେ ନାହିଁ ।

କାଉଁରିଆ କାଠି ଭାଙ୍ଗିବ ସିନା ନଇଁବ ନାହିଁ- ଦୃଢ଼ମନା ଲୋକ ନିଜ ନିଷ୍ପତ୍ତିରୁ ଟଳେ ନାହିଁ ।

କାଣୀ ବିରାଡ଼ି କୁଜୀ ଅସରପା ଉପରେ ରଜା - ଦୁର୍ବଳ ଲୋକ, ତା'ଠାରୁ ଦୁର୍ବଳ ଲୋକ ଉପରେ ପ୍ରଭୁତ୍ୱ ବିସ୍ତାର କରେ ।

କାଲ ଠାର କାଲ ମା' ଜାଣେ - ସମାନ କାର୍ଯ୍ୟରେ ଲିପ୍ତ ଲୋକ ପରସ୍ପରକୁ ଜାଣିପାରନ୍ତି ।

କାଳୀ ଗାଈର ଭିନେ ଗୋଠ - ଏକୁଟିଆ ହୋଇ ରହିବା ।

କାହାର ପୁଷମାସ, କାହାର ସର୍ବନାଶ – ଜଣକର ସୁଖବେଳେ ଅନ୍ୟ ଜଣକର ଦୁଃଖ ।
କାନ୍ଧରେ ପଡ଼ିଲେ ବଜାଇ ଶିଖନ୍ତି – ନିଜ ଉପରେ ଦାୟିତ୍ୱ ପଡ଼ିଲେ ଲୋକ ସବୁ କରେ ।
କୀଚକ ବାହୁବଳେ ବିରାଟ ରାଜା – ଅନ୍ୟର ସାହାଯ୍ୟରେ ବଡ଼ ହେବା ।
କୁକୁର ଲାଙ୍ଗୁଡ଼ ବାର ବରଷରେ ସଳଖେ ନାହିଁ – ନୀଚ ଲୋକର ସ୍ୱଭାବ ଅପରିବର୍ତ୍ତନୀୟ ।
କୁସୁମ ପରଶେ ପଟ ନିସ୍ତରେ– ସଜ୍ଜନ ସାନ୍ନିଧ୍ୟରୁ ନିମ୍ନସ୍ଥ ଲୋକ ମଧ୍ୟ ଜଣାଶୁଣା ହୋଇଥାଏ ।
କୋପେ ବର ନୋହିଲେ ତପେ ବର – ଭୟ ପ୍ରଦର୍ଶନ କରି ଅଥବା ସନ୍ତୁଷ୍ଟ କରି କାର୍ଯ୍ୟ ହାସଲ ।
କୋଳି ଖାଇ ମଞ୍ଜି ପୋତିବା – ନିଜର ଏକାଧିପତ୍ୟ ଜାହିର କରିବାପାଇଁ ଉଦ୍ୟମ କରିବା ।
କୌରବଙ୍କର ଖାଇ, ପାଣ୍ଡବଙ୍କର ଗାଇ – ଜଣକଠାରୁ ସାହାଯ୍ୟ ପାଇ ଅନ୍ୟ ଜଣକର କାମ କରିବା ।
ଖଜୁରି ଗଛର କି ଗୁଣ ଗାଇବି ମୂଳରୁ ପାହାଚ ପାହାଚ – ଆରମ୍ଭରୁ ଶେଷଯାଏଁ ଦୋଷରେ ପରିପୂର୍ଣ୍ଣ ।
ଖଣ୍ଡାଧାରରେ ଚାଲିବା – ଖୁବ୍ ସତର୍କତାର ସହ ନିୟମାନୁସାରେ କାର୍ଯ୍ୟ କରିବା ।
ଖଣ୍ଡରେ ଧୋଇଲେ କ୍ଷୀରରେ ମୋହିଲେ ନିମ କି ମଧୁର ହୋଇବ, ଯେତେ ପରକାରେ ବୁଝାଇ କହିଲେ ପର କି ଆପଣା ହୋଇବ– ପ୍ରକୃତି ଅପରିବର୍ତ୍ତନୀୟ ।
ଖାଇ ବସିଲେ ନଈବାଲି ସରେ – ଅଳସୁଆ ଲୋକ ଅମାପ ସଂପତ୍ତିକୁ ସାରି ଦିଏ, ଅଳସୁଆକୁ କିଛି ଅଣ୍ଟେ ନାହିଁ ।
ଖାଇବା ପତରରେ ଧୂଳି ଦେବା– ଜୀବିକାରେ ବାଧା ଦେବା ।
ଖାଇଲା ପୁଅଝିଅ ରଙ୍କ – ସ୍ୱାଦିଷ୍ଟ ଜାଣିଥିବା ଲୋକ ଖାଦ୍ୟ ପ୍ରତି ଅଧିକ ଲାଳାୟିତ ।
ଖୁଣ ଯେଉଁଠି, ଗୁଣ ସେଇଠି – ମନ୍ଦ ଲୋକର ବି କିଛି ସୁଗୁଣ ଥାଏ ।
ଖୁଣ୍ଟ ଗୁଣେ ଘୋଡ଼ା କୁଦେ – ମୁଖ୍ୟ ବା ମୁରବିଙ୍କ ଦୁର୍ବଳତାରୁ ଅଧୀନସ୍ଥ ଲୋକେ ଉଚ୍ଛୃଙ୍ଖଳ ହୋଇଥା'ନ୍ତି ।
ଖୋଳ ପର୍ବତ ମାର ମୂଷା – ସାମାନ୍ୟ କାର୍ଯ୍ୟପାଇଁ କଠିନ ପରିଶ୍ରମ ।
ଗଛ ଚଢ଼ି ନ ଜାଣେ ଯେ, କୁଆ ଅଇଁଠା ଖାଏ ସେ – କୌଣସି କାମକୁ ଠିକ୍ ଭାବରେ ନ କଲେ, ସେଥିରେ ସଫଳତା ମିଳେ ନାହିଁ ।
ଗଙ୍ଗା ଗଲି ଯେତିକି, ଫଳ ପାଇଲି ସେତିକି – ପରିଶ୍ରମ ବ୍ୟର୍ଥ ଜନିତ ମନସ୍ତାପ ।
ଗଛର ଛାଇ ମଣିଷ ହାଇ, ଯେଉଁଠି ପଡ଼େ ଉଧାଏ ନାହିଁ – ଗଛଛାଇରେ ଅନ୍ୟ ଗଛ ନ ବଢ଼ିଲା ପରି ମଣିଷର ଅଭିଶାପ ବା ଅସନ୍ତୋଷରେ ଲୋକର ଉନ୍ନତି ହୁଏ ନାହିଁ ।
ଗରଜିଲା ମେଘ ବରଷେ ନାହିଁ – ପ୍ରକାଶ୍ୟରେ ଭୟ ଦେଖାଉଥିବା ବ୍ୟକ୍ତି କ୍ଷତିକାରକ ନୁହେଁ ।

ଗଲି ଆଇଲି, ଯାହା ଦେଖିଲି ତାହା କହିଲି – କୌଣସି କାମରେ ଦାୟିତ୍ୱ ନ ନେବା ।
ଗହମ ଗୋଟି ଗଣିତା, ରୋଟି ଖାଉଛି କିଏ – ଅଯଥା ବ୍ୟୟ ସଂକୋଚ କରିବା ।
ଗାଁ' କନିଆ ସିଙ୍ଘାଣୀନାକୀ – ଗୁଣୀଲୋକର ନିଜ ଅଞ୍ଚଳରେ ସମ୍ମାନ ନ ଥାଏ ।
ଗାଁ' ପରିମଳ ଧୋବାତୁଠରୁ – ଅନ୍ତରର ନିର୍ମଳତା ଆଚରଣରୁ ଜାଣିହୁଏ ।
ଗାଈକି ମାଇଲେ ମଲି, ଗାଈ ମାଇଲେ ମଲି– ଉଭୟ ଦିଗରୁ ଅସୁବିଧାର ସମ୍ମୁଖୀନ ହେବା ।
ଗାଲୁଆଙ୍କ ବାରବାଟି ଚାଷ – ମିଥ୍ୟାବାଦୀର ବଡ଼ିମା ପ୍ରକାଶ ।
ଗୁଣ ଚିହ୍ନେ ଗୁଣିଆ, ସୁନା ଚିହ୍ନେ ବଣିଆ – ଗୁଣୀଲୋକ କେବଳ ଗୁଣର ଆଦର କରିଥାଏ ।
ଗୁହାଳ ସୁତୁରା ଦେଖିଲେ ଗାଈ ହମାଳି ପଶେ–ଅନୁକୂଳ ପରିବେଶ ସମସ୍ତଙ୍କୁ ଆକୃଷ୍ଟ କରେ ।
ଗୋଟି ଗୋଟି କରି କୋଟିଏ ହୁଏ – ଅଳ୍ପ ଅଳ୍ପ ସଞ୍ଚୟ କଲେ ବହୁତ ହୁଏ ।
ଗେଲ ହେଉହେଉ ତେଲ ବାହାରିବା – ହାସ ପରିହାସରୁ ବିଷମ ପରିସ୍ଥିତି ବା ଅନର୍ଥ ସୃଷ୍ଟି ହେବା ।
ଗୋଠ ମାତିଲେ, ହଡ଼ା ମାତେ – (୧) ଗଣ ବିପ୍ଳବ ଆରମ୍ଭ ହେଲେ ଦୁର୍ବଳ ଲୋକ ମଧ୍ୟ ଆନ୍ଦୋଳନରେ ଝାସଦିଏ । (୨) ସମୂହ କାର୍ଯ୍ୟରେ ଅକର୍ମା ବି ସାମିଲ ହୁଏ ।
ଗୋଦରା କୋଡ଼େ ଯେତେ, ମାଡ଼େ ସେତେ – ଲାଭକ୍ଷତି ସମାନ, ଉନ୍ନତି ଯେତିକି ଅବନତି ସେତିକି ।
ଗୋଦରୀ ଲୋ, ତୋ' ଗୋଡ଼କୁ ଅନା – ଅନ୍ୟର ଦୋଷ ଦେଖିବା ପୂର୍ବରୁ ନିଜର ଦୋଷ ଦେଖିବା ଉଚିତ ।
ଘଇତା ପଛେ ମରୁ, ସଉତୁଣୀ ରାଣ୍ଡ ହେଉ – ଶତ୍ରୁର କ୍ଷତି କରିବାକୁ ଯାଇ ନିଜର କ୍ଷତି କରିବା ।
ଘର ଢିଙ୍କି କୁମ୍ଭୀର – ନିଜ ଲୋକର ଶତ୍ରୁତା ଆଚରଣ ।
ଘର ଦିଅଁ ନ ପୂଜି ପରଦିଅଁ ପୂଜିବା – ନିଜ ସଂସ୍କୃତିକୁ ଛାଡ଼ି ଅନ୍ୟ ସଂସ୍କୃତିକୁ ଆଦରିବା ।
ଘୁଷୁରିକୁ ପାଚିଲା କଦଳୀ ରୁଚେ ନାହିଁ– ନୀଚ ଲୋକକୁ ଭଲକାମ ବା କଥା ଭଲ ଲାଗେନି ।
ଘୋଡ଼ା ଛ' ଟଙ୍କାକୁ ଦାନା ନ' ଟଙ୍କା – ସାମାନ୍ୟ ଲାଭପାଇଁ ଯଥେଷ୍ଟ ବ୍ୟୟ କରିବା ।
ଚକୁଳି ଖାଇବା ଲୋକର ବିନ୍ଧ ଗଣିବା – ଅସାର ବିଷୟରେ ମନଦେବା ।
ଚକେ ଗଲେ ବାର ହାତ – ସାମାନ୍ୟ ବିପଦ ବା ଅସୁବିଧା ଟଳିଗଲେ ଖୁବ୍ ହାଲୁକା ଲାଗେ, ବାହାନା ଦେଖାଇ ଖସିଯିବା ।
ଚଟୁ ଆଇଁଷ, ବେଣ୍ଟ ନିରାମିଷ – ପରସ୍ପର ବିରୋଧୀଭାବ ।

ଚାଲି ନ ଜାଣି ବାଟର ଦୋଷ – ନିଜର ଅପାରଗତାକୁ ଘୋଡ଼ାଇବାକୁ ଯାଇ ଅନ୍ୟ ଉପରେ ଦୋଷ ଲଦିବା ।

ଚାଷ ତରତର ବଣିଜ ମଠ – ଭିନ୍ନ କାର୍ଯ୍ୟପାଇଁ ସମୟର ଭିନ୍ନ ଭିନ୍ନ ଉପଯୋଗ ।

ଚାଷୀ ହୁଡିଲେ ବରଷେ, ଭାଷା ହୁଡ଼ିଲେ ପୁରୁଷେ – ଚାଷ ପ୍ରତି ଅବହେଳାରୁ ଚାଷୀ ଏକ ବର୍ଷ କ୍ଷତି ଶହେ; ମାତ୍ର ବ୍ୟକ୍ତି ଭାଷା ବା ଶିକ୍ଷା ପ୍ରତି ଅବହେଳାରୁ ମୃତ୍ୟୁଯାବତ୍ ବଞ୍ଚିତ ହୁଏ ।

ଚିନ୍ତା ଖାଏ ଗଣ୍ଡି, ଲୁଣ ଖାଏ ହାଣ୍ଡି – ଚିନ୍ତା ଶରୀରକୁ ଓ ଲୁଣ ହାଣ୍ଡିକୁ ଅଳ୍ପାୟୁ କରେ ।

ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ – ପରିଚିତ ବ୍ୟକ୍ତିର ପରିଚୟ ପ୍ରଦାନ ଅନାବଶ୍ୟକ ।

ଚେଇଁ ଶୋଇଥିବ ଯିଏ, ତାକୁ ଉଠାଇବ କିଏ – ଜାଣି ଅବୁଝା ହେଉଥିବା ଲୋକକୁ କେହି ବୁଝାଇପାରେ ନାହିଁ ।

ଚୋର ଗଲା ପରେ ବୁଦ୍ଧି ଦିଶେ – ବିପଦ ଭୋଗିସାରିଲା ପରେ ଲୋକ ସତର୍କ ହୁଏ ।

ଚୋର ଘର ସର୍ବଦା ଅନ୍ଧାର ନ ଥାଏ – ବାରମ୍ବାର ମନ୍ଦ କାମ କରୁଥିବା ଲୋକ ଦିନେ ନା ଦିନେ ଧରାପଡ଼େ, କୁକର୍ମର ପ୍ରାୟଶ୍ଚିତ ନିଶ୍ଚିତ ।

ଚୋର ମନ ଗଣ୍ଠି (ଗଣ୍ଠିଲି)ରେ – ନୀଚଲୋକ ନୀଚକାର୍ଯ୍ୟରେ ଆସକ୍ତ ।

ଛତୁଉଠା କାଠ, ନିଶଉଠା ପାଠ – ସମୟ ଅତିକ୍ରାନ୍ତ ହେବା ପରେ କାର୍ଯ୍ୟ ସଂପାଦନ ମୂଲ୍ୟହୀନ ।

ଛାଇକି ଛ' ଗୋଇଠା ମାରିବା – ଅକାରଣରେ କଳି କରିବା ।

ଖରାକୁ ଛତା, ପାଦକୁ ଜୋତା – ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ଦରକାରୀ ଦ୍ରବ୍ୟ ।

ଛାଇ ପଡ଼ିଲେ ନାହି ଡେଇଁବା – ଘୋର ଶତ୍ରୁତା ଆଚରଣ ।

ଛିଣ୍ଡାକବଟା, ହଜିଲେ ମଠା – ମୂଲ୍ୟହୀନ ଜିନିଷ ହଜିଲେ ମୂଲ୍ୟବାନ କହିବା ।

ଛୋଟ ମୁହଁରେ ବଡ଼ କଥା – ନୀଚ ଲୋକର ଉଚ୍ଚଚିନ୍ତା ।

ଛୋଟୀକୁ ଶ୍ରୀମତୀ କହିଲେ ଗୋଡ଼ ବୁଲାଇ ବୁଲାଇ ପକାଏ – ଗୁଣହୀନ ଲୋକକୁ ପ୍ରଶଂସା କଲେ, ସେ ଗର୍ବରେ ଫୁଲି ଉଠେ ।

ଜଳ ବହୁଳେ ସୃଷ୍ଟି ନାଶ, ଜଳ ବିହୁନେ ସୃଷ୍ଟିନାଶ – ବହୁବୃଷ୍ଟି ଓ ଅନାବୃଷ୍ଟି କ୍ଷତିକାରକ ।

ଜାଣି ଘୋଡ଼ାର ଶିଙ୍ଗ ନାହିଁ, ଶିଙ୍ଗ ଥିଲେ ଘୋଡ଼ା ରଖନ୍ତା ନାହିଁ – ଶକ୍ତିଶାଳୀର ଶକ୍ତି ସୀମିତ ।

ଜାନ୍ ଯାଉ, ମାନ ଥାଉ – ସମ୍ମାନରକ୍ଷା ପ୍ରାଣଠାରୁ ଅଧିକ ମୂଲ୍ୟବାନ ।

ଜୋର୍ ଯାହାର ମୁଲକ ତାହାର – ଶକ୍ତିଶାଳୀ ହିଁ ଆଧିପତ୍ୟ ବିସ୍ତାର କରେ, ବଳ ପ୍ରୟୋଗ କରି କାର୍ଯ୍ୟହାସଲ ।

ଝର ନ ପଶିଲେ ଘର ହୁଏ ନାହିଁ – ବନ୍ଧୁ ଅର୍ଜନ ନ ଥିଲେ ଗଠନମୂଳକ କାର୍ଯ୍ୟ ହୁଏ ନାହିଁ ।

ଝିମିଟି ଖେଳରୁ ମହାଭାରତ – ସାଧାରଣ କଥାରୁ ଭୟଙ୍କର ପରିସ୍ଥିତିର ସୂତ୍ରପାତ ।

ଟଙ୍କା ଥିଲେ ବାଘ ଗୋଡ଼ ମୋଡ଼ିଦିଏ - ଟଙ୍କା ବଳରେ ସମସ୍ତେ ବଶ ।

ଟଙ୍କା ମୁହଁ କରିଦିଏ ବଙ୍କା - ଅର୍ଥଦ୍ୱାରା ସମସ୍ତେ ବଶୀଭୂତ ।

ଟେକାଟିଏ ମାରିଲେ ପଥରଟିଏ ଥୁଆ - ସାଧାରଣ ଭୁଲପାଇଁ ବି କଠିନଦଣ୍ଡ ମିଳେ ।

ଟେକା ହାତରୁ ଖସିଲେ ଅଣଆୟତ୍ତ (ଅଣବାହୁଡ଼ା)- ଅତର୍କିତ କାର୍ଯ୍ୟର ପରିଣତି ମନ୍ଦ, ଜାଣିଶୁଣି ଭୁଲ କଲେ ସହଜରେ ସୁଧାରି ହୁଏନି ।

ଠକ ନ ଦେଖିଲେ ବଣିଆ ଦେଖ - ବଣିଆ ଠକୁଥିବାର ବିଶ୍ୱାସ ।

ଠାକୁର ଖାଇ ଖଟୁଲି ଖାଇବା - ସର୍ବସ୍ୱ ଖାଇଯିବା ।

ଠିକିଲେ ଶିଖନ୍ତି - ଅସଫଳତାରୁ ଶିକ୍ଷାଲାଭ ।

ଡର କାହାକୁ ଭୟ କାହାକୁ, ଈଶ୍ୱର ଅଛନ୍ତି ଚଉବାହାକୁ - ଗଭୀର ଈଶ୍ୱରବିଶ୍ୱାସ ମଣିଷକୁ ନିର୍ଭୟ କରେ ।

ଡାଳୁଅ ଯୋଗୁ କାନିସିରି ପାଣି ପାଏ - ମହତ୍ ଜନର ସାନ୍ନିଧ୍ୟରୁ ସାଧାରଣ ଲୋକ ମଧ୍ୟ ଉପକୃତ ହୁଏ ବା ଜଣାଶୁଣା ହୁଏ ।

ଡେଙ୍ଗା ମୁଣ୍ଡରେ ଠେଙ୍ଗା - ମୁରବି ଉପରେ ବିପଦ, ଆଗୁଆ ଲୋକ ବିପଦରେ ପଡ଼ିଥାଏ ।

ଢାଉଁ ଢାଉଁ ବାଜଇ ଢୋଲ, ବାହାର ଚିକ୍‌କଣ ଭିତର ପୋଲ- ଉପରକୁ ଭଦ୍ର ଓ ଦୋଷଶୂନ୍ୟ ଜଣାଯାଉଥିବା ଲୋକ ମଧ୍ୟ ବହୁ ଦୁର୍ଗୁଣର ଆକର ।

ଢିଙ୍କିଶାଳ କଥା ନ ଜାଣି ଢେଙ୍କାନାଳ କଥା କହିବା - ନିଜ ଅଞ୍ଚଳ ବିଷୟରେ ଅଜ୍ଞ ରହି ଦୂରଦେଶ ସମ୍ବନ୍ଧରେ ବଖାଣିବା ।

ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ - କାମିକା ଲୋକ ସବୁ ସ୍ଥାନରେ କାମ କରିପାରେ ।

ଢୋକେ ପି ଦଣ୍ଡେ ଜି - କୌଣସି ପ୍ରକାରେ ଚଳିଯିବା, ନିଅଣ୍ଟିଆ ଅବସ୍ଥା ।

ତତଲା ପାଣିରେ ଘର ପୋଡ଼ିବା - ଅସମ୍ଭବ କଥା ।

ତପେ ବର, ନୋହିଲେ କୋପେ ବର - ଅନୁନୟ ବିନୟରେ ବା ଜୋର୍ ଜବରଦସ୍ତ କାର୍ଯ୍ୟ ହାସଲ ।

ତରକିଲା କୁଆ ଶହେ ବର୍ଷ ବଞ୍ଚେ - ସତର୍କତା ଲୋକକୁ ବିପଦମୁକ୍ତ କରେ ।

ତିନି ତୁଣ୍ଡରେ ଛେଳି କୁକୁର - ମିଥ୍ୟା ହେଲେ ହେଁ ବହୁମତ ଗ୍ରହଣୀୟ ।

ତୁଚ୍ଛାକୁ ଏତେ, ମୁଦି ନାହିଁ ଗୋଡ଼ କଟାଡୁ କେତେ - ଧନହୀନ ଲୋକର ଦେଖେଇହେବା ଢଙ୍ଗ ।

ତୁଣ୍ଡ ନରେନ୍ଦ୍ର ପିଠି ଅରକ୍ଷିତ - ଦରିଦ୍ରର ବଡ଼ ବଡ଼ କଥା ।

ତୁଣ୍ଡ ଫିଟିଲେ ମୁଣ୍ଡ ହଲେ - କଥା ଠିକ୍ ଭାବରେ କହିପାରିଲେ ଅନେକ ଅସୁବିଧାରୁ ରକ୍ଷା ମିଳେ ।

ତୁଣ୍ଡ ବାଇଦ ସହସ୍ର କୋଶ – ଲୋକମୁଖରେ କଥା ବହୁଦୂରକୁ ବ୍ୟାପିଯାଏ ।
ତୁଳସୀ ଦୁଇ ପତ୍ରରୁ ବାସେ – ଭବିଷ୍ୟତରେ ବଡ଼ ହେବାର ସୂଚନା ପିଲାବେଳୁ ଜଣାଯାଏ ।
ତେଲ ଘଡ଼ିକି ଆଶା, ପୁଅ ମୁଣ୍ଡକୁ ଆଶା – ସବୁଆଡ଼କୁ ଲୋଭ, ବିନା ଖର୍ଚ୍ଚରେ ଅଭାବ ପୂରଣ କରିବା ଇଚ୍ଛା ।
ତେଲିଆମୁଣ୍ଡରେ ତେଲ – ଯାହାର ବହୁତ ଅଛି ତାକୁ ହିଁ ଦେବା, ଧନୀକୁ ଧନ ଦେବା ।
ଥିର ଲୋକ କ୍ଷୀର ପିଏ – ସାବଧାନତା ସହକାରେ କାମ କଲେ ସୁଫଳ ମିଳେ ।
ଥିରି କଥା, ହରେ ବ୍ୟଥା – କୋମଳବଚନ ସମସ୍ତଙ୍କୁ ସନ୍ତୁଷ୍ଟ କରେ ।
ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ-ମଣିଷ ଦୈବାଧୀନ ।
ଦଳେଇ ଆସିଲେ ମୂଳରୁ ଗାଆ – ଧନୀ ବା ପ୍ରତିଭାଶାଳୀ ଲୋକ ଉପସ୍ଥିତ ହେଲେ, କୁହା କଥାକୁ ଆଉଥରେ କହିବାକୁ ହୁଏ ।
ଦିହୁଡ଼ି ଆଗରେ ଦୀପ – ପ୍ରତିଭାଶାଳୀ ଲୋକ ସହିତ ସାଧାରଣ ଲୋକ ତୁଳନୀୟ ନୁହେଁ ।
ଦୀପ ତେଜିଲେ ହାତ ଚିକ୍କଣ – ଅଭିଜ୍ଞତାରୁ ଲାଭବାନ ।
ଦୁଇଜଣଙ୍କର କଳିରେ ତୃତୀୟର ଲାଭ- ଦୁଇଜଣଙ୍କର ଝଗଡ଼ାରୁ ଅନ୍ୟଜଣେ ସୁବିଧା ହାସଲ କରେ ।
ଦେଶକେ ଫାଙ୍କ, ନଈକେ ବାଙ୍କ – ସ୍ଥାନ ଭେଦରେ ଚଳଣି ଭିନ୍ନ ।
ଧରମ ଡଙ୍ଗା ବୁଡ଼େ ନାହିଁ – ଧର୍ମର କେବଳ ବିଜୟ ହୁଏ ।
ଧରାକୁ ସରା ମଣିବା – ଗର୍ବରେ କାହାକୁ ଖାତିର ନ କରିବା ।
ଧାନ ପେଟରୁ ବାଲୁଙ୍ଗା ଜାତ – ମହତ୍‌ଜନର ପୁଅ ମନ୍ଦ ହେବା ।
ଧୀର କଥାରେ ବଇରୀ ବଶ – ନମ୍ରତାଦ୍ୱାରା ଶତ୍ରୁକୁ ମଧ ଆପଣାର କରିହୁଏ ।
ଧୀର ପାଣି ପଥର କାଟେ – ଧୀରସ୍ଥିର ଭାବରେ କାମ କଲେ ସଫଳତା ମିଳେ ।
ଧୂଆମୂଳା ଅଧୁଆମୂଳା ସବୁ ସମାନ – ଭଲମନ୍ଦ ବା ଠିକ୍ ଭୁଲ୍ ମଧ୍ୟରେ ପାର୍ଥକ୍ୟ ନ ଦେଖିବା ।
ନ ଦେଖିଲା ଓଉ ଛ'ଫଡ଼ା – ଦେଖି ନ ଥିବା ବସ୍ତୁ ସଂପର୍କରେ ଅତିଶୟୋକ୍ତି ବା ଆନୁମାନିକ ବକ୍ତବ୍ୟ ।
ନଇଁ ପଡ଼ିଥିବ ଯେତିକିବେଳେ, ବିଧାଏ ମାରିବ ସେତିକିବେଳେ- ଅନ୍ୟର ଅସୁବିଧା ସମୟରେ ପ୍ରତିଶୋଧ ନେବା ।
ନଈ ନ ଦେଖୁଣୁ ଲଙ୍ଗଳା – ବିପଦ ନ ଆସୁଣୁ କାତର ହେବା ।
ନଈରେ ଘର କରି କୁମ୍ଭୀର ସଙ୍ଗେ କଳି – ଅଧୀନ ହୋଇ ଉପରିସ୍ଥ ଅଧିକାରୀଙ୍କ ସହ ମତାନ୍ତର ।
ନଈ ସୁଅକୁ ବାଲିବନ୍ଧ – ବୃଥା ପରିଶ୍ରମ ।
ନରମାୟା ନାରାୟଣଙ୍କୁ ଅଗୋଚର – ମଣିଷର କୁଟିଳତା ଅବୋଧ ।

ନାଚି ନ ଜାଣି ଅଗଣାଦୋଷ – ନିଜର ଦୋଷ ପ୍ରତି ଆଖିବୁଜି ଦେଇ ଅନ୍ୟର ଦୋଷ ନିରୂପଣ କରିବା ।

ନାନାମୁନିଙ୍କର ନାନା ମତ – ବ୍ୟକ୍ତି ଭେଦରେ ଚିନ୍ତାଧାରା ଭିନ୍ନ ।

ନାହିରେ ତେଲ ପକାଇ ଶୋଇବା – ନିଶ୍ଚିନ୍ତ ହୋଇ ରହିବା ।

ନିଜେ ଭଲ ଥିଲେ ଦୁନିଆ ଭଲ – ନିଜକୁ ସଜାଡ଼ିପାରିଲେ ସମାଜ ଶୃଙ୍ଖଳିତ ହେବ ।

ପଣ୍ଡିତ ପୁଅ ମାଙ୍କଡ଼ ମାରିଲେ ଦୋଷ ନାହିଁ – ବଡ଼ ବା ବିଜ୍ଞଜନ ପୁତ୍ରର ଦୋଷ ଧରାଯାଏନି ।

ପତର ଗୋଟାଇବା ଲୋକର ତୋଟାମୂଲ – ଅଯୋଗ୍ୟ ବ୍ୟକ୍ତିର ନିଜର ସୀମା ସମ୍ବନ୍ଧରେ ଅଜ୍ଞତା ।

ପାଗ ବାନ୍ଧୁବାନ୍ଧୁ କଚେରି ବରଖାସ୍ତ – କୌଣସି କାର୍ଯ୍ୟରେ ଯୋଗଦେବାପାଇଁ ପ୍ରସ୍ତୁତ ହେଉହେଉ କାର୍ଯ୍ୟ ସମାପ୍ତି ।

ପାଣି ପିଇବ ଛାଣି, ପଇସା ନେବ ଗଣି – ପିଇବା ପାଣି ତଥା ଅର୍ଥ କାରବାର କ୍ଷେତ୍ରରେ ସାବଧାନତା ଅବଲମ୍ବନୀୟ ।

ପାପଧନ ପ୍ରାୟଶ୍ଚିତ୍ତରେ ଯାଏ – ଅନ୍ୟାୟରେ ଅର୍ଜିତ ଧନ ଭୋଗକରି ହୋଇ ନ ଥାଏ ।

ପୃଥ୍ୱୀ କ୍ଷଣକ୍ଷଣକେ ଆନ – ପୃଥିବୀ ନିତ୍ୟ ପରିବର୍ତ୍ତନଶୀଳ ।

ପେଟପୋଷ ନାହିଁ ଦୋଷ – ଜୀବନଧାରଣପାଇଁ ଯେକୌଣସି ବୃତ୍ତି ଗ୍ରହଣୀୟ ।

ପୋଥିଗତ ବିଦ୍ୟା ପରହସ୍ତ ଧନ – ବହିରେ ଥିବା ଜ୍ଞାନ ଓ ଅନ୍ୟପାଖରେ ଥିବା ଧନ କାର୍ଯ୍ୟବେଳକୁ ଉପଯୋଗ ହୋଇପାରନ୍ତି ନାହିଁ ।

ପୋଷାପୁଅ, ଗୁଞ୍ଜାରୁଅ – ପୋଷ୍ୟପୁତ୍ର ପୋଷକ ପିତାମାତାଙ୍କର ପ୍ରକୃତ ହିତକାରୀ ହୋଇ ନ ଥାଏ ।

ପୋତା ଯେତେ ଉଭା ସେତେ – ଖୁବ୍ ସୁଦୃଢ଼ ସ୍ଥିତି ।

ଫକଡ଼ରାମ ଗିରିଧାରୀ – ଅତି ଗରିବ ।

ଫମ୍ପାମାଠିଆର ଶବ୍ଦ ବେଶି – ମୂର୍ଖଲୋକର ବଡ଼ବଡ଼ କଥା ବା ବାହାଦୁରି ।

ଫଳନ୍ତି ଗଛ ଫୋପଡ଼ ସହେ – ଜ୍ଞାନୀ ତଥା ଗୁଣବନ୍ତ ଲୋକ ଦୁର୍ଜନର ନିର୍ଯାତନା ସହେ ।

ଫୁଟିଲା ଫୁଲ ଜଗତବାସେ – ମହତ୍ ଲୋକର ମହତ୍ତ୍ୱ ସମସ୍ତେ ଜାଣନ୍ତି ।

ବଗର ବେକ ବଢ଼ିଲେ ମୀନର ବିପତ୍ତି – ଦୁଷ୍ଟ ଶକ୍ତିଶାଳୀ ହେଲେ ସାଧାରଣ ଜନତା ଅତ୍ୟାଚାରିତ ହୁଅନ୍ତି ।

ବଚନେ କି ଦରିଦ୍ରତା – ଭଦ୍ର ବ୍ୟବହାରରେ କୁଣ୍ଠାପ୍ରକାଶ ଅନୁଚିତ ।

ବସି ଖାଇଲେ ନଈବାଲି ସରେ – ରୋଜଗାର ନ କଲେ ଅଚଳାଚଳ ସମ୍ପତ୍ତି ମଧ୍ୟ ସରିଯାଏ ।

ବସିବାଠାରୁ କାଶିବା ଭଲ – ଅଳସୁଆ ହେବା ଅପେକ୍ଷା କିଛି ନା କିଛି କାମ କରିବାରେ ଉପକାରିତା ଅଛି ।

ବହୁ ଆଡ଼ମ୍ବରରେ ଲଘୁକ୍ରିୟା - କାର୍ଯ୍ୟାରମ୍ଭ ଆଡ଼ମ୍ବର ପୂର୍ଣ୍ଣ ହେଲେ, ତାହା ବିଶେଷ ଫଳବତୀ ହୁଏ ନାହିଁ ।

ବହୁ ଲୋକରେ ମୂଷା ମରେ ନାହିଁ - ଅଧିକସଂଖ୍ୟକ ଲୋକରେ କାମ ଠିକ୍ ହୁଏନା ।

ବାଘ ଘରେ ମିରିଗ ନାଚ୍-ଶକ୍ତିଶାଳୀ ଲୋକର ଅନୁପସ୍ଥିତିରେ ଦୁର୍ବଳ ଲୋକର ପ୍ରଭୁତ୍ୱ ବିସ୍ତାର ।

ବାଘ ଛେଳି ଏକା ତୁଠରେ ପାଣି ପିଇବା - କଠୋର ଶାସନ ।

ବାଘର ଫାଗକୁ ଭୟ - ଶକ୍ତିଶାଳୀ ଲୋକର ମଧ୍ୟ ଦୁର୍ବଳକୁ ଡର ଥାଏ ।

ବାର ଜାତି ତେରଗୋଲା, ବୈଷ୍ଣବ ହେଲେ ସବୁ ଗଲା- ବୈଷ୍ଣବ ବା ସାଧୁ ସନ୍ନ୍ୟାସୀ ଜାତିର ଊର୍ଦ୍ଧ୍ୱରେ ।

ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବା- ଦୀର୍ଘ ସାଧନାରେ ଅର୍ଜିତ ସୁନାମ ସାମାନ୍ୟ କୁକର୍ମରେ ନଷ୍ଟ ହୋଇଯାଏ ।

ବିନା ମେଘରେ ବଜ୍ରପାତ- ଆକସ୍ମିକ ବିପଦ ।

ବିନାଶକାଳେ ବିପରୀତ ବୁଦ୍ଧି - ବିପଦରେ ବୁଦ୍ଧିବଣା ହୁଏ ।

ବିଡ଼ିମୋଡ଼ ଦେଖି କୋଳଥ ଚେପା- ଜଣକର ଦଣ୍ଡ ଦେଖି ଅନ୍ୟ ଦୋଷୀ ଭୟରେ ଛାନିଆ ହୁଏ ।

ବୁଡ଼ିଗଲା ଗୋଡ଼ ତଳକୁ ତଳକୁ - ଗୋଟିଏ ଭୁଲରୁ ଅନେକ ଭୁଲ କରିବାକୁ ହୁଏ ।

ବେଳ ପଡ଼ିଥିବ ଯେତିକିବେଳେ, ବିଧାଏ ମାରିବ ସେତିକିବେଳେ - ବିପଦରେ ଶତ୍ରୁର ପ୍ରତିଶୋଧ ନେବା ଉପଯୁକ୍ତ ସମୟ ।

ବେଲ ପାଚିଲେ କୁଆର କି ଯାଏ - ଦୁର୍ଲଭ ବସ୍ତୁକୁ ଆଶାକରିବା ଅନୁଚିତ ।

ଭିକ ନ ଦେଇ ଥାଳ ଭାଙ୍ଗିବା - ସାହାଯ୍ୟ ନ କରି ହଇରାଣ କରିବା ।

ଭୀମବଳ କୁନ୍ତୀକୁ ଜଣା - ପୁଅର ଶକ୍ତିସାମର୍ଥ୍ୟ ମାଆକୁ ଜଣା ।

ଭେକ ଥିଲେ ଭିକ ମିଳେ - ଯୋଗ୍ୟତା ଥିଲେ କାମର ଅଭାବ ହୁଏନି, ପୋଷାକପତ୍ରରୁ ବ୍ୟକ୍ତିର ବ୍ୟକ୍ତିତ୍ୱ ସୂଚିତ ହୁଏ ।

ମଲୁଖୋଜୁଥିଲା କାକର ପାଣି, ବଇଦ ବୋଇଲା ଦେ' ତୋରାଣି- ମନଜାଣି ଈପ୍‌ସିତବସ୍ତୁ ଲାଭ ।

ମଲା ଘୋଡ଼ାର ଟାଙ୍ଗ ମାପିବା - ଅସାର କଥାରେ ମନଦେବା ।

ମହାକାଳ ଫଳ ବଡ଼ ସୁନ୍ଦର, ଭିତର ଦେଖିଲେ ପୋଡ଼ା ଅଙ୍ଗାର- ଉପରକୁ ଆପାତତଃ ଅତି ଭଦ୍ର ଜଣାପଡୁଥିବା ଲୋକ ଭିତରେ ବହୁଦୁର୍ଗୁଣ ଥାଏ ।

ମାଇ ନୁହେଁ କି ଗାଈ ନୁହେଁ - ସବୁ ଦୃଷ୍ଟିରୁ ଅଯୋଗ୍ୟ ।

ମାଙ୍କଡ଼ ହାତରେ ଶାଳଗ୍ରାମ - ଅଯୋଗ୍ୟ ଲୋକକୁ ଗୁରୁଦାୟିତ୍ୱ ପ୍ରଦାନ ।

ମାଗି ଆଣିଲା ତିଅଣ ହାପୁଡ଼େ (ସୁଡୁକାଏ) - ମଗା ଜିନିଷରେ କାର୍ଯ୍ୟ ଚଳେ ନାହିଁ, ପରଦ୍ୱାରା କାର୍ଯ୍ୟ କଲେ ଆତ୍ମସନ୍ତୋଷ ମିଳେ ନାହିଁ ।

ମାଗିବାଠାରୁ ହୀନ ନାହିଁ କି ଦେବାଠାରୁ ପୁଣ୍ୟ ନାହିଁ - ଭିକ୍ଷାବୃତ୍ତି ନୀଚ କର୍ମ ଓ ଦାନ କରିବା ମହତ୍ କାର୍ଯ୍ୟ ।

ମାଛି ପଡ଼ିଲେ ନବଖଣ୍ଡ - କଡ଼ା ନିରାପତ୍ତା ବ୍ୟବସ୍ଥା ।

ମାନିଲେ ଠାକୁର, ନ ମାନିଲେ ପଥର - ବିଶ୍ୱାସ ମୂଳରେ ସବୁକିଛି ।

ମାରିନେଲେ ମହାପାତ୍ରେ, ଚାହିଁଥା'ରେ ଜଳକା - ଚତୁର ଲୋକ ସୁବିଧା ହାସଲ କଲାବେଳେ, ବୋକାଲୋକ ନିରାଶ ହୁଏ ବା ଅପଦସ୍ଥ ହୁଏ ।

ମାଳୀକୁ ଛେଳି ଅଡୁଆ - ବୃତ୍ତିବିରୋଧୀ କାର୍ଯ୍ୟ ।

ମୁଣ୍ଡରେ କପଡ଼ା(ପଗଡ଼ି) ପାଦରେ ତେଲ, ବଇଦ ସାଙ୍ଗରେ ହୋଇବ ଗେଲ- ଏ ଉଭୟ ସ୍ୱାସ୍ଥ୍ୟନିମିତ୍ତ ହିତକର ।

ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କମ୍ପା କଳି - ଶତ୍ରୁ ସୃଷ୍ଟି ନ ହେବାପାଇଁ ମୂଳରୁ ସାବଧାନତା ଅବଲମ୍ବନୀୟ ।

ମୂଳରୁ ମାଇପ ନାହିଁ, ପୁଅ ନାଁ ଗୋପାଳିଆ - ଅସମ୍ଭବ ଅବତାରଣା ।

ମୋତେ ଯେତେ ମାଠିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ - ଯେତେ ଉପଦେଶ ଦେଲେ ମଧ୍ୟ ସ୍ୱଭାବ ବଦଳେ ନାହିଁ ।

ଯତ୍ନ କଲେ ରତ୍ନ ମିଳେ - କାର୍ଯ୍ୟ ଅନୁସାରେ ଫଳ ଲାଭ, ପରିଶ୍ରମର ଫଳ ମଧୁମୟ ।

ଯାଚି କଲ୍ୟାଣ ମାଗି ଓଳିଗି - ଅନାହୂତ ଭାବେ କାର୍ଯ୍ୟ କରିବା ।

ଯାତ୍ରା ଦେଖା କଦଳୀ ବିକା - ଏକ ସଙ୍ଗରେ ଦୁଇଟି କାର୍ଯ୍ୟ ସାଧନ ।

ଯାହାର ମନ ଯେଡ଼େ, ତାହାର ପ୍ରଭୁ ତେଡ଼େ - ମନ ଅନୁସାରେ ଫଳ ପାଇ ।

ଯାହାର ଲୁଣ ଖାଇ, ତାହାର ଗୁଣ ଗାଇ - ଉପକାରୀର ଉପକାର ସ୍ୱୀକାର କରିବା ।

ଯା' ପୁଅକୁ ସାପ କାମୁଡ଼ି ଥାଏ, ତା' ମାଆ ପାଳଦଉଡ଼ି ଦେଖିଲେ ଡରେ- ବଡ଼ ବିପଦ ଭୋଗିଥିବା ଲୋକ ସାମାନ୍ୟ ବିପଦ ଆଶଙ୍କାରେ କାତର ହୁଏ ।

ଯେଡ଼େ ବାଉଁଶ ସେଡ଼େ ପୋଲ - ଆୟ ଅନୁସାରେ ବ୍ୟୟ ।

ଯେତିକି ଚୂନା ସେତିକି ପିଠା - ଆୟ ଦେଖି ବ୍ୟୟ କରିବା ।

ଯେ ଦେଶ ଯାଇ ସେ ଫଳ ଖାଇ - ପରିସ୍ଥିତି ଅନୁଯାୟୀ କାର୍ଯ୍ୟ ସଂପାଦନ ।

ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତହିଁର ବେଭାର- ଅଭିଜ୍ଞତା ଅନୁସାରେ ଜ୍ଞାନାର୍ଜନ ।

ଯେମିତି ଦିଅଁଙ୍କୁ ସେମିତି ପୂଜା, ବାଲିଗରଡ଼ାକୁ ଚାଉଳ ଭଜା - ଗୁଣ ଅନୁସାରେ ଆଦର ଓ ଅନାଦର ।

ଯେସାକୁ ତେସା - ବ୍ୟବହାର ଦେଖି ବ୍ୟବହାର ପ୍ରଦର୍ଶନ ।

ଯୋଡ଼ାକୁ ଘୋଡ଼ା ସରି ନୁହେଁ-ସମୂହଶକ୍ତିର ବିଜୟ, ମିଳିତ ଶକ୍ତିଦ୍ୱାରା କାର୍ଯ୍ୟସାଧନ ସହଜ ।

ରାଜା ଆଗରେ ପୁଅ, ରାଣୀ ଆଗରେ ଝିଅ – ଦୁଇ ପକ୍ଷକୁ ଖୁସି କରାଇ କାର୍ଯ୍ୟ ହାସଲ ।
ରାଣ୍ଡର ଆମିଷ ଚିନ୍ତା – ଅଯଥା ମୁଣ୍ଡଖେଳେଇବା ।
ରାତି ନ ଥାଇ ଦିନ ନାହିଁ – ସୁଖଦୁଃଖ ସମ୍ବନ୍ଧାନ୍ୱିତ ।
ରୁକୁଣା ରଥ ଅଣଲେଉଟା – କଠୋର ପ୍ରତିଜ୍ଞା, ଅପରିବର୍ତ୍ତନୀୟ ମତ ।
ଲଙ୍କାରେ ହରିଶବ୍ଦ – ଅସମ୍ଭବ କଥା ।
ଲକ୍ଷେ ଅରିଜିଲେ ପକ୍ଷକୁ ନିଅଣ୍ଟ – ବଡ଼ ପରିବାରରେ ସବୁବେଳେ ନିଅଣ୍ଟ ।
ଲକ୍ଷେ ଛୁଞ୍ଚିରେ ଦାଆ ହୁଏନି – ବହୁ ଅଯୋଗ୍ୟଲୋକଙ୍କ ଦ୍ୱାରା କାର୍ଯ୍ୟସିଦ୍ଧି ହୁଏନା ।
ଲମ୍ୱ ପଣତ ସବୁଆଡ଼କୁ ପାଏ – ପ୍ରୟୋଜନଠାରୁ ଅଧିକ ବ୍ୟବସ୍ଥା କରିବା ସବୁଦିଗରୁ ଶ୍ରେୟସ୍କର ।
ଲାଭ ନ ଥାଇ ବଣିଜ ନାହିଁ – ବ୍ୟବସାୟମାତ୍ରେ ଲାଭ ।
ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି – ଯେତେ ଲୁଚାଇଲେ ବି ଦୋଷ ଧରାପଡ଼େ ।
ଲୁହା କଅଁଳ ଦେଖିଲେ, ବିରାଡ଼ି କାମୁଡ଼ି ଗୋଡ଼ାଏ – ଅତି ସରଳ ଲୋକକୁ ସମସ୍ତେ ହଇରାଣ କରନ୍ତି, ଶାସନ ହୁଗୁଳା ହେଲେ ଶାସିତ ଉଚ୍ଛୃଙ୍ଖଳ ହୁଏ ।
ଲେଖୁଲେଖୁ କରଣ – ଅଭ୍ୟାସରୁ ଦକ୍ଷତା ବଢ଼େ ।
ଶାଳଗ୍ରାମର ଶୋଇବା ବସିବା ସମାନ – ସଂସାରବିରାଗୀ ଲୋକ ।
ଶହେ ରୋଗୀ ମାରିଲେ ବଇଦ – ଅଭିଜ୍ଞତାରୁ ଯୋଗ୍ୟତା ବୃଦ୍ଧି ।
ଶାଗଖିଆକୁ ପେଜଖିଆ ଦେଖିପାରେ ନାହିଁ – ଗରିବ ଲୋକ ତା'ଠାରୁ ଗରିବ ଲୋକକୁ ଈର୍ଷା କରେ ।
ଶୁଣ୍ଢି ସାକ୍ଷୀ ମାତାଲ – ମନ୍ଦଲୋକ ମନ୍ଦଲୋକକୁ ସମର୍ଥନ କରେ ।
ଶୋଇଲା ପୁଅର ଭାଗ ନାହିଁ – କର୍ମକୁଣ୍ଠ ଲୋକ ଜୀବନରେ ହାରିଯାଏ, ଅସଚେତନ ବ୍ୟକ୍ତି ଅଧିକାରରୁ ବଞ୍ଚିତ ହୁଏ ।
ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ – ଅସାର ପରିକଳ୍ପନା, ସାମାନ୍ୟ କାର୍ଯ୍ୟପାଇଁ ବିରାଟ ଆୟୋଜନ ଅନାବଶ୍ୟକ ।
ଷୋଳ ଶିରା ଦୁହିଁ ହୋଇଯିବା – କଠିନ ପରିଶ୍ରମ କରିବା ।
ସକଳ ଘଟେ ନାରାୟଣ – ଈଶ୍ୱରସତ୍ତା ସବୁଥିରେ ବିଦ୍ୟମାନ ।
ସଜ ମାଛରେ ପୋକ ପକାଇବା – ନିର୍ଦ୍ଦୋଷକୁ ବଦନାମ କରିବା ।
ସତ କହିଲେ ଭାଇ ଭଗାରି – ସତ କହିଲେ ଅପ୍ରିୟ ହେବା ସାର ।
ସବୁଯାଉ ମହତ ଥାଉ – ସବୁକିଛି ବିନିମୟରେ ଆତ୍ମମର୍ଯ୍ୟାଦା ରକ୍ଷା ସମସ୍ତଙ୍କର କର୍ତ୍ତବ୍ୟ ।
ସମୁଦ୍ରକୁ ଶଙ୍ଖେ ପଣା (ପାଣି)– ଅତିକମ୍, ବିରାଟ କାର୍ଯ୍ୟପାଇଁ ଅତ୍ୟଳ୍ପ ବ୍ୟବସ୍ଥା ।
ସାତ କଥାରେ ସତୀ ଭୁଲେ – ଛନ୍ଦକପଟରେ ବିଜ୍ଞ ବ୍ୟକ୍ତିର ମଧ୍ୟ ସ୍ଖଳନ ଘଟେ ।

ସିଧା ଆଙ୍ଗୁଠିରେ ଘିଅ ବାହାରେ ନାହିଁ – ସବୁ କାମ ସହଜରେ ହୁଏ ନାହିଁ ।

ସୁଧାର (ଶାନ୍ତ) ଗାଈର ବାଛୁରି ମରେ – ନିରୀହ ମଣିଷର ପରିବାର ଅସୁବିଧାରେ ପଡ଼ନ୍ତି ।

ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ଲୋକକୁ ଉତ୍ତର ନାହିଁ – ଧନୀ ଓ କ୍ଷମତାଶାଳୀ ଲୋକଙ୍କୁ ଅନେକ କଥା କହିହୁଏ ନାହିଁ ।

ହଗିବନି କି ବାଟ ଛାଡ଼ିବନି – ଆବୁରି ବସି କାର୍ଯ୍ୟ ନ କରିବା ।

ହଜିଲା ବଳଦ ଖୋଜିଲା ଠେଇଁ – କାର୍ଯ୍ୟବେଳେ ଉପସ୍ଥିତ ହେବା, ମିଳୁ ନ ଥିବା ଜିନିଷ ଯଥା ସମୟରେ ମିଳିଯିବା ।

ହାଣ୍ଡି ଭାଙ୍ଗିଲେ ଖପରା – ନଷ୍ଟଦ୍ରବ୍ୟ ମୂଲ୍ୟହୀନ ।

ହାତ ଅଳସେ ନିଶବଙ୍କା – ଆଳସ୍ୟରୁ ଦୁଃଖଭୋଗ ।

ହାତରେ ନ ଥାଇ ଧନ, ପୁଅ ବାହାକରି ମନ – ଧନହୀନ ବ୍ୟକ୍ତିର ବିରାଟ ଯୋଜନା ।

ହାତୀ ମଲେ ଲକ୍ଷେ, ଜିଇଥିଲେ ଲକ୍ଷେ – ମହତ୍ ଜନର ସର୍ବଦା ସମ୍ମାନ ଥାଏ ।

ହାତୀ ସୁନାକଳସ ଢାଳିବା – ହଠାତ୍ ଭାଗ୍ୟୋଦୟ ହେବା ।

କ୍ଷୀର ଉତୁରିଲେ ଚୁଲିକି – ଅତିଶୟ ଗର୍ବରୁ ପତନ ଘଟେ ।

କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ ନିମ କି ମଧୁର ହୋଇବ – ମନ୍ଦ ସ୍ୱଭାବ ଅପରିବର୍ତ୍ତନୀୟ ।

କ୍ଷୁଦ୍ର ସର୍ପର ବିଷ ଉତ୍କଟତର-ବେଳେବେଳେ ଛୋଟ କଥା ଭୟଙ୍କର ପରିସ୍ଥିତି ସୃଷ୍ଟି କରେ ।

## ଅନୁଶୀଳନୀ

୧ । ନିମ୍ନ ପ୍ରଦତ୍ତ ପ୍ରବଚନଗୁଡ଼ିକର ଅର୍ଥ ଲେଖ ।
ସିଧା ଆଙ୍ଗୁଠିରେ ଘିଅ ବାହାରେ ନାହିଁ, ଆଳସ୍ୟରୁ ଦୁଃଖ ଭୋଗିବାକୁ ହୁଏ, ବୃଥା ପରିଶ୍ରମ, ଧନୀକୁ ଧନ ଦେବା, ଅର୍ଥଦ୍ୱାରା ସମସ୍ତେ ବଶୀଭୂତ, ଅଭିଜ୍ଞତା ପ୍ରକୃତ ଶିକ୍ଷକ, ବିପଦକୁ ଆହ୍ୱାନ କରିବା, ଭାଗ୍ୟଫଳ ଅପରିବର୍ତ୍ତନୀୟ, ଜୀବିକାରେ ବାଧାଦେବା, କୌଣସି ପ୍ରକାରେ ବଞ୍ଚି ରହିବା, କଠିନ ପରିଶ୍ରମ କରିବା ।

୨ । ନିମ୍ନଲିଖିତ ଲୋକବାଣୀଗୁଡ଼ିକର ଛାଡ଼ି ଯାଇଥିବା ଅଂଶଗୁଡ଼ିକୁ ପୂରଣ କର ।
___ କଥାରେ ___ ଭୁଲେ । ସିଧା ଆଙ୍ଗୁଠିରେ ___ ବାହାରେ ନାହିଁ । ଅଳସୁଆର ___ ଚାଷ । ବାଘର ___ ଭୟ । ___ ତରତର ___ ମଠ । ___ ଫୁଲ ___ ବାସେ । ___ କଲେ ___ ମିଳେ । ଯେ ଦେଶ ଯାଇ, ସେ ___ । କପାଳ ___ କେ କରିବ ___ । ___ ଖୋଳୁକୋଳୁ ___ ବାହାରିବା । —କାଣ୍ଡ, —ବାଜେ ।



# ଛନ୍ଦ

କାବ୍ୟର କଳାତ୍ମକତା ନିମିତ୍ତ ଛନ୍ଦର ରହିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ଅକ୍ଷର ବା ମାତ୍ରା ବିଶେଷ ନିୟମରେ ଆବଦ୍ଧ ହୋଇ ଗତିଶୀଳ ହେଲେ, ସେହି ଶବ୍ଦ ଯୋଜନା-ରୀତି ସାଧାରଣତଃ ଛନ୍ଦ ନାମରେ ପରିଚିତ ହୋଇଥାଏ । ସଂସ୍କୃତ କାବ୍ୟମାନଙ୍କରେ ଛନ୍ଦ 'ବୃତ୍ତ' ନାମରେ ପରିଚିତ । ଏହି ଛନ୍ଦ ଯୋଗୁଁ ଗଦ୍ୟ ଓ ପଦ୍ୟ ମଧ୍ୟରେ ଏକ ଲକ୍ଷଣୀୟ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଛନ୍ଦ ଅଧ୍ୟୟନ ବେଳେ ବା ଗାନ କରିବା ସମୟରେ ବିଶ୍ରାମ ନେବା ସ୍ଥାନରେ ଯତିପାତ ହୋଇଥାଏ । ଗୋଟିଏ ଛନ୍ଦର ଯତି ସ୍ୱର ଓ ଲୟାନୁଯାୟୀ ବିଭିନ୍ନ ସ୍ଥାନରେ ପଡ଼ିପାରେ । ପଦ୍ୟଗୁଡ଼ିକୁ ଲକ୍ଷକଲେ ଜଣାଯାଏ, ଏଥିରେ କେତେଗୁଡ଼ିଏ ପଦ ରହିଥାଏ ଓ ଏହି ପଦଗୁଡ଼ିକ ଏକାଧିକ ପାଦର ମିଳନରେ ଗଠିତ ହୋଇଥାଏ । ପୁଣି ଏହି ପଦ୍ୟଗୁଡ଼ିକ ବିଭିନ୍ନ ରୀତିକୁ ଅନୁସରଣ କରି ରଚିତ ହୋଇଥାଏ । ଏହି ସମସ୍ତ ବିଭିନ୍ନ ରୀତିବଦ୍ଧ ପଦ୍ୟହିଁ ଛାନ୍ଦ ନାମରେ ଅଭିହିତ ହୋଇଥାଏ ।

ଛନ୍ଦ ଦୁଇଭାଗରେ ବିଭକ୍ତ, ଯଥା- ମିତ୍ରାକ୍ଷର ଓ ଅମିତ୍ରାକ୍ଷର । ମିତ୍ରାକ୍ଷର ପୁଣି ତିନି ଭାଗରେ ବିଭକ୍ତ- ପୂର୍ଣ୍ଣ ମିତ୍ରାକ୍ଷର, ଅପୂର୍ଣ୍ଣ ମିତ୍ରାକ୍ଷର ଓ ଏକାନ୍ତର ମିତ୍ରାକ୍ଷର । ସାଧାରଣତଃ ଯେଉଁ ପଦ୍ୟ ବା କବିତାରେ ପ୍ରାନ୍ତମିଳନ ଘଟିଥାଏ, ତାହା ମିତ୍ରାକ୍ଷର । ବିଭିନ୍ନ ରାଗ ବା ବୃତ୍ତ ଏହାର ଅନ୍ତର୍ଭୁକ୍ତ ହୋଇଥାଏ । ରାଗମାନଙ୍କର ପାଦସଂଖ୍ୟା, ଅକ୍ଷରସଂଖ୍ୟା ତଥା ଯତିପାତର ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ ।

**ପୂର୍ଣ୍ଣ ମିତ୍ରାକ୍ଷର ଛନ୍ଦ :**

ପୂର୍ଣ୍ଣ ମିତ୍ରାକ୍ଷର ଛନ୍ଦରେ ପାଦର ଅନ୍ତ୍ୟ ବା ଶେଷ ଅକ୍ଷର ସହିତ, ତା' ପୂର୍ବବର୍ତ୍ତୀ ସ୍ୱର ସହ ପରବର୍ତ୍ତୀ ପାଦର ଅନ୍ତ୍ୟ ଅକ୍ଷର ଏବଂ ତା' ପୂର୍ବବର୍ତ୍ତୀ ସ୍ୱରର ମେଳ ରହିଥାଏ । ଯଥା-

ଉତ୍କଳ-କମଳା-ବିଳାସ-ଦୀର୍ଘିକା (ଇକା)
ମରାଳ ମାଳିନୀ ନୀଳାମ୍ବୁ ଚିଲିକା (ଇକା)
ଉତ୍କଳର ତୁହି ଚାରୁ ଅଳଙ୍କାର (ଆର)
ଉତ୍କଳ ଭୁବନେ ଶୋଭାର ଭଣ୍ଡାର (ଆର) (ଚିଲିକା-ରାଧନାଥ)

**ଅପୂର୍ଣ୍ଣ ମିତ୍ରାକ୍ଷର ଛନ୍ଦ :**

ଅପୂର୍ଣ୍ଣ ମିତ୍ରାକ୍ଷର ଛନ୍ଦରେ କେବଳ ମାତ୍ର ଅନ୍ତ୍ୟ ବା ଶେଷ ଅକ୍ଷରର ମେଳ ରହିଥାଏ । ଯେପରି-

ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ (ଆହି)
ଭାଇ ଭାଇ ବୋଲି କେତେ ମୁଁ ଡାକିଲି
ନ ଦେଲେ ଉତ୍ତର କେହି (ଏହି)

(ସନ୍ତାନର ଉକ୍ତି – ମଧୁସୂଦନ ଦାସ)

**ଏକାନ୍ତର ମିତ୍ରାକ୍ଷର ଛନ୍ଦ :**

ଚାରି ପାଦରେ ଏକ ପଦ ହୁଏ । ଉପଧା ମିଳନ ଥାଇ ପ୍ରଥମ ପାଦର ଶେଷବର୍ଣ୍ଣ ସହିତ ତୃତୀୟ ପାଦର ଶେଷବର୍ଣ୍ଣ ଏବଂ ଦ୍ୱିତୀୟ ପାଦର ଶେଷବର୍ଣ୍ଣ ସହିତ ଚତୁର୍ଥ ପାଦର ଶେଷବର୍ଣ୍ଣର ମିଳନ ଘଟିଲେ, ଏକାନ୍ତର ମିତ୍ରାକ୍ଷର ଛନ୍ଦ ହୁଏ । ଯଥା-

ଶିଳା-ଗୃହ-ଅନ୍ଧକାର-ବାସୀ ମୁଁ ଜନନୀ
ଉତ୍କଳ, ନ ଥିଲି ଜାଣି ଅଛି ଲୋ ତୋ' ପୁରେ-
ଏମନ୍ତ ରୂପର ଲୀଳା, ନ ବାହୁ ତରଣୀ-
ଆଜି ଏ ଜ୍ୟୋସ୍ନାରେ ନୀଳ ମହାନଦୀ-ପୂରେ ।

– ମହାନଦୀରେ ଜ୍ୟୋସ୍ନା ବିହାର(ମାୟାଧର ମାନସିଂହ)

ଏଠାରେ ପ୍ରଥମ ପାଦର ଶେଷ ଅକ୍ଷର 'ନୀ' ସହିତ ଯୁକ୍ତ ସ୍ୱରବର୍ଣ୍ଣ ସହିତ ତୃତୀୟ ପାଦର 'ଣୀ' ସହ ଯୁକ୍ତ ସ୍ୱରବର୍ଣ୍ଣର ସାମ୍ୟ ରହିଛି, ଦ୍ୱିତୀୟ ପାଦରେ 'ରେ' ସହିତ ଯୁକ୍ତ ସ୍ୱରବର୍ଣ୍ଣ ସହ ଚତୁର୍ଥ ପାଦର ଶେଷ ଅକ୍ଷର 'ରେ' ସହିତ ଯୁକ୍ତ ସ୍ୱରବର୍ଣ୍ଣର ସାମ୍ୟ ଅଛି ।

**ଅମିତ୍ରାକ୍ଷର ଛନ୍ଦ :**

ଅମିତ୍ରାକ୍ଷର ଛନ୍ଦରେ ଅନ୍ତ୍ୟ ଅକ୍ଷରରେ କୌଣସି ମେଳ ନ ଥାଏ । ଅନ୍ୟାନ୍ୟ ଛନ୍ଦରେ ଯେପରି କେତୋଟି ପାଦର ସମ୍ମିଶ୍ରଣରେ ଗୋଟିଏ ପଦ ଗଠିତ ହୋଇଥାଏ, ଅମିତ୍ରାକ୍ଷର ଛନ୍ଦରେ ସେପରି ବ୍ୟବସ୍ଥା ନାହିଁ । ଯଥା-

ପୁଣ୍ୟତମ ଏ ସୈକତ ବିଶ୍ୱ ଚରାଚରେ,
ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ
ପୁଣି ମର୍ତ୍ତ୍ୟଲୀଳା ଲାଗି ଅଖିଳ ଭାରତେ,
ପର୍ଣ୍ଣଦଳ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ
ଶ୍ରେଷ୍ଠ ନ ଉତ୍କଳ ଭୂମି ଗୁଣେ ଗରୀୟସୀ । (ମହାଯାତ୍ରା-ରାଧାନାଥ)

ଓଡ଼ିଆ କାବ୍ୟ-କବିତାରେ ବିଭିନ୍ନ ଛନ୍ଦ ବା ବୃତ୍ତର ବ୍ୟବହାର ହୋଇଥିବାର ଦେଖିବାକୁ ମିଳେ । ଏଠାରେ ସେହିପରି କେତୋଟି ବିଶିଷ୍ଟ ଛନ୍ଦ ସମ୍ପର୍କରେ ଆଲୋଚନା କରାଗଲା ।

**ବିଭିନ୍ନ ମିତ୍ରାକ୍ଷର ଛନ୍ଦର ଯତିପାତ ନିରୂପଣ :**

**୧. ରାମକେରୀ** - ଏହି ବୃତ୍ତ ବା ଛନ୍ଦରେ ଦୁଇପାଦରେ ଗୋଟିଏ ପଦ ହୋଇଥାଏ । ପ୍ରତ୍ୟେକ ପାଦ ଷୋଡ଼ଶ ଅକ୍ଷରବିଶିଷ୍ଟ । ଏହାର ୯ମ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ ।

(କ) କମଳଧର ହେ କମଳ' ଧରଜିତ ନାୟକ'
କମଳ ଧର ଯାର ରାମ' ନାମ ସଦା ଧାୟକ' ।
(କଳା କଉତୁକ-ଉପେନ୍ଦ୍ର ଭଞ୍ଜ)

(ଖ) କଳାକଳେବର କହ୍ନାଇ' ସଙ୍ଗେ ରୋହିଣୀ ସୁତ'
କରନ୍ତି ମଥୁରା ବିଜୟେ' ଦାଣ୍ଡେ ଦେଖ ସଙ୍ଗାତ ।'
(କଳାକଳେବର ଚଉତିଶା-ଭକ୍ତଚରଣ ଦାସ)

**୨. ଚକ୍ରକେଳି** - ଏଥିରେ ଦୁଇପାଦରେ ଗୋଟିଏ ପଦ ହୋଇଥାଏ । ପ୍ରତି ପାଦ ଏଗାର ଅକ୍ଷରବିଶିଷ୍ଟ । ପ୍ରତ୍ୟେକ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ପ୍ରଭୁ ପ୍ରିୟାନ୍ତ ପା' ରୁଶେ ବସାଇ'
ତାଙ୍କୁ ସାତ୍ତ୍ୱିକ ଭା'ବରେ ମିଶାଇ' ।
(ରହସ୍ୟମଞ୍ଜରୀ-ଦେବଦୁର୍ଲ୍ଲଭ ଦାସ)

(ଖ) ଆହେ ଦୟାମୟ' ବିଶ୍ୱ ବିହାରୀ'
ଘେନ ଦୟାବହି' ମୋର ଗୁହାରି' ।
(ରାମକୃଷ୍ଣ ନନ୍ଦ)

**୩. କେଦାର ଚକ୍ରକେଳି** - ଏହାର ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦ ଏଗାର ଅକ୍ଷର ବିଶିଷ୍ଟ । ଏହା ଚକ୍ରକେଳି ପରି ଏଗାର ଅକ୍ଷର ବିଶିଷ୍ଟ ହେଲେ ମଧ ଏହାର ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ନବ ବିଧାତା' ମଦନ ହୋଇଲା'
ନବ ଯୌବନ' ସୃଷ୍ଟି ଭିଆଇଲା' ।
(କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ-କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

(ଖ) କେ ବୋଲରେ ଯ'ଶୋଦା ଭାଗ୍ୟବନ୍ତ',
କୋଳେ ଧଇଲା' ପ୍ରଥ୍ୟକ୍ଷେ ଅନନ୍ତ ।'
(ଦୀନକୃଷ୍ଣ ଦାସ-ରସକେଲ୍ଲୋଳ)

(ଗ) କ୍ରୀଡ଼ା କରନ୍ତେ' ଗୋପ ପୀତବାସ'
କ୍ରମେ ହିମ ର'ତୁ ହୁଏ ପ୍ରବେଶ ।'
(ଦୀନକୃଷ୍ଣ ଦାସ-ରସକେଲ୍ଲୋଳ)

୪. ମାଳବ - ଚକ୍ରକେଳି ଓ କେଦାର ଚକ୍ରକୋଳିକୁ ବେଳେବେଳେ ମାଳବ ନାମରେ ଅଭିହିତ କରାଯାଏ ।

୫. ଆଶାବରୀ - ଏହାର ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦ ଛଉଦ ଅକ୍ଷର ବିଶିଷ୍ଟ । ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । କେହି କେହି ଏହାର ପ୍ରତ୍ୟେକ ପାଦର ତୃତୀୟ, ଷଷ୍ଠ, ଅଷ୍ଟମ ଓ ଶେଷାକ୍ଷର ଉପରେ, ଅଥବା ଦ୍ୱିତୀୟ, ଚତୁର୍ଥ, ଅଷ୍ଟମ ଓ ଶେଷାକ୍ଷର ଉପରେ ଯତିପାତ ହେବା ମତପ୍ରକାଶ କରନ୍ତି ।

ହୁଣ୍ଡାପଣ ଭୀମର ସେ’' ନୁହଇ ନୂତନ’
ଏହା ଜାଣି କ୍ଷମ ତାକୁ’ ହେ ମଧୁସୂଦନ ।’
(କବିବର ରାଧାନାଥ-ବାଣହରଣ, କ୍ଷୁଦ୍ରରଚନାବଳୀ)

ସବୁ ବନ୍ଧୁ ସିନା, କିଏ’ ସୁନା, କିଏ ଭେଲ’
ପରଖରସିନା ନିକ’ଷ ବିପତ୍ତି ବେଳ’ ।
(କବିବର ରାଧାନାଥ-ତିନିବନ୍ଧୁ, କ୍ଷୁଦ୍ରରଚନାବଳୀ)

୬. ଗୁଜ୍ଜରୀ ବା ଭାଗବତ ବାଣୀ - ଏଥିରେ ଦୁଇ ପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେକ ପାଦର ଅକ୍ଷର ସଂଖ୍ୟା ନଅ । ପ୍ରତି ପାଦର ତୃତୀୟ, ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ । ଭାଗବତ ଏହି ଛନ୍ଦରେ ରଚିତ ହୋଇଥିବାରୁ ଏହାର ଅନ୍ୟନାମ ଭାଗବତବାଣୀ । ଏହାକୁ ମଧ୍ୟ ନବାକ୍ଷରୀ ଛନ୍ଦ କୁହାଯାଏ ।

(କ) ଗୋବିନ୍ଦ’ ଗୋବି’ନ୍ଦ ଗୋବିନ୍ଦ’
ପଦୁ ଗ’ଲୁଛି’ ମକରନ୍ଦ’ (ଭାଗବତ-ଜଗନ୍ନାଥ ଦାସ)

(ଖ) କାଳ ଚ’କ୍ରର’ ଆବର୍ତ୍ତନେ’
ଭୁଞ୍ଜନ୍ତି’ ସୁଖ’ ଦୁଃଖ ଜନେ’ ।
(ସାହିତ୍ୟ ପ୍ରସଙ୍ଗ-ଭକ୍ତକବି ମଧୁସୂଦନ ରାଓ)

୭. ମୁଖାରୀ - ଏହାର ଚାରି ପାଦରେ ଏକ ପଦ ହୁଏ । ପ୍ରତିପାଦ ଦଶ ଅକ୍ଷର ବିଶିଷ୍ଟ । ପ୍ରତିପାଦର ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) କୃଷ୍ଣ ଗୋପଯୁ’ବତୀଙ୍କ ରାସ’
କରିଅଛି ସ’ମସ୍ତଙ୍କୁ ବଶ’
କଥନୀୟ ନୋ’ହଇ, ସେ ଶୋଭା’
କରିଅଛି ଯେ’ ଦେବଙ୍କୁ ଉଭା ।’
(ରସକଲ୍ଲୋଳ-ଦୀନକୃଷ୍ଣ ଦାସ)

(ଖ) ପଚାରଇ ସେ' ଅସୁର ରାଜ'
କିମ୍ପା ମୋ ନିଦ୍ରା' ଭାଙ୍ଗିଲ ଆଜ'
କହ କହ ମୋ'ତେ କିସ କାର୍ଯ୍ୟ'
ଦିଶୁଅଛ ସ'ମସ୍ତେ ନିସ୍ତେଜ' ।

(ବିଚିତ୍ର ରାମାୟଣ-ବିଶ୍ୱନାଥ ଖୁଣ୍ଟିଆ)

୮. **କଳହଂସ କେଦାର** – ଏହି ଛନ୍ଦ ମଧ୍ୟ ବିଭାସ ଗୁଜ୍ଜରୀ ନାମରେ ପରିଚିତ । ଏହାର ଚାରିପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେକ ପାଦର ଅକ୍ଷର ସଂଖ୍ୟା ବାର । ପ୍ରତି ପାଦର ସପ୍ତମ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ । କେହିକେହି ଗାଇଲାବେଳେ ଦ୍ୱିତୀୟ ଓ ଚତୁର୍ଥ ପାଦ ଶେଷରେ ଯେ, ହେ, ରେ ପ୍ରଭୃତି ଲଗାଇଥା'ନ୍ତି ।

(କ) ବୁଧ ସାରସେ ବେନି' ରାଗ ରୁଚିର'
ନୀର କ୍ଷୀର ମିଶ୍ରିତ' ଦ୍ୱିରୁକ୍ତି ବାର' ଯେ
ଶୁକ କହି ବାର ତା' ଚାତୁରୀ ସ୍ମରି'
ସାରୀ ଅଗ୍ରତେ ମୃଦୁ' ତରହିଁ କରି' ଯେ ।

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ – ଉପେନ୍ଦ୍ର ଭଞ୍ଜ)

(ଖ) ଢଳ ଢଳ ସୁନୀଳ' ସରସୀ ଜଳ'
ଢଳ ଢଳ ଶ୍ୟାମଳ' ନଳିନୀ ଦଳ'
ଢଳ ଢଳ ଭାସ୍କର' ରଶ୍ମି ଉଜ୍ଜ୍ୱଳ'
ତା ମଧ୍ୟେ ଢଳ ଢଳ' ତୁହି କମଳ' ।

(ପଦ୍ମ- ମଧୁସୂଦନ ରାଓ)

୯. **କାଳୀ** – ଏଥିରେ ଚାରିପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେକ ପାଦ ସତର ଅକ୍ଷର ବିଶିଷ୍ଟ । ଏହାର ୩ୟ, ୮ମ, ୧୩ଶ ଓ ଅନ୍ତ୍ୟବର୍ଣ୍ଣ ଗୁରୁ । ପ୍ରତ୍ୟେକ ପାଦର ୫ମ, ୧୦ମ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ–

(କ) କୃଷ୍ଣ ଦର୍ଶନ' ଆଶେ ଉଚ୍ଛନ୍ନ' ହୋଇ ସଫଳା ସୁତ'
ସାଜିଲା ରଥ' ଯୋଚିଲା ଅଶ୍ୱ' ହେଜିଲା ଯିବା ପଥ' ।
ବାଗ ଦଉଡ଼ି' ଧରିଣ ଚଢ଼ି' ଯା ବୋଲି ଦେଲା ଗାଳି'
ଚକ୍ଷୁ ମଟକେ' ଅତି ଛଟକେ' ମଥୁରା ସୀମା ଭାଳି ।

(ମଥୁରାମଙ୍ଗଳ-ଭକ୍ତଚରଣ ଦାସ)

(ଖ) କୁସୁମକାଳ' କାହାକୁ କାଳ' ପ୍ରାୟ ହୋଇଲା ପ୍ରତେ'
କୃଷ୍ଣ ଯାହାର' ହୃଦରେ ହାର' ନୋହିଲେ କାଦାଚିତେ'

କେ ଅବା ତାହା' କହିବ ଯାହା' ହେଲା ସେ ବିରହରେ'
କେବଳ ଅଙ୍ଗ'ହେଲା ଅନଙ୍ଗ' ଅନଳ ସେନେହରେ' ।
(ଦୀନକୃଷ୍ଣ ଦାସ-ରସକଲ୍ଲୋଳ)

(ଗ) ବଶୀକରଣ' ମୂର୍ତ୍ତି ଧାରଣ' ଉଚ୍ଚାଟନ ତା ଚାରୁ'
ବିଧି ସୁନ୍ଦରୀ' ସେ ପୁରନ୍ଦରୀ' ତାହାକୁ ବୋଲିବାରୁ'
ବିହିଲା ବିହି' ପ୍ରଭା ଏ କାହିଁ' ଶୋଭା ସଂଗ୍ରହ ପାଇ'
ବଣା ବିବେକ' ପଣ୍ଡିତ ଲୋକ'ମାନଙ୍କୁ କରିଦେଇ' ।
(କବି ସମ୍ରାଟ ଉପେନ୍ଦ୍ରଭଞ୍ଜ-ବୈଦେହୀଶ ବିଳାସ)

**୧୦. ବଙ୍ଗଳାଶ୍ରୀ-** ଦୁଇ ପାଦରେ ଗୋଟିଏ ପଦ ହୁଏ । ପ୍ରତିପାଦ କୋଡ଼ିଏ ଅକ୍ଷର ବିଶିଷ୍ଟ । ଏହାର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ ।

(କ) ସୁଜନେ ଶୁଣ ଲ'ଭି ନବ ଯୌବନ' ଅଧିକ ରାମା ସୁ'ଷମା'
ସୁନ୍ଦରେ ସୁନ୍ଦର' ମିଶିଲା ଉତ୍ତାରୁ' ତହିଁ ଆଉ କି ଉ'ପମା' ।
(ସୁଭଦ୍ରା ପରିଣୟ – ଉପେନ୍ଦ୍ର)

(ଖ) କେହି ରହିନାହିଁ' ରହିବେ ନାହିଁଟି'
ଭବରଂଗ ଭୂମି' ତଳେ'
ସର୍ବେ ନିଜନିଜ' ଅଭିନୟ ସାରି
ବାହୁଡ଼ିବେ କାଳ' ବଳେ' ।
–ରାଧାନାଥ ରାୟ

(ଗ) ରାମ ବାମକର' ବଢ଼ାଇ ସତ୍ୱର' ଧନୁ ଧରିବାର' ବେଳେ'
ମହାବିଷ୍ଣୁ ତେଜ' ବଳେ ବିଷ୍ଣୁତେଜ' ହରିନେଲେ ଅବ'ହେଳେ' ।
(ବିଶ୍ୱନାଥ ଖୁଣ୍ଟିଆ-ବିଚିତ୍ର ରାମାୟଣ)

**୧୧. ଭୂପାଳ-** ଏଥିରେ ଦୁଇ ପାଦରେ ଏକପଦ ହୁଏ । ପ୍ରତ୍ୟେକ ପାଦର ଅକ୍ଷର ସଂଖ୍ୟା ଚବିଶ । ଏହାର ୮ମ, ୧୪ଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ ।

(କ) ଧୀରେ ଧୀରେ ଶୁଣ ରସ' କିଶୋରୀ ବିରସ' କରି ପଦରେ ସଞ୍ଚିତ ଚିତ୍ତ'
ହର ହର ମୋ ବେଦନା' ବୋଲେ ସୁବଦନା' ହେଉ ଚିତ୍ର ପୁଂସକାନ୍ତ କାନ୍ତ' ।
(ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ ସାମନ୍ତସିଂହାର)

(ଖ) ଧରତୀରେ ଅଭାଗିନୀ' ମୋ ପରା ଦୁଃଖିନୀ' ନଥିବେ ଆଉ ରମଣିମଣି'
ମଣିବନ୍ଧର କଙ୍କଣ' ଗଳେ କ୍ଷଣକ୍ଷଣ' ଶ୍ରବଣେ କୃଷ୍ଣ କିଙ୍କିଣୀ, କିଣି' ।
(ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ ସାମନ୍ତସିଂହାର)

**୧୨. ବିଭାସଗୁଜ୍ଜରୀ** – ଦୁଇ ପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେତ ପାଦ ଛବିଶ ଅକ୍ଷରବିଶିଷ୍ଟ । ଏଥିରେ ୮ମ, ୧୬ଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ । ଗାନ କଲାବେଳେ ଦ୍ୱିତୀୟ ଓ ଚତୁର୍ଥ ପାଦ ଶେଷରେ ହେ, ଯେ ଲାଗିଥାଏ ।

(କ) ଏ ଉତ୍ତାରୁ ଘେନ ଧୀରେ' ସାବଧାନ ହୋଇ ଧୀରେ'
କୃଷ୍ଣ ଗୋରକ୍ଷଣେ ଯିବାବେଳେ' ହେ
ଆଗରେ କରି ଗୋକୁଳ' ପଛେ ସର୍ବ ସଖାକୁଳ'
ତେଣୁ ଶୃଙ୍ଗରଙ୍ଗେ ବଜାଇଲେ' । ହେ

(ବିଦଗ୍ଧ ଚିନ୍ତାମଣି- ଅଭିମନ୍ୟୁ ସାମନ୍ତସିଂହାର)

(ଖ) ବିଦୂର ଲକ୍ଷ୍ମଣ ଘନ' ପବନ ଭଗ୍ନ ଚନ୍ଦନ'
ଦାରୁଆଣି ଚାରୁବାସ ବିହି'ଯେ
ବିଦ୍ରୁମେ ତାହାର ଛାଇ' ବାଡ଼ ନଳଦରେ ଦେଇ'
କସ୍ତୁରୀ ଗୈରିକେ ଚିତ୍ର ଲିହି' ଯେ ।

(କବିସମ୍ରାଟ ଉପେନ୍ଦ୍ର ଭଞ୍ଜ-ବୈଦେହୀଶ ବିଳାସ)

**୧୩. ନଟବାଣୀ/ବିଭାସ କେଦାର** – ଏଥିରେ ଦୁଇ ପାଦରେ ଗୋଟିଏ ପଦ ହୁଏ ଏବଂ ପ୍ରତିପାଦର ଅକ୍ଷର ସଂଖ୍ୟା ବାର । ୩ୟ, ୬ଷ୍ଠ, ୯ମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ସ୍ୱଭାବେ' ଭାବୁକ' -ମାନସ' -ଉଲ୍ଲାସୀ'
ଦିଗନ୍ତ' -ବିସ୍ତାରୀ' ତୋର ବା'ରିରାଶି' ।

(ଚିଲିକା-ରାଧାନାଥ)

(ଖ) ଭ୍ରୂଭଙ୍ଗ'ରେ ଯାଙ୍କ' କମ୍ପିଲା' ଭୂତଳ'
ମକ୍ଷି ତ'ଡ଼ିବାକୁ' ଏବେ ନା'ହିଁ ବଳ' ।

(କବିବର ରାଧାନାଥ-ନନ୍ଦିକେଶ୍ୱରୀ)

**୧୪. ରସକୁଲ୍ୟା** – ଏହାର ପ୍ରତ୍ୟେକ ପଦ ଛଅ ପାଦବିଶିଷ୍ଟ । ୧ମ, ୨ୟ, ୩ୟ ଓ ୪ର୍ଥ ପାଦ ଏଗାର ଅକ୍ଷରବିଶିଷ୍ଟ ଓ ଏହାର ୬ଷ୍ଠ ଏବଂ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ୫ମ ପାଦ ଆଠ ଅକ୍ଷରବିଶିଷ୍ଟ ଏବଂ ଏହାର ୬ଷ୍ଠ ଓ ୮ମ ଅକ୍ଷର ଉପରେ ଯତିପାତ ହୁଏ । ୬ଷ୍ଠ ପାଦ କୋଡ଼ିଏ ଅକ୍ଷରବିଶିଷ୍ଟ ଏବଂ ଏହାର ୬ଷ୍ଠ, ୧୨ଶ, ୧୮ଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ଶତକୋଟିକି ଶ'ତ କୋଟି ଗୁଣେ'
ବଳ ବଳିଷ୍ଠ ହୋ'ଇବା ପାଷାଣେ'
ଘଟଣା ହୋଇଛି' ଗୁଚି ପ୍ରାଚୀର'
ଗୁଚିତର ସୂଚୀ' କମନିକର' ସେ'
ତା କପାଟ ପାତ' ଧ୍ୱନି' ଯେ
ବିଳସୁ କୈଳାସେ' ଅମର ବିଳାସେ' ଭୟ ଭଜନ୍ତି ସେ' ନାନୀ' ଯେ ।
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର - ଯଦୁମଣି)

(ଖ) ପବନଠାରୁ ଶୁ'ଣି ରାମରାଣ'
ମହୀରାବଣ କ'ହନ୍ତି ବଚନ'
ଆମେ ରାଜପୁତ୍ର' ନଜାଣୁ ଏହା'
ଜାଣିଥିଲେ ତୁମ୍ଭେ' ଦେଖାଅ ତାହା ହେ'
ଶ୍ରବଣେ ମହୀରାବଣ' ଯେ'
ଆନନ୍ଦିତ ହୋଇ' ମନେ ବିଚାରିଲା' ମୋ କାର୍ଯ୍ୟ ହେବ ସା'ଧନ' ଯେ ।
(ବିଶ୍ୱନାଥ ଖୁଣ୍ଟିଆ- ବିଚିତ୍ର ରାମାୟଣ)

**୧୫. ଶଙ୍କରାଭରଣ** - ଏଥିରେ ଚାରିପାଦରେ ଗୋଟିଏ ପଦ ହୁଏ । ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥ ପାଦର ଅକ୍ଷର ସଂଖ୍ୟା ଚଉଦ ଏବଂ ଏହାର ଅଷ୍ଟମ, ଏକାଦଶ, ଦ୍ୱାଦଶ ଏବଂ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ । ତୃତୀୟ ପାଦ ଆଠ ଅକ୍ଷରବିଶିଷ୍ଟ ଏବଂ ଏହାର ଦ୍ୱିତୀୟ, ୬ଷ୍ଠ ଏବଂ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ଜାନକୀ ବଲ୍ଲଭ ପଦ୍ମ' ପାଦେ ଚି'ଉ' ଥାଉ'
ରାଜସୁତା ପ୍ରୀତି-କଉ'ଶଳାକୁ' ଚି'ଟାଉ'
ଏବେ' ମରୁଅଛି' ଝୁରି'
ଦରିଦ୍ର ରତନ ପାଇ' ହରାଇ'ଲା' ପରି' ।
(ପ୍ରେମ ସୁଧାନିଧି- ଉପେନ୍ଦ୍ର ଭଞ୍ଜ)

(ଖ) ସତ୍ୟପଥେ ଧର୍ମପଥେ' ଘେନିଯା'ଅ' ମୋତେ'
ଭସାଅ ପରାଣ ମୋର' ତବ ପ୍ରେ'ମ' ସ୍ରୋତେ'
ପ୍ରଭୋ', ପରମ ଶ'ରଣ'
ଏ ଜୀବନ ଶ୍ରୀଚରଣେ', କଲି ସ'ମ'ର୍ପଣ' ।
(ଭକ୍ତକବି ମଧୁସୂଦନ - ସ୍ତବ)

(ଗ) ଏ ଉତ୍ତାରୁ ଶୁଣ ହେ ର'ସିକେ ଦେ'ଇ'ମନ'
ଦୂତୀକି ପୁଚ୍ଛନ୍ତି ପୁଣି' ଉଚ୍ଛନ୍ନେ' ମୋ'ହନ'
କହ'କହ ବେଗ' କରି'
ଭେଟିଲା ବେଳେ କି କରୁ'ଥିଲା ସେ'କି'ଶୋରୀ' ।
(ଭକ୍ତକବି ମଧୁସୂଦନ – ସ୍ତବ)

**୧୬. ଆଷାଢ଼ ଶୁକ୍ଳ** – ଏହାର ପ୍ରତ୍ୟେକ ପଦ ଛଅ ପାଦବିଶିଷ୍ଟ । ଏହାର ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ଷଷ୍ଠପାଦ ଏଗାର ଅକ୍ଷରବିଶିଷ୍ଟ । ଏହି ପାଦଗୁଡ଼ିକର ଷଷ୍ଠ ଏବଂ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ । ପଞ୍ଚମପାଦ ଛଅ ଅକ୍ଷରବିଶିଷ୍ଟ ଏବଂ ଏହାର ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ମନବରଜ କ'ର ତା ଶ୍ରବଣ'
ଅସମ ପରମ' ରମ୍ୟ ଈକ୍ଷଣ
ମଦନ ମଦ ବ'ରଧନ କର'
ସବଳ ଫରଳ' ତରଳତର'
ଦମ୍ଭଧରଷକ'
ବୟସ୍ଥଜନ ପ୍ର'ଳୟ ସର୍ଜକ' । (ପ୍ରେମ ସୁଧାନିଧି–ଉପେନ୍ଦ୍ର ଭଞ୍ଜ)

(ଖ) ଯାହାକୁ ଯାହା କ'ରିଛି ଦଇବ'
ତହୁଁ ନିକି ସେ ଅ'ନ୍ୟଥା ହୋଇବ'
ଘେନିଲେ ହେଲେ ଯ'ତ୍ନେ କୋଟିପୁଟ'
ପିତ୍ତଳୁଟି କେହି' ହେବ ପୁରଟ'
ଜଗତେ କେବଳ'
ଜନେ ହସିବେ ଏ'ହି ତହୁଁ ଫଳ' ।
(ଜଗତେକେବଳ–କବିସୂର୍ଯ୍ୟ ବଳଦେବ ରଥ)

(ଗ) ରସିକମାନେ ଶୁ'ଣ ଦେଇମନ'
ରମଣୀ ମଣି ଦି'ନୁଦିନୁ କ୍ଷୀଣ'
ରତିପତି ଛାତି' କରତିବାରେ'
ରସହାସ ଗ୍ରାସ' ବେଶ ବାସରେ'
ରହିତ ଆଦର'
ରସାଳସା ସାରେ' ନିଶିବାସର'
(ବିଦଗ୍ଧଚିନ୍ତାମଣି – ଅଭିମନ୍ୟୁ ସାମନ୍ତସିଂହାର)

**୧୭. ଚୋଖି** – ଏହାର ପ୍ରତ୍ୟେକ ପଦ ଚାରିପାଦବିଶିଷ୍ଟ । ପ୍ରଥମ ଦୁଇଟି ପାଦ ଅଣତିରିଶ ଅକ୍ଷରବିଶିଷ୍ଟ ହୋଇଥିବା ବେଳେ ତୃତୀୟ ପାଦ ନଅ ଓ ଚତୁର୍ଥ ପାଦ ତେର ଅକ୍ଷରବିଶିଷ୍ଟ ହୋଇଥାଏ । ପ୍ରଥମ ଓ ଦ୍ୱିତୀୟ ପାଦରେ ୬ଷ୍ଠ, ୮ମ, ୧୪ଶ, ୧୬ଶ, ଦ୍ୱାବିଂଶ, ଚତୁର୍ବିଂଶ

ଏବଂ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦର ୬ଷ୍ଠ ଏବଂ ଶେଷ ଅକ୍ଷର ଉପରେ ଏବଂ ଚତୁର୍ଥ ପାଦର ଷଷ୍ଠ, ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ରସିକ ବିଚାର' କରେ' ଦୀପଦାନ କାର୍ତ୍ତି' କରେ'
ପ୍ରୟାଗେ ସ୍ନାନ ମ'କରେ' ଯେହୁ ନ କରେ'
ମିଶେ କି ସେ ଆଲୋ'କରେ' ଉତ୍ତମ ରାମା ଅ'ଙ୍କରେ'
ଘେନି ବସେ ପଲ'ଙ୍କରେ' କି ହିମ କରେ'
ପୂର୍ବେ ସେବିଥିଲେ' ଶଙ୍କରେ'
ସେ ଫଳୁଁ ଧରି ଉ'ରଜ' ଶ୍ରୀଫଳ କରେ' ।

(ପ୍ରେମ ସୁଧାନିଧି- ଉପେନ୍ଦ୍ର ଭଞ୍ଜ)

(ଖ) ବିତଳଙ୍କୁ ଆଲି'ଙ୍ଗନ' କରି ଜାହ୍ନବୀ ଶୋ'ଭନ'
ହରେ ସୁରବର' ତାପ' ଚାରୁ ଧାରା ସେ'
ବହେ ମକର କେ'ତନ' ଉଚ୍ଛନ୍ନ ରତିସ'ମାନ'
ପୂରିତ ହୋଇଛି' ପୁଣି' ଅଶେଷରସେ'
ଦିବ୍ୟ ହୈମବତୀ' ପଦରେ'
ବିଷକଣ୍ଠ ତୋଷ'ଦାନୀ' ବେନି ମତରେ' ।

(ଉପେନ୍ଦ୍ର ଭଞ୍ଜ-ବୈଦେହୀଶ ବିଳାସ)

**୧୮. ଚିନ୍ତାଦେଶାକ୍ଷ-** ଏଥିରେ ଦୁଇ ପାଦରେ ଏକ୍ ପଦ ହୁଏ ଓ ପ୍ରତ୍ୟେକ ପାଦ ତେର ଅକ୍ଷରବିଶିଷ୍ଟ । ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ବୈଦେହୀ ଶ୍ରୀରାମ କି ସେ' କରିଣୀ କରୀ'
ବିନୋଦ ନଦୀରେ କୁଞ୍ଜ' କୁଟୀରେ କରି' ।

(ବୈଦେହୀଶ ବିଳାସ-ଉପେନ୍ଦ୍ର ଭଞ୍ଜ)

(ଖ) ବିଭାକର ବଂଶୀଶୁଣି' ପୁଲକ ବହି'
ବିଭାକର ଲଗ୍ନ ବୁଝି' ବଶିଷ୍ଠେ କହି' ।

(ଉପେନ୍ଦ୍ର ଭଞ୍ଜ – ବୈଦେହୀଶ ବିଳାସ)

**୧୯. ଦାଣ୍ଡିବୃତ୍ତ** – ଦୁଇ ପାଦରେ ଗୋଟିଏ ପଦ ହୁଏ । ପ୍ରତ୍ୟେକ ପାଦର ଅକ୍ଷର ସଂଖ୍ୟା ନିର୍ଦ୍ଦିଷ୍ଟ ନୁହେଁ । ଗାୟକ ଗାନ ସମୟରେ ନିଜ ସୁବିଧାନୁଯାୟୀ ଯତିପାତ କରିଥା'ନ୍ତି । ସାରଳାଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦାଣ୍ଡିରାମାୟଣ, ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭପୁରାଣ ଏହି ବୃତ୍ତରେ ରଚିତ ।

(କ) ମଙ୍ଗଳ ଶଙ୍ଖଚକ୍ର ସରୋଜ ଦଧିମୁଖ
ମଙ୍ଗଳ ବରଦାୟକ ନାଥ ସର୍ବଜ୍ଞ ପ୍ରତକ୍ଷ

(ସାରଳା ମହାଭାରତ- ଆଦିପର୍ବ, ୩ୟ ପଦ)

(ଖ) ଯେଥୁ ଅନନ୍ତରେ ଦ୍ରୋଣେ ବିଦ୍ୟା-ପୁତ୍ରନ୍ତ ହକାରି
ବାବୁ ତୁମେ ଯାଅରେ ମୃଗୟା ବନ ହେରି ।
(ସାରଳା ମହାଭାରତ)

(ଗ) ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀଶୁଣ
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁରାଣ ।
(ଦାଣ୍ଡି ରାମାୟଣ-ବଳରାମ ଦାସ)

**୨୦. ଖଣ୍ଡ କୁମ୍ଭକାମୋଦୀ** – ଏହାର ଦୁଇପାଦରେ ଏକ ପଦ ହୁଏ । ଏହାର ପ୍ରତ୍ୟେକ ପାଦ ସପ୍ତଦଶ ଅକ୍ଷର ବିଶିଷ୍ଟ । ପ୍ରତ୍ୟେକ ପାଦର ଷଷ୍ଟ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ଏ ଗୁଣ ସାଗର' ନାଗର ହେଲେ ମୋ' ପରାଣ-ସଖା'
ହୋଇଯାନ୍ତା ଏହି' ମର୍ତ୍ତ୍ୟପୁର ମୋର' ପକ୍ଷେ ଅଳକା' ।
(କବିବର ରାଧାନାଥ ରାୟ – ଉଷା)

**୨୧. କୁମ୍ଭକାମୋଦୀ** – ଏହାର ଦୁଇପାଦରେ ଗୋଟିଏ ପଦହୁଏ । ପ୍ରତ୍ୟେକ ପାଦ ଅଠର ଅକ୍ଷର ବିଶିଷ୍ଟ । ପ୍ରତ୍ୟେକ ପାଦର ଷଷ୍ଟ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ ।

(କ) ବୋଲନ୍ତି ଉଦ୍ଧବ' ଶୁଣ ଗୋ ମାଧବ' ଜନନୀ ମୋଗିର'
ଅବଶ୍ୟ ଆସିବେ' ତୁମ୍ଭ ଦୀନବନ୍ଧୁ' ଏ ଗୋପ ନଗର' ।
(ଭକ୍ତ ଚରଣ ଦାସ – ମଥୁରା ମଙ୍ଗଳ)

(ଖ) ଇତି ପ୍ରତି ଉକ୍ତି' ଲଳିତା କହନ୍ତି' ଗୁରୁଜନ ଡରେ'
ଇରାବତୀ ମତି' ପ୍ରସନ୍ନ ନ କରେ' ରଜନୀ ବାସରେ' ।
(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧ ଚିନ୍ତାମଣି)

(ଗ) ବିନାଶୁଁ ନାସା ଶ୍ର'ବଣ ସୂର୍ପଣଖା' ପ୍ରବେଶ ଲଙ୍କାର'
ବୃକ୍ଷ ପାଟଳୀରୁ' ଫୁଲଝାଡ଼ି ଉଡ଼ି' ଯାଉଛି କି କୀର' ।
(କବିସମ୍ରାଟ ଉପେନ୍ଦ୍ର ଭଞ୍ଜ-ବୈଦେହୀଶ ବିଳାସ)

**୨୨. ଚିନ୍ତାକାମୋଦୀ** – ଏହାର ଗୋଟିଏ ପଦରେ ଚାରିଟି ପାଦ ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦରେ କୋଡ଼ିଏଟି ଲେଖାଏଁ ଅକ୍ଷର ଥାଏ । ତୃତୀୟ ପାଦ ସାତ ଅକ୍ଷର ବିଶିଷ୍ଟ ଓ ଚତୁର୍ଥ ପାଦ ଦଶ ଗୋଟି ଅକ୍ଷର ବିଶିଷ୍ଟ । ପାଦମାନଙ୍କର ଶେଷ ଅକ୍ଷର ଉପରେ ଯତିପାତ ହୁଏ । ପ୍ରଥମ ଓ ଦ୍ୱିତୀୟ ପାଦର ଚତୁର୍ଥ ଓ ଦ୍ୱାଦଶ ଅକ୍ଷର ଉପରେ, ତୃତୀୟ ଓ ଚତୁର୍ଥ ପାଦର ଦ୍ୱିତୀୟ ଅକ୍ଷର ଉପରେ ଅଧିକ ଯତି ପଡ଼େ ।

(କ) ବୋଲେ ସଦା'ଶିବ ହେଲେ ସଦାଶିବ' କି କରନ୍ତା ମାରଛାର'
ଦହି କଲ' ଚିତ୍ତଜାତ ଏ ଉଚିତ' ନଥିଲା ତ କରିବାର'
ଚିନ୍ତ' ଚିତ୍ତରେ ଭଲା'
ଅଙ୍ଗ' ଅଙ୍ଗନା ଶରଣ କଲା' ।
(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧ ଚିନ୍ତାମଣି)

(ଖ) ତିଳେ ସମ'ତାକୁ ହୁଅନ୍ତା ସିତାଂଶୁ'ନ ଥିଲେ ନାନା ମୂରତି'
ତୀବ୍ର ଚିନ୍ତା'ମନେ ଜାତ ଭାବି ହୟ'ଗ୍ରୀବ ଅପସରା ପତି'
ତିମି'ରେ ବୁଡ଼େ ମତି'
ତିରି'ଦଶ ପତି ନେତ୍ର ଅତି' ।
(ଗୋଲୋକ ଚନ୍ଦ୍ର ପ୍ରଧାନ - ଇନ୍ଦୁରେଖା)

**୨୩. ଶୋକ କାମୋଦୀ** - ଏହାର ଗୋଟିଏ ପଦରେ ପାଞ୍ଚୋଟି ପାଦଥାଏ । ଏହାର ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ବାଇଶି ଅକ୍ଷର ବିଶିଷ୍ଟ । ତୃତୀୟ ପାଦ ଛଅ ଅକ୍ଷର ବିଶିଷ୍ଟ ଓ ଚତୁର୍ଥପାଦ ଦଶ ଅକ୍ଷର ବିଶିଷ୍ଟ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ; ମାତ୍ର ତୃତୀୟ ପାଦର ଶେଷ ଅକ୍ଷର ଓ ଚତୁର୍ଥ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ ।

(କ) କାଳିଆ କମଳ' ଦେଖିଲେ କମଳ' ନୟନରେ ହୁଏ' ଝରଝର'
ଦେଖି ନବଘନ' ତାର ଅପଘନ' ପୁଲକି ହୁଅଇ' ଥରଥର'
ଘନ ସୁନ୍ଦର ହେ'
ଯମୁନା ଯିବାକୁ' ତରତର'
ଏ ଅତି ବିଚିତ୍ର' କଜ୍ଜ୍ୱଳର ଚିତ୍ର' ଲେଖି ଚୁମ୍ବଦିଏ' ବାରବାର' ।
(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧଚିନ୍ତାମଣି)

(ଖ) ଶ୍ରୀରାଧାବାତୁଳୀ' ପ୍ରେମରତ୍ନ ତୁଳି' ଘେନ ଚିହ୍ନରାଗ୍ରୀ' ହକମାନେ'
କୃଷ୍ଣ ଅତି ଦିନେ' ଦୂତିକାକୁ ଦିନେ' ପଚାରନ୍ତି କର' ଧରିଛନ୍ନେ'
ପ୍ରାଣବନ୍ଧୁ ରୀତି'
କହି ମୋ ଶ୍ରୁତିକି' କର ଗତି'
ହସି ଦୂତୀ ଭାଷେ' ପ୍ରେମଜଳେ ଭାସେ 'ବିହ୍ୱଳିତ ମତି' ଦିବାରାତି' ।
(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧ ଚିନ୍ତାମଣି)

**୨୪. କାମୋଦୀ** - ଏହାର ପ୍ରତ୍ୟେକ ପଦ ଛଅ ପାଦ ବିଶିଷ୍ଟ । ପ୍ରଥମ ପାଦରେ ତେଇଶି, ଦ୍ୱିତୀୟ ପାଦରେ ଚବିଶି, ତୃତୀୟ ପାଦରେ ଚାରି, ଚତୁର୍ଥ ପାଦ ଓ ପଞ୍ଚମ

ପାଦରେ ନଅଟି ଲେଖାଏଁ ଓ ଷଷ୍ଠ ପାଦରେ ଚବିଶଟି ଅକ୍ଷର ଥାଏ । ଯତିପାତର କ୍ରମ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରଥମ ପାଦ - ୭+୭+୩+୬
ଦ୍ୱିତୀୟ ପାଦ - ୭+୭+୩+୬+୧
ତୃତୀୟ ପାଦ - ୪
ଚତୁର୍ଥ ଓ ପଞ୍ଚମ ପାଦ - ୭+୨
ଷଷ୍ଠ ପାଦ - ୭+୭+୩+୬+୧
ବି.ଦ୍ର.- ଷଷ୍ଠ ପାଦ ଆବୃତ୍ତି ପରେ ପୁନର୍ବାର ତୃତୀୟ ପାଦର ଆବୃତ୍ତି ହୁଏ ।

(କ) ବାରିଧି କୁମ୍ଭନୀର' ଗ୍ରାସେ କୁମ୍ଭ ସୁତର' ସମ୍ଭବ' ନୁହଇ ଆନର'
ବାନର ନରବଳ' ବେନି ଜାତ ରୁଧିର' ପାନହେ'ବ କୁମ୍ଭକର୍ଣ୍ଣର' ସେ'
ବାରବାର'
ବାରିଜୀବଙ୍କ ପର'କାର'
ବିରାଜିବ ମୃତ ଶ'ରୀର ।
ବଞ୍ଚକ ଗୃଧ୍ର ଚିର'କ୍ଷୁଧା ହୋଇବ ଦୂର'ଭଜିବ' ଲଙ୍କାପୁର ସ୍ଥିର'ସେ' ।
(କବିସମ୍ରାଟ ଉପେନ୍ଦ୍ର ଭଞ୍ଜ–ବୈଦେହୀଶ ବିଳାସ)

(ଖ) ଶବଦ ଶୁଣିକରି' ଗର୍ଜି ତାଡ଼କାସୁରୀ' ଅନାଇଁ' ରୋଷେ ଚଉପାଶ'
ତରୁ ଆୟୁଧ ଘେନି' ବୁଲାଇ ନେତ୍ରନେବି' ପଥରେ' ହୋଇଲା ପ୍ରବେଶ'ସେ'
ସୁଙ୍କଙ୍କନେ'
ଦଶନେ ତା ପିଣ ଅ'ଧର'
ତୁଣ୍ଡରୁ ଗଳଇ ରୁ'ଧିର'
କେଶ କରି ମୁକୁଳ' ଟେକି ବାହୁଯୁଗଳ' ଦିଶଇ' ମହା ବିକଟାଳ' ସେ' ।
(ବିଶ୍ୱନାଥ ଖୁଣ୍ଟିଆ–ବିଚିତ୍ର ରାମାୟଣ)

**୨୫. ଘଣ୍ଟାରବ** - ଏହାର ଗୋଟିଏ ପଦରେ ତିନୋଟି ପାଦ ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦରେ ଆଠଗୋଟି ଲେଖାଏଁ ଅକ୍ଷର ଥାଏ, ମାତ୍ର ତୃତୀୟ ପାଦ କୋଡ଼ିଏ ଅକ୍ଷର ବିଶିଷ୍ଟ । ପ୍ରଥମ ଓ ଦ୍ୱିତୀୟ ପାଦରେ କେବଳ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦରେ ଷଷ୍ଠ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ବାଲମୀକ ସଙ୍ଗେ ଭେଟ'
କହିଲେ ସକଳ କୂଟ'
ବହୁବିଧି କରି' ରାମଙ୍କୁ ପୂଜିଲେ' ହୋଇ ମୁନିବର ହୃଷ୍ଟ' ।
(ବିଶ୍ୱନାଥ ଖୁଣ୍ଟିଆ – ବିଚିତ୍ର ରାମାୟଣ)

(ଖ) ଦେଖି ପୀନ ସ୍ତନୀ ଶୋଭା'
ମଞ୍ଜୁ ବିଦ୍ୟୁଜିତ ପ୍ରଭା'
ବୀର ବିଚାରଇ' ମୋହିନୀ ଏ ବେନି' ସୁଧାକୁମ୍ଭ ଘେନି ଉଭା' ।
(କବିସମ୍ରାଟ ଉପେନ୍ଦ୍ର ଭଞ୍ଜ– କୋଟି ବ୍ରହ୍ମାଣ୍ଡସୁନ୍ଦରୀ)

(ଗ) ବାକ୍ୟ ମନ୍ଦ ହୋଇଥିବ'
ବରଷାପିକ ସ୍ୱଭାବ'
ବୃକ୍ଷ ହେବ ତୁମ୍ଭେ' ମୋ କଥା ଶ୍ରବଣ' ଜମ୍ବୁପାନ କରାଇବ' ।
(କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ– ବୈଦେହୀଶ ବିଳାସ)

**୨୬. ଜୟନ୍ତ** – ଏହାର ପ୍ରତ୍ୟେକ ପଦରେ ତିନିଗୋଟି ଲେଖାଏଁ ପାଦ ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦରେ ଚଉଦ ଗୋଟି ଲେଖାଏଁ ଅକ୍ଷର ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦର ଅଷ୍ଟମ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦ ଛଅ ଅକ୍ଷର ବିଶିଷ୍ଟ ଏବଂ ତାହାର ଦ୍ୱିତୀୟ, ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ବୃଦ୍ଧକାଳେ ତ ମୋହର' ଏକଇ ନ'ନ୍ଦନ'
ହୃଦତାପ ବିନାଶନେ' ତୁ ହରିଚ'ନ୍ଦନ'
କଳା'ମାଣିକ'ରେ' ।
(ଅଭିମନ୍ୟୁ ସାମନ୍ତସିଂହାର–ବିଦଗ୍ଧ ଚିନ୍ତାମଣି)

(ଖ) ସାମନ୍ତସିଂହାର ଦୀନ' କରିଛି କା'ମନା'
କୃଷ୍ଣପ୍ରେମ ରସବିନା' ନୋହିବ ଭା'ବନା'
କଳା'ମାଣିକ'ରେ' ।
(ଅଭିମନ୍ୟୁ ସାମନ୍ତସିଂହାର–ବିଦଗ୍ଧ ଚିନ୍ତାମଣି)

**୨୭. ଲଳିତକାମୋଦୀ** – ଏହାର ପ୍ରତ୍ୟେକ ପଦରେ ଚାରିଗୋଟି ପାଦ ଥାଏ । ଏହାର ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥ ପ୍ରତ୍ୟେକ ପାଦର ଅକ୍ଷର ସଂଖ୍ୟା ପନ୍ଦର । ଏହାର ଦ୍ୱିତୀୟ, ଚତୁର୍ଥ, ଷଷ୍ଠ, ଅଷ୍ଟମ, ଦଶମ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦର ଅକ୍ଷର ସଂଖ୍ୟା ମଧ୍ୟ ପନ୍ଦର । କିନ୍ତୁ ଏହି ପାଦର ତୃତୀୟ, ଅଷ୍ଟମ, ଦଶମ, ଦ୍ୱାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ବୁଣି'ଥିଲେ' ପ୍ରେମ'ବୀଜ' ଅଙ୍କୁ'ର ସେ' ହୋଇଛି'
ଘନ'ରସ' ଆଶା'କରି ଏତେ'କାଳ' ଜୀଇଛି'
ଦୁତିଗୋ' କହ ବନ୍ଧୁଙ୍କୁ' କାମ' ଜାଳି' ଦେଉଛି'
ତହୁଁ' ଯେ ବ'ଳୁଛି' ତାହା' ମୂଳ' ଖୋଳି'ନେଉଛି ।'
(ଅଭିମନ୍ୟୁ ସାମନ୍ତସିଂହାର–ବିଦଗ୍ଧ ଚିନ୍ତାମଣି)

**୨୮. କୌଶିକ** - ଏହାର ପ୍ରତ୍ୟେକ ପଦରେ ପାଞ୍ଚଗୋଟି ପାଦଥାଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ଏକୋଇଶି ଅକ୍ଷର ବିଶିଷ୍ଟ । ତୃତୀୟ ପାଦ ପାଞ୍ଚ ଅକ୍ଷର ବିଶିଷ୍ଟ ଓ ଚତୁର୍ଥ ପାଦ ନଅ ଅକ୍ଷର ବିଶିଷ୍ଟ। ଯତିପାତର କ୍ରମ ନିମ୍ନରେ ପ୍ରଦତ୍ତ ହେଲା-

ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦରେ
ଯତିପାତ କ୍ରମ - ୩ + ୩ + ୩ + ୩ + ୩ + ୩ + ୩
ତୃତୀୟ ପାଦର କ୍ରମ - ୨ + ୩
ଚତୁର୍ଥ ପାଦର କ୍ରମ - ୩ + ୩ + ୩

(କ) ରାମବା'ଣ ଟାଣ' ଦେଖିଣ' ରାବଣ' ଲାଜ ଭ'ୟରେ ପ'ଳାଇଲା'
ଛେଦନ' କଲେ ଯେ'ତେ ଛତ୍ର' ତାହାର' ସିନ୍ଧୁ ଗ'ର୍ଭରେ ସେ' ପଡ଼ିଲା'
ଚିନ୍ତା' ଜଳରେ'
ମନ ମୀ'ନ ତାର' ବୁଡ଼ିଲା'
ବୋଲେ ବି'ଶି ସୀତା' ହରିଲା' ଦିନରୁ' ଦଇବ' ତାହାକୁ' ଛାଡ଼ିଲା' ।
(ବିଶ୍ୱନାଥ ଖୁଣ୍ଟିଆ - ବିଚିତ୍ର ରାମାୟଣ)

(ଖ) ରସିକେ' ଦୂତୀ ବି'ଳମ୍ବରୁ' ଗୋବିନ୍ଦ' ତନୁ ଅ'ବଶ ହୋ'ଇଲାନି'
ଦୂର ଦୁ'ର୍ଲ୍ଲଭ ଦୁ'ନ୍ଦୁଭି ଦୁ'-ପୂର୍ବାଦି' ଭାଷାରେ' ଆଶା ହୋ'ଇଲାନି'
ସେହି'କାଳକୁ'
ଦୂତୀ ସେ'ଠାକୁ ଅ'ଇଲାନି'
ତା କଥ'ନ ମୁଖ' ଦେଖି ହ'ରିହୃଦେ' ଆନନ୍ଦ' ଚନ୍ଦ୍ର ଉ'ଇଁଲାନି ।
(ଅଭିମନ୍ୟୁ ସାମନ୍ତସିଂହାର - ବିଦଗ୍ଧଚିନ୍ତାମଣି)

**୨୯. ପାହାଡ଼ିଆ କେଦାର** - ଏହାର ପାଞ୍ଚପାଦରେ ଏକ ପଦ ହୁଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦ ପଇଁତିରିଶି ଅକ୍ଷର ବିଶିଷ୍ଟ, ତୃତୀୟ ଓ ଚତୁର୍ଥ ପାଦରେ ବାରଗୋଟି ଲେଖାଏଁ ଅକ୍ଷର ଥାଏ । ଏହା ଗାନ କଲା ବେଳେ ପ୍ରତ୍ୟେକ ପାଦର ଶେଷରେ ହେ, ଗୋ ବା ଯେ ମଧ୍ୟରୁ କୌଣସି ଗୋଟିଏ ଲାଗେ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦର ଦଶମ, ବିଂଶ, ତ୍ରିଂଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ଓ ଚତୁର୍ଥପାଦ ଶେଷରେ ଯତିପଡ଼େ । ପ୍ରଥମ ପାଦର ଶେଷ ଅକ୍ଷର, ଦ୍ୱିତୀୟ ପାଦର ଶେଷ ଅକ୍ଷର ତାହା ହୁଏ ଓ ତୃତୀୟ, ଚତୁର୍ଥ ପାଦର ଶେଷ ଅକ୍ଷର ଯାହାହୁଏ, ପଞ୍ଚମ ପାଦର ଶେଷ ଅକ୍ଷର ତାହା ହୁଏ ।

(କ) କେବେ ହେଁ ନିମ୍ବ ନୋହେ ମଧୁର' ସଂଯୋଗକଲେ ନେଇ ଶାକର'
କଳାକୁ ନ ଛାଡ଼ଇ ଅଙ୍ଗାର' ଦୁଧେ ଧୋଇଲେ' ଯେ,
କର୍ପୂର ଗନ୍ଧ ଚନ୍ଦନ ଦେଇ' ରସୁନ ଗନ୍ଧ ନୋହେ ଛଡ଼ାଇ'
କୁବୁଦ୍ଧି ନୋହେ ସୁବୁଦ୍ଧି ଯେତେ' ଗୂପେ କହିଲେ' ଯେ,
କଥା ଏତେ ହେଁ ଯେବେ ଧାତା କରନ୍ତା' ଯେ
କସ୍ତୁରୀକି ଖଳଙ୍କ ଜିଭେ ରଖନ୍ତା' ଯେ
କଟା ଯାଆନ୍ତା ସମୂଳ ହୋଇ' କାହାକୁ କିଛି କହନ୍ତେ ନାହିଁ,'
ଉତ୍ତମ କଥାମାନ କେବେ ହେଁ' ନିନ୍ଦା ନୁହନ୍ତା' ଯେ ।
(ଦୀନକୃଷ୍ଣ ଦାସ – ରସକଲ୍ଲୋଳ)

(ଖ) ବାଲ୍ମୀକି, ବ୍ୟାସ କବି ଯହିଁରେ' ମହାକାବ୍ୟ କେ ପୂରଣ କଲେ'
ମହାନାଟକ ବାତ ସୁତରେ' ହେଲେ ରଚିତା' ଯେ,
ବିହିଲେ କାବ୍ୟ ଯେ କାଳିଦାସେ' ଚମ୍ପୂରଚନା ଭୋଜ ନରେଶେ,
କୃପାସିନ୍ଧ୍ୱାଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା' ଯେ,
ବିବେକ ହିଁ ଉଦୟ ଏମନ୍ତ ଧାୟି'ଯେ
ବ୍ୟୋମେ ତାରକା ଯେବେ ଝଲକୁଥାଇ'ଯେ
ବିଭାବରୀରେ ଜ୍ୟୋତିରିଙ୍ଗଣ' – ଗଣ ଜ୍ୟୋତିକି ଦେଖାନ୍ତି ପୁଣ'
ସୁଜନେ ସାବଧାନରେ ଶୁଣ' ଛାନ୍ଦ ରଚଇ' ଯେ ।
(କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ – ବୈଦେହୀଶବିଳାସ)

**୩୦. ବସନ୍ତ** – ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ । ପ୍ରତ୍ୟେକ ପାଦରେ ଚଉଦଟି ଲେଖାଏଁ ଅକ୍ଷର ଥାଏ । ପ୍ରଥମ ପାଦର ଶେଷ ଅକ୍ଷର ସହିତ ଦ୍ୱିତୀୟ ପାଦର ଶେଷ ଅକ୍ଷର, ତୃତୀୟ ପାଦର ଶେଷ ଅକ୍ଷର ସହିତ ଚତୁର୍ଥ ପାଦର ଶେଷ ଅକ୍ଷର, ପଞ୍ଚମ ପାଦର ଶେଷ ଅକ୍ଷର ସହିତ ଷଷ୍ଠ ପାଦର ଶେଷ ଅକ୍ଷରର ଯତିପାତ ହୁଏ । ଆହୁରି ମଧ୍ୟ ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ହର ଧନୁ ଭଗ୍ନ ରାମ ରାମ'ନେତ୍ରୀ ବିଭା'
ଲେଖିଲେ ଚାତୁରୀଅଳୀ' ଆଳି କରି ଶୋଭା'
ଭୃଗୁରାମ ରାମ ବାଦ' ବୀଥିରେ ଯେମନ୍ତ'
ବୋଧେ ରଘୁବର ବର' – ବରଣୀର ଚିତ୍ତ'
ମଧୁଶଯ୍ୟା ଶଯ୍ୟାଶୋଭା' କୁଳଦୀପ ଛୁଇଁ
ରାମ ସୀତା ଚିତ୍ର ଚିତ୍ର' ବିଧାନେ ଚିତ୍ରାଇ' ।
(ଗୋଲୋକ ଚନ୍ଦ୍ର ପ୍ରଧାନ–ଇନ୍ଦୁରେଖା)

**୩୧. କଳସା** – ଏହାର ଦୁଇ ପାଦରେ ଏକ ପଦ ହୁଏ, ପ୍ରତିପାଦ ଚଉଦ ଅକ୍ଷର ବିଶିଷ୍ଟ, ପ୍ରତ୍ୟେକ ପାଦର ଚତୁର୍ଥ, ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ଜଳେ ଆସି' ଲୁଚି ଅଛି' କି ବୁଦ୍ଧି କରିବି'
ବାହୁଡ଼ି ଗ'ଲେ କଂସକୁ' କି ବୋଲି କହବି' ।

(ଭକ୍ତ ଚରଣ ଦାସ – ମଥୁରାମଙ୍ଗଳ)

(ଖ) ବଶିଷ୍ଠ ଦେ'ଖି ଜନକ' ହେଲେ ବହୁ ହୃଷ୍ଟ'
କାଲି ବିଭା' ହେବ ବୋଲି' କହିଲେ ବଶିଷ୍ଠ ।'

(ବିଶ୍ୱନାଥ ଖୁଣ୍ଟିଆ – ବିଚିତ୍ର ରାମାୟଣ)

(ଗ) ଆନନ ନୁ'ଆଇଁ ଲାଜେ' ବସିଲା ସୁବଳ'
ଆର୍ତ୍ତି କରା'ଇଲା ମନ' କୃଷ୍ଣ ପ୍ରେମବଳ ।'

(ଅଭିମନ୍ୟୁ ସାମନ୍ତସିଂହର – ବିଦଗ୍ଧଚିନ୍ତାମଣି)

**୩୨. ମୁନିବରବାଣୀ** – ଏହାର ଚାରି ପାଦରେ ଏକ ପଦ ହୁଏ । ଏହାର ପ୍ରଥମ, ଦ୍ୱିତୀୟ ଓ ତୃତୀୟପାଦ ଆଠ ଅକ୍ଷର ବିଶିଷ୍ଟ ହୋଇଥିବା ବେଳେ ଚତୁର୍ଥ ପାଦ ପାଞ୍ଚଅକ୍ଷର ବିଶିଷ୍ଟ । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପାଦର ଚତୁର୍ଥ ଓ ଶେଷ ଅକ୍ଷର ଉପରେ ଯତିପାତ ହୋଇଥାଏ; ମାତ୍ର ଚତୁର୍ଥ ପାଦର ପଞ୍ଚମ ଓ 'ଯେ' ଅକ୍ଷର ଉପରେ ଯତିପାତ ହୁଏ ।

(କ) ବୀଣା ଶ୍ରବ'ଣେ ନାରଦ'
ସନ୍ତୋଷେ ହେ'ଲେ ବରଦ'
ହେଉତବ' ମନୋହାରୀ'
ଦିବ୍ୟ ସୁନ୍ଦରୀ' ଯେ' ।

(କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ–କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

(ଖ) ପଦ୍ମଯୋନି' ଜନ୍ମ ହେଲେ'
ଆଗେ ଜଳ'ଜାତ କଲେ'
ପଛେ ପୁରୁ'ଷେକ ଜାତ'
କଲେକ ତାତ' ଯେ' ।

(ବିଶ୍ୱନାଥ ଖୁଣ୍ଟିଆ – ବିଚିତ୍ର ରାମାୟଣ)

(ଗ) ନୀଳଗିରି' ଜଗନ୍ନାଥ'
ଶଙ୍ଖଚକ୍ର', ଚତୃହସ୍ତ'
ରଥବିଜ' ଯକୁ ଅନା'
ଶୁଣ ହୋ ମନା' ଯେ ।

(ଅର୍ଜୁନ ଦାସ – କଳ୍ପଲତା)

**୩୩. କନଡ଼ା** - ଏହାର ପ୍ରତ୍ୟେକ ପଦ ଆଠ ପାଦ ବିଶିଷ୍ଟ । ପ୍ରଥମ ପାଦ ଏକୋଇଶି ଅକ୍ଷର ବିଶିଷ୍ଟ । ଦ୍ୱିତୀୟ, ପଞ୍ଚମ ଓ ଷଷ୍ଠ ପାଦରେ ଏଗାରଟି ଲେଖାଏଁ ଅକ୍ଷର ଥାଏ । ତୃତୀୟ ଓ ସପ୍ତମ ପାଦରେ କୋଡ଼ିଏଟି ଲେଖାଏଁ ଅକ୍ଷର ଥାଏ । ଏହି ଦୁଇପାଦର ଶେଷରେ ଉଚ୍ଚାରଣ ସୌକର୍ଯ୍ୟ ଦୃଷ୍ଟିରୁ 'ଗୋ', 'ହେ', 'ସେ' ଆଦି ଯୋଗ କରାଯାଇଥାଏ । ଚତୁର୍ଥ ଓ ଅଷ୍ଟମ ପାଦରେ ତିନୋଟି ଲେଖାଏଁ ଅକ୍ଷର ଥାଏ । ଏହାର ପ୍ରଥମ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଦ୍ୱିତୀୟ, ପଞ୍ଚମ ଓ ଷଷ୍ଠ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଦ୍ୱିତୀୟ ଓ ସପ୍ତମ ପାଦର ଷଷ୍ଠ, ଦ୍ୱାଦଶଏ ଅଷ୍ଟାଦଶ, ବିଂଶ ଓ 'ଗୋ' 'ସେ' 'ହେ' ଅକ୍ଷର ଉପରେ ଯତି ପଡ଼େ । ଚତୁର୍ଥ ଓ ଅଷ୍ଟମ ପାଦର ଶେଷ ଅକ୍ଷର ଉପରେ ଯତିପାଦ ହୁଏ ।

(କ) ବାସବ ବୋଲନ୍ତି' ଆହେ ରାମଚନ୍ଦ୍ର' କଲ ବହୁତ ଉ'ପକାର'
ଦୈତ୍ୟ ନାଶି ନାଶି'ଲ ମହାଭାର'
ଆମ୍ଭର ବଚନ' ବିଅର୍ଥ ନୁହଇ' ମାଗ ତୁମ୍ଭେ ଏବେ' ବର'ହେ'
ଶ୍ରୀରାମ' !
ରାମ ବୋଲନ୍ତି ଯେ'ବେ ବରଦେବ'
ରକ୍ଷ କପି ମୋହ'ର ଜୀଆଇବ'
ନିଦ୍ରାଗଲା ପ୍ରାୟେ' ସମସ୍ତେ ଉଠିବେ' କିଛି ହିଁ ବ୍ରଣ ନ' ଥିବ'ହେ'
ବାସବ' ।

(ବିଶ୍ୱନାଥ ଖୁଣ୍ଟିଆ-ବିଚିତ୍ର ରାମାୟଣ)

(ଖ) ନବୀନାମାନେ ଏ'ବାଣୀ ଶୁଣି ଲାଜ'-ହରଷ ରସରେ' ମଜ୍ଜନ'
ନକରେ କି ଅନା'ଯତ୍ତ ବିଧାନ'
ନଗଲେ ତ ପ୍ରତି'କାର ନାହିଁ ଆଉ', ଭାଳି ବାଳୀ ଛନ୍ନ'ମନ' ସେ'
ନୂତନା'
ନିଜ କରେ ମର୍ମ'ସ୍ଥାନ ଆଚ୍ଛାଦି'
ନଦୀ ଜଳୁ ବାହା'ର ନେତ୍ରମୁଦି'
ନତବଦନେ ଅ'ପଥ ପଥ କଲେ' ମୁଖ ମୋଡ଼ି କନ୍ଧେ' ଲଦି' ସେ'
ନୂତନା' ।

(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧଚିନ୍ତାମଣି)

**୩୪. ଭୈରବ** - ଏହାର ଚାରିପାଦରେ ଏକ ପଦ ହୁଏ । ଏହାର ପ୍ରଥମ ଓ ଦ୍ୱିତୀୟ ପାଦରେ ଦଶଟି ଲେଖାଏଁ ଅକ୍ଷରଥାଏ । ତୃତୀୟ ପାଦ ବାଇଶି ଅକ୍ଷର ବିଶିଷ୍ଟ ଓ ଚତୁର୍ଥ ପାଦ ତିନି ଅକ୍ଷର ବିଶିଷ୍ଟ । ତୃତୀୟ ପାଦରେ ଉଚ୍ଚାରଣ ସୌକାର୍ଯ୍ୟ ପାଇଁ ଗୋଟିଏ

ଅକ୍ଷର 'ହେ' ଯୋଗ ହୁଏ । ପ୍ରଥମ ଓ ଦ୍ୱିତୀୟ ପାଦର ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ, ଦ୍ୱାବିଂଶ ଓ 'ହେ' ଉପରେ ଯତିପାତ ହୁଏ । ଚତୁର୍ଥ ପାଦର ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ମନାଉଛି ହୋ'ଇଛି ବିମନା'
ମନା କରିବି' ନାହିଁ କାମନା'
ମନାସିଲେ ସଙ୍ଗ' ଅଭିଳାଷ ଭୃଙ୍ଗ' ତାହା ବାରଇ ନି'କି ସୁମନା'ହେ'।
ସୁନ୍ଦର' ।
(ଅଭିମନ୍ୟୁ ସାମନ୍ତ ସିଂହାର-ବିଦଗ୍ଧ ଚିନ୍ତାମଣି)

(ଖ) ରାସ ରହସ୍ୟ' ଅନ୍ତର କଥା'
ଶୁଣ ରସିକ' ରସ ପଣ୍ଡିତା'
ନୀପ ତରୁମୂଳେ' ବିଜେ ଗୋପୀନାଥ' ବ୍ରଜବନ୍ଧୁ ବୃଷ'ଭାନୁ ସୁତା'ହେ'
ସୁଜନେ' ।
(ରହସ୍ୟ ମଞ୍ଜରୀ - ଦେବଦୁର୍ଲ୍ଲଭ ଦାସ)

**୩୫. କଲ୍ୟାଣ-ଆହାରୀ** - ଏହାର ପାଞ୍ଚପାଦରେ ଏକ ପଦ ହୁଏ । ଏହାର ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦରେ ଏକୋଇଶି ଲେଖାଏଁ ଅକ୍ଷର ଥାଏ । ତୃତୀୟ ପାଦରେ ତିନୋଟି ଓ ଚତୁର୍ଥ ପାଦରେ ନଅଟି ଅକ୍ଷର ଥାଏ । ପ୍ରଥମ, ଦ୍ୱିତୀୟ ଓ ପଞ୍ଚମ ପାଦରେ ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ, ତୃତୀୟ ପାଦର ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

(କ) ଏଥୁ ଅନନ୍ତରେ' କିଛିଦିନପରେ' ଚିତ୍ରକୂଟ ତେଜି' ଶ୍ରୀରାମ'
ଦଣ୍ଡକା ଅରଣ୍ୟେ' ପ୍ରବେଶି ଦେଖିଲେ' ଆତ୍ରେୟ ଋଷିଙ୍କ' ଆଶ୍ରମ'
ସୁଜନେ'
ଅତିଗମ୍ୟ ତାଙ୍କ' ଆରାମ'
ସମସ୍ତ ଋଷିମା'ନଙ୍କ ସଙ୍ଗତରେ' ଯହିଁ କରିଛନ୍ତି' ବିଶ୍ରାମ' ।
(ବିଶ୍ୱନାଥ ଖୁଣ୍ଟିଆ-ବିଚିତ୍ର ରାମାୟଣ)

(ଖ) ଧୀରେ ଘେନ ରାଧା' ଜନ୍ମାଦି ଉତ୍ସବ' ତତ୍ତ୍ୱସାଧୁ ଶାସ୍ତ୍ରେ' ଖୋଜିବ'
ବୃଷଭାନୁ ଭାନୁ'ବଂଶୀରାଜ ହେଜ' ଦନୁଜ କଂସରେ' ବିଭାବ'
ଅବନ୍ତୀ'
ତେଜି ଗୋକୁଳ ଯା'ବଟରେ'
ରହି ନନ୍ଦାସ୍ପଦେ' ଗୋକୁଳ ସମ୍ପଦେ' ବୃତ୍ତି କଳ୍ପିତ ନୂ'ତନରେ' ।
(ଅଭିମନ୍ୟୁ ସାମନ୍ତସିଂହାର-ବିଦଗ୍ଧ ଚିନ୍ତାମଣି)

## ଅନୁଶୀଳନୀ

୧ । 'ବିଭାସ କେଦାର' ଛନ୍ଦରେ କେତୋଟି ପାଦରେ ଗୋଟିଏ ପଦ ହୁଏ ।
(କ) ଦୁଇ (ଖ) ତିନି (ଗ) ଚାରି (ଘ) ପାଞ୍ଚ

୨ । "ଉପାଧି ଜଡ଼ିତେ ଉପାଧି ଜଡ଼ିତ
ଉପାଧିରେ ଆଜ କରିବେ ଜଡ଼ିତ ।" - ଏହି ପଦଟି କେଉଁ ଛନ୍ଦରେ ରଚିତ ?
(କ) ରାମକେରୀ (ଖ) ବଙ୍ଗଳାଶ୍ରୀ (ଗ) ଗୁଜ୍ଜରୀ (ଘ) ନଟବାଣୀ

୩ । "କେମିତି କହିବି ସଖିଲୋ ଏତ ଗହନ କଥା
ଶୁଣି ତୋ ଅନ୍ତରେ ଉଠିବ ପରା ଅସହ୍ୟ ବ୍ୟଥା ।"
– ସଂଶିତ ପଦଟି କେଉଁ ଛନ୍ଦରେ ରଚିତ ?
(କ) ନଟବାଣୀ (ଖ) ରାମକେରୀ (ଗ) ଦାଣ୍ଡି (ଘ) ଚୋଖି

୪ । ଚୋଖି ଛନ୍ଦର ତୃତୀୟ ପାଦରେ କେତୋଟି ଅକ୍ଷର ଥାଏ ?
(କ) ୩ଟି (ଖ) ୬ଟି (ଗ) ୯ଟି (ଘ) ୧୨ଟି

୫ । ଶଙ୍କରାଭରଣ ଛନ୍ଦର ତୃତୀୟ ପାଦରେ କେତୋଟି ଅକ୍ଷର ଥାଏ ।
(କ) ୬ଟି (ଖ) ୮ଟି (ଗ) ୧୦ଟି (ଘ) ୧୨ଟି

୬ । ସ୍ଥାବର ଜଙ୍ଗମ ମନ ହୋଇ ଅଛି
ଅନଙ୍ଗର ଲୀଳାଗାର,
ପୁରୁଷେ ଦେଖନ୍ତି ନାରୀମୟ, ନାରୀ
ପୁରୁଷମୟ ସଂସାର ।
ସଂଶିତ ପଦଟି କେଉଁ ଛନ୍ଦରେ ରଚିତ ?
(କ) ଦାଣ୍ଡି (ଖ) ଆଷାଢ଼ ଶୁକ୍ଳ (ଗ) ଘଣ୍ଟାରବ (ଘ) ବଙ୍ଗଳାଶ୍ରୀ

୭ । 'ଆଷାଢ଼ଶୁକ୍ଳ' ଛନ୍ଦରେ କେତୋଟି ପାଦଥାଏ ?
(କ) ୩ଟି (ଖ) ୪ଟି (ଗ) ୫ଟି (ଘ) ୬ଟି

୮ । "ଆଣି କସ୍ତୁର ନବୋଳ ଆପଣା ଗାତ୍ରରେ
ଆକ୍ଷେପ କରି ବାରିଲେ ଗୋବିନ୍ଦ ନେତ୍ରରେ ।"
ସଂଶିତ ପଦଟି କେଉଁଛନ୍ଦରେ ରଚିତ ?
(କ) ବସନ୍ତ (ଖ) ପାହାଡ଼ିଆ କେଦାର (ଗ) କଳସା (ଘ) ଦାଣ୍ଡି

୯ । "କାହାକଙ୍କଣ ହୋଇଛି କେୟୁର
କେ ଉରେ କରିଛି କଙ୍କଣ ହାର
କେ କଣ୍ଠେ ବସାଇ ତୁମ୍ଭ ନାମକୁ
କଳେବର ଦେଇ କାମ କାଣ୍ଡକୁ
କରିଚି ଶୟନ
କିଞ୍ଚିତ କରି ଫେଡ଼ିଛି ନୟନ ।"
ସଂଶିତ ପଦଟି କେଉଁ ଛନ୍ଦରେ ରଚିତ ?
(କ) ଶଙ୍କରାଭରଣ (ଖ) ଚୋଖି (ଗ) ଆଷାଢ଼ଶୁକ୍ଳ (ଘ) ରାମକେରୀ

୧୦। ଚୋଖି ଛନ୍ଦରେ ରଚିତ ପଦ୍ୟରେ କେତେ ପାଦରେ ଏକ ପଦ ହୁଏ ?
(କ) ଚାରି (ଖ) ଦୁଇ (ଗ) ଛଅ (ଘ) ଆଠ

୧୧ । ଚୋଖି ଛନ୍ଦରେ ପ୍ରଥମ ପାଦରେ ଅକ୍ଷର ସଂଖ୍ୟା କେତେ ?
(କ) ଅଠର (ଖ) ଏକୋଇଶ (ଗ) ଚବିଶ (ଘ) ଅଣତିରିଶ

୧୨ । ପାହାଡ଼ିଆ କେଦାର ଛନ୍ଦରେ କେତୋଟି ପାଦରେ ଏକ ପଦ ହୁଏ ?
(କ) ଦୁଇ (ଖ) ଚାରି (ଗ) ପାଞ୍ଚ (ଘ) ଛଅ

୧୩ । ଚନ୍ଦନ ବେଶ ମୁଁ କରନ୍ତି ମୋର ହେଉଛି ମନ
ଚିତ୍ତ କେ ଧରିବ ଯୁବତୀ ଚାହିଁ ଚନ୍ଦ୍ର ବଦନ ।
ସଂଶିତ ପଦଟି କେଉଁ ଛନ୍ଦରେ ରଚିତ ?
(କ) ଭାଗବତ ବାଣୀ (ଖ) ନଟବାଣୀ (ଗ) କଳସା (ଘ) ରାମକେରୀ

୧୪ । ଟେକିଲେ ଦୂବ କଲେ ଦାରୁ
ଟାଣ ପଣରେ ଭାଙ୍ଗେ ମେରୁ ।
ସଂଶିତ ପଦଟି କେଉଁ ଛନ୍ଦରେ ରଚିତ ।
(କ) ନଟବାଣୀ (ଖ) କଳହଂସକେଦାର (ଗ) ଭାଗବତବାଣୀ (ଘ) ଚୋଖି

୧୫ । ନିଶୀଥରେ ନିଶାମଣି-ଦ୍ୟୁତିହର
ଜନ୍ମିଲେ ସତୀଙ୍କ ଯମଜ କୁମର ।
ଏହି ପଦଟି କେଉଁ ଛନ୍ଦରେ ରଚିତ ।
(କ) ଭାଗବତବାଣୀ (ଖ) ନଟବାଣୀ (ଗ) କଳହଂସକେଦାର (ଘ) ରାମକେରୀ



# ଅଲଙ୍କାର

ସାଧାରଣତଃ ଭୂଷଣାର୍ଥକ 'ଅଲମ୍' ପୂର୍ବକ 'କୃ' ଧାତୁରେ କରଣ ବା ଭାବରେ 'ଘଞ୍' ପ୍ରତ୍ୟୟଦ୍ୱାରା 'ଅଲଙ୍କାର' ଶବ୍ଦଟି ଗଠିତ, ଯାହାର ଅର୍ଥ ଶୋଭାକାରକ ଉପକରଣ । ବ୍ୟାକରଣ ଭାଷାର ଶୁଦ୍ଧତା ଉପରେ ଗୁରୁତ୍ୱ ଦେଇଥିବା ସମୟରେ, ଅଲଙ୍କାର ସାହିତ୍ୟର ସୌନ୍ଦର୍ଯ୍ୟ ଦିଗ ପ୍ରତି ଦୃଷ୍ଟି ଦେଇଥାଏ । ସାଧାରଣ କଥନ ଅପେକ୍ଷା ଅଲଙ୍କାରଯୁକ୍ତ କଥନ ଅଧିକ ଚିତ୍ତାକର୍ଷକ ଓ ମନୋହର । ମାନବର ସୌନ୍ଦର୍ଯ୍ୟବୋଧ ତଥା ସୌନ୍ଦର୍ଯ୍ୟ-ଉପାସନା ପ୍ରବୃତ୍ତିରୁ ଅଲଙ୍କାରର ଜନ୍ମ । ଶରୀରର ସୌନ୍ଦର୍ଯ୍ୟ ବିଧାନରେ ବିଭିନ୍ନ ପ୍ରକାର ଆଭୂଷଣର ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ, ଭାଷାକୁ ସୁନ୍ଦର ତଥା ମନୋହର କରିବା କ୍ଷେତ୍ରରେ ଅଲଙ୍କାରର ଭୂମିକା ତତୋଽଧିକ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ସ୍ରଷ୍ଟା ତା'ର ସୃଷ୍ଟିକୁ ସର୍ବଦା ପ୍ରଭାବଶାଳୀ ଓ ଚମତ୍କାର କରିବାରେ ଅଭିଳାଷ ପୋଷଣ କରିଥାଏ । ଏହି ରମଣୀୟତା ବା ଚମତ୍କାରିତା କାବ୍ୟରେ ଅଲଙ୍କାର ଭାବରେ ପରିଗଣିତ ।

ବ୍ୟାକରଣ ଶାସ୍ତ୍ରରେ ଅଲଙ୍କାରର ପରିଭାଷା ସମ୍ପର୍କରେ କୁହାଯାଇଛି, "ଅଲଂକରୋତି ଇତି ଅଲଙ୍କାରଃ" । ଅର୍ଥାତ୍ ଯାହା ସୁଶୋଭିତ କରେ, ତାହା ଅଲଙ୍କାର । ଆଲଙ୍କାରିକଙ୍କ ମତରେ ଅଲଙ୍କାରଦ୍ୱାରା କାବ୍ୟ ଶୋଭାର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଚମତ୍କାରସମ୍ପନ୍ନ ମଧ୍ୟ ହୋଇଥାଏ । ସୌନ୍ଦର୍ଯ୍ୟର ଅନ୍ୟ ନାମ ମଧ୍ୟ ଅଲଙ୍କାର ବୋଲି ବାମନ ତାଙ୍କ 'କାବ୍ୟାଳଙ୍କାର ସୂତ୍ରବୃତ୍ତି'ରେ କହିଛନ୍ତି (କାବ୍ୟଂ ଗ୍ରାହ୍ୟମଳଙ୍କାରାତ୍-କାବ୍ୟାଳଙ୍କାର ସୂତ୍ରବୃତ୍ତି- ୧/୧୨, ସୌନ୍ଦର୍ଯ୍ୟମଳଙ୍କାରଃ-କାବ୍ୟାଳଙ୍କାର ସୂତ୍ରବୃତ୍ତି-୧/୨)। ଅଲଙ୍କାର ଭୂଷିତା ତରୁଣୀଟିଏ ଯେପରି ରସିକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ, ସେହିପରି ଅଲଙ୍କାରପରିବୃତ୍ତା କାବ୍ୟରମଣୀ ସହୃଦୟ ପାଠକମାନଙ୍କର ଆଦର ଲାଭ କରିଥାଏ । ଏହି ଦୃଷ୍ଟିରୁ ସାହିତ୍ୟରେ ଅଲଙ୍କାରର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

କାବ୍ୟରେ ବ୍ୟବହୃତ ଅଲଙ୍କାରକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ଯଥା- ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର । ସାଧାରଣତଃ ଶବ୍ଦର ଚମତ୍କାରିତା ପ୍ରତିପାଦନ କରିବା **ଶବ୍ଦାଳଙ୍କାରର** ଲକ୍ଷ୍ୟ । ଭାଷାର ସୌନ୍ଦର୍ଯ୍ୟ ବୃଦ୍ଧି କ୍ଷେତ୍ରରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବର୍ଣ୍ଣ ଏବଂ ଶବ୍ଦରେ ଧ୍ୱନ୍ୟାତ୍ମକତା, ଲୟ, ସଙ୍ଗୀତାତ୍ମକ ସୌନ୍ଦର୍ଯ୍ୟ, ସମତା ତଥା ଶବ୍ଦରେ ଚାରୁତା ଓ ବୈଚିତ୍ର୍ୟ ସୃଷ୍ଟି କ୍ଷେତ୍ରରେ ଏହି ଅଲଙ୍କାରର ଭୂମିକା ବେଶ୍ ମହତ୍ତ୍ୱପୂର୍ଣ୍ଣ; ମାତ୍ର କାବ୍ୟର ଯଥାର୍ଥ ସୌନ୍ଦର୍ଯ୍ୟ ଅର୍ଥାଳଙ୍କାର ଉପରେ ନିର୍ଭରଶୀଳ । ଅର୍ଥର ରମଣୀୟତା ଓ ସୌକୁମାର୍ଯ୍ୟ ବହୁପରିମାଣରେ ନିର୍ଭର କରିଥାଏ ଏହି ଅଲଙ୍କାର ଉପରେ । କାବ୍ୟର ଅର୍ଥଗତ

ତଥା ଭାବଗତ ଚାରୁତା ସମ୍ପାଦନ ଓ ଭାବର ବୈଚିତ୍ର୍ୟମୟ ପରିପ୍ରକାଶ ଅର୍ଥାଳଙ୍କାର ଯୋଗୁଁ ସମ୍ଭବ ହୋଇଥାଏ । ଏହାଦ୍ୱାରା କବିବାଣୀ କାବ୍ୟବାଣୀରେ ପରିଣତ ହୋଇଥାଏ ।

**ଶବ୍ଦାଳଙ୍କାର** – ଅଳଙ୍କାର ଶାସ୍ତ୍ରରେ ଶବ୍ଦାଳଙ୍କାରର ବହୁ ବିଭାଗ ଓ ଉପବିଭାଗ ସୃଷ୍ଟି ହୋଇଛି । ସେମାନଙ୍କ ମଧ୍ୟରେ ଅନୁପ୍ରାସ, ଯମକ ଓ ଶ୍ଳେଷ ଆଦି ପ୍ରଧାନ ।

**୧. ଅନୁପ୍ରାସ** – ଏକପ୍ରକାର ବ୍ୟଞ୍ଜନ ବର୍ଣ୍ଣର ଆବୃତ୍ତିକୁ ଅନୁପ୍ରାସ କୁହାଯାଏ । ଯଥା–

କାଳିନ୍ଦୀକୂଳିଆ କଦମ୍ବ ମୂଳିଆ କେକିପୁଚ୍ଛ ଚାରୁ ଚୂଳିଆ
କଜ୍ଜ୍ୱଳ କାଳିଆ କାଇଁଚମାଳିଆ ମଣିମକର କୁଣ୍ଡଳିଆ
କଳିତ, ଲଳିତ ପୀତଦୁକୂଳିଆ
କଳଙ୍କ ରହିତ କଳାକରଜିତ ସୁନ୍ଦର ମୁଖମଣ୍ଡଳିଆ ।

(ରସକଲ୍ଲୋଳ–ଦୀନକୃଷ୍ଣ ଦାସ)

ଏହି ପଦରେ କ, ଳ ବ୍ୟଞ୍ଜନବର୍ଣ୍ଣର ବାରମ୍ବାର ଆବୃତ୍ତି କରାଯାଇଛି । ସେହିପରି–

ଉତ୍କଳ–କମଳା–ବିଳାସ–ଦୀର୍ଘିକା
ମରାଳ–ମାଳିନୀ–ନୀଳାମ୍ବୁ–ଚିଲିକା । (ଚିଲିକା – ରାଧାନାଥ ରାୟ)

ଏଠାରେ କ, ଳ, ମ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକରେ ବାରମ୍ବାର ଆବୃତ୍ତି ଘଟିଥିବାରୁ ଅନୁପ୍ରାସ ଅଳଙ୍କାର ହୋଇଛି । ଏହା ଛେକାନୁପ୍ରାସ, ବୃତ୍ତ୍ୟନୁପ୍ରାସ, ଶ୍ରୁତ୍ୟନୁପ୍ରାସ, ଅନ୍ତ୍ୟାନୁପ୍ରାସ ଏବଂ ଲାଟାନୁପ୍ରାସ ଭେଦରେ ପାଞ୍ଚଭାଗରେ ବିଭକ୍ତ ।

**ଛେକାନୁପ୍ରାସ** – ରଚନାରେ ଏକାଧିକ ବ୍ୟଞ୍ଜନ ବର୍ଣ୍ଣର ସାମ୍ୟ ଥାଇ ପର୍ଯ୍ୟାୟକ୍ରମେ ପୁନଃପୁନଃ ଆବୃତ୍ତି ହେଲେ, ଛେକାନୁପ୍ରାସ ହୋଇଥାଏ । ଯଥା–

(୧) ଦେଖି ନବ କାଳିକା ବକାଳିକା ମାଳିକା ଆଳି କାଳିକାକାନ୍ତ ସ୍ମରି
ରକ୍ଷା କେମନ୍ତେ କରି କରିବା ମତ୍ତ କରୀ ଗତିକି ଏମନ୍ତ ବିଚାରି
ଗୋ ସହଚରି,
ଭାବେ ବଞ୍ଚିଲେ ଏ କାଳକୁ, କଥା ଥିବ କାଳ କାଳକୁ
ଏକେତ କ୍ଷୀଣଦିନ ହେଲା ଦୁର୍ଦ୍ଦିନ ଦିନ ନଳଭୁଁ ବଲ୍ଲଭ ମେଳକୁ
ଗୋ ସହଚରି । (ଲାବଣ୍ୟବତୀ–ଉପେନ୍ଦ୍ର ଭଞ୍ଜ)

ଏଠାରେ 'ଳ' ଓ 'କ' ପର୍ଯ୍ୟାୟକ୍ରମେ ବାରମ୍ବାର ଉଚ୍ଚାରିତ ହୋଇଥିବାରୁ ଛେକାନୁପ୍ରାସ ହେଲା

(୨) ଭୈରବ ଆରବେ ରେବା ଦେଇ ଲମ୍ଫ
ଜନମାଏ ଜନ ମାନସେ ପ୍ରକମ୍ପ । (ଚିଲିକା–ରାଧାନାଥ)

ଏଠାରେ ର, ବ, ଜ, ନ, ମ ଆଦି ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକର କ୍ରମିକ ଆବୃତ୍ତି ଘଟିବାରୁ ଛେକାନୁପ୍ରାସ ହୋଇଛି ।

**ବୃତ୍ତ୍ୟନୁପ୍ରାସ** – ଯେଉଁଠାରେ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ କ୍ରମରହିତ ଭାବରେ ହେଉ ଅଥବା ପର୍ଯ୍ୟାୟକ୍ରମରେ ହେଉ ବା ନ ହେଉ ବାକ୍ୟ ମଧ୍ୟରେ ବାରମ୍ବାର ଉଚ୍ଚାରିତ ହେଲେ, ବୃତ୍ତ୍ୟନୁପ୍ରାସ ହୋଇଥାଏ । ଯଥା–

(୧) ଅଗ୍ରେ ସେହି ନଦୀ ବହୁଅଛି ରଙ୍ଗେ
ଏ ରଙ୍ଗ ନିରେଖି ତରଙ୍ଗ ଭ୍ରୂଭଙ୍ଗେ । (ଦରବାର – ରାଧାନାଥ)

ଏଠାରେ 'ର' ଓ 'ଙ୍ଗ' ବାରମ୍ବାର ଆବୃତ୍ତି ହୋଇଥିବାରୁ ବୃତ୍ତ୍ୟନୁପ୍ରାସ ହୋଇଛି ।

(୨) ମଙ୍ଗଳେ ଅଇଲା ଉଷା ବିକଚ-ରାଜୀବ-ଦୃଶା
ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
କରପଲ୍ଲବେ ନୀହାର- ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି,
କଳକଣ୍ଠ କଣ୍ଠେ କହିଲା,
ଦରଶନ ଦିଅ ସତୀ ରାତି ପାହିଲା । (ତପସ୍ୱିନୀ-ଗଙ୍ଗାଧର)

ଏଠାରେ ଶ (ଷ), ର, ଣ୍ଠ, ହ, ତ ଆଦି ବ୍ୟଞ୍ଜନ ବର୍ଣ୍ଣର ପୁନଃପୁନଃ ଆବୃତ୍ତି ଘଟିଥିବାରୁ ବୃତ୍ତ୍ୟନୁପ୍ରାସ ହୋଇଛି ।

**ଶ୍ରୁତ୍ୟନୁପ୍ରାସ** – ସାଧାରଣତଃ ତାଲୁ, ଦନ୍ତ, ମୂର୍ଦ୍ଧା, ଓଷ୍ଠ ଇତ୍ୟାଦି ମଧ୍ୟରୁ ଯେକୌଣସି ସ୍ଥାନରୁ ଉଚ୍ଚାରିତ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ପୁନଃ ଆବୃତ୍ତି ହେଲେ, ଶ୍ରୁତ୍ୟନୁପ୍ରାସ ହୋଇଥାଏ । ଯଥା–

(୧) ଦୂର ଝର ନାଦ ଝିଙ୍କାରୀ ଝଙ୍କାର
କରେ ନିଶିଥିନୀ ପ୍ରଭାବ ପ୍ରଚାର (ଚିଲିକା–ରାଧାନାଥ)

ଏଠାରେ ଦନ୍ତ୍ୟ 'ଦ' ତାଲବ୍ୟ ବର୍ଣ୍ଣ 'ଝ', ବର୍ତ୍ସ୍ୟ 'ର' ଓଷ୍ଠ୍ୟ ବ୍ୟଞ୍ଜନ 'ପ' ବାରମ୍ବାର ବ୍ୟବହୃତ ହୋଇଥିବାରୁ ଶ୍ରୁତ୍ୟନୁପ୍ରାସ ହେଲା ।

(୨) ପୁଷ୍ପପବି ପ୍ରଭାପ୍ରଭ ଭ୍ରମୁଭାବେ ଭୁବି
ଭୀମ ବାଷ୍ପଭବ ଭବେ ଭବ ଭାବି ଭାବି (ପ୍ରେମସୁଧାନିଧି–ଉପେନ୍ଦ୍ର ଭଞ୍ଜ)

ଉପରୋକ୍ତ ଉଦାହରଣରେ ଓଷ୍ଠ୍ୟବର୍ଣ୍ଣ ପ, ଭ, ବ ବାରମ୍ବାର ବ୍ୟବହୃତ ହୋଇଥିବାରୁ ଶ୍ରୁତ୍ୟନୁପ୍ରାସ ହୋଇଛି ।

**ଅନ୍ତ୍ୟାନୁପ୍ରାସ** – ଯେଉଁଠାରେ ପାଦର ଶେଷ ବା ଅନ୍ତ୍ୟବର୍ଣ୍ଣ ସହିତ ଉପାନ୍ତ୍ୟବର୍ଣ୍ଣର ସମତା ରହି ଆବୃତ୍ତି ହୋଇଥାଏ, ସେଠାରେ ଅନ୍ତ୍ୟାନୁପ୍ରାସ ହୁଏ । ଯେକୌଣସି ପୂର୍ଣ୍ଣ ମିତ୍ରାକ୍ଷର କବିତାରେ ଏହା ପରିଲକ୍ଷିତ ହୋଇଥାଏ । ଯଥା–

(୧) କୃଷ୍ଣ ପଉଗଣ୍ଡ କାଳ ଅନ୍ତରେ
ନବ କିଶୋର ବୟ ଆଗତରେ । (ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ)

ଏଠାରେ ପ୍ରଥମ ଓ ଦ୍ୱିତୀୟ ପାଦର ଶେଷରେ ଥିବା ବ୍ୟଞ୍ଜନ ବର୍ଣ୍ଣ 'ରେ' ଏବଂ ଉପାନ୍ତ୍ୟ ସ୍ୱରବର୍ଣ୍ଣ 'ଅ'ର ସାମ୍ୟ ରହିଛି । ତେଣୁ ଏଠାରେ ଅନ୍ତ୍ୟାନୁପ୍ରାସ ହୋଇଛି ।

(୨) ଉତ୍କଳ-କମଳା-ବିଳାସ-ଦୀର୍ଘିକା,
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା । (ଚିଲିକା-ରାଧାନାଥ)

ଏଠାରେ ପ୍ରଥମ ଓ ଦ୍ୱିତୀୟ ପାଦ ଶେଷରେ ଥିବା 'କା' ବ୍ୟଞ୍ଜନ ବର୍ଣ୍ଣ ଓ ଉପାନ୍ତ୍ୟ ସ୍ୱର ବର୍ଣ୍ଣ 'ଇ'ର ସାମ୍ୟ ରହିଥିବାରୁ ଅନ୍ତ୍ୟାନୁପ୍ରାସ ହୋଇଛି ।

(୩) ଭାଗ୍ୟବାନ ସଦା ଭାଗ୍ୟଫଳ ଲଭେ
ଅଭାଗା ଲଭେ ଅଶିବ,
ସାଗର ମନ୍ଥନେ କେଶବ କମଳା
ଗରଳ ଲଭିଲେ ଶିବ ।
(ସ୍ୱଭାବ କବି ଗଙ୍ଗାଧର-ଇନ୍ଦୁମତୀ)

ଏହି ପଦର ଦ୍ୱିତୀୟ ପାଦ ଓ ଚତୁର୍ଥ ପାଦର ଶେଷରେ ଥିବା ବ୍ୟଞ୍ଜନ ବର୍ଣ୍ଣ 'ବ' ଓ ଉପାନ୍ତ୍ୟ ସ୍ୱରବର୍ଣ୍ଣ 'ଇ'ର ସାମ୍ୟ ଅଛି ।

(୪) ସ୍ନେହ ସୁଧାବିନ୍ଦୁ ଯେତେ ମୁଖ ଇନ୍ଦୁ
ମଣ୍ଡିଲା ପ୍ରସରି ନେତ୍ରଯୁଗଳେ,
ବିଞ୍ଚି ସୁଶୀତଳେ ହରିଲା କୌଶଳେ
ନପକାଇ ମୁକ୍ତା ଫଳକ ତଳେ ।
(ଉତ୍କଳମଣି ଗୋପବନ୍ଧୁ ଦାସ – ବନ୍ଦୀର ସ୍ୱଦେଶଚିନ୍ତା)

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଆଦ୍ୟରେ, ମଧ୍ୟରେ ଓ ଅନ୍ତରେ; ଏପରିକି ନିର୍ଦ୍ଦିଷ୍ଟ ଅକ୍ଷରରେ ଅନୁପ୍ରାସ ଥାଇ କାବ୍ୟ ଓ କବିତା ଦେଖିବାକୁ ମିଳେ । ଉପେନ୍ଦ୍ରଭଞ୍ଜଙ୍କର ବୈଦେହୀଶବିଳାସ 'ବ' ଏବଂ ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ 'କ' ଅନୁପ୍ରାସରେ ଲିଖିତ ।

**ଲାଟାନୁପ୍ରାସ** – ଯେଉଁଠାରେ ଶବ୍ଦ ଏବଂ ଅର୍ଥ ଉଭୟଙ୍କର ପୁନରୁକ୍ତି ହେବା ସତ୍ତ୍ୱେ ଯଦି ସେମାନଙ୍କ ମଧ୍ୟରେ କୌଣସି ତାତ୍ପର୍ଯ୍ୟଗତ ପାର୍ଥକ୍ୟ ଅନୁଭୂତ ହୁଏ, ସେଠାରେ ଲାଟାନୁପ୍ରାସ ହୋଇଥାଏ । ଅନ୍ୟାର୍ଥରେ କହିଲେ ପଦ ମଧ୍ୟରେ ବାରମ୍ବାର ବ୍ୟବହୃତ

ଶବ୍ଦଗୁଡ଼ିକ ଅର୍ଥଗତ ସମତା ରଖି ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ବ୍ୟବହୃତ ହେଲେ ଲାଟାନୁପ୍ରାସ ହୋଇଥାଏ । ଯଥା-

(୧) ଉପାଧି ଜଡ଼ିତେ ଉପାଧି ଜଡ଼ିତ
ଉପାଧିରେ ଆଜ କରିବେ ଜଡ଼ିତ । (ଦରବାର-ରାଧାନାଥ)

'ଉପାଧି' ଶବ୍ଦର ଅର୍ଥଗତ ପ୍ରଭେଦ ନ ଥିଲେ ମଧ୍ୟ, ଏହାର ବାରମ୍ବାର ବ୍ୟବହାରରେ ତାତ୍ପର୍ଯ୍ୟଗତ ପ୍ରଭେଦ ପରିଲକ୍ଷିତ ହୋଇଥାଏ ।

(୨) ବିଷମ ବିଶିଖ ବିଶିଖକୁ ଲାଖ
ସେ ହୋଇଲା ଏବେ ଆସି । (ଲାବଣ୍ୟବତୀ-ଉପେନ୍ଦ୍ର ଭଞ୍ଜ)

ଏଠାରେ ଅର୍ଥଗତ ପ୍ରଭେଦ ନ ଥିଲେ ମଧ୍ୟ, ତାତ୍ପର୍ଯ୍ୟଗତ ପ୍ରଭେଦରେ 'ବିଶିଖ' ଶବ୍ଦ ପୁନଃପୁନଃ ପ୍ରୟୋଗ କରାଯାଇଛି ।

**୨. ଯମକ** – ବାକ୍ୟରେ ଭିନ୍ନାର୍ଥବୋଧକ ଏକ ପ୍ରକାର ଶବ୍ଦର ପୁନରାବୃତ୍ତି ହେଲେ ଯମକ ଅଳଙ୍କାର ହୋଇଥାଏ । ଏହା ମଧ୍ୟ ବିଭିନ୍ନ ଭାଗରେ ବିଭକ୍ତ । ମୁଖ୍ୟ ବିଭାଗଗୁଡ଼ିକ ହେଉଛି-

**ଆଦ୍ୟଯମକ** – ଭିନ୍ନାର୍ଥବୋଧକ ଗୋଟିଏ ଶବ୍ଦ ପାଦର ଆଦ୍ୟରେ ଏକାଧିକ ଥର ବ୍ୟବହୃତ ହେଲେ ଆଦ୍ୟଯମକ ହୋଇଥାଏ-

(୧) ବରଜୀବ ରସେ ଦେଇ ମାନସ
ବରଜିବରକ୍ଷେ ଅମେଧ ଗ୍ରାସ ।
(ଜଗତେ କେବଳ - କବିସୂର୍ଯ୍ୟ ବଳଦେବ ରଥ)

ପ୍ରଥମ ପାଦରେ ବରଜୀବ (ଶ୍ରେଷ୍ଠପଶୁ-ଗାଈ) ରସେ ଅର୍ଥ ଗାଈକ୍ଷୀର । ଦ୍ୱିତୀୟ ପାଦରେ ବରଜି ବରକ୍ଷେର ଅର୍ଥ ବର୍ଷକପାଇଁ ବର୍ଜନ କରି । ବରଜୀବରସେ, ବରଜିବରକ୍ଷେ ଭିନ୍ନାର୍ଥକ ଗୋଟିଏ ଶବ୍ଦ ଏକାଧିକ ଥର ବ୍ୟବହୃତ ହୋଇଥିବାରୁ ଆଦ୍ୟଯମକ ହେଲା ।

(୨) ସଲିଳେ ଉଡୁପ ଦେଖରେ ହୋଇଅଛି ଶୋଭନ
ସଲୀଳେ ଉଡୁପବଦନୀ ଖେଳିବାକୁ ମୋ ମନ (ଲାବଣ୍ୟବତୀ-ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦ ଆଦ୍ୟରେ ଥିବା 'ସଲିଳେ' ଶବ୍ଦର ଅର୍ଥ ପାଣିରେ । ଦ୍ୱିତୀୟ ପାଦ ଆଦ୍ୟରେ ଥିବା 'ସଲୀଳେ' ଶବ୍ଦର ଅର୍ଥ ଲୀଳା ସହିତ । ତେଣୁ ଏଠାରେ ଆଦ୍ୟଯମକ ହୋଇଛି ।

**ମଧ୍ୟଯମକ** – ଭିନ୍ନାର୍ଥବୋଧକ ଗୋଟିଏ ଶବ୍ଦ ପାଦ ମଧ୍ୟରେ ଏକାଧିକ ଥର ବ୍ୟବହୃତ ହେଲେ, ମଧ୍ୟଯମକ ହୋଇଥାଏ । ଯଥା-

(୧) ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ । (ଲାବଣ୍ୟବତୀ-ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦରେ ନଳିନୀ ଶବ୍ଦ ତିନିଥର ବ୍ୟବହୃତ । ଏହାର ଅର୍ଥ ଯଥାକ୍ରମେ ପଦ୍ମିନୀ ନାରୀର ସମ୍ବୋଧନ, ପୁଷ୍କରିଣୀ ଓ ପଦ୍ମଫୁଲ ଏବଂ ଦ୍ୱିତୀୟ ପଦରେ ତିନିଥର ବ୍ୟବହୃତ ଭ୍ରମରେ ଶବ୍ଦର ଅର୍ଥ ହେଲା- ଭ୍ରମରମାନେ, ବିହ୍ୱଳ ହୋଇ ଓ ଭଉଁରୀମାନେ ।

(୨) ବ୍ୟାକୁଳ ସଳିଳ – ଚର ସଲୀଳ ତେଜିଲେ

ବାଡ଼ ଲେଖା ଲେଖା ଚିତ୍ର ଭାବକୁ ଭଜିଲେ । (ବୈ.ବି.- ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦ ମଧ୍ୟରେ ଥିବା 'ସଳିଳ' ଅର୍ଥ ଜଳ ଏବଂ 'ସଲୀଳ' ଅର୍ଥ କ୍ରୀଡ଼ା । ଦ୍ୱିତୀୟ ପାଦର ମଧ୍ୟରେ ଥିବା 'ଲେଖା'ର ଅର୍ଥ ଚିତ୍ର ଏବଂ 'ଲେଖା'ର ଅର୍ଥ ଲେଖାଯାଇଥିବା ।

**ପ୍ରାନ୍ତଯମକ-** ଭିନ୍ନାର୍ଥବୋଧକ ଏକ ଶବ୍ଦ ପାଦ ଶେଷରେ ଏକାଧିକ ଥର ବ୍ୟବହୃତ ହେଲେ, ପ୍ରାନ୍ତଯମକ ହୋଇଥାଏ । ଯଥା-

(୧) କ୍ଷେପଣି କ୍ଷେପଣେ ତୋହରି ସଳିଳେ

ହୀରକର ଉତ୍ସ ଉଠିଲା ସଲୀଳେ । (ଚିଲିକା- ରାଧାନାଥ ରାୟ)

ପ୍ରଥମ ପାଦରେ ବ୍ୟବହୃତ 'ସଳିଳେ'ର ଅର୍ଥ ଜଳରେ ଏବଂ ଦ୍ୱିତୀୟ ପାଦରେ 'ସଲୀଳେ'ର ଅର୍ଥ ଲୀଳା ସହିତ ହୋଇଥିବାରୁ ପ୍ରାନ୍ତଯମକ ହେଲା ।

(୨) ସ୍ନାନ ସମୟେ ମୋ ପୟରେ,

ଦୟାମୟି ! ନ ପେଲିବୁ ତାଙ୍କୁ ପୟରେ । (ତପସ୍ୱିନୀ- ଗଙ୍ଗାଧର)

ପ୍ରଥମ ପାଦ ଶେଷରେ ଥିବା 'ପୟରେ' ଅର୍ଥ ଜଳରେ ଏବଂ ଦ୍ୱିତୀୟ ପାଦ 'ପୟରେ' ଅର୍ଥ ପାଦରେ । ଏପରି ଭିନ୍ନାର୍ଥବୋଧକ ହୋଇଥିବାରୁ ଯମକ ଅଳଙ୍କାର ହୋଇଛି ।

**ସର୍ବଯମକ** – ଭିନ୍ନାର୍ଥବୋଧକ ଏକପ୍ରକାର ଶବ୍ଦ ପଦ ମଧ୍ୟରେ ଏକାଧିକ ଥର ବ୍ୟବହୃତ ହେଲେ, ସର୍ବଯମକ ହୋଇଥାଏ । ଯଥା-

ଅହିମକର ତାପନାଶେ ଶୋଭା ସାରସଚକ୍ରେ

ଅହିମକର ତାପନାଶେ ଶୋଭା ସାରସଚକ୍ରେ (ଲାବଣ୍ୟବତୀ- ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦରେ ଅହି-ସାପ, ମକର-କୁମ୍ଭୀର, ତାପ -ଦୁଃଖ, ସାରସ-ପଦ୍ମ, ଚକ୍ରେ-ସମୂହରେ ଅର୍ଥରେ ବ୍ୟବହୃତ ହୋଇଥିବା ବେଳେ ଦ୍ୱିତୀୟ ପାଦରେ ଅହିମକର-ସୂର୍ଯ୍ୟ, ତାପ-ଉଷ୍ଣତା, ସାରସ-ହଂସ, ଚକ୍ରେ-ଚକ୍ରବାକ ଆଦି ଅର୍ଥରେ ବ୍ୟବହୃତ ହୋଇଥିବାରୁ ସର୍ବଯମକ ହେଲା ।

(୨) ବିରାଜି ବର କନକ କଦମ୍ବ ରୁଚିରେ

ବି-ରାଜି ବର-କନକ କଦମ୍ବ ରୁଚିରେ (ବୈ.ବି.-ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦ - ବିରାଜି - ଦେଦୀପ୍ୟମାନ, ବର - ଶ୍ରେଷ୍ଠ, କନକ - ସୁବର୍ଣ୍ଣ, କଦମ୍ବ - ସମୂହ, ରୁଚିରେ - କାନ୍ତିଦ୍ୱାରା ।

ଦ୍ୱିତୀୟ ପାଦ - ବି-ରାଜି - ପକ୍ଷୀସମୂହ, ବର-କନକ - ଉତ୍କୃଷ୍ଟ କନକ ଚମ୍ପା, କଦମ୍ବ - କଦମ୍ବ ବୃକ୍ଷ, ରୁଚିରେ - ମନୋହର ।

**ମାଳଯମକ** - ଭିନ୍ନ ଅର୍ଥବୋଧକ ସମୋଚ୍ଚାରିତ ଶବ୍ଦସମୂହ ପାଦ ମଧ୍ୟରେ ବାରମ୍ବାର ପ୍ରୟୋଗ ହେଲେ, ମାଳଯମକ ହୁଏ । ଯଥା-

ବୃହଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ
ବୃତ ତମାଳମାଳ ମାଳତୀ ଲତା ଯହିଁ । (ବୈ.ବି.-ଉପେନ୍ଦ୍ର ଭଞ୍ଜ)

ଏଠାରେ ଭାନୁ ଓ ମାଳ ଶବ୍ଦ ଭିନ୍ନ ଅର୍ଥରେ ବାରମ୍ବାର ପ୍ରୟୋଗ ହୋଇଛି ।

ଏତଦ୍‌ବ୍ୟତୀତ ଆଦ୍ୟପ୍ରାନ୍ତଯମକ, ଆଦ୍ୟମଧ୍ୟଯମକ, ଯୁଗ୍ମଯମକ, ନିୟମ ଯମକ, ମାଳଯମକ, ଶୃଙ୍ଖଳାଯମକ, ଅନୁଚ୍ଛନ୍ଦ ଯମକ ଆଦି ବିଭିନ୍ନ ଭାଗରେ ଯମକ ବ୍ୟବହୃତ ।

**୩. ଶ୍ଳେଷ** - ଶ୍ଳିଷ୍ଟ ପଦ ମାଧ୍ୟମରେ ଅନେକ ଅର୍ଥ ଅଭିଧାନରେ ବୁଝାଇଲେ ଅର୍ଥାତ୍ ଗୋଟିଏ ଶବ୍ଦ ଦୁଇ ବା ତହିଁରୁ ଅଧିକ ଭିନ୍ନ ଅର୍ଥ ପ୍ରକାଶ କଲେ, ଶ୍ଳେଷ ଅଳଙ୍କାର ହୋଇଥାଏ । ଏହା ଅଭଙ୍ଗ ଶ୍ଳେଷ, ସଭଙ୍ଗ ଶ୍ଳେଷ ଓ ଭଙ୍ଗାଭଙ୍ଗ ଶ୍ଳେଷ ଭେଦରେ ତ୍ରିବିଧ । ଗୋଟିଏ ଗୋଟିଏ ପଦରେ ମଧ୍ୟ ଏହି ତିନିପ୍ରକାର ଶ୍ଳେଷ ପରିଲକ୍ଷିତ ହୋଇଥାଏ । ଯଥା-

(କ) ବାବୁନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନନ କର ଆଲିଙ୍ଗନକୁ ।
(ବୈଦେହୀଶ ବିଳାସ - ଉପେନ୍ଦ୍ର ଭଞ୍ଜ)

ପ୍ରଥମ ପାଦରେ 'ନାକଶିରୀ ଦାନ' ପଦ ନ ଭାଙ୍ଗି ସ୍ୱର୍ଗ ସମ୍ପଦ ଦାନ ଏବଂ ନାସିକା ଶୋଭା ଛେଦନ ଏପରି ଦୁଇଟି ଅର୍ଥ ପ୍ରକାଶ ପାଇଛି । ତେଣୁ ଅଭଙ୍ଗ ଶ୍ଳେଷ । ଦ୍ୱିତୀୟ ପଦରେ 'ବିହର କାନନ କର' ପଦ ଭାଙ୍ଗିଲେ ତା'ର ଦୁଇଟି ଅର୍ଥ ପ୍ରକାଶିତ, ଯଥା- କାନନରେ ବିହାର କର, କାନକୁ ଛେଦନ କର, ଆଲିଙ୍ଗନ ନ କର । ଏଠାରେ ସଭଙ୍ଗ ଶ୍ଳେଷ ହୋଇଛି । ପୁନରାୟ ଉଭୟ ପାଦରେ ଅଭଙ୍ଗ ଏବଂ ସଭଙ୍ଗ ଭଙ୍ଗୀରେ ଦୁଇଟି ଅର୍ଥ ପ୍ରକାଶ ପାଉଥିବାରୁ ଭଙ୍ଗାଭଙ୍ଗ ଶ୍ଳେଷ ଅଳଙ୍କାର ହୋଇପାରିଛି ।

(ଖ) ପ୍ରିୟମ୍ବଦା ହସି ବୋଇଲା ନରେଶ
କି ଦେଇ ସଖୀ ଆମ୍ଭର,
ତପସ୍ୱିନୀ କନ୍ୟା ତାପସ ନିକୁଞ୍ଜେ
ତୋଷିବ ଅତିଥି ବର ।
(ସ୍ୱଭାବକବି ଗଙ୍ଗାଧର - ପ୍ରଣୟବଲ୍ଲରୀ)

ଏହି ପଦର ଶେଷ ପାଦରେ ପ୍ରଯୁକ୍ତ 'ବର' ଶବ୍ଦ ଶ୍ଳିଷ୍ଟ । ଏହା 'ଶ୍ରେଷ୍ଠ' ଓ 'ସ୍ୱାମୀ' ଏହି ଦୁଇଟି ଅର୍ଥକୁ ବୁଝାଉଛି । ସୁତରାଂ ଏଠାରେ ଅଭଙ୍ଗ ଶ୍ଳେଷ ଅଳଙ୍କାର ହୋଇଅଛି ।

(ଗ) ପାଣି ଗ୍ରହଣରୁ ବୁଝିଅଛୁ କାଲି
ସ୍ୱଭାବେ ତୁମ୍ଭେ ଉଦାର,
ବାହୁଲ୍ୟେ ମାତର କହୁଅଛୁ ଆମ୍ଭେ
ମୁନିକନ୍ୟା ହେ ଉଦାର ।

(ସ୍ୱଭାବକବି ଗଙ୍ଗାଧର – ପ୍ରଣୟବଲ୍ଲରୀ)

ଏହି ପଦର ପ୍ରଥମ ପାଦରେ ଥିବା 'ପାଣି ଗ୍ରହଣ' ଶବ୍ଦ ଶ୍ଳିଷ୍ଟ । ଏହା ହସ୍ତଧାରଣ ଓ ବିବାହ ବ୍ୟଞ୍ଜକ ଏପରି ଦୁଇଟି ଅର୍ଥରେ ବ୍ୟବହୃତ । ସୁତରାଂ 'ପାଣିଗ୍ରହଣ' ଏସ୍ଥଳରେ ଅଭଙ୍ଗ ଶ୍ଳେଷ ।

ପୁନଶ୍ଚ ପଦର ଶେଷ ପାଦରେ ବ୍ୟବହୃତ 'ହେ ଉଦାର' ଶବ୍ଦକୁ ବିଶ୍ଳେଷିତ କଲେ ଦୁଇଟି ଅର୍ଥ ପ୍ରକାଶିତ ହେଉଅଛି । ଯଥା- ହେ ଉଦାର (ମହାନ୍) ସମ୍ବୋଧନ ପଦ । ଦ୍ୱିତୀୟତଃ- 'ଦାର' ଶବ୍ଦର ଅର୍ଥ ସ୍ତ୍ରୀ । ତେଣୁ ମୁନି କନ୍ୟା ଦାର ହେଉ ।

ଏ ସ୍ଥଳରେ 'ହେ ଉଦାର' ଶବ୍ଦଟି ବିଶ୍ଳେଷିତ ହେବାରେ ଦୁଇଟି ଅର୍ଥ ପ୍ରକାଶିତ ହେଉଥିବାରୁ ଏହା ସଭଙ୍ଗ ଶ୍ଳେଷ ।

**ଅର୍ଥାଳଙ୍କାର** – ଅର୍ଥାଳଙ୍କାରର ବହୁ ଭେଦ ରହିଛି । ତନ୍ମଧ୍ୟରୁ ମୁଖ୍ୟ କେତୋଟି ଅର୍ଥାଳଙ୍କାରକୁ ଏଠାରେ ଆଲୋଚନା କରାଗଲା ।

**୪. ଉପମା** – ସମାନ ଧର୍ମ ବିଶିଷ୍ଟ ଭିନ୍ନ ଜାତୀୟ ଦୁଇଟି ବସ୍ତୁର ସାଦୃଶ୍ୟ କଥିତ ହେଲେ ଉପମା ଅଳଙ୍କାର ହୋଇଥାଏ । ଉପମାର ଚାରୋଟି ଅଙ୍ଗ ହେଉଛି- ଉପମେୟ, ଉପମାନ, ସାଧାରଣ ଧର୍ମ ଓ ଉପମା ବାଚକ ଶବ୍ଦ । ଯେଉଁ ବସ୍ତୁକୁ ବର୍ଣ୍ଣନା ବା ତୁଳନା କରାଯାଏ, ତାହା ଉପମେୟ । ଯେଉଁ ପ୍ରସିଦ୍ଧ ବସ୍ତୁ ସହିତ ତୁଳନା କରାଯାଏ, ତାହା ଉପମାନ । ଯେଉଁ ସମାନ ଗୁଣ, କ୍ରିୟା ଆଦିର ସମାନତା କାରଣରୁ ଉପମେୟର ସମାନତା ଉପମାନ ସହିତ କରାଯାଇଥାଏ, ତାହାକୁ ସାଧାରଣ ଧର୍ମ କୁହାଯାଏ । ଉପମାନ ଓ ଉପମେୟର ସାଦୃଶ୍ୟ କଥନ କରୁଥିବା ଶବ୍ଦଗୁଡ଼ିକୁ ଉପମାବାଚକ ଶବ୍ଦ କୁହାଯାଏ । ଉପମାଅଳଙ୍କାରର ବହୁ ଭେଦ ରହିଛି । ଏମାନଙ୍କ ମଧ୍ୟରେ ପୂର୍ଣ୍ଣୋପମା, ଲୁପ୍ତୋପମା ଓ ମାଳୋପମା ପ୍ରଧାନ ।

**(i) ପୂର୍ଣ୍ଣୋପମା** – ଯେଉଁଠାରେ ଉପମେୟ, ଉପମାନ, ଉପମାବାଚକ ଶବ୍ଦ ଓ ସାଧାରଣ ଧର୍ମ ଉପସ୍ଥିତ ଥାଏ, ସେଠାରେ ପୂର୍ଣ୍ଣୋପମା ହୋଇଥାଏ ।

(କ) ବେଳାକୁ ନ ଲଂଘେ ସତ୍ୟେ ପାରାବାର ଯଥା ତାକୁ ନ ଲଂଘିଲା
ବିଷ ଭକ୍ଷଣ ବିରୂପାକ୍ଷ ପରାୟେ ମୂକେ ସମ୍ମତ ଦିଶିଲା
ବଡ଼ ସନ୍ତୋଷୀ ବାଣୀ
ବିଜ୍ଞ ଶ୍ରୀରାମେ ଡକାଇ ଆଣି ।
(ବୈଦେହୀଶ ବିଳାସ - ଉପେନ୍ଦ୍ର ଭଞ୍ଜ)

ଏଠାରେ ରାମଚନ୍ଦ୍ର ଉପମେୟ । ପାରାବାର ଓ ବିରୂପାକ୍ଷ ଉପମାନ । ଯଥା, ପରାୟେ ଉପମାବାଚକ ଶବ୍ଦ ଓ ଲଂଘନ କରିବା, ବିଷ ଭକ୍ଷିବା ଆଦି ସାଧାରଣ ଧର୍ମ । ଉପରୋକ୍ତ ପଦରେ ଏ ସମସ୍ତର ଏକତ୍ର ଅବସ୍ଥାନ ଘଟିଥିବାରୁ ପୂର୍ଣ୍ଣୋପମା ହୋଇଛି ।

(ଖ) ଶ୍ୱେତ-କେଶ-ଶ୍ମଶ୍ରୁ-ବିଭୂତି ବପୁ ସୌମ୍ୟ ସୂରତି,
ବାଲ୍ମୀକି ମହର୍ଷି ସମୀପେ ହେମ ଗଉରୀ ସତୀ ।
ଦିଶିଲେ ଯେମନ୍ତ ତୁଷାର-ତନୁ ହିମାଦ୍ରି-ତଳେ,
ତପସ୍ୱିନୀ ଉମା ମଉନେ ରହିଛନ୍ତି ନିଶ୍ଚଳେ ।
(ସ୍ୱଭାବକବି ଗଙ୍ଗାଧର - ତପସ୍ୱିନୀ)

ଏଠାରେ ଉପମାନ ହିମାଦ୍ରି ଓ ଉମାଙ୍କର ଉପମେୟ, ବାଲ୍ମୀକି ଏବଂ ସୀତାଙ୍କର ଶୁକ୍ଳତା, ନିଶ୍ଚଳତାଦି ସାଧାରଣ ଧର୍ମର ତଥା ସାଦୃଶ୍ୟବାଚକ 'ଯେମନ୍ତ' ଶବ୍ଦର ଉଲ୍ଲେଖ ଥିବାରୁ ଏହା 'ପୂର୍ଣ୍ଣୋପମା' ଅଳଙ୍କାର ।

(ଗ) ଦଳା ଅଞ୍ଜନ ପ୍ରଭା ବୋଳା ପରାୟେ
ତୋ ଦେହ ନୀଳକାନ୍ତି ବିରାଜୁ ଥାଏ ।
ଧଳା କୈଳାସ ଦେହେ ହେଲେ ଲଗନ,
ଦିଶିବ ଧରାଧର ଶୋଭା ଯତନ ।
ଅମରେ ସ୍ଥିର ନେତ୍ରେ ଥିବେ ଅନାଇ,
ଏଡ଼େ ବିଚିତ୍ର ଦୃଶ୍ୟ ଭୂତଳେ କାହିଁ ?
ନୀଳବସନେ ହଳି-ସ୍କନ୍ଧ ଯେସନ
ଦିଶିବ ହରଶୈଳ ରମ୍ୟ ତେସନ ।
(କବିବର ରାଧାନାଥ ରାୟ - ମେଘଦୂତ (ପୂର୍ବମେଘ)

ଏହି ପଦରେ ଉପମାନ 'ନୀଳ ମେଘଲଗ୍ନ ଧଳା କୈଳାସ' ସହିତ ଉପମେୟ, 'ନୀଳ ବସନ ଧାରୀ ବଳରାମଙ୍କ ସ୍କନ୍ଧ'ର ସାଦୃଶ୍ୟ, ଉଭୟର ସାଧାରଣ ଧର୍ମ ଶୁକ୍ଳିମା, ନୀଳିମାଦି ଦ୍ୱାରା ପ୍ରକଟିତ ହୋଇଅଛି । ଯେସନ, ତେସନ, ସାଦୃଶ୍ୟ ବାଚକ ଶବ୍ଦର ଉଲ୍ଲେଖ ଥିବାରୁ ଏହା ପୂର୍ଣ୍ଣୋପମା ଅଳଙ୍କାର ଅଟେ ।

**(ii) ଲୁପ୍ତୋପମା** – ଯେଉଁଠାରେ ଉପମେୟ, ଉପମାନ, ଉପମାବାଚକ ଶବ୍ଦ ଓ ସାଧାରଣ ଧର୍ମ ମଧ୍ୟରୁ ଏକ ବା ଏକାଧିକର ଲୁପ୍ତ ଘଟିଥାଏ, ସେଠାରେ ଲୁପ୍ତୋପମା ହୋଇଥାଏ ।

(କ) ଗୋଟିଏ ରତି ବହିଛି ଗୋଟିଏ ଦେହୀ
ଶୁଣିଲା ନଥିଲା ଦେଖିଥିବା କେ ନାହିଁ ।

(ରସଲେଖା-ଉପେନ୍ଦ୍ର)

ଏଠାରେ ଉପମାବାଚକ ଶବ୍ଦ 'ପରି' ଊହ୍ୟ ଥିବାରୁ ଲୁପ୍ତୋପମା ଅଳଙ୍କାର ହୋଇଛି ।

(ଖ) ଶକୁନ୍ତଳା କଣ୍ୱ ଦୁହିତା, ଅପର
ବେନି ତାର ସହଚରୀ,
ଶକୁନ୍ତଳା ଦିଶୁଥିଲା ବେନି ପତ୍ର
ମଧ୍ୟରେ କୁସୁମ ପରି ।

(ସ୍ୱଭାବକବି ଗଙ୍ଗାଧର – ପ୍ରଣୟବଲ୍ଲରୀ)

ଏହି ପଦରେ 'କୁସୁମ' ଉପମାନ ଓ 'ଶକୁନ୍ତଳା' ଉପମେୟ । ଉଭୟର ସାଧାରଣ ଧର୍ମ ରମଣୀୟତାଦି ଉଲ୍ଲେଖ ନଥିବାରୁ, ଏହା 'ଲୁପ୍ତୋପମା' ।

(ଗ) ଶୃଙ୍ଗୁ ଉଠୁ ସଖୀ ସଙ୍ଗେ ଶଶିମୁଖୀ
ମିଶିଗଲା ନଭସ୍ଥଳେ
ଏକ ଦୃଷ୍ଟେ ତାର ପ୍ରୟାଣ ଦେଖିଲେ
ମହେନ୍ଦ୍ର ଗିରି ମେଖଳେ ।

(କବିବର ରାଧାନାଥ ରାୟ-ଉର୍ବଶୀ)

ଏଠାରେ 'ଶଶୀ' ସହିତ 'ମୁଖ'ର ତୁଳନା କରାଯାଇଅଛି; କିନ୍ତୁ ମନୋଜ୍ଞତାଦି ସାଧାରଣ ଧର୍ମ ଓ ସାଦୃଶ୍ୟବାଚକ ଶବ୍ଦର ଉଲ୍ଲେଖ ନ ଥିବାରୁ ଏହା ମଧ୍ୟ ଲୁପ୍ତୋପମା ।

**(iii) ମାଳୋପମା** – ଗୋଟିଏ ଉପମେୟର ଏକାଧିକ ଉପମାନ ଥିଲେ, ମାଳୋପମା ହୋଇଥାଏ ।

(କ) ମିଶିଯାଏ ଯଥା ପ୍ରଭାତୀ ତାରା ରବି-କିରଣେ,
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ-ଆତ୍ମା ଚରଣେ,
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।

(ଚନ୍ଦ୍ରଭାଗା-ରାଧାନାଥ)

ଏଠାରେ ପ୍ରଭାତୀ ତାରା, ଜୀବାତ୍ମା, ଚପଳାଦି ଏକାଧିକ ଉପମାନ ଏକମାତ୍ର ଉପମେୟ 'ଅବଳା' ସହିତ ତୁଳିତ ହୋଇଅଛି । ଯଥା ଓ ତଥା ଉପମାବାଚକ ଶବ୍ଦ ।

(ଖ) ଗାଇଲେ ମଧୁର କଣ୍ଠେ ବନ୍ଦିଦଳେ
ହେ ବିଶ୍ୱ ସୁନ୍ଦରି ! ସ୍ୱାଗତ ଉତ୍କଳେ ।
ଜୟ କାଞ୍ଚିଜେମା ବିଶ୍ୱ ମନୋରମା
ବିରଞ୍ଚି ସୃଷ୍ଟିରେ ଶୋଭାର ଉପମା ।
ତୁମ୍ଭ ଆଗମନେ ପବିତ୍ର ଉତ୍କଳ,
ଜାହ୍ନବୀ ପରଶେ ଯେହ୍ନେ ଧରାତଳ ।
ଶୋଭିବ ଉତ୍କଳ-ସଦ୍ମେ ସଦାଶୟା,
ସରେ ଯଥା ପଦ୍ମ, ପଦ୍ମେ ପଦ୍ମାଳୟା ।

(କବିବର ରାଧାନାଥ-ଚିଲିକା)

ଏଠାରେ ଉପମାନ ଜାହ୍ନବୀ, ପଦ୍ମ ଏବଂ ପଦ୍ମାଳୟା ସହିତ ଏକମାତ୍ର ଉପମେୟ କାଞ୍ଚି ଜେମାଙ୍କର ତୁଳନା ହୋଇଅଛି ।

(ଗ) ଆର୍ତ୍ତେ ଭ୍ରମୁଅଛି ଏଣେ ତେଣେ ମନ
ମଶାରି ଭିତରେ ମଶକ ଯେସନ ।
ଅବା ତରୁଶାଖା ପ୍ରଭଞ୍ଜନ ବଳେ
ଅଥବା ତରଙ୍ଗ ମହୋଦଧି ଜଳେ ।

(କବିବର ରାଧାନାଥ – ନନ୍ଦିକେଶ୍ୱରୀ)

ଏହି ପଦରେ ଏକମାତ୍ର ଉପମେୟ 'ମନ' । ମଶକ, ତରୁଶାଖା ଓ ତରଙ୍ଗ ପ୍ରଭୃତି ଉପମାନମାନଙ୍କ ସହିତ ତା'ର ତୁଳନା ହୋଇଥିବାରୁ ଏହା ମାଳୋପମା ।

**୫. ରୂପକ ଅଳଙ୍କାର** – ଯେଉଁଠାରେ ଉପମାନ ଓ ଉପମେୟର ଅଭେଦ କଥନ ହୋଇଥାଏ, ସେଠାରେ ରୂପକ ଅଳଙ୍କାର ହୋଇଥାଏ । ଏହାର ମୁଖ୍ୟ କେତୋଟି ଭେଦ ହେଉଛି ପରମ୍ପରିତ ରୂପକ, ସାଙ୍ଗ ରୂପକ ଓ ନିରଙ୍ଗ ରୂପକ ଇତ୍ୟାଦି ।

**ପରମ୍ପରିତ ରୂପକ** – ଯେଉଁଠାରେ ଗୋଟିଏ ବସ୍ତୁର ଆରୋପ ନିମିତ୍ତ ଅନ୍ୟ ଏକ ବସ୍ତୁର ଆରୋପ ଆବଶ୍ୟକ ହୋଇଥାଏ, ସେଠାରେ ପରମ୍ପରିତ ରୂପକ ହୋଇଥାଏ ।

(କ) ଦରିଦ୍ରତା-ପଙ୍କପୂର୍ଣ୍ଣ ମୋ ଜୀବନ-ସର
ଜଞ୍ଜାଳ-ଜଳଦ-ଜଳେ ଆବିଳ ଉଦର । ('ତପସ୍ୱିନୀ'– ଗଙ୍ଗାଧର)

ଏଠାରେ ଦରିଦ୍ରତାରେ ପଙ୍କର ଆରୋପ ହେତୁ ଜୀବନ ଏବଂ ଜଞ୍ଜାଳରେ ଯଥାକ୍ରମେ ସର ଓ ଜଳଦଜଳର ଆରୋପଣ ହୋଇଛି ।

(ଖ) କି କହିବ କିସ କରିବ କିଛି ହିଁ
ଭାବି ନ ପାରିଲା ମନେ,
ବିସ୍ମୟ-ଜୀମୂତ ବ୍ୟାପିଗଲା ତାର
ସହସା ହୃଦ ଗଗନେ ।
(ଗଙ୍ଗାଧର ମେହେର - ପ୍ରଣୟବଲ୍ଲରୀ)

ଏହି ପଦରେ 'ବିସ୍ମୟ'ରେ ଜୀମୂତର ଆରୋପ ହିଁ 'ହୃଦୟରେ ଗଗନ' ଆରୋପଣର କାରଣ ।

**ସାଙ୍ଗରୂପକ** - ପୃଥକ୍ ଅଙ୍ଗବିଶିଷ୍ଟ ଉପେମୟରେ ପୃଥକ୍ ଅଙ୍ଗବିଶିଷ୍ଟ ଉପମାନର ଆରୋପ କରାଗଲେ, ସାଙ୍ଗ ରୂପକ ହୋଇଥାଏ ।

(କ) କବିତା ବନିତା କବି ତା ପିତା
କହିବା ଲୋକ ତା'ର ଉପମାତା
କଲେ ତାକୁ ଭୋଗ ରସିକ ନେତା
କେତେହେଁ ଅବା ରହଇ ଯୋଗ୍ୟତା
କୁମତି ଗୁଆଁର
କେବଳ ବଇମାତ୍ର ଭାଇ ତାର ।
(ରସକଲ୍ଲୋଳ - ଦୀନକୃଷ୍ଣ)

ଏଠାରେ 'କବିତା'ରେ 'ବନିତା'ର ଆରୋପ କରାଯିବାରୁ, ସେହି ଅନୁସାରେ କବିଙ୍କୁ ପିତା ସହିତ ସାଙ୍ଗୀକରଣ ଆରୋପ କରାଯାଇ ସାଙ୍ଗ ରୂପକ କରାଯାଇଛି ।

(ଖ) ପ୍ରବେଶ ହୋଇଲା ବରଷାକାଳ
ପ୍ରମାଦ ମାନଙ୍କର ଜନମ ସ୍ଥଳ
ଜଳଦ କଜ୍ଜ୍ୱଳ କାନ୍ତି ଶାର୍ଦ୍ଦୂଳ
ମୁଖେବିହରିଲେ ଶିଖରୀ ଚୂଳ ।
ଗର୍ଜିଲା ସନ୍ତତ,
ପ୍ରକାଶି ଝଳି ବଳାବଳୀ ଦନ୍ତ ।
(କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ - ଲାବଣ୍ୟବତୀ)

ଏଠାରେ 'ଜଳଦ'ରେ ଶାର୍ଦ୍ଦୂଳ, ଆରୋପ କରିବା ଦ୍ୱାରା ତା'ର ଅଙ୍ଗ 'ବକାବଳୀ'ରେ ଆରୋପ କରାଯାଇଛି ।

**ନିରଙ୍ଗ ରୂପକ** - ଯେଉଁଠାରେ ଗୋଟିଏ ଉପମେୟର ଗୋଟିଏ ମାତ୍ର ଉପମାନର ଆରୋପ ଅଥବା ଅଭେଦ କଳ୍ପନା ହୋଇଥାଏ, ସେଠାରେ ନିରଙ୍ଗ ରୂପକ ହୋଇଥାଏ ।

(କ) ବଦନ-ଦୀଧିତି ଥରେ ଚାହିଁ ତାଙ୍କ
ମୁଖ କଲା ଅବନତ,
ଲାଜକୁଳୀ ଲତା- ଅଙ୍ଗେ କି ସହସା
ଲାଗିଗଲା କାହା ହସ୍ତ ?

(ପ୍ରଣୟ ବଲ୍ଲରୀ - ଗଙ୍ଗାଧର)

ଉପରୋକ୍ତ ପଦରେ 'ବଦନ' ସହିତ 'ଦୀଧିତି'ର ଅଭେଦ କଳ୍ପିତ ହୋଇଥିବାରୁ ନିରଙ୍ଗ ରୂପକ ହୋଇଛି ।

(ଖ) ଭାର୍ଗବୀ ସ୍ୱର୍ଗର ସୁଗମ ନିଃଶ୍ରେଣୀ,
ମନୋହର ଯାର ନୀଳ ନୀର ବେଣୀ ।

(କବିବର ରାଧାନାଥ- ଚିଲିକା)

ଏଠାରେ 'ଭାର୍ଗବୀ'ରେ ନିଃଶ୍ରେଣୀର ଆରୋପ କରାଯାଇଛି ।

**୬. ଉତ୍ପ୍ରେକ୍ଷା** - ପ୍ରକୃତ ପଦାର୍ଥରେ ଅପ୍ରକୃତ ପଦାର୍ଥର ତର୍କଣା କରାଗଲେ, ଉତ୍ପ୍ରେକ୍ଷା ଅଳଙ୍କାର ହୋଇଥାଏ ।

ଚୁମ୍ବି ଚରଣକୁ ଚିକୁର
ରାଜି ଦୋଳେ ଚରମେ
ମଦନ-କେତନ ଉଡ଼ଇ
କିବା ଶୋଭା-ଆଶ୍ରମେ ।

(ଚନ୍ଦ୍ରଭାଗା-ରାଧାନାଥ)

ଏଠାରେ ଉପମେୟ ଚନ୍ଦ୍ରଭାଗାର କେଶଗୁଚ୍ଛ 'ଚିକୁର ରାଜି'କୁ ଉପମାନ ମଦନକେତନ ସହିତ ତର୍କଣା କରାଯାଇଛି । ବାଚକ ଶବ୍ଦ 'କିବା' ବ୍ୟବହୃତ ।

**୭. ବ୍ୟତିରେକ** - ଯେଉଁଠାରେ ଉପମାନଠାରୁ ଉପମେୟର ଆଧିକ୍ୟ କଥିତ ହୋଇଥାଏ, ସେଠାରେ ବ୍ୟତିରେକ ଅଳଙ୍କାର ହୋଇଥାଏ ।

ନୀଳିମାରେ ବାମା ଚାରୁକେଶ ପାଶ
ତୋ ନୀଳ ବୀଚିକି କଲା ଉପହାସ ।

(ଚିଲିକା-ରାଧାନାଥ)

ଉପରୋକ୍ତ ପଦରେ ଉପମେୟ ଚାରୁକେଶ ପାଶ (ପଦ୍ମାବତୀଙ୍କ) ଉପମାନ (ଚିଲିକାର) ନୀଳବୀଚିଠାରୁ ଅଧିକ ମହତ୍ତ୍ୱ ପାଇଥିବାରୁ, ବ୍ୟତିରେକ ଅଳଙ୍କାର ହୋଇଛି ।

୮. **ସ୍ୱଭାବୋକ୍ତି** – ପ୍ରକୃତି ବା ପ୍ରକୃତ ବସ୍ତୁର ସ୍ୱଭାବ ସଙ୍ଗତ ଯଥାର୍ଥ ବର୍ଣ୍ଣନା ହେଲେ, ସ୍ୱଭାବୋକ୍ତି ଅଳଙ୍କାର ହୋଇଥାଏ ।

ବାହେ ଭିଡ଼ାଭିଡ଼ି ମୁଣ୍ଡେ କୋଡ଼ାକୋଡ଼ି ହିଆକୁ ହିଆ ପ୍ରହାରନ୍ତି
ଜାନୁକୁ ଜାନୁ ପାଦକୁ ପାଦ ଛନ୍ଦି ପଡ଼ି ଉଠି ପୁଣି ଗଡ଼ନ୍ତି ।

(ମଥୁରା ମଙ୍ଗଳ–ଭକ୍ତଚରଣ ଦାସ)

ଏଠାରେ ଯୁଦ୍ଧର ସ୍ୱାଭାବିକ ବର୍ଣ୍ଣନାଟିଏ ଦିଆଯାଇଥିବାରୁ ସ୍ୱଭାବୋକ୍ତି ଅଳଙ୍କାର ହୋଇଛି ।

୯. **ବିଶେଷୋକ୍ତି** – କାରଣ ଥାଇ କାର୍ଯ୍ୟର ଉତ୍ପତ୍ତି ନ ହେଲେ ବିଶେଷୋକ୍ତି ଅଳଙ୍କାର ହୋଇଥାଏ ।

ଖାଉଥିଲେ ଦ୍ରବ୍ୟ ସ୍ୱାଦୁ ନ ଜାଣେ
ଗନ୍ଧ ଘେନଇ ଉଦାସୀନ ଗୁଣେ
ଦେଖୁଥିଲେ ଆଖି ଚିହ୍ନଇ ନାହିଁ
ଏ କର୍ମ ବୋଲି ସେ କର୍ମ କରଇ ।

(ବିଦଗ୍ଧ ଚିନ୍ତାମଣି–ଅଭିମନ୍ୟୁ)

ଏଠାରେ ଖାଇବା ପରେ ସ୍ୱାଦ ଜାଣି ନ ପାରିବା, ଦେଖିବା ସତ୍ତ୍ୱେ ଚିହ୍ନି ନ ପାରିବା, ଗୋଟିଏ କର୍ମପାଇଁ ଅନ୍ୟ କର୍ମ କରିବା ଇତ୍ୟାଦିରୁ ଜଣାଯାଏ । କାରଣ ଥାଇ ମଧ୍ୟ କାର୍ଯ୍ୟର ଉତ୍ପତ୍ତି ହେଉନାହିଁ, ତେଣୁ ବିଶେଷୋକ୍ତି ଅଳଙ୍କାର ହେଲା ।

୧୦. **ଅତିଶୟୋକ୍ତି** – ଯେତେବେଳେ ପ୍ରକୃତ ବିଷୟ ଅର୍ଥାତ୍ ଉପମେୟର ଅଧଃକରଣ ଯୋଗୁଁ ଅପ୍ରକୃତ ଅର୍ଥାତ୍ ଉପମାନରେ ସିଦ୍ଧ ଅଧ୍ୟବସାୟ ହୁଏ, ସେଠାରେ ଅତିଶୟୋକ୍ତି ଅଳଙ୍କାର ହୋଇଥାଏ ।

ଉଦ୍ଧବ ! କହିବଟି ଗୋପୀନାଥଙ୍କୁ
କର–ପଲ୍ଲବର କନିଷ୍ଠ ମୁଦ୍ରିକା କଙ୍କଣ ହେଲାଣି କରକୁ ।

(ମଥୁରା ମଙ୍ଗଳ – ଭକ୍ତଚରଣ ଦାସ)

ଏଠାରେ ମୁଦ୍ରିକା କରକଙ୍କଣ ରୂପେ ବର୍ଣ୍ଣିତ ହୋଇ ଉପମାନର ସିଦ୍ଧ ଅଧ୍ୟବସାୟ ହୋଇଥିବାରୁ ଅତିଶୟୋକ୍ତି ଅଳଙ୍କାର ହୋଇଛି ।

୧୧. **ଭ୍ରାନ୍ତିମାନ୍** – ସାଦୃଶ୍ୟ ଯୋଗୁଁ ପ୍ରକୃତ ପଦାର୍ଥରେ ଅପ୍ରକୃତ ପଦାର୍ଥର କବି ପ୍ରୌଢ଼ୋକ୍ତି ସିଦ୍ଧ ଭ୍ରମ ସୃଷ୍ଟି ହୋଇ ଅନୁରୂପ କାର୍ଯ୍ୟ ବର୍ଣ୍ଣିତ ହେଲେ, ଭ୍ରାନ୍ତିମାନ୍ ଅଳଙ୍କାର ହୋଇଥାଏ ।

ଶିବା ଖୋଜିଲେ ଯେ ଭୀମ ଅଛନ୍ତି ନାହାନ୍ତି ଭ୍ରମ
ଶିବ ଗଙ୍ଗାଙ୍କୁ ଖୋଜିଲେ ଜଟା ଫିଟାଇ,
କୁସୁମବତୀ ବ୍ରତତୀ ଅଦୃଷ୍ଟରଜାର ରୀତି
ମୋତିହାରବତୀ ମତି ଚିନ୍ତାକୁ ପାଇ
ଭ୍ରମରେ ଭ୍ରମରେ ଭ୍ରମନ୍ତି
ମଧୁପ ପରାୟେ କୁମୁଦିନୀ ଲୋଡ଼ନ୍ତି ।

(ବିଦଗ୍ଧ ଚିନ୍ତାମଣି - ଅଭିମନ୍ୟୁ)

ଏଠାରେ ଚନ୍ଦ୍ର କିରଣର ଶୁଭ୍ରତା ଯୋଗୁଁ ବିଭୂତି ବିଲେପିତ ଶିବ ଚନ୍ଦ୍ରକିରଣରେ ମିଶିଯିବାରୁ ଶିବ ଓ ଜ୍ୟୋତ୍ସ୍ନା ମଧ୍ୟରେ ପାର୍ଥକ୍ୟ ନ ଜାଣିପାରି ପାର୍ବତୀଙ୍କ ଭ୍ରାନ୍ତଭାବ, ଶିବଙ୍କର ଗଙ୍ଗାରେ ଭ୍ରାନ୍ତଭାବ, ପୁଷ୍ପବତୀ ଲତାଙ୍କର ପୁଷ୍ପଶୂନ୍ୟ ଲତାର ଭ୍ରାନ୍ତଭାବ, ମୋତିହାର ପିନ୍ଧିଥିବା ନାରୀମାନଙ୍କର ମୋତିରେ ଭ୍ରମ, ଭ୍ରମର ଗଣର ଭ୍ରାନ୍ତିଭାବ ଇତ୍ୟାଦି ଯୋଗୁଁ ପ୍ରକୃତ ପଦାର୍ଥରେ ଅପ୍ରକୃତ ପଦାର୍ଥର ଭ୍ରମ ସୃଷ୍ଟି ଯୋଗୁଁ ଭ୍ରାନ୍ତିମାନ୍ ଅଳଙ୍କାର ହେଲା ।

**୧୨. ବିଭାବନା**- କାରଣ ବିନା କାର୍ଯ୍ୟର ଉତ୍ପତ୍ତି ବର୍ଣ୍ଣିତ ହେଲେ, ବିଭାବନା ଅଳଙ୍କାର ହୋଇଥାଏ ।

ଅନଳ ନୁହଇଁ ଦେହ ଦହଇ
ଅସ୍ତ୍ର ନୁହଇଁ ମରମ ଭେଦଇ
ନୁହଇଁ ତ ଜଳ ବୁଡ଼ାଏ କୂଳ
ନୁହଇଁ ମାଦକ କରେ ବିହ୍ୱଳ
ନୁହଇଁ ବଡ଼ଶୀ ଗୋ
ବଳେ ମନ ମୀନ ନିଏ ଆକର୍ଷି ।

(ବିଦଗ୍ଧ ଚିନ୍ତାମଣି - ଅଭିମନ୍ୟୁ)

ଏଠାରେ ଅନଳର ଅନୁପସ୍ଥିତିରେ ଦେହ ଦହନ, ଅସ୍ତ୍ର ବିନା ମର୍ମ ଭେଦ, ଜଳ ବିନା କୂଳପ୍ଲାବନ, ମାଦକ ବିନା ବିହ୍ୱଳିତ ଅବସ୍ଥା ବର୍ଣ୍ଣନା ଦ୍ୱାରା କାରଣ ବ୍ୟତିରେକେ କାର୍ଯ୍ୟର ଉତ୍ପତ୍ତି ହୋଇଛି ।

**୨୩. ସଙ୍କର** - ଯେଉଁଠାରେ ଏକାଧିକ ଅଳଙ୍କାର ଗୋଟିଏ ବାକ୍ୟରେ ଏକତ୍ର ମିଳିତ ହୋଇ ସାପେକ୍ଷ ଭାବରେ ରହନ୍ତି, ସେଠାରେ ସଙ୍କର ଅଳଙ୍କାର ହୋଇଥାଏ ।

କେଉଁ ଗୋପୀ ହସି ବକ୍ରବାଣୀ ଭାଷି ବୋଲେ ଦେଖ ଏ କାମଦୂତୀ
କାମ କାର୍ଯ୍ୟ ସିଦ୍ଧ କରିବାରୁ ବୁଧମାନେ ବୋଲନ୍ତି କାମଦୂତୀ ।

(ରସକଲ୍ଲୋଳ - ଦୀନକୃଷ୍ଣ)

ଏଠାରେ ଯମକ ଓ ଅନୁପ୍ରାସ ପ୍ରତୀୟମାନୋତ୍‌ପ୍ରେକ୍ଷା ଭାବରେ ରହିଥିବାରୁ ସଙ୍କର ଅଳଙ୍କାର ହୋଇଛି ।

**୧୪. ଅର୍ଥାନ୍ତରନ୍ୟାସ** – ଗୋଟିଏ ତଥ୍ୟକୁ ଅନ୍ୟ ଏକ ତଥ୍ୟଦ୍ୱାରା ସମର୍ଥନ କରାଗଲେ ବା ପ୍ରସ୍ତୁତ ବାକ୍ୟାର୍ଥ ଯଦି ଅପ୍ରସ୍ତୁତ ବାକ୍ୟାର୍ଥଦ୍ୱାରା ସମର୍ଥିତ ହୁଏ, ତେବେ ଅର୍ଥାନ୍ତରନ୍ୟାସ ଅଳଙ୍କାର ହୋଇଥାଏ ।

କଳଙ୍କ ହିଁ ଥାଇ କଳାକର କୋଳେ
କରଇ ନେତ୍ର ରଞ୍ଜନ
ସ୍ୱଭାବ ସୁନ୍ଦର ଅଙ୍ଗକୁ ଜଗତେ
ନ ହୁଏ କିସ ମଣ୍ଡନ ?

(ପ୍ରଣୟ ବଲ୍ଲରୀ–ଗଙ୍ଗାଧର)

ସ୍ୱାଭାବିକ ସୁନ୍ଦର ଅଙ୍ଗରେ ଯାହା ପରିଧାନ କଲେ ବି ସୁନ୍ଦର ଦିଶେ– ଏହି ଉକ୍ତିଟି ଚନ୍ଦ୍ରରେ କଳଙ୍କ ଥିଲେ ବି ନେତ୍ରରଞ୍ଜନ କରେ ଉକ୍ତିଟି ସମର୍ଥନ କରୁଛି ।

**୧୫. ବିରୋଧାଭାସ** – ରଚନାରେ ବିରୋଧ ପ୍ରକାଶୁଥିଲେ ବି ଯଦି ଅର୍ଥବୋଧରେ ବିରୁଦ୍ଧ ହୋଇ ନ ଥାଏ, ତେବେ ବିରୋଧାଭାସ ଅଳଙ୍କାର ହୋଇଥାଏ । ଏଥିରେ ଗୁଣ, କ୍ରିୟା, ଦ୍ରବ୍ୟ ଓ ଜାତିର ବିରୋଧ ବର୍ଣ୍ଣିତ ହୋଇଥାଏ ।

ମହାଭୟଙ୍କର ରିପୁ ରକ୍ତିମା ଜନ୍ମାଇ
ଉପୁଜାଏ ବିରକ୍ତ କି, ବହ୍ନିଶିଖା ଜାଳି
ଉପୁଜାଏ ତମଃ ଜ୍ଞାନ ବିବେକ ବିଲୋପୀ ।

(ମହାଯାତ୍ରା–ରାଧାନାଥ)

ଏଠାରେ ରକ୍ତିମା ଓ ବିରକ୍ତି, ବହ୍ନିଶିଖା ଓ ତମଃ ପରସ୍ପରର ବିରୋଧୀ ଆଭାସୁଥିଲେ ହେଁ, ସେମାନେ ପ୍ରକୃତରେ ବିରୋଧୀ ନୁହନ୍ତି ।

**୧୬. ଅପହ୍ନୁତି** – ପ୍ରକୃତ ବସ୍ତୁକୁ ପ୍ରତିରୋଧ କରି ଅପ୍ରକୃତ ବସ୍ତୁ ସ୍ଥାପନା କରାଗଲେ, ଅପହ୍ନୁତି ଅଳଙ୍କାର ହୋଇଥାଏ ।

ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି
ନୁହଇ ସିନ୍ଦୂର ରହିଛି ସ୍ମର ହୃଦୟ ଲାଖି ।

(ଚନ୍ଦ୍ରଭାଗା – ରାଧାନାଥ)

ଏଠାରେ ପ୍ରକୃତ ବସ୍ତୁ ସିନ୍ଦୂରକୁ ପ୍ରତିରୋଧ କରି, ତା' ପରିବର୍ତ୍ତେ ସ୍ମର ହୃଦୟକୁ ସ୍ଥାନିତ କରାଯାଇଥିବାରୁ ଅପହ୍ନୁତି ଅଳଙ୍କାର ହୋଇଛି ।

**୧୭. ଅନନ୍ୱୟ** – ଯେଉଁଠାରେ ଉପମେୟ ମଧ୍ୟ ଉପମାନ ହୋଇଥାଏ, ସେଠାରେ ଅନନ୍ୱୟ ଅଳଙ୍କାର ହୋଇଥାଏ ।

ତହିଁ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହି ତା'ର ସିନା ।

(ଚିଲିକା – ରାଧାନାଥ)

ଉପରୋକ୍ତ ପଦରେ ଅଦ୍ୱିତୀୟା ସୁନ୍ଦରୀ ପଦ୍ମାବତୀ ପରି ଆଉ କେହି ନାହାନ୍ତି- ଏପରି ଅର୍ଥ ପ୍ରକାଶ କରୁଥିବାରୁ ଅନନ୍ୱୟ ଅଳଙ୍କାର ହୋଇଛି ।

**୧୮. ପ୍ରତିବସ୍ତୂପମା** – ଯେଉଁଠାରେ ଦୁଇଟି ବାକ୍ୟର ସାଧାରଣ ଧର୍ମ ଏକାର୍ଥବୋଧକ ହୋଇ ବି ଭିନ୍ନଭିନ୍ନ ଶବ୍ଦଦ୍ୱାରା ପ୍ରକାଶିତ ହୋଇଥାଏ, ସେଠାରେ ପ୍ରତିବସ୍ତୂପମା ଅଳଙ୍କାର ହୋଇଥାଏ ।

କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ
କେବେ ରସିକ ଛାଡ଼େ
ମଧୁଥିଲେ ପୁଷ୍ପେ ଯତନେ
ଖୋଜି ମଧୁପ କାଢ଼େ ।

(ଚନ୍ଦ୍ରଭାଗା-ରାଧାନାଥ)

ଏଠାରେ ରସିକ ରୂପ ତ୍ୟାଗ ନ କରିବା ଉପମେୟ ଏବଂ ମଧୁକୁ ଭ୍ରମର ଖୋଜି କାଢ଼ିବା ଉପମାନ । ଉପରୋକ୍ତ ଦୁଇ ବାକ୍ୟର ସାଧାରଣ ଧର୍ମ 'ନ ଛାଡ଼ିବା' ଓ 'କାଢ଼ିବା' । ଏହା ଏକାର୍ଥବୋଧକ ହୋଇ ମଧ୍ୟ ଭିନ୍ନ ଭାବରେ ପ୍ରକାଶିତ ହୋଇଥିବାରୁ ପ୍ରତିବସ୍ତୂପମା ଅଳଙ୍କାର ହୋଇଛି ।

ଏ ବାଳାକୁ ବନବାସ ଭିଆଇଲେ ବିଧି ଆହା କି ବିଚାରେ
ଶମୀ ଛେଦିବାକୁ ଲୋଡ଼ିଲେ ସିନା ସେ ନୀଳୋତ୍ପଳ ଜଳଧାରେ ।

(ପ୍ରଣୟ ବଲ୍ଲରୀ – ଗଙ୍ଗାଧର)

ଏ ଦୁଇ ବାକ୍ୟରେ ସ୍ୱରୂପଗତ ପାର୍ଥକ୍ୟ ରହିଛି; କିନ୍ତୁ ଅର୍ଥରେ ସମତା ବିଦ୍ୟମାନ । ଏହି ଦୁଇ ବାକ୍ୟର ସାଧାରଣ ଧର୍ମ 'ବନବାସ' ଓ 'ଶମୀଛେଦନ' ଏକାର୍ଥବୋଧକ ହେଲେ ହେଁ ଏକ ଅର୍ଥକୁ ଦୁଇଟି ବିଭିନ୍ନ ପଦରେ କୁହାଯାଇଛି । ତେଣୁ ଏଠାରେ ପ୍ରତିବସ୍ତୂପମା ଅଳଙ୍କାର ହୋଇଛି ।

# ଅନୁଶୀଳନୀ

୧ । "ଅହିମକର ତାପନାଶେ ଶୋଭା ସାରସ ଚକ୍ରେ,
ଅହିମକର ତାପନାଶେ ଶୋଭା ସାରସ ଚକ୍ରେ ।"
– ଏହି ପଦରେ କେଉଁ ଅଳଙ୍କାର ବର୍ଣ୍ଣନା କରାଯାଇଛି ?
(କ) ଯମକ (ଖ) ଉପମା (ଗ) ଅନୁପ୍ରାସ (ଘ) ଉତ୍‌ପ୍ରେକ୍ଷା

୨ । "ଶ୍ୱେତାଙ୍ଗ ଚଢ଼େଇ ଗୁହା ସମୁଦ୍‌ଗତ
ନୀରଭେଦି କିବା ଉଠେ ଐରାବତ"
– ଏଥିରେ କେଉଁ ଅଳଙ୍କାର ବ୍ୟବହାର କରାଯାଇଛି ?
(କ) ରୂପକ (ଖ) ଉତ୍‌ପ୍ରେକ୍ଷା (ଗ) ଯମକ (ଘ) ଶ୍ଳେଷ

୩ । "ବରଜୀବ ରସେ ଦେଇ ମାସନ
ବରଜି ବରକ୍ଷେ ଅମେଧ ଗ୍ରାସ ।"
– ଏଥିରେ କେଉଁ ଅଳଙ୍କାର ବ୍ୟବହାର ହୋଇଅଛି ?
(କ) ଶ୍ଳେଷ (ଖ) ଯମକ (ଗ) ରୂପକ (ଘ) ଉପମା

୪ । "ଭଗ୍ନଘଟୁ ଆହା ସଲିଳ ଯେସନେ
ବହି ଯାଉଅଛି ଆୟୁ ପ୍ରତିକ୍ଷଣେ ।"
– ଏଥିରେ କେଉଁ ଅଳଙ୍କାର ବ୍ୟବହୃତ ହୋଇଛି ।
(କ) ଉପମା (ଖ) ଉତ୍‌ପ୍ରେକ୍ଷା (ଗ) ରୂପକ (ଘ) ଯମକ

୫ । ଦୁଇଟି ବସ୍ତୁ ମଧ୍ୟରେ ତୁଳନା କଲାବେଳେ ଗୋଟିଏ ବର୍ଣ୍ଣନୀୟ ବା ପ୍ରକୃତ ବସ୍ତୁ ଓ ଅନ୍ୟଟି ଅପ୍ରକୃତ ବସ୍ତୁ । ତେବେ ଅପ୍ରକୃତ ବସ୍ତୁଟିକୁ କ'ଣ କୁହାଯାଏ ?
(କ) ଉପମା (ଖ) ଉପମାନ (ଗ) ଶ୍ଳେଷ (ଘ) ରୂପକ

୬ । ଯେଉଁ ଠାରେ ଶବ୍ଦକୁ ଭାଙ୍ଗି ଭିନ୍ନ ଭିନ୍ନ ଅର୍ଥ କରାଯାଏ, ସେଠାରେ ତାହାକୁ କେଉଁ ଶ୍ଳେଷ ଅଳଙ୍କାର କୁହାଯାଏ ?
(କ) ସଭଙ୍ଗ ଶ୍ଳେଷ (ଖ) ଅଭଙ୍ଗଶ୍ଳେଷ (ଗ) ଭଙ୍ଗାଭଙ୍ଗ ଶ୍ଳେଷ (ଘ) ଅଭଙ୍ଗ ସଭଙ୍ଗ ଶ୍ଳେଷ

୭ । ପ୍ରକୃତ ବସ୍ତୁକୁ ପ୍ରତିରୋଧ କରି ଅପ୍ରକୃତ ବସ୍ତୁ ସ୍ଥାପନା କରାଗଲେ — ଅଳଙ୍କାର ହୁଏ ।

(କ) ଅର୍ଥାନ୍ତରନ୍ୟାସ (ଖ) ବିଭାବନା (ଗ) ଅପହ୍ନୁତି (ଘ) ଅନନ୍ୱୟ

୮ । କାରଣ ବିନା କାର୍ଯ୍ୟର ଉତ୍ପତ୍ତି ହେଲେ — ଅଳଙ୍କାର ହୁଏ ।

(କ) ଭ୍ରାନ୍ତିମାନ୍ (ଖ) ବିଭାବନା (ଗ) ସଙ୍କର (ଘ) ଅପହ୍ନୁତି

୯ । କାରଣ ଥାଇ କାର୍ଯ୍ୟର ଉତ୍ପତ୍ତି ନ ହେଲେ — ଅଳଙ୍କାର ହୋଇଥାଏ ।

(କ) ସ୍ୱଭାବୋକ୍ତି (ଖ) ବିଶେଷୋକ୍ତି (ଗ) ଉପପ୍ରେକ୍ଷା (ଘ) ବ୍ୟତିରେକ

୧୦। ଯେଉଁଠାରେ ଉପମାନ ଠାରୁ ଉପମେୟର ଆଧିକ୍ୟ କଥିତ ହୁଏ, ସେଠାରେ — ଅଳଙ୍କାର ହୋଇଥାଏ ।

(କ) ଅନୁପ୍ରାସ (ଖ) ଶ୍ଳେଷ (ଗ) ଉପମା (ଘ) ବ୍ୟତିରେକ ।

୧୧ । ପ୍ରଚେତା ପ୍ରବାଳ ପ୍ରାସାଦର ରୁଚି
ନୀଳ ନୀରୁ ଅବା ଫୁଟି ବାହାରୁଛି ।

ଏଠାରେ ଥିବା ଉତ୍ପ୍ରେକ୍ଷାବାଚକ ଶବ୍ଦ କେଉଁଟି ?

(କ) ନୀଳ (ଖ) ନୀରୁ (ଗ) ଅବା (ଘ) ଫୁଟି

୧୨ । ଦୁଇଟି ବସ୍ତୁର ତୁଳନା କଲାବେଳେ ଯାହା ସହିତ ତୁଳନା କରାଯାଏ, ତାକୁ କ'ଣ କହନ୍ତି ?

(କ) ଉପମାବାଚକ ଶବ୍ଦ (ଖ) ଉପମେୟ (ଗ) ଉପମାନ (ଘ) ସାଧାରଣ ଧର୍ମ

୧୩ । ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳିକା କାନ୍ତ ସ୍ମରି
ରକ୍ଷା କେମନ୍ତେ କରି କରିବା ମତ୍ତକରୀ
ଗତିକି ଏମନ୍ତ ବିଚାରି ।

ଏଥିରେ କେଉଁ ଅଳଙ୍କାର ବ୍ୟବହୃତ ହୋଇଅଛି ?

(କ) ଅନୁପ୍ରାସ (ଖ) ଉତ୍ପ୍ରେକ୍ଷା (ଗ) ବିଶେଷୋକ୍ତି (ଘ) ଅର୍ଥାନ୍ତରନ୍ୟାସ

୧୪ । ବର୍ଣ୍ଣନୀୟ ବସ୍ତୁର ସ୍ୱଭାବ ସଙ୍ଗତ ଚମତ୍କାର ବର୍ଣ୍ଣନା ହେଲେ — ଅଳଙ୍କାର ହୁଏ ।

(କ) ବିଶେଷୋକ୍ତି (ଖ) ସ୍ୱଭାବୋକ୍ତି (ଗ) ଅତିଶୟୋକ୍ତି, (ଘ) ଭ୍ରାନ୍ତିମାନ୍

୧୫ । ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି

ନୁହଇ ସିନ୍ଦୂର ରହିଛି ସ୍ମର ହୃଦୟ ଲାଖି ।

ଏଠାରେ ପ୍ରକୃତ ବସ୍ତୁ ସିନ୍ଦୂରକୁ ପ୍ରତିରୋଧ କରି, ତା ପରିବର୍ତ୍ତେ ସ୍ମର ହୃଦୟକୁ ସ୍ଥାନିତ କରାଯାଇଥିବାରୁ — ଅଳଙ୍କାର ହୋଇଛି ।

(କ) ଅନନ୍ୱୟ (ଖ) ବିରୋଧାଭାସ (ଗ) ଅର୍ଥାନ୍ତରନ୍ୟାସ (ଘ) ଅପହ୍ନୁତି



